# ଅମୃତ ଅନୁଭବ

(ଆତ୍ମଜୀବନୀ)

ଅନ୍ନପୂର୍ଣ୍ଣା ମହାରଣା




ଭୁବନେଶ୍ୱର

# ଅମୃତ ଅନୁଭବ

ଆତ୍ମଜୀବନୀ

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା




ଭୁବନେଶ୍ୱର

# ଅମୃତ ଅନୁଭବ

(ଆତ୍ମଜୀବନୀ)

ଲେଖକ

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା**

ପ୍ରକାଶକ

**ଶିକ୍ଷାସନ୍ଧାନ**

ଏ-୧୨, ହାଉସିଂ ବୋର୍ଡ଼ କଲୋନୀ

ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

ମୁଦ୍ରଣ

**ଶିକ୍ଷା ପ୍ରକାଶନୀ,** ୨୬୬, ରୋଡ- ୧, ଜଗନ୍ନାଥ ବିହାର,

ବରମୁଣ୍ଡା, ଭୁବନେଶ୍ୱର - ୭୫୧୦୦୩

ପ୍ରଥମ ସଂସ୍କରଣ **ଫେବୃୟାରୀ ୨୦୦୫**

ମୂଲ୍ୟ : ୩୦୦/- ମାତ୍ର

ଆଇ ଏସ୍ ବି ଏନ୍ : ୮୧-୮୭୯୮୨-୧୯-୫

---

**AMRUTA ANUBHABA**

(Autobiography)

*Author*

**Smt. Annapurna Moharana**

*Published by*

**SIKSHASANDHAN**

A/12, Housing Board Colony

Baramunda, Bhubaneswar - 751 003

Ph : (0674) 2550656, 2556109

*Printed by :*

**Siksha Prakashani,** 266 Road-1, Jagannath Vihar

Baramunda, Bhubaneswar - 751003

First Edition : February 2005

Price : 300/- only

ISBN : 81-87982-19-5

# କୃତଜ୍ଞତା

ଓଡ଼ିଶାର ସ୍ୱାଧୀନତା ସଂଗ୍ରାମରେ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ଅବଦାନ ସର୍ବଜନବିଦିତ । ସେ ଏପରି ଏକ ତ୍ୟାଗନିଷ୍ଠ ପରିବାରରେ ଜନ୍ମଗ୍ରହଣ କରିଥିଲେ ଯେଉଁ ପରିବାର ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ, ସମାଜବାଦ ଆନ୍ଦୋଳନ ଏବଂ ଭୂଦାନ ଆନ୍ଦୋଳନରେ ପ୍ରମୁଖ ଭୂମିକା ନେଇଥିଲେ । କହିବା ବାହୁଲ୍ୟ ଯେ ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ଏବଂ ନବକୃଷ୍ଣ ଚୌଧୁରୀ ସେମାନଙ୍କର ପୁତ୍ରକନ୍ୟା ମାନଙ୍କୁ ଆନୁଷ୍ଠାନିକ ବିଦ୍ୟାଳୟରେ ପାଠପଢ଼ାରୁ ନିବୃତ୍ତ କରିଥିଲେ । ଶ୍ରୀଯୁକ୍ତ ମନମୋହନ ଚୌଧୁରୀ ଏବଂ ଅନ୍ନପୂର୍ଣ୍ଣା ମହାରଣା ପାରମ୍ପରିକ ଢ଼ାଞ୍ଚାରେ ପାଠ ନପଢ଼ି ନିଜର ଚେତନାକୁ ଉଚ୍ଚସ୍ତରକୁ ଆଣିପାରିଥିଲେ । ଶ୍ରୀମତୀ ମହାରଣାଙ୍କ ଲେଖା ଯେ କେହି ପଢ଼ିବ, ତାଙ୍କ ଭାଷା ଓ ଲିଖନଶୈଳୀର ଏକ ଅଭୁତପୂର୍ବ ଯାଦୁ ଅନୁଭବ କରି ପାରିବେ । ସେହି ଦୃଷ୍ଟିରୁ ତାଙ୍କ ଆତ୍ମଜୀବନୀ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ନିଶ୍ଚିତ ଅଧିକାର କରିବ । ଏହି କାରଣରୁ ଶିକ୍ଷାସନ୍ଧାନ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କ ଆତ୍ମଜୀବନୀ ଛପାଇବା ପାଇଁ ଆଗ୍ରହୀ ହୋଇଥିଲା । ଶିକ୍ଷାସନ୍ଧାନର ସୌଭାଗ୍ୟ ଯେ ଶ୍ରୀମତୀ ମହାରଣା ତାଙ୍କ ଆତ୍ମଜୀବନୀକୁ ପ୍ରକାଶ କରିବା ପାଇଁ ଶିକ୍ଷାସନ୍ଧାନକୁ ସୁଯୋଗ ଦେଇଛନ୍ତି, ସେଥିପାଇଁ ତାଙ୍କ ନିକଟରେ ଆମେ ଚିର ଋଣୀ ।

ଅନେକ ଭାବନ୍ତି ଛାତ୍ରମାନଙ୍କୁ ଗାନ୍ଧୀଜୀଙ୍କର ସ୍କୁଲ କଲେଜ ଛାଡ଼ି ଦେଶମୁକ୍ତି ଆନ୍ଦୋଳନରେ ଯୋଗଦେବା ଡ଼ାକରା ଏକ ଭୁଲ ପନ୍ଥା ଥିଲା । କିନ୍ତୁ ଶ୍ରୀଯୁକ୍ତ ବିନୋଦ୍ କାନୁନ୍‌ଗୋ, ଶ୍ରୀଯୁକ୍ତ ମନମୋହନ ଚୌଧୁରୀ, ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଏବଂ ଆଉ ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କର ଆତ୍ମଜୀବନୀରୁ ଜଣାପଡ଼େ ଯେ, ଦେଶମୁକ୍ତି ଆନ୍ଦୋଳନ ଥିଲା ଏକ ବିରାଟ ବିଶ୍ୱବିଦ୍ୟାଳୟ । ସ୍ୱାଧୀନତା ସଂଗ୍ରାମୀମାନେ ଜନଜୀବନର ସଂପୃକ୍ତିରୁ ଓ ଆନ୍ଦୋଳନରୁ ସମାଜ ଏବଂ ମଣିଷ ବିଷୟରେ ଯେଉଁ ଗଭୀର ଅନୁଭୂତି ଏବଂ ଜ୍ଞାନ ପାଉଥିଲେ, ତାହା ପାରମ୍ପରିକ ଶିକ୍ଷା ବ୍ୟବସ୍ଥାରୁ କେବେହେଲେ ସେମାନେ ପାଇ ପାରିନଥାନ୍ତେ ।।

ଓଡ଼ିଶା ସ୍ୱାଧୀନତା ଆନ୍ଦୋଳନରେ ନାରୀମାନଙ୍କର ଏକ ବିଶେଷ ଭୂମିକା ରହିଥିଲା । ସ୍ୱାଧୀନତା ସଂଗ୍ରାମରେ ବିଶେଷ କରି ମହିଳାମାନେ କେତେ କଷ୍ଟ ସ୍ୱୀକାର କରି ପାରମ୍ପରିକ ସାମାଜିକ ଆକଟକୁ ଭ୍ରୂକ୍ଷେପ ନକରି ଏହି ସଂଗ୍ରାମରେ ଝାସ ଦେଇଥିଲେ । ଶ୍ରୀମତୀ ମହାରଣାଙ୍କ ଏହି ଆତ୍ମସ୍ମୃତି ଛପା ହୋଇନଥିଲେ ହୁଏତ ସେମାନଙ୍କ ଅବଦାନ

ଲୋକଲୋଚନକୁ ଆସିପାରିନଥାନ୍ତା, ଏବଂ ଜନଜୀବନ ଉପରେ ମହାତ୍ମାଗାନ୍ଧୀଙ୍କର ସୁଦୂରପ୍ରସାରୀ ପ୍ରଭାବ ସଂପର୍କରେ ବିଶେଷ ସୂଚନା ମିଳିନଥାନ୍ତା ।।

ଧୀରେ ଧୀରେ ସ୍ୱାଧୀନତା ସଂଗ୍ରାମର ସ୍ମୃତି ମଳିନ ହୋଇ ଆସୁଛି । ଭାରତକୁ ଅନ୍ୟବାଟରେ ଗଢ଼ିବା ପାଇଁ ଯେଉଁମାନେ ଅସୀମ କଷ୍ଟ ସ୍ୱୀକାର କରି ନିଜ ଜୀବନ ବାଜି ଲଗାଇ ଦେଇଥିଲେ, ସେମାନେ ଅଧିକାଂଶ ଇହଜଗତରେ ନାହାନ୍ତି । ଏଭଳି ସମୟରେ ସ୍ୱାଧୀନତା ସଂଗ୍ରାମର ସ୍ମୃତିକି ପୁନରୁଜ୍ଜୀବିତ କରିବା ଏବଂ ଅସଂଖ୍ୟ ଖଟିଖିଆ, ଗରିବ, ନିଷ୍ପେସିତ ମାନଙ୍କ ଉନ୍ନତି ପାଇଁ କିଛି କରିବା ପାଇଁ ଶ୍ରୀମତୀ ମହାରଣାଙ୍କ ଆତ୍ମକଥା ( ଅମୃତ ଅନୁଭବ) ନିଶ୍ଚିତ ଭାବରେ ପ୍ରେରଣାର ଉତ୍ସ ହେବ ବୋଲି ଆଶା ।

ଉକ୍ତ ପୁସ୍ତକକୁ ଛପାଇବା ପାଇଁ ଶ୍ରଦ୍ଧେୟ ଚିତ୍ତଭାଇ, ଅଚ୍ୟୁତ ଭାଇ, ବିଦ୍ୟା ଅପା ଓ ଅରବିନ୍ଦ ଭାଇ ଆମକୁ ଉତ୍ସାହିତ କରିଥିବାରୁ ଆମେ ତାଙ୍କ ନିକଟରେ ଋଣୀ ।

ଉକ୍ତ ପୁସ୍ତକର କିଛି ଅଂଶ ମାସିକ ପତ୍ରିକା ସୁଚରିତାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା । ସୁଚରିତା କାର୍ଯ୍ୟାଳୟକୁ ଯାଇ ଲେଖାଗୁଡ଼ିକୁ ସଂଗ୍ରହ କରିବା ପାଇଁ ଚେଷ୍ଟା କରିଥିଲୁ ଏବଂ ସେଥିରେ ବିଫଳ ହୋଇଥିଲୁ । ଶେଷରେ ଶିକ୍ଷାସନ୍ଧାନର ବନ୍ଧୁମାନେ – ଶ୍ରୀ ପ୍ରଫୁଲ୍ଲ ବେହେରା, ଶ୍ରୀ ପୀତାମ୍ବର ଶଙ୍ଖୁଆ ଏବଂ ଶ୍ରୀ ଲୋକନାଥ ପଣ୍ଡା – ଭୁବନେଶ୍ୱର ଏବଂ କଟକର ରାସ୍ତାକଡ଼ ବହିଦୋକାନ ଏବଂ ରାଜ୍ୟର ପାଠାଗାରକୁ ବାରମ୍ବାର ଯାଇ ଲେଖାଗୁଡ଼ିକୁ ବହୁ କଷ୍ଟ ସ୍ୱୀକାର କରି ସଂଗ୍ରହ କରିଥିଲେ । ଆଉ କେତେକ ଲେଖା ଶ୍ରୀମତୀ ମହାରଣାଙ୍କ ସମ୍ପର୍କୀୟ ପ୍ରଫେସର ଚନ୍ଦ୍ରଶେଖର ମହାପାତ୍ରଙ୍କ ଠାରୁ ଅଣା ଯାଇଥିଲା । ତଥାପି ମଧ୍ୟ ସବୁ ଲେଖାଗୁଡ଼ିକ ଯୋଗାଡ଼ ହୋଇପାରିନଥିବାରୁ ଶେଷରେ ଅଗ୍ରଗାମୀର କାଶୀପୁରସ୍ଥିତ ପାଠାଗାରର ସହାୟତା ନେଇଥିଲୁ ।

ପୁସ୍ତକଟିର ବାଲ୍ୟସ୍ମୃତି ଭାଗଟି ଶ୍ରୀମତୀ ମହାରଣା ଆମକୁ ହାତଲେଖା ଆକାରରେ ଯୋଗାଇଥିଲେ । ଶିକ୍ଷାସନ୍ଧାନ ଏବଂ ଶ୍ରୀମତୀ ମହାରଣାଙ୍କ ମଧ୍ୟରେ ଯୋଗାଯୋଗ ଶ୍ରୀଯୁକ୍ତ ପ୍ରଫୁଲ୍ଲ ବେହେରା ରଖିଥିଲେ । ଶିକ୍ଷାସନ୍ଧାନ ପରିବାରର ସଦସ୍ୟମାନଙ୍କ ସହଯୋଗ ବିନା ପୁସ୍ତକଟି ଛପା ହୋଇ ପାରିନଥାନ୍ତା । ସେମାନଙ୍କୁ ଶିକ୍ଷାସନ୍ଧାନ ତରଫରୁ ସମସ୍ତଙ୍କୁ କୃତଜ୍ଞତା ଜଣାଉଛୁ । ଏ ପୁସ୍ତକକୁ ନିର୍ଭୁଲ କରିବା ପାଇଁ ଶିକ୍ଷାସନ୍ଧାନର ସଭାପତି ଶ୍ରୀଯୁକ୍ତ ଯତୀନ୍ଦ୍ର କୁମାର ନାୟକ ଅନେକ କଷ୍ଟ କରିଛନ୍ତି ଏବଂ ଯଥାସମୟରେ ଏହାକୁ ପ୍ରକାଶ କରିବା ପାଇଁ ଆମକୁ ଉତ୍ସାହିତ କରିଛନ୍ତି । ଏହି ଅବସରରେ ଶିକ୍ଷାସନ୍ଧାନ ପରିବାର ତରଫରୁ ତାଙ୍କୁ କୃତଜ୍ଞତା ଜଣାଉଛୁ । ପରିଶେଷରେ ଶ୍ରୀମତୀ ମହାରଣାଙ୍କ ସ୍ୱାମୀ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ଶିକ୍ଷାବିତ୍ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ମହାରଣାଙ୍କ ଠାରୁ ସବୁ ସମୟରେ ପ୍ରେରଣା ଓ ସହଯୋଗ ପାଇଥିବାରୁ ଆମେ ତାଙ୍କୁ ଗଭୀର କୃତଜ୍ଞତା ଜଣାଉଛୁ ।

ଅନୀଲ ପ୍ରଧାନ

# ଚୁନୀ ଅପା

ଦୁନିଆରେ ପ୍ରତ୍ୟେକ ଲୋକର ମନରେ ଏମିତି କିଛି କଥା ଥାଏ ଯାହା କହିବାକୁ ତାକୁ ଭଲଲାଗେ । ଶେଷ କରିବାକୁ ଇଚ୍ଛା ହୁଏ ନାହିଁ । କହି କହି ଥକେ ନାହିଁ । ସବୁବେଳେ ମନେ ହୁଏ ଆହୁରି ଅନେକ ବାକୀ ରହିଗଲା; କିଛି ଭୂଲ କହିଗଲି ନାହିଁ ତ ? ଏଇ କଥାଟା ଏମିତି ଢ଼ଙ୍ଗରେ ନ କହି ସେମିତି ଭାବରେ କହିଥିଲେ ବୋଧେ ଆହୁରି ସ୍ପଷ୍ଟ ହୋଇଥାନ୍ତା । ଶୁଣିବା ଲୋକ ଖୁସି ହେଉଛି କି ନାହିଁ ସେଥିପ୍ରତି ଧ୍ୟାନ ରହେ ନାହିଁ । ଚୁନୀ ଅପାଙ୍କ ପାଇଁ ଗାନ୍ଧୀ କଥା ଯେମିତି, ମୋ ପାଇଁ ଚୁନୀ ଅପାଙ୍କ କଥା ସେମିତି । ପାଠକ ପାଠିକା ମୋ ବୁଦ୍ଧିଜ୍ଞାନର ଛୋଟ ଠେକିର ନିଗଡ଼ା ପାଣିକୁ ଟିକିଏ ଆଦରରେ ଗ୍ରହଣ କଲେ ଖୁସି ହେବି । ସେମାନେ ସନ୍ଦେହ ଅବିଶ୍ୱାସ କରି ପାରନ୍ତି, ମନା ନାହିଁ । ମାତ୍ର ମୁଁ ସତ କହୁଛି ବୋଲି ଭାବିଲେ ଯଥେଷ୍ଟ । ଚୁନୀ ଅପାଙ୍କ ଜୀବନୀ ଲେଖିବାର ଉଦ୍ୟମ ଯେଉଁମାନେ କରୁଛନ୍ତି ସେମାନେ ଅତି ସାବଧାନରେ ତ ଲେଖୁଥିବେ । ତଥାପି ତାଙ୍କୁ ଅନୁରୋଧ କରୁଛି ତାହା ଅନ୍ଧମାନେ ହାତୀର ରୂପ ବର୍ଣ୍ଣନା କଲା ଭଳି ନ ହେଉ । କାରଣ ଚୁନୀଅପାଙ୍କୁ ଚିହ୍ନିବା ମୁସ୍କିଲ । ସେ ଯେପରି ରହନ୍ତି, ଯାହା କହନ୍ତି, ଯାହା କରନ୍ତି ତାହା ଅନେକ ଚାଲୁଣୀରେ ଛଣା । ତାହା କେବଳ ତାଙ୍କ ବାପଘରର ଜମିଦାରୀ ଆଭିଜାତ୍ୟର ଛାଞ୍ଚରେ ନୁହେଁ । ତାଙ୍କ ସ୍ୱାମୀ ଶ୍ରୀଯୁକ୍ତ ଶରତଚନ୍ଦ୍ର ମହାରଣାଙ୍କ ତ୍ୟାଗ ତପସ୍ୟାର ଛାଞ୍ଚରେ ନୁହେଁ । ପିତା ଗୋପବଂଧୁ ଚୌଧୁରୀଙ୍କ ସେବା, ତ୍ୟାଗ, ତପସ୍ୟା, ତେଜସ୍ୱିତାର ପ୍ରଭାବର ଛାଞ୍ଚରେ ବା ମାଆ ରମାଦେବୀଙ୍କ ପରି ମାନବୀ ଗଙ୍ଗାଙ୍କ ଆଦର୍ଶର ଛାଞ୍ଚରେ ଚାଲୁଣୀରେ ଛଣା ନୁହେଁ । ଦାଦା ନବକୃଷ୍ଣ ଚୌଧୁରୀଙ୍କ ପରି ଅଭୁଲା ଜନକରଷିଙ୍କ ପରି ଚରିତ୍ରର ପ୍ରଭାବରେ ନୁହେଁ, ଖୁଡ଼ୀ ମାଳତୀ ଚୌଧୁରୀ ପରି ସରଳ କଳକଳନାଦିନୀ ଝରଣାର ନିଷ୍କପଟ କ୍ରାନ୍ତିକାରୀ ପ୍ଲାବନର ଆଦର୍ଶରେ ନୁହେଁ କି ଭାଇ ମନମୋହନ ଚୌଧୁରୀଙ୍କ ଜ୍ଞାନ ଗମ୍ଭୀର, ସ୍ୱଚ୍ଛଭାଷୀ, ମହା ତେଜସ୍ୱୀ, ଭୀଷ୍ମଙ୍କ ଅଟଳ

ପ୍ରତିଜ୍ଞ ସେବାକାରୀର ପ୍ରଭାବରେ ବା ଭାଉଜ ଶ୍ରୀଯୁକ୍ତା ସୁମିତ୍ରା ଚୌଧୁରୀଙ୍କ ନୀରବ ସାଧିକାଙ୍କ ପ୍ରଭାବରେ ନୁହେଁ । ସର୍ବୋପରି ସେ ମହାତ୍ମା ଗାନ୍ଧୀଙ୍କ ପରି ମହାମାନବଙ୍କ ବିଚାରରେ ଆକଣ୍ଠ ବୁଡ଼ି ରହିଥିବା ଜିବନ୍ତ ଶାଳଗ୍ରାମଟିଏ କେବଳ ନୁହନ୍ତି । ସବୁକୁ ଫେଣ୍ଟି ଦେଇ ନିଜର ଅନ୍ତର୍ନିହିତ ଚେତନା ଦ୍ୱାରା ଗଢ଼ା ହୋଇଥିବା ଚୁନୀ ଅପା । ସେ କେଉଁ ପରିସ୍ଥିତିରେ କେଉଁଠି କିପରି କଥା କହିଛନ୍ତି, କିପରି ବ୍ୟବହାର କରିଛନ୍ତି ତାହା ଅନୁଧ୍ୟାନ ଯୋଗ୍ୟ । ତେଣୁ ମୁଁ ଯାହା କିଛି ତାଙ୍କ ବିଷୟରେ ଲେଖିବି ତାହା ମୋର କ୍ଷୁଦ୍ର ବୁଦ୍ଧିର ପ୍ରକାଶ ମାତ୍ର । ଅଳ୍ପ କେତୋଟି ଘଟଣାର ଉଲ୍ଲେଖ କରିବି ।

୧୯୧୭ ସାଲରେ ତାଙ୍କର ଜନ୍ମ । ମାତ୍ର ବାରବର୍ଷ ବୟସରୁ ବୈପ୍ଳବିକ, ତ୍ୟାଗ, ତପସ୍ୟା, ସେବାମୟ ଜୀବନର ଗୋଟିଏ ନିଖୁଣ ଜୀବନ୍ତମୂର୍ତ୍ତି । ଗୋସବାପା ଗୋକୁଳାନନ୍ଦ ଚୌଧୁରୀ କଟକର ନାଁ ଡ଼ାକ ଓକୀଲ ଥିଲେ । କଟକର କାଠଯୋଡ଼ି କୂଳରେ ସନ୍‌ସାଇନ୍ ଫିଲଡ଼୍ ପାଖରେ ତାଙ୍କର ବିରାଟ କୋଠାଘର ଏବେ ବି ଅଛି । ଗୋସମା ନୈଷ୍ଠିକ ହିନ୍ଦୁ ଚଳଣିରେ ଜମିଦାରିଆ ଆଭିଜାତ୍ୟ ଭିତରେ ଜୀବନ କଟାଇଥିଲେ । ତାଙ୍କ ପାଖରେ ନାତିନାତୁଣୀମାନେ ରହୁଥିଲେ, କାରଣ ବାପମାଆମାନେ ଭାରତର ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବା ଫଳରେ ଜେଲ୍‌ରେ ବା କର୍ମକ୍ଷେତ୍ରରେ ଜୀବନ ବିତାଉଥିଲେ । ହେଲେ ମଧ ଚୁନୀଅପା ପିଲାବେଳୁ  ଗାନ୍ଧୀ ଆଦର୍ଶରେ ପ୍ରତିପାଳିତା । ଗୋପବଂଧୁ ଚୌଧୁରୀ ବରୀ ସେବାକ୍ଷେତ୍ରରେ ଥିବାବେଳେ ଚୁନୀ ଅପା ଓ ତାଙ୍କ ବଡ଼ ଭାଇ ମନମୋହନ ଚୌଧୁରୀ (ବୁଲୁଭାଇ) ତାଙ୍କ ପାଖରେ ରହୁଥିଲେ । ଚୁନୀଅପାଙ୍କ ନାଁ ଥିଲା ଅନ୍ନପୂର୍ଣ୍ଣା । ମାତ୍ର କାଳକ୍ରମେ ଚୁନୀଅପା ନାଆଁଟି ପ୍ରସିଦ୍ଧ ହୋଇଗଲା । ଅଳକାଶ୍ରମରେ ଥିବାବେଳୁ ଗୋପବାବୁ ଓ ରମାଦେବୀଙ୍କ ପରିବାରର ପରିସର କେବଳ ନିଜ ପୁଅ ଝିଅଙ୍କ ଭିତରେ ସୀମିତ ନ ରହି ଝଙ୍କା ବରଗଛ ପରି ବଡ଼ ହୋଇ ଯାଇଥିଲା । ସବୁ ବର୍ଗୀମାନେ ତାଙ୍କୁ ବାପା ମାଆ ବୋଲି ଡ଼ାକୁଥିଲେ । ଖୁଡ଼ୀ ମାଳତୀ ଚୌଧୁରୀଙ୍କର ନିଷ୍କପଟ ରବିଠାକୁରଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନ ଢ଼ାଞ୍ଚାର ଆଚାର ବ୍ୟବହାର ସାରା ପରିବାରକୁ ସ୍ପର୍ଶ କରିଥିଲା । ଗାନ୍ଧୀଜୀଙ୍କ ପ୍ରେରଣାରେ ଗୋପବାବୁ ନିଜ ଘରେ ଅସବର୍ଣ୍ଣ ବିବାହ ଚଳେଇଥିଲେ । ସାନ ଭାଇ ନବକୃଷ୍ଣ ଚୌଧୁରୀ ବ୍ରାହ୍ମପରିବାରର ଝିଅ ମାଳତୀ ଦେବୀଙ୍କୁ, ପୁଅ ମନମୋହନ ବ୍ରାହ୍ମଣ ପରିବାରର ଝିଅ ସୁମିତ୍ରା ଦେବୀଙ୍କୁ, ଝିଅ ଅନ୍ନପୂର୍ଣ୍ଣା (ଚୁନୀ) କମିଲା ପରିବାର ଚନ୍ଦ୍ରମୋହନ ମହାରଣାଙ୍କ ସାନ ପୁଅ ଶରତ ମହାରଣାଙ୍କୁ, ଝିଆରୀ ଉତ୍ତରା (ଡ଼ାକ ନାଁ ବୁବୁ) ଗୁଜରାତର ବିଶିଷ୍ଟ ଗାନ୍ଧୀବାଦୀ ତଥା ମହାତ୍ମାଗାନ୍ଧୀଙ୍କ

ସେକ୍ରେଟାରୀ ମହାଦେବ ଦେଶାଇଙ୍କ ପୁଅ ନାରାୟଣଙ୍କ ସହିତ ବିବାହ କରାଇଥିଲେ । ଚୁନୀ ଅପା ଓ ଶରତ ବାବୁ ଗୋଟିଏ ବିଶିଷ୍ଟ ଯୋଡ଼ି । ଗାନ୍ଧୀ ବିଚାର ପ୍ରତି ନିଷ୍ଠାରେ କେହି କାହାଠାରୁ କମ୍ ନୁହନ୍ତି । ବିବାହର ଚତୁର୍ଥୀ ରାତିରେ ଚୁନୀଅପା ଶରତବାବୁଙ୍କୁ କହିଥିଲେ ଯେ ''ତାଙ୍କ ପ୍ରତି ପ୍ରେମଭକ୍ତି ନିଷ୍ଠାର ଏକମାତ୍ର ପ୍ରତିଦ୍ୱନ୍ଦୀ ହେଉଛନ୍ତି ଗାନ୍ଧୀଜୀ'' । ଶରତବାବୁଙ୍କର ବି ଗାନ୍ଧୀଜୀଙ୍କ ପ୍ରତି ସେଇ ଭକ୍ତି ନିଷ୍ଠା, ବିଶ୍ୱାସ ଓ ପ୍ରେମ । ତେଣୁ ଗାନ୍ଧୀ ଥିଲେ ଦୁହିଁଙ୍କର ବୈବାହିକ ଜୀବନର ଯୋଗର କଡ଼ି । ଏ ବିଶ୍ୱାସ ଓ ନିଷ୍ଠାରୁ ସେମାନେ ଅଦ୍ୟାବଧି ଓହରି ଯାଇ ନାହାନ୍ତି । ଦୁଇଟି ପୁଅ ହେଲେ । ସେମାନେ ବୈଜ୍ଞାନିକ ହେଲେ ମଧ ତାଙ୍କ ଜୀବନର ପ୍ରତି ଛତ୍ରେ ଛତ୍ରେ ଗାନ୍ଧୀ ବିଚାର ଭରି ରହିଛି । ବଡ଼ପୁଅ ଜ୍ଞାନଦେବ କରଣ ଘର ଝିଅଟିଏ ବିଭା ହୋଇଛି । ସାନପୁଅ କର୍ମଦେବ ବ୍ରାହ୍ମଣ ଘର ଝିଅ ସ୍ୱପ୍ନାକୁ ବିଭା ହୋଇଛି । ସେମାନେ ଦୁହେଁ ତାଙ୍କର ବୈଜ୍ଞାନିକ ଜୀବନକୁ ସପତ୍ନୀକ ଗାନ୍ଧୀ ବିଚାର ଉପରେ ଚଳାଉଛନ୍ତି । ବଡ଼ପୁଅର ଗୋଟିଏ ପୁଅ ଅଂଶୁମାନ୍ । ସାନ ପୁଅ ନିଜର ସନ୍ତାନ ନ କରି ତାଙ୍କର ବୈଜ୍ଞାନିକ ଜୀବନ ସମାଜ ସେବାରେ ଉତ୍ସର୍ଗ କରିଛନ୍ତି ।

ଚୁନୀ ଅପା ଓ ଶରତ ବାବୁ ଦୁହେଁ ସଂଯମୀ, ପରିଶ୍ରମୀ, ନିର୍ଲୋଭୀ ଓ ପରୋପକାରୀ । ନିଜ କାମ ବା ବ୍ୟବହାର ଦ୍ୱାରା ପ୍ରଦେଶର ବା ଦେଶର ବଦ୍‌ନାମ ନ ହେବା ପାଇଁ ସବୁବେଳେ ସଜାଗ । ପରକୁ ଆପଣା କରିବାର କଳା ତାଙ୍କର ଅଭ୍ୟାସଗତ । ଅନ୍ୟ ରାଜନୈତିକ ନେତାମାନଙ୍କ ଭଳି ସେମାନେ ଝିଣ୍ଡିକାଖିଆ ବଣି ନୁହଁନ୍ତି । ତ୍ୟାଗ ତପସ୍ୟାର ମୂର୍ତ୍ତିମନ୍ତ ଯୋଡ଼ିଟିଏ । ହାତରେ ଫଟା ପାହୁଲା ନ ଥାଇ ଗାନ୍ଧୀକାମ ଚଳେଇବାର ଲକ୍ଷ ଲକ୍ଷ ଟଙ୍କାର ସଫଳ ଯୋଜନା ସେମାନେ କରିପାରନ୍ତି । ତାକୁ କାର୍ଯ୍ୟକାରୀ କରିବା ପାଇଁ ନିଜର ପାରିବାରିକ ଜୀବନର ସୁଖ ଶାନ୍ତି ସ୍ୱାସ୍ଥ୍ୟ ସବୁକୁ ଅକାତରେ ବଳି ଦେବା କଥା ମୁଁ ଆଖି ଆଗରେ ଦେଖିଛି । ଲେଖି ବସିଲେ ବିରାଟ ପୋଥି ହେବ । ସେ ପରିସ୍ଥିତି ଓ କାମ ଯିଏ ନିଜ ଆଖିରେ ନ ଦେଖିଛି ସିଏ କଦାପି ବିଶ୍ୱାସ କରିପାରିବ ନାହିଁ । ଆଖିରେ ଦେଖିଥିବା ଲୋକଙ୍କ ଭିତରୁ ଅନେକ ଆଜି ନାହାନ୍ତି । ଯିଏ ବି ଅଛନ୍ତି ସେମାନଙ୍କର କହିବାର ଉପଯୁକ୍ତ ଅବସର ନାହିଁ । ଗୋଟିଏ ଘଟଣା ଲେଖୁଛି । ରାମଚନ୍ଦ୍ରପୁର କସ୍ତୁରବା କେନ୍ଦ୍ରର ଛାତ୍ରୀ ନିବାସ ପୂର୍ବାପେକ୍ଷା ବଡ଼ ଆକାରର କରି ଉପରେ ଆଜ୍‌ବେଷ୍ଟସ୍ ଛପର ଦିଆଗଲା । ଶରତବାବୁ ସକାଳ ଛଅଟାରୁ ମୂଲିଆମାନଙ୍କ ସାଙ୍ଗରେ ନିର୍ଦ୍ଦେଶ ଦେବା ଓ ନିଜେ କାମ କରିବା ଆଦି କାମରେ ଏତେ ବୁଡ଼ି ରହନ୍ତି ଯେ ନିଜର ଖାଇବା

ପିଇବା କଥା ସଂଧ୍ୟା ଛଅଟା ପର୍ଯ୍ୟନ୍ତ ମନେ ରହେ ନାହିଁ । କାମ ସରିଲେ ମୂଲିଆମାନଙ୍କୁ ମଜୁରୀ ଦେଇ ଭାଉଚର୍ ଓ ହିସାବ ଲେଖି ରଖିବା ପରେ ଗାଧୋଇ ଖାଇ ବସନ୍ତି । ତାଙ୍କର ଦୁଇବର୍ଷ ଇଞ୍ଜିନିୟରିଂ ପଢ଼ା ଏଇ କାମରେ ଲାଗିଲା । ଦିପହରରେ କେହି ସରବତ୍ ଟିକିଏ ନେଇ ତାଙ୍କୁ ଯାଚିଲେ ସେ ମୂଲିଆମାନଙ୍କୁ ଦେଇ ଦେବାକୁ କହନ୍ତି । ଘର ତ ତିଆରି ହୋଇଗଲା । ମାତ୍ର ଅଖିଆ ଅପିଆ ଶ୍ରମ କରିବା ଫଳରେ ତାଙ୍କର ସ୍ନାୟବିକ ଦୁର୍ବଳତା ହେଲା । କେତେ ମାସ ଧରି ଚୁନୀ ଅପାଙ୍କ ଅକ୍ଳାନ୍ତ ସେବା ଓ ଆୟୁର୍ବେଦିକ ଚିକିତ୍ସା ପରେ ସେ ଆରୋଗ୍ୟ ଲାଭ କଲେ ।

କିଶୋରୀ ଅବସ୍ଥାରୁ ସେ ସ୍ୱାଧୀନତା ସଂଗ୍ରାମୀ । ସ୍ୱାଧୀନତା ସଂଗ୍ରାମରେ ତଥା ଗାନ୍ଧୀକାମରେ ନିଜ ଜୀବନକୁ ବଳି ଦେବା ତାଙ୍କର ପାରିବାରିକ ବେଉସା କହିଲେ ଭୂଲ୍ ହେବ ନାହିଁ । ଆଗରେ ଭାରତମାତାର ସ୍ୱାଧୀନ, ବଳିଷ୍ଠ, ନିର୍ମଳ ରାମରାଜ୍ୟର ନିଖୁଣ ଚିତ୍ର, ପଛଆଡ଼େ ଗାନ୍ଧୀ ମହାତ୍ମାଙ୍କର ସତ୍ୟ ଅହିଂସା ପ୍ରଣୋଦିତ ନିରସ୍ତ୍ର ସଂଗ୍ରାମ ତଥା ଦେଶକୁ ସ୍ୱାଧୀନତାର ଉପଯୁକ୍ତ କରି ଗଢ଼ିବା ପାଇଁ ୧୮ ପ୍ରକାର ରଚନାତ୍ମକ କାମର ଯୋଜନା । ନିଜ ହୃଦୟରେ ନିଷ୍ଠା, ବିଶ୍ୱାସ ଓ ପ୍ରତିଜ୍ଞା ଚୁନୀଅପାଙ୍କ ଭଳି ପ୍ରବହମାନା, ନିର୍ମଳ ଝରଣାଟିଏ । ସ୍କୁଲ କଲେଜର ଦୁଆର ମାଡ଼ି ନାହାନ୍ତି । ଘରୋଇ ଶିକ୍ଷକଙ୍କ ପାଖରେ ଯାହା କିଛି ଅଧ୍ୟୟନ କରିଛନ୍ତି । ନିଜ ଅଧ୍ୟବସାୟ ଦ୍ୱାରା ମାଆ ବାପା ଦାଦା ଖୁଡ଼ୀଙ୍କ ଠାରୁ ଓ ଅନ୍ୟ ଅନେକ ଜ୍ଞାନୀଗୁଣୀଙ୍କ ଠାରୁ ସଂଗ୍ରହ କରି ନିଜର ଜ୍ଞାନର ପରିସର ଏତେ ବଢ଼ାଇଛନ୍ତି ଯେ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ସମ୍ମାନ ପ୍ରାପ୍ତ ଯେକୌଣସି ଶିକ୍ଷିତଙ୍କ ଠାରୁ ଉର୍ଦ୍ଧ୍ୱରେ ପହଞ୍ଚି ଯାଇଛନ୍ତି । ଓଡ଼ିଆ, ବଙ୍ଗଳା, ହିନ୍ଦୀ ତାଙ୍କର ମାତୃଭାଷା କହିଲେ ଭୂଲ ହେବ ନାହିଁ । ଇଂରାଜୀ ଓ ସଂସ୍କୃତରେ ମଧ୍ୟ ସେ ପ୍ରବୀଣା । ତାଙ୍କ ସ୍ୱରଚିତ ତଥା ତାଙ୍କଦ୍ୱାରା ଅନୁବାଦିତ ବହି ଯେଉଁମାନେ ପଢ଼ିଛନ୍ତି ସେମାନେ ତାଙ୍କର ଜ୍ଞାନର ପରିସର ବୁଝି ପାରିବେ । ମାଆ ରମାଦେବୀ ତାଙ୍କୁ ମଣିଷ ଗଢ଼ିବା କାମରେ ଲଗାଇଥିଲେ । ସେ ସଫଳତାର ସହିତ ଅନେକ ମଣିଷଙ୍କର ହୃଦୟ ପରିବର୍ତ୍ତନ କରି ତାଙ୍କୁ ନୂଆରୂପ ଦେଇଛନ୍ତି । ଛୋଟ ପିଲାଙ୍କୁ ସେ ରାମାୟଣ, ମହାଭାରତ, ଫରାସୀ ବିପ୍ଳବ, ଋଷ ବିପ୍ଳବ ଆଦି ମନୋରଞ୍ଜକ ଭାବରେ କହୁଥିବା ବେଳେ ସେଇବାଟେ ଯାଉଥିବା ବଡ଼ ବଡ଼ ମଣିଷମାନେ ବି ସେ ଗପ ଶୁଣିବାକୁ ଅଟକି ଯାଆନ୍ତି । ମୁଁ ଅନେକ ଥର ଏ ଗପ ଶୁଣିଛି । ଏତ ଗପ କୁହା ନୁହେଁ, ଇଞ୍ଜେକ୍ସନ୍ ଦିଆ । ଯାହାକୁ ଯେପରି ବଳ ମିଳିବା ଦରକାର ମିଳେ ।

ଏତେ ଜ୍ଞାନ ଥାଇ ବି ଚଳଣି ଜଣେ ସାଧାରଣ ଓଡ଼ିଆ ଘରର ସ୍ତ୍ରୀ ଲୋକ ପରି । ସେଥିପାଇଁ ସେ ଗାଆଁ ମଫସଲ ତଥା ସହରରେ ସବୁଠାରେ ଆଦୃତା । ଖା, ଭୁଞ୍ଜ, ଗିଳ୍‌କୁ ସମୟ ପରିସ୍ଥିତି ଅନୁସାରେ ଏପରି ଭାବରେ ପ୍ରୟୋଗ କରନ୍ତି ଯେ ଲୋକେ ସେଥିରେ କ୍ଷୁବ୍ଧ ନ ହୋଇ ତାଙ୍କ କଥାକୁ ଆଦରରେ ଗ୍ରହଣ କରନ୍ତି । ମଧୁବାରିଷ୍ଟର ଓ ଗୋକୁଳାନନ୍ଦଙ୍କ ନାତୁଣୀ ତ । କଥାରେ ଏପରି ଅକାଟ୍ୟ ଯୁକ୍ତି ସରଳଭାଷାରେ ଲୋକଙ୍କ ଆଗରେ ଥୋଇ ଦେଇଥିବେ ଯେ ପିଲାଠାରୁ ବୁଢ଼ାଯାଏ ତାକୁ ସ୍ୱୀକାର ନ କରି ଟାଳିବାର ଅବସର ଥିବ ନାହିଁ । କହିବାରେ ଯେମିତି ଗାଇବାରେ ସେମିତି ଧୁରନ୍ଧର । ଆଚାର ବ୍ୟବହାରରେ ଆଭିଜାତ୍ୟର ଛଟା ଥିଲେ ମଧ ମନେ ହୁଏ ଅତି ସରଳ ଗାଉଁଲୀ ଲୋକର ଅଭିବ୍ୟକ୍ତି । ଥରେ ସ୍ୱର୍ଗତା ନଳିନୀ ରାଉତରାୟଙ୍କ ସାଙ୍ଗରେ ମୁଁ କଥାବାର୍ତ୍ତା କଲା ବେଳେ ସେ ମୋତେ ସାନଭଉଣୀ ହିସାବରେ କହିଥିଲେ ଯେ ଚୁନୀଅପା ରମାଦେବୀଙ୍କ ଠାରୁ ଉର୍ଦ୍ଧ୍ୱରେ । ତୋର ମତ କ'ଣ ? ମୁଁ କହିଥିଲି ଯେ ସେ ତ ମୋର ଆଦର୍ଶ ପିତୁଳା । ସେ ମୋତେ ତିରସ୍କାର କଲେ ବି ମୋର ସେଥିରେ ମଙ୍ଗଳ ହେବାର ମୁଁ ଦେଖିଛି । ମୋତେ ସେ ଚିରକାଳ ଘଣ୍ଟ ଘୋଡ଼େଇ ରଖି ଆସିଛନ୍ତି । ମୋ ନିନ୍ଦାକୁ ସେ ନିଜ ନିନ୍ଦା ପରି ଭାବି ମୋତେ ଚଳେଇ ଆସିଛନ୍ତି । ମୋର ଭାବପ୍ରବଣ ମନ, ସାଂସାରିକ ଜ୍ଞାନର ଅଭାବ, ରାଗରୋଷ ଅଭିମାନ ମୁଁ ତାଙ୍କ ପାଖରେ ଅଜାଡ଼ି ଦେଇ ଆସିଛି । ମୋର ଦୋଷଦୁର୍ବଳତାକୁ ସେ ବରାବର ଶରାଗତ କରି ମୋତେ ରକ୍ଷା କରି ଆସିଛନ୍ତି । ମା ରମାଦେବୀ ମୋର ପଥପ୍ରଦର୍ଶକ ହେଲେ ମଧ ଚୁନୀଅପା ମୋ ପାଇଁ ଅନ୍ଧରଲଉଡ଼ି ପରି । ସେ ମୋତେ ଅନାବଶ୍ୟକ ମନେ କରି ଫିଙ୍ଗି ଦେଇ ପାରନ୍ତି । ମାତ୍ର ମୁଁ ଦେହତଃ ନ ହେଲେ ବି ମନତଃ ତାଙ୍କ ପାଖରୁ ଦୂରେଇ ଯାଇ ପାରିବି ନାହିଁ । ରାମଚନ୍ଦ୍ରପୁର ବେସିକ୍ ଟିଚରସ୍ ଟ୍ରେନିଂ କେନ୍ଦ୍ରରେ ଥିବାବେଳେ ମୁଁ କଲେଜ ପଢୁଆ ଝିଅଟେ ବୋଲି ସମସ୍ତଙ୍କର ମୋ ପ୍ରତି ଯେଉଁ ବିଦ୍ୱେଷ ଭାବ ଥିଲା, ମୋ ଦୋଷ ଖୋଜି ବାହାର କରିବାକୁ ସମସ୍ତେ ବ୍ୟାକୁଳ ଥିବାବେଳେ ଚୁନୀଅପା ମୋତେ ଘଣ୍ଟ ଘୋଡ଼େଇ ରଖିଥିଲେ ଏବଂ ଏବେ ବି ରଖିଛନ୍ତି ।

ସେ ଆଜନ୍ମ ବିପ୍ଳବିଣୀ । ବାରବର୍ଷ ଯାଏ ଘରେ ବୁଢ଼ୀମା ପାଖରେ ଥିଲେ । ବୁଲୁଭାଇ ଓ ସେ କଳି ଲାଗିଲେ ଭାଇ ତାଙ୍କୁ ଚାପୁଡ଼ାଏ ବିଧାଏ ଦେଲେ ସେ ନଖରେ ଦାନ୍ତରେ ତାର ପ୍ରତିବାଦ କରନ୍ତି । ପିଲାବେଳର ଖେଳ ବାରବର୍ଷରେ ସରିଗଲା । ବାପା ମା ଦାଦା ଖୁଡ଼ୀ ଅସହଯୋଗ ଆନ୍ଦୋଳନରେ ଆକଣ୍ଠ ବୁଡ଼ି ରହିଥାଆନ୍ତି । କେତେବେଳେ

ଜେଲ୍‌ରେ ତ କେତେବେଳେ ସ୍ୱାଧିନତା ଆନ୍ଦୋଳନରେ ବିଭିନ୍ନ କାମରେ ବୁଡ଼ି ରହିଥାଆନ୍ତି । ପିଲାଙ୍କ କଥା ବୁଝିବାକୁ ଫୁରସତ୍ କାହିଁ ? ଦାଦା ଝିଅ ଭଉଣୀ ଉଭରା(ଡ଼ାକ ନାଁ ବୁବୁ)ଓ ତା ତଳ ଭାଇ ବିନାୟକ(କାଲୁ) ବି ବୁଢ଼ୀମା ପାଖରେ ଥାଆନ୍ତି । ବୁଲୁ ଭାଇ, ଚୁନୀ ଅପା, ଗାନ୍ଧୀଜୀଙ୍କ ବାନର ସେନା । ସେଇଦିନୁଁ ଅଦ୍ୟାବଧି ଦେଶକୁ ସ୍ୱାଧୀନ କରାଇ, ଜନସାଧାରଣଙ୍କ ମନୋବୃତ୍ତି ବଦଳେଇ, ଗାନ୍ଧୀଜୀଙ୍କ କଳ୍ପିତ ରାମରାଜ୍ୟର ପ୍ରତିଷ୍ଠା କରିବା ପାଇଁ, ଜନ ଜାଗରଣ, ଆନ୍ଦୋଳନ, ପୁରୁଣା ରୀତିନୀତି ଭିତରେ ଥିବା ଅବାଞ୍ଛିତ ବିଶ୍ୱାସର ଚଳଣିକୁ ବଦଳେଇବା ପାଇଁ, ବାତ୍ୟା ବନ୍ୟା ଦୁର୍ଭିକ୍ଷ ମହାମାରୀର କବଳରୁ ଲୋକଙ୍କୁ ଉଦ୍ଧାର କରିବା ପାଇଁ ସେ ଚିରଦିନ ନିଜକୁ ଗୋଟିଏ ସିପାହୀ ପରି ଗଢ଼ି ତୋଳିଛନ୍ତି । ନିଜ ଦେହମନ ସ୍ୱାସ୍ଥ୍ୟ, ପରିବାର ଆଡ଼କୁ ଦୃଷ୍ଟି ଦେଇ ନାହାନ୍ତି । 'ସର୍ବେ ଭବନ୍ତୁଃ ସୁଖିନଃ ସର୍ବେସନ୍ତୁ ନିରାମୟା, ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାଗ ଭବେତ୍ ।'' ଏଇ ଜୀବନ ଦର୍ଶନକୁ କାର୍ଯ୍ୟକାରୀ କରିବା ପାଇଁ ସେ ଆଜୀବନ ପ୍ରୟାସ କରିଛନ୍ତି । ସମସ୍ତେ ଏ ବାଣୀକୁ ପୋଥିରେ ପଢ଼ନ୍ତି । ପ୍ରାର୍ଥନା ବେଳେ ଗାଆନ୍ତି, ବୁଦ୍ଧି ଦ୍ୱାରା ବୁଝନ୍ତି । ମାତ୍ର ଚୁନୀ ଅପା ନିଜ ଜୀବନର ସୁଖ ସ୍ୱାଚ୍ଛନ୍ଦ୍ୟକୁ ପଛରେ ପକେଇ ଦେଇ ଏ ଶ୍ଳୋକକୁ କାର୍ଯ୍ୟରେ ପରିଣତ କରିବାର ଉଦ୍ୟମ ସବୁବେଳେ କରନ୍ତି । ବାଧା ଆସିଲେ ଲଢ଼ିବାକୁ ପ୍ରସ୍ତୁତ ପ୍ରାଣ ବିନିମୟରେ । ତାଙ୍କର କର୍ତ୍ତବ୍ୟ, ନିଷ୍ଠାପୂର୍ଣ୍ଣ କର୍ମବହୁଳ ବିପ୍ଳବିଣୀ ଜୀବନର ଅନେକ ଅକୁହା କଥା ଅତୀତ ଗର୍ଭରେ ହଜିଛି ଓ ହଜିଯିବ । ଯେତିକି ମିଳୁଛି ତାକୁ ସାଉଣ୍ଟି ରଖିଲେ ଭବିଷ୍ୟତରେ ଇତିହାସ ଆମକୁ ଅବଶ୍ୟ ଧନ୍ୟବାଦ ଦେବ । ତା ସାଙ୍ଗରେ ଗାଳିଦେବ ଯେ ବିଚାରକୁ ଜୀବନରେ ସାକାର କରିଥିବା ମହୀୟସୀ ମହିଳାଙ୍କ କଥା ଆମେ ବିଶଦଭାବରେ ରଖି ପାରିନାହୁଁ । ଗୋଟାଏ ଶତାବ୍ଦୀର ଜୀବନ୍ତ ଇତିହାସ ସେ । ଆମେ ତାଙ୍କୁ ଅତି ସହଜ ସୁଲଭ ମନେ କରୁଛୁଁ ସେ ଜୀବିତା ଅଛନ୍ତି ବୋଲି । କାଲି ସେ ଆଖି ବୁଜିଲେ ଅଣ୍ଟାଳି ହେବା ସେଇ ଜୀବନ୍ତ ଇତିହାସ ସ୍ରଷ୍ଟାର ଉପସ୍ଥିତିକୁ ।

ଚୁନୀ ଅପାଙ୍କ ବିଷୟରେ କେଇଧାଡ଼ି ଲେଖିବାକୁ ମୋତେ ନିର୍ଦ୍ଦେଶ ଦିଆଯାଇଛି । କେମିତି ଲେଖିବି, କ'ଣ ଲେଖିବି ମୁଁ ସ୍ଥିର କରିପାରୁ ନାହିଁ । ଭାବ ଭାବନା ଲହଡ଼ି ମାରୁଛି । ଆଖିଦେଖା ସତ ଘଟଣାଗୁଡ଼ିକୁ ନ ଲେଖି ଟାଳିଦେବାକୁ ମନ ହେଉ ନାହିଁ । ଲେଖିଲେ ବହିର ଆକାର ବଡ଼ ହୋଇଯିବ । ଲୋକେ ପଢ଼ିବାକୁ ଚିଡ଼ିବେ । ତେଣୁ ଅଳ୍ପ କେତୋଟି ଘଟଣା କଥା ଲେଖିବି ଭାବୁଛି । ଅଙ୍ଗେ ନିଭେଇବା କଥା, କଳ୍ପନା ନୁହେଁ ।

୧୯୪୭ ଜୁଲାଇ ୩୧ ତାରିଖରେ ମୁଁ ବେସିକ୍ ଟିଚ୍‌ରସ୍ ଟ୍ରେନିଂ ସ୍କୁଲରେ ଆପ୍ରେଣ୍ଟିସ୍ ଟିଚର ଭାବରେ ରାମଚନ୍ଦ୍ରପୁର ମୌଳିକ ଶିକ୍ଷା କେନ୍ଦ୍ରରେ ଯୋଗ ଦେଲି । ଅଗଷ୍ଟ ୧୫ ତାରିଖ-ପ୍ରଥମ ସ୍ୱାଧୀନତା ଦିବସ । ଆଶ୍ରମରେ ଚାରିଆଡ଼େ ଚୁନୀ ଅପାଙ୍କ ନିର୍ଦ୍ଦେଶରେ ଝୋଟିଚିତା ପଡ଼ିଲା । ମୁଁ ବି ସେଥିରେ ଯୋଗ ଦେଲି । ସକାଳୁ ପ୍ରଭାତ ଫେରି ହେଲା । ଚୁନୀ ଅପା, ମୁଁ ଓ ଆଶ୍ରମର ଅନ୍ୟ ଭଉଣୀମାନଙ୍କ ସାଙ୍ଗରେ ନଈ ସେପାରି ରାମପୁର ଗାଆଁକୁ ଗଲୁ ରାମଧୂନ ଓ ଜାତୀୟ ସଂଗୀତ ଗାଇ ଗାଇ କରି । ଲୋକଙ୍କର ଓ ଚୁନୀଅପାଙ୍କର କି ପ୍ରାଣଭରା ଜୟଧ୍ୱନି । ''ଭାରତ ମାତାକୀ ଜୟ'', ''ମହାତ୍ମା ଗାନ୍ଧୀ କି ଜୟ'', ସ୍ୱାଧୀନ ଭାରତ କି ଜୟ'', ଜାତୀୟ ପତାକା କୀ ଜୟ ।'' ମୋ ଦେହରେ ଶିହରଣ, ମନରେ ଉଲ୍ଲାସର ତରଙ୍ଗ । ଗାନ୍ଧୀ ବିଚାରର ଦୀକ୍ଷାଗ୍ରହଣ ଆପେ ଆପେ ହୋଇଗଲା । ବରୀ, ରାମଚନ୍ଦ୍ରପୁର ଆଖପାଖ ଅଞ୍ଚଳ ଓ ଗାଆଁମାନଙ୍କରେ ରମାଦେବୀ ଗୋପବାବୁ ଗାନ୍ଧୀକାମ ଓ ବିଚାରର ବଳିଷ୍ଠ ନିଅଁ ପକାଇ ଦେଇଥିବାର ଦେଖିଲି । ଚୁନୀଅପାଙ୍କ ଜୀବନ ସେଇ ବିଚାରପୁଷ୍ଟ ସତ୍ୟର ଜ୍ୱଳନ୍ତ ଉଦାହରଣ । ଏ ଅଞ୍ଚଳ ଥିଲା ତାଙ୍କର ଚରାଭୂଇଁ ।

ବ୍ରାହ୍ମଣୀ ନଈକୂଳରେ ରାମଚନ୍ଦ୍ରପୁର ଠାରୁ ପାଞ୍ଚ ମାଇଲ୍ ଦୂରରେ କାଇପଡ଼ା ଗାଁ । ଗହ୍ମା ପୁନେଇଁ ଦିନ ସକାଳୁ ଚୁନୀଅପାଙ୍କ ସାଙ୍ଗରେ ଆମେ ଅନେକ ଲୋକ ଗଲୁ ସେଠାରେ ସହୀଦ୍‌ମାନଙ୍କ ଉଦ୍ଦେଶ୍ୟରେ ତିଳତର୍ପଣ କରିବାକୁ । ସେଇଠି ସାଉଣ୍ଟି ସାନନ୍ଦ ମାୟାଧର ଆଦି ଦେଶଭକ୍ତମାନଙ୍କୁ ବ୍ରିଟୀଶ ସରକାର ଗୁଳି କରି ମାରି ଦେଇଥିଲେ । ସେ ସମୟରେ ଚୁନୀଅପା ସେଠି ଉପସ୍ଥିତ ଥିଲେ । ନିଜ ପିନ୍ଧା ଲୁଗାର କାନିରେ ତାଙ୍କ ଦେହର ରକ୍ତ ପୋଛି ପକେଇଥିଲେ । ଏକା ଘୋଷାରି ମାଟି ଉପରେ ଶୁଆଇ ଦେଇଥିଲେ । ସେ କଥା ସେଠି ଶୁଣିଲା କ୍ଷଣି ମୋ ଆଖିରୁ ଲୁହ ବହିଗଲା । ଦୁଃଖ ହେଲା ଯେ ମୁଁ ପଢ଼ା ବନ୍ଦ କରି ଆଗରୁ କାହିଁକି, ଏ କାମରେ ଯୋଗ ଦେଲି ନାହିଁ । ସହୀଦ୍ ହେଲି ନାହିଁ କି ସହୀଦ୍‌ଙ୍କ ସେବା କରିପାରିଲି ନାହିଁ । ବ୍ୟର୍ଥତାର ବ୍ୟାକୁଳତାରେ ମନ ପୂରିଗଲା । ଅପୂର୍ଣ୍ଣତାର ଗ୍ଲାନିରେ ମନ ପୋଡ଼ିଜଳିଗଲା । ପରେ ରାମଚନ୍ଦ୍ରପୁରରେ ଥିବା ବେଳେ ମାୟାଧରଙ୍କ ମାଆଙ୍କ ସାଙ୍ଗରେ ଦେଖା ହୋଇଥିଲା । ପୁତ୍ର ବିୟୋଗରେ ସେ ଅଧାପାଗଳୀ ହୋଇଯାଇଥିଲେ ।

ବେସିକ୍ ଟିଚ୍‌ରସ୍ ଟ୍ରେନିଂ ସ୍କୁଲରେ ଶିକ୍ଷକତା କରୁଥିବା ବେଳେ ମୋତେ ଥରେ ଜ୍ୱର ହେଲା । ଚୁନୀ ଅପା ସ୍ୱତଃପ୍ରବୃତ୍ତ ହୋଇ ମୋ ସେବା କରିବାକୁ ଆସିଲେ । ଆଉଁସି

ଘସି ଦେଲେ । କ'ଣ ଖାଇବାକୁ ଇଚ୍ଛା ହେଉଛି ବୋଲି ମୋତେ ପଚାରିବାରୁ ମୁଁ କହିଲି, ''ତୋରାଣି ପିଇବାକୁ ଇଚ୍ଛା ହେଉଛି । କିନ୍ତୁ ଥଣ୍ଡା ଧରିବ ବୋଲି ଡ଼ାକ୍ତର ତ ମନା କରିବେ ।'' ସେ କହିଲେ, '' ମୋତେ ବି ଏଇଠି ଥରେ ଜ୍ୱର ହୋଇଥିଲା । କଣ୍ଠେଇ ବୋଉ ବୋଲି ଜଣେ ଗାଉଁଲୀ ସ୍ତ୍ରୀଲୋକ ତାଙ୍କୁ ତୋରାଣୀ ପିଇବାକୁ କହିଥିଲେ ।'' ଏଥିରେ ତାଙ୍କର କିଛି କ୍ଷତି ହୋଇ ନ ଥିଲା । ସେ ତୋରାଣି ପିଇ ଡ଼ାକ୍ତରୀ ଔଷଧ ଖାଇ ଆରୋଗ୍ୟ ହୋଇଥିଲେ । କସ୍ତୁରବା ଗ୍ରାମସେବିକା ତାଲୀମ କେନ୍ଦ୍ରର ବୟସ୍କା କର୍ମୀଙ୍କୁ ଚୁନୀ ଅପା ପଠାଇଲେ ବେସିକ୍ ସ୍କୁଲର ଶିକ୍ଷକମାନଙ୍କ ଘରୁ ତୋରାଣି ସଂଗ୍ରହ କରି ଆଣିବାକୁ । କାରଣ ଟ୍ରେନିଂ କ୍ୟାମ୍ପରେ ରୋଷେଇ ଘରେ ପଖାଳ କି ତୋରାଣି ନ ଥାଏ । ସେମାନଙ୍କୁ ନିର୍ଦ୍ଦେଶ ଦେଲେ, ''କହିବ ଛଡ଼ା ମଣ କରିବାକୁ ପରିଷ୍କାର ତୋରାଣି ଦରକାର । ଦେବେ ।'' ଏଇ ଛଡ଼ା ମଣ କରିବା କଥାଟା ବଡ଼ ମଜାର କଥା । ମୁଁ ଅବିବାହିତା, ତେଣୁ ଛଡ଼ା । ଅଳ୍ପଦିନ ପରେ ମୁଁ ବେସିକ୍ ଶିକ୍ଷା କାମରୁ ଅବ୍ୟାହତି ନେଇ କସ୍ତୁରବା ଟ୍ରଷ୍ଟକୁ ଚାଲି ଆସିଲି ଚିରକାଳ ପାଇଁ । ସେଇଦିନୁଁ ସେ ଏଇ ମଣିଷ ଛଡ଼ାଟିକୁ ଆଦର ଯତ୍ନରେ ସମ୍ଭାଳି ନେଇ ଆସିଛନ୍ତି ଆଜି ପର୍ଯ୍ୟନ୍ତ ।

୧୯୫୦ ରେ ଅନୁଗୁଳର ବାଜୀରାଉତ ଛାତ୍ରାବାସ ପରିସରରେ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହେଲା । ଗୋପବନ୍ଧୁ ଚୌଧୁରୀ ସେତେବେଳେ ଅଖିଳ ଭାରତ ସର୍ବସେବା ସଂଘର ଚେୟାରମ୍ୟାନ ଥିଲେ । ଡ଼େଲାଙ୍ଗରେ ୧୯୩୮ ରେ ଗାନ୍ଧୀସେବାସଂଘ ଅଧିବେଶନ ହୋଇଥିଲା । ଗାନ୍ଧୀଜୀ ନିଜେ ଉପସ୍ଥିତ ଥିଲେ । ବିରାଟ ସଭା ହୋଇଥିଲା । ବିରାଟ ସୁନ୍ଦର ପ୍ରଦର୍ଶନୀଟିଏ ମଧ୍ୟ ହୋଇଥିଲା । ଅତି ସଫଳତାର ସହିତ ଏ ସମ୍ମିଳନୀ ହୋଇଥିଲା । ଗାନ୍ଧୀଜୀ ନିଜେ ତାର ଭୂରିଭୂରି ପ୍ରଶଂସା କରିଥିଲେ । ଏଇ ସାଫଲ୍ୟର ମୂଳଦୁଆ ଉପରେ ଭରସା ରଖି ଅନୁଗୁଳ ସର୍ବୋଦୟ ସମ୍ମିଳନୀ ହୋଇଥିଲା । ସେଇ ଗୋପବାବୁ, ରମାଦେବୀ, କୃପାସିନ୍ଧୁ ହୋତା, ବିନୋଦ କାନୁନଗୋ ହେରିକା ସମସ୍ତେ ଉପସ୍ଥିତ ଥିଲେ । ସମ୍ମିଳନୀ ଅତି ସୁନ୍ଦର ଭାବରେ ସଫଳ ହୋଇଥିଲା । ମାତ୍ର ସେତେବେଳକୁ ଗାନ୍ଧୀଜୀ ନ ଥିଲେ ଓ ବିନୋବାଜୀ ସମ୍ମିଳନୀରେ ଅନ୍ୟ କାରଣ ବଶତଃ ଉପସ୍ଥିତ ହୋଇ ପାରି ନ ଥିଲେ । ବର ନ ଥାଇ ବି ଏତେ ସୁନ୍ଦର ବାହାଘର ହେବାର ଆମେ ଦେଖିଲୁ । ଗୋପବନ୍ଧୁ ଚୌଧୁରୀଙ୍କ ନିର୍ଦ୍ଦେଶରେ ସବୁ କାମର ଆୟୋଜନ ହେଉଥାଏ । ନବବାବୁ ମାଳତୀ ଦେବୀଙ୍କ ଠାରୁ ଆରମ୍ଭ କରି ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ଈଶ୍ୱରଲାଲ ବ୍ୟାସ, ବିନୋଦ କାନୁନଗୋ (ଜ୍ଞାନମଣ୍ଡଳ ପ୍ରଣେତା) ଆଦି ସମସ୍ତେ କାମରେ ଲାଗିପଡ଼ି ଥାଆନ୍ତି । ଓଡ଼ିଶାର ସବୁ ରଚନାତ୍ମକ କର୍ମୀ

ଏ ସମ୍ମିଳନୀର ସଫଳତା ପାଇଁ ଅଣ୍ଟାଭିଡ଼ି କାମରେ ଲାଗି ପଡ଼ିଥାଆନ୍ତି । ବିନୋବାଜୀଙ୍କ ବ୍ୟତୀତ ବାହାର ପ୍ରଦେଶର ସବୁ ରଚନାତ୍ମକ କାମର କର୍ମୀ ନେତା ସାନଠୁ ବଡ଼ ପର୍ଯ୍ୟନ୍ତ ସମସ୍ତେ ଯୋଗ ଦେଇଥାନ୍ତି । କସ୍ତୁରବା କର୍ମୀମାନଙ୍କ ସାଙ୍ଗରେ ମୁଁ ବି ଯାଇଥିଲି । ସମ୍ମିଳନୀ ଅତି ଶୃଙ୍ଖଳିତ ଭାବରେ ହେଲା । ସମସ୍ତେ ଧନ୍ୟ ଧନ୍ୟ କଲେ । ରମାଦେବୀ ଅନ୍ୟ କାମ ସହିତ ଭୋଜନ ବ୍ୟବସ୍ଥାର ମୁଖ୍ୟ ଦାୟିତ୍ୱ ନେଇଥିଲେ । ଚୁନୀ ଅପା ରନ୍ଧାଶାଳାଗାରେ ରହି ଅତି ଶୃଙ୍ଖଳିତ ଭାବରେ ରନ୍ଧନ ଓ ପରିବେଷଣ କାମ ଚଳାଉଥାନ୍ତି । ମନମୋହନ ଚୌଧୁରୀଙ୍କୁ ସେତିକି ବେଳେ ବସନ୍ତ ରୋଗ ହେବାରୁ ସେ ସପତ୍ନୀକ ସେଇଠି ଟିକିଏ ଦୂରରେ ରୋଗୀ ଗୃହରେ ରହୁଥାନ୍ତି । ସମ୍ମିଳନୀ ସରିବା ପରେ ସେଇଠି ଦିନେ ଚୁନୀ ଅପା ଅତ୍ୟନ୍ତ କ୍ଲାନ୍ତ ହୋଇ ଶୋଇ ପଡ଼ିଲେ । ତାଙ୍କୁ ଉଠିବାକୁ ଡ଼ାକିବାରୁ ସେ ବିଳବିଳେଇ କହିଲେ, ''ଏତେଟା କରଚୁଲୀ, ଏତେଟା ଖଡ଼ିକା, ଏତେଟା ଚାମୁଚ'' ଇତ୍ୟାଦି ରନ୍ଧନ ବ୍ୟବସ୍ଥାର ସମସ୍ତ କଥା । ମୁଁ ଅତି ଆଶ୍ଚର୍ଯ୍ୟ ହୋଇଗଲି । କାମରେ ଆକଣ୍ଠ ବୁଡ଼ିଯିବାର ନମୁନା । ସ୍ୱାଧୀନତା ସଂଗ୍ରାମରେ, ସଂସ୍ଥା ପରିଚାଳନାରେ, ସେବା କାମରେ, ଲୋକଙ୍କୁ ଗାନ୍ଧୀ କାମରେ ଅନୁପ୍ରାଣିତ କରିବାର ଗୋଟାଏ ଜୀବନ୍ତ ଜାଗ୍ରତ ନମୁନା । ଗାନ୍ଧୀଜୀ ଦେହ ଛାଡ଼ି ସାରିଥିଲେ । ମାତ୍ର ଦେଶ ଗଠନର ଅହିଂସ ସଂଗ୍ରାମକୁ ଦେହମନ ପ୍ରାଣ ଦେଇ ଚଳାଇବାର ଜଣେ ନିରଳସ ଅନବଦ୍ୟ ସିପାହୀର ଜ୍ୱଳନ୍ତ ନମୁନା ଚୁନୀଅପା । ଉତ୍ସର୍ଗୀକୃତ ଦେହ ମନ ପ୍ରାଣ । କେହି ଯଦି ବିଶ୍ୱାସ ନ କରୁଛି ଆଜି ଯାଇ ତାଙ୍କୁ ଦେଖି ଆସୁ । ମୋ କଥା ସତ କି ମିଛ ବୁଝିପାରିବ ।

ନିଜେ ତ ଆଶ୍ରମ ପଦ୍ଧତିରେ ବିଭା ହୋଇଥିଲେ । ଭଉଣୀ ପୁଅ ପୁତୁରା ଝିଆରୀ ସମସ୍ତଙ୍କ ବିଭାଘର ବି ପ୍ରାୟ ଏଇ ଧାରାରେ ହୋଇଥିଲା । ତେବେ ଗୋଟାଏ ଫରକ ଥିଲା ଯେ ତାଙ୍କ ବିଭାଘର ଭୋଜୀ ଭାତ ଡ଼ାଲମାରେ ଓ ପୁଅ ପୁତୁରାଙ୍କ ବିଭାଘର ଭୋଜୀ ବିବିଧ ନିରାମିଷ ଖାଦ୍ୟପେୟରେ ହୋଇଥିଲା । ସାନ ପୁଅ କର୍ମଦେବ(ବନ୍ଟୁ)କୁ ସେ ପିଲାଦିନୁଁ ଶିଖାଇଥିଲେ ମୋତେ ମା ଡ଼ାକିବାକୁ । ତା ବିଭାଘର ଭୋଜୀଦିନ ମୁଁ କସ୍ତୁରବା କର୍ମୀମାନଙ୍କ ସହିତ ସମ୍ବଲପୁର ଯିବା ବାଟରେ କଟକରେ ଭୋଜୀରେ ଯୋଗ ଦେଇଥିଲି । ଭୋଜୀ ଖାଇସାରି ସମ୍ବଲପୁର ଯିବା ପାଇଁ ବାହାରିବା ବେଳେ ମୁଁ ଚୁନୀଅପାଙ୍କୁ ଭେଟିବାକୁ ଗଲି । ସେ ମୋ ପାଟିରେ ଗୋଟାଏ ରସଗୋଲା ପୂରେଇ ଦେଲେ । ସେଇଦିନଠୁଁ ମୋର ମନେ ହେଲା ଯେ ମୋ ଜୀବନରେ ମୁଁ ଯେମିତି ଗୋଟିଏ ମାତ୍ର ରସଗୋଲା ଖାଇଛି । କି ସ୍ନେହରେ, କି ଭାବର ମଧୁରତା ପୂରେଇ ସେ ମୋତେ ରସଗୋଲାଟି ଖୁଆଇଥିଲେ କେଜାଣି ପୂର୍ବରୁ ଖାଇଥିବା ଓ ପରେ ଖାଇବାର ରସଗୋଲାର

ମାଧୁରୀ ଭୁଲିଯାଇ ସେଇ ଗୋଟିଏ ରସଗୋଲାର ମିଠା ମୋ ଦେହମନରେ ଏବେ ବି ଲାଖି ରହିଛି ।

ସମୟୋଚିତ କାମ ଓ ବ୍ୟବହାରରେ ସେ ନିପୁଣା । ଆଗପଛ ବିଚାରି ପାଦ ପକାନ୍ତି । ଥରେ ମୋ ମା ସାଙ୍ଗରେ ଦେଖା କରିବାକୁ ଭୁବନେଶ୍ୱରକୁ ଯାଇଥିଲେ । ତାଙ୍କ ବିଷୟରେ ମୋ ଠାରୁ ମା ଶୁଣିଥିଲା । ସେ ଦିନ ଦେଖିଲା । ଭାରି ଖୁସି ହେଲା । ଦୁହେଁ ଅନେକ ବିଷୟରେ କଥାବାର୍ତ୍ତା କଲେ । ବିଦା ହୋଇ ଆସିବା ବେଳେ ମୋତେ କହିଲା, ''ତୋର ସଂସାର ଜ୍ଞାନ ନାହିଁ । ତୁ ସବୁବେଳେ ଚୁନୀ ସାଙ୍ଗେ ସାଙ୍ଗେ ତା ପାଖରେ ରହିବୁ । ସେ ତୋତେ ଚଳେଇନେବ ।'' ପରିସ୍ଥିତି ବଶତଃ ମୁଁ ଆଜି ତାଙ୍କ ପାଖରୁ ଦେହତଃ ଦୂରରେ ଅଛି । ମାତ୍ର ମନତଃ ତାଙ୍କ ପାଖରେ ଅଛି । ତାଙ୍କ କହିବା କଥା ମୋ ପାଇଁ ବେଦର ଗାର । କସ୍ତୁରବା ଟ୍ରଷ୍ଟରୁ ସବୈତନିକ କାମ ଛାଡ଼ିବା ପରଠାରୁ ସେ ପ୍ରତିବର୍ଷ ମନେ ରଖି ମୋ ପାଇଁ ଖଦୀଲୁଗା ପଠାନ୍ତି । କେବେ ବ୍ୟତିକ୍ରମ ହୋଇନାହିଁ ।

ତାଙ୍କର ବ୍ୟବହାର କୁଶଳତା ବିଷୟରେ ଥରେ ଗୋପବାବୁଙ୍କୁ ମୁଁ ପଚାରିଲି, ''ବାପା ! ଚୁନୀ ଅପାଙ୍କର କେମିତି ଏତେ ବୁଦ୍ଧି ହେଲା ? ମୋର ତ ଜମା ବୁଦ୍ଧି ହେଉନାହିଁ ।'' ସେ ମୋତେ କହିଲେ, '' ଚୁନୀ ବିଭା ହୋଇଛି ବୋଲି ତାର ଏତେ ବୁଦ୍ଧି ହୋଇଛି । ତୁ ତ ଅଭିଆଡ଼ୀ ଝିଅଟାଏ ।'' ମୁଁ ସେତେବେଳେ ତାଙ୍କ କଥାକୁ ବିଶ୍ୱାସ କରି ମାନି ନେଲି । ସେ ଜାଣିଥିଲେ ଯେ ମୁଁ ବିଭା ନ ହେବାର ପ୍ରତିଜ୍ଞା କରିଛି । ତେଣୁ ମୁଁ ଧରିନେଲି ଯେ ମୋର ଏ ଜୀବନରେ ସାଂସାରିକ ବୁଦ୍ଧି ଆଦୌ ହେବ ନାହିଁ । ଏବେ ଭାବୁଛି ଯେ ସେ ମୋତେ ବହଲେଇ ଦେଇଥିଲେ । ଚୁନୀ ଅପା ଯେ ଅନେକ ଗଭୀର ସମୁଦ୍ରରେ, ମହା ମହା ଗଙ୍ଗାରେ ବୁଡ଼ ମାରି ଆସିଛନ୍ତି, ହିମାଳୟ ପରି ଅନେକ ସମସ୍ୟାକୁ ଲଂଘନ କରି ଆସିଛନ୍ତି, ତାଙ୍କ ଅନୁଭୂତିର ଗଭୀରତାର କଳ୍ପନା ବି ମୋର ନାହିଁ । ତେଣୁ ତାଙ୍କର ବୌଦ୍ଧିକ, ବ୍ୟବହାରିକ ଜ୍ଞାନ ଏତେ ଗଭୀର ଯେ ମୋର ବାସ୍ତବ ଜ୍ଞାନର ପରିସର ତା ପାଖରେ ହାଣ୍ଡି ଉପରେ ଛୋଟ ପିମ୍ପୁଡ଼ିଟିଏ ପରି । ମୁଁ ତାଙ୍କୁ କେବେ ପରାମର୍ଶ ଦେବାକୁ ବା ବାଟ ବତେଇବାକୁ ରାଜି ହୁଏ ନାହିଁ । ତାଙ୍କ ନିର୍ଦ୍ଦେଶ ହିଁ ମୋ ପାଇଁ ଯଥେଷ୍ଟ । ତାଙ୍କୁ ସଭାରେ ବସେଇ ତାଙ୍କଠୁଁ ତାଙ୍କ ଅଭିଜ୍ଞତା ବିଷୟରେ ଶୁଣିବା ଅପେକ୍ଷା ତାଙ୍କ ସାଙ୍ଗରେ ପାଦେ ଦିପାଦ ଚାଲିଲେ ଅନେକ କିଛି ମିଳିବ । ନିଜ ସଂଗ୍ରହର ପାତ୍ରର ମୁହଁ ଖୋଲା ରଖିଥିବା ଭଲ । ଦେହମନ ବାକ୍ୟରେ ସେ ଯେ ଗାନ୍ଧୀଭକ୍ତ ଏହା ତାଙ୍କର ଜରାଜୀର୍ଣ୍ଣ ଶରୀରର କାରବାରରୁ ବେଶ୍ ବୁଝିହୁଏ । ସବୁ ନୂଆ

ପୁରୁଣା କାମ ଓ ବିଚାରକୁ ଗାନ୍ଧୀ ବିଚାରର କଷଟୀରେ କଷିବା ପରେ ସେ କାମରେ ସେ ହାତ ଦିଅନ୍ତି । ଜୀବନର କିଛି ବର୍ଷ ତାଙ୍କ ପାଖେ ରହିଛି । ବୁଦ୍ଧି କମ୍ ଯୋଗୁଁ କମ୍ ଗ୍ରହଣ କରି ପାରିଛି । ପିଲାଙ୍କୁ ମାଡ଼ଗାଳିରେ ଶାସନ ନ କରି କଥାରେ କେମିତି ବାଗେଇ ହୁଏ, ନିଜ ବିଚାର ତାଙ୍କ ଭିତରେ ଭରି ଦେଇ ହୁଏ ଶିଖିଛି । ବିନୋବାଜୀଙ୍କ ଭୂଦାନ ଗ୍ରାମଦାନ କାମ ଜୋର୍‌ସୋର୍‌ରେ ଚାଲିଥାଏ । ମୋ ପରି ଅଳ୍ପ ବୁଦ୍ଧିଆମାନେ ଟିକିଏ ଟିକିଏ କୁଦୁଥାଉଁ । ବୁଲୁଭାଇ ତ ବୁଲାକ୍ଷଣ୍ଡ ପରି ଏ କାମରେ ଲାଗିଥାଆନ୍ତି । ତାଙ୍କ ଜାଆଁଳା ପିଲା ଦିଓଟି ସାନ ସାନ । ତାଙ୍କ ପତ୍ନୀ ସୁମିତ୍ରା ଦେବୀ ଦିତିନିଦିନ ପାଇଁ ଭୂଦାନ କାମରେ ଗାଁଗଣ୍ଡାକୁ ଯିବାକୁ ଚାହିଁଲେ । ପୁଅଟି ବୋଉକୁ ଛାଡ଼ିବାକୁ ରାଜି ହେଲା । ମାତ୍ର ଝିଅ ନଛୋଡ଼ବନ୍ଧା । ବୋଉକୁ ପାଖରୁ ମୁହୂର୍ତ୍ତେ ବି ଛାଡ଼ିବାକୁ ନାରାଜ । ରାମଚନ୍ଦ୍ରପୁର କସ୍ତୁରବା କେନ୍ଦ୍ରର ସମସ୍ତେ ବୁଝେଇ ବୁଝେଇ ଥକି ଗଲେ । ଶେଷକୁ ଚୁନୀଅପା ଗୋଟାଏ ଉପାୟ ପାଞ୍ଚି କହିଲେ, ''ହଉ ହେଲା । ମାଧବୀ ବୋଉ ଭୂଦାନ କାମରେ ଗାଆଁକୁ ଯିବ ନାହିଁ । ଖବର କାଗଜରେ ବାହାରିବ ଅମୁକର ବୋଉ ସମୁକର ବୋଉ ସମସ୍ତେ ଭୂଦାନ କାମ କରିବାକୁ ଯାଇଥିଲେ । ମାଧବୀ ବୋଉ ଯାଇ ନ ଥିଲା । କାରଣ ତା ଝିଅ ମାଧବୀ ତାକୁ ଛାଡ଼ିଲା ନାହିଁ ।'' ଏଇ କଥାରେ ସେ କାନ୍ଦି କାନ୍ଦି ବୋଉ ଯାଉ ବୋଲି କହିଲା ।

କସ୍ତୁରବା କେନ୍ଦ୍ର ରାମଚନ୍ଦ୍ରପୁରରେ, ଅଖିଳ ଭାରତ କସ୍ତୁରବା ମହିଳା ଶାନ୍ତିସେନା ବିଦ୍ୟାଳୟ ଇନ୍ଦୋରରେ ଚୁନୀଅପାଙ୍କ ପାଖରେ ରହିବାର ଓ ସାଙ୍ଗରେ କାମ କରିବାର ସୁଯୋଗ ପାଇଛି । ପାଇଛି ଅନେକ, କାମରେ ଲଗେଇ ପାରିନାହିଁ । କିନ୍ତୁ ଗାନ୍ଧୀଜୀଙ୍କ ସାନ୍ନିଧର ଅଭାବର ଦୁଃଖ କିଛି ପରିମାଣରେ ଉପଶମ ହୋଇଛି । ତାଙ୍କର ପ୍ରତ୍ୟୁତ୍ପନ୍ନମତିତାର ପ୍ରମାଣ ଅନେକ ଦେଖିଛି । ମୋ ଅନ୍ତର୍ଜଗତରେ ସେ କେତେ ବଡ଼ ସ୍ଥାନ ମାଡ଼ି ବସିଛନ୍ତି, ସେ-କଥା ସେ ଜାଣିପାରିବେ ନାହିଁ କି ମୁଁ କହିପାରିବି ନାହିଁ । ତାଙ୍କ ଜୀବନ ଗୋଟିଏ ଶତାବ୍ଦୀର କର୍ମବହୁଳ, ଘଟଣାବହୁଳ ପୃଷ୍ଠାଟିଏ । ଅନେକ ମହାପୁରୁଷଙ୍କର ସାନ୍ନିଧର ଇତିହାସରେ ଭରା । ଛୋଟ ବଡ଼ ଅନେକ ବିପ୍ଳବ, ଅନେକ ଆନ୍ଦୋଳନ, ପାରିବାରିକ ଓ ସାମାଜିକ ଜୀବନର ଅସଂଖ୍ୟ ସୁଖଦୁଃଖର ଘଟଣା, ପ୍ରାକୃତିକ ବିପର୍ଯ୍ୟୟର ଅନେକ ଦୁଃଖଦ ପରିସ୍ଥିତିର ସମ୍ମୁଖୀନ ହେବାର ସଂଗ୍ରାମର ଆଗୁଆ ସିପାହୀ ପରି ତାଙ୍କର ସଂଗ୍ରାମ ଇତିହାସକାର ଲିପିବଦ୍ଧ କରିଛନ୍ତି କି ନାହିଁ ମୁଁ କହିପାରିବି ନାହିଁ । ମାତ୍ର ମୋ ନିଜ ଆଖିରେ ଦେଖିଛି । ବିଶଦ ଭାବରେ ଲେଖିପାରୁ ନାହିଁ ।

''ସତ କହିବାକୁ କିଆଁ ଡ଼ରିବି, ସତ କହି ପଛେ ମଲେ ମରିବି ।'' ଖାଲି ବ୍ରିଟିଶ ସରକାର ଆଗରେ ବନ୍ଧୁକ ମୁହଁରେ ଠିଆ ହୋଇ ସେ ଯେ ଗାନ୍ଧୀବାଦୀ ଓ ଅହିଂସା ସଂଗ୍ରାମର ସିପାହୀ ବୋଲି କହିବାରେ ନୁହେଁ, ଜୀବନର ପ୍ରତି କ୍ଷେତ୍ରରେ, ଜାତି, ଧର୍ମ, ଭାଷାର ମୁହାଁମୁହିଁ ସଂଘର୍ଷବେଳେ, ଛାତ୍ର ଆନ୍ଦୋଳନରେ, ନିଶା ନିବାରଣ ଆନ୍ଦୋଳନରେ ଘରେ ଓ ବାହାରେ ସମସ୍ତଙ୍କ ଆଗରେ ପ୍ରକୃତ ସତ କହିବାର ସାହସ ଓ ଅଭ୍ୟାସ ତାଙ୍କର ଥିଲା ବୋଲି ଅସଂଖ୍ୟ ଘଟଣାରୁ ଜଣା ପଡ଼େ । ଆମେ ତ ପ୍ରତ୍ୟକ୍ଷଦର୍ଶୀ । ସହିଷ୍ଣୁତାର ମୂର୍ତ୍ତିମତୀ ଅବତାର ସେ । ଥରେ ଭୂଦାନ ଅଫିସ ଥୋରିଆ ସାହିରେ ଜଣେ ଅକ୍ଷମ ରୋଗୀର ସେବା କଲାବେଳେ ତାଙ୍କ ନିଜ ବାମ ହାତର ମଣିବନ୍ଧ ପାଖରୁ ହାଡ଼ ଭାଙ୍ଗିଗଲା । ରୋଗୀସେବା ବନ୍ଦ ନ କରି ସେ ଅନ୍ୟମାନଙ୍କୁ କହୁଥାଆନ୍ତି ତାଙ୍କ ହାତ ଉପରେ ପାଣି ଢ଼ାଳିବାକୁ । ମାଆ ରମାଦେବୀ ଥିଲେ ଉତ୍କଳର ସର୍ବୋଦୟ କର୍ମୀଙ୍କର ମାଆ ପରି । ଚୁନୀ ଅପା ହେଉଛନ୍ତି ସେଇ କର୍ମୀକୁଳର ସମସ୍ତଙ୍କର ସୁଖଦୁଃଖର ସାଥୀ, ସ୍ନେହମୟୀ, ଦରଦୀ ଭଉଣୀଟିଏ । କଥାରେ କହନ୍ତି ଘରେ ନ ପଶୁଣୁଁ ଆକଟ କରି କଥା କହେ ଅପା ବା ଭଉଣୀ । କିନ୍ତୁ ସେ ଆକଟ ପଛଆଡ଼େ ଥାଏ କଲ୍ୟାଣଭରା ଦରଦ । ଚୁନୀ ଅପାଙ୍କ ପାଖରେ ଅସଂଖ୍ୟ ଲୋକଙ୍କର ମନର କଥା, ସୁଖଦୁଃଖ, ନିନ୍ଦା ପ୍ରଶଂସାର ଅଗଣିତ କାହାଣୀ ଭରି ରହିଛି । ସେ ଗୋଟିଏ କାହାଣୀ ପେଡ଼ି । ଯେତିକି ଆବଶ୍ୟକ ଓ ହିତକର ସେତିକି ସେ ପେଡ଼ିରୁ ବାହାରେ । ଗୁଣୀଜନଙ୍କ ଗୁଣ ମୁକ୍ତ କଣ୍ଠରେ ବଖାଣିବା, ଦୁଃଖୀ, ପୀଡ଼ିତ, ନିନ୍ଦିତ ବ୍ୟକ୍ତିଙ୍କୁ ଉପରକୁ ଟାଣି ନେବାର କୌଶଳ ତାଙ୍କ ଜୀବନର ପ୍ରତି ଛତ୍ରେ ଛତ୍ରେ ଫୁଟି ଉଠିଛି । ସେ ଅନେକ ଅଳିଆକୁ ସଂପତ୍ତିରେ ପରିଣତ କରିଛନ୍ତି । ତାଙ୍କ ସ୍ୱାମୀ ଶରତ ବାବୁ ଓ ସେ ପ୍ରକୃତ ସହଧର୍ମୀ ପଦବାଚ୍ୟ ।

ଜୀବନରେ ଅନେକ ଘାଟର ପାଣି ପିଇଛନ୍ତି । ଅନେକ କାମରେ ହାତ ଦେଇ ସେ କାମକୁ ଆଗେଇ ନେଇଛନ୍ତି । ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବା ତାର ପ୍ରଥମ ସୋପାନ । ଖଦୀ କାମ, ଲୁଣମରା ଆନ୍ଦୋଳନ, ମୌଳିକ ଶିକ୍ଷା, ନିଶାବନ୍ଦୀ, ଅ.ଭା.କସ୍ତୁରବା ଟ୍ରଷ୍ଟର ସ୍ଥାପନ ପାଇଁ ଗାନ୍ଧୀଜୀଙ୍କ ନିର୍ଦ୍ଦେଶରେ ଚାନ୍ଦା ସଂଗ୍ରହ ଓ ଓଡ଼ିଶାରେ ରମାଦେବୀଙ୍କର ପ୍ରଧାନ ସହାୟିକା ଭାବରେ ଟ୍ରଷ୍ଟର କାମର ଆଜୀବନ ସଂଚାଳନ, ଟ୍ରଷ୍ଟର ଜଣେ ଟ୍ରଷ୍ଟି ଭାବରେ କର୍ମ ସମ୍ପାଦନ, ଭୂଦାନ ଗ୍ରାମଦାନ ଆନ୍ଦୋଳନ ଆଦି ଅନେକ କାମର ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସଂଚାଳନ କରିଛନ୍ତି । ଅସହଯୋଗ ଆନ୍ଦୋଳନ ବେଳେ ସେ ଜେଲ୍ ବି ଯାଇଛନ୍ତି । ପୂର୍ବତନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ଏମର୍‌ଜେନ୍ସି ବେଳେ

ନବବାବୁ, ମାଳତୀ ଦେବୀ, ମନମୋହନ ଚୌଧୁରୀଙ୍କୁ ଜେଲ୍‌ରେ ରଖାଯାଇଥିବା ବେଳେ ତାଙ୍କୁ ଯେ କାହିଁକି ଜେଲ୍‌ରେ ପୂରାଇ ନ ଥିଲେ ସେକଥା ଇନ୍ଦିରାଗାନ୍ଧି ହିଁ ଜାଣିଛନ୍ତି । ବୋଧ ହୁଏ ସେ କୌଣସି କାମ ବା ଅନୁଷ୍ଠାନର ଷ୍ଟାମ୍ପମରା କର୍ମୀ ନ ଥାଇ ମୁକ୍ତ ଭାବରେ କାମ କରୁଥିଲେ । କୌଣସି ସଂସ୍ଥାରେ ଲିଖିତ ନାମ ନ ଥାଇ ଅଧିକ କାମ ସମ୍ପାଦନ କରୁଥିବାର ଫଳ ବୋଧେ ଏଇଆ । ୨୦୦୩ ରେ ଭାରତର ରାଷ୍ଟ୍ରପତି ତାଙ୍କୁ ଦିଲ୍ଲୀରେ ସ୍ୱାଧୀନତା ସଂଗ୍ରାମୀର ଗୌରବ ଦେଲେ । ତାଙ୍କର ସାରା ଜୀବନର ତ୍ୟାଗ, ତପସ୍ୟା, ସଂଗ୍ରାମର ଫଳ କଣ ଏତିକି ? ଲକ୍ଷ ଲକ୍ଷ ସଂଖ୍ୟାରେ ଝିଅମାନେ, ମହିଳାମାନେ ତାଙ୍କରି ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ, ତାଙ୍କରି ପରି ଆଦର୍ଶର ଛାଞ୍ଚରେ ଗଢ଼ା ହୋଇ ଦେଶର ମାନ ବଢ଼ାଇଲେ ଯାଇ ଚୁନୀଅପାଙ୍କ ସାରା ଶ୍ରମ ସାର୍ଥକ ହେବ ।

ସାହିତ୍ୟ ଏକାଡେମୀ ଓ ଅନ୍ୟ କେତେକ ବିଶିଷ୍ଟ ସ୍ଥାନରୁ ତାଙ୍କୁ ଲେଖା ଓ କାମ ପାଇଁ ପୁରସ୍କାର ବି ମିଳିଛି । ଢ଼େଙ୍କାନାଳର ବିରାଟ ଗାନ୍ଧୀସେବା ସଂଘ ସମ୍ମିଳନୀ, ଗାନ୍ଧୀଜୀଙ୍କ ପ୍ରସିଦ୍ଧ ହରିଜନ ପଦଯାତ୍ରା, ଲୁଣମରା ଆନ୍ଦୋଳନ, ଅନୁଗୁଳ ଓ ପୁରୀରେ ବିରାଟ ସର୍ବୋଦୟ ସମ୍ମିଳନୀ, ବିନୋବାଜୀଙ୍କର ପ୍ରସିଦ୍ଧ ଭୂଦାନ ପଦଯାତ୍ରା ଆଦିର ସକ୍ରିୟ କର୍ମୀ ଥିଲେ ଚୁନୀ ଅପା । ଅନେକ ଦୈବିକ ଓ ସାଂସାରିକ ଆଘାତ ତାଙ୍କ ହୃଦୟକୁ ବଜ୍ରକଠିନ କରିଦେଇଛି । ମାତ୍ର ତାର ଆଭାସ ତାଙ୍କର ବାହାର ବ୍ୟବହାରରୁ ଆଦୌ ମିଳେନାହିଁ । ପିଲାବେଳେ ତାଙ୍କ ନିଜର ଛୋଟଭାଇର ଅକାଳ ମୃତ୍ୟୁ, ଆଖିଆଗରେ ସ୍ୱାଧୀନତା ସଂଗ୍ରାମୀ ଗୁଳିମାଡ଼ରେ ଟଳି ପଡ଼ିବା, ଦାଦାପୁଅ ଭାଇ ବିନାୟକର କଲେଜରେ ପଢ଼ିବାବେଳେ ସ୍ୱେଚ୍ଛାବରଣ ମୃତ୍ୟୁ, ନିଜର ପିତାମାତା ଦାଦାଖୁଡ଼ୀ ଓ ବୁଲୁଭାଇଙ୍କ ମୃତ୍ୟୁ, ତାଙ୍କ ବିବାହରେ ପୌରହିତ୍ୟ କରିଥିବା ଅଜାତ ଶତ୍ରୁ, ଆଚାର୍ଯ୍ୟ ହରିହର ଦାସ, ଈଶ୍ୱରଲାଲ ବ୍ୟାସ, ପଣ୍ଡିତ କୃପାସିନ୍ଧୁ ହୋତା, ଗୁଣନିଧି ମହାନ୍ତି, ନିଜର ପିଉସା ପିଉସୀ, ମାମୁଁ ମାଇଁ, ନିଜ ପୁତୁରା କବିରର ଅକାଳ ମୃତ୍ୟୁ, ଦାଦା ଝିଅ ଭଉଣୀ ଉତ୍ତରାର ମୃତ୍ୟୁ, ଅସହଯୋଗ ଆନ୍ଦୋଳନ ବେଳର ଅନେକ ଦୁଃଖଦ ପରିସ୍ଥିତି, ଏମର୍ଜେନ୍ସି ବେଳର ଆଘାତ, ଓଡ଼ିଶାର ବନ୍ୟା, ବାତ୍ୟା, ମହାମାରୀ, ଦୁର୍ଭିକ୍ଷବେଳର ନିଦାରୁଣ ପରିସ୍ଥିତି, ସର୍ବୋପରି ମହାତ୍ମା ଗାନ୍ଧୀଙ୍କ ଦେହାବସାନ, ବିନୋବାଜୀଙ୍କ ଦେହତ୍ୟାଗ ଆଦି ତାଙ୍କୁ ଏତେ ମଜଭୁତ୍ କରିଦେଇଛି ଯେ କୌଣସି ସାମାନ୍ୟ ଘଟଣାରେ ସେ ଆଉ ବିଚଳିତ ହୋଇ ପଡ଼ନ୍ତି ନାହିଁ । ଗାନ୍ଧିଜୀଙ୍କ ନିର୍ଦ୍ଦେଶ, 'ବରଦାସ୍ତ କରନା ହୋଗା' ଏଇ ମନ୍ତ୍ରକୁ ସେ ଧରି ଚାଲିଛନ୍ତି ଆଜୀବନ । ସଂସାରର ବିଭିନ୍ନ ପ୍ରକାରର ଆଘାତ ତାଙ୍କ ମୁହଁରୁ ହସ ଲିଭାଇ ପାରି ନାହିଁ କି ତାଙ୍କୁ ଅବଶ କରିପାରି ନାହିଁ । ନିଜ ଦେହର ରୋଗ ବି ତାଙ୍କୁ କର୍ତ୍ତବ୍ୟ ପଥରୁ ଓହରେଇ ପାରିନାହିଁ ।

ବିନୋବାଜୀ ତାଙ୍କୁ ଗାନ୍ଧୀକନ୍ୟା ବୋଲି ସ୍ୱୀକାର କରିଛନ୍ତି ଆମମାନଙ୍କ ଆଗରେ । ବିନୋବା କହୁଥିବା ସତ୍ୟ, ପ୍ରେମ, କରୁଣା ଏବଂ ଜ୍ଞାନ ଭକ୍ତି କର୍ମର ତ୍ରିବେଣୀ ସଙ୍ଗମ ସେ । ଯିଏ ସେଥିରେ ବୁଡ଼ ମାରିଛି ସେ ଅନୁଭବ କରିଥିବ । ମାଆ ରମାଦେବୀଙ୍କ ପରି ସେ ରୋଗୀସେବାରେ ଅତି ନିପୁଣା । କେଉଁ ରୋଗୀ ପାଇଁ କେଉଁ ପଥ୍ୟ ରୁଚିକର ଓ ସ୍ୱାସ୍ଥ୍ୟକର ସେଇଆ ଦିଅନ୍ତି । ଆଉଁଷା ଘସା, ସ୍ୱଚ୍ଛତା ରକ୍ଷା, ରୋଗୀର ଦୁର୍ବଳ ମନରେ ଆନନ୍ଦ ଉତ୍ସାହ ଭରିବାର ଚେଷ୍ଟା, ନିଜ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନ ଦେଇ କତରା ଧରି ଯାଇଥିବା ରୋଗୀକୁ ଉପଯୁକ୍ତ ସେବା ଓ ଚିକିତ୍ସା ଦ୍ୱାରା ଆରୋଗ୍ୟ କରେଇବାରେ ସେ ଧୁରନ୍ଧର । ଯେଉଁଲୋକ ସେ ସେବା ପାଇଛି ସେ ବଞ୍ଚିଥିବା ଯାଏ ତାଙ୍କୁ ଝୁରିହେବ । ସେ ସେବାଗ୍ରାମରେ ଥିବାବେଳେ ତାଙ୍କର ଅର୍ଶରୋଗ ଅପରେସନ୍ ଦ୍ୱାରା ଭଲ ହୋଇଥିଲା । ସେ ରୋଗଶେଯରେ ଛଟପଟ ହେଉଥିବା ବେଳେ ମହାତ୍ମା ଗାନ୍ଧୀ ତାଙ୍କ ପାଖକୁ ଯାଇ ତାଙ୍କ ମୁଣ୍ଡରେ ଅତି ସ୍ନେହରେ ହାତ ବୁଲାଇ ଦେଇଥିଲେ । ଚୁନୀଅପା କହନ୍ତି ସେ ସ୍ପର୍ଶର ଏପରି ମାଧୁରୀ ଥିଲା ଯେ ତାଙ୍କର ଅସହ୍ୟ ବେଦନାର ଉପଶମ ହୋଇଗଲା । ଗାନ୍ଧୀଜୀଙ୍କ ହାତରେ କାଉଁରୀ କାଠିର ସ୍ପର୍ଶ ଶକ୍ତି ଥିଲା । ଆଖିର ଚାହାଣୀରେ ଚୁମ୍ବକ ପରି ପାଖକୁ ଟାଣି ନେବାର ଶକ୍ତି ଥିଲା ।

ଭାବିବା, କହିବା, କରିବା ତିନିଧାରାର ସଙ୍ଗମର ପରିଣାମ ତାଙ୍କ ଜୀବନ । ନ୍ୟାୟର ଖୁରଧାରରେ ନିଜ ସ୍ୱାମୀ ସହିତ ନିଜେ ଚାଲି ଚାଲି ଆସିଛନ୍ତି । ସାଙ୍ଗସାଥୀଙ୍କୁ ସେଇ ବାଟରେ ନେବାର ପ୍ରୟାସ କରିଛନ୍ତି । ଏଇ ଦମ୍ପତି ସମାଜରେ ତଳ ଉପର ସବୁ ସ୍ତରର ଲୋକଙ୍କ ସାଙ୍ଗରେ ଭାବଦୋସ୍ତିର ସହିତ ଚଳିବାର ପ୍ରୟାସ କରି ସଫଳ ହୋଇଛନ୍ତି । ଗରିବ ଲୋକମାନଙ୍କ ପରି ଚଳିବା ସାଙ୍ଗରେ ଉଚ୍ଚଚିନ୍ତାରଖି ଜୀବନ ବିତାନ୍ତି । ତେଣୁ ସମସ୍ତେ ତାଙ୍କର ଆପଣାର ହୋଇଯାଇଛନ୍ତି । ଏହି ସାଦାସରଳ ଜୀବନଧାରା ନେଇ ଧୋତି କମିଜ ପିନ୍ଧି ତାଙ୍କର ବିବାହ ପରେ ଥରେ କେନ୍ଦୁପାଟଣା ଯାଇଥିଲେ ଶରତବାବୁ । ଘାଟ ପାରି ହେବାବେଳେ ଘାଟିଆ ତାଙ୍କୁ ଅଟକେଇ କହିଲା,''ମୁଁ ଡ଼ଙ୍ଗା ଛାଡ଼ି ପାରିବି ନାହିଁ । ଗୋପବାବୁଙ୍କ ଜ୍ୱାଇଁ ଶରତବାବୁ ଆସିବାର ଅଛି । ତାଙ୍କୁ ଘାଟପାରି ନ କଲା ଯାଏ ମୁଁ କାହାରିକୁ ଡ଼ଙ୍ଗାରେ ବସିବାକୁ ଦେବି ନାହିଁ ।'' ଶରତବାବୁ ଯେ ନିଜେ ଗୋପବାବୁଙ୍କ ଜ୍ୱାଇଁ ଏକଥା ବହୁକଷ୍ଟରେ ଘାଟିଆର ହୃଦବୋଧ ହେବାରୁ ସେ ତାଙ୍କୁ ଘାଟପାରି କରେଇଲା ।

ସାଧାରଣ କର୍ମୀମାନଙ୍କ ସାଙ୍ଗରେ ସମାନ ହୋଇ ଚଳିବାର ଉଦ୍ୟମରେ ସେ ସଫଳ ହୋଇଛନ୍ତି । ରାମଚନ୍ଦ୍ରପୁରରେ ଥିବାବେଳେ ସେ, ଶରତବାବୁ ଓ ତାଙ୍କ ପିଲାମାନେ

କସ୍ତୁରବା ମେସ୍‌ରେ ସମସ୍ତଙ୍କ ସାଙ୍ଗରେ ସମାନ ଖାଦ୍ୟ ଖାଇ ରହୁଥିଲେ । ନିଜର ସ୍ୱତନ୍ତ୍ର ବାସ ସ୍ଥାନରେ ଅନ୍ୟ ସମୟରେ ଅଲଗା କିଛି ଖାଉ ନ ଥିଲେ । ନିଜର ଓ ପିଲାଙ୍କର ଲୁଗାପଟା ନିଜେ କାଚୁଥିଲେ । ତାଙ୍କ ଭିତରୁ କେହି ବେମାର ପଡ଼ିଲେ ତାଙ୍କ ପାଇଁ ପଥ୍ୟର ଅଲଗା ବ୍ୟବସ୍ଥା ହେଉଥିଲା । ମେସ୍ ଖର୍ଚ୍ଚ ନିୟମିତ ଭାବେ ଦେଉଥିଲେ । ଥରେ ଜଣେ ଭଉଣୀ ଚୁନୀ ଅପା ଅସୁସ୍ଥ ଥିବାବେଳେ ଅତି ଶରଧାରେ ତାଙ୍କୁ ଘସିମୋଡ଼ି ଦେବାକୁ ଗଲେ । ତାଙ୍କ ପାଦରେ ହାତ ଦେଲା କ୍ଷଣି ସେ ଉଠିପଡ଼ି ସିଂହବାହିନୀ ଦୁର୍ଗାଙ୍କ ପରି ସେ ଭଉଣୀଙ୍କୁ ମାଡ଼ି ବସିଲେ । ସେ ଲାଜରେ ଫେରି ଆସିଲେ । କେବେ କୌଣସି ଦିନ କାହାରି ହାତରେ ମୁଣ୍ଡବାଳ କୁଣ୍ଡାଇ ନାହାନ୍ତି । ମା ରମାଦେବୀଙ୍କ ଛଡ଼ା ଆଉ କାହାରି ହାତର ପାନିଆ ତାଙ୍କ ମୁଣ୍ଡରେ ବାଜିଲେ ସେ କଷ୍ଟ ଅନୁଭବ କରନ୍ତି । ତେଣୁ ଚିରଦିନ ନିଜ ସେବା ନିଜେ କରିଆସିଛନ୍ତି । ସେ ଅସୁସ୍ଥ ହୋଇ ଅଜ୍ଞାନ ନ ହେବା ଯାଏ କେହି ତାଙ୍କ ସେବା କରି ପାରି ନାହିଁ । ସମାଜଠାରୁ କମ୍ ନେଇ ତାକୁ ବେଶି ଦେବାର ନିୟମକୁ ସେ ଅକ୍ଷରେ ଅକ୍ଷରେ ପାଳିଛନ୍ତି ।

ଭଲ କହିବା, କରିବା ଓ ଭାବିବାର ସଙ୍ଗମର ପରିଣାମ ତାଙ୍କ ଜୀବନ । ନ୍ୟାୟର ଖୁରଧାରରେ ସ୍ୱାମୀ ସହିତ ନିଜେ ଚାଲି ଚାଲି ଆସିଛନ୍ତି । ସାଙ୍ଗସାଥୀମାନଙ୍କୁ ବି ସେଇ ବାଟରେ ନେବାର ପ୍ରୟାସ କରିଛନ୍ତି । ଓଡ଼ିଆ, ବଙ୍ଗଳା, ଇଂରାଜୀ, ସଂସ୍କୃତ, ଚାରିଭାଷାର ବୌଦ୍ଧିକ ଓ ବ୍ୟବହାରିକ ଜ୍ଞାନର କୁଶଳତା ତାଙ୍କର ଅଛି । ସେଥିପାଇଁ ତାଙ୍କର ଗର୍ବ ବି ନାହିଁ । ଗୁଣୀର ଗୁଣ ଗ୍ରହଣ କରି ବାସ୍ତବ ଜୀବନରେ ତାର ପ୍ରୟୋଗ କରିବାର ସୁଯୋଗ ସେ କେବେ ଛାଡ଼ିନାହାନ୍ତି । ସର୍ବୋପରି ମହାତ୍ମା ଗାନ୍ଧୀଙ୍କର ଶିଷ୍ୟା କହିବାର ଅଧିକାର ତାଙ୍କର ଅଛି ବୋଲି ତାଙ୍କ କର୍ମମୟ ଜୀବନ ହିଁ ପ୍ରମାଣ କରି ଦେଇଛି । ସେ ନାମ, ଯଶ, ଅର୍ଥ, ପ୍ରତିଷ୍ଠା ପ୍ରତିପତ୍ତି ପାଇଁ ବ୍ୟାକୁଳ ହୋଇ କେବେ ବାଟଛାଡ଼ି ନାହାନ୍ତି । ତ୍ୟାଗ, ତପସ୍ୟା, ସେବା, ମମତାର ଗୋଟିଏ ନିର୍ମଳ ଭାବମୂର୍ତ୍ତି । ସେଇ ଗାନ୍ଧୀବାଦିନୀ ଚୁନୀ ଅପାଙ୍କୁ ମୋର ଅଶେଷ ନମସ୍କାର । ମୋ ଲେଖାରେ ଭୁଲ ତ୍ରୁଟି ଥିଲେ ସେ କ୍ଷମା କରିବେ ବୋଲି ଆଶା କରୁଛି । ବର୍ତ୍ତମାନ ଓ ଅଗାମୀ ଯୁଗର ସାନବଡ଼ ସବୁ ଭଉଣୀମାନଙ୍କୁ ମୋର ବିନୀତ ଅନୁରୋଧ ଯେ ସେମାନେ ତାଙ୍କୁ ଆଖିରେ ନ ଦେଖି ପାରିଲେ ମଧ୍ୟ ପୋଥିରେ ଦେଖନ୍ତୁ । ତାଙ୍କରି ପ୍ରେରଣାରେ ଉଦ୍‌ବୁଦ୍ଧ ହୁଅନ୍ତୁ ।

କୁଆଁସ, ଭଦ୍ରକ — ଅନ୍ନପୂର୍ଣ୍ଣା ଦାସ

୬.୯.୨୦୦୪

# ସୂଚୀପତ୍ର

# ଶ୍ରୁତି ସ୍ମୃତି ଦ୍ୱୟ ମଧ୍ୟେ ଶ୍ରୁତି ଏତ ଗରିୟସୀ

ପ୍ରାୟ ପଞ୍ଚଷଠି ବର୍ଷ ପୂର୍ବର କଥା । ମୋ ବୋଉର ଜଣେ ପୁତ୍ରପ୍ରତିମ ସହକର୍ମୀ କଥା ପ୍ରସଙ୍ଗରେ କହିଲେ - ମୋର ତିନିଭଉଣୀ ମୋ ଠାରୁ ବଡ଼ । ବୋଉର ପୁଅ ହେଉନାହିଁ ବୋଲି ଆମ ଘରେ ସମସ୍ତେ ଦୁଃଖ କରୁଥାନ୍ତି । ଚତୁର୍ଥ ସନ୍ତାନଟି ପୁଅ ହେଲା । ମାତ୍ର ଅନ୍ତୁଡ଼ିଶାଳରେ ବୁଢ଼ୀ ଧାଇ ଅନ୍ଧାରୁଆ ଘରେ ଭଲକରି ଦେଖି ନପାରି ଘୋଷଣା କଲା - 'ଝିଅଟିଏ' । ମୋ ବୋଉ ଏ କଥା ଶୁଣିବା ମାତ୍ରେ ଅନ୍ତୁଡ଼ିଶାଳରୁ ଦଉଡ଼ି ଯାଇ ବାଡ଼ି ପୋଖରୀକୁ ଡ଼େଇଁ ପଡ଼ିଲା । ଲୋକେ ତାକୁ ପୋଖରୀରୁ ଛାଣି ଆଣିଲେ । ଇତି ମଧ୍ୟରେ ଦେଖାଗଲା ଝିଅ ନୁହେଁ ପୁଅ ହୋଇଛି । ବୋଉ ଯେତେବେଳେ ନିଜ ଆଖିରେ ଦେଖିଲା ଯେ ଝିଅ ନୁହେଁ ପୁଅ ଜନ୍ମ ହୋଇଛି ସେତେବେଳେ ଯାଇ ଥୟ ପଡ଼ିଲା ।

ତାଙ୍କର ଏ ବର୍ଣ୍ଣନା ଶୁଣି ମୁଁ ମୋ ବୋଉକୁ ପଚାରିଲି - ''ମୁଁ ଜନ୍ମ ହେଲାବେଳେ ତମେ ସବୁ ଏମିତି ମନ ଦୁଃଖ କରିଥିଲ ?'' ବୋଉ କହିଲା, ''ତୁ ଜନ୍ମ ହେଲା ବେଳକୁ ବେଙ୍ଗ(ନଣନ୍ଦ)ଙ୍କ ପାଇଁ ବର ଖୋଜା ହେଲାଣି । ଝିଅଟିଏ ହେବାର ଦେଖି ମା (ଶାଶୁ) ଖୁସି ହୋଇ କହିଲେ-ଝିଅଟିଏ ହେଲାଣି ବେଙ୍ଗ ବିଭା ହୋଇଗଲେ ରଜ, କୁଆଁର ପୂନେଇ ଓଷା ବ୍ରତ ଆଉ ବନ୍ଦ ହେବ ନାହିଁ ।''

ସେଇଦିନ ମୋ ବୋଉ ଆମ ଆଗରେ ମୋ ଜନ୍ମଦିନ କଥା କହିଲା -''ମୋ ମା ଗୋଟାଏ ମାଛ ଭାର ପଠାଇଥିଲା । ମୁଁ ନାନାପ୍ରକାର ମାଛ ତରକାରୀ ରାନ୍ଧିଲି । ଅପା(ନଣନ୍ଦ)ଙ୍କ ଘରକୁ ଅନ୍ନପୂର୍ଣ୍ଣା ଦିଦିଙ୍କ ଘରକୁ ମାଛ ତରକାରୀ ପଠାହେଲା । ମା (ଶାଶୁ) ଓ ମୁଁ ସାଂଗ ହୋଇ ଭାତ ଖାଇଲୁ । ମା ଖାଇସାରି ଶୋଇଲେ । ମୁଁ ତାଙ୍କ ଗୋଡ଼ ଘଷି ଦେଇ ସାରି ଶୋଇବାକୁ ଗଲି । ମା ନିତି ନିଦରୁ ଉଠି ନିଶ୍ଚୟ କିଛି ସମୟ ଖେଳିବେ । କାଳିପଟା, କଉଡ଼ି, ତାସ୍ ଯେଉଁଦିନ ଯେପରି ସାଙ୍ଗ ମିଳିବେ ସେପରି ଖେଳ ହେବ । ମା ସେଦିନ ନିଦରୁ ଉଠି ତାସ୍ ଖେଳିବାକୁ ଗଲେ । ମୁଁ ଶୋଇଥାଏ । ମୋ

ଦେହଟା ଭଲ ଲାଗୁ ନ ଥାଏ । ଚାରିଟା ବାଜିଲାରୁ ଧାଈ ଆସି ଡ଼ାକିଲେ -''ବୋହୂ ଉଠ ! ତୁଆଁ ଇସ୍କୁଲରୁ ଆସିବା ବେଳ ହେଲାଣି । ବିରି ଚାଉଳ ମୁଁ ବାଟି ସାରିଲିଣି । ଉଠ, ପିଠା କରିବ ପରା !'' ମୁଁ ଉଠିଲି ନାହିଁ । ଧାଈ କିଛି ସମୟ ପରେ ଆସି ପୁଣି ଡ଼ାକିଲେ । ମୁଁ ଜବାବ ଦେଲି ନାହିଁ । ଧାଈ ଯାଇ ଶାଶୁଙ୍କୁ କହିଲେ - ବୋହୂଙ୍କର ଦେହ କ'ଣ ହେଲାଣି କି କ'ଣ ଡ଼ାକିଲେ ଉଠୁ ନାହାନ୍ତି । ମା ତାସ୍ ଫୋପାଡ଼ି ଦେଇ ମୋ ପାଖକୁ ଆସିଲେ । ଅନ୍ନପୂର୍ଣ୍ଣା ଦିଦି ଆସିଲେ । ପ୍ରଭାବତୀ ସିଂହ (ଡ଼ାକ୍ତର) ଙ୍କୁ ଡ଼କା ହେଲା । ତୁ ଜନ୍ମ ହେଲୁ ।''

ମୋ ବୋଉର ପୁଅ ପୋଗୁହାଁ । ୧୯୧୫ ମସିହା ଅକ୍ଟୋବର ମାସ ଏଗାର ତାରିଖରେ ମୋ ଭାଇ ଜନ୍ମ ହୋଇଥିଲେ । ଆମ ଜେଜେଙ୍କ ମୃତ୍ୟୁ ଓ ଅଜାଙ୍କ ମୃତ୍ୟୁ ପରେ ଭାଇ ଜନ୍ମ ହେବା ଫଳରେ ଆମ ଘରେ ଓ ଅଜାଙ୍କ ଘରେ ଲୋକଙ୍କ ମୁହଁରେ ହସ ଫୁଟିଲା । ସେଥିପାଇଁ ଭାଇଙ୍କ ନାମ 'ମନମୋହନ' ଦିଆଗଲା ।

ଭାଇଙ୍କ ଜନ୍ମ ସମୟରେ ବୋଉ ବହୁତ କଷ୍ଟ ପାଇଥିଲା । ଶାଶୁ ଡ଼ାକ୍ତରୀ ଚିକିତ୍ସାର ଘୋର ବିରୋଧି ହୋଇଥିବାରୁ ଆଈ ଡ଼ାକ୍ତରଙ୍କୁ ଡ଼ାକି ଆଣିବା ସତ୍ତ୍ୱେ ମା ତାଙ୍କୁ ବୋଉ ପାଖକୁ ଛାଡ଼ିଲା ନାହିଁ । କଟକରେ ସେତେବେଳର ନାମଜାଦା ଧାତ୍ରୀ 'ଦୂତୀ ଗଉଡୁଣୀ' ପ୍ରସବ କାର୍ଯ୍ୟ ତୁଲାଇଲେ । ପ୍ରସବୋତ୍ତର ଖାଦ୍ୟପେୟ ମଧ୍ୟ ପ୍ରଚଳିତ ବିଧି ଅନୁସାରେ ହେଲା । ବୋଉକୁ ଜ୍ୱର ହେଲା । ଘିଅ ସରସର ଗରମ ଗରମ ଭାତରେ ଶୁଣ୍ଠି, ପିପ୍ପଳି ଗୋଳାଇ ଖାଇବାକୁ ପଡ଼େ । ଶୋଷରେ ତଣ୍ଟି ଶୁଖିଯାଏ । ପାଣି ପିଇବା ନିଷିଦ୍ଧ ହୋଇଥାଏ । ବୋଉର ଜୀବନ ସଂଶୟ ଦେଖାଦେଲା । ବଡ଼ ନଣନ୍ଦ ଦେଖିବାକୁ ଆସି ପରିସ୍ଥିତି ଦେଖି ମାଆକୁ ପରିଣତି ବିଷୟରେ ସଚେତନ କରିବାରୁ ଡ଼ାକ୍ତରୀ ଚିକିତ୍ସା ପାଇଁ ମା ଅନୁମତି ଦେଲା । ବୋଉ ଭଲ ହେଲା । ଭାଇ ଦାଦା ଓ ସାନ ପିଉଷୀ ବେଙ୍ଗ ଅପାଙ୍କ ହେପାଜତ୍‌ରେ ରହି ଆଲେନ୍‌ବରିଜ୍ ଫୁଡ଼ ଖାଇ ବଡ଼ ହେଲେ । ମୁଁ ଜନ୍ମ ହେଲାବେଳେ ଡ଼ାକ୍ତରୀ ଚିକିତ୍ସା ଆଉ ନିଷିଦ୍ଧ ହେଲା ନାହିଁ । ଅନ୍ନପୂର୍ଣ୍ଣା ଦିଦି ଦୂରଦର୍ଶୀ । ସେ ମୋ ଦେହରେ ସୋରିଷତେଲ ମାରିବ କହି ମୋତେ ଖରା ଖୁଆଇଲେ । ଝିଅ ତ ଆଖର ପର ଘରେ ଖଟିବ ? ହଉ ପଛେ ତା ଚମଡ଼ା କଷ, ଦେହ ମଜବୁତ ହେବ । ହେଲା ମଧ୍ୟ ସେୟା । ଦୁଇ ବର୍ଷ ବ୍ୟବଧାନରେ ଦୁଇଟି ପିଲା । ବୋଉର ବୟସ ସତର ବର୍ଷ । ବୋଉର ତ ଅଶେଷ ଗୃହକୃତ୍ୟ । ଶଶୁର ପାଞ୍ଚ ଭାଇ, ପିଉଷୀ ଶାଶୁ ତେରଜଣ । ସେମାନେ ଆସନ୍ତି ସପରିବାରେ । ଜଣେ ପିଉଷୀ ଆଜିଙ୍କୁ ମୁଁ ଦେଖିଛି । ସେ ହେଉଛନ୍ତି ଆମ ଜେଜେଙ୍କର ଗେହ୍ଲା ଭଉଣୀ ପିର ଓରଫ ପ୍ରିୟତମା । ଦୁର୍ଗାପ୍ରତିମା ପରି ସୁନ୍ଦର ।

ପାନ ବୋଳ ଲାଗି ଓଠ ପୋହଳା ପରି ଦିଶେ । ତାଙ୍କର ଆଗମନ ହୁଏ ରାତି ବାରଟା ପରେ । ଶାଶୁଘର ସୁଜଙ୍ଗରୁ ସେ ବଳଦ ଗାଡ଼ିରେ ଆସନ୍ତି । ସାଙ୍ଗରେ ଆସନ୍ତି ସାବ ଅପା, ରେବ ଅପା, ଲକ୍ଷ୍ମୀ ଅପା, ପାଲୁଣି ଅପା, ମଣି ଅପା ଓ ଧଡ଼ିଆ ଦାଦା । ସେ ପହଞ୍ଚିଲା ବେଳକୁ ଆମ ଘରେ କଞ୍ଚକୋଲପ ପଡ଼ି ସମସ୍ତେ ନିଘୋଡ଼ ନିଦରେ ଶୋଇଥାନ୍ତି । ପୁଣି ସରଘର କବାଟ ଫିଟେ, ରନ୍ଧାବଡ଼ା ଖିଆପିଆ ହୁଏ । ବଳଦକୁ କୁଣ୍ଡା ତୋରାଣୀ ଦିଆ ହୁଏ । ଏ କାମ ବଢ଼ିଲା ବେଳକୁ କୋଇଲି କୁମ୍ଭାଟୁଆ ରାବ ଶୁଭେ, ଡ଼ାକ ହରକରା ଗୀତ ବୋଲି ବୋଲି ଡ଼ାକ ନେଇ ଯାଉଥାଏ । ଏହିପରି ଚର୍ଚ୍ଚା ତ ବୋଉ କରିବ !

ବୋଉର ମଳାଶୁରମାନେ ମଧ ଆସି ରହନ୍ତି – ହରିଅଜା, ଶ୍ୟାମ ଅଜା, ଗୋପାଳ ଅଜା, ରାଜୁ ଅଜା, ଗିରିଧାରୀ ଅଜା, ଜୟୀ ଅଜା, ବଂଶୀ ଅଜା ପ୍ରଭୃତି ବରାବର ଆସନ୍ତି । ମୋ ମାଆ ବେଣ୍ଟକାରର ସଦେଇ ମହାନ୍ତିଙ୍କର ଝିଅ ପୁଣି ମଣି ମହାନ୍ତି ମା'କୁ ଝିଅ କରିଥିଲେ । ତେଣୁ ଅଜା ସଂଖ୍ୟା ଲୋଭନୀୟ । ବୋଉ ସମସ୍ତଙ୍କର ମନଜାଣି ଖୁଆଇବାରେ ଧୁରନ୍ଧର । ସେଥିରେ ସେ କେବଳ ଧୁରନ୍ଧର ନୁହେଁ ସେଇଟା ତାର ସଉକ । ମଣିଷକୁ ଖୁଆଇ ତୃପ୍ତ କରିବାରେ ହିଁ ସେ ସବୁଠାରୁ ବେଶୀ ଆନନ୍ଦ ପାଏ । ପୁଣି ଏହା ସାଙ୍ଗକୁ ଥାଏ ମୋ ମାର ଓଷାବ୍ରତ । ସୋମବାର, ମଙ୍ଗଳବାର, ଗୁରୁବାର, ରବିବାର, ରବିନାରାୟଣ ବ୍ରତ, ଦଶମୀ, ଏକାଦଶୀ, ଦ୍ୱାଦଶୀ, ଚତୁର୍ଦ୍ଦଶୀ, ନିଶାପାଳନ – ଏହିପରି ନାନା ଓଷାବାର ବିଧିବିଧାନ ପିଠାପଣା, ଭୋଗରାଗ ପ୍ରାୟ ପ୍ରତିଦିନ ଲାଗିଥିବ । ଏ ଘରକରଣା ସମ୍ଭାଳି ବୋଉ ମୋର ପିଲା ସାଇତିବ କେତେବେଳେ ? ଆଇ ପିଲା ସାଇତିବାକୁ ଲୋକ ପଠାଇ ଦିଅନ୍ତି । ଭାଇଙ୍କ ଜନ୍ମ ବେଳେ ଆସିଥିଲା ବୁଧି । ମୋ ପାଇଁ ଆସିଲା ହାଡ଼ିଆ ମା । ହାଣ୍ଡି କଳା ପରି କାଳୀ । ଥାକୁଲୁ ଥୁକୁଲୁ ଗଢ଼ଣ । ମୁଁ କଉଡ଼ି ଧରି ଖେଳିବାକୁ ସୁଖପାଏ ବୋଲି ଉମାକାନ୍ତ ବାବୁ ମୋତେ ଡ଼ାକନ୍ତି 'କଉଡ଼ା' । ମୁଁ ପିଲାଦିନେ ଭାରି କାନ୍ଦୁଥିଲି । ହାଡ଼ିଆ ମା'ର ଡ଼ନଲପ ଗଦି ପରି ମୋଟା ମୋଟା ଜଂଘ ଉପରେ ପଡିଗଲେ ମୋ କାନ୍ଦ ବନ୍ଦ ହୋଇଯାଏ । ହାଡ଼ିଆ ମା ମୋତେ ଡ଼ାକୁଥିଲା କାନ୍ଦୁରୀ । ମୁଁ ମୋ ବୋଉ ଗର୍ଭରେ ଥିଲାବେଳେ ବୋଉ କିଛି ଖାଇ ପାରୁ ନ ଥିଲା । ବରଫି ଚୁଚୁମି ଚୁଚୁମି ପଡ଼ି ରହୁଥିଲା । ସେଥିପାଇଁ ଆମ ନାଳିଆ ମା ମୋତେ ଡ଼ାକନ୍ତି ବରଫୀ । ଆଉ ମୁଁ ଟିକିଏ ନିର୍ବୁଦ୍ଧିଆ ବୋଲି ଆମ ଜଗୁ ପିଉଶା ମୋତେ ଡ଼ାକନ୍ତି ହୁଣ୍ଡୀ । ଅପା ଡ଼ାକେ ଦେଇନ । ମୋ ବାପା ଡ଼ାକୁଥିଲେ ମାନି । ମୋ ବୋଉ କୋଳରେ ଶୋଇଥିଲା ବେଳେ ବୋଉ ଗୀତ ବୋଲେ ।

୧୯୨୦ରେ ଆସିଲା ମୋ ତଳ ଭାଇ ବିଜି, ବିରଜାପ୍ରସାଦ । ସୁନା ପରି ଦେହର ବର୍ଣ୍ଣ, ଗରି ଗରି ହାତ ଗୋଡ଼ । ଦେଖିବାକୁ ବଡ଼ ସୁନ୍ଦର । ମୋ ବଡ଼ଅପା କହନ୍ତି ସେ ଭେଜେଙ୍କ ଅଣି ଆଣିଥିଲା । ବିଜି ଅକାଳରେ ବାହୁଡ଼ି ଗଲା । ମା, ବୋଉ ଦିନରାତି ଶୋକ କଲେ । ବୋଉ ବାର ବର୍ଷକାଳ ବକଟେ ଖାଇବା ଛାଡ଼ିଦେଲା । ବିଜି କଥା ଛାପି ଛାପିକା ହୋଇ ମନେ ପଡ଼େ । ସେବକାଳେ ଛୋଟ ପିଲାଙ୍କ ପାଇଁ ଛୋଟ ଛୋଟ ଧୋତି, ଶାଢ଼ୀ ମିଳୁଥିଲା । ମୁଁ ଶାଢ଼ୀ ପିନ୍ଧି ପଣତ ଲୋଟେଇ ଚାଲିଛି ବିଜି ମୋ ପଣତକାନି ଧରିବା ପାଇଁ ହସି ହସି ମୋ ପଛେ ପଛେ ଆସୁଛି – ଏ ଦୃଶ୍ୟ ମୁଁ ମନଶ୍ଚକ୍ଷୁରେ ଏବେ ସୁଦ୍ଧା ଦେଖେ । ଆମ ଧାଇ ଅଗଣାରେ ମଶିଣା ବିଛେଇ ବିଜିକୁ ହଳଦୀ ଲଗାଇ ଦିଅନ୍ତି । ତୁରନ୍ତ ବିଜି ଏଣେ ତେଣେ ପଳାଏ । ଧାଇଙ୍କୁ ଧରା ଦିଏ ନାହିଁ । ଧାଇ ତାକୁ କହନ୍ତି 'ଖବିଷା' । ସେ ପୁଅ ବାହୁଡ଼ିଗଲା । ମୋ ବୋଉ କୋଳକୁ ଆଉ ସନ୍ତାନ ଆସିଲେ ନାହିଁ । ଭକ୍ତକବି ଲେଖିଛନ୍ତି :

''ପ୍ରେମର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମବେଦନାରେ
ଯେ ଜନ ଜପଇ ଶିବରାତ୍ରି ଜାଗରଣେ
ଅଶ୍ରୁପୂତ ପ୍ରେମମନ୍ତ୍ରେ ହୃଦୟ ରତନେ
ସେହି ଏକା ଏ ଜଗତେ ମହାଧନେ ଧନୀ
ଅକ୍ଷୟ ଭଣ୍ଡାର ତାର ଦିବସ ରଜନୀ ।''
ମୋ ବୋଉର ଶୋକ ଏହି ପର୍ଯ୍ୟାୟର ।

ଆମ ଧାଇଙ୍କ ନାଆଁ ସାଧବୀ । ବର୍ଷେ କାଳ ପଡ଼ିଥିଲା । ଆମ ପ୍ରପିତାମହ ବ୍ରଜସୁନ୍ଦର ମଂଗରାଜଙ୍କ ଠାରୁ ଗୌଣିଏ ଧାନ ନେଇ ପାଲଟା ହକାଲୁ, ଅଇଁଠା ଉଠଉ ପଛେ ସା'ନ୍ତ ଘରେ ଖାଇବାକୁ ମୁଠାଏ ତ ତାକୁ ମିଳିବ । ସାଧବୀ ବୋଉ ସାଧବୀକୁ ସାଆନ୍ତଙ୍କୁ ବିକିଦେଲା । ସାଧବୀ ଗୋଟିଏ ଚାଉଳରେ ଗଢ଼ା । ତାକୁ ସେତେବେଳକୁ ୫/୬ବର୍ଷ ବୟସ ହୋଇଥିବ । ସାଧବୀକୁ ନଅ ବର୍ଷ ହେଲା ବେଳକୁ ମୋ ମା ପଦ୍ମାବତୀ ବିଭା ହୋଇ ଆସିଲେ । ତାଙ୍କର ପ୍ରଥମ ପୁଅ ହେଲା କହ୍ନେଇ । ପନ୍ଦର ବର୍ଷର ଜନନୀ ପଦ୍ମାବତୀଙ୍କ ପୁଅକୁ ସାଇତିଲେ ଦଶ ବର୍ଷର ସାଧବୀ । ସାଧବୀ ବଡ଼ ସଗୁଣା । ହଳୀ ବାଟ୍ଟିବ ଯେମିତି ଲହୁଣୀ । ଗୋଡ଼ ଘଷି ଦେଲେ ଦେହରୁ ମଳରା ଯିବ । ପୁଅକୁ ହଳଦୀ ଲଗେଇ ଦେବା, ପୁଅ କନାପଟା ଧୋଇବା, ଏପରି କେତେ କାମ ସବୁ କଲା ସାଧବୀ ।

ଦିନକର ପଦ୍ମାବତୀଙ୍କ ବଡ଼ ଜାଆ ଓ ସାଧବୀ ମଧ୍ୟରେ ବଚସା ହେଲା । ଅରକ୍ଷେତିଆଣୀଟାଏ ସାଆନ୍ତାଣୀକୁ ଜବାବ ଦେବ ? ବଡ଼ ଜାଆ ଗତିବୋଉ ରୁଷି ବସିଲେ । ଯୋଗକୁ ସେହିଦିନ ପଦ୍ମାବତୀଙ୍କ ସ୍ୱାମୀ ଗାଁରେ ପହଞ୍ଚିଲେ । ବଡ଼ଭାଇ କହିଲେ ଛାର କାମତୁଣୀଟା ଯୋଗୁ କ'ଣ ଘର ଭାଂଗିବ ? ସାଧବୀକୁ ଘରୁ ବିଦା କରି ଦେବା । ସାଧବୀ କନା କତରା ଜାକି ବିଦା ହେବାକୁ ସଜ ହେଲା । ପଦ୍ମାବତୀ ସ୍ୱାମୀଙ୍କୁ କହିଲେ ମୋ ପାଇଁ ପୋଲାଗଉଡ଼ ବନ୍ଦୋବସ୍ତ କର ମୁଁ ବାପଘରକୁ ଯିବି । କିହିଁକି ? ଏ ହଳଦୀ ବଟା, ଘୁଅ କନା ଧୁଆ ଅନିଭବ କାମ ମୁଁ କରି ପାରିବି ନାହିଁ । ମୋତେ ମଧ୍ୟ ବିଦା କର । ସାଧବୀ ବିଦା ହେବା ପ୍ରସ୍ତାବ ରଦ୍ଦ ହେଲା ।

କ୍ରମେ ସାଧବୀ ବୟଃପ୍ରାପ୍ତ ହେଲା । ମଙ୍ଗରାଜ ବ୍ରଜସୁନ୍ଦରଙ୍କ ଔରସରେ ତାଙ୍କର ପୁଅଟିଏ ମଧ୍ୟ ହେଲା । ପୁଅର ନାମ ହେଲା ବିଦୁର । ବିଦୁର ଅକାଳରେ ବାହୁଡ଼ିଗଲା । ସାଧବୀ ପଦ୍ମାବତୀଙ୍କ ପୁଅଝିଅଙ୍କୁ ଲାଳନପାଳନ କରି ସନ୍ତାନ ସୁଖ ଅନୁଭବ କଲେ । ପଦ୍ମାବତୀ ସାନ ପୁଅ ନବକୃଷ୍ଣ ଜନ୍ମ ହେବା ପରେ ପରେ ତାଙ୍କ ସ୍ୱାମୀ ଗୋକୁଳାନନ୍ଦ ଚୌଧୁରୀ ଗୁରୁତର ଅସୁସ୍ଥ ହେବାରୁ ପଦ୍ମାବତୀ ତାଙ୍କ ପରିଚର୍ଯ୍ୟାରେ ରହିଲେ । ସାଧବୀ ପାଳିଲେ ନବକୃଷ୍ଣଙ୍କୁ । ନବକୃଷ୍ଣ ବିଭା ହେବା ପୂର୍ବରୁ ସାଧବୀ ଧାଈଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବରୁ ଧାଈ ମୋ ବୋଉକୁ ଗୋଟାଏ ସୁନା ମୋହର ଦେଇ କହି ଯାଇଥିଲେ - ଟୁଆଁ ବିଭା ହେଲେ ବୋହୂକୁ ଏ ମୋହରଟି ଦେବ । ବୋଉ ଯେତେବେଳେ ଖୁଡ଼ିଙ୍କୁ ଧାଈଙ୍କ କଥା କହି ସେ ମୋହରଟି ଦେଲେ – ଦାଦା ଆଖି ଛଳଛଳ ହୋଇଗଲା ।

ମୋ ମାଆର ଏଗାରଟି ସନ୍ତାନ ମଧ୍ୟରୁ ମାତ୍ର ଚାରୋଟି ସନ୍ତାନ ଜୀବିତ ଥିଲେ । ଧାଈ ସେ ସମସ୍ତଙ୍କୁ ଏବଂ ପରବର୍ତ୍ତୀ କାଳରେ ଆମକୁ ମଧ୍ୟ ସାଇତି ଥିଲେ । କିନ୍ତୁ ମୋ ମାଆର ଶାଶୁ ମୋ ପ୍ରପିତାମହୀ କୋକିଳ ଦେବୀ ଥିଲେ ଅଠରଟି ସନ୍ତାନର ଜନନୀ । ସମସ୍ତେ ଜୀବିତ, ସୁସ୍ଥ ଓ ସୁଦର୍ଶନ ଥିଲେ । ସେଥିପାଇଁ କୋକିଳ ଦେବୀ ଅଠର ନଳା ସଂଗେ ସଂଗାତ ବସିଥିଲେ । ଏହି ଅଠରଟି ସନ୍ତାନଙ୍କ କୃତିନାମା ଲେଖିଲେ ତାହା ବାଇବେଲ୍‌ର ଓଲଡ଼୍ ଟେଷ୍ଟାମେଣ୍ଟ ପରି (ପୁରାତନ ନିୟମ) ହୋଇଯିବ ।

କୋକିଳ ଦେବୀ ଓ ବ୍ରଜସୁନ୍ଦର ମଂଗରାଜଙ୍କ ତୃତୀୟ ପୁତ୍ର ଗୋକୁଳାନନ୍ଦ ଚୌଧୁରୀ ମୋର ପିତାମହ । ଗୋକୁଳାନନ୍ଦ ଯେ ପ୍ରିୟଦର୍ଶନ ଥିଲେ ତାହାର ବିଶ୍ୱାସଯୋଗ୍ୟ ପ୍ରମାଣ ମିଳିଛି । ଥରେ ମୋର ପିତାମହୀ ପଦ୍ମାବତୀ ଓ ମୋର ଜଣେ ଦୂରସଂପର୍କୀୟ ଭଉଣୀ ସତ୍ୟଭାମାଙ୍କ ମଧ୍ୟରେ ନିଜ ନିଜ ସ୍ୱାମୀଙ୍କ ରୂପରଙ୍ଗକୁ ମୂଳ କରି ଘୋର

ତର୍କବିତର୍କ ହେଲା । ଉଭୟେ ନିଜ ସ୍ୱାମୀକୁ ଅଧିକ ସୁନ୍ଦର ପ୍ରତିପନ୍ନ କରିବାକୁ ଆପ୍ରାଣ ଚେଷ୍ଟା ଚଳାଇଥାନ୍ତି । 'ଯେଝା ଘର ତାକୁ ମଥୁରାପୁରୀ, ଯେଝା ସ୍ୱାମୀ ତାକୁ ଶ୍ରୀକୃଷ୍ଣ ପରି' ଆଦି ଯେତେ ଆପ୍ତ ବାକ୍ୟ କହି ସେ ଦୁହିଁକୁ ଶାନ୍ତ କରିବା ପାଇଁ ଉଦ୍ୟମ ହେଲା, ସବୁ ବ୍ୟର୍ଥ ହେଲା । ଏହି ସମୟରେ ସ୍ୱନାମଧନ୍ୟ ଶ୍ରୀ ସାରଙ୍ଗଧର ଦାସ ଆସି ପହଞ୍ଚିଲେ । ସେ 'ଲଣ୍ଡା ଦେହୁରୀ' ଛଦ୍ମନାମରେ 'କୃଷକ'ରେ ଲେଖାଲେଖି କରୁଥାନ୍ତି ଏବଂ ଆମ ଘରେ ରହୁଥାନ୍ତି । ତାଙ୍କୁ ପଚରା ହେଲା -ଆପଣ ଗୋକୁଳାନନ୍ଦ ଚୌଧୁରୀଙ୍କୁ ଦେଖିଛନ୍ତି ? ସେ ହଁ ଭରିଲେ । ସେ ଦେଖିବାକୁ କେମିତି ଥିଲେ ? ସାରଙ୍ଗଧର ବାବୁ କହିଲେ – ମୁଁ ସ୍କୁଲରେ ପଢ଼ିବା ବେଳେ ଥରେ କୌଣସି ମୋକଦ୍ଦମା ସଂକ୍ରାନ୍ତରେ ଗୋକୁଳାନନ୍ଦ ଚୌଧୁରୀ ଢେଙ୍କାନାଳ ଯାଇଥିଲେ । ଗୋକୁଳାନନ୍ଦ ଚୌଧୁରୀ ଆସିଛନ୍ତି ଏ ଖବର ରାଷ୍ଟ୍ର ହେବା ମାତ୍ରେ ତାଙ୍କୁ ଦେଖିବା ପାଇଁ ଆମ ସ୍କୁଲରେ ଛୁଟି ହୋଇଗଲା । ଦୋକାନ ବଜାର ବନ୍ଦ ହୋଇ କଚିରୀରେ ଦଶରା ଭିଡ଼ ହୋଇଗଲା । ସାରଙ୍ଗଧର ବାବୁଙ୍କ ବକ୍ତବ୍ୟ ଶୁଣି ମୋ ଭଉଣୀର ମୁହଁଟି ମଉଳି ଗଲା । ଏହି କାଞ୍ଚନ ବିନିନ୍ଦୀ ଦେହବର୍ଣ୍ଣର ଅଧିକାରୀ ପଞ୍ଝୁହତା ମର୍ଦ୍ଦ ଗୋକୁଳାନନ୍ଦଙ୍କ ପତ୍ନୀ ପଦ୍ମାବତୀ ଥିଲେ କାଳୀ । ପଦ୍ମାବତୀ ନିଜେ କହନ୍ତି ହାତଗଣ୍ଠି ପଡ଼ିଲାବେଳେ ଜେଜେ ଜାଣିଲେ କନିଆ କାଳି । ବିଭାଘର ତ ସରିଲା । ବରକନିଆ ଘରକୁ ଆସି ବନ୍ଦାପନା ଆଦି ସରିବା ପରେ ଜେଜେ ଦହିହାଣ୍ଡି ଉପରେ ଘୋଡ଼ା ହୋଇଥିବା କଂସା ବେଲାଟା ରାଗରେ ଅଗଣାକୁ ଫିଙ୍ଗି ଦେଲେ । ମା କହେ- କୋକିଳ ଦେବୀ ପୁଅର ପିଠି ଆଉଁଷି ବୋଧ ଦେଇ କହିଲେ କାଳୀ ହେଲା କଣ ହେଲା ? --କନ୍ୟା କାଳୀ ତା ପାଦକୁ ଚାହାଁ – ଲକ୍ଷ୍ମୀବନ୍ତ ପାଦ । ରୂପ କେତେଦିନ ? ଇତ୍ୟାଦି ଇତ୍ୟାଦି । ପ୍ରକୃତରେ ମାଆର ବର୍ଣ୍ଣ କଳା ହୋଇଥିଲେ ହେଁ କୁଞ୍ଚ କୁଞ୍ଚିଆ କେଶ ଦାମ ଗଭୀର ଭାବପୂର୍ଣ୍ଣ ଢ଼ଳ ଢ଼ଳ ଆଖି, ନହକା ଗଢ଼ଣ ସର୍ବୋପରି ପାଦ ଦୁଇଟିର ଆକର୍ଷଣ ଥିଲା । ଯାହାକୁ କହନ୍ତି ପଦପଲ୍ଲବ । ତାହାଛଡ଼ା ମା ଅତ୍ୟନ୍ତ ବୁଦ୍ଧିମତୀ ଓ ଗୃହକର୍ମ ନିପୁଣା ଥିଲା । ପାନଭଙ୍ଗା, ଚିତା ଲେଖା, ପିଠାପଣା, ରନ୍ଧାବଢ଼ାରେ ସେ ନିପୁଣା ଥିଲା । ୧୮୬୯ରେ ମା' ର ଜନ୍ମ । ଯେ ଯୁଗରେ ଝିଅମାନେ ପାଠ ପଢ଼ିବା କଥା ତାଙ୍କ ଘରେ କେହି ଭାବୁ ନ ଥିଲେ । କିନ୍ତୁ ମା ନିଜେ ବୁଦ୍ଧି ଖଟେଇ ଲେଖିପଢ଼ି ଶିଖିଥିଲା । ତା ସାନଭାଇ ହରେକୃଷ୍ଣ ମହାନ୍ତି ଚାହାଳୀରୁ ଫେରିଲେ ମା ତାକୁ କହେ ଆଜି କଣ ପଢ଼ିଛୁ ଏ କାନ୍ଥରେ ଲେଖିଦେ । ସେ ସେଦିନ ପଢ଼ିଥିବା ପାଠକୁ କାନ୍ଥରେ ଲେଖି ଦିଅନ୍ତି । ମା ଓ ତାର ଜଣେ କାଲୁଣୀ ଖୁଡ଼ି ତାକୁ ଦେଖି ଅକ୍ଷର ଶିଖନ୍ତି । ଏହିପରି ଭାବରେ ପଢ଼ି ଶିଖି ମା ଏକାଦଶସ୍କନ୍ଦ, କାର୍ତ୍ତିକମାହାତ୍ମ୍ୟ, ମାଘ ମାହାତ୍ମ୍ୟ ଆଦି ପଢ଼ି ପାରୁଥିଲେ । ତାର

ସ୍ମରଣ-ଶକ୍ତି ଏତେ ପ୍ରଖର ଥିଲା ଯେ ଆମେ ତାକୁ ଏକାଦଶସ୍କନ୍ଧ ଶୁଣାଇବା ବେଳେ ପଢ଼ାରେ ଝୁଣ୍ଟିଲେ ବା ଅଶୁଦ୍ଧ ଉଚାରଣ କଲେ ସେ ତୁରନ୍ତ ତାକୁ ସଂଶୋଧନ କରି ଦେଉଥିଲା । ସେହିପରି ମୋର ପିଉସୀମାନଙ୍କୁ ପଶମବୁଣା ଶିଖାଇବାକୁ ଯେଉଁ ଖ୍ରୀଷ୍ଟିଆନ୍ ଶିକ୍ଷୟିତ୍ରୀ ଆସୁଥିଲେ ତାଙ୍କ ଠାରୁ ସେ ବୁଣାବୁଣି ମଧ ଶିଖି ଯାଇଥିଲା । ମା କୁଶଳୀ ଚିତା ଲେଖାଳୀ ହୋଇଥିବାରୁ ଖଡ଼ିରେ ଭଲ ଚିତ୍ର ଆଙ୍କିପାରୁଥିଲା । ଆମମାନଙ୍କୁ ଚିତ୍ର ସାହାଯ୍ୟରେ ଅକ୍ଷର ପରିଚୟ କରାଇବାଟା ଥିଲା ତାର ନିଜର ଶିକ୍ଷା ପ୍ରଣାଳୀ । ବିଲେଇ ବା ମାଛଟାଏ ଚିତ୍ର କରି ଦେଇ ସେ ତା ତଳେ ବିଲେଇ ବା ମାଛ ଲେଖି ଆମକୁ ସେ ଅକ୍ଷର ଚିହ୍ନାଇ ଥିଲା ।

ଶିଷ୍ଟାଚାର ବା ସଣ୍ଢଣା ବାବଦରେ ସେ ଅତ୍ୟନ୍ତ ସଚେତନ ଥିଲା । ହସିବା ବେଳେ, ଖାଦ୍ୟ ଚୋବାଇବା ବେଳେ ଶବ୍ଦ ହେଲେ, ବୟସ୍କଙ୍କ କଥାବାର୍ତ୍ତାରେ ଯୋଗ ଦେଇ କଥା କହିଲେ, ଚଉକୀରେ ବସି ଗୋଡ଼ ହଲେଇଲେ ଏବଂ ଏହିପରି ଅସଣ୍ଢଣା କାରବାର ଦେଖିଲେ ସେ ତୁରନ୍ତ ସ୍ପଷ୍ଟଭାଷାରେ ତାହା କହି ଦେଉଥିଲା । ସେଥିପାଇଁ 'ଚୌଧୁରୀଆଣୀ'ଙ୍କ ଉପସ୍ଥିତିରେ ସମସ୍ତେ ସନ୍ତ୍ରସ୍ତ ହୋଇ ରହୁଥିଲେ ।

ପରବର୍ତ୍ତୀକାଳରେ ତାର ଦୁଇ ପୁଅ ଯେତେବେଳେ ଚାକିରୀ ଓ ପାଠପଢ଼ା ଛାଡ଼ି ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ଭୋଗବିଳାସକୁ ତୁଚ୍ଛ କରିଦେଲେ ସେତେବେଳେ ସେ ପିଲାଦିନୁଁ ଯେପରି ସୁଖସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଜୀବନ କଟାଇଥିଲା, ସେପରି ଚଳଣି ଆଉ ରହିଲା ନାହିଁ । ସେତେବେଳେ ଦୁଇ ପୁଅଙ୍କ ମୁହଁକୁ ଚାହିଁ ସେ ଅକାତରରେ ନିଜର ବ୍ୟକ୍ତିଗତ ସୁଖସୁବିଧାକୁ ଜଳାଞ୍ଜଳି ଦେଲା ।

ମୋର ମନେ ପଡୁଛି - ୧୯୩୪ରେ ଯେତେବେଳେ କାଜୀପାଟଣା ଠାରେ ଗାନ୍ଧିଜୀ ହରିଜନ କାମ ପାଇଁ ଚାନ୍ଦାମାଗିଲେ ଉପସ୍ଥିତ ଜନତାଙ୍କ ପାଖରେ ଯାହାର ଯାହାଥିଲା ସବୁ ଗାନ୍ଧିଜୀଙ୍କ ଆଗରେ ଲୋକେ ଥୋଇ ଦେଲେ । ସେତେବେଳେ ମୋ ମା ସେଠାରେ ଉପସ୍ଥିତ ଥିଲା । ଗାନ୍ଧିଜୀ ମୋ ମାଆକୁ ହସି ହସି କହିଲେ, 'ତୁମେ ମୋତେ କ'ଣ ଦେବ ?' ମା ଦୃପ୍ତ କଣ୍ଠରେ କହିଲା, ''ମୋର ତ ତୁମେ ସର୍ବସ୍ୱ ନେଇ ସାରିଛ । ପୁଅ ନେଲ, ବୋହୂ ନେଇ, ନାତି ନାତୁଣୀ ନେଲ ମୋର ଆଉ କ'ଣ ବାକି ଅଛି ଯେ ତୁମକୁ ଦେବି ?'' ଗାନ୍ଧିଜୀ ହସି ଉଠିଲେ ।

ପଦ୍ମାବତୀଙ୍କ ପୁଅ ବୋହୂ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିବା ହେତୁ ପୁଲିସ ବାରମ୍ବାର ତାଙ୍କ ଘର ଖାନତଲାସ କରୁଥିଲେ । ପଦ୍ମାବତୀ କିନ୍ତୁ ତାଙ୍କ ଭାଗବତ

ଘରଦ୍ୱାରରେ ଛିଡ଼ା ହୋଇ ରହି ପୁଲିଶଙ୍କୁ ଦୃଢ଼ସ୍ୱରରେ କହୁଥିଲେ -ଏ ଘର ମୋର । ଏ ଘରେ ପୁଲିଶ ପଶି ପାରିବେ ନାହିଁ । ପୁଲିଶ ମଧ୍ୟ ଉଚ୍ଚବାଚ ନକରି ଫେରି ଯାଉଥିଲେ । ସେହି ଭାଗବତ ଘରେ ରଖା ହେଉଥିଲା ବୁଲେଟିନ ଓ ବୁଲେଟିନ ଛପା ହେଉଥିବା ସାଇକ୍ଲୋଷ୍ଟାଇଲ ମେଶିନ୍ । ଏ ବ୍ୟକ୍ତିତ୍ୱ ସେହି ସାଧବୀ ବିବାଦେ ପ୍ରକରଣରୁ ଆତ୍ମପ୍ରକାଶ କରିଥିଲା । ପଦ୍ମାବତୀଙ୍କର ଏକମାତ୍ର ବାସନା ଥିଲା - କିପରି ପୁଅ ଦୁହିଁଙ୍କ ଆଗରେ ତାଙ୍କର ଜୀବ ଯିବ ।

୧୯୪୨ର ଭାରତଛାଡ଼ ଆନ୍ଦୋଳନରେ ଯେତେବେଳେ ଗୋଟିଏ ଏଗାର ବର୍ଷର ନାତି ଓ ତିନିବର୍ଷର ନାତୁଣୀ ଛଡ଼ା ଆଉ ସମସ୍ତେ ବନ୍ଦୀଶାଳାରେ ରହିଲେ, ସେମାନଙ୍କ ସଂଗେ ପନ୍ଦର ଦିନରେ ଥରେ ସୁଦ୍ଧା ମୁଲାକାତ କରିବାକୁ ଭାରତ ସରକାର ନିଷେଧାଜ୍ଞା ଜାରୀ କଲେ ସେତେବେଳେ ଏହି ସ୍ୱାଭିମାନୀ ମହିଳା ବଡ଼ଲାଟଙ୍କୁ ଲେଖିଲେ ଯେ ମୋ ପରିବାରର ସବୁ ସାବାଳକ, ଏପରିକି ଚଉଦ ବର୍ଷର ନାବାଳକ ସଦସ୍ୟଙ୍କୁ ବନ୍ଦୀ କରି ତାଙ୍କ ସହିତ ଦେଖା କରିବାକୁ ନ ଦେବାଟା କେତେଦୂର ସମୀଚନ !

ମାଆର ଏହି ବ୍ୟକ୍ତିତ୍ୱ ଦ୍ୱାରା ଆଖର ଜେଜେ ପ୍ରଭାବିତ ହୋଇଥିଲା ପରି ମନେ ହୁଏ । କାରଣ ମା ଖେଳିବାକୁ ସୁଖ ପାଏ ବୋଲି ଜେଜେ କୋର୍ଟ କଚେରୀ କାମ ସତ୍ତ୍ୱେ ରାତିରେ ମା ସଂଗେ କଉଡ଼ି ଖେଳୁଥିଲେ । ଭୂଇଁରେ କଉଡ଼ି ଦାନ ପଡ଼ିଲେ ଶବ୍ଦ ଶୁଭିବ ଏବଂ ଏହା ନିନ୍ଦାର କଥା ହେବ ବୋଲି ଶୋଇବା ଶେଜ ଉପରେ ଦାନ ପକାଉଥିଲେ । ଦୁହେଁ ଘର ଟମ୍‌ଟମ୍‌ରେ ବସି ବନ୍ଧୁବାନ୍ଧବଙ୍କ ଘରକୁ ବୁଲିଯିବା କଥା ମଧ୍ୟ ଶୁଣାଯାଏ ।

ଜେଜେ ଓକିଲ ଭାବରେ ଯଶ ଅର୍ଜିଥିଲେ । ଓକିଲାତି ସଂଗେ ସଂଗେ ଉତ୍କଳ ସମ୍ମିଳନୀ, କରଣ ସଭା, ସ୍ୱତନ୍ତ୍ର ଉତ୍କଳ, ପ୍ରଦେଶ ଆନ୍ଦୋଳନରେ ମଧ୍ୟ ମୁଣ୍ଡ ଖେଳଉଥିଲେ । ନିଜର ଗୁରୁପ୍ରତିମ ମଧୁସୂଦନ ଦାସଙ୍କ ପରି ପ୍ରତିଭାଧାର ବ୍ୟକ୍ତିଙ୍କର ବିରୋଧ କରିବାକୁ ମଧ୍ୟ ପଛଉ ନ ଥିଲେ । ଲେଜିସ୍‌ଲେଟିଭ୍ କାଉନ୍‌ସିଲର ପ୍ରାର୍ଥୀ ହେବାଠାରୁ ଆରମ୍ଭ କରି ବଙ୍ଗାଳୀ ବିରୋଧୀ ଆନ୍ଦୋଳନ ଯାଏ ନାନାପ୍ରକାର କାର୍ଯ୍ୟକ୍ରମ ସହିତ ସେ ଜଡ଼ିତ ଥିଲେ । ତାଙ୍କର ବ୍ୟକ୍ତିତ୍ୱର ଏହି ଦିଗଟା ତାଙ୍କ ସାନ ପୁଅ ନବକୃଷ୍ଣଙ୍କ ମଧ୍ୟରେ ପରିସ୍ଫୁଟ ହୋଇଥିଲା । ପୁଣି ସେ ସନ୍ତାନ ବିୟୋଗରେ କାତର ହୋଇ ଚରଣ ଦାସ ବାବାଜୀଙ୍କ ଗହଣରେ ରହି ନାମ ସଂକୀର୍ତ୍ତନ ଆଦି ଭକ୍ତିମାର୍ଗର ପଥିକ । ମାଆ ମଧ୍ୟ ସନ୍ତାନ ହରା ହୋଇ ଭାଗବତ ଗୋସାଇଁଙ୍କୁ ଆଶ୍ରା କଲା । ବାପା ମା'ଙ୍କର ସେହି ଭକ୍ତିପ୍ରଧାନ ନିଷ୍ଠାପର ବ୍ୟକ୍ତିତ୍ୱର ଆଭାସ ତାଙ୍କ ବଡ଼ପୁଅଙ୍କ ମଧ୍ୟରେ ମିଳୁଥିଲା । ପୁତ୍ରର ପିତା ହେବାର

ଗୌରବ ହାସଲ କରିବା ପରେ ଜେଜେଙ୍କ ବିଳାସ ବ୍ୟସନରେ ଆଉ ବନ୍ଧବାଡ଼ ରହିଲା ନାହିଁ । ମାଆ କହେ ଜେଜେ କନିକାରାଜାଙ୍କ ସାଙ୍ଗରେ ସାଙ୍ଗ ହୋଇ ସୁରାପାନ କଲେ ଏବଂ ଆନୁଷଙ୍ଗିକ ସ୍ଖଳନ ମଧ୍ୟ ତାଙ୍କର ହେଲା । ମା ରାଗିଲା, ରୁଷିଲା । ପାରିବାରିକ ଜୀବନରେ ଅଶାନ୍ତିର ଝଡ଼ ବହିଲା । ମାଆର ଶାଶୁ କୋକିଳ ଦେବୀ ମାଆକୁ ବୋଧ ଦେଲେ - ସେଇଟା ଯୁଆଡ଼େ ଇଛା ସିଆଡ଼େ ଯଉ, ଯାହା ଅପଚାର କରୁ, ଦାରିଆ ହେଉ ଦାସୀଆ ହେଉ ତୋ ଗର୍ଭରୁ ଯେ ଜନ୍ମ ହେବ ସେହି ଏ କୁଳ ରଖିବ, ତା ମୁହଁରେ ପାଣି ଦେବ । ମାଆର ମନ ଏହି ଯୁକ୍ତିକୁ ଗ୍ରହଣ କରିଗଲା ।

ଜେଜେ ନିଜେ ପରିଣତ ବୟସରେ ଉଚ୍ଛୃଙ୍ଖଳ ଜୀବନ ବିତାଇବାକୁ ଆରମ୍ଭ କରିଥିଲେ ହେଁ ପିତା ଭାବରେ ନିଜର ସନ୍ତାନଙ୍କ ପ୍ରତି ସତତ ସତର୍କ ଦୃଷ୍ଟି ରଖିଥିଲେ । ପିଲାଏ ସୂର୍ଯ୍ୟାସ୍ତ ପୂର୍ବରୁ ଘରକୁ ଫେରିବେ, କୋମଳ ଶେଯରେ ଶୋଇବେ ନାହିଁ ଆଦି କଟକଣା ସେ ପିଲାଙ୍କ ଉପରେ ଜାରି କରୁଥିଲେ । କୋର୍ଟ କଚେରୀ କାମ ସତ୍ତ୍ୱେ ସେ ନିୟମିତ ପୁଅ ଦୁହିଁଙ୍କୁ ରାତିରେ ପଢ଼ାଉ ଥିଲେ । ପୁଅମାନେ ନିତି ବାପାଙ୍କୁ ଇଂରାଜୀ ଖବର କାଗଜ ଶୁଣାଇ ରୁଷ ଜାପାନ ଯୁଦ୍ଧ ଭଳି ବିଶେଷ ଖବର ସଂବନ୍ଧରେ ଆଲୋଚନା କରି ପିଲାଙ୍କ ସାଧାରଣ ଜ୍ଞାନର ବିକାଶ କରାଇବା ପ୍ରତି ମଧ୍ୟ ସେ ଦୃଷ୍ଟି ଦେଉଥିଲେ । ବହୁ ସନ୍ତାନର ବିୟୋଗ ହେତୁ ପୁତ୍ରସନ୍ତାନ ଦୁଇଟି ତାଙ୍କର ନୟନର ମଣି ସଦୃଶ ହୋଇଥିଲେ । ବଡ଼ପୁଅ ଗୋପବଂଧୁ ଅତି ଗେଲବସରରେ ବଢ଼ିବା ସତ୍ତ୍ୱେ ବାରବର୍ଷ ଆଠମାସ ବୟସରେ ମ୍ୟାଟ୍ରିକୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବୃତ୍ତି ପାଇଥିଲେ । ସାନପୁଅଙ୍କ କୃତିତ୍ୱ ଦେଖିବା ପାଇଁ ତାଙ୍କର ଆୟୁଷ ନ ଥିଲା ।

୧୯୧୫ ମସିହା ଜାଗର ବାସିଦିନ ଜେଜେଙ୍କର ଦେହାନ୍ତ ହେଲା । ମାଆ କୌଣସି ଓଷାବ୍ରତ କଲେ ସକାଳୁ ସେ ଗାଧୋଇ ଆସିବା ବେଳକୁ ଘର ବାରଣ୍ଡା ଆଦି ଧୁଆ ହେଉଥିଲା । ଜାଗର ଦିନ ଧୁଆ ହୋଇ ଖସଡ଼ା ହୋଇଥିବା ପାହାଚରୁ ଓହ୍ଲାଇବା ବେଳେ ଜେଜେ ପଡ଼ିଗଲେ । ଡ଼ାକ୍ତରୀ ପରୀକ୍ଷାରେ ରକ୍ତଚାପ ବୃଦ୍ଧି ଘଟିଥିବାର ଜଣା ପଡ଼ିଲା । ସୁରା ପାନ ନିଷିଦ୍ଧ ହେଲା । ମାତ୍ର ଜେଜେ ତାହା ମାନିଲେ ନାହିଁ । ଜେଜେଙ୍କ ଖାସ୍ ଚାକର ଶନିଆ ତାଙ୍କୁ ଗାଧୋଇବା ପୂର୍ବରୁ ତେଲ ଲଗାଇଦେବା ବେଳେ ସେ ଶନିଆକୁ ବଲବଲ କରି ଚାହିଁବାରୁ ଶନିଆ ହୁରି ପକେଇଲା । ମାଆର ବରାଦ ଅନୁସାରେ ତାଙ୍କୁ ଗାଧୁଆ ଘରୁ ଧରାଧରି କରି ଆଣି ପିଣ୍ଡାରେ ଚୌକୀରେ ବସାଇ ଦିଆ ହେଲା ବୋଉ ବିଭା ହୋଇ ଆସିଲା ଦିନୁ ଜେଜେ ସକାଳେ ବୋଉ ହାତ ତିଆରୀ ସନ୍ଦେଶ ଓ

ଚା ଖାଉଥିଲେ । ମା କହିବାରୁ ବୋଉ ଜେଜେଙ୍କୁ ସନ୍ଦେଶ ଖୁଆଇ ଦେଲା । କାଳେ ତଣ୍ଟିରେ ସନ୍ଦଶ ଲାଗିଯିବ ବୋଲି ବୋଉ ମନେ ମନେ ଡ଼ରୁଥାଏ । ସନ୍ଦେଶ ଖୁଆଇ ଦେଉ ଦେଉ ଜେଜେ ଅଚେତ ହୋଇଗଲେ । ଡ଼ାକ୍ତର ଆସିଲେ, ଆତ୍ମୀୟସ୍ୱଜନ ଜମା ହେଲେ - ଚେତା ଆଉ ଫେରିଲା ନାହିଁ । ଜେଜେଙ୍କର ଏ ଅବସ୍ଥା ଦେଖି ସାନ ପୁଅ ନବକୃଷ୍ଣ ଦାଣ୍ଡକୂଅ ଭିତରକୁ ଡ଼େଇଁ ପଡ଼ିଲେ । ସେଠାରେ ଥିବା ଲୋକେ ତାଙ୍କୁ ଉଦ୍ଧାର କଲେ । ଜେଜେଙ୍କ ମୃତ୍ୟୁ ପରେ ବୋଉ ଅପା ପ୍ରଭୃତି ଯାଇ ଦଣ୍ଡବତ ହୋଇ ଆସିଲେ । ଚୌଧୁରୀ ଘରର ଗୋଟିଏ ଅଧ୍ୟାୟ ସମାପ୍ତ ହେଲା ।

ଜେଜେଙ୍କର ଘୋଡ଼ା ଗାଡ଼ି ଦୁଇଟି ଥିଲା । ଟମ୍‌ଟମ୍‌ରେ ଯେଉଁ ବଡ଼ ଘୋଡ଼ାଟା ଯୋଚା ହୋଇଥିଲା, ବୋଉ କହେ ସେ ଜେଜେଙ୍କର ପ୍ରିୟ ଘୋଡ଼ା ଥିଲା । ବୋଉ ପ୍ରଭୃତି କୁଆଡ଼େ ଯିବାର ହେଲେ ସେହି ଘୋଡ଼ା ଯୋଚା ହୋଇ ଗାଡ଼ି ଦାଣ୍ଡକୁ ଆସି ବୋଉ ପ୍ରଭୃତି ବସି ସାରିଲେ କୋଚମ୍ୟାନ୍ ଯେତେ ପ୍ରକାରେ ଅଡ଼େଇଲେ ଘୋଡ଼ା ମୋଟେ ଚାଲୁ ନ ଥିଲା । ଜେଜେ ନିଜେ ଆସି ତାକୁ ଆଉଁଷି ଗେଲ କରି ଦେଲେ ସେ ଚାଲୁଥିଲା । ଜେଜେଙ୍କ ମୃତ୍ୟୁ ପରେ ସେ ଘୋଡ଼ା ଦାନାପାଣି ଛାଡ଼ି ଦେଇ ଜେଜେଙ୍କ କଚିରୀ ଘର ଆଡ଼କୁ ଚାହିଁ ରହିରହି ମରିଗଲା । ଅନ୍ୟ ଘୋଡ଼ା ଓ ଗାଡ଼ି ବିକ୍ରି କରି ଦିଆଗଲା ।

ଜେଜେ ବୋଉକୁ ଅତ୍ୟନ୍ତ ସ୍ନେହ କରୁଥିଲେ । ପୂର୍ବେ ବିଭାଘର ସରିଲେ ଶଶୁର ଘର ଲୋକେ ବୋହୁର ଖାଦ୍ୟ ରୁଚି ବୋହୂର ବାପମାଆଙ୍କୁ ପଚାରି ବୁଝୁଥିଲେ । ତଦନୁସାରେ ଜେଜେ ପଚାରି ବୁଝିଥିଲେ ଯେ ବୋଉ ପ୍ରତିଦିନ ଘର ମରା ଘିଅ ଖାଏ ଏବଂ ସେ ଏକା ଖାଇ ପାରେ ନାହିଁ । କାହାରି ସାଂଗରେ ବସି ଏକା ଥାଳିରେ ଖାଏ । ସେଥିପାଇଁ ବୋଉକୁ ଜେଜେ ସାଙ୍ଗରେ ଖୁଆଉ ଥିଲେ । ଶଶୁର ବୋହୂ ଏକା ଥାଳିରେ ଖାଇବା ଅନାଚାରର କଟୁ ସମାଲୋଚନା ସତ୍ତ୍ୱେ ମୃତ୍ୟୁ ପର୍ଯ୍ୟନ୍ତ ଶଶୁର ବୋହୂ ଏକାଠି ଖାଉଥିଲେ । ଚଉଠି ବେଦିରେ ଶଶୁର ଘର ପକ୍ଷରୁ ବୋହୂର ନାମକରଣ ହେବା ବିଧି ଅନୁସାରେ ଜେଜେ ବୋଉ ନାଆଁ ଦେଇଥିଲେ 'ଗଳାମାଳୀ' । ଅଜା ସରକାରୀ ହାକିମ ଥିଲେ । ବିହାର ବଙ୍ଗଳା ଓଡ଼ିଶାରେ ବଦଳି ଚାକିରି । ପରିବାର ସଦାବେଳେ ସାଙ୍ଗରେ । ପିଲାଏ କେମିତି ସ୍କୁଲରେ ପାଠ ପଢ଼ନ୍ତେ ? ପିଲାଏ ଘରେ ପାଠ ପଢ଼ିଲେ, ଗାଉଣା ବାଜଣା, ସିଲେଇ ଶିଖିଲେ । ଖାନସାମା ମୋଗଲାଇ ରନ୍ଧା ଶିଖାଇଲେ । ପୂଜାରି ମଣ୍ଡାରାଇ, କାଞ୍ଜି ଶିଖାଇଲେ । ବୋଉକୁ ଧ କହିଲେ ସେ କାମୁଡ଼ି ଦେବା ପିଲା । ଶିକ୍ଷୟିତ୍ରୀ କହନ୍ତି - ଝିଅଟି ରମା ନୁହେଁ ମନୋରମା ।

ଜେଜେଙ୍କ ମୃତ୍ୟୁ ପରେ ବୋଉର ବୟସ ଯେପରି ହଠାତ୍ ବଢ଼ିଗଲା । ସେ ଭାଉଜ ବୋହୂର ଭୂମିକାରୁ ମାଆର ଭୂମିକାକୁ ଡେ଼ଇଁ ପଡ଼ିଲା । ଅପା କହେ ଜେଜେଙ୍କ ମୃତ୍ୟୁ ପରେ ବୋଉ ଦାଦା ଓ ଅପା ଦୁଇଟି ପିତୃ ଶୋକକାତର ବାଳକ ବାଳିକାଙ୍କୁ ନିଜର ଦୁଇ ପାଖରେ ଶୁଆଇଲା । ରାତିସାରା ଦୁହିଁକୁ ସେ ଆଉଁସୁ ଥାଏ। ବୋଉର ଜନ୍ମ ୧୮୯୯ ମସିହା ଡ଼ିସେମ୍ବର ତିନି ତାରିଖରେ । ପନ୍ଦର ଷୋଳ ବର୍ଷ ବୟସରେ ତା ଠାରେ ଏ ବୁଦ୍ଧି ବିବେଚନା ଦେଖି ଆତ୍ମୀୟ ସ୍ୱଜନ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ଅଜାଙ୍କର ପୁଅ ନ ଥିଲା । ରମା ଉମା ଦୁଇଟି ଝିଅକୁ ସେ ସଯତ୍ନରେ ପାଳିଥିଲେ । ପାଠପଢ଼ା, ସିଲେଇ,ଖାନସାମା ରଖି ରୋଷେଇ, ପାଶ୍ଚାତ୍ୟ ଶିଷ୍ଟାଚାର – ଘରଣୀ ହେବା ପାଇଁ ଯାହା ଜାଣିବା ଦରକାର ସବୁ ଜାଣିଥିଲେ । ମଧୁ ବାରିଷ୍ଟର ଘର ଝିଅ । ସେଠି ରାଜାରାଜୁଡ଼ା କାରବାର । ସେଠି ଜୋତା ମୋଜା, ଚଉକୀ ଟେବୁଲ । ଶାଶୁଘରେ ଗୋବର ପକେଇ ଅଗଣା ଧୁଆହୁଏ ।

ଜେଜେଙ୍କ ମୃତ୍ୟୁ ପରେ ମା ଘରଚଳାଇବା ବାବଦରେ ସମ୍ପୂର୍ଣ୍ଣ ଉଦାସୀନ ହୋଇଗଲା । ଅଗତ୍ୟା ବୋଉ ହାଂଗ ଧରିଲା । ଆମର ବଡ଼ ଅପା ଓ ପିଉଷା ହେଲେ ତାର ପରାମର୍ଶ ଦାତା । ବାପା ସେତେବେଳକୁ ଆଇ.ସି.ଏସ ପଢ଼ିବାକୁ ବିଲାତ ଯିବାକୁ ପ୍ରସ୍ତୁତ ହେଉ ଥାଆନ୍ତି । ପାସପୋର୍ଟ ମିଳିସାରି ଥାଏ । ଜେଜେଙ୍କ ଆକସ୍ମିକ ମୃତ୍ୟୁ ହେତୁ ବାପା ମଧ ବିଲାତ ଯିବା ଉଚ୍ଚାଭିଳାଷକୁ ବିସର୍ଜନ ଦେଇ କଲିକତାକୁ ଆଇନ୍ ପଢ଼ିବାକୁ ଗଲେ ।

ସାଧାରଣତଃ ଲୋକଙ୍କର ଧାରଣା ରହିଛି ଯେ ପାଠପଢ଼ା ବେଳେ ବିଭା ହେଲେ ଆଉ ପାଠରେ ମନ ଲାଗେ ନାହିଁ । କିନ୍ତୁ ବାପା ଏକ ବ୍ୟତିକ୍ରମ ଥିଲେ । ସେ ବିବାହ ପରେ ଆଇନ୍ ପରୀକ୍ଷା ଦେଲେ ଏବଂ ବଶ୍ୱବିଦ୍ୟାଳୟରେ ପରୀକ୍ଷାରେ ସର୍ବୋଚ୍ଚ ସ୍ଥାନ ଅଧିକାର କଲେ । ସାନ ଭାଇଙ୍କର ପାଠପଢ଼ା, ସାନ ଅପାର ବିଭାଘର ଆଦି ସାଂସାରିକ ଦାୟିତ୍ୱ ତୁଲାଇବା ପାଇଁ ବାପା ଆଇନ୍ ପାଠ ସମ୍ପୂର୍ଣ୍ଣ ନ କରି ଡେ଼ପୁଟୀ ମ୍ୟାଜିଷ୍ଟ୍ରେଟ ହେଲେ ୧୯୧୭ରେ । ମାତ୍ର ଚାରିବର୍ଷ ଚାକିରୀ କରିବା ପରେ ବନ୍ୟାଜନିତ କ୍ଷୟକ୍ଷତିର ହିସାବ ବାବଦରେ ଉପରିସ୍ଥ ହାକିମଙ୍କ ସଂଗେ ତାଙ୍କର ମତଭେଦ ହେବାରୁ ନିଜର ବିବେକକୁ ସରକାରୀ ଚାକିରୀ ନିକଟରେ ବଳି ଦେବା ପାଇଁ ସକ୍ଷମ ହୋଇ ନ ପାରି ଚାକିରୀ ଛାଡ଼ି ଦେଲେ । ବାପାଙ୍କର ଏହି ପଦକ୍ଷେପକୁ ବୋଉ ପୂର୍ଣ୍ଣପ୍ରାଣରେ ସମର୍ଥନ କଲା । ବାପା ଯେତେବେଳେ ପ୍ରଶ୍ନ ଉଠାଇଲେ ଯେ ଚାକିରୀ ଛାଡ଼ିଲେ ସଂସାର କ୍ଷେତ୍ରରେ ଯେଉଁ ଦ୍ୱନ୍ଦ୍ୱ ଉପୁଜିବ ତାର ସମ୍ମୁଖୀନ ହେବାକୁ ବୋଉ ପ୍ରସ୍ତୁତ କି ? ସେତେବେଳେ ବୋଉ ତାଙ୍କୁ ନିର୍ଭର ଜବାବ ଦେଲା ଯେ ଘରର ହାନିଲାଭ ବାବଦରେ ବୋଉ ବାପାଙ୍କୁ ଆଦୌ କିଛି କହିବ ନାହିଁ ।

ପିଲାଦିନୁଁ ବାପା ସ୍ୱାମୀ ବିବେକାନନ୍ଦ ଆଦିଙ୍କ ବିଚାର ଦ୍ୱାରା ପ୍ରଭାବିତ ହୋଇ ନିଜ ଜୀବନରେ କିଛି ମନୁଷ୍ୟୋଚିତ କାର୍ଯ୍ୟ କରିବାର ଉଚ୍ଚାଭିଳାଷ ପୋଷଣ କରିଥିଲେ । ବୋଉ ମଧ୍ୟ ଖୁଦୀରାମଙ୍କ ଫାଶି ଓ ମଧୁବାବୁଙ୍କ ଆନ୍ଦୋଳନର ପ୍ରଭାବରୁ ଦେଶ ଓ ଦଶର କଲ୍ୟାଣ ପାଇଁ ଜୀବନ ଉତ୍ସର୍ଗ କରିବାର ସ୍ୱପ୍ନ ଦେଖୁଥିଲେ । ଉଭୟେ ବିବାହ ପରେ ପ୍ରଥମ ମିଳନରେ ହିଁ ନିଜର ଜୀବନ ଆଦର୍ଶ ନିରୂପଣ କରିଥିଲେ 'ପରୋପକାର' । ତେଣୁ ବାପା ଚାକିରୀ ଛାଡ଼ିବା ପରେ ସଂସାର କ୍ଷେତ୍ରରେ ଯେଉଁ ପରିବର୍ତ୍ତନ ଦେଖାଦେଲା ଉପରୋକ୍ତ ଲକ୍ଷ୍ୟ ଆଖି ଆଗରେ ଥିବାରୁ ସେ ଅନାଟନ ବୋଉକୁ ଅସହ୍ୟ ବୋଧ ହେଲା ନାହିଁ ।

ଦାଦା ଥିଲା ଅତି ସୁକୁମାରିଆ । କୋରା ନଡ଼ିଆରେ ଯଦି ସଢ଼େଇରେ ଲାଗିଥିବା ନାଲି ଚୋପା ଟିକିଏ ଦିଶିଯିବ ଦାଦା ସେ ନଡ଼ିଆ କୋରା ଖାଇବାକୁ ଅସୁଖ ପାଇବ । ସରୁ ଚକୁଳି ଯଦି ସେ ଖାଇବ ତାକୁ ବୋଉ କିମ୍ବା ମାଆ କରିବେ ଯେପରି ଫୁଙ୍କି ଦେଲେ ଉଡ଼ିଯିବ । ଆଷାଢ଼ ମାସରେ ଖମାର ଘରୁ ପଣସ ଆସିଲେ ଦାଦା 'ହଇଜା ଘରେ ପଶିଲା' କହି ଏପରି ଉଚ୍ଛନ୍ନ ହେବ ଯେ ସେ ପଣସକୁ ସାଇ ପଡ଼ିଶାରେ ବାଣ୍ଟିବା ଯାଏ ସୁଦ୍ଧା ତର ସହିବ ନାହିଁ । ରାତିରେ ପାଠ ପଢ଼ା ସାରି ଦାଦା ଠିକ୍ ବେଳରେ ଖାଇବାକୁ ଆସିବ । ଯଦି କୌଣସି ଦିନ ଦାଦା ପଢ଼ା ସରିବା ବେଳକୁ ରୋଷେଇ ସରି ନ ଥିବ ମା' ବୋଉକୁ କହିବ -ତୁ ଯା ତା ସାଙ୍ଗରେ କ୍ୟାରମ୍ ଖେଳି ତାକୁ ବାଆଁରେଇ ଦେ । ଦାଦା ଭଜା, ସନ୍ତୁଳା ଖାଇଦିଏ ଭାତ ଖାଇବାକୁ ଭଲ ପାଏ ନାହିଁ । ମା ବୋଉକୁ ଶିଖାଇ ଦିଏ ସେ ହାତରେ ଭଜା ସନ୍ତୁଳା ଖାଉ ଖାଉ ତୁ ତାକୁ ଚାରିଗୁଣ୍ଡା ଭାତ ଖୋଇ୍ ଦେ । ସେଇ ଦାଦା ଯେତେବେଳେ ରେଭେନ୍ସା କଲେଜରେ ବି.ଏ ପଢୁଥିବା ବେଳେ ପାଠଛାଡ଼ି ଅସହଯୋଗ ଅନ୍ଦୋଳନରେ ମିଶିଲା -ସେତେବେଳେ ଅଳକାଶ୍ରମରେ ରହି ପଞ୍ଚୁବର୍ଣ୍ଣ ଚାଉଳ ଭାତ ଓ ପାଣିକଖାରୁ ସିଝାକୁ ଅମ୍ଳାନ ବଦନରେ ଗଳାଧଃକରଣ କଲା ।

ମୋତେ ଆଠମାସ ହୋଇଥାଏ ଅପା ବିଭା ହୋଇଗଲା । ଅପା ମା'ର କୋଳପୋଛା ଝିଅ । ଜେଜେ ତାକୁ କୋଳରେ ଶୁଆନ୍ତି, ଅପା ବାରମ୍ବାର ବିଛଣା ତିନ୍ତାଇ ଦିଏ ବୋଲି ତା ନାଆଁ ହେଲା ବେଙ୍ଗୁଲୀ । ବେଙ୍ଗୁଲୀ ମାଟିରେ ଚାଲିବ ନାହିଁ ମାଆ ଯେତେବେଳେ ପୁତ୍ରକନ୍ୟା ପରିବେଷ୍ଟିତ ହୋଇ କାଠଜୋଡ଼ି କୂଳ ଘରକୁ ୧୯୦୮ରେ ଆସିଲା କଚିରୀ ଘର ପାହାଚ ତଳକୁ ପକ୍କା କରାଗଲା । ଥରେ ଅପା ଖେରସ ଯାଇଥିଲା । ଖେରସରେ ଆମର ମାଟି ଘର । ମାଟି ଘର ଦେଖି ମୁଁ ଗାଇପଶା ଘରେ ରହିବି ନାହିଁ ବୋଲି ରାହାଧରି କାନ୍ଦିଲା । କାଙ୍ଗାଳୀ ବଡ଼ବାପାଙ୍କର ଗମ୍ଭୀରୀ ଘର ମାଟିକାନ୍ଥରେ ଚୂନ ଧଉଳା

ହୋଇଥିଲା । ସେହି ଘରକୁ ନେଇଗଲାରୁ ସେ ତୁନି ହୋଇ ଶୋଇଲା । ରାତି ପାହିଲା ମାତ୍ରେ ଘୋଡ଼ାଗାଡ଼ିରେ କଟକ ଚାଲିଆସିଲା । ଜେଜେ ମା ଖେରସକୁ ଘୋଡ଼ାଗାଡ଼ିରେ ଯାଆସ କରୁଥିଲେ । ସେହି ବେଙ୍ଗୁଲି ଚଉଦକୁଲାଟର ମଧୁସୂଦନ ପଟ୍ଟନାୟକଙ୍କ ଘରକୁ ବୋହୂ ହୋଇ ଯାଇ ଡ଼ିବି ଆଲୁଅରେ ଚଳିଲା, ମାଟି ଘରେ ଶୋଇଲା, ଝପର ଝପର ବର୍ଷାରେ ବି ପାଣି କାଦୁଅରେ ପଶି ତୋଟାମାଳକୁ ଯାଇ ନିତ୍ୟକର୍ମ ସାରିଲା । ତାର ପ୍ରଥମ ସନ୍ତାନ ସମ୍ଭାବନା ବେଳେ ଆମ ଧାଈ ଯେତେବେଳେ ପୋଖତି ଘର ପାଇଁ ନାନା ସାମଗ୍ରୀ ନେଇକରି ଗଲେ ସେ ଗାଁର ପୁରୁଖା ସ୍ତ୍ରୀ ଲୋକେ କହିଲେ – ଧାନ ଗୌଣିଏରେ ବୋହୂଟାଏ ଆସିବ । ଏତେ ଖୋଜାଲୋଡ଼ା ଗୋଟାଏ କ'ଣ ? ଅପା ଶାଶୁଘରର ଗୋଟିଏ ବିଶେଷତ୍ୱ ହେଉଛି ତାଙ୍କ ଘରେ କୌଣସି ପୁରୁଷଙ୍କର ପ୍ରଥମ ସ୍ତ୍ରୀ ଜୀବିତ ନ ଥିଲେ । ସେଥିପାଇଁ ମା ଅପାର ଦୀର୍ଘଜୀବନ ପାଇଁ ଭାଗବତ ଗୋସାଇଁଙ୍କ ପାଖରେ ମୁଣ୍ଡ ପିଟୁ ଥିଲା । ଅପାର ବଡ଼ପୁଅ ରବି ଆଇ.ଏ.ଏସ୍ ପଦରେ ରହିଥିଲା । ଦ୍ୱିତୀୟ ପୁଅ ସୁରେନ୍ଦ୍ର (ନ କହିଲେ ଭଲ) ଥିଲା ଆକାଶବାଣୀରେ, ତୃତୀୟ ପୁଅ ହେମେନ୍ଦ୍ର ହେଲା ଡ଼ାକ୍ତର, ଚତୁର୍ଥ ଜିତେନ୍ଦ୍ର ଦର୍ଶନ ଶାସ୍ତ୍ରୀ ହୋଇ ବିଦେଶରେ ରହିଲା । ପଞ୍ଚମ ସମରେନ୍ଦ୍ର ଯୋଗ ଦେଲା ବିମାନ ବାହିନୀରେ । ଝିଅ ଅନସୂୟା ବାମନ ଚରଣ ଦାସଙ୍କୁ ଓ ବିଜୟଲକ୍ଷ୍ମୀ ମତିରଞ୍ଜନ ଦାସଙ୍କୁ ବିବାହ କଲେ । ଅପା ଚଉଦକୁଲାଟରୁ ଆସିଲେ ଆମ ଘରେ ଫୁଲ ଗୁନ୍ଥେ । ବଂଗଳା ଗପ ବହି ପଢ଼େ । ବେଳେବେଳେ କାର୍ପେଟ୍ ବୁଣେ ।

ଅପା ବିଭା ହୋଇଗଲା ବେଳେ ପିଉସାଙ୍କ ପାଠ ପଢ଼ା ସରି ନ ଥିଲା । ଏମ୍.ଏ ଓ ଆଇନ ପାଠ ସାରି ପିଉସା ମୁନସଫ ହେଲେ ଓ ପରେ ହାଇକୋର୍ଟ ଜଜ୍ ହେଲେ । ପିଉସା ଚାକିରୀ କରିବା ପରେ ଅପା ତାଙ୍କ ସଂଗେ ବିହାର ଓଡ଼ିଶାରେ ବୁଲିଲା । ପିଉସାଙ୍କ ଦେହାନ୍ତ ପରେ ସେ କିଛି ବର୍ଷ ବୋଉ ସାଙ୍ଗରେ ସର୍ବୋଦୟ କାମ, ରିଲିଫ୍ କାମ ମଧ କଲା । କଟକରେ ଶିଶୁ ବିହାରକୁ ସମୃଦ୍ଧ କରିବାରେ ତାର ଅବଦାନ ଅବିସ୍ମରଣୀୟ ।

ମଝିଆଁ ଅପା ଗୁଲଅପାଙ୍କ ପାଇଁ ବାପମାଆ ପୁତ୍ରଶୋକ ପାଶୋରି ଥିଲେ । ଗୁଲଅପା ଥିଲେ ଜେଜେଙ୍କର ଅତି ଗେହ୍ଲା । ତାଙ୍କୁ ଆକଟ କରିବା ନିଷିଦ୍ଧ ଥିଲା । ତେଣୁ ତାଙ୍କର ଆହାର ବିହାରରେ ସେ ସଂପୂର୍ଣ୍ଣ ସ୍ୱାଧୀନତା ଲାଭ କରିଥିଲେ । ତାଙ୍କର ଏହି ସ୍ୱଚ୍ଛନ୍ଦ ବିହାରକୁ ବଜାୟ ରଖିବା ପାଇଁ ଜେଜେ ତାଙ୍କୁ ତଳମାଳର ଜମିଦାରିଆ ଘରେ ବିଭା ଦେଲେ । ତାଙ୍କ ଶାଶୁଘରେ ପଥର କୋଠା, ହାତରେ ସୁନାର ଗଣ୍ଡା ଖଡୁ । ଘିଅ ଦୁଧରେ ଘର ଭାସେ । ପୋଇଲୀ ପରିବାରୀ ପଣ ପଣ । ଅପା କୁଟାଖଣ୍ଡକ ଦିଖଣ୍ଡ କରନ୍ତି

ନାହିଁ । ସନ୍ତାନମାନଙ୍କୁ ପାଳିବାକୁ ଜଣ ପିଛା ଗୋଟିଏ ଲେଖା ପରିବାରୀ । ଆମ ପିଉସା ହେଉଛନ୍ତି ବେଣାହାର୍ ବାଲିକୁଦାର ପରୀକ୍ଷିତ ଦାସଙ୍କ ସାନପୁଅ ରାଘବାନନ୍ଦ ଦାସ । ସେ ବେଶୀ ପାଠ ପଢ଼ି ନ ଥିଲେ । ଲକ୍ଷ୍ମୀ ସରସ୍ୱତୀ ଏକାଠି ରହି ପାରନ୍ତି ନାହିଁ । ପିଉସାଙ୍କର ଅଳ୍ପବୟସରେ କାଳ ହୋଇଗଲା । ରାଙ୍କା ଭାଇ, ଟିମ ଭାଇ, ଦୁଇ ପୁଅ ନାବାଳକ ଥିଲେ । ବୁଲି ଅପା, ଉମା ଅପା, ଚୁନୀ ଅପା, ଅପକ୍ଷେରୀ କେହି ବିଭା ହୋଇ ନ ଥିଲେ । ଅପା ଈଶ୍ୱର୍ ଦାସ ଗୁମାସ୍ତାଙ୍କ ଦ୍ୱାରା ଜମିଦାରୀ ଜମିବାଡ଼ି ଦେଖାଚଖା କରାଇଲେ । ପୁଅଝିଅଙ୍କୁ ବିଭା କଲେ । କିନ୍ତୁ ଏ ଅପା ଆମର ଘରକରଣା ବାବଦରେ ଉଦାସିଆ ଥିଲେ । ପିଉସାଙ୍କ ମୃତ୍ୟୁପରେ ରାମଦାସ ବାବଜୀଙ୍କ ଶିଷ୍ୟା ହୋଇ ଅଧିକାଂଶ ସମୟରେ ଆଖଡ଼ା ଘରେ ରହିଲେ । ଗାଁର ଅଭାବଗ୍ରସ୍ତ ପରିବାରର ରୁଗ୍ଣ ପିଲାଙ୍କୁ ଆଣି ପାଖରେ ରଖି ଜଡ଼ିବୁଟି ଖୁଆଇ ସୁସ୍ଥ କରିବା ଥିଲା ତାଙ୍କର ଧନ୍ଦା । ଆଖଡ଼ା ଘରେ କୀର୍ତ୍ତନ ହୁଏ, ଅପା କୀର୍ତ୍ତନ କରନ୍ତି ।

ସେ କଟକ ଆସିଲେ ସାଂଗରେ ବୋଲକରାଟିଏ ନିଶ୍ଚୟ ଥିବ । ତାଙ୍କର ଠାକୁର ପୂଜା ଚିନ୍ତା ଚଇତନରେ ଅନେକ ସମୟ ଯାଏ । ପାହାନ୍ତାରେ ବିଛଣାରେ ଶୋଇ ଆମେ ଶୁଣୁ ଅପା ବୋଲୁଛନ୍ତି-

ଚନ୍ଦ୍ରନାଚେ ସୂର୍ଯ୍ୟନାଚେ ନାଚେ ଗଗନ ତାରା
ପାତାଳେ ବାସୁକୀ ନାଚେ ବଲେ ଗୋରା ଗୋରା ।

ଅପା ତ ଘରକାମର ଧାର ଧାରନ୍ତି ନାହିଁ । ସେ ନିପୁଣା ଥିଲେ ତାସ ଖେଳରେ । ତାସ ଖେଳୁ ଖେଳୁ ପଟେ ତାସ ଜୋରରେ ପିଟିଦେଇ କହନ୍ତି –'ଏଇଟା ମୋର ଫିରେଇ'' । ଅସୁମାରି ଭୂତଗପ୍ ମଧ ତାଙ୍କୁ ଜଣା । ବାଲିକୁଦାରେ ଭୂତ ସାଲୁ ସାଲୁ । ଭୂତ ମାଛ ଧରେ, ଭୂତ ପାଣି ମଡ଼ାଏ, ଭୂତ ନଡ଼ିଆ ପାରେ ।

ବୋଉ ୧୯୩୦ରେ ଲବଣ ସତ୍ୟାଗ୍ରହ ଉପଲକ୍ଷ୍ୟେ ବାଲିକୁଦାକୁ ଚାନ୍ଦା ଓ ସତ୍ୟାଗ୍ରହୀ ସଂଗ୍ରହ କରିବାକୁ ଗଲା । ଅପା ତାଙ୍କ ହାତରୁ ଆଠଭରି ଓଜନର ସୁନା ବାଲା ଦାନ କରି ଦେଲେ । ଜେଜେଙ୍କ ବଡ଼ଭାଇ ରାଘବାନନ୍ଦ ଚୌଧୁରୀଙ୍କ ଝିଅ ନିଶାମଣି ଅପାଙ୍କ ଶାଶୁ ଘର ସେହି ବାଲି ସାହିରେ । ସେ ଛଅଭରିର ସୁନାଚେନ ବେକରୁ ଖୋଲିଦେଲେ । ତାଙ୍କ ପୁଅ ବୀରଭାଇ ଗୁଲଅପାଙ୍କ ପୁଅ ଟିମ ଭାଇ ସତ୍ୟାଗ୍ରହ କରି ଜେଲ୍ ଗଲେ । ଅପା ମଧ ୧୯୩୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ଖୁଡ଼ିଙ୍କ

ସାଂଗରେ ଭୋଟ ନ ଦେବା ପାଇଁ ପିକେଟିଂ କରି ଗିରଫ ହୋଇଗଲେ । ଖୁଡ଼ୀଙ୍କୁ ଛଅମାସ ସଜା ହେଲା । ଅପାଙ୍କୁ ବାରଘଣ୍ଟା ପୁଲିଶ୍ ଲାଇନ୍‌ରେ ଅଟକ ରଖି ଛାଡ଼ି ଦିଆଗଲା । ଟିମିଭାଇ ଅକାଳରେ ଚାଲିଗଲେ । ଝିଅମାନେ ବିଭା ହୋଇଗଲେ । ଅପା କିଛିଦିନ ମାଆ ପାଖରେ ରହି ମା'ର ଯତ୍ନ ନେଲେ । ମୃତ୍ୟୁର ପୂର୍ବଦିନ ନିଜର ତେଲେଙ୍ଗା ବଜାରସ୍ଥ ଘରକୁ ଯାଇ ସେଇଠି ଦେହ ଛାଡ଼ିଲେ ।

ଆମ ବଡ଼ ଅପା-ମାଗ ଅପା । ମାଆର ଦୁଇଟି ପୁଅ ବାହୁଡ଼ି ଯିବାରୁ ମା ବଡ଼ ଅଧୀର ହୋଇ ପଡ଼ିଲା । ସେଥିପାଇଁ ସାତପୁରା ଗାଁରୁ ତା ନଣନ୍ଦଙ୍କ ଶିଶୁ କନ୍ୟାକୁ ଆଣି ତା କୋଳରେ ଦିଆ ହେଲା । ମଗା ହୋଇ ଆସିଥିଲେ ବୋଲି ଅପାଙ୍କ ନାମ ମାଗୁଣା ସୁନ୍ଦରୀ । ଅପା ସାହେବଜାଦା ବଜାରର ବଳରାମ ଦାସଙ୍କ ଡ଼େପୁଟି ମ୍ୟାଜିଷ୍ଟ୍ରେଟ ବଡ଼ ପୁଅ ଦେବେନ୍ଦ୍ର ନାଥ ଦାସଙ୍କୁ ବିଭା ହୋଇଥିଲେ । ସେ ଅପା ରୂପଗୁଣରେ ନିରୂପମା । ମୋ ବୋଉ ତାଙ୍କର ଅନ୍ଧ ସ୍ତାବକ । ଅପା ବିଭା ହୋଇ ଶାଶୁ ନ ଥିବା ଶାଶୁ ଘରେ ଗୋଡ଼ ଦେବା ମାତ୍ରେ ଶଶୁର ମାତୃହୀନ ଦୁଇଟି ଶିଶୁ ଦେବରଙ୍କୁ ତାଙ୍କ କୋଳରେ ଦେଇ କହିଲେ- ଆଜିଠାରୁ ତୁମେ ଏ ଦୁହିଁଙ୍କ ମାଆ ହେଲ । ଅପା ତାଙ୍କୁ କୋଳରେ ଶୁଆଇ ପାଳିଲେ । ଅପାଙ୍କର ସବୁ କାମ ବ୍ୟବସ୍ଥିତ । ସେ ଜଳଖିଆ ତିଆରି କରି ସାରି ରୋଷଘରୁ ବାହାରି ଆସିବା ପରେ କେହି ସେ ଘରକୁ ଗଲେ ସେ ଘରେ କେହି କିଛି ରନ୍ଧାରନ୍ଧି କରିଛି ବୋଲି ଜାଣି ପାରିବ ନାହିଁ । ଚାବି ସ୍ଥାନରୁ ଚାବି, ପାଣିଗରା ସ୍ଥାନରୁ ପାଣିଗରା କେବେ ହେଁ ସ୍ଥାନଭ୍ରଷ୍ଟ ହୁଅନ୍ତି ନାହିଁ । ମାଲଖାନା ଘରୁ ଅପା ଡ଼ାଲି ଚାଉଳ ତେଲଲୁଣ କାଢ଼ିବା ବେଳେ ଗୋଟିଏ ଦାନା ସୁଦ୍ଧା ତଳେ ପଡ଼େ ନାହିଁ । ତେଣୁ ଜନ୍ଦା ପିମ୍ପୁଡ଼ି ନିରାଶ ହୋଇ ତାଙ୍କ ମାଲଖାନା ଘରକୁ ଯାଆନ୍ତି ନାହିଁ । ସଉଦା ଆସିଥିବା କାଗଜ ଠୋଲା, କାଠପାତ୍ର, ସେ କାଠପାତ୍ର ଉପରେ ଗୁଡ଼ା ହୋଇଥିବା ଝୋଟ ସୁତୁଲି ସୁଦ୍ଧା ଅପା ନିର୍ଦ୍ଦିଷ୍ଟ ସ୍ଥାନରେ ସଜାଡ଼ି ରଖନ୍ତି । ଆମ ବଡ଼ ପିଉସା ଥିଲେ ଏ ବାବଦରେ ତାଙ୍କର ମାର୍ଗଦର୍ଶକ । ପ୍ରତିଦିନ ଖାଇସାରି ଖାଗୁଆ କନା ବନ୍ଧା ହିସାବ ଖାତାରେ ପାହୁଲାରେ ସୁଦ୍ଧା ହିସାବ ଲେଖିବା, ନାନାଜାତିର ନୂଆ ନୂଆ ଜଳଖିଆ ଓ ସିର୍କାଦିଆ ଆଚାର ମୋରବ୍ବା କରିବା ଆଦି ଧନ୍ଦା ତାଙ୍କୁ ବଡ଼ ପିଉସା ଶିଖାଇ ଥିଲେ । ଛଅଫୁଟ୍‌ରୁ କିଞ୍ଚିତ ଅଧିକ ଉଚ୍ଚ ପିଉସା ଥିଲେ ଓକିଲ । କିନ୍ତୁ ପୈତୃକ ସଂପତ୍ତିର ତଦାରଖ, ତାସ୍‌ରେ ପେସେନସ୍ ଖେଳ, ଇଂରାଜୀ ପତ୍ର ପତ୍ରିକା ପାଠରେ ହିଁ ସେ ସମୟ କଟାଉଥିବାର ଦେଖୁ । ଦିବାନିଶି ହାଭାନା ଚୁରୁଟ୍‌ଟିଏ ନିଶ୍ଚୟ ପିଉସାଙ୍କ ମୁହଁରେ ଥିବ । ଗହଳବାଙ୍କ, ବହଳପଡ଼ାରେ ତାଙ୍କର ଆମ୍ବତୋଟା, ଜମିବାଡ଼ି ଥାଏ । ପିଉସା ସେଠାକୁ ମଝେ ମଝେ ଯାଆନ୍ତି ।

ଦିନାକେତେ ଖରାଦିନିଆ ରାସ୍ତା ଖୋଲିଲେ କଟକରୁ ବାଙ୍କିକୁ ପିଉସା ଗୋଟାଏ ହାଫ୍‌ଟନ୍ ବସ୍ ଚଳାଉଥିଲେ । ସେ ବସ୍‌ଟା ଆମର ପୁରୀ ଭ୍ରମଣ, ଖୋର୍ଦ୍ଧା ଉଷ୍ଣପ୍ରସବଣ ଦର୍ଶନ, ବାଙ୍କି ପର୍ଯ୍ୟଟନରେ ମଧ୍ୟ ବ୍ୟବହୃତ ହୁଏ ।

ଅପା ଘରେ ଗୋଟାଏ ବିରାଟ କାଠ ଆଲମାରୀ ଥାଏ । ସେ କାଠ ଆଲମାରୀଟା ଥିଲା ଆମର କଳ୍ପବୃକ୍ଷ, ଆମ ପାଇଁ କେତେବେଳେ ସେଥିରୁ ବିସ୍କୁଟ, କେତେବେଳେ ଖେଳନା, କେତେବେଳେ ଗହଣା ବାହାରି ଆମକୁ ଚମତ୍କୃତ କରିଦିଏ ।

ପିଉସାଙ୍କ ସାନଭାଇ ନିଶୁ ପିଉସା ଥିଲେ ମୁନସଫ୍ । ସାନ ଅପା ଟୁନୀ ଅପା ନିଶୁ ପିଉସାଙ୍କ ସାଙ୍ଗରେ ଚାକିରୀ ସ୍ଥଳରେ ରହନ୍ତି । ସେ କଟକ ଆସିଲେ ଆମର ଭାରି ମଜା, ଟୁନୀ ଅପା ଶିଶୁ ପାଠ୍ୟ ବହି ପଢ଼ିବାକୁ ସୁଖ ପାଆନ୍ତି । ଆମକୁ ସେ ବହି ପଢ଼ିବାକୁ ମିଳେ । ତାଙ୍କ ପୁଅ ଋଷି ଭାଇ କିନ୍ତୁ ରହିଥାନ୍ତି ବଡ଼ ଅପାଙ୍କ ପାଖରେ ।

ଆଉ ଜଣେ ଅପା ଥିଲେ ରତ୍ନମଣୀ ଅପା । ସେ ମାଆର ଦେଢ଼ଶୁର, ଆମ ବଡ଼ ଜେଜେଙ୍କର ପ୍ରଥମ ସ୍ତ୍ରୀଙ୍କ ଝିଅ । ମା ବିଭା ହୋଇ ଆସିଲା ବେଳକୁ ରତ୍ନମଣି ଅପାକୁ ଆଠବର୍ଷ ଖଣ୍ଡେ ହୋଇଥାଏ । ସେ ମାଆକୁ ଆଦରି ଯାଇ ଆଉବୋଉ ଡ଼ାକିଲା । ମା ଭାତଗାଳିଲା ବେଳେ ରତ୍ନମଣି ଅପା ଠାକୁରଙ୍କୁ ଜୁହାର ହୋଇ କହନ୍ତି, ‘‘ହେ ଠାକୁର ! ମୋ ଆଉବୋଉ ଭାତ ଗାଳୁଛି ହାଣ୍ଡି ନ ଫାଟୁ ।’’

ରତ୍ନମଣି ଅପା ଚାଟରାରେ ଦୁର୍ଗାଚରଣ ମହାପାତ୍ରଙ୍କୁ ବିଭା ହୋଇଥିଲେ । ତାଙ୍କର ଚାରିପୁଅଙ୍କ ମଧ୍ୟରୁ ଭାଗୀରଥି ମହାପାତ୍ର ଖ୍ୟାତିସମ୍ପନ୍ନ ଥିଲେ । ତାଙ୍କରି ବୋହୂ ଉତ୍କଳବନ୍ଧ୍ୟା ସରଳା ଦେବୀ । ରତ୍ନମଣି ଅପା ଅଳ୍ପ ବୟସରେ ଚାଲିଗଲେ । ଆମ ପରିବାରର କ୍ଷେତ୍ରମଣି ଅପାକୁ ସେ ପିଉସା ପୁଣି ବିଭା ହେଲେ ।

ଆମ ବଡ଼ଜେଜେ ରାଘବାନନ୍ଦ ଚୌଧୁରୀ ତାଙ୍କ ଭଣଜାକୁ ତେଣ୍ଡୋକୁଡ଼ାରୁ ପୁଅ କରି ଆଣିଥିଲେ । ତାଙ୍କର ନାମ ଭିକାରୀ ଚରଣ । ପରେ ତାଙ୍କର ଦୁଇ ପୁଅ ହେଲେ । ସନୁ ବଡ଼ବାପା ଚିରରୁଗ୍ଣ କିନ୍ତୁ ଭୋଜନବିଳାସୀ ଥିଲେ । କଟକ ଆସିଲେ ଆମକୁ ଆଳୁବୋଖରା, ବାଦାମ ଆଦି ଖୁଆନ୍ତି । ମଧୁ ବଡ଼ବାପା ସୁସ୍ଥ ସବଳ କିନ୍ତୁ ଅଳପ ବୟସରେ ତାଙ୍କର କାଳ ହୋଇଗଲା । ବଡ଼ବାପାମାନେ କଟକ ଆସିଲେ ବୋଉ ତାଙ୍କୁ ଆଡ଼ ହୁଏ । ମୋତେ କୁହେ ଯା ବଡ଼ବାପାଙ୍କୁ କହିବୁ ବୋଉ ଦଣ୍ଡବତ ହେଉଛି । ଏହାଶୁଣି ବଡ଼ବାପାମାନେ ବୋଉକୁ କଲ୍ୟାଣ କରନ୍ତି । ସାନଜେଜେ ପରମାନନ୍ଦ ଚୌଧୁରୀଙ୍କର ଗୋଟିଏ ପୁଅ-ଗୋବିନ୍ଦ ଦାଦା । ସେ ପିଉସୀମାନଙ୍କ ନାମ ଚଞ୍ଚଳା,

ଜେମା, ଛାୟା । ଆଉ ଜଣେ ଜେଜେ ବରହି ଜେଜେ –ବ୍ରହ୍ମାନନ୍ଦ ଚୌଧୁରୀ । ତାଙ୍କ ପୁଅ ଧଡ଼ିଆ ଦାଦା ବିଚିତ୍ରାନନ୍ଦ ବି.ଏସ.ସି. ପଢୁଥିବା ବେଳେ ପାଠଛାଡ଼ି ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ସାନଦାଦା ଅଚ୍ୟୁତାନନ୍ଦ ଗାଁରେ ରହୁଥିଲେ । ରମି ଅପା, ଚନୀ ଅପା ତାଙ୍କ ଝିଅ । ରମି ଅପାଙ୍କ ସ୍ୱାମୀ ମାଗୁ ପିଉସା – ମାଗୁଣୀ ଚରଣ କାନୁନଗୋ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ମୋଟ ଉପରେ ଚଉଧୁରୀ ଘର ବନ୍ଧୁବାନ୍ଧବ ଜଗତ୍‌ସିଂହପୁର ସବ୍‌ଡ଼ିଭିଜନରେ ଏପରି ବିଛେଇ ହୋଇ ରହିଛନ୍ତି ଯେ ସେ ଇତିବୃତ୍ତ ଲେଖିଲେ ପଢ଼ିବାକୁ ଧୈର୍ଯ୍ୟ ରହିବ ନାହିଁ । କିନ୍ତୁ ଏ ସମସ୍ତଙ୍କର ନାମ ଧାମ ପରିଚୟ ମୋ ବୋଉର ଜିଭ ଅଗରେ ଥିଲା ।

ଆମ ପାଞ୍ଚ ଜେଜେଙ୍କ ମଧ୍ୟରୁ ଜଣେ ଜେଜେ ବାଳକୃଷ୍ଣ ମଙ୍ଗରାଜ ପୁଅ ହୋଇ ଯାଇଥିଲେ । ସେ ନିଃସନ୍ତାନ ଥିବା ହେତୁ କାଙ୍ଗାଳୀ ବଡ଼ବାପାଙ୍କ ପରିବାରରୁ ରାମ ଦାଦାଙ୍କୁ ପୁଅ କରିଥିଲେ । ଏହି ଜେଜେ ଢ଼େଙ୍କାନାଳ ଗଡ଼ରେ ଚାକିରୀ କରିଥିଲେ ବୋଲି ଆମେ ତାଙ୍କୁ ଢ଼େଙ୍କାନାଳ ଜେଜେ ଡ଼ାକୁଥିଲୁ ।

ବାପା କହୁଥିଲେ ଆମ ମୂଳଘର ଥିଲା ଝଙ୍କଡ଼ରେ । ଆମେ ଶୁଦ୍ରମୁନି ଶାରଳାଦାସଙ୍କର ବଂଶଧର । ଆମ ପଦବୀ ପରିଡ଼ା ଥିଲା । ପରିଡ଼ାରୁ ପରିଜା, ପରିଜାରୁ ମଂଗରାଜ, ମଂଗରାଜରୁ ଆମେ ଚୌଧୁରୀ ହୋଇଛୁ । ଦାଦା କହୁଥିଲା ବ୍ରାହ୍ମଣ, ବାରିକ, ରଜକ ଆଦିଙ୍କ ପରି କରଣ ଗୋଟିଏ ଜାତି ନୁହେଁ । ଅନ୍ୟ ସବୁ ଜାତିର ଜାତିସଭା ଅଛି, କରଣଙ୍କର ଜାତି ସଭା ନାହିଁ । ଯେ ମନ କରିବ ସେ କରଣ ହୋଇ ପାରିବ । କରଣ ଗୋଟାଏ ପେଷା । ଆମ ଜେଜେ କିନ୍ତୁ ନିଜକୁ ପକ୍‌କା କରଣ ମଣୁଥିଲେ । ଚାଟରାର ଶ୍ରୀକୃଷ୍ଣ ମହାପାତ୍ରଙ୍କ ଝିଅ ବିଭାଘର ଉପଲକ୍ଷେ ଭିକାରୀଚରଣ ପଟ୍ଟନାୟକ କରଣ ଜାତିକୁ ବ୍ୟଙ୍ଗ କରି ଯେଉଁ କବିତା ଲେଖିଥିଲେ ତାହା ବିବାହ ସଭାରେ ବରଯାତ୍ରୀଙ୍କ ମଧ୍ୟରେ ବଣ୍ଟା ହେବାରୁ ଜେଜେ ବିବାହ ସଭାକୁ ବର୍ଜନ କରି ଚାଲି ଆସିଲେ । ସେ ବିଭାଘରେ ଏହି କବିତାକୁ ମୂଳ କରି ବହୁତ ଗଣ୍ଡଗୋଳ ହୋଇଥିଲା । ସେ ପଦ୍ୟର ନମୁନା ହେଉଛି ।

କରଣ ଘରର ଢ଼ମ
ଉଖୁଡ଼ା ହାଣ୍ଡିକ ଛଅଣା କଉଡ଼ି
ଗୋଟିଯାକ କୋଟିକମ
ଯାନ ଯଉତୁକ ମାନ

ଯାହା ଦେଉଥିବ ଜଗତ୍ର ପେଢ଼ିଟି

କେଭେ ନ କରିବ ସାନ ।

ବୋଉ କହିବା ଅନୁସାରେ ବୋଉ ବାପଘର ମଧ୍ୟ କରଣ ନୁହଁନ୍ତି । ତାଙ୍କର କୃଷିନାମାରେ ପୂର୍ବପୁରୁଷଙ୍କ ନାମ ରହିଛି ମଣିମଲ୍ଲ । ପରବର୍ତ୍ତୀ କାଳରେ ମଣିମଲ୍ଲଙ୍କ ବଂଶଧର ନିଜ ନାମର ଆଗରେ ପଛରେ ଚୌଧୁରୀ ଓ ଦାସ ଦୁଇଟା ଇଞ୍ଜିନ୍ ଜୋଡ଼ିଲେ । ବୋଉର ପିତାମହଙ୍କର ଦୁଇପୁତ୍ର ଦୁଇକନ୍ୟା । ବଡ଼ ପୁଅ ମଧୁସୂଦନ ଖ୍ରୀଷ୍ଟଧର୍ମ ଗ୍ରହଣ କରି ଖ୍ରୀଷ୍ଟଧର୍ମୀ କନ୍ୟା ବିଭା ହୋଇଥିଲେ । ସେ ନିଃସନ୍ତାନ ଥିଲେ । ସାନପୁଅ ଗୋପାଳବଲ୍ଲଭ କୁମୁଡ଼ା ଜୟପୁରର(ମାହାଙ୍ଗା ଥାନା) ନନ୍ଦକିଶୋର ଦାସଙ୍କର ବଡ଼ଝିଅ ନିଶାମଣିଙ୍କୁ ବିଭା ହୋଇଥିଲେ । ନିଶାମଣିଙ୍କ ଅକାଳ ବିୟୋଗ ପରେ ସେ ତାଙ୍କ ଭଉଣୀ ବସନ୍ତ କୁମାରୀଙ୍କୁ ବିଭା ହେଲେ । ଗୋପାଳବଲ୍ଲଭଙ୍କ ବାପା ଚୌଧୁରୀ ରଘୁନାଥ ଦାସ ଓକିଲ ଥିଲେ । ତାଙ୍କ ଗାଁ ସତ୍ୟଭାମାପୁରରୁ କଟକକୁ ସେ ସପରିବାରେ ଆସୁଥିଲେ ଓକିଲାତି କରିବାକୁ । ତାଙ୍କ ସ୍ତ୍ରୀ ଗାଁରେ ବୁଢ଼ୀ ଚୌଧୁରାଣୀ ନାମରେ ଖ୍ୟାତ ଥିଲେ । ସେ ଏକପ୍ରକାରେ ସତ୍ୟଭାମାପୁର ଗାଁର ଅଭିଭାବିକା ଥିଲେ କହିଲେ ଚଳେ । କାହାପାଇଁ ପୁରୁଣା ଚାଉଳ ଦରକାର କାହା ଘରେ ପଥି ରାନ୍ଧିବାକୁ କେହି ନାହିଁ, କାହାର ମୁହଁକୁ କିଛି ରୁଚୁ ନାହିଁ ସେ ଆଚାର ଲୋଡୁଛି ଆଦି କଥା ବୁଝି ଯାହାର ଯାହା ଲୋଡ଼ା ତାକୁ ତାହା ଯୋଗାଇ ଦେଉଥିଲେ । କିନ୍ତୁ ଚୌଧୁରୀ ଓ ଚୌଧୁରିଆଣୀଙ୍କ ଘରକରଣା ବ୍ୟାପାରରେ ସବୁବେଳେ ମତଭେଦ ହେଉଥିଲା । ସେଥିପାଇଁ ଦୁହିଁଙ୍କର ଧୋବା ଭଣ୍ଡାରୀ ପୁରୋହିତ ଅଲଗା ଅଲଗା ନିଯୁକ୍ତ ହୋଇଥିଲେ । ପୁଣି ପୁଅ ଦୁଇଟି ମଧ୍ୟ ଭାଗବଣ୍ଟା ହୋଇ ବଡ଼ପୁଅ ମା ଭାଗରେ ସାନପୁଅ ବାପ ଭାଗରେ ପଡ଼ିଲେ । ମୋ ଆଈ କହୁଥିଲେ ସେ ଘରକୁ ବୋହୂ ହୋଇଗଲା ବେଳକୁ ଯେତେ ଦାସଦାସୀ ଥାଆନ୍ତୁ ପଛକେ ଶାଶୁଙ୍କ ଅଇଣ୍ଠା ଥାଳି ବୋହୂ ଉଠାଇନେବା ବିଧି ଚଳୁଥିଲା । ବୋହୂ ଶାଶୁଙ୍କ ଠିଆ ପୀଢ଼ା ପାଖରେ କରପତ୍ର ଯୋଡ଼ି ହାଜର ରହିଥିଲେ ହେଁ ତାଙ୍କ ଶାଶୁ ଖାଇସାରି ତୁରନ୍ତ ତଳେ ପଡ଼ିଥିବା ଅଇଣ୍ଠା ଗୋଟାଇବା ଆରମ୍ଭ କରି ଦେଉଥିଲେ । ତାଙ୍କ ପୁଅ ତ ଖ୍ରିସ୍ତାନ୍ । ଏ ପୁଅ ବୋହୂତ ଚୌଧୁରୀଙ୍କର । ତାଙ୍କର ବୋହୂ କାହିଁ ଯେ ଅଇଣ୍ଠା ଉଠେଇବ ? ଆଈ ପ୍ରତିଦିନ ତାଙ୍କ ହାତରୁ ଅଇଣ୍ଠା ବାସନ ଛଡ଼ାଇ ନେଉଥିଲେ । ଏହିପରି ଘୋର ମତଭେଦ ସତ୍ତ୍ୱେ ଚୌଧୁରାଣୀ ଚୌଧୁରୀଙ୍କ ଠାପିଢ଼ା ପାଖରେ ନିୟମିତ ଉପସ୍ଥିତ ରହୁଥିଲେ । ପୂଜାରୀ ଭାତ ତରକାରୀ ଆଦି ପରଷନ୍ତି । କ୍ଷୀର ଓ କନ୍ଦ ପରଷନ୍ତି ନିଜେ ଚୌଧୁରାଣୀ ।

ଆଈଙ୍କ୍ ମୁହଁରୁ ଶୁଣିବା କଥା । ଦିନେ ଚୌଧୁରାଣୀ ଗୋଟିଏ ବେଲାରେ ବେଲାଏ ବରଅଠାପରି ଘନ ଆଉଟା କ୍ଷୀର ଆଣି ଚୌଧୁରୀଙ୍କ ଭାତ ଥାଳି ପାଖରେ ଥୋଇଦେଲେ । କ୍ଷୀରର ପରିମାଣ ସବୁଦିନଠାରୁ ଅଧିକ ଥିବାରୁ ଚୌଧୁରୀ ବିରକ୍ତ ହୋଇ କହିଲେ ନିଜେ ଯେମିତି ଖାନ୍ତି ସେମିତି ପରଷୁଛନ୍ତି । ଚୌଧୁରାଣୀ ଥିଲେ ବଡ଼ ବୋଲା । ସ୍ୱାମୀଙ୍କ ଉକ୍ତି ଶୁଣି ନ ପାରି ପାଖରେ ବସି ଖାଉଥିବା ଭଣଜାଙ୍କୁ ପଚାରିଲେ – ମାମୁଁ କଣ କହିଲେ କି ? ଭଣଜା ଟିକିଏ କୌତୁକପ୍ରିୟ ଥିବାରୁ ନିଆଁରେ ଘିଅ ଢ଼ାଳି ଅଗ୍ନିର ତାଣ୍ଡବନୃତ୍ୟ ଦେଖିବାକୁ ସୁଖ ପାଉଥିଲେ । ସେ କହିଲେ – ମାମୁଁ କହୁଛନ୍ତି ମୋ ମନ ଜାଣି କିଏ ଏମିତି ମୋତେ ଖାଇବାକୁ ଦେବ ? ଚୌଧୁରାଣୀ ଏ କଥାଶୁଣି ପାଏ ହେବ ଓଜନର ନବ୍ାତ ଆଣି ସେ କ୍ଷୀରରେ ପକାଇ ଦେଲେ । ଚୌଧୁରୀ ରାଗରେ ତମ ତମ ହୋଇ କ୍ଷୀର ବେଲାଟା ପେଲି ଦେଇ ଖାଇବା ସ୍ଥାନରୁ ଉଠି ଚାଲିଗଲେ ।

ଭଣଜା, ଚାକର ପୁଜାରୀଙ୍କର୍ ସର୍ବୋତ୍ତମ ମନୋରଞ୍ଜନାତ୍ମକ କାର୍ଯ୍ୟକ୍ରମ ଥିଲା ଚୌଧୁରୀ ଚୌଧୁରିଆଣୀଙ୍କ ମଧରେ କଳି ଭିଆଇବା । ଦିନେ ବିହନ ଘର ତଦାରଖ କରି ଚୌଧୁରୀ ଦେଖିଲେ ତୁଳସୀଫୁଲ ଧାନର ବିହନ ପର୍ଯ୍ୟାପ୍ତ ପରିମାଣରେ ନାହିଁ । ସେ ସଂପୃକ୍ତ କୋଠିଆ ଉପରେ ବିରକ୍ତି ପ୍ରକାଶ କରି ବିହନ ଘରୁ ବାହାରିଲା ବେଳେ ବଡ଼ବୋଲା ଚୌଧୁରିଆଣୀ ଭଣଜାଙ୍କୁ ପଚାରିଲେ ମାମୁଁ କଣ କହୁଛନ୍ତି । ଭଣଜା କହିଲେ ମାମୁଁ କହୁଛନ୍ତି ବିହନ ମୁଠାକ ସାଇତିବା କାମ ସୁଦ୍ଧା ସାଆନ୍ତାଣୀଙ୍କ ଦିହାତି ହୋଇ ପାରୁ ନାହିଁ । ଏହା ଶୁଣି ଚୌଧୁରାଣୀ ସାପ ପରି ଗ୍ରୀବା ଟେକି ଫଁ ଫଁ ହୋଇ କହିଲେ – କିଆଁଗୋ ଗୋସେଇଁ ! ମୁଁ କଣ ୟାଙ୍କ ଘରକୁ ବିହନ ସାଇତିବାକୁ ଆସିଛି କି ?

ଏହି ମାଆଙ୍କ ଭାଗରେ ପଡ଼ିଥିବା ବଡ଼ପୁଅ ମଧୁସୂଦନ କାଳକ୍ରମେ ଉତ୍କଳର 'କୁଳବୃଦ୍ଧ' ବୋଲାଇଲେ । ବାପାଙ୍କ ଭାଗର ପୁଅ ଗୋପାଳବଲ୍ଲଭ ଉଦ୍‌ଭିଦ୍ ବିଜ୍ଞାନରେ ଏମ୍.ଏ.ପାସ କରି ଡ଼େପୁଟି କଲେକ୍ଟର ହେଲେ । ସେଇ ଆମର ଅଜା । ଅଜା ସଂଯତ ଚରିତ୍ର ଓ କଡ଼ା ମିଜାଜର ଲୋକ ଥିଲେ । କିନ୍ତୁ ସାହିତ୍ୟ ସଂଗୀତ ଓ ଉତ୍କଳ ସମ୍ମିଳନୀର କାର୍ଯ୍ୟକ୍ରମ ପ୍ରତି ତାଙ୍କର ବିଶେଷ ଅନୁରାଗ ଥିଲା ! 'ଭୀମାଭୂୟାଁ' ଉପନ୍ୟାସ ତାଙ୍କରି କୃତି । ଓଡ଼ିଶାର ସବୁ କବିଙ୍କ ରଚନାକୁ ପ୍ରସଙ୍ଗ ଅନୁସାରେ ଉପସ୍ଥାପନା କରି ସେ ଏକ ଗୀତିନାଟ୍ୟ ମଧ ରଚନା କରିଥିଲେ । ନିତି ଶୋଇଲା ବେଳେ କେହି ଗାୟକ ବା ଝିଅ ଦୁହେଁ ଗୀତ ବୋଲିଲେ ତାହା ଶୁଣି ଶୁଣି ସେ ଶୋଉଥିଲେ । ଓସ୍ତାଦ୍ ଖାନୁ ମିଆଁଥିଲେ ତାଙ୍କର ପ୍ରିୟ ଗାୟକ ।

ଅବ୍ୟବସ୍ଥା ଓ କାର୍ଯ୍ୟରେ ଅବହେଳା ସେ ବରଦାସ୍ତ କରି ପାରୁ ନ ଥିଲେ । ଥରେ ଅଜାଙ୍କ ମଶାରି ଟିକିଏ ଚିରି ଯାଇଥିବାର ଦେଖି ପତ୍ନୀ ନିଶାମଣିଙ୍କୁ ତାହା ମରାମତି କରି ଦେବାକୁ ସେ ବରାଦ କଲେ । ରାତିରେ ମଶାରି ଭିତରେ ଶୋଇ ଦେଖିଲେ ମଶାରି ମରାମତି ହୋଇ ନାହିଁ । ପରଦିନ ସକାଳୁ ସେ ନିଶାମଣିଙ୍କୁ ସତ୍ୟଭାମାପୁର ପଠାଇ ଦେବାକୁ ସୁଆରୀ ଗଉଡ଼ ମଗାଇଲେ । ଏହା ଶୁଣି ନିଶାମଣିଙ୍କ ବାପଘର ଧାଈ ବନ୍ଧବାସେଲିରୁ ବାଙ୍କାବଜାରକୁ ଧାଇଁ ଧାଇଁ ଯାଇ ଗୋପାଳବଲ୍ଲଭଙ୍କ ଶାଶୁଙ୍କୁ ଏ ଖବର ଦେଲେ । ଶାଶୁ ଲାବଣ୍ୟ ଦେଇ ବଗି ଗାଡ଼ିରେ ବସି ତୁରନ୍ତ ଜ୍ୱାଇଁଙ୍କ ଘରକୁ ଆସି ଜ୍ୱାଇଁଙ୍କୁ ପଚାରିଲେ - ତୁମେ ନିଶାମଣି ଉପରେ ଅସନ୍ତୁଷ୍ଟ ହୋଇ ତାକୁ ସତ୍ୟଭାମାପୁର ପଠାଇ ଦେଉଛ ? ଗୋପାଳବାବୁ ହଁ ଭରିଲାରୁ ଶାଶୁ କହିଲେ ନିଶାମଣିକୁ ମୁଁ ତୁମକୁ ବିଭା କରି ଦେଇଛି । ତୁମେ ଯଦି ତାକୁ ନ ରଖି ନ ପାରିବ ତେବେ ତାକୁ ମୋ ପାଖକୁ ପଠାଇଦେବା କଥା । ମ୍ୟାଜିଷ୍ଟ୍ରେଟଙ୍କ ରାୟ ବାତିଲ୍ ହୋଇଗଲା ।

ଗୋଟିଏ କନ୍ୟା ସନ୍ତାନ ଜାତ ହେବା ପରେ ପରେ ନିଶାମଣିଙ୍କର ମୃତ୍ୟୁ ହେଲା । ଝିଅଟିକୁ ମଧୁବାବୁ ଝିଅ କରି ନେଇ ମେମ୍ ନର୍ସ ନିଯୁକ୍ତ କରି ଯତ୍ନରେ ପାଳିଥିଲେ ମାତ୍ର ସେ ବାହୁଡ଼ିଗଲେ । ନିଶାମଣିଙ୍କ ସାନ ଭଉଣୀ ବସନ୍ତକୁମାରୀ ବିବାହ ଯୋଗ୍ୟା ହେଲାରୁ ଗୋପାଳବଲ୍ଲଭ ତାଙ୍କୁ ବିଭା ହେଲେ । ତାଙ୍କର ଦୁଇ ଝିଅ ଉମା ଓ ରମା । ରମା ମୋ ବୋଉ । ଅଜା ବସନ୍ତକୁମାରୀଙ୍କ ଭାଇ ରାଜକିଶୋର ଦାସଙ୍କ ତୃତୀୟ ପୁତ୍ର ଉପେନ୍ଦ୍ର କିଶୋରଙ୍କୁ ପୁଅ କରିଥିଲେ । ମାମୁଁ କହୁଥିଲେ ଦିନେ ସକାଳୁ ଉଠି ସେ ଦାନ୍ତ ଘଷୁଥିଲେ । ବନ୍ଧବାସେଲୀରୁ ଖବର ଆସିଲା - ପିଉସା ଚାଲିଗଲେ, ମୁଖାଗ୍ନି ଦେବାକୁ ଉପବାବୁ ଯିବେ । ଏହି ଅପ୍ରତ୍ୟାଶିତ କର୍ତ୍ତବ୍ୟ ସମ୍ପାଦନ କରିବା ପାଇଁ ତାଙ୍କର ଆଦୌ ମାନସିକ ପ୍ରସ୍ତୁତି ନ ଥିଲା । ସେଥିପାଇଁ ତାଙ୍କ ବାପା ରାଜକିଶୋର ଦାସଙ୍କ ବାବଦରେ ତାଙ୍କ ମନରେ ଗୋଟାଏ ଗଣ୍ଠି ସୃଷ୍ଟି ହୋଇଗଲା ।

ବୋଉର ମାତାମହୀ ଲାବଣ୍ୟ ଦେଇଙ୍କୁ ମୁଁ ଦେଖିଛି । ତାଙ୍କୁ ଆମେ ଜେଜେମା ଡ଼ାକୁଥିଲୁ । ପୁଅ ବୋହୂ ନାତିନାତୁଣୀ ଆତ୍ମୀୟସ୍ୱଜନ ଓ ଆଶ୍ରିତମାନଙ୍କୁ ଘେନି ତାଙ୍କର ବିରାଟ ପରିବାରରେ ସେ ଥିଲେ ସର୍ବମୟୀ କର୍ତ୍ତ୍ରୀ । ବୃଦ୍ଧାବସ୍ଥାରେ ସୁଦ୍ଧା ସେ କେବଳ ଇଙ୍ଗିତରେ ଘର ସଂସାରର ବ୍ୟବସ୍ଥା ରକ୍ଷା କରୁଥିଲେ । ବୋଉର ମାତାମହ ନନ୍ଦକିଶୋର ଦାସ ଡ଼େପୁଟି କଲେକ୍ଟର ଥିଲେ ପରେ ହେଲେ ଗଡ଼ଜାତସମୂହର ସୁପରିନ୍‌ଟେଣ୍ଡେଣ୍ଟ । ଏହି ଦଂପତିଙ୍କ ବିଚାର ଆଧୁନିକ ଭାବାପନ୍ନ ଥିଲା । ଦୁହେଁ ସ୍ତ୍ରୀଶିକ୍ଷାର ପକ୍ଷପାତୀ ଥିଲେ । ତାଙ୍କ ଝିଅ ନିଶାମଣି ଓ ଭକ୍ତକବି ମଧୁସୂଦନଙ୍କ ଝିଅ ବାସନ୍ତୀ ୧୮୮୧ରେ ଭର୍ଣ୍ଣାକୁଲାର

ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏ ଦୁହେଁ ପ୍ରଥମ ଓଡ଼ିଆ ଝିଅ ଭର୍ଣ୍ଣାକ୍ୟୁଲାର ପରୀକ୍ଷାରେ ବସିଥିଲେ । ଘରେ ଖ୍ରୀଷ୍ଟିଆନ୍ ଶିକ୍ଷୟିତ୍ରୀ ନିଯୁକ୍ତ କରି ଝିଅମାନଙ୍କୁ ସିଲେଇ ଶିଖାଇବା, ଓସ୍ତାଦ୍ ଖାନୁ ମିଆଁଙ୍କୁ ନିଯୁକ୍ତ କରି ବସନ୍ତ କୁମାରୀଙ୍କୁ ସଂଗୀତ ଶିକ୍ଷା ଦେବା ଆଦି ସେ ଯୁଗର ଅବିଶ୍ୱାସ୍ୟ ରୀତି ନୀତି ସେ ପରିବାରରେ ଚଳୁଥିଲା । ଏହାଛଡ଼ା ବାଟବ୍ଭୁଡ଼ି କୁପଥକୁ ଚାଲିଯାଇଥିବା ଝିଅଙ୍କୁ ଘରେ ଆଶ୍ରୟ ଦେଇ ଥଇଥାନ କରିବା କାମ ମଧ୍ୟ ଲାବଣ୍ୟ ଦେଇ କରୁଥିଲେ । ତାଙ୍କର ଆଚରଣ ପଛରେ ନିନ୍ଦା ବିଚାର ଥିଲା । ଥରେ କଟକକୁ କଲିକତାରୁ ଥିଏଟର ଆସିଲା । ମାମୁଁ ଘରେ ସମସ୍ତେ ଥିଏଟର ଦେଖି ଯିବାକୁ ସ୍ଥିର କଲେ । ମୋ ବୋଉ ପାଇଁ ମଧ୍ୟ ଟିକଟ ହେଲା । ଭାଇ ସେତେବେଳକୁ ବୋଉର କୋଳପୁଅ । ଜେଜେମା ଯେତେବେଳେ ଜାଣିଲେ ଯେ ବୋଉ ମଧ୍ୟ ଥିଏଟର ଦେଖିଯିବ ସେତେବେଳେ ସେ ବୋଉକୁ ଡ଼ାକି କହିଲେ – ତୁ ଥିଏଟ୍ରର ଦେଖିବା ପାଇଁ କୋଳଛୁଆକୁ ଛାଡ଼ି ଦେଇ ଯିବୁ ? ସେ ଯଦି ତୋତେ ଖୋଜି କାନ୍ଦିବ ? ତୋ ପୁଅ ତ ତୋର ଥିଏଟର । ସନ୍ତାନର ମାଆ ହେବା ପରେ ସନ୍ତାନ ପାଖେ ଆଉ ସବୁ ପାଖେ । ମାଆ ହେବା ପରେ ପୁଣି ଥିଏଟର ସଉକୀ କ'ଣ ?

ଶ୍ରୀମତୀ ନନ୍ଦିନୀ ଶତପଥୀ ତାଙ୍କର ସାନପୁଅ ତଥାଗତକୁ ସୁମିତ୍ରା ଚୌଧୁରୀଙ୍କ ପାଖରେ ଛାଡ଼ି ଅଷ୍ଟ୍ରେଲିଆ ଯିବାର ମସୁଧା କରୁଥିବାର ଶୁଣି ବୋଉ ତା ନିଜସ୍ୱ ଭାଷାରେ ଜେଜେମାଙ୍କର ଏହି ଯୁକ୍ତି ବାଢ଼ି ନନ୍ଦିନୀଙ୍କୁ ଅଷ୍ଟ୍ରେଲିଆ ଯାତ୍ରାରୁ ନିବୃତ୍ତ କରିଥିଲା ।

ମୋ ଆଈ ଏଇ ଜେଜେମାଙ୍କ ଝିଅ । ଆଈ ରୂପ ଗୁଣରେ ଅତୁଳନୀୟା ଥିଲେ । ସେ ଭର୍ଣ୍ଣାକୁଲାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । କେହି ତାଙ୍କ ମୁହଁରୁ ପଦେ କଠୋର କର୍କଶ କଥା କେବେ ହେଁ ଶୁଣି ନାହିଁ । ସେ ଥିଲେ ଅମୃତହସ୍ତା । ରୋଗୀସେବାରେ ସେ ଅତି ନିପୁଣା ଥିଲେ । ସେଥିପାଇଁ ଗୃହ ଚିକିତ୍ସକ ଘରକୁ ଆସିବା ମାତ୍ରେ ଆଗେ ଖୋଜୁଥିଲେ 'ଦେଈଅପା'ଙ୍କୁ । ସେବା କ୍ଷେତ୍ରରେ ତାଙ୍କର ଆତ୍ମୀୟ ପର ଭେଦ ନ ଥିଲା । ଆମେ ତାଙ୍କୁ ବଡ଼ମା ଡ଼ାକୁଥିଲୁ । ଗାଧୋଇ ସାରି ସିକ୍ତ କେଶ ପିଠିରେ ଖୋଲି ଦେଇ ମଠା ପିନ୍ଧି ହାତରେ ଫୁଲ ଚାଙ୍ଗୁଡ଼ି ଧରି ଗୁଣୁଗୁଣୁ ହୋଇ ସ୍ତବ ବୋଲି ବୋଲି ସେ ଯେତେବେଳେ ଠାକୁର ଘରକୁ ଯାଉଥିଲେ ଆମେ ତାଙ୍କୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହୁଥିଲୁଁ । ସେ ଭାଗବତ ପଢ଼ିଲା ବେଳେ ଆମେ ଉତ୍କର୍ଣ୍ଣ ହୋଇ ତାଙ୍କ ମଧୁର ସ୍ୱରକୁ ଶୁଣୁଥିଲ । ତାଙ୍କର ବଡ଼ଝିଅଙ୍କ ମୃତ୍ୟୁ ପରେ ନୟନପିତୁଳା ବେଲୁ (ମୋ ବୋଉ)ର ସାନ୍ନିଧ ଲାଭ ପାଇଁ ସେ ଅଧିକାଂଶ ସମୟରେ କଟକରେ ବାପଘରେ ରହୁଥିଲେ । ଆଈଙ୍କର ପୁଅ ନ ଥିବାରୁ ଅଜା ଆଈଙ୍କ ଭାଇଙ୍କ ପୁଅକୁ ପୁଅ କରିଥିଲେ । ଆମେ ପିଲାଦିନୁ ବୋଉର ମାମୁଁ ଘରକୁ ହିଁ ମାମୁଁ ଘର କହୁଥିଲୁ । ବୋଉର ମାମୁପୁଅ ଭାଇମାନଙ୍କ ଠାରୁ ହିଁ ମାତୁଳ ସ୍ନେହର ସ୍ୱାଦ ପାଇଥିଲୁ ।

ସତ୍ୟଭାମାପୁରରେ ଆଈଙ୍କର ଭିନ୍ନରୂପ । ସେ ଠାକୁର ଘରୁ ବାହାରିଲା ବେଳକୁ ହାଣ୍ଡିଏ ନିମପତ୍ର ପାଣି ସିଦ୍ଧ ହୋଇ ରହିଥିବ । ବିହନ ଘର ପିଣ୍ଡାରେ ବସିଥିବେ ଧାଡ଼ିଏ ଅର୍ଦ୍ଧନଗ୍ନ ଗାଁ ପିଲା । ବଡ଼ମା କାହାର କାଛୁ ନିମପତ୍ର ସିଝା ପାଣିରେ ଧୋଇ କଣ୍ଡୁଦାବାନଳ ଲଗେଇ ଦେବେ । କାହାକୁ ଚିରେଇତା ପାଣି ପେଇବେ । କାହାକୁ ପେଇବେ ବାସଙ୍ଗପତ୍ର ସିଝା ପାଣି । ଏପରି ନାନାପ୍ରକାର ପରିଚର୍ଯ୍ୟା ଚାଲିବ । ଏ କାର୍ଯ୍ୟକ୍ରମ ପରେ ସେମାନେ ଭୋଗ ଖାଇ କଳରବ କରି କରି ଯିବେ । ଦ୍ୱିପହରକୁ ଟାଟିଆ ଗିନା ଧରି ଆସିବେ ଗାଁର ଝିଅ ବୋହୂ । କିଏ ପୋଟଳ ପତ୍ର ଝୋଳ ନେବ ତ କାହାପାଇଁ ହୋଇଥିବ ପସାରୁଣୀ ପତ୍ର ଝୋଳ । କିଏ ନେବ ଆମ୍ବ ଆଚାର ଆଉ କାହାର ଲେମ୍ବୁ ଆଚାରରେ ମନ ।

ବଡ଼ମା'ଙ୍କର ବଗିଚା କରିବା ସଉକ ଥିଲା । ବାସଗୃହକୁ ଲାଗି ଅଠର ଏକର ଥିଲା କେବଳ ଫଳ ବଗିଚା । କଦଳୀ, ଆମ୍ବ, ସପୁରୀ, ପଣସ, ଲିଚୁ, ନଡ଼ିଆ, ଗୁଆ ଆଦି ନାନା ଜାତି ଗଛ ଆଈ ସଜେଇ କରି ଲଗେଇଥାନ୍ତି । ମୋଜାଫରପୁରରୁ ଲିଚୁ ଗଛ, ଲେଙ୍ଗଡ଼ା ଆମ୍ବ ଗଛ ବନାରସରୁ ଆଣି ସେ ନିଜେ ରୋପି ଥିଲେ । ବଗିଚା ଭିତରେ ତିନୋଟି ପୋଖରୀ - ରସକୁଣ୍ଡ, କନକଦଣ୍ଡା, ବାରି ଗଡ଼ିଆ । ମାଛ ଯାହାକୁ ଯେତେ । ଜାଲପଡ଼ି ମାଛଧରା ହୋଇ ଜାଲରେ ଖେଳୁଥାନ୍ତି । ରାତି ଅଧରେ ଲୋଡ଼ା ହେଲେ ଛଣା ହୋଇ ଆସନ୍ତି ।

ସବୁଠାରୁ ବଡ଼ ଆକର୍ଷଣ ଥିଲା ଆଈଙ୍କ ହାତବାକ୍ସ । ସେଥିରେ ଟଙ୍କା ପଇସା ଯାହା ଥାଉ, ଚିଠି ଲେଖା କାଗଜ, ଲଫାପା, ଡ଼ାକଟିକଟ, କଲମ, ପେନସିଲ, କାଗଜ କଟା ଛୁରୀ ଆଲ୍‌ପିନ୍ ଟ୍ୟାଗ, ବ୍ଲଟର ଆଦି ସୁବ୍ୟବସ୍ଥିତ ହୋଇ ରହିଥାଏ । ଆଈଙ୍କର ହସ୍ତାକ୍ଷର ସୁନ୍ଦର ଥିଲା । ଚିଠି ଲେଖିବା ବେଳେ ଦୌହିତ୍ର ପୁଣ୍ଡୁ ଥଟ୍ଟା ଖେଳେ -ବଡ଼ମା ! ଅଜା ତ ନାହାନ୍ତି । ବସେଇ ବସେଇ ଗୋଲ ଗୋଲ ଅକ୍ଷରରେ କାହାକୁ ଚିଠି ଲେଖୁଛ ? ଆଈଙ୍କର ବଡ଼ଝିଅ ମାଉସୀ ଉମା ପାଞ୍ଚୋଟି ସନ୍ତାନଙ୍କୁ ଛାଡ଼ି ଦେଇ ଚାଲିଯାଇଥିଲେ । ଆଈ ସେମାନଙ୍କୁ ଲାଳନ ପାଳନ କରୁଥିଲେ । ମଉସା ତେନ୍ତୁଳିପଦାର ପଦ୍ମଚରଣ ପରିଡ଼ା ଦ୍ୱିତୀୟ ଥର ବିବାହ କରିବା ପରେ ପିଲାଙ୍କୁ ପାଖକୁ ନେଲେ । ନୂଆ ମାଉସୀ ସ୍ନେହମୟୀ ଓ ସୁହାସିନୀ । ଆମକୁ ବହୁତ ଭଲ ପାଇଲେ ।

ଆମେ ଗୋଠକଯାକ ପିଲା ବଡ଼ମାଙ୍କ ପାଖରେ ଶୋଉ । କାରଣ ସେ ଗପ କହିବେ । ବେଶୀ ମୋଜାଫରପୁର କଥା । ମୋଜାଫରପୁରରେ ଅଜା ମ୍ୟାଜିଷ୍ଟ୍ରେଟ ଥିଲେ । ଆଈଙ୍କ କୋଳରେ ଶୁଏ ଭଗା ଅର୍ଥାତ୍ ବଡ଼ ମାମୁଙ୍କ ପୁଅ ଯୁଗଳ । ସେ ସବୁଠାରୁ ସାନ ସବୁଠାରୁ ଗେହ୍ଲା । ଆଉ ସମସ୍ତେ ତେଲୁଣି ପୋକ ପରି ଆଈଙ୍କୁ ଘେରି ଶୋଇବୁ । ବିରାଟ ମଶାରି ।

ବଡ଼ମା ପରଦା ମାନୁଥିଲେ ହେଁ ଦେଢ଼ଶୁର ମଧୁସୂଦନଙ୍କ ସଂଗେ କଥାବାର୍ତ୍ତା କରୁଥିଲେ । ତାଙ୍କୁ ଖାଦ୍ୟ ପରିବେଷଣ କରୁଥିଲେ । ବଗପକ୍ଷୀ ପରି ଧୋବ ଫରଫର ଲୁଗାପିନ୍ଧି ଧଳା ରେଶମର ଚାଦର ପକାଇ ବଡ଼ମା ଦାଣ୍ଡକୁ ଆସିଲେ ଆମେ ପଚାରୁ ବଡ଼ମା ! କୋଠିକୁ ଯାଉଛଟି ? ଆମେ କୋଠି କହୁଥିଲୁ ମଧୁବାବୁଙ୍କ ବାସଗୃହକୁ । ବଡ଼ମା ଅଳପ ହସି ମୁଣ୍ଡ ଟୁଙ୍ଗାଉନ୍ତି । ମୋ ମା କହେ ପାଲ ଦେଢ଼ଶୁରଙ୍କୁ ଆଡ଼ ହେଉନାହିଁ । ସେ ପେଚା ହେବ । ଗୋପାଳବଲ୍ଲଭଙ୍କ ପ୍ରଥମ ସ୍ତ୍ରୀ ନିଶାମଣିଙ୍କ ସହ ମୋ ମା ପଦ୍ମାବତୀ 'ଚାନ୍ଦ' ବସିଥିଲେ । ସେଥିପାଇଁ ମଧ ଦେଢ଼ଶୁରଙ୍କୁ ଆଡ଼ ହେଉ ନ ଥିଲେ । ସେଥିପାଇଁ ମା ପେଚା ଦେଖିବା ମାତ୍ରେ କହେ ହେଇ ମୋ ଚାନ୍ଦ । ମଧୁସୂଦନ ଅସୁସ୍ଥ ଥିବାବେଳେ ମା ମୋତେ ସାଂଗରେ ନେଇ ତାଙ୍କୁ ଦେଖିବାକୁ କୋଠିକୁ ଗଲା । ମଧୁବାବୁଙ୍କ ମୁଣ୍ଡପାଖରେ ଗୋଟିଏ ଅପୂର୍ବ ରୂପଲାବଣ୍ୟବତୀ ମହିଳାଙ୍କ ତୈଳଚିତ୍ର ଟଙ୍ଗା ହୋଇଥିଲା । ମା ସେ ଚିତ୍ର ମୋତେ ଦେଖାଇ କହିଲା - ''ସେ ମୋ ଚାନ୍ଦ'', (ନିଶାମଣି) । ଆଇଙ୍କ ସଂପାଦନାରେ ଶିକ୍ଷାଦର୍ପଣ ନାମରେ ମାସିକ ପତ୍ରିକା ବାହାରିଲା । ବୋଉ, ମାଉସୀମାନେ, ଜଗବଂଧୁ ସିଂହ, ଫକୀରମୋହନ ସେନାପତି ପ୍ରମୁଖ ସେ ପତ୍ରିକାରେ ଲେଖାଲେଖି କରୁଥିଲେ । ଜେଜେମା ଏସବୁ ଲେଖାଲେଖି ହାରମୋନିୟମ ବଜେଇ ଗୀତ ବୋଲିବା ସୁଦ୍ଧା ମଞ୍ଜୁର କରୁଥିଲେ କିନ୍ତୁ ସନ୍ତାନର ଅଯତ୍ନ ଅବହେଳା ବରଦାସ୍ତ କରୁ ନ ଥିଲେ ।

ମଧୁବାବୁ ମୋ ବୋଉର ବଡ଼ବାପା, ଆମର ବଡ଼ ଅଜା, କିନ୍ତୁ ତାଙ୍କୁ କେବେ ଥରେ ହେଲେ ଅଜା ଡ଼ାକିବା ମନେ ପଡୁ ନାହିଁ କି ଅଜା ଭାବରେ କଳ୍ପନା କରିବା ମନେ ପଡୁ ନାହିଁ । ସେ ତ ମିଷ୍ଟର ଦାସ । ମଧୁ ବାରିଷ୍ଟର, ସେ ତ ସାରା ଓଡ଼ିଶାର । ସେ କିପରି ପାଞ୍ଚ ସାତ ଜଣଙ୍କର ଅଜା ହେବେ ? ତଥାପି ମଧୁବାବୁଙ୍କ ଆଗ୍ରହରେ ଭାଇ କିଛିଦିନ ନିୟମିତ ତାଙ୍କ କୋଠିକୁ ଯାଉଥିଲେ । ପିଲାମାନେ କହନ୍ତି ସରକାର ମଧୁବାବୁଙ୍କ ମୁଣ୍ଡଟା କିଣି ନେଇଛନ୍ତି, ତାଙ୍କ ମୃତ୍ୟୁ ପରେ ଦେଖିବେ ଏତେ ବୁଦ୍ଧି ଥିବା ମଗଜଟା କିପରି ତିଆରି ହୋଇଛି ।

କଟକରେ ଭୋଳି ପୂଜାରୀ ଥିଲେ ଜଣେ ଜଣାଶୁଣା ପାଚକ । ଭୋଳି ପୂଜାରୀଙ୍କ ରୋଷେଇ ବିନା ବିଭାବ୍ରତ ଘର ସଂପନ୍ନ ହୋଇ ପାରେ ବୋଲି କେହି ଭାବି ପାରୁ ନ ଥିଲେ । ସେ ଭୋଳି ପୂଜାରୀ ମଝେ ମଝେ ଆମ ଘରକୁ ଆସୁଥିଲେ । ଆମକୁ ଚଂପାଫୁଲ ଦେଉଥିଲେ । ଗହ୍ମା ପୂନେଇରେ ପଇତା ଓ ନଡ଼ିଆ ଦେଇ ଯାଉଥିଲେ । ସେହି ଭୋଳି ପୂଜାରୀ ଦିନେ ଆସି କହିଲେ-ତୁମ ଅଜା ମଧୁବାବୁ ତ ମନ୍ତ୍ରୀ ହେଲେଣି । ସେ ମାସକୁ ପାଞ୍ଚ ହଜାର ଟଙ୍କା ଦରମା ପାଇବେ । ତୁମେ ତ ମନ୍ତ୍ରୀଙ୍କ ନାତିନାତୁଣୀ ହୋଇଗଲ ।

ମଧୁବାବୁଙ୍କୁ ତ ସମସ୍ତେ ମିଷ୍ଟର ଦାସ କହନ୍ତି, ଆମେ ମଧ୍ୟ ତାହାହିଁ କହୁ । ମିଷ୍ଟର ଦାସ ମନ୍ତ୍ରୀ ହେଲେ ଅସହଯୋଗ ମୌସମରେ । ସେତେବେଳକୁ ବାପା ଦାଦା ଅସହଯୋଗ ଆନ୍ଦୋଳନରେ ଝାସ ଦେଇ ସାରିଲେଣି । କାଉନସିଲ୍ ବର୍ଜନ କାର୍ଯ୍ୟକ୍ରମ ବିଷୟରେ ମୁଁ କିଛି ବୁଝି ନ ଥିଲେ ହେଁ ମିଷ୍ଟର ଦାସ ମନ୍ତ୍ରିତ୍ୱ ଗ୍ରହଣ କରିବାଟା ଯେ ଅନେକେ ପସନ୍ଦ କରୁ ନ ଥିଲେ ତାହା ବୁଝି ପାରୁଥିଲି । ମିଷ୍ଟର ଦାସ ମୋ ବୋଉର ଜ୍ୟେଷ୍ଠତାତ । ଦେଶପାଇଁ ଜୀବନ ଉତ୍ସର୍ଗ କରିବା, ସ୍ୱଦେଶୀ ବ୍ୟବହାର କରିବାର ପ୍ରେରଣା ସେ ତାଙ୍କ ଠାରୁ ପାଇଥିଲା । ମହାତ୍ମା ଗାନ୍ଧୀଙ୍କ ଖଦୀ ଆନ୍ଦୋଳନର ବହୁପୂର୍ବରୁ ମିଷ୍ଟର ଦାସଙ୍କ ଭାଷଣ ଶୁଣି ବୋଉ ସୂତା କାଟୁଥିଲା । ପିତୃକୂଳ ପ୍ରତି ମମତା କେଉଁ ଝିଅର ନାହିଁ ! କିନ୍ତୁ ମୋ ଦାଦା ଓ ମାମୁଁମାନେ ଯେତେବେଳେ ମିଷ୍ଟର ଦାସଙ୍କ କୁଶପୁତ୍ତଳିକା ଦାହ କଲେ ବୋଉ ମୁହଁବୁଜି ତାକୁ ହଜମ କଲା । ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ମୁହଁରୁ ଶୁଣିବା କଥା - ମିଷ୍ଟର ଦାସ ମନ୍ତ୍ରୀ ପଦ ଗ୍ରହଣ କରି ଯେଉଁଦିନ ପ୍ରଥମେ କଟକ ଆସିଲେ ରେଳଷ୍ଟେସନର ମେହେନ୍ତର ତାଙ୍କୁ ଦେଖି ନ ଦେଖିଲା ପରି ହୋଇ ଚାଲିଗଲା । କୋଠିକୁ ଆସି ତାଙ୍କ କୁଶ ପୁତ୍ତଳିକା ଦାହ ହେବା କଥା ଶୁଣି ସେ କୁଆଡ଼େ କହି ଥିଲେ- ଯେ ଗୋକୁଳାନନ୍ଦ, ରାଜକିଶୋର, ବାଲମୁକୁନ୍ଦକେ ଆମି ହାତେ କରେ ମାନୁଷ୍ କରେ ଛିଲାମ୍ ତାଦେର୍ ଛେଲେ୍ରା ଆମାୟ ଜ୍ୟାନ୍ତ ପୋଡ଼ାଲ ? ଆମି ମନ୍ତ୍ରୀ ହୟେ ଏମନ୍ କି ଅପରାଧ୍ କର୍ଲାମ୍ ଯେ ଷ୍ଟେନେର୍ ମ୍ୟାଥର୍ ଓ ଆମାସୟ ସେଲାମ୍ କର୍ଲୋ ନା ?

ପରବର୍ତ୍ତୀ କାଳରେ (ଷଢ଼େଇକଳା, ଖରସୁଆ) ଓଡ଼ିଶା ସୀମା ଆନ୍ଦୋଳନ ବେଳେ ଯେତେବେଳେ ମୁଖ୍ୟମନ୍ତ୍ରୀଙ୍କ କୁଶପୁତ୍ତଳିକା ଦାହ କରାଗଲା ସେତେବେଳେ କେତେକ ବୟୋବୃଦ୍ଧ କହିଲେ ନବବାବୁ ମଧୁବାବୁଙ୍କୁ ଜିଅନ୍ତା ପୋଡ଼ି ଥିଲେ । ଲୋକେ ନବବାବୁଙ୍କୁ ଜିଅନ୍ତା ପୋଡ଼ିଲେ ।

ଦିନେ ସଂଧ୍ୟାବେଳେ ମାଆ ଓ ମୁଁ ଛଡ଼ା ଆଉ କେହି ନ ଥାନ୍ତି । ଆମେ ସେତେବେଳେ ଆମ ବଡ଼ ଘରେ ରହୁଥାଉ । ମୁଁ ଦାଣ୍ଡ ବାରଣ୍ଡାକୁ ଆସି ଦେଖିଲି ଜଣେ ବୁଢ଼ା ଚୁପଚାପ୍ ହୋଇ ବସିଛନ୍ତି । ମା କୁ ସେ କଥା କହିଲାରୁ ସେ କବାଟ ଉହାଡ଼ରୁ ତାଙ୍କୁ ଚାହିଁ ହାତେ ଜିଭ କାମୁଡ଼ି ପକେଇ କହିଲା -''ମଧୁବାବୁ' । ତାଙ୍କୁ ପ୍ରଣାମ କରିବା ଭଳି ହେମତ ସୁଦ୍ଧା ମୋ ଭିତରେ ନ ଥିଲା । ସେ କିଛିକ୍ଷଣ ଚୁପ୍‌ଚାପ୍ ବସି ରହି ଉଠି ଚାଲିଗଲେ ।

ଆଉ ଥରେ ଦେଖିଲି ଗୋଟାଏ ପ୍ରଶସ୍ତ ଘରେ ଧଳା ଚାଦର ଗଦି ଉପରେ ପଡ଼ିଛି । ଦୁଇଜଣ ବୃଦ୍ଧ ତକିଆକୁ ଆଉଜି କଥାବାର୍ତ୍ତା ହେଉଛନ୍ତି । ସେ ଦୁହେଁ ଥିଲେ

ମଧୁସୂଦନ ଦାସ ଓ ମୋହନ ଦାସ କରମଚାନ୍ଦ ଗାନ୍ଧୀ । ପରବର୍ତ୍ତୀ କାଳରେ ଜାଣିଲି ମିଷ୍ଟର ଦାସ ସେଦିନ ମହାତ୍ମା ଗାନ୍ଧୀଙ୍କୁ ହାତ ଆଙ୍ଗୁଳିର କାର୍ଯ୍ୟ ସହିତ ମସ୍ତିଷ୍କ ବା ବୁଦ୍ଧିବୃତ୍ତିର ବିକାଶର କିପରି ସମ୍ବନ୍ଧ ରହିଛି ତାହା ବୁଝାଇ ଥିଲେ ଏବଂ ଗାନ୍ଧିଜୀ ମଧ୍ୟ ମିଷ୍ଟର ଦାସ୍‌ଙ୍କର ଏହି ସିଦ୍ଧାନ୍ତ କଥା ଲେଖିଛନ୍ତି ଓ ଏକାଧିକ ସଭାରେ କହିଛନ୍ତି ।

ମୋ ଜେଜେ ମିଷ୍ଟର ଦାସ୍‌ଙ୍କର ଜୁନିଅର ଥିଲେ ଏବଂ ଏକଦା ତାଙ୍କର ଦକ୍ଷିଣ ହସ୍ତ ଥିଲେ । ପରେ ଦୁହିଁଙ୍କ ମଧ୍ୟରେ ମତାନ୍ତର ଘଟିଥିଲା । କିନ୍ତୁ ଜେଜେ ଯେତେବେଳେ ଗୋପାଳବଲ୍ଲଭଙ୍କ ଝିଅ ମୋ ବୋଉକୁ ବୋହୂ କରିବା ପାଇଁ ଆଗ୍ରହୀ ହେଲେ ମିଷ୍ଟର ଦାସ୍ ସେ କଥା ଶୁଣି ଅନୁଜଙ୍କୁ କହିଲେ - ଗୋକୁଳାନନ୍ଦ ସଂଗେ ମୋର ମତାନ୍ତର ହେଲେ କ'ଣ ହେଲା ? ତା ପୁଅ ସୁପୁତ୍ର । ତୁ ସେଠି ବନ୍ଧୁଘର କର ।

୧୯୩୦ରେ ବୋଉକୁ ବ୍ରିଟିଶ ସରକାର ରାତି ଅଧରେ ଗିରଫ କରିବାରୁ ମିଷ୍ଟର ଦାସ ଉତ୍ତେଜିତ ହୋଇ ବଡ଼ଲାଟଙ୍କ ନିକଟରେ ଅଭିଯୋଗ କରିବାକୁ ବାହାରିଲେ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ତାଙ୍କୁ ସେଥିରୁ ନିବର୍ତ୍ତାଇ ଥିଲେ । ମୋ ଆଈ ଯେତେବେଳେ ତାଙ୍କ ବିକ୍ଷୁବ୍ଧ ଅନ୍ତରକୁ ଶାନ୍ତ କରିବା ପାଇଁ କୋଠିକି ଗଲେ ମିଷ୍ଟର ଦାସ କହିଲେ - ବେଲୁ ଏକି ବାଟ ଧରିଛି ? କାହା ଝିଅ, କାହା ବୋହୂ ! ତୁମେ ତାକୁ ଏଥିରୁ ନିବର୍ତ୍ତାଅ । ଆଈ କହିଲେ -ସେ ତା ସ୍ୱାମୀର ଅନୁଗାମିନୀ ହୋଇଛି, ମୁଁ କଣ କହିବି ? ମିଷ୍ଟର ଦାସ ଉତ୍ତେଜିତ ହୋଇ କହିଲେ - ତା ସ୍ୱାମୀ କଣ ତା ମାଆ ଠାରୁ ବଡ଼ ?

ପିଲାଦିନର ଏହି ରହସ୍ୟାବୃତ୍ତ ବ୍ୟକ୍ତିତ୍ୱର ମହନୀୟତା ଉପଲବ୍ଧି କରିବାର ବୟସ ହେଲା ବେଳକୁ ସେ କାଳକବଳିତ ହୋଇ ସାରିଥିଲେ ।

ତେଣୁ ମୋ ପାଇଁ ମଧ୍ୟ ସେ ପ୍ରବାଦ ପୁରୁଷ ହୋଇ ରହିଲେ ।

ବୋଉର ସହୋଦର ଭାଇ ନ ଥିଲେ । ବୋଉ ମାମୁଁଘର ହିଁ ଥିଲା ଆମ ମାମୁଁଘର । ବୋଉର ମାମୁଁ ପୁଅ ଭାଇମାନଙ୍କୁ ଆମେ ପିଲାଦିନୁଁ ମାମୁଁ ବୋଲି ଜାଣିଛୁ । ମାମୁଁମାନେ ଆମକୁ ସ୍ନେହରେ ବୁଡ଼େଇ ଦେଉଥିଲେ । ବୋଉର ତିନି ମାମୁଁ - ରାଜ କିଶୋର, ନବକିଶୋର ଓ ବୀର କିଶୋର । ସେମାନଙ୍କୁ ଆମେ ଜେଜେ ଡ଼ାକୁଥିଲୁ । ତିନି ଜେଜେଙ୍କର ନଅ ପୁଅ ଦୁଇଝିଅ । ସମସ୍ତେ ଏକାଠି ରହୁଥିଲେ । ମଝିଆଁ ଜେଜେ ନିବକିଶୋରଙ୍କର କାଳ ହୋଇଗଲା । ବଡ଼ ଜେଜେ ଏହି ପିତୃହୀନ ଝିଆରୀ ପୁତୁରାଙ୍କୁ ପାଳିଲେ । ବଡ଼ ଜେଜେ ମଧ୍ୟ ସୁରାପାନ କରୁଥିଲେ । ମଝିଆଁ ଜେଜେଙ୍କୁ ଶ୍ମଶାନରେ ଦାହ କରି ଆସି ସେହିଦିନୁଁ ସେ ଆଉ ମଦ ସ୍ପର୍ଶ କଲେ ନାହିଁ । ପଣ୍ଡିତମାନଙ୍କୁ ବସାଇ ଜଗନ୍ନାଥ ଦାସଙ୍କ ଭାଗବତର ଶୁଦ୍ଧ ସଂସ୍କରଣ ବାହାର କରିବା କାମରେ ବ୍ରତୀ ହେଲେ।

ବଡ଼ ଜେଜେଙ୍କର ଏହି କାର୍ଯ୍ୟଟି ଓଡ଼ିଶାରେ ଅବିସ୍ମରଣୀୟ ହୋଇ ରହିଛି । ଏହାଛଡ଼ା ସେ ଡେ଼ପୁଟି ମ୍ୟାଜିଷ୍ଟ୍ରେଟ୍ କାର୍ଯ୍ୟରୁ ଅବ୍ୟାହତି ନେବା ପରେ ଯେତେବେଳେ ବଡ଼ ଦେଉଳର ଦେୱାନ ନିଯୁକ୍ତ ହେଲେ ସେତେବେଳେ ପୁରୀ ଦେଉଳରେ ଘୋର ଅବ୍ୟବସ୍ଥା ଦେଖାଦେଇଥିଲା । ଦେଉଳର ବିଧିବିଧାନକୁ ବ୍ୟବସ୍ଥିତ ଭାବରେ ଚଳାଇ ଥିବାରୁ ତାଙ୍କୁ ବହୁ ଲୋକ - ତାଙ୍କର ସମାଲୋଚକ ସୁଦ୍ଧା ପ୍ରଶଂସା କରୁଥିଲେ ଏବଂ ବ୍ରିଟୀଶ ସରକାର ତାଙ୍କୁ ସ୍ୱର୍ଣ୍ଣ ପଦକ ଦେଇ ସମ୍ମାନିତ କରିଥିଲେ । ସାନ ଜେଜେ ଆଠଗଡ଼, ନରସିଂହପୁର ପ୍ରଭୃତି ଗଡ଼ଜାତରେ ଦେୱାନ୍ ଥିଲେ ।

ମାମୁଁ ଘରେ କିଶୋର ମେଳା । ପ୍ରମୋଦ କିଶୋର ବଡ଼ ମାମୁଁ । ବୋଉ କହେ ତାଙ୍କୁ ଦେଖିଲେ ଯୁଧିଷ୍ଠିରଙ୍କ ଚରିତ୍ର ମନେ ପଡ଼େ । ଚନ୍ଦ୍ରକିଶୋର ବେଙ୍ଗ ମାମୁଁ । ମାମୁଁ ଘରେ ଆଗେ ଘୋଡ଼ାଗାଡ଼ି ଥିଲା । ପଛକେ ଆସିଲା ମୋଟର - ଫୋର୍ଡ଼, ସ୍ୟାଣ୍ଡଲର,ଶୋଭରଲେ, ପଣ୍ଟିଆକ୍ - କେତେ ନାଆଁର ଗାଡ଼ି । ଗାଡ଼ି କଲିକତାରୁ ଆସିବା ମାତ୍ରେ ବେଙ୍ଗମାମୁଁ ଗାଡ଼ିଟା ଖୋଲି ପକାଇ ତାର କଳକବଜା ଯୋଡ଼ନ୍ତି । ବେଙ୍ଗମାମୁଁ ତ ଇଞ୍ଜିନିୟର ବା ମୋଟର ମେକାନିଜମ୍ ଜାଣି ନ ଥିଲେ । ଗାଡ଼ି ଖୋଲିବା ଫଳରେ ଗାଡ଼ିଟି ଶୀଘ୍ର ଖରାପ ହୋଇଯାଏ । ପୁଣି ନୂଆ ଗାଡ଼ି ଆସେ । ବେଙ୍ଗମାମୁଁଙ୍କୁ କେହି ଏ ବିଷୟରେ କିଛି କହନ୍ତି ନାହିଁ । ଏହିପରି ଗାଡ଼ି ଖୋଲି ଖୋଲି ସେ ମୋଟର ଗାଡ଼ି ବିଶେଷଜ୍ଞ ହୋଇ ଗଲେ ଏବଂ ସରକାରୀ ମୋଟର – ଇନ୍ସପେକଟର କାମ ମଧ୍ୟ କଲେ ।

ବେଙ୍ଗମାମୁଁଙ୍କର କୁକୁର ପାଳିବା ସଉଖ ଥିଲା । ସ୍ପାନିଏଲ, ଗ୍ରେଟଡ଼େନ୍, ରିଟ୍ରିଭର୍, ଗ୍ରେହାଉଣ୍ଡ୍, ବୁଲଡଗ୍ ନାନା ଜାତି କୁକୁର । ବାଞ୍ଛା ମେହେନ୍ତର ସେମାନଙ୍କ ପାଇଁ ମାଂସ ଭାତ ହଳଦୀ ପକାଇ ରାନ୍ଧେ । ସେମାନଙ୍କ ଯତ୍ନ ନିଏ । ପରେ ବେଙ୍ଗମାମୁଁଙ୍କର ଗାଈ ସଉକ ହେଲା । ହଂସୀ, ମଣ୍ଟେଗୁମରୀ, ବନାରସୀ, ହରିଆନା ଆଦି ନାନା ଜାତି ଗାଈ ଆଣି ସେ ରଖିଲେ । ସବୁ ମାମୁଁଙ୍କ ପାଇଁ ଜଣେ ଜଣେ ଚାକର ଥିଲେ । ବେଙ୍ଗମାମୁଁ ତାଙ୍କ ଚାକରକୁ ମୋଟର ଚାଳନା, ମୋଟର ମରାମତି ଆଦି କାମ ଶିଖାଇ ସ୍ୱାବଲମ୍ବୀ କରି ଦିଅନ୍ତି । କାହାକୁ କାହାକୁ ମୂଳଧନ ଦେଇ ବ୍ୟବସାୟରେ ଲଗାଇ ଦିଅନ୍ତି । ସେ ଭାରି ଥଟିଲି ମଧ୍ୟ ଥିଲେ । ଯାହାକୁ ଯେପରି ଥଟ୍ଟା କଲେ ଶୋଭା ପାଇବ ତାଙ୍କୁ ସେହିପରି ଥଟ୍ଟା କରୁଥିଲେ । ଖୋଦ ବଡ଼ ଜେଜେ ମଧ୍ୟ ସେଥିରୁ ବାଦ ପଡ଼ୁ ନ ଥିଲେ । ଥରେ ବେଙ୍ଗମାମୁଁ ଓ ବଡ଼ଜେଜେ ସାଂଗ ହୋଇ ପୁରୀ ଯିବା କଥା ଥିଲା । ରେଳଗାଡ଼ି ଆସିବାର

ନିର୍ଦ୍ଦିଷ୍ଟ ସମୟର ଅନ୍ୟୂନ ଅଧଘଣ୍ଟାଏ ପୂର୍ବରୁ ବଡ଼ଜେଜେ ଷ୍ଟେସନରେ ପହଞ୍ଚିବାରେ ଅଭ୍ୟସ୍ତ । ସେଦିନ ତାଙ୍କର ଷ୍ଟେସନକୁ ଯିବା ସମୟ ହୋଇଗଲା । ବେଙ୍ଗମାମୁଁଙ୍କର ଦେଖାନାହିଁ । ତଥାପି ସେ ୫/୭ମିନିଟ୍ ବେଙ୍ଗମାମୁଁଙ୍କ ପାଇଁ ଅପେକ୍ଷା କରି ତାଙ୍କ ହେରିଲ୍‌ଦାର(ମାମୁଁଘରେ ଗୁମାସ୍ତାଙ୍କୁ ହେରିଲ୍‌ଦାର୍ କହନ୍ତି) ସଂଗେ ରେଳ ଷ୍ଟେସନ୍‌କୁ ଚାଲିଗଲେ । ବେଙ୍ଗମାମୁଁ ଯଥା ସମୟରେ ଷ୍ଟେସନରେ ପହଞ୍ଚି ହସି ହସି ହେରିଲ୍‌ଦାରକୁ କହିଲେ ତମେ ଓ ବାପା ଇଞ୍ଜିନ୍ ପାଖ ଡ଼ବାରେ ବସିଯିବ । ତା ହେଲେ ମୁଁ ପୁରୀରେ ପହଞ୍ଚିବା ଆଗରୁ ତମେ ଆଗ ପହଞ୍ଚିଯିବ । ବେଙ୍ଗ ମାମୁଁଙ୍କୁ ନିଜ ହାତରେ ଭାତ ଗୋଳେଇ ଆସୁ ନ ଥିଲା । ବଡ଼ଜେଜେ ଭାତ ଗୋଳେଇ ଦେଉଥିଲେ । ନିକୁଞ୍ଜ କିଶୋର ମୂଷ୍ଟୁ ମାମୁଁ । ସେହି ଏକା ଗ୍ରାଜୁଏଟ୍ ମାମୁଁ । ଚମତ୍‌କାର କବିତା ଲେଖନ୍ତି । ''ମାୟାପୁରୀ ସୁନାକାଠି ଛୁଇଁ ଦେଲା କିଏରେ ଛାଇଘୋଟେ ନିଜ ମଡ଼ା ନିକାଞ୍ଚନ ଦେଶେ'' ''ଶରତ ଆସିଛି ତାର ଦୋହଲା କାଇଁଶ ବନେ ଶୁଭୁଛି ସରମଛୁଆଁ ଦରଫୁଟା ବାଣୀ'' ଆଦି ତାଙ୍କର କବିତା ଆମେ ମୁଗ୍ଧ ହୋଇ ପଢୁ । ସେ ଜଣାଣ ଓ ଭଜନ ମଧ ରଚନା କରୁଥିଲେ । ନିମାଇଁ ହରିଚନ୍ଦନ – ତାଙ୍କୁ ଆମେ ରାଜା ନିମାଇଁ ଡ଼ାକୁଥିଲୁ – ସେ ଭଜନ ଭାବବିହ୍ୱଳ ହୋଇ ବୋଲୁଥିଲେ । ଡ଼ିଷ୍ଟ୍ରିକଟ୍‌ବୋର୍ଡ଼ ଚେୟାରମ୍ୟାନ ମଧ ହୋଇ ଥିଲେ । ମୁଁ ତାଙ୍କୁ ଡ଼ାକୁଥିଲି ସାନବାପା ।

ଉପେନ୍ଦ୍ରକିଶୋର – ଉପମାମୁଁଙ୍କୁ ଅଜା ପୁଅ କରିଥିଲେ । ସେଥିପାଇଁ ସେ ମଧେ ମଧେ ସତ୍ୟଭାମାପୁରରେ ରହୁଥିଲେ । ସେ ମଧ କବିତା ଲେଖୁଥିଲେ । ଛବି ଆଙ୍କୁଥିଲେ । 'ମଲାଜହ୍ନ' ଉପନ୍ୟାସ ଲେଖି ସେ ଓଡ଼ିଆ ଭାଷାର ବାକ୍ୟବିନ୍ୟାସରେ ଯୁଗାନ୍ତର ସୃଷ୍ଟି କଲେ । ମାମୁଁ ଜଣେ କଳାପ୍ରେମୀ । ତାଙ୍କ ଚାରିପାଖ ଶ୍ରୀ ସଂପନ୍ନ କରି ରଖିବାରେ ସେ ଧୁରନ୍ଧର । ମାମୁଁ ୧୯୩୦ରେ ଖଦୀ କାମ ମଧ କରିଥିଲେ । ସେ ଭାଗବତ ଧର୍ମସାର ସଂପାଦନା ନ କରି ଥିଲେ ତାହା ପ୍ରକାଶିତ ହୋଇ ପାରି ନଥାନ୍ତା । ଓଡ଼ିଶାର ଇତିହାସକୁ ଚିତ୍ରିତ କରିବା ପାଇଁ ଗୋପବଂଧୁ ଚୌଧୁରୀଙ୍କର କଳ୍ପନାକୁ ମାମୁଁ ହିଁ ରୂପାୟିତ କରିବାରେ ମୁଖ୍ୟ ଥିଲେ । ତାଙ୍କର କଟକରୁ କେନ୍ଦ୍ରାପଡ଼ାକୁ ମୋଟର ଲଞ୍ଚ୍ ଚାଲୁଥିଲା । ଏଣେ 'ନାଚୁଣୀ' ମାସିକ ପତ୍ରିକା ସଂପାଦନାରେ ସେଇ ଥିଲେ ମୁଖ୍ୟ ।

ଦେବେନ୍ଦ୍ର କିଶୋର, ଦେବମାମୁଁ, କଡ଼ାଙ୍ଗକୁ ପୁଅ ହୋଇ ଯାଇଥିଲେ । ସେହି ଏକା ଖଦଡ଼ ପିନ୍ଧୁଥିଲେ ଏବଂ ଗାନ୍ଧୀ ବିଚାର ପ୍ରତି ଶ୍ରଦ୍ଧାବାନ୍ ଥିଲେ । ସେ କିଛିଦିନ ଜିଲ୍ଲାବୋର୍ଡ଼ ଚେୟାରମ୍ୟାନ ମଧ ହୋଇଥିଲେ । ଅବଶିଷ୍ଟ ନଗେନ୍ଦ୍ର କିଶୋର, ନରେନ୍ଦ୍ର

କିଶୋର, ନଗି ମାମୁଁ ଓ ନରି ମାମୁଁ ଯଥାକ୍ରମେ ରେଭେନ୍ସା କଲେଜ୍ ଓ ଇଞ୍ଜିନିୟରିଂ ସ୍କୁଲର ଛାତ୍ର ଥିଲେ । ନଗି ମାମୁଁ ପିଲାଦିନେ କୌଣସି ସାଂଘାତିକ ରୋଗରେ ପୀଡ଼ିତ ହୋଇ ଥିବାରୁ ଦୁର୍ବଳ ସ୍ୱାସ୍ଥ୍ୟ ଥିଲେ । ନରିମାମୁଁ ଥିଲେ ସଂଗୀତପ୍ରେମୀ ରବୀନ୍ଦ୍ର କିଶୋର - ମଙ୍ଗୁ ମାମୁଁ ଗୌରକିଶୋର - ମଣ୍ଟୁ ମାମୁଁ ଥିଲେ ଆମର ଖେଳସାଥୀ । ମାମୁଁଘର ଦୁଇ ମାଉସୀ ପ୍ରମିଳା-ମାଳ ଅପା ଓ ଶକୁନ୍ତଳା - କୁନଅପା କଣ୍ଢା ପାଗିର ଯଥାକ୍ରମେ ଜଗନ୍ନାଥ ଦାସ ଓ ଦ୍ୱାରିକା ନାଥ ଦାସଙ୍କୁ ବିବାହ କରିଥିଲେ ।

ମାମୁଁଘରେ ତାରଜାଲି ଦିଆ ବଗିଚାରେ ନାନାଜାତି ଚଢ଼େଇ ରହିଥାନ୍ତି । ଲ୍ୟାଭେଣ୍ଡର ଲତା ଛାଇ କରିଥିବା ପାଣି ହାଉଦାରେ ରଙ୍ଗୀନ୍ ମାଛ ଖେଳୁଥାନ୍ତି । ହରିଣ, ଖୁରାଣ୍ଟି, ଠେକୁଆ, ଗିନିପିଗ୍ ଯତ୍ନରେ ରହିଥାନ୍ତି । ଗୋଟାଏ ଓରାଂଓଟାଂ ମଧ୍ୟ ଆସି ରହିଥିଲା । ତାର ନାଆଁ କୃ ଥିଲା । ସାନଜେଜେ ଗଡ଼ଜାତରୁ ବାଘଛୁଆ ମଧ୍ୟ ପଠାଇଥିଲେ । କୁକୁଡ଼ା ଘରେ ନାନା ଜାତି କୁକୁଡ଼ା, ହଂସ ଘରେ ହଂସ, ଘୋଡ଼ାଶାଳରେ ଘୋଡ଼ା, ଗୋଶାଳାରେ ନାନାଜାତି ଗାଈ, ଭୋଳା ପିତ୍ତଳ ବାଲଟିରେ ଦୁଧ ଦୁହେଁ ।

ଦଶହରା ଦିଆଲୀରେ ମାମୁଁଘର ଗାଡ଼ିରେ ନଗି ମାମୁଁ ଦେବୀ ଦେଖାଇ ନିଅନ୍ତି । ବିଲଗୋରିଆ ଦୋକାନରେ ଟଫି ଚକୋଲେଟ ଆମ ଆଗରେ ଦୋକାନୀ ଗଦେଇ ଦିଏ । ମାମୁଁ ଘରେ ବିଭାଘରେ ପୁଅ ଏକୋଇଶିଆରେ ମୋହନ ଗୋସେଇଁଙ୍କ ଥିଏଟର, ବାଉବାଟିଆ ସୋମନାଥ ମହାପାତ୍ରଙ୍କ ଗୋଟିପୁଅ ନାଟ ହୁଏ । ଗଦେଇ ନନ୍ଦ ପାଲା କରନ୍ତି । ମାମୁଁମାନେ-ସିନେମା ମଧ୍ୟ କଲେ । ନାଆଁ ଏକମି ଥିଏଟର । ଆଈ କହୁଥିଲେ ତାଙ୍କ ବାପା ନନ୍ଦକିଶୋରଙ୍କ ଅମଳରେ ବନାରସରୁ ଯମୁନା ବାଈ ନାଚିବାକୁ ଆସୁଥିଲେ । ଆମେ ଦେଖିଛୁ ଅପନ୍ନା ପାଣିଗ୍ରାହୀ ଓ ସେହିପରି ଲବ୍ଧପ୍ରତିଷ୍ଠ ସଙ୍ଗୀତଜ୍ଞ ଆସିଲେ ମାମୁଁ ଘରେ ସଂଗୀତ ଆସର ବସେ । ପୁଣି ନବଦ୍ୱୀପରୁ ରାମଦାସ ବାବାଜୀ ଆସି ମାମୁଁ ଘରେ ଚବିଶ ପ୍ରହରୀ କୀର୍ତ୍ତନ କରନ୍ତି । ଆଈ ପ୍ରଭୃତି ତାଙ୍କ ଚେଲା । ଖୁବ୍ ଖିଆଣ ପିଅଣ ଆୟୋଜନ ହୁଏ । ବାବାଜୀ ମହୋଦୟ ଚିନି ଖାଆନ୍ତି ନାହିଁ । କଲିକତାରୁ "ନତୂନ ଗୁଡ଼େର ସନ୍ଦେଶ" ଆସେ । ବହୁତ ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଆସନ୍ତି । ଖୁବ୍ ଭୋଜିଭାତ ହୁଏ ।

ରାଜକିଶୋର ଦାସ ବଡ଼ଜେଜେଙ୍କ ସ୍ତ୍ରୀ ଆମର ମାମୁଁ ବୋଉ । ସେ ସୁଗୃହିଣୀ ଭାବରେ ଖ୍ୟାତି ଅର୍ଜିଥିଲେ । ଶାନ୍ତ ସଂଯତ ବ୍ୟବହାର । ତାଙ୍କର ଆକଟ କରିବା ଶୈଳୀ ନିଆରା । ମୁଁ ଜନ୍ମ ହେବା ପରେ ଥରେ ବୋଉ କୌଣସି ଝିଅର ଅସଂଯତ ଆଚରଣ କଥା ଶୁଣି ହସିଲା । ମାମୁଁ ବୋଉ ବୋଉକୁ ଆକଟ କରି କହିଲେ - ବେଲୁ ! ତୋର ଝିଅ

ହେଲା ଦିନୁଁ ଆମେ କାହାରି କଥା ଶୁଣି ହସୁ ନାହୁଁ କାଳେ ତୋ ଝୁଅ ନାଁ ପକାଇବ ଆମ ମୁଣ୍ଡ ତଳକୁ ହେବ ଏହି ଭୟରେ । ତୁ ପୁଣି ହସୁଛୁ! ସେହି ଦିନୁଁ ବୋଉର ଏସବୁ ବ୍ୟାପାରରେ ହସିବା ବନ୍ଦ ହେଲା ।

ନବକିଶୋର ଦାସଙ୍କ ସ୍ତ୍ରୀ ବୋଉ ମଝିଆଁ ମାଇଁ ପିଠାପଣା, ପରିବାକଟା, ଗୁଣ୍ଡି ତିଆରି, ନାତିନାତୁଣୀଙ୍କ ଦେଖରେଖ୍‌ରେ ସମୟ ବିତାନ୍ତି । ସେ ଶାଶୁ ଶଶୁରଙ୍କ ନାମ ଧରୁ ନ ଥିଲେ । ଶଶୁରଙ୍କ ନାମ ନନ୍ଦ କିଶୋର । ନାତିକୁ 'କମଳଲୋଚନ ଶ୍ରୀହରି' ଶିଖାଇଲା ବେଳେ ଶିଖାଇଲେ ''ଫନ୍ଦଫନ୍ଦନ ଗୋପୀନାଥ'' ନାତି କହିଲା 'ଫନ୍ଦଫନ୍ଦନ ଗୋପୀନାଥ' ବୋଉ ମଝିଆଁ ମାଇଁ ତାକୁ କହିଲେ – ଫନ୍ଦଫନ୍ଦନ କଣ କହୁଛ ? କହ ନନ୍ଦନନ୍ଦନ ଗୋପୀନାଥ' ।

ସାନ ଜେଜେଙ୍କ ସ୍ତ୍ରୀ ଟକିମା । କଳା ଟିକିଲି ନାଇ ଥାଆନ୍ତି । ସୁକେଶୀ । ଅଳ୍ପବୟସରେ ତାଙ୍କର କାଳ ହୋଇଯାଇଥିଲା ।

ମାଇଁମାନଙ୍କ ଶରଧା କହିଲେ ନ ସରେ । ମାମୁଁମାନେ ଚିପା ପାଇଜାମା ରେଶମୀ କୁର୍ତ୍ତା ପଗଡ଼ି ମୁଣ୍ଡରେ ବାନ୍ଧି, ଜରିଦିଆ ନାଗରା ଜୋତା ପିନ୍ଧି, ଗଳାରେ ଗଜରାମାଳ ସଂଗେ କର୍ପୂରମାଳୀ ପିନ୍ଧି ବରବେଶ ହୋଇ ଫୁଲରେ ସଜା ହୋଇଥିବା ମୋଟରରେ ବସି ବିଭା ହେବାକୁ ଯାଇ ମାଇଁ ଆଣନ୍ତି । ଖୁବ୍ ପାଟପିତାମ୍ବରୀ ହୀରାନୀଳା ମୋତି ଗହଣା ପିନ୍ଧା ମାଇଁ ସବାରିରୁ ଓହ୍ଲେଇ ଓଢ଼ଣା ପକେଇ ଲଇଁ ଲଇଁ ଚାଲନ୍ତି । ଓଢ଼ଣା ଟେକି ମୁହଁ ଦେଖାଇଲେ ଆଖି ଦୁଇଟି ବୁଜି ଦିଅନ୍ତି । ପ୍ରତ୍ୟେକ ମାଇଁଙ୍କର ଗୋଟାଏ ଗୋଟାଏ ବିଶେଷ ଗୁଣ । ବଡ଼ ମାଇଁ ଆଦରମଣିଙ୍କର ସ୍ମରଣ ଶକ୍ତି ପ୍ରଖର । ପଢ଼ାଶୁଣାରେ ମନ । ବୋଉ ଶିଖାରେ ପଡ଼ି ସେ ଓ ନୂଆ ମାଇଁ ବସନ୍ତକୁମାରୀ ଦିନାକେତେ ଖଦଡ଼ ପିନ୍ଧିଲେ, ହିନ୍ଦୀ ପଢ଼ିଲେ । ନୂଆ ମାଇଁଙ୍କର ହସ୍ତାକ୍ଷର ସୁନ୍ଦର । ସାନ ମାଇଁ- ମୁଁ ଡ଼ାକେ ସାନ ବୋଉ ଚନ୍ଦ୍ରପ୍ରଭା ରୂପରେ ଚନ୍ଦ୍ରପ୍ରଭା । ତାଙ୍କ ମାଂସ ରନ୍ଧା, ପାନଭଙ୍ଗା, କେଶସଜା ଆଦିର ପଟାନ୍ତର ନାହିଁ । ଆମ ମାଇଁ ଉର୍ମିଳା କଳାପ୍ରେମୀ, ଛବି ଆଙ୍କନ୍ତି, କବିତା ଲେଖନ୍ତି । ଚିତା ମୁରୁଜ ଫୁଲଗୁନ୍ଥା ଆଦି ଲଳିତ କଳାରେ ପ୍ରବୀଣା । ଗୋଡ଼ଘଷା, ମୁଣ୍ଡକୁଣ୍ଡା, ଆଦି କାମରେ ଧୂରନ୍ଧର । କଢ଼ାଙ୍ଗ ମାଇଁ ସୂର୍ଯ୍ୟମଣି ରୋଗୀ ପରିଚର୍ଯ୍ୟାରେ ଅତୁଳନୀୟା । କେହି ରୋଗରେ ପଡ଼ିଲେ କଢ଼ାଙ୍ଗ ମାଇଁ ଖୋଜା ହେବେ । ରୋଗୀର ରୁଚି ଅନୁସାରେ ପଥ୍ୟ ପ୍ରସ୍ତୁତ କରିବାରେ କେହି ତାଙ୍କ ସରି ହେବେ ନାହିଁ । ସାନ ମାଇଁ ଜାନକୀ ଥିଲେ ମୋ ଆଇଙ୍କ ଲେଫ୍‌ଟେନେଣ୍ଟ । ଆଇ ଯୁଆଡ଼େ ସେ ସିଆଡ଼େ । ନଗି ମାମୁଁ ତ ଏକ ପ୍ରକାର ରୁଗ୍‌ଣ । ଛୁଆ ମାଇଁ ସୁରସୁନ୍ଦରୀ ମୋ ଠାରୁ ବୟସରେ ସାନ । ସେ ମୋର

ସାଙ୍ଗ । ୧୯୩୨ରେ ମୁଁ ଗିରଫ ହୋଇ ଜେଲ୍ ଗଲି । ସେ ମଧ ଜେଲ୍ ଯିବାକୁ ଅଙ୍ଗଟ ହେଲେ । ବାରତେର ବର୍ଷର ବାଳିକା ବଧୂ ଶାଶୁଘରେ କିପରି ବିଚିତ୍ର ଦଶା ଭୋଗ କରେ ଛୁଆ ମାଈଁଙ୍କୁ ଦେଖି ମୁଁ ତାହା ଜାଣିଲି ।

ମାଈଁମାନଙ୍କର ମୁଖ୍ୟ ଧନ୍ଦା ପାନଭଙ୍ଗା, ଫୁଲଗୁନ୍ଥା, ଠାକୁର ଘରେ ସଞ୍ଜବଳା । ପାନଭଙ୍ଗାଟା ଗୋଟାଏ ବଡ଼ ଧନ୍ଦା । ୨୦/୨୫ ପ୍ରକାର ପାନ ଭଙ୍ଗା ହେବ । ସମସ୍ତଙ୍କ ଫର୍ମୁଲା ଅଲଗା । ଖିଲ ମୋଡ଼ା ମଧ ଅଲଗା । ବିରାଟ ପିତ୍ତଳ କୁଣ୍ଡରେ ଭଙ୍ଗା ପାନ ଓଦାକନାରେ ଗୁଡ଼ା ହୋଇ ରହେ। ଚାକରମାନେ ଆସି ନିଜ ନିଜ ଖାଉନ୍ଦଙ୍କ ପାନ ମାଗି ନିଅନ୍ତି । ପାନ ନ ଖାଇବାବାଲାଙ୍କ ପାଇଁ ସରୁ ସିମେଇ ପରି ଲମ୍ବା ଲମ୍ବା ଗୁଆ କଟା ହୋଇ ସେଥିରେ ଧନିଆଚାଉଳ, ଅଳେଇଚ ଦାନା, ଖୁରୁଡ଼ି ନଡ଼ିଆ ଆଦି ମିଶା ହୋଇ ବୋତଲରେ ଥାଏ । ସରୁ ଗୁଆ କାଟିବା ଗୋଟାଏ ବିଶେଷ କଳା । ସାନ ବୋଉ (ବ୍ରଜସୁନ୍ଦର ଦାସଙ୍କ ଝିଅ)ସେ କଳାରେ ପ୍ରବୀଣା ଥିଲେ ।

ମୁଁ ମାମୁଁ ଘରକୁ ଗଲେ ମୋତେ ସଜେଇବାକୁ ମାଈଁମାନେ ସୁଖ ପାଉଥିଲେ । ଗୋଟାଏ ଗାମୁଛା ଓଦାକରି ମୋ ମୁଣ୍ଡରେ ପକାଇ ପାତା ଟାଣି କେଶ ପ୍ରସାଧନ କରାଯାଉଥିଲା । ଦକ୍ଷିଣୀ ବେଣୀ ସଜ ଓ ଅନ୍ୟାନ୍ୟ ଅଳଙ୍କାର ପିନ୍ଧାଇ ଦେଇ ସେମାନେ ଆଶା କରୁଥିଲେ ଯେ ମୁଁ କଣ୍ଢେଇଟି ପରି ବସି ରହିବି । ମାତ୍ର ମୁଁ ସୁବିଧା ପାଇବା ମାତ୍ରେ ଦାଣକୁ ପଳାଇ ଆସି ଭାଇମାନଙ୍କ ସାଂଗରେ ଖେଳିବୁଲି ବେଶବାସ ଅଲରା କରି ଦେଉଥିଲି ।

ମାଉସୀ ଆସନ୍ତି ତେନ୍ତୁଳିପଦାର । ତାଙ୍କ ସାଂଗରେ କୁନାଭାଇ, ଟୁଆଁ, ପୁଟି, ଗଉ ଆସନ୍ତି । କୁନା ଭାଇ ଆମର ସରଦାର୍ । ନାନା ପ୍ରକାର ଖେଳ ଜାଣେ । ବଡ଼ଜେଜେ କଟକରେ ନ ଥିଲେ ତାଙ୍କ ବୈଠକଖାନାରେ ଆମେ ଉତ୍ପାତ ହେଉ । ମାଉସୀଙ୍କର ଗୋଟାଏ ଝିଅ ହେଲାପରେ ରକ୍ତହୀନତା ହେତୁ ମୃତ୍ୟୁ ହେଲା । ସେ ଝିଅ ମଧ ବାହୁଡ଼ିଗଲା । କୁନାଭାଇ ପ୍ରଭୃତି ଆଈଙ୍କ ପାଖରେ ରହିଲେ । ମଉସା ପୁଣି ବିଭା ହେବାରୁ ସେମାନେ ତେନ୍ତୁଳିପଦା ଗଲେ । କଣ୍ଟାପାଗିରୁ ମାଳଅପା, କୁନାଅପା ଆସନ୍ତି । ତାଙ୍କ ପୁଅଝିଅ ଭୂଲିଆ, ଚୁନି, ମିନି, ଶ୍ୟାମ, ବେବୁ, ଇଲା ।

ଆଉ ଜଣେ ମାଈଁ କୁନୀ ମାଈଁ । ସେ ବୋଉର ମାଉସୀ ପୁଅ ଭାଇ ଟୁଙ୍ଗୁ ମାମୁଁ - ନିତ୍ୟାନନ୍ଦ କାନୁନଗୋଙ୍କ ସହଧର୍ମିଣୀ । ଟୁଙ୍ଗୁ ମାମୁଁ 'ଭାରତୀ ମନ୍ଦିର' ରେ ସଂପୃକ୍ତ ଥିଲେ । ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ । ଚରଖା

ସଂଘର ସେକ୍ରେଟାରୀ, ଓଡ଼ିଶାର ରାଜସ୍ୱ ମନ୍ତ୍ରୀ, କେନ୍ଦ୍ରରେ ଶିକ୍ଷା ମନ୍ତ୍ରୀ, ଗୁଜରାଟ ଓ ବିହାରର ରାଜ୍ୟପାଳ ହୋଇଥିଲେ । ବୋଉର ଆଗ୍ରହରେ ସେ କୋଇମ୍ବାଟୁର ଯାଇ ମହୁଚାଷ ଶିଖି ଆସି ବାପାଙ୍କୁ ତାହା ଶିଖାଇଲେ । ଭ୍ରାତୃସ୍ନେହ ସହିତ ଆଦର୍ଶଗତ ଐକ୍ୟ ହେତୁ ବୋଉ ସହିତ ପରିଣତ ବୟସରେ ତାଙ୍କର ଅନ୍ତରଙ୍ଗତା ବହୁତ ବଢ଼ି ଯାଇଥିଲା । କୁନୀ ମାଇଁଙ୍କୁ ତାଙ୍କ ଶଶୁର ଘର ଚଳାଇବା ତାଲିମ୍‌ଟି ଭଲ ଭାବରେ ଦେଇଥିଲେ । ମହାଜନୀ ସୁଧ ହିସାବଠାରୁ ଆରମ୍ଭ କରି ନଡ଼ିଆ ରସରେ ଚିଙ୍ଗୁଡ଼ି ରାନ୍ଧିବା ଯାଏ ସବୁ ଘରକରଣା କାମରେ ସେ ସୁଦକ୍ଷା ଥିଲେ ।

ବୋଉର ମାଉସୀଙ୍କୁ ଆମେ ଡ଼ାକୁଥିଲୁ ପୁରୀମା । ସେ ଦୁଇଟି ମହତ୍ କାର୍ଯ୍ୟ କରିଥିଲେ । ରୋଗଯନ୍ତ୍ରଣାରେ କାତର ହୋଇ ତାଙ୍କର ବୋଉ ପୋଖରୀରେ ଝାସ ଦେଇ ବୁଡ଼ି ଯାଉଥିବା ବେଳେ ସେ ପହଁରି ଯାଇ ତାଙ୍କୁ ଉଦ୍ଧାର କରିଥିଲେ । ପୁଣି ତାଙ୍କ ସ୍ୱାମୀ ଉନ୍ମାଦ ଅବସ୍ଥାରେ ନିଜେ ଉଲଗ୍ନ ହୋଇ ସେହି ଲୁଗା ବେକରେ ଭିଡ଼ି ଶ୍ୱାସରୁଦ୍ଧ ହେବା ଅବସ୍ଥାରେ ପହଞ୍ଚିଥିବା ବେଳେ ପୁରୀମା ସେ ଲୁଗା ଫାସ କାଟି ତାଙ୍କ ପ୍ରାଣ ରକ୍ଷା କରିଥିଲେ । ସ୍ୱାମୀ ସ୍ତ୍ରୀ ଉଭୟେ ଥିଲେ ଚରଣ ଦାସ ବାବଜୀଙ୍କ ଶିଷ୍ୟ । ପୁରୀମା ସହସ୍ର ଗୃହଜଞ୍ଜାଳ ମଧ୍ୟରେ ଥାଇ ପ୍ରତିଦିନ ରାତିରେ ଶୋଇବା ପୂର୍ବରୁ କିଛି ସଦ୍‌ଗ୍ରନ୍ଥ ପଢୁଥିଲେ । 'ସ୍ୱାଧ୍ୟାୟାନ୍ ମା ପ୍ରମଦ' ଉପଦେଶକୁ ସେ ତାଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଆଈ ସତ୍ୟଭାମାପୁରରେ ଥିବାବେଳେ ଆମେ ସତ୍ୟଭାମାପୁର ଯାଉଥିଲୁ । ମାମୁଁଙ୍କ ବିଭାଘର ସତ୍ୟଭାମାପୁରରେ ହୋଇଥିଲା । ବୋଉ ସାଂଗର ସୁଆରୀରେ ବସି ଆଣ୍ଠିଏ ପାଣିରେ ମହାନଦୀ ପାରି ହେଲା ବେଳକୁ ସୁଆରୀ ଗଉଡ଼ଙ୍କ ପଦକ୍ଷେପରେ ପାଣିର ଛଳଛଳ ଶବ୍ଦ ସାଂଗକୁ ସୁଆରୀ ଡ଼ାକ

'ହୁମେରା ଭାଇରେ ଖବରଦାରୀରେ

ହକୁମୁ ବେଲ ଧାମୁକ ଧୋବଲ' ଏବେ ବି କାନରେ ବାଜୁଛି ।

ମାମୁଁଙ୍କ ବିଭାଘରକୁ ହାତୀ ଆସିଥିଲା । ମାଉସୀ ପୁଅ ଭାଇ କୁନା ଭାଇ ଟୁଆଁ ସାଙ୍ଗରେ ମୁଁ ହାତୀରେ ଚଢ଼ି ବୁଲେ । କଲିକତାରୁ ଆସିଥିଲେ ଗୋରା ସାହେବଙ୍କ ବ୍ୟାଣ୍ଡପାର୍ଟି । ଶାଗୁଆ ମଖମଲ ଖଦୀ ଲୁଗା ଚଉକୀରେ ବସି ପଞ୍ଚୁହତା ଗୋରା ସାହେବ ବ୍ୟାଣ୍ଡ ବଜାଉଥାନ୍ତି । ମାମୁଁ ମଙ୍ଗୁଳି ହୋଇ ମୁହଁ ଭୁରୁଙ୍ଗା କରି ଚାଉଳ ଆଞ୍ଜୁଳି ଧରି ଯାଉଥାନ୍ତି – ମୋତେ ମାମୁଁଙ୍କ ଠାରୁ ବ୍ୟାଣ୍ଡ ମାଷ୍ଟର ଢ଼େର୍ ସୁନ୍ଦର ଦିଶୁଥାଏ । ଆମକୁ ସମ୍ଭାଳିବାକୁ ନିଯୁକ୍ତ ହୋଇଥାନ୍ତି ଚିନ୍ତା ନାୟକ ଓ ଅନନ୍ତା ମା । ଅନନ୍ତା ମା ଦାନ୍ତଘଷା

ବ୍ୟବସ୍ଥା କରେ ତେଲ ଲଗେଇ ଦିଏ, କନକଦଣ୍ଡାରେ ଘଷିପୁଛି ଦେଇ ଗାଧୁଆଇ ଆଣେ । ଚିନ୍ତା ବାଲି ପୋଖରୀରେ ଆମକୁ ଡ଼ଙ୍ଗାରେ ବସାଇ ଡ଼ଙ୍ଗା ଖେଳାଏ । ଗୋଟାଏ ଚାରିଚକିଆ କାଠ ଗାଡ଼ିରେ ବଡ଼ ପାଣି ଟବ୍ ତା ଉପରେ ଶୋଇ ଆମକୁ ସେ ଟବ୍ ଭିତରେ ବସାଇ ଗାଡ଼ିରେ ଦୁଇଟା ଛେଳି ଯୋଚି ଦେଇ ଛେଳିକୁ ଅଡ଼ାଏ । ଖରାବେଳେ ଆମେ ବଙ୍ଗଳାରେ ଶୋଇବାକୁ ବାଧ୍ୟ । କାଳେ ଅମାନିଆ ହୋଇ ଖରାରେ ବୁଲିବୁ ସେଥିପାଇଁ ଚିନ୍ତା ଆମକୁ ଜଗେ । ମାମୁଁ ଘର ବିଭାଘର ଉପଲକ୍ଷ୍ୟେ ମାମୁଁଙ୍କ ସ୍ୱରଚିତ ନାଟକ ଅଭିନୀତ ହେଲା । ଲାଲୁ ପୂଜାରୀ ପ୍ରଭୃତି ମାଇଁ ମାଉସୀଙ୍କ ପାଟ ପିନ୍ଧି ଝିଅ ସାଜି ଅଭିନୟ କଲେ । ମୁଁ ସେ ଗୀତ ଶୁଣି ଶୁଣି ଶିଖିଗଲି । ଚିନ୍ତା ଖଞ୍ଜଣୀ ବଜାଏ ମୁଁ ରୁମାଲ୍ ଖଣ୍ଡେ ଧରି ସେ ଗୀତ ବୋଲି ନାଚେ ।

ଗୋପୀପଣ୍ଡା ଆମକୁ ବିହନ ଘର ବାରଣ୍ଡାରେ ପାଠ ପଢ଼ାନ୍ତି । ପାଣି ପିଇବା ନାଆଁରେ ସେଠୁ ଖସି ଯିବାକୁ ପାଞ୍ଚ କଲେ ଗୋପୀ ପଣ୍ଡା କହନ୍ତି – ଏଠି ଛେପ ପକେଇ ଯାଆ । ଛେପ ଶୁଖିବା ଆଗରୁ ଆସିବୁ ।

ମାଇଁ ଆସିଲେ । ସମସ୍ତେ କହିଲେ 'ସୁନା ଖଡ଼ିକା' । ମାଇଁ ଫୁଲଗୁନ୍ଥା, ପାନଭଙ୍ଗା, ଗୋଡ଼ ଘଷା, ଶାଶୁଙ୍କ ଗୋଡ଼ ଧୂଆ, ଠାଭଙ୍ଗା ଆଦି ନିପୁଣ ବୋହୂପଣିଆ କରି ପ୍ରଶଂସାଭାଜନ ହେଲେ ।

ମାମୁଁଙ୍କ ବିଭାଘରେ ଭାଇ ମାରକୁଣ୍ଡୀ ହୋଇ ଗଲେ । କୁନା ଭାଇ ଗୋଟାଏ ଗୀତ ବୋଲିଲେ –

ବର ଖାଏ ବରା । କନିଆ ଖାଏ ଛୁଞ୍ଚ ପତର<br>ମାରକୁଣ୍ଡୀ ଖାଏ ଛେରା ।

ଭାଇଙ୍କ ପାଇଁ ମାରକୁଣ୍ଡୀ ବେଶ ହେବାକୁ ବନାରସୀ ଜୋଡ଼ କୁର୍ତ୍ତା ଆଦି ଆସିଥିଲା । ଭାଇ ଖଦୀ ପିନ୍ଧୁଥିଲେ । ବନାରସୀ ଜୋଡ଼ ପିନ୍ଧିବାକୁ ମନା କରିଦେଲେ । ଖଦଡ଼ ଧୋତି ପିନ୍ଧି କରି ବର ସାଂଗରେ ଗଲେ । ଏ କଥାରେ ଖୁବ୍ ଚହଳ ପଡ଼ିଲା ।

ମାମୁଁ ଘର ବିଭାଘରରେ ପାଟପୀତାମ୍ବରି ହୀରନୀଳା ମୋତି ମାଣିକର ଝିଲିମିଲି ଭିତରେ ମୋଟା ଖଦଡ଼ ଶାଢ଼ୀ ପିନ୍ଧିଥିବା ମୋ ବୋଉ ବାରି ହୋଇଯାଏ । ସେ ଦିଶେ ସମସ୍ତଙ୍କ ଠାରୁ ସୁନ୍ଦର– ଶାନ୍ତ, ଆତ୍ମସମାହିତ ତ୍ୟାଗର ମହିମାରେ ଉଜ୍ଜ୍ୱଳ ।

କାଳି ଜହ୍ନିଆ ରାତି ପରି ଛାପିଛାପିକା ହୋଇଥାଏ ବାଲ୍ୟସ୍ମୃତି । ସ୍ଥାନ କାଳପାତ୍ରର ମାତ୍ରା ସେ ସ୍ମୃତିରେ ନ ଥାଏ । କାର୍ଯ୍ୟ କାରଣ ସମ୍ବନ୍ଧ ବୁଝିବା ସାମର୍ଥ୍ୟ ମଧ୍ୟ ନ ଥାଏ ଅଥଚ ଶାସ୍ତ୍ର କହେ – ସେହି ବୟସରେ ହିଁ ମଣିଷ ଭବିଷ୍ୟତ ଜୀବନ ପାଇଁ ସଂସ୍କାର ସଞ୍ଚୟ କରେ ।

ଖୁଡ଼ୀ ଆସିବା ପର୍ଯ୍ୟନ୍ତ ଭାଇ ମୁଁ ମାଡ଼ଗୋଳ ଲାଗୁଥିଲୁ । ଭାଇ ମୋ ଚୁଟି ଝିଙ୍କନ୍ତି, ମୁଁ ତାଙ୍କୁ ଆଂପୁଡ଼େ । ମୋ ନଖ ବଡ଼ ମଣିଷମାନେ କାହିଁକି କାଟିଦେଉ ନ ଥିଲେ ତାହା ମୁଁ ଜାଣି ନାହିଁ । ଭାଇଙ୍କ ଗୋରା ଦେହରେ ଆମ୍ପୁଡ଼ା ଚିହ୍ନ ପରିସ୍ଫୁଟ ହୋଇଯାଏ ।

ଖୁଡ଼ୀ ଆସିଲାରୁ ଦିନେ ବୋଉ ଭାଇଙ୍କୁ ଓ ମୋତେ କହିଲା - ତମେ ଆଉ ମାଡ଼ଗୋଳ ହୁଅନାହିଁ । ତମ ମାଡ଼ଗୋଳ ଦେଖିଲେ ଖୁଡ଼ୀ ତା ବାପଘର ଲୋକଙ୍କୁ ମାଡ଼ଗୋଳ କଥା କହିଦେବ । ସେହିଦିନୁଁ ଆମ ମାଡ଼ଗୋଳ ଥପ୍ କରି ବନ୍ଦ ହୋଇଗଲା । ଏଇ କଥାଟା କହିବାର ଉପଯୁକ୍ତ ସମୟରେ କୁହାଗଲାରୁ ଆମ ଉପରେ ତାର ପ୍ରଭାବ ପଡ଼ିଲା ।

ପରିଣତ ବୟସରେ ମୁଁ ଭାବିଲି ଦେଶ ସ୍ୱାଧୀନ ହେବା ଦିନ ଯଦି ଘୋଷଣା କରି ଯାଇଥାନ୍ତା ଯେ ଜାତି ଯୌତୁକ ମଦ ଆଉ ସ୍ୱାଧୀନ ଭାରତରେ ଚଳିବ ନାହିଁ ତେବେ ଦେଶ ଉପରେ ନିଶ୍ଚୟ ତାର ପ୍ରଭାବ ପଡ଼ିଥାନ୍ତା । ଲୋକେ ଭାବିଥାନ୍ତେ ସ୍ୱାଧୀନ ଦେଶର ଚଳଣି ଏହିପରି । ଏଇଟା ଗୋଟାଏ ମନସ୍ତାତ୍ତ୍ୱିକ ଚିକିତ୍ସା ବୋଲି ଭାବିଲି ।

ସବୁଠାରୁ ପିଲାଦିନର ସ୍ମୃତି – ଯାଜପୁରରେ ଥାଉ । ବାପା ଛୁଞ୍ଚି ପରି ମୁନିଆ ନିଶ ରଖିଥାନ୍ତି । କେହି ଅତିଥି ଆସିଲେ ବାପା ଡ଼ାକନ୍ତି, ''ମାନି ! ପାନ ଆଣ'' ।

ଦିନକର କଥା । ଯାଜପୁର ଘର ବାରଣ୍ଡାରେ ଗୋଟାଏ ପାଣି ଟବ୍ ଥୁଆ ହୋଇଛି । ଗୋଟାଏ ହନୁ ମାଙ୍କଡ଼ ଆସି ସେ ଟବ୍‌ରୁ ପାଣି ପିଇଲା । ଆମ ଭାନୁଆ ତାକୁ ପିଟି ପିଟି ମାରି ଦେଲା । ସମସ୍ତେ ଭାନୁଆକୁ ନିନ୍ଦିଲେ - ମାଙ୍କଡ଼ ରାମଙ୍କ ଭକ୍ତ-ରାମଦାସ-ତାକୁ ମାଇଲୁ !

ଆଉଦିନେ କଟକରେ ଆମ ଜେଜେଙ୍କ କଚିରୀ ଘରେ ଗଭର୍ଣ୍ଣମେଣ୍ଟ ଟ୍ରାନ୍ସଲେଟର ଶ୍ରୀ ଉମାକାନ୍ତ ମହାପାତ୍ର ରହୁଥାନ୍ତି । ଆମ ଦିନା ମୋତେ କାନ୍ଧରେ ବସାଇ ତାଙ୍କ ଘରକୁ ନେଇଗଲା । ତିନିଚାରିଜଣ ଲୋକ ଗୋଟାଏ କ୍ୟାନ୍‌ଭ୍ୟାସ୍ ବ୍ୟାଗ୍ ତଳେ ଥୋଇ ବିଳାତୀ ଲୁଗା ମାଗୁଥାନ୍ତି । ମୁଁ ଖଣ୍ଡେ ଇସ୍ପାପାନ୍ କିନାରୀ ବିଳାତୀ ଲୁଗା ପିନ୍ଧିଥାଏ । ମୋତେ ଡ଼ର ମାଡ଼ିଲା ମୋ ଲୁଗାଟା ନେଇ ଯିବେ ନାହିଁ ତ । ଦିନାକୁ ଜକଟି ମକଟି ଧରିଲି । ପରେ ଜାଣିଲି-ସେ ଆମ ଦାସେ ଆପଣେ । ଦିନା ବାପାଙ୍କ ଗୋଡ଼ ଘଷି ଦିଏ । ଘଷି ଦେଲା ବେଳେ ବାପାଙ୍କ ପିଠିରେ ଦୁମୁଦୁମୁ ବିଧାଚାପୁଡ଼ା ମାରେ ।

ଆମ ଘରର ହାଲଚାଲ ସେତେବେଳେ ବିଚିତ୍ର । ଦାଦା ବାପା ଅସହଯୋଗ ଆନ୍ଦୋଳନରେ ମାତିଥାନ୍ତି । ଆଣ୍ଠୁ ନ ଲୁଚା ଲୁଗା ପିନ୍ଧି ଖାଲି ଦେହ ଖାଲି ଗୋଡ଼ରେ ସେ

ଦୁହେଁ ଓଡ଼ିଶା ଚଷୁଥାନ୍ତି । ଘରଖରଚ ପାଇଁ ମାସିକ ଧରାବନ୍ଧା ଆୟ ନାହିଁ । ବୋଉର ତ ବାପଘରେ ତିନିପୁରୁଷ ଡ଼େପୁଟି ମ୍ୟାଜିଷ୍ଟ୍ରେଟିଆ ଚଳଣି । ତଗିକୁନ୍ଦ, କଳନ୍ତିରୀ, ନୂଆ ଗାଁ, ରେତାପଡ଼ା, ଖମାରରୁ ଧାନ, ଚାଉଳ, ମୁଗ ବିରି, ଘିଅ, ନଡ଼ିଆ ଆଦି ରସଦ ଯାହା ଆସିବ ସେଥିରେ ଘର ଚଳିବ । ଅବଶ୍ୟ ଆମ ଆଈ ମଧ୍ୟେ ମଧ୍ୟେ ବୋଉର ସାହା ଭରଷା ହୁଅନ୍ତି । ତା ସାଂଗକୁ ମା'ର କଡ଼ା ତାଗିଦ୍ ବୋଉ ଖୁଡ଼ୀଙ୍କ ଛୁଆଁ ଖାଇବ ନାହିଁ । ଏ ପ୍ରକାର ପରିସ୍ଥିତିରେ ସୁଦ୍ଧା ଖୁଡ଼ୀ ଆଦୌ ଘାବରା ହେଲେ ନାହିଁ ।

ବାପା ଦାଦା ତ ବରାବର ଅଳକାଶ୍ରମ ଯାଆନ୍ତି । ଦିନେ ସକାଳେ ଦାଦା ଯେତେବେଳେ ଜଳଖିଆ ଖାଇ ଅଳକାଶ୍ରମକୁ ଯିବାକୁ ବାହାରିଲା, ମୁଁ ଅଳକାଶ୍ରମ ଯିବାକୁ ଅଢଟ ହେଲି । ମା କହିଲା ତୋତେ ସେଠି କିଏ ଖୋଇ ଦେବ ? ବୋଉ କହିଲା-କାହା ପାଖରେ ଶୋଇବୁ ? ଅସଲ ମତଲବ୍ ପିଲାଟାଏ ସାଂଗରେ ଧରି ଗଲେ ଦାଦା ହଇରାଣ ହେବ । ତେଣୁ ମୁଁ ନ ଯାଏ । ମୋର ଏକାଢିଦ୍ ମୁଁ ଦାଦା ସଂଗରେ ଅଳକାଶ୍ରମକୁ ଯିବି । ଅଗତ୍ୟା ଦାଦା ମୋତେ ସାଂଗରେ ନେଲା । ମା ମୋତେ ଯାତ୍ରା ଖରଚ ପଇସା ଗୋଟାଏ ଜ୍ୟାମ୍ପକ୍ ଡ଼ିବାରେ ପୂରେଇ କରି ଦେଲା । କେତେ ପଇସା ଦେଇଥିଲା କେଜାଣି ମୁଁ ସେତେବେଳେ ଗଣି ଶିଖି ନ ଥିଲି ।

ଅଳକାଶ୍ରମ ଥିଲା ଜଗତ୍‌ସିଂହ ପୁରରେ । ୧୯୨୧-୨୨ରେ ସେ ଆଡ଼କୁ ବସ୍ ଚାଲୁ ନ ଥିଲା । ଆମ ଗାଁ ଖେରସକୁ ଜେଜେ, ମା ଘୋଡ଼ାଗାଡ଼ି ବା ସବାରିରେ ଯାଉଥିଲେ । ଜଗତ୍‌ସିଂହପୁରରୁ କଟକ ଅଠେଇଶ ମାଇଲ ବାଟ ଲୋକେ ସାଧାରଣତଃ ଚାଲିକରି ଆସୁଥିଲେ । ବାଟ ଖରଚ ଥିଲା ପଇସାକର ମୋଢ଼ା, ପଇସାକର ଚୂଡ଼ା । ବରଡ଼ା ପାଖରେ ବାରିକମାନେ ଧାଡ଼ି ବାନ୍ଧି ବସିଥାନ୍ତି । ବାଟୋଇ ପଇସାକର ଚୂଡ଼ା ଓ ନବାତ ସଂଯୋଗରେ ଜଳଯୋଗ ସାରି ଶୋଇଯାଆନ୍ତି । ବାରିକ ତାଙ୍କ ଗୋଡ଼ ମୋଡ଼ି ଦେଇ ପଇସାଟିଏ ନିଅନ୍ତି । ମୁଁ ଦାଦା ସଂଗରେ ଗଲାବେଳକୁ ଜଗତ୍‌ସିଂହପୁରକୁ ଟଣା ବୋଟ୍ ଚାଲିଲାଣି । ବିଡ଼ିବାଟିରୁ ବୋଟ୍‌ରେ ବସି ଜଳଯାତ୍ରା ଆରମ୍ଭ ହେଲା । ଚାଟରାର ବିଜୟରାମ ଚୌଧୁରୀ ସେହି ବୋଟ୍‌ରେ ଯାଉଥିଲେ । ସେ ମୋତେ କଣ ସବୁ କହି ମୋ ଯାତ୍ରା-ଖରଚ ପଇସାତକ ଖରଚ କରାଇ ଦେଲେ ।

କେନାଲ୍ କୂଳ ଗଛରୁ ପୁନ୍ନାଗ ଫଳ ଝଡ଼ି ପାଣିରେ ପଡୁଥାଏ । ଲୋକେ ଗୋଟାଏ ଲେଖା ଲମ୍ବ ବାଉଁଶ ଅଗରେ ଟୁକୁଲି ପାଛିଆ ବାନ୍ଧି ପାଣିରୁ ସେ ଫଳ ଛାଣି ନେଇ ଥାଆନ୍ତି । ବୋଟ୍‌ରେ ବନ୍ଧା ହୋଇଥିବା ଦଉଡ଼ିକୁ ଦୁଇଜଣ ଲୋକ ଅଣ୍ଟାରେ ବାନ୍ଧି

କେନାଲ କୂଳେ କୂଳେ ବୋଟ୍ ଆଗେ ଆଗେ ଯାଉଥାନ୍ତି । ଆଉ ଜଣେ ଲୋକ ଗୋଟାଏ ଲଗି ଧରି ଲଗିଟା କୂଳକୁ ଠେଶ ଦେଇ ରଖିଥାଏ ଯେପରି ବୋଟ୍ କୂଳରେ ଧକ୍କା ନ ଖାଇବ । । ଏସବୁ ଦେଖୁ ଦେଖୁ ମୁଁ ଶୋଇ ପଡ଼ିଲି । ଦଶନମ୍ବରରେ ପହଞ୍ଚିଲା ବେଳକୁ ରାତି । ଦାଦା ମୋତେ କାନ୍ଧରେ ପକେଇ ଅଳକାଶ୍ରମକୁ ନେଲା ବେଳେ ମୋ ନିଦ ଭାଙ୍ଗିଗଲା ।

ମାଟି ଘର । ଛଣ ଛପର । ତିନିପଟେ ଲମ୍ବା ଲମ୍ବା ତିନି ସାହାଲା ଘର । ଗୋଟାଏ ପଟେ ମାଟି ପାଚେରୀରେ ଛଣ ଛପର । ମଝି ଅଗଣାରେ ତିନିଟା ପଣସ ଗଛ । ଅଳକାଶ୍ରମରେ ନଦିଆ, ଟୁସୀ ଫକୀର, ଅକ୍ରୁର, କାଳି, ଆଉ କେତେ ପିଲା ହାଉଳାଉ ହେଉଥାନ୍ତି । ସେମାନଙ୍କୁ ଜ୍ୱର ହେଲେ ସେମାନେ ତ କଟକ ଯାଇ ଆମ ଘରେ ରହନ୍ତି । ଡ଼ାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ତାଙ୍କୁ ଔଷଧ ଦିଅନ୍ତି । ବୋଉ ତାଙ୍କୁ ପଥି ଖୁଆଏ । ମୁଁ ସେମାନଙ୍କୁ ଚିହ୍ନିଥାଏ । ମୁଁ ସେମାନଙ୍କ ସାଙ୍ଗରେ ପୁନଙ୍ଗର କାଳୀ ସଂଗେ ସାଂଗ ହେଲି । କେନାଲରେ ଗାଧୋଇଲି । ଦୁର୍ଗାନନା ଯାହା ରାନ୍ଧିଥିଲା ଖାଇଲି । ବୋଉ କହୁଥିଲା- ଅଳକାଶ୍ରମ ପିଲାଏ ଓ ଶିକ୍ଷକ ମୁଣା ଧରି ଚାଉଳ ମାଗଣ କରି ଯାଆନ୍ତି । ଶାରଦ, ଡ଼ାଲୁଅ, ବିଆଳୀ, ସରୁ ମୋଟା ସବୁ ଜାତି ଚାଉଳ ଗୋଟାଏ ମୁଣାରେ ପଡ଼ି ମିଶିଯାଏ । ସେହି ପଞ୍ଚୁବର୍ଣ୍ଣୀ ଚାଉଳ ଅଳକାଶ୍ରମରେ ରନ୍ଧା ହୁଏ । ପାଣି କଖାରୁ ସୁବର୍ଣ୍ଣ ଫଳ । ଲୋକେ ବିକନ୍ତି ନାହିଁ, ଦାନ ଦିଅନ୍ତି । ଆଶ୍ରମର ମୁଖ୍ୟ ଆହାର ଭାତ ଓ ପାଣି କଖାରୁ ତରକାରୀ । ମୁଁ ବୋଧ ହୁଏ ସେୟା ଖାଇଥିବି ।

ସଞ୍ଜ ବୁଡ଼ିଲା । ଆମ୍ବ ତୋଟାରେ ଛାପି ଛାପିକା ଜହ୍ନ ଆଲୁଅ ପଡ଼ିଥାଏ । ସମସ୍ତେ ଗୋଲ ହୋଇ ବସିଲେ । ପ୍ରାର୍ଥନା ହେଲା -'କୋଟି ଜଗତର ରାଜରାଜେଶ୍ୱର ବିରାଜ ହୃଦୟ ଗଗନେ' । ଏପରି ଦୃଶ୍ୟ ମୁଁ ପ୍ରଥମ କରି ଦେଖିଲି ।

ଅଳକାଶ୍ରମରେ ଗୋକୁଳୀ ଦାଦା ମୋତେ ଟେଣ୍ଟେଇ ଚଢ଼େଇ ଗପ କହିଲେ । ପିଲାଏ ମୋତେ ବିଲୁଆ ପାଟିରେ ଡ଼ାହାଣୀ ଆଲୁଅ ଦେଖେଇଲେ । ବିଶ୍ୱନାଥ ନନ୍ଦ ଲୁଗା ବୁଣୁବୁଣୁ ମୋତେ ପାଖରେ ବସାଇ ଗପ କହିଲେ । ସେଠି କେତେଦିନ ରହିଲି ମନେ ନାହିଁ ।

ବାପାବୋଉ କଥାବାର୍ତ୍ତା ହେଲେ ମହାତ୍ମା ଗାନ୍ଧୀ କଟକ ଆସିବେ । ସେ ଆସିଲେ । ନଈ ବାଲିରେ ଯେଉଁ ସଭା ହେଲା, ସେ ସଭା କଥା ମୋର ମନେ ନାହିଁ । ବିନୋଦ ବିହାରୀରେ ମହିଳା ସଭାରେ ଗାନ୍ଧିଜୀଙ୍କୁ ମନେ ରଖିଲା ପରି ଦେଖିଲି । ବୋଉ ତାଙ୍କୁ ସୂତା ମୋଡ଼ା ଦେଇ ଜୁହାର ହେଲେ ।

ଆମେ ସମସ୍ତେ ଗଲୁ ଗୟା କଂଗ୍ରେସ୍‌କୁ (୧୯୨୨) । ଡ଼ିସେମ୍ବର ମାସ, ପ୍ରବଳ ଶୀତ । ଦାଦା ଆମ ସାଂଗରେ ନଥାଏ । ସେ ଓ ମଦନବାବୁ ଯାଇଥାନ୍ତି ସାବରମତୀ । ଆମେ ଗୋମୋ ଷ୍ଟେସନରେ ଗାଡ଼ି ବଦଳ କରିବାକୁ ଅଟକିଲୁ । କଟକ ଷ୍ଟେସନ ଠାରୁ ଗୋମୋ ଷ୍ଟେସନ ବହୁଗୁଣ ବଡ଼ । ଭାଇ କହିଲେ ଏଇଟା ଗୋଟାଏ ଜଙ୍କସନ୍ । ଆମ ରାମଦାସ ବାବାଜୀ ସେହି ହାଡ଼ଭଙ୍ଗା ଶୀତରେ ଗାଧୋଇ ପାଧୋଇ ଚିତା ଚଇତନ ହୋଇ ଷ୍ଟେସନରେ କମ୍ବଳାଟାଏ ପାରି ଦେଇ ଖାଲି ଦେହରେ କୌପୀନବନ୍ତ ହୋଇ ବସି ବଡ଼ ପାଟିରେ ବୋଲୁଥାନ୍ତି । 'ଧଗଦ ଧଗଦ୍ ଧଗଦ୍ ଜ୍ବଳେ ଲଟପଟ ପାବକେ' । ତାଙ୍କ ପାଟିରେ ଷ୍ଟେସନ କଂପୁଥାଏ । ମୁଁ ଭାବିଲି-ଦିନା କହେ'ଶୀତ କଲେ ଗୀତ ଗାଅ' ବାବାଜୀଙ୍କୁ ଶୀତ କରୁଛି ବୋଲି ଏଡ଼େ ପାଟିରେ ଗୀତ ବୋଲୁଛନ୍ତି ।

ଗୟାରେ ପହଞ୍ଚି ପ୍ରତିନିଧିଙ୍କ ପାଇଁ ହୋଇଥିବା ତାଟି ଘରେ ରହିଲୁ । ଶୀତରେ ଭାଇଙ୍କ ପାଟିରେ ତୁଣ୍ଡଘା ହୋଇଗଲା । ବାପାଙ୍କ ସଂଗରେ ସମସ୍ତେ କଂଗ୍ରେସ ଅଧିବେଶନକୁ ଗଲୁ । କଂଗ୍ରେସ ବୋଇଲେ ବୁଝିଗଲି ଅଗଣିତ ଜନସମାଗମ ।

ଭାଇ ମୁଁ ତାଟି ଘରେ ବସିଛୁ । ହଠାତ୍ ଡ଼ାକ ଶୁଭିଲା-''ଭାଉଜୋଉ'' । ଆମେ ତୁଣ୍ଡ ବାରି ଦେଇ ଦାଦା ଦାଦା ପାଟି କଲୁ । ଦେଖିଲା ବେଳକୁ ଦାଦା ମୁହଁରେ ଦାଢ଼ି । ଆଣ୍ଠୁ ନ ଲୁଚା ଲୁଗା ପିନ୍ଧିଛି । ଆଉ ପ୍ରକାରେ ଦିଶୁଛି । ଦାଦା ସାବରମତୀ ଆଶ୍ରମରୁ ଗୟାକୁ ଆସିଥିଲା ।

ଗୟାରେ ବାପା ବୋଉ ଜେଜେଙ୍କୁ ପିଣ୍ଡ ଦେଲେ । ପିଣ୍ଡ ପକେଇ ସାରିବା ପରେ ବ୍ରାହ୍ମଣ ଭୋଜନ ଦେବାକୁ ହୁଏ । ପଣ୍ଡା ପଚାରିଲେ - କେତେ ସେରିଆ ବ୍ରାହ୍ମଣ ଖୋଇବେ ? ଦଶ୍ ବିଶ୍ ନା ପଚାଶ୍ ? ଅର୍ଥାତ୍ ? ବ୍ରାହ୍ମଣମାନଙ୍କର ଶ୍ରେଣୀ ବିଭାଗ ଅଛି । ଯେ ଯେତେସେର ପୁରୀ ମିଠେଇ ଖାଇ ପାରନ୍ତି ସେ ସେତେ ସେରିଆ ବ୍ରାହ୍ମଣ । ଜଣେ ଜଣେ ଏକାଥରକେ ପଚିଶ ସେର ଯାଏ ପୁରୀ ମିଠେଇ ଖାଇ ଦିଅନ୍ତି । ବାପା ବୁଝେଇଲେ ପେଟରେ ଥିବା ଖାଦ୍ୟ ମୁଣିକୁ ଯେତେ ବଢ଼େଇବ ସେ ସେତେ ବଢ଼ିଯିବ ।

ଗୟା ଫେରନ୍ତା ବାଟରେ ଆମେ ଯାଜପୁର ଗଲୁ । ଏବେ ଯେଉଁଟା ଯାଜପୁର କେନ୍ଦୁଝର ରୋଡ଼୍ ଷ୍ଟେସନ୍ ହୋଇଛି ତାରି ନାଆଁଥିଲା ତୋଲିପୁର । ମଣିଷ ଜାତିଟା ନାଆଁ ବଦଳାଇବାରେ ଓସ୍ତାଦ । ମେସୋପଟାମିଆ ହୋଇଗଲା ଇରାକ୍, ରସଲକୋଣ୍ଡା ଭଞ୍ଜନଗର । ଏବେ ଘୋଷୁଥାଅ ଭୂଗୋଳ ! ଦୁଇଟା ଘୋଡ଼ାଗାଡ଼ିରେ ଚଢ଼ି ଆମେ ତୋଲିପୁରରୁ ଯାଜପୁର ଗଲୁ । ଗୋଟାଏ କଳା ବଳଦ ବେକରେ ଧଳା କଉଡ଼ି ମାଳ ମଲ୍ଲିଫୁଲ ପରି ରାତିରେ ଦିଶୁଥାଏ । ଯାଜପୁରରେ ସୂର୍ଯ୍ୟମଣି ବଡ଼ବାପାଙ୍କ ଘରେ ରହିଲୁ ।

ସେ ନିଜ ହାତରେ କିଛି କାମ କରି ପାରୁ ନ ଥିଲେ ଖାଇବା ଲେଖିବା ଆଦି ଛଡ଼ା । ଦିନେ ସେ ରେଳଗାଡ଼ିରେ ଫାଷ୍ଟକ୍ଲାସ୍‌ରେ ଯାଉଥିଲେ । ଚାକର 'ଚାକର' ଡ଼ବାରେ ଥିଲେ । ତାଙ୍କୁ ଭାରି ଶୋଷ କଲା । ପାଣି ସୁରେଇ, ଗିଲାସ ପାଖରେ ଥାଏ । ପାଣି ପିଇପାରୁ ନ ଥାନ୍ତି । ସେ ଶୋଷରେ ଛଟପଟ ହେଉଥିବାର ଦେଖି ଜଣେ ସହଯାତ୍ରୀ ପଚାରିଲେ - ଆପଣଙ୍କର କ'ଣ କଷ୍ଟ ହେଉଛି ? ବଡ଼ପା କହିଲେ - ଶୋଷ ହେଉଛି । ସହଯାତ୍ରୀ କହିଲେ ପାଣି ତ ପାଖରେ ଅଛି, ପିଉ ନାହାନ୍ତି । ବଡ଼ବାପା କରୁଣ ଦୃଷ୍ଟିରେ ତାଙ୍କୁ ଚାହିଁ କହିଲେ - ପାଣି ଗଡ଼େଇ ଦେବ କିଏ ? ସହଯାତ୍ରୀ ପାଣି ଗଡ଼େଇ ଦେଲାରୁ ପିଇଲେ ।

୧୯୨୨-୨୩ ମସିହା ହୋଇଥିବ । କଟକରେ ଭାରି ଘରପୋଡ଼ି ସାଙ୍ଗକୁ ଚୋରଗୋଳ ହେଲା । ମା ଗହଣା ଓ ଗିନି ମୋହରକୁ ଲୁହାସିନ୍ଧୁକରୁ କାଢ଼ି ନେଇ ଗୁପ୍ତି ଭିତରେ ରଖିଦେଲା । ଲୋକେ କହିଲେ କଂଗ୍ରେସିଆଙ୍କୁ ବଦନାମ୍ କରିବାକୁ ଅମୁକ ପୁଲିଶ ସାହେବ ଘରପୋଡ଼ି କରାଉଛନ୍ତି । ଚାଳରେ ପରମାଙ୍ଗାନେଟ୍ ଅଫ୍ ପୋଟାସ୍ ଗୁଞ୍ଜି ଦେଲେ ନିଆଁ ଲାଗି ଯାଉଛି ।

ଆମ ଦାଦା ନିଆଁ ଲିଭେଇବାକୁ ଧାଇଁ ଧାଇଁ ଯାଏ । ଘରକୁ ଫେରିବା ବେଳକୁ ଦିନେ ଦିନେ ତା ପିଠି, ହାତ ସିଝି ଯାଇଥାଏ ।

ଶ୍ରୀ ଉମାକାନ୍ତ ମହାପାତ୍ରଙ୍କ ଝିଅ ବାସ ମୋଠାରୁ ବର୍ଷେ ବଡ଼ । ସେ ରେଭେନ୍ସା ଗାର୍ଲ ସ୍କୁଲକୁ ପାଠ ପଢ଼ିବାକୁ ଗଲା । ସ୍କୁଲରୁ ଫେରି ସେ ମୋତେ ସ୍କୁଲ୍ ଗପ କହେ । ସ୍କୁଲରେ ସରଲାନୀ ଏଟାନୀ ପଢ଼ାନ୍ତି । ସେଠି କେତେ ସାଂଗ । ଖେଳଛୁଟିରେ ଖେଳ ଶିଖା ହୁଏ । ଧୋବା କୁମ୍ଭୀର ଲୁଚକାଳୀ, ଖେଳଗୀତ ମଧ୍ୟ ଶିକ୍ଷାହୁଏ -'ପଢ଼ିବି ନାହିଁ ମୁଁ ଖେଳିବି ଖେଳ ଖେଳ ପଡ଼ିଆରେ, ଭୋକ କଲେ ଖାଇବି ମୁହିଁ ମୁଢ଼ି ନଡ଼ିଆରେ, ଶୋଷ କଲେ ପିଇବି ପାଣି ଗଡ଼ ଗଡ଼ିଆରେ । -'ଗୋଟାଏ ହାଫଟନ୍ ବସ୍ ପରି ଲମ୍ବା ଘୋଡ଼ାଗାଡ଼ି ସ୍କୁଲରୁ ଆସେ । କୋଚ୍‌ମ୍ୟାନ୍ ଡ଼ାକେ - 'ଗାଡ଼ି ଆଇଲା ଆସ' । ବାସ ବହି ଖାତା ଧରି ସେ ଗାଡ଼ିରେ ସ୍କୁଲକୁ ଯାଏ ଆସେ ।

ଏସବୁ ବର୍ଣ୍ଣନା ଶୁଣି ମୁଁ ମନ୍ତ୍ରମୁଗ୍ଧ ହୋଇଯାଏ । ବାସକୁ କହେ ମୁଁ ବି ତୋ ସ୍କୁଲରେ ପଢ଼ିବି ଯେ । ବାସ ବାତ୍ସଲ୍ୟପୂର୍ଣ୍ଣ ଦୃଷ୍ଟିରେ ଚାହିଁ ମୋତେ କହେ ତୁ ଆଗ କ୍ଲାସ୍ ଉଠି ପାରିବୁ ନା ? ମୁଁ କଳ୍ପନା କରେ କ୍ଲାସଟା ବହୁତ ଉଚ୍ଚରେ । ବୋଧହୁଏ ପାହାଚ ନାହିଁ । ମୁଁ କଣ ପେଟେଇ ହାମୁଡ଼େଇ ଉହୁଙ୍କି କରି କ୍ଲାସ୍ ଉଠିଯିବି ନାହିଁ ? ଆଖର ବାସ

କଥା ହିଁ ସତ ହେଲା । ସେ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ କ୍ଲାସକୁ ଟପାଟପ୍ ଉଠିଗଲା । ମୁଁ ଗୋଟିଏ ସୁଦ୍ଧା କ୍ଲାସ ଉଠି ପାରିଲି ନାହିଁ ।

ଓଡ଼ିଆ ପଢ଼ି ଶିଖିବାରୁ ବାପା ପଣ୍ଡିତ ନୀଳକଣ୍ଠ ଦାସଙ୍କ ପିଲାଙ୍କ ରାମାୟଣ, ପିଲାଙ୍କ ମହାଭାରତ, ପିଲାଙ୍କ ଭାଗବତ ଆଣି ଦେଲେ । ସେ ବହିକୁ ବାରମ୍ବାର ପଢ଼ିପଢ଼ି ବହିର ମଲାଟ ଉଡ଼ିଗଲା । ବାଳକୃଷ୍ଣ କରଙ୍କ 'ଫୁଲଚାଙ୍ଗୁଡ଼ି' ରାଧାନାଥ ରଥଙ୍କ 'ଶୈବ୍ୟା' ପଢ଼ି ମୁଁ କେତେ କାନ୍ଦିଛି । ଉତ୍କଳମଣିଙ୍କ 'ଧର୍ମପଦ' ତହୁଁ ବଳି । ଶିଶୁପାଠ୍ୟ ମାସିକ ପତ୍ରିକା ଥିଲା 'ପଞ୍ଚାମୃତ' । ଗପ ପଢ଼ିବା ନିଶା ବଢ଼ିଲାରୁ ରାମଚନ୍ଦ୍ର ଆଚାର୍ଯ୍ୟଙ୍କ 'କମଳକୁମାରୀ' କୁନ୍ତଳାକୁମାରୀ ସାବତଙ୍କ 'ଭ୍ରାନ୍ତି' 'ରୂପାଚୂଡ଼ି' ଆଦି ବହି ମଧ୍ୟ ପଢ଼ିଗଲି ।

ବାପା ବୋଉକୁ କହିଲେ ଛାନ୍ଦର ରାଗ ମୋତେ ଶିଖାଇ ଦେବାକୁ । ବୋଉ ରାମକେରୀ, ରସକୁଲ୍ୟା, ବଂଗଳାଶ୍ରୀ ଆଦି ରାଗ ଶିଖାଇଲା । କିନ୍ତୁ ବୋଉର ମନଧ୍ୟାନ ରହିଥାଏ ହସ୍ତାକ୍ଷର ଉପରେ । ବୋଉ ଅକ୍ଷର ତ ମୁକ୍ତାନନ୍ଦୀ । ସେ ପରକଲମ, କାଠି କଲମରେ ହସ୍ତାକ୍ଷର ଲେଖିବା ପ୍ରତି ନଜର ରଖେ । ସମାନି ସମଶୀର୍ଷାନି ଘନାନି ବିରଳାନିଚ ଅବିଚଳିତ ମାତ୍ରାଣି ଯଃ ଲିଖତି ସଃ ପଣ୍ଡିତଃ ବୋଲିବା କାର୍ଯ୍ୟ ଉପରେ ସେ ଶାସ୍ତ୍ରର ମୋହର ଲଗାଏ ।

ବଂଗଳା କେମିତି ପଢ଼ି ଶିଖିଲି କେଜାଣି । ବଂଗଳା ଶିଖିବା ପରେ ଶିଶୁପାଠ୍ୟ ବହି ଓ ପତ୍ରିକାର ଆଉ ଅଭାବ ରହିଲା ନାହିଁ ।

ଭାଇ ସେତେବେଳକୁ ବିଲାତର Boy's Own Paper ର ଗ୍ରାହକ ହୋଇ ଦୁଇଟା ଫଟୋଗ୍ରାଫ୍ ପ୍ରତିଯୋଗିତାରେ ଜିଣି ଦୁଇଟା ସ୍ୱାନ୍ ଫାଉନ୍‌ଟେନ୍‌ପେନ୍ ପାରିତୋଷିକ ପାଇ ସାରିଲେଣି । ସେ କଲମ ପାର୍ଶଲ ଯେଉଁଦିନ ବିଲାତରୁ ଆସିଲା –ଦେଖ ଆମ ଆନନ୍ଦ !!

ବାଲିକାଗଜରେ ଖାତା ବାନ୍ଧି ଗାରଟାଣି ଓଡ଼ିଆ ଇଂରାଜୀ ହସ୍ତାକ୍ଷର ଲେଖିବାକୁ ପଡୁଥିଲା । ଉଣେଇଶକ ପଣକିଆ ଠାରୁ ବି ଏଇଟା କଷ୍ଟସାଧ୍ୟ । ଛାଡ଼ !

ଭାଇ ଛାଏଁ ଛାଏଁ ଭଲ ଛବି ଆଙ୍କୁଥିଲେ । ଫଟୋଗ୍ରାଫି ମଧ୍ୟ ପିଲାଦିନୁଁ ଶିଖିଥିଲେ । ଖୋକନ ଭାଇଙ୍କ ଘରୁ ଆମ ଘରକୁ ଟେଲିଫୋନ ଲଗାଇବା, ଏରୋପ୍ଲେନ୍ ତିଆରୀ କରିବା ଆଦି ଥିଲା ତାଙ୍କର ଖେଳ । ଫଟୋ ଉଠାଇ ପ୍ଲେଟ୍‌ରେ ସେ ନିଜେ ଡ଼େଭଲପ୍ କରୁଥିଲେ । ବାପାଙ୍କ ସାଂଗରେ ବସି ଛବି ଆଙ୍କୁ ଥିଲେ । ମୋ ସ୍ଥିତି ଅଲଗା । ଛତାଟା

କେଉଁଆଡୁ ଅଙ୍କା ହେବ ତାହା ମୁଁ କଳିପାରେ ନାହିଁ । ଭାଇ ବିଭିନ୍ନ ଭାଷା ମଧ୍ୟ ଶୀଘ୍ର ଶିଖି ପାରୁଥିଲେ । ଫ୍ରେଞ୍ଚ୍ ସେ ଆପେ ଆପେ ଶିଖି ଯାଇଥିଲେ । ବୋଉ ଆଗ୍ରହରେ ମୁଁ ହିନ୍ଦୀ ପଢ଼ି ଏଲାହାବାଦ ବିଶ୍ୱବିଦ୍ୟାଳୟରେ ମଧ୍ୟମା (ବିଶାରଦ) ପରୀକ୍ଷା ଦେଇ କୃତକାର୍ଯ୍ୟ ହେଲି ମାତ୍ର ମୋ ହିନ୍ଦି ଅଶୁଦ୍ଧି ନିଳୟ ହୋଇ ରହିଗଲା ।

ଭାଇ ଯେମିତି ଶ୍ରୁତିଧର ପରି ପାଠ ପଢ଼ିଗଲେ, ଛବି ଆଙ୍କିଲେ ମୁଁ ସେମିତି ଛାଏଁ ଛାଏଁ ନ ପଢ଼ିବାରୁ ମୋତେ ପାଠ ପଢ଼ାଇବାର ଉଦ୍ୟମ ଆରମ୍ଭ ହେଲା । ପାଠ ପଢ଼ିବାକୁ ମୋର ଆଦୌ ମନ ହେଉ ନ ଥାଏ । ବର୍ଣ୍ଣବୋଧ ଖଣ୍ଡକ ଦେଖିଲେ ମୋର ହୃତ୍‌କମ୍ପନ୍ ହେଉଥିଲା । ମୋ ମାଆ ମୋତେ କେମିତି ବଶକଲା କେଜାଣି ମୁଁ ଅକ୍ଷର ଚିହ୍ନି ଗଲି । ମାଆର ପ୍ରବର୍ତ୍ତନାରେ ଫୁଲଖଡ଼ି ଖଣ୍ଡେ ଧରି ଆମ ୪୦ ଫୁଟିଆ ଲମ୍ବା ବାରଣ୍ଡାରେ ବାପା ଦାଦା ଆଗରେ ଲେଖିଯିବା କଥା ମନେ ପଡୁଛି । ଆମ ବାପା ଦାଦା ଖଡ଼ିଛୁଆଁ କାନଫୋଡ଼ା ଆଦି ପ୍ରଚଳିତ ବିଧିବିଧାନ ମାନୁ ନ ଥିଲେ । ତେଣୁ ସେ ସବୁ ଆମର କିଛି ହେଲା ନାହିଁ ।

ବାପା ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ତେଣୁ ସରକାରୀ ସ୍କୁଲରେ ଆମେ ପଢ଼ିବା ପ୍ରଶ୍ନ ଆଦୌ ନ ଥିଲା । ଜାତୀୟ କବି ବୀରକିଶୋର ଦାସ ଆମକୁ କିଛିଦିନ ପଢ଼େଇ ଥିଲେ । ଦିନେ ସେ ଭାଇଙ୍କୁ ହାତୀ ବିଷୟରେ ରଚନା ଲେଖିବାକୁ ଦେଲେ । ଭାଇ ହାତୀର ବିଭିନ୍ନ କାର୍ଯ୍ୟାବଳୀର ଛବି ଆଙ୍କି ଦେଇ ତାହା ତଳେ ସବୁ ବିବରଣୀ ଦେଇ ଦେଲେ – ହାତୀ କାଠଗଡ଼ ବୁହେ, ହାତୀ ଗଛ ଟଣେ, ହାତୀ ଯୁଦ୍ଧ କରେ ଇତ୍ୟାଦି । ଖଣ୍ଡସାହିର ବଂଶୀଧର ବାବୁ ମଧ୍ୟ କିଛିଦିନ ପାଠ ପଢ଼େଇଥିଲେ । ଶେଷରେ ସତ୍ୟବାଦୀ ବନ ବିଦ୍ୟାଳୟର ଛାତ୍ର ଶ୍ରୀ ଚନ୍ଦ୍ରଶେଖର ମିଶ୍ରଙ୍କ ପାଖରେ ଆମେ ପଢ଼ିଲୁ । ୧ ୯ ୨ ୮ ରେ ଆମେ ଅଳକାଶ୍ରମକୁ ଯାଇ ସେଠାରେ ରହିଲୁ । ଭାଇ ନିଜେ ନିଜେ ପଢ଼ି ମ୍ୟାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଲେ, କେବଳ ଆର୍ତ୍ତ ବଡ଼ବାପାଙ୍କ ପାଖରେ କିଛି ଦିନ ସଂସ୍କୃତ ପଢ଼ିଥିଲେ । ମୋତେ ବାପା ଓ ଖୁଡ଼ୀ କିଛିଦିନ ପଢ଼ାଇଥିଲେ । ପ୍ରଚଳିତ ଭାରତ-ଇତିହାସ ନ ପଢ଼ାଇ ବାପା ଇତିହାସ ଲେଖି ଦିଅନ୍ତି ମୁଁ ପଢ଼େ । ବାପା ଶଙ୍କରାଚାର୍ଯ୍ୟଙ୍କ ମୋହମୁଦ୍‌ଗରର ଗୋଟିଏ ଲେଖା ଶ୍ଳୋକ ମୋତେ ଲେଖି ଦିଅନ୍ତି । ମୁଁ ତାକୁ ମୁଖସ୍ଥ କରେ । ଖୁଡ଼ୀ, କଥା ଓ କାହାଣୀରୁ ରବୀନ୍ଦ୍ରନାଥଙ୍କ କବିତା ମୁଖସ୍ଥ କରିବାକୁ ଦେଉଥିଲେ । ଇଂରାଜୀ ମଧ୍ୟ ପଢ଼ାଉଥିଲେ । ରବୀନ୍ଦ୍ର ସଂଗୀତ ମଧ୍ୟ ଶିଖାଇଲେ । ଏ ପାଠ ପଢ଼ା ୧୯୩୦ ଆନ୍ଦୋଳନ ଆରମ୍ଭ ହେବାରୁ ବନ୍ଦ ହୋଇଗଲା । ଭାଇ ନିଜେ ନିଜେ ଇଂରାଜୀ, ଫ୍ରେଞ୍ଚ, ଗଣିତ ବିଜ୍ଞାନ ଆଦି ପଢ଼ିଲେ । ମୁଁ ଯେଉଁଠି ସେଇଠି ରହିଗଲି । କିନ୍ତୁ ଘରେ ଯେ ଓଷାବାର, ଠାକୁର ପୂଜା ଆଦି ହୁଏ ଠାକୁର ଘରେ ସଞ୍ଜ ଦିଆହୁଏ । ଅରୁଆ

ଘରେ ମା'ର ପାନ ଭଙ୍ଗା ହୁଏ ସେସବୁ କାମ ମୁଁ ଆଗ୍ରହର ସହିତ କରୁଥାଏ । ଏଇଟା ପୂର୍ବଜନ୍ମର ସଂସ୍କାର କି ?

ଦିନେ ଭାଇ ଓ ମୁଁ ଆମ ନାଣ୍ଡୀ ଛାତ ଉପରେ ଠିଆ ହୋଇ ପାଟୁଆ ନାଚ ଦେଖୁଥିଲୁ । ସେଦିନ ପଣା ସଂକ୍ରାନ୍ତି । କଟକରେ କାଠଯୋଡ଼ି ନଈର ହାତୀଗଡ଼ା ଘାଟ ପାଖରେ ପଣା ସଂକ୍ରାନ୍ତି ଦିନ ରଜକଙ୍କର ପାଟୁଆ ନାଚ ହୁଏ । ନାଚ ଦେଖୁ ଦେଖୁ ଭାଇ କହିଲେ ଚାଲ୍ ଟାଉନ୍ ହଲକୁ ଯିବା । ସେଠି ଆଜି ସଭା ହେବ । ଆମେ ଦୁହେଁ ପଡ଼ିଆ ବାଟେ ସଭାକୁ ଗଲୁ । ଭାଇଙ୍କର ସାଂଗମାନେ- ନେତ, ଧୀରେନ୍, ବେଙ୍ଗା - କେହି ସଭାକୁ ଗଲେ ନାହିଁ ।

ସଭାରେ ରାଜକୃଷ୍ଣ ବାବୁ ଜାଲିୟାନ୍‌ୱାଲାବାଗ ହତ୍ୟାକାଣ୍ଡ ଓ ପଞ୍ଜାବ ଅତ୍ୟାଚାର କଥା ବର୍ଣ୍ଣନା କଲେ । ସେ ବର୍ଣ୍ଣନା ଶୁଣି ଛାତି ଦପ୍ ଦପ୍ ହେଉଥାଏ । ଅତି ବିଷର୍ଣ୍ଣ ଚିତ୍ତରେ ସଭାରୁ ଘରକୁ ଫେରିଲି । ରାଜକୃଷ୍ଣ ବାବୁଙ୍କ ବକ୍ତୃତା ହୃଦୟରେ ଲେଖି ହୋଇ ରହିଗଲା । ତାହା ପର ବର୍ଷ ଏପ୍ରିଲ ଛଅ ତାରିଖ ଦିନ ଭାଇ କହିଲେ ଆଜି ଜାତୀୟ ସପ୍ତାହର ଆରମ୍ଭ ଦିନରେ ଗାନ୍ଧିଜୀ ସମସ୍ତଙ୍କୁ ଉପବାସ କରିବାକୁ କହିଛନ୍ତି । ଚାଲ୍ ଆମେ ଉପବାସ କରିବା । ଦୁହେଁ ଉପବାସ କଲୁ । ୧୯୪୭ ଅଗଷ୍ଟ ପନ୍ଦର ପର୍ଯ୍ୟନ୍ତ ଦୁହେଁ ଏ ଉପବାସଟି କରୁଥିଲୁ ।

ଜାତୀୟ ସପ୍ତାହରେ ଖଦୀ ବିକ୍ରୀ, ସୂତାକଟା ପ୍ରତିଯୋଗିତା, ସାଧାରଣ ସଭା ଆଦି କାର୍ଯ୍ୟକ୍ରମ ପାଳନ କରାଯାଏ । ସୂତାକଟାରେ ଯାହାର ଗତି ଅଧିକ ହୁଏ ସେ ପାରିତୋଷିକ ପାଏ । ଥରେ ସତ୍ୟଭାମାପୁରର ନାରଣଙ୍କ ଝିଅ ବେଲି ପାରିତୋଷିକ ପାଇଥିଲା । ନାରଣଙ୍କୁ ଆମେ ଭଲ ପାଉଥିଲୁ । ତାଙ୍କୁ ଦେଖିଲେ ବୋଲୁ ନାରଣା, ତିନିଟଙ୍କା ବାରଣା । ସେ ତାଙ୍କ ବଟୁଆରୁ ଗୋଟିଏ ଅଳେଇଚ ବାହାର କରି ଆମ ହାତରେ ଧରେଇ ଦେଇ କହନ୍ତି ଅଳେଇଚ, ମତେ ଦେଖିକରି ପଳେଇଚ । ସେହି ନାରଣଙ୍କ ଝିଅ ପାରିତୋଷିକ ପାଇବାରୁ ଆମେ ଖୁସି ହେଲୁ । ସଭାରେ ଜାଲିୟାନାୱାଲାବାଗ୍ କଥା ନିଶ୍ଚୟ କୁହାଯିବ । ସେ ଘଟଣାଟି ଯେତେ ଶୁଣିଲେ ପୁଣି ଶୁଣିବାକୁ ମନ ହୁଏ । କିପରି ଡ଼ାୟାର ସାହେବ କୁଦ ଉପରେ ମେସିନ୍‌ଗନ୍ ଖଞ୍ଜି ଲୋକଙ୍କ ଉପରେ ଗୁଳି ବୃଷ୍ଟି କଲା, କେମିତି ବୀଚ୍ ସଡ଼କରେ ଲୋକଙ୍କୁ ରେଙ୍ଗେଇ ରେଙ୍ଗେଇ ନେଲା, ଖୁଣ୍ଟରେ ବାନ୍ଧି ବେତ ମରାଇଲା ସେ ଅତ୍ୟାଚାର ଶୁଣି ଦୁଃଖ ସହିତ ମନ ଭିତରେ ଗୋଟାଏ ଉତ୍ତେଜନା ଦେଖାଦିଏ । ସାତ ଆଠବର୍ଷ ବୟସରେ ସୁଦ୍ଧା ଶିଶୁର ମନ କେତେ ସଂବେଦନଶୀଳ ହୋଇ ଯାଏ ତାହା ମୁଁ ଏବେ ସେ ବୟସର କଥା ମନେ ପକେଇଲେ ହେଜି ପାରୁଛି ।

୧୯୨୪ ମସିହା ହେବ । ଦାସେ ଆପଣେ, ଡ଼କ୍ଟର ଏକରାମ ରସୁଲ ଓ ଭାଗୁଭାଇ ହଜାରିବାଗ ଜେଲ୍‌ରୁ ମୁକୁଳି କଟକ ଆସିଲେ । ତାଙ୍କୁ ପାଛୋଟି ଆଣିବାକୁ ବାପା ଓ ଆଉ ଅନେକ ଲୋକ ଷ୍ଟେସନକୁ ଯାଇଥାନ୍ତି । ମୁଁ ମଧ୍ୟ ବାପାଙ୍କ ସାଂଗରେ ଯାଇଥାଏ । ସମସ୍ତେ ଡ଼କ୍ଟର ଏକରାମ ରସୁଲଙ୍କ ଘରକୁ ଗଲୁ । ଖେତପୋଷ୍ ଉପରେ ଜାଜିମ୍ ବିଛା ହୋଇ ଥାଏ । ବହୁତ ଲୋକ ଆସି ଡ଼ାକ୍ତରଙ୍କୁ ଆଦାବ୍, ଦାସେ ଆପଣେ ଓ ଭାଗୁଭାଇଙ୍କୁ ନମସ୍କାର କରୁଥାନ୍ତି । ମୁଁ ଚୁପ୍‌ଚାପ୍ ବସି ଦେଖୁଥାଏ । ଜଣେ କେହି ମୋ ହାତରେ ଗୋଟିଏ ଅଙ୍ଗୁର ବାକ୍ସ ଧରାଇ ଦେଇଥାନ୍ତି । ସେ ସମୟରେ ଛୋଟ ଗୋଲ୍ କାଠବାକ୍ସରେ ତୁଳା ବିଛା ହୋଇ ତା ଉପରେ ଅଙ୍ଗୁର ସଜଡ଼ା ହୋଇ ବିକ୍ରୀ ହେଉଥିଲା । ସେ ଅଙ୍ଗୁର ବିଦେଶରୁ ଅସୁଥିଲା । ଅଙ୍ଗୁର ବାକ୍ସଟି ଧରି ଘରକୁ ଆସିଲି । ମାଉସୀ ଆମ ଘରକୁ ଆସିଥାଏ । ମାଉସୀ (ସରଳା ଦେବୀ) ଭାଗୁ ଭାଇଙ୍କୁ ବିଭା ହୋଇଥିବାରୁ ସେ ଆମର ଭାଉଜ ମଧ୍ୟ ହୋଇଥିଲେ । ମାଉସୀ ଖଦଡ଼ ପିନ୍ଧି ଥାଏ ।

ସେହି ସମୟରେ କଟକ ମ୍ୟୁନିସିପାଲଟୀ ପଡ଼ିଆରେ ପ୍ରାଦେଶିକ ସମ୍ମିଳନୀ ହେଲା । ଆଚାର୍ଯ୍ୟ ପ୍ରଫୁଲଚନ୍ଦ୍ର ରାୟ ସଭାପତି ହେଲେ । ସମ୍ମିଳନୀର ଆଲୋଚ୍ୟ ବିଷୟ ପ୍ରତି ମୋର ଆଦୌ ଆଗ୍ରହ ନ ଥାଏ । ସଜୁ ଅପା, କରୁଣା ସାଂଗରେ ସାଂଗ ହୋଇ ଖେଳିବା ଥାଏ ମୁଖ୍ୟ କଥା ।

ସମ୍ମିଳନୀର ଗୋଟିଏ କଣରେ ଚିକ ଟଙ୍ଗା ହୋଇଥାଏ । ମୋ ବୋଉ, ସରଳା ଦେବୀ, ହୈମବତୀ ଦେବୀ, ସରୋଜିନୀ ଚୌଧୁରୀ ପ୍ରଭୃତି ସେ ଚିକ ଉହାଡ଼ରେ ବସି ବକ୍ତୃତା ଶୁଣୁ ଥିଲେ । ଦିନେ ସରଳା ଦେବୀ ଚିକ ଭିତରୁ ବାହାରି ଆସି ସମ୍ମିଳନୀରେ ବକ୍ତୃତା ଦେଲେ । ପୁରୁଷମାନଙ୍କ ସଭାରେ ସରଳା ଦେବୀଙ୍କ ବକ୍ତୃତା ଦେବା ସାହସଟାକୁ ମୋ ମାଆ ସମେତ ଅନେକ ବୁଢ଼ୀ ବୁଢ଼ୀ ଲୋକ ନାପସନ୍ଦ କଲେ ।

ସେହି ସମୟରେ ସ୍ୱରାଜ-ଆଶ୍ରମରେ ମହିଳା ସଭା ହେଲା । ଦାସେ ଆପଣେ ପର୍ଦ୍ଦା ପ୍ରଥାର ଅପକାରିତା ବିଷୟରେ ବୁଝାଇଲେ । ତାଙ୍କ ଭାଷଣର ଗୋଟିଏ ଅଂଶ ମୋ ବୟସର ପିଲାର ମନେ ରହିବା କଥା ନୁହେଁ ମାତ୍ର ବଡ଼ ବଡ଼ମାନେ ସେ କଥାଟାକୁ ମୋ ଉପସ୍ଥିତିରେ ବାରମ୍ବାର ଦୋହରେଇଥିବାରୁ ତାହା ମୋର ମନେ ରହି ଯାଇଛି ବୋଲି ମୁଁ ବିଚାରୁଛି । ଦାସେ ଆପଣେ ପର୍ଦ୍ଦା ପ୍ରଥା ବିରୋଧରେ କହୁ କହୁ କହିଥିଲେ- ''ମୁଁ ତିନୋଟି ସନ୍ତାନର ଜନକ କିନ୍ତୁ ମୁଁ ମୋ ସ୍ତ୍ରୀଙ୍କ ମୁହଁ ଦେଖି ନାହିଁ ।''

ସଭାରେ ହୈମବତୀ ଦେବୀ ମଧ୍ୟ ବକ୍ତୃତା ଦେଇ ଥିଲେ । ହୈମବତୀ ଦେବୀ ଜଣେ ପ୍ରଗତିବାଦୀ ମହିଳା ଥିଲେ । ସେ ଖଦୀ ପିନ୍ଧୁଥିଲେ । ପର୍ଦ୍ଦା ଛାଡ଼ି ଦେଇଥିଲେ ।

ସେଥିପାଇଁ ସ୍ୱାମୀଜୀ ପ୍ରମୁଖ ତାଙ୍କୁ 'ହେମବାବୁ' ସମ୍ବୋଧନ କରୁଥିଲେ । ସେ ମଧ୍ୟ ଏହି ସମ୍ବୋଧନରେ ଅପ୍ରତିଭ ନ ହୋଇ ତାଙ୍କ ମେଳରେ ବସି ନିଃସଂକୋଚରେ କଥାବାର୍ତ୍ତା କରୁଥିଲେ ।

ହୈମବତୀ ଦେବୀ ଆମ ଘରକୁ ବରାବର ଆସୁଥିଲେ । ଦିନେ ସଞ୍ଜ ପହରରୁ ପ୍ରବଳ ବର୍ଷା ଆରମ୍ଭ ହୋଇଗଲା । ଦାଦା ବୋଉକୁ କହିଲା- ଆଜି ଶୋଇବା ଘରେ ଷ୍ଟୋଭ୍‌ରେ ଲୁଚି ଓ ବାଇଗଣ ଭଜା ହେବ । ଆମେ ଖାଇବା । ସବୁ ଆୟୋଜନ କରାଯିବା ପରେ ଷ୍ଟୋଭ୍ ଲଗାଇବା ବେଳକୁ ଷ୍ଟୋଭ୍ ଆଦୌ ଜଳିଲା ନାହିଁ । ଚୂଲିରେ ଯଥା ବିଧି ଲୁଚି ଆଦି ଭଜା ହେଲା । ବାପା ଘରେ ନ ଥିଲେ । ଡ଼ିଷ୍ଟ୍ରିକଟ୍ ବୋର୍ଡ଼ କାମରେ ଗସ୍ତରେ ଯାଇଥିଲେ । ସେ ଗସ୍ତରୁ ଫେରିବା ପରେ ଦିନେ ଖରାବେଳେ ଡ଼ିଷ୍ଟ୍ରିକ୍ଟ ବୋର୍ଡ଼କୁ ଯିବାକୁ ବାହାରିବା ବେଳେ ବୋଉ ଷ୍ଟୋଭ୍‌ଟା ତାଙ୍କ ଆଗରେ ଥୋଇ ଦେଇ କହିଲା - ଏଇଟା କାହିଁକି ଜଳୁ ନାହିଁ ଦେଖିଲ । ବାପା ତାକୁ କ'ଣ ଦେଖାଦେଖି କରି ଦିଆସିଲି କାଠି ମାରି ଷ୍ଟୋଭ୍ ଜାଳିବାମାତ୍ରେ ନିଆଁ ଶିଖା ଉଠି ବାପାଙ୍କ ଦାଢ଼ିରେ ଲାଗି ମୁହଁଟା ଜଳିଲା । ବାପା ମୁଁ ପୋଡ଼ିଗଲି ପୋଡ଼ିଗଲି ବୋଲି ପାଟି କଲେ । ବୋଉ ତା ପଣତ କାନିରେ ବାପାଙ୍କ ମୁହଁ ଘୋଡ଼ାଇଦେବାରୁ ନିଆଁ ଲିଭିଗଲା । ମାତ୍ର ମୋଟା ଖଦଡ଼ ଲୁଗା ଘଷି ହୋଇ ମୁହଁରୁ ଚମ ଛାଡ଼ିଗଲା । ଯେତେ ପ୍ରକାର ଚିକିତ୍ସା କରାଗଲା, ପୋଡ଼ା ଘାଆ ଶୁଖିଲା ନାହିଁ ।

ଦିନେ ହୈମବତୀ ଦେବୀ ଆସି କଲିଚୂନ, ପୋକଶୁଂଘା ପତ୍ର ରସ, ମରାନଡ଼ିଆ ତେଲରେ ଗୋଟାଏ  ଔଷଧ ତିଆରୀ କରି ଦେଲେ । ପାରା ପରରେ ସେ ଔଷଧ ପୋଡ଼ା ଘାଆରେ ଲଗାହେଲା । ପୋଡ଼ା ଚିହ୍ନ ସୁଦ୍ଧା ରହିଲା ନାହିଁ ।

ଏହି ମହିଳା ସଭାରେ ବିଖ୍ୟାତ ଗାୟକ ଦିଲୀପ ରାୟଙ୍କ ଗୀତ ଶୁଣିଥିଲି - 'ଜାନରେ ନାମେ ବଜଜାତି ସବ୍ ଜାତ୍ ଜାଲିୟାତ୍ ଖେଲ୍‌ଛେ ଜୁଆ ।''

ସ୍ୱରାଜ- ଆଶ୍ରମରେ ସଭା ସାଂଗରେ ଗୋଟିଏ ଛୋଟିଆ ପ୍ରଦର୍ଶନୀ ହୋଇଥିଲା । ଜଣେ ଇଂରେଜ ମହିଳା ବୁଲି ବୁଲି ସେ ପ୍ରଦର୍ଶନୀ ଦେଖୁଥାନ୍ତି ଆଉଜଣେ ଭାରତୀୟ ମହିଳା ଇଂରାଜୀରେ ତାଙ୍କୁ କଣ ସବୁ ବୁଝାଉଥାନ୍ତି । ବାପ କହିଲା ସେ ମେମ୍ ଜଣକ ତାଙ୍କ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ । ଭାରତୀୟ ମହିଳା ଜଣକ ମିସ୍ ନିର୍ମଳା ନାୟକ ।

ଦିନେ ଖରାବେଳେ ମୁଁ ଦୁଷ୍ଟ ହେଲି । ପିନ୍ଧା ଲୁଗାଟା ଚିରି ଦେଲି । ପାଣି ଗଡ଼ଉ ଗଡ଼ଉ ସୁରେଇଟା ଭାଙ୍ଗି ଦେଲି । ବାପା କହିଲେ - ଚାଲ ଦାଦା ପାଖରେ ସୂତାକଟା ଶିଖିବୁ । ଦାଦା କାଠ ଅରଟରେ ମୋତେ ସୂତାକଟା ଶିଖାଇ ଦେଲା । ଭାଇ ମଧ୍ୟ

ସୂତାକଟା ଶିଖିଲେ । ବାପା ହିସାବ କରି କହିଲେ ମୁଁ ପ୍ରତିଦିନ ୨୦୦ଗଜ ଓ ଭାଇ ୧୫୦ ଗଜ ସୂତା କାଟିଲେ ଆମର ବର୍ଷକର ଲୁଗା ହୋଇଯିବ । ଆମେ ନିତି ସୂତା କାଟିଲୁ ।

ବୋଉ ତ କେତେକାଳୁ ନିୟମିତ ସୂତା କାଟୁଥିଲା । ତା ଅରଟରେ ପଥର କୁଣ୍ଡି ଲାଗିଥାଏ । ଘରକାମରୁ ଫୁରସତ ପାଇବା ମାତ୍ରେ ସେ କିଛି ସମୟ ସୂତା କାଟେ । ବୋଉ ଚରଖା ସଂଘର ସଦସ୍ୟା ହେଲା । ତା ସୂତାରେ ବୁଣା ହୋଇଥିବା ଲୁଗା ଚରଖା ସଂଘରୁ ପାର୍ଶଲ ହୋଇ ଆସିଲା । ଆମ କୌତୂହଳ ଦେଖେ କିଏ ।

ଦିନେ ଶେଠ୍ ଜମନାଲାଲ ବଜାଜ ଆମ ଘରକୁ ଆସିଲେ । ଆମ ହାତକଟା ସୂତା ଦେଖି ଖୁସି ହେଲେ । ସେତେବେଳେ ମୋର ନାକ ଫୋଡ଼ା ହୋଇ ଫାସିଆ ଲାଗିଥାଏ । ବଜାଜଜୀ ମୋତେ ହିନ୍ଦୀରେ କହିଲେ – ଯାଅ ମାଆକୁ ପଚାର କି ଦୋଷ କରିଛ ବୋଲି ତମକୁ ଏ ଦଣ୍ଡ ଦିଆ ହୋଇଛି । ତାଙ୍କ କଥା ମୁଁ କିଛି ବୁଝି ପାରି ନ ଥିଲି । ବାପା ବୁଝେଇ ଦେଇଥିଲେ ।

କ୍ରମେ ମୁଁ ତୁଳାଭିଣା ମଧ୍ୟ ବାପାଙ୍କ ଠାରୁ ଶିଖିଲି । ବାପା ହଜାରିବାଗ ଜେଲ୍‌ରେ ଥିବା ବେଳେ ତାଙ୍କ ପାଇଁ ବଳଣା ତିଆରି କରି ପଠାଇଥିଲି । ଆମ ପିଲାଦିନେ ଏପ୍ରିଲ ଛଅ ତାରିଖରୁ ତେର ତାରିଖ ଯାଏ ଜାତୀୟ ସପ୍ତାହ ପାଳିତ ହେଉ ଥିଲା । ପ୍ରତିଦିନ ବିଭିନ୍ନ ସ୍ଥାନରେ ସଭା ହୁଏ । ଜାଲିୟାନାୱାଲା ବାଗ୍ ହତ୍ୟାକାଣ୍ଡ କଥା ବର୍ଣ୍ଣନା କରାଯାଏ । ସୂତାକଟା ପ୍ରତିଯୋଗିତା ହୁଏ । ଥରେ ଟାଉନ୍ ହଲରେ ସୂତାକଟା ପ୍ରତିଯୋଗିତାରେ ଭାଇ ପ୍ରଥମ ହେଲେ । ଆଉ ଥରେ ମୁଁ ଦ୍ୱିତୀୟ ହୋଇଥିଲି । ସତ୍ୟଭାମାପୁରର ନାରଣ ସାମଲଙ୍କ ଝିଅ ବେଲି ଥରେ ପ୍ରଥମ ହୋଇ ପାରିତୋଷିକ ପାଇଥିଲା । ନାରଣ ସାମଲ ଭାରି ହସଖୁସିଆ ବୁଢ଼ା । ଆମ ଘରକୁ ଆସିଲେ ପାନବଟୁଆରୁ ଅଳେଇଚ କାଢ଼ି ଆମକୁ ଦେଇକରି କହନ୍ତି – ଅଳେଇଚ ! ମତେ ଦେଖିକରି ପଳେଇଚ । ଆମେ ତାଙ୍କୁ ଚଳଉ– ନାରଣା, ତିନିଟଙ୍କା ବାରଣା, ଆଉ ଚାରଣା ଦେଇଯା, ନାରଣକୁ ନେଇ ଯା । ସେ ପାକୁଆ ପାଟିରେ ମିଠା ହସ ହସନ୍ତି ।

ଆମ ଘର ଦାଣ୍ଡ ବାରଣ୍ଡାରେ ଠକ୍‌ଠକୀ ତନ୍ତ ପଡ଼ିଲା । ବାପା ତାନି କାଢ଼ି ଲୁଗା ବୁଣିଲେ । ଭାଇ ମଧ୍ୟ ଲୁଗା ବୁଣିଲେ । ମୋର ଗୋଡ଼ ପାଇଲା ନାହିଁ । ସୁବାରାଓ ନାମକ ଜଣେ ତନ୍ତ ବିଶେଷଜ୍ଞ ବାପାଙ୍କୁ ଟୁଇଲ୍ ବୁଣା ଶିଖାଇଲେ । ବୋଉ ସମୟ ପାଇଲେ କଣ୍ଡା ବଳିଦିଏ । ଆମେ ଅଳକାଶ୍ରମ ଗଲାରୁ ବୁଣାବୁଣି ବନ୍ଦ ହୋଇଗଲା ।

ସୂତାକଟା ତୁଳାଭିଣା ଲୁଗାବୁଣା ସାଂଗକୁ ଏଣ୍ଡି ପୋକ ପାଳିବା କୋହର ଉଠିଲା । ଭିକାରୀ ଚରଣ ପଟ୍ଟନାୟକ ଥିଲେ ଏ ନାଟର ଗୋବର୍ଦ୍ଧନ । ତାଙ୍କ ଘରକୁ ଯାତାୟାତ ଆରମ୍ଭ ହେଲା । ତାଙ୍କ ଝିଅ କାଦ ମୋର ସାଙ୍ଗ ହେଲା । ଆମ ଘରେ କାଠରେ ପଲା ତିଆରୀ ହୋଇ ଗୋଟାଏ ର୍‌ୟାକ୍ ଉପରେ ଧାଡ଼ି ଧାଡ଼ି ହୋଇ ରହିଲା । ପଲାରେ କାଗଜ ପରା ହୋଇ ଏଣ୍ଡିପୋକ ଛଡ଼ା ଗଲା । ସେମାନେ ରାକ୍ଷସ ପରି ଜଡ଼ାପତ୍ର ଖାଇ ଯାଆନ୍ତି । ବାପାଙ୍କ ଚପରାଶୀ ଫଗୁମଣି କୋଉଠୁ ବୋଝ ବୋଝ ଜଡ଼ାପତ୍ର ନେଇ ଆସନ୍ତି । ପୋକଗୁଡ଼ା ତାକୁ ଦିନରାତି ଚରୁଥାନ୍ତି । ଗୋଟାଏ ଗୋଟାଏ ବଡ଼ ସାଁବାଳୁଆ ଆକାରର ହୋଇଯିବା ପରେ ତାଙ୍କ ରଙ୍ଗଟା ଶାଗୁଆରୁ ସୁନେଲି ହୋଇଯାଏ । ସେମାନେ ଧଳା ରଙ୍ଗର ତରଳ ମଳତ୍ୟାଗ ଆରମ୍ଭ କଲେ ଗୋଟାଏ ଟୋକେଇରେ ଛୋଟ ଛୋଟ ଆମ୍ବ ଡ଼ାଳ ପୂରେଇ ସେମାନଙ୍କୁ ଛାଡ଼ି ଦିଆ ହୁଏ । ସେମାନେ ସେତେବେଳେ ଆଉ ଜଡ଼ା ପତ୍ର ଖାଆନ୍ତି ନାହିଁ । ମୁହଁରୁ ସୂତା ବାହାର କରି ନିଜ ଚାରିପାଖରେ ସେ ସୂତାକୁ ଗୁଡ଼େଇ ଗୁଡ଼େଇ ସେହି ସୂତା ଖୋସା ଭିତରେ ରହି ଯାଆନ୍ତି । ଏକୋଇଶ ଦିନ ପରେ କୋଷା କାଟି ପ୍ରଜାପତି ହୋଇ ବାହାରନ୍ତି । ସେମାନେ ମୁହଁରୁ ସୂତା କାଢ଼ି କୋଷା ତିଆରୀ କରିବା ବେଳର ଦୃଶ୍ୟ ବଡ଼ ସୁନ୍ଦର । ସେହିପରି ପୋକଟାଏ ପ୍ରଜାପତି ପାଲଟି ଯାଇ କୋଷାରୁ ବାହାରି ଆସିବା ଘଟଣାଟା ବଡ଼ ବିଚିତ୍ର ଲାଗେ । ସାତ ଆଠ ବର୍ଷ ବୟସର ପିଲାଙ୍କ ପାଇଁ ଏଣ୍ଡିଚାଷ ବେଶ ଚିତ୍ତାକର୍ଷକ ଧନ୍ଦା । କିନ୍ତୁ ପୋକ ରଖାଯାଉଥିବା ପଲାରେ ପୋକ ପାଚିଲା ଅମୃତଭଣ୍ଡାର ମଞ୍ଜିପରି ଯେଉଁ ମଳ ତ୍ୟାଗ କରନ୍ତି ତାକୁ ସଫା କରିବା ପାଇଁ ବାରମ୍ବାର କାଗଜ ବଦଳାଇବା ଧନ୍ଦାଟା ବିଶେଷ ଉତ୍ସାହପ୍ରଦ ନୁହେଁ । ତଥାପି ଖେଳଖେଳକେ ପ୍ରକୃତି ପର୍ଯ୍ୟବେକ୍ଷଣ ସାଂଗକୁ ଗୋଟାଏ ଆୟକାରୀ ଧନ୍ଦା ଓ ଦାୟିତ୍ୱଜ୍ଞାନର ବିକାଶ ଦୃଷ୍ଟିରୁ ଏ ବ୍ୟାପାରଟା ପିଲାଙ୍କ ପାଇଁ ଭଲ ବୋଲି ମୌଳିକ ଶିକ୍ଷାର ପ୍ରୟୋଗ କ୍ଷେତ୍ରରେ କାମ କଲା ବେଳେ ମୁଁ ଅନୁଭବ କରି ଥିଲି । ପ୍ରଜାପତିଗୁଡ଼ିକ ଜୋଡ଼ ବାନ୍ଧିବା ପରେ ଅଣ୍ଡା ଦେଇ ମରି ଯାଆନ୍ତି । ପୋସ୍ତଦାନା ଠାରୁ ଟିକିଏ ବଡ଼ ବଡ଼ ଏହି ଧଳାଧଳା ଅଣ୍ଡାଗୁଡ଼ିକ ଅଙ୍ଗୁର ପେନ୍ଥା ପରି ଲାଗି ଲାଗି ରହିଥାନ୍ତି । ଅଣ୍ଡାରୁ ଟିକି ଟିକି ପୋକ ବାହାରିବା ମାତ୍ରେ କଅଁଳିଆ ଜଡ଼ା ପତ୍ର ଚରିବା ଆରମ୍ଭ କରି ଦିଅନ୍ତି । ସେ ବୟସରେ ପ୍ରଜାପତି ଅଣ୍ଡା ଦେଇ ମରିଯିବାର ଦେଖି ମୋ ମନଟା ଭାରି ଖରାପ ହୋଇ ଯାଉଥିଲା । ସଂସାରରେ ପ୍ରବେଶ କଲାପରେ ମୋର ମନେ ହେଲା ମା ହିସାବରେ ପ୍ରଜାପତିର ଜୀବନଟା ଭଲ । ପିଲା ଜନ୍ମ କରି ସେ ତାର ସାଂସାରିକ କର୍ତ୍ତବ୍ୟ ସଂପନ୍ନ କରି ତୁରନ୍ତ

ମରିଗଲା । ପିଲାଗୁଡ଼ାକ ତାର ଛାଏଁ ଛାଏଁ ସ୍ୱାବଲମ୍ବୀ ହୋଇଗଲେ । ପ୍ରଜାପତିକୁ ଉଦ୍‌ବେଗ, ଆଶଙ୍କାର ବୋଝ ବହିବାକୁ ପଡ଼ିଲା ନାହିଁ ।

ଏହି ଏଣ୍ଡିଚାଷ ସାଂଗକୁ ଆସି ଜୁଟିଲା ସଂଗୀତ । ୧୯୨୪-୨୫ ମସିହା ବେଳକୁ ଓଡ଼ିଆ ଝିଅଙ୍କ ସଂଗୀତ ଚର୍ଚ୍ଚା କୁଆଁର ପୂନେଇ ଗୀତରେ ସୀମିତ ଥିଲା ବୋଲି ମୋର ମନେ ପଡୁଛି । ଅବଶ୍ୟ ବିଭା ହୋଇ ଗଲା ବେଳେ ବାହୁନିବାର ଯେଉଁ ପ୍ରଥା ସେତେବେଳେ ଥିଲା ତାହା ଝିଅମାନଙ୍କ ସଂଗୀତ ଚର୍ଚ୍ଚା ଓ କରୁଣାରସସିକ୍ତ କବିତ୍ୱ ଶକ୍ତିର ବିକାଶରେ ସହାୟକ ହେଉଥିଲା । ସେ ସମୟରେ ଗୋଟାଏ ଲୋକୋକ୍ତି ଥିଲା-''ସଲ୍ଲଜ ବଜାଏ, ନିର୍ଲଜ ଗାଏ, ଅତି ବେହିୟା ସେ ନାଚିନାଚି ଯାଏ ।'' କିନ୍ତୁ ମୋ ମାତୃକୂଳ ଏ ଲୋକୋକ୍ତିର ବ୍ୟତିକ୍ରମ ଥିଲା । ସ୍ତ୍ରୀ ଶିକ୍ଷା ଓ ଝିଅମାନଙ୍କର ସଂଗୀତ ଚର୍ଚ୍ଚା ବାବଦରେ ବୋଉର ମାତାମହୀଙ୍କ ବିଚାର ପ୍ରଗତିଶୀଳ ଥିଲା । ୧୮୮୧ରେ ଭର୍ଣ୍ଣାକୁଲାର ପାସ୍ କରିଥିବା ଦୁଇଜଣ ପ୍ରଥମ ଓଡ଼ିଆ ଝିଅଙ୍କ ମଧ୍ୟରୁ ମୋ ବୋଉର ମାଉସୀ ନିଶାମଣି ଥିଲେ ଅନ୍ୟତମ । ନିଶାମଣିଙ୍କ ଅନ୍ୟ ଭଉଣୀ ବସନ୍ତକୁମାରୀ (ମୋ ଆଈ) ହେମନ୍ତ କୁମାରୀ ପ୍ରଭୃତି ଭର୍ଣ୍ଣାକୁଲାର ପାସ୍ କରିଥିଲେ । ମୋ ଆଈଙ୍କୁ ଓସ୍ତାଦ୍ ଖାନୁ ମିଆଁ ସଂଗୀତ ଶିଖାଇ ଥିଲେ । ପୁଣି ସେହି ଓସ୍ତାଦ୍‌ଜୀ ମୋ ବୋଉ ଓ ମାଉସୀଙ୍କୁ ସଂଗୀତ ଶିଖାଇଥିଲେ । କିନ୍ତୁ ଆମ ଘରେ ଝିଅମାନେ ସଂଗୀତ ଶିଖିବା ଚଳଣି ନ ଥିଲା ।

୧୯୨୫ ସାଲ ହେବ । ଦିନେ ସକାଳ ଓଳି ବାପା ଡ଼ାକିବାରୁ ମୁଁ ପାନ ଥାଳିଆ ନେଇ ଦାଣ୍ଡ ବାରଣ୍ଡାକୁ ଗଲି । ଗେରୁଆ ରଙ୍ଗର ଧୋତି ଓ କେମିଜ୍ ପିନ୍ଧି ଜଣେ ବୃଦ୍ଧ ବାପାଙ୍କ ପାଖରେ ବସିଥିଲେ । ବାପା ଠାରି ଦେବାରୁ ତାଙ୍କୁ ଦଣ୍ଡବତ ହେଲି । ସେ ମୋ ନାଆଁ ପଚାରି ସାରି ବାପାଙ୍କୁ କହିଲେ 'ତିନିପୁରୁଷ ହେଲା' । ତାହାପରେ ସେ ମୋତେ 'ବିଶେଷ' ଶବ୍ଦଟି ବନାନ କରିବାକୁ କହିଲେ । ମୁଁ ବନାନ କଲାରୁ ସେ ମୁଣ୍ଡ ହଲେଇ କହିଲେ -''ହେଲା ନାହିଁ'' । ମୁଁ ହଡ଼ବଡ଼େଇ ଯିବାର ଦେଖି ସେ ହସି ହସି କହିଲେ - ''ଠିକ୍ କହିଛ ବାବା ଠିକ୍ କହିଛ । ହଉ ବାବା ଯାଅ ।'' ଶାନ୍ତ ସୌମ୍ୟମୂର୍ତ୍ତି, ପାଚିଲା ଦାଢ଼ି, ଆଖିରେ ସୁର୍ମା, କାଣି ଆଙ୍ଗୁଠିରେ ଦୁଇ ତିନିଟା ମେଜରାପ୍, ଦେଖିଲେ ଛାଏଁ ଛାଏଁ ମୁଣ୍ଡ ନଇଁଯାଏ । ଘର ଭିତରୁ ଆସିଲାରୁ ବୋଉ କହିଲା ସେ ହେଉଛନ୍ତି ଓସ୍ତାଦ୍ ଖାନୁ ମିଆଁ - ମୋ ବୋଉ ଓ ଆଈଙ୍କର ସଂଗୀତ ଗୁରୁ । ଏବେ ମୋତେ ଗୀତ ଶିଖାଇବେ ।।

ତତ୍‌ପରଦିନ ଓସ୍ତାଦ୍‌ଜୀ ଆସି ଗୋଟାଏ ଖାତାରେ ସା-ଷଡ଼ଜ, ରେ-ରେଖାବ୍, ଋଷର, ଗା-ଗାନ୍ଧାର ଲେଖିବାକୁ ମୋତେ କହିଲେ । ପ୍ରଥମ ଦିନର ଲିଖିତ ପାଠରେ

ଏହା ସାଙ୍ଗକୁ ଲେଖାଇଲେ ଆରୋହୀ ଅବରୋହୀ ଓ ସଙ୍କେତ ସହିତ ଉଦାରା ମୁଦାରା ତାରା । ତା ପରେ ଆରମ୍ଭ ହେଲା ବ୍ୟାବହାରିକ ପାଠ ଅର୍ଥାତ୍ ହାରମୋନିୟମ୍ ବଜାଇ ସ୍ୱର-ସାଧନା । ମାମୁଁଘରୁ ଉପମାମୁଁଙ୍କ ଡବଲ୍‌ରିଡ୍ ଡୋୟାର୍କିନ୍ ହାର୍ମୋନିୟମ୍‌ଟି ଅଣା ହେଲା । କାରଣ ବୋଉର ହାରମୋନିୟମ୍‌ଟି ସେତେବେଳେ ଗମ୍ଭୀରି ଘରେ ବର୍ଷ ବର୍ଷ କାଳ ବ୍ୟବହୃତ ନ ହୋଇ ପଡ଼ି ରହିବା ଫଳରେ ବିକଳାଙ୍ଗ ହୋଇ ସାରିଥିଲା । ବୋଉର ବେହେଲାଟି ମଧ୍ୟ ସେହି ଦଶା ଭଜିଥିଲା ।

ଓସ୍ତାଦ୍‌ଜୀଙ୍କ ନିର୍ଦ୍ଦେଶରେ ପାହାନ୍ତାରୁ ଉଠି ସର୍‌ଗମ୍ ସାଧିବା ଆରମ୍ଭ ହେଲା । ମୋର ଏ ବାବଦରେ କିଛି ସଚେତନତା ଜନ୍ମି ନ ଥାଏ । କିନ୍ତୁ ବାପା କି ଛାଡ଼ିବା ଲୋକ । ସେ ପାହାନ୍ତା ପହରରେ ମୋ ନିଦ ଭଙ୍ଗାନ୍ତି । ମୁଁ ରାସଭବିନନ୍ଦି କଣ୍ଠରେ ସର୍‌ଗମ୍ ସାଧି ସମସ୍ତଙ୍କ ନିଦ ଭଙ୍ଗାଏ । କିଛି ଦିନ ଏହିପରି ସର୍‌ଗମ୍ ସାଧିବା ପରେ ଓସ୍ତାଦ୍‌ଜୀ ଇମନ୍‌କଲ୍ୟାଣ, ଶଙ୍କରାଭରଣ ଆଦି ରାଗର ଛୋଟ ଛୋଟ ଗୀତ ମୋତେ ଶିଖାଇଲେ । ସର୍ବପ୍ରଥମ ଗୀତଟି ଶିଖାଇଲେ ଭିକାରୀଚରଣ ପଟ୍ଟନାୟକଙ୍କ ଦ୍ୱାରା ରଚିତ ।

''ଜଗତ କାରଣ ! ତୁମରି ବିକାଶ ସିନାଏ ଭୁବନ ।'' ଓସ୍ତାଦ୍‌ଜୀ ଯେଉଁ ଗୀତ ଶିଖାଉଥିଲେ ତାକୁ କଣ୍ଠସ୍ଥ କରିବା ବାଧ୍ୟତାମୂଳକ ଥିଲା ।

କଟକରେ ପୁଲିଶ୍ ସାହେବ ଶ୍ରୀକୃଷ୍ଣ ମହାପାତ୍ରଙ୍କ ଝିଅ ମୃକ୍ଷି ଅପା, ଅଧ୍ୟାପକ ମୋହିନୀ ମୋହନ ସେନାପତିଙ୍କ ଝିଅ ମୀରାଦି ପ୍ରଭୃତି, ମୁନ୍‌ସଫ୍ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ଝିଅ ସୁକୃତି ଦିଦି ଓ ଆଉ ଅନେକ ଓସ୍ତାଦଜୀଙ୍କ ଠାରୁ ସେ ସମୟରେ ସଂଗୀତ, ସୀତାର, ଜଳତରଙ୍ଗ ଆଦି ଶିଖୁଥିଲେ । ଓସ୍ତାଦ୍‌ଜୀ ଜଣାଣ, ଭଜନ, ଛାନ୍ଦ, ବଂଗଳା ଓ ହିନ୍ଦୀ ଗୀତ, ସଂସ୍କୃତ ଶ୍ଳୋକ ତ ଶିଖାଉ ଥିଲେ ଉପରନ୍ତୁ ମୋତେ ଜାତୀୟ ସଂଗୀତ ମଧ୍ୟ ଶିଖାଉ ଥିଲେ । କିନ୍ତୁ ଅନ୍ୟ ଶିକ୍ଷାର୍ଥିନୀମାନେ ଜାତୀୟ ସଂଗୀତ ଶିଖି ନ ଥିବାର ମୁଁ ଲକ୍ଷ୍ୟ କରିଛି । ବୋଧ ହୁଏ ରାଜଦ୍ରୋହ ଆଶଙ୍କାରେ ସେମାନେ ଜାତୀୟ ସଂଗୀତକୁ ବର୍ଜନ କରିଥିଲେ । ଆମ ଘରେ ସେ ଆଶଙ୍କା ନ ଥିଲା ।

ଅନେକ ବର୍ଷ ପରେ ବୋଧହୁଏ ୧୯୬୯ ମସିହାରେ ମୋର ଜଣେ ଦାଦା ବ୍ରିଗେଡ଼ିୟର ସଂଗ୍ରାମ କେଶରୀ ରାୟଙ୍କ ସହିତ କେନ୍ଦ୍ରାପଡ଼ା କଲେଜ୍‌ରେ ଗୋଟିଏ ସଭା ଶେଷ କରି ତାଙ୍କରି ଜିପ୍‌ରେ ଫେରିବା ବାଟରେ ସେ କହିଲେ – ତୁ ପିଲା ହୋଇଥିଲୁ । ମୁଁ ତମ ଘରକୁ ଗଲେ 'ତୁ ଭାରତ ମୋ ମାଆ' ଗୀତଟି ବୋଲି ଶୁଣାଉଥିଲୁ । ମୋତେ ସେ ଗୀତ ଭାରି ଭଲ ଲାଗୁଥିଲା । ଏହା କହି ସେ ଜିପ୍ ଚଳାଉ ଚଳାଉ ଆବେଗପୂର୍ଣ୍ଣ

କଣ୍ଠରେ ସେହି ପୁରୁଣା ଗୀତଟି ଗାଇ ଲାଗିଲେ । ଗୋଟିଏ ସାତଆଠ ବର୍ଷର ଅବୋଧ ବାଳିକା କଣ୍ଠରୁ ଜାତୀୟ ସଂଗୀତ ଶୁଣି କେହି ଉଦ୍‌ବୁଦ୍ଧ ହେବା ମଧ୍ୟ ସମ୍ଭବ ବୋଲି ମୁଁ ସେହିଦିନ ଜାଣିଲି ।

ଓସ୍ତାଦ୍‌ଜୀ ତାଳଜ୍ଞାନ ସ୍ୱର-ସାଧନା ପ୍ରତି ଯେତିକି ଦୃଷ୍ଟି ଦେଉଥିଲେ ଆମ ମଧ୍ୟରେ ସଦାଚାର ଶିଷ୍ଟାଚାରର ବିକାଶ ପ୍ରତି ମଧ୍ୟ ସେତିକି ଦୃଷ୍ଟି ଦେଉଥିଲେ । ଦାସିଆ ବାଉରୀ କଥା ଓସ୍ତାଦ୍‌ଜୀଙ୍କ ମୁହଁରୁ ହିଁ ମୁଁ ଶୁଣିଥିଲି । ଥରେ ମୁଁ ଓସ୍ତାଦ୍‌ଜୀଙ୍କୁ ଚିଠି ଲେଖିଲି- ମା କହିଛି - ଆଜି ଆପଣ ଆମ ଘରେ ଖାଇବେ । ଓସ୍ତାଦ୍‌ଜୀ ସେଦିନ ଆସି ମୋତେ କହିଲେ -''ମା କହିଛି ନୁହେଁ 'ମା କହିଛନ୍ତି' ଲେଖିବାକୁ ହୁଏ । ସେ କାଳରେ ପର୍ଦ୍ଦା ପ୍ରଥାର ପ୍ରାବଲ୍ୟ ଥିବା ବେଳେ ଜଣେ ମୁସଲମାନ ଓସ୍ତାଦ୍ ଯେ ଝିଅମାନଙ୍କୁ ଗୀତ ଶିଖାଇ ପାରୁ ଥିଲେ ଏହା ଓସ୍ତାଦ୍‌ଜୀଙ୍କର ସନ୍ଥ-ଚରିତ୍ର ଯୋଗୁଁ ସମ୍ଭବ ହୋଇ ପାରିଥିଲା । ମୋର ଆତ୍ମୀୟସ୍ୱଜନମାନଙ୍କର ପ୍ରିୟ ଗୀତଗୁଡ଼ିକ ସେ ମୋତେ ସଯତ୍ନରେ ଶିଖାଉଥିଲେ । ଅପାର ''ସେହି ଯିବ ପ୍ରେମ ନଗର'' ବାପାଙ୍କର 'ତୁମି ନିର୍ମଲ କର ମଙ୍ଗଲ କରେ ମଲିନ ମର୍ମ ମୁଛାୟେ', ମାଆର 'ରେ କାଳିଆ ସୁନା' ମାଇଁଙ୍କର 'ଶ୍ରୀରାଧା ବାତୁଳୀ' ଆଦି ପ୍ରିୟ ଗୀତ ଶିଖି ମୁଁ ସେମାନଙ୍କୁ ଶୁଣାଉଥିଲି । ଗୋଟିଏ ଗୀତ ଥିଲା 'ବାନ୍ଧବୀ କିସ ଭାଳି ଆଜ ସେ ବନମାଳୀ କାହାପୁରତେ ଢ଼ଳି ରହିଲେ ଆଗୋ ସଖି ! ଏହି ଗୀତର ପ୍ରତ୍ୟେକ ଧାଡ଼ିର ଆଦ୍ୟ ଅକ୍ଷରଗୁଡ଼ିକ ଜୋଡ଼ି ଦେଲେ ହେଉଥିଲା - ବାବୁ ଗୋପାଳ ବଲ୍ଲଭ ଦାସ । ଓସ୍ତାଦ୍‌ଜୀ ବୋଉକୁ ତା ପିଲାଦିନେ ଯେଉଁ ଗୀତ ଶିଖାଇଥିଲେ ବୋଉର ଗୋଟିଏ ଗୀତଖାତାରେ ସେ ଗୀତସବୁ ଲେଖାଥିଲା । ଓସ୍ତାଦ୍‌ଜୀ ସେହି ପୁରୁଣା ଗୀତ୍ ମଧ୍ୟ ମତେ ଶିଖାଇଥିଲେ । ତନ୍ମଧ୍ୟରୁ ଗୋଟିଏ ଥିଲା - 'ହସିଆରେ ଫୁଲ ରସିଆ, ପବନ ମଧୁ ମାସିଆ ।' ଆଉ ଗୋଟିଏ ଗୀତ - 'ପ୍ରେମ ଜାଣେ କି ଦିନରାତି, ଚିର ଅନ୍ଧ ବୋଲି ତାର ଖ୍ୟାତି ।' ଓସ୍ତାଦ୍‌ଜୀ ମୋତେ ସେତାର ମଧ୍ୟ ଶିଖାଇଥିଲେ । ଅଳକାଶ୍ରମ-ଯାତ୍ରା ପରେ ସଂଗୀତ ଚର୍ଚ୍ଚାରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ପରବର୍ତ୍ତୀ କାଳରେ ମୁଁ ସର୍ବଶ୍ରୀ ଗୋକୁଳ ଶ୍ରୀଚନ୍ଦନ, ଗୋପାଳ ଘୋଷ, ଲଛମନ୍ ଖାଡ଼ଙ୍ଗାଙ୍କ ପାଖରୁ କିଛି କିଛି ଦିନ ସଂଗୀତ ଶିଖିଥିଲି । କିନ୍ତୁ ଓସ୍ତାଦଜୀଙ୍କ ପୁଣ୍ୟ ପ୍ରଭାବ ଜୀବନରେ ଗଭୀରରୁ ଗଭୀରତର ହେଲା ।

ଅପା ତ ଚଉଦ କୁଲାଟରୁ ଷ୍ଟିମରରେ ଚଢ଼ି ଆମ ଘରକୁ ଆସେ । ଅର୍ଥାତ୍ ପଟ୍ଟାମୁଣ୍ଡାଇରୁ ଷ୍ଟିମର୍‌ରେ ବସି ଯୋବ୍ରାରେ ଓହ୍ଲାଇ ଆମ ଘରକୁ ଆସେ । ସେ ଆସୁଥିବା ଷ୍ଟିମରର ନାମ 'ଜଗନ୍ନାଥ' ପିଉସାଙ୍କ ନାମ ମଧ୍ୟ 'ଜଗନ୍ନାଥ' । ପିଲାଦିନେ ଏହି

ସାମାନ୍ୟ କଥାଟା ମନରେ କେତେ କୌତୂକ ସୃଷ୍ଟି କରି ପାରୁଥିଲା । ପରିଣତ ବୟସରେ ହୁଏତ ଏହି ନାମର ଐକ୍ୟ ଦେଖିଥିଲେ ଅପାକୁ ଥଟ୍ଟା କରି କହିଥାନ୍ତି ଏ ଦୁଇ ଜଗନ୍ନାଥ ହିଁ ତୋର ଉଦ୍ଧାରକ । ଷ୍ଟିମର ଶାଶୁଘରୁ ତୋତେ ଉଦ୍ଧାର କରି ଆଣେ । ପିଇସା ତୋତେ ଉଦ୍ଧାର କରିବେ ଭବସାଗରରୁ ।

ଯାହାହେଉ, ସେଥର ଅପା ଆସି ବୋଉ ସାଙ୍ଗରେ କି ପରାମର୍ଶ କଲା କେଜାଣି ହଠାତ୍ ଦେଖିଲି ବାପା କଲିକତାରୁ ପୁଳାଏ ରଙ୍ଗୀନ ଉଲ୍, କାର୍ପେଟ ବୁଣା ଜାଲି କନା ସାଂଗରେ କାର୍ପେଟ ବୁଣା ନକ୍ସା ଥିବା ବହି ଆଣି ପହଞ୍ଚାଇଲେ । ମହା ଉତ୍ସାହରେ ଅପା ମୋତେ କାର୍ପେଟ୍ ବୁଣା ଶିଖାଇବା ଆରମ୍ଭ କରି ଦେଲା । ମୁଁ ସ୍ୱଭାବତଃ ପରିଶ୍ରମକାତର ଓ ମୋଟାବୁଦ୍ଧିଆ । କାର୍ପେଟ ବୁଣା ପରି ଘର ଗଣି ଗଣି ସୂକ୍ଷ୍ମ କାର୍ଯ୍ୟ ମୋ ମଧ୍ୟରେ ବିଶେଷ ଆଗ୍ରହ ସୃଷ୍ଟି କଲା ନାହିଁ । କାର୍ପେଟ୍ ବୁଣିବାକୁ ଭାଇ ମୋତେ ଉତ୍ସାହିତ କରିବା ପାଇଁ ଖୁବ୍ ଚେଷ୍ଟା କରୁଥାନ୍ତି । ସେ ନିଜେ ମଧ୍ୟ କାର୍ପେଟ୍ ବୁଣା ଆରମ୍ଭ କଲେ ଏବଂ ନକ୍ସା ବହିକୁ ଖାତର ନ କରି ନିଜ ବୁଦ୍ଧିରେ ବିଭିନ୍ନ ରଂଗର ପ୍ରୟୋଗ କଲେ । ଏହା ପରେ ଚାଲିଲା -- ବୁଣା ପାଲା । ଖୁଡ଼ୀ ଆସିଲାରୁ ଏମ୍ବ୍ରୟଡ଼ାରୀ ଆରମ୍ଭ ହେଲା ।

ମନ ଲାଗୁ ବା ନ ଲାଗୁ ଏସବୁ ଶିଖିବାକୁ ହିଁ ହେବ । ଏସବୁ ହେଲା ପରଘରକୁ ଯିବାର ପୂର୍ବପ୍ରସ୍ତୁତିର ଅଂଗ । ବାପଘରୁ ଏସବୁ ଶିଖିକରି ନ ଗଲେ ମାଆଖୁଡ଼େଇଙ୍କ ନାଆଁ ପଡ଼ିବ । ଏ କଥାଟା ମୋ ମାଆ ସୁବିଧା ପାଇବା ମାତ୍ରେ ସ୍ମରଣ କରାଇ ଦେଉଥାଏ । ଟିକିଏ ଅସଣ୍ଢୁଣା ହେଲେ – ହସିବା ବେଳେ ହସ ଶୁଭିଲେ ବା ଖାଇବା ପଦାର୍ଥ ଚୋବାଇବା ବେଳେ ଚାକୁ ଚାକୁ ଶୁଭିଲେ ପ୍ରଖ୍ୟାତ ଆପ୍ତବାକ୍ୟ ଶୁଣିବାକୁ ମିଳେ । 'ଦୁହିତା ଦୁଇ କୁଳକୁ ହିତା ନୋହିଲେ ଦୁଇ କୁଳକୁ ପିତା' । ଚଉଦ ବର୍ଷ ବୟସରେ ପରଘରକୁ ଯାତ୍ରା ନିଶ୍ଚିତ । ଅନ୍ତତଃ ମୋ ମା' ବୋଉ ଓ ପିଉସୀମାନଙ୍କ ପ୍ରତି ଏହି 'ଆଇନ୍ ଲାଗୁ ହୋଇଥିଲା । ପାଞ୍ଚ ବର୍ଷ ବା ଚାରିବର୍ଷ ଚାରିମାସ ହେବା ଯାଏ ଖଡ଼ିଛୁଆଁ ହୋଇ ନ ଥାଏ । ମଝିରେ ରହିଲା ଦଶବର୍ଷ । ଏହି ଦଶୋଟି ବର୍ଷ ଭିତରେ ଝିଅକୁ 'ଗୃହିଣୀ, ସଚୀବ ସଖୀ ଓ ଲଳିତ କଳା ବିଦ୍ୟାରେ ନିପୁଣ କରାଇବାକୁ ମା' ଖୁଡ଼େଇ ଆପ୍ରାଣ ଚେଷ୍ଟା ଚଳାନ୍ତି । ଏହି ଦଶବର୍ଷିଆ ଶିକ୍ଷାକ୍ରମରେ ଯେ ଯେତେ ଅଧିକ ଯୋଗ୍ୟତା ଅର୍ଜନ କରିବ ଶାଶୁଘରେ ତା ମା-ଖୁଡ଼େଇ ସେତିକି ପ୍ରଶଂସିତ ହେବେ । ଗଞ୍ଜଣାର ପରିମାଣ ମଧ୍ୟ କମିବ ।

କିନ୍ତୁ ମହାତ୍ମା ଗାନ୍ଧୀଙ୍କ କୃପାରୁ ମୋର ଏ ଦଶବର୍ଷିଆ ଶିକ୍ଷାକ୍ରମଟି ଅପୂର୍ଣ୍ଣ ରହିଗଲା । ଅବଶ୍ୟ ଚଉଦ ବର୍ଷ ବୟସରେ ମୁଁ ଘର ଛାଡ଼ି ପରଘରକୁ ଯାତ୍ରା କଲି । କିନ୍ତୁ

ସେଇଟା ଶାଶୁଘର ନୁହେଁ ବନ୍ଦୀଘର ଅର୍ଥାତ୍ ଜେଲଖାନା । ସେ ଘରକୁ ପ୍ରବେଶ କରିବାର ଶିକ୍ଷାକ୍ରମ ଥିଲା ଭିନ୍ନ ପ୍ରକାର ।

ଦିନେ ଆମଘରେ ଆବିର୍ଭାବ ହେଲା ଉତ୍କଳ ଭୀମ ପଦ୍ମଚରଣଙ୍କର । ଭାଇ କହିଲେ ଗୋଟାଏ ନଡ଼ିଆ ସରଘରୁ ଆଣ । ଜଣେ କହୁଣୀରେ ନଡ଼ିଆ ଛଡ଼ାଇ ପାରନ୍ତି । ମୁଁ ତୁରନ୍ତ ନଡ଼ିଆଟିଏ ଆଣି ଦେଲି । ଟେରେଇ ଟେରେଇ ଚାହିଁ ମୁଡ଼କି ମୁଡ଼କି ହସି ସେ ଭଦ୍ରଲୋକ କହୁଣୀରେ ନଡ଼ିଆ ଛଡ଼େଇ ଦେଲେ ।

ଆମେ ତାଙ୍କର ସ୍ତାବକ ପାଲଟି ଗଲୁ । ସେ ହେଲେ 'ବ୍ୟାୟାମ ଗୁରୁ । ରାଧାଶ୍ୟାମ ଦାସଙ୍କ ଜିତିବାର' ଆମକୁ କାବୁ କରି ନ ଥିଲା । ଉତ୍କଳଭୀମଙ୍କ ନଡ଼ିଆ ଛଡ଼େଇବାଟା ବୋଲ କଲା । ଚାଲିଲା 'ଧରମୁଦ୍‌ଗର କର କସରତ୍'' କିନ୍ତୁ ବାପାଙ୍କ ସାଙ୍ଗରେ ନିତି ପ୍ରାତଃଭ୍ରମଣରେ ଖାନ୍ ନଗର ବା କାଜୀପାଟଣା ଯାଏ ଯିବା ମୋ ପାଇଁ ଅଧିକ ଚିତ୍ତାକର୍ଷକ ଥିଲା ।

ମୋତେ ସାତ କି ଆଠ ବର୍ଷ ହୋଇଥିବ । ଦିନେ ବୋଉ ମତେ କହିଲା ତୁ ବଡ଼ ହୋଇ ଗଲୁଣି ଏଣିକି ବାପା ଦାଦା ଭାଇଙ୍କୁ 'ତମେ' କହ । ମୁଁ ବୋଉ କଥା ମାନି ତମେ କହିବା ଆରମ୍ଭ କଲି । ବାପା ଭାଇ ସେ ତମେଟାକୁ ଗ୍ରହଣ କଲେ । ଦାଦା ତାକୁ ହସରେ ଉଡ଼େଇ ଦେଇ ଆଜୀବନ 'ତୁ'ରେ ରହିଲା । ମା କହିଲା – କରଣ ଘର ଝିଅ । ଦାଦାକୁ 'ତୁ' କହୁଛୁ ? ମୁଁ କଣ କରିବି ? 'ତମେ' ତ ଦାଦାର ପାଖ ପଶି ପାରିଲା ନାହିଁ ।

ଆଉଦିନେ ବୋଉ କଣ ଘର ଜଞ୍ଜାଳରେ ବ୍ୟସ୍ତ ଥାଇ ମୋତେ କହିଲା – ଆଜି ତୁ ସଞ୍ଜ ଦେ । ବୋଉ ଦକ୍ଷିଣୀ ନାଲି ପାଟ ପିନ୍ଧି ପଣତ ଉହାଡ଼ରେ ସଞ୍ଜ ଧରି ରୋଷଘର, ଚଉରା, ଗୁହାଳ ଓ ଧାନ ଅମାରରେ ସଞ୍ଜ ଦିଏ । ସଞ୍ଜ ସଳିତାର ସ୍ନିଗ୍ଧ ଆଲୁଅ ତା ମୁହଁରେ ପଡ଼ି ବଡ଼ ସୁନ୍ଦର ଦିଶେ । ସଞ୍ଜ ଦେଇସାରି ଠାକୁର ଘର ପିଣ୍ଡାରେ ଚୁପ୍‌ଚାପ୍ କିଛି କ୍ଷଣ ବସେ । ଶାନ୍ତ ଆତ୍ମସମାହିତ ମୁଖମଣ୍ଡଳ । ମୁଁ ତା ପାଖରେ ବସି ତାକୁ ଚାହିଁ ରହେ । ବୋଉ କିଜି କଥା ଭାବୁଛି କି ?

ମୁଁ ଭାବିଲି ମୁଁ ସେ ନାଲି ଦକ୍ଷିଣୀ ପାଟ ପିନ୍ଧି ସଞ୍ଜ ଦେଲେ ମୋ ବୋଉ ପରି ଦିଶିବି । (ସେତେବେଳକୁ ମୁଁ ଜାଣି ନ ଥାଏ ଯେ ମୁଁ ବୋଉ ପରି ସୁନ୍ଦର ନୁହେଁ) । ସେଥିପାଇଁ ମୁଁ ମହାଉତ୍ସାହରେ ବୋଉକୁ ଅନୁକରଣ କରି ନାଲିପାଟ ଗୁଡ଼େଇ ହୋଇ ସଞ୍ଜ ଦେଲି । କାମଟା ତ୍ରୁଟିରହିତ ହେବାରୁ ପ୍ରଶଂସିତ ମଧ ହେଲି । କିନ୍ତୁ ସେହିଦିନୁଁ ନିତି ସଞ୍ଜ ଦେବା କାମଟା ମୋତେ ତୁଲେଇବାକୁ ପଡିଲା ।

ଦିନେ ବୋଉ ମା କଣ ଗୋଟାଏ ଓଷାବ୍ରତରେ ବିଧି ବିଧାନ ରକ୍ଷା କରିବାରେ ବ୍ୟସ୍ତ ଥିଲେ । ଓଷାବାରରେ ମାଆର ଅରୁଆଘରେ ପାନଭଙ୍ଗା ହୁଏ । ମା ସେ ଦିନ ପଥର ଚୂନରେ ପାନ ଖାଏ । କେତକୀ ଖଇର ଓ ଚୂଆପକା ଗୁଣ୍ଡି ସେଦିନ ନିଷିଦ୍ଧ । କେବଳ ମାଣିକଚାନ୍ଦି ଗୁଆରେ ପାନ ଖାଇବ । ବୋଉ କହିଲା – ଗଲୁ ଧୋବଲୁଗା ପିନ୍ଧି ଅରୁଆଘରେ ମାଙ୍କ ପାନ ଭାଙ୍ଗିଦେବୁ । ଅରୁଆ ଘରେ ପ୍ରବେଶ ଅଧିକାର ପାଇବା ଉତ୍ସାହରେ ମୁଁ ତୁରନ୍ତ ପାନ ଭାଙ୍ଗିବାକୁ ଗଲି । ମାଆର ମୋ ପାନଭଙ୍ଗା ମନକୁ ପାଇଲା । ସେହିଦିନୁ ମାଆ ପାନଭଙ୍ଗାଟା ମଧ୍ୟ ମୋ ପୋର୍ଟଫୋଲିଓର ଅନ୍ତର୍ଭୁକ୍ତ ହୋଇଗଲା ।

ବୋଉ କାର୍ଯ୍ୟବସ୍ତ । ଲକ୍ଷ୍ମୀ ବାସୀଲୁଗା ଗଣ୍ଠିରା ଧରି ବସିଛି । ବୋଉ କହିଲା – ଧୋବା ହିସାବ ଖାତା ଆଣି ଲୁଗା ହିସାବ ମିଳେଇ ଲୁଗା ରଖ । ମଇଳା ଲୁଗା ଗଣ୍ଠିରାରେ ଥିବା ଲୁଗା କୁର୍ତାର ହିସାବ ଧୋବା ହିସାବ ଖାତାରେ ଲେଖି ରଖ୍ । ସେ କାମଟା ସେହିଦିନୁ ମୋ ଜିମ୍ମାରେ ରହିଲା ।

ବାପାଙ୍କ ପିଉସୀ ଝିଅ ଭଉଣୀ ମଣିଅପା ବୋଉଠାରୁ ଶିଖିବାକୁ ବିଭା ହେବା ପୂର୍ବରୁ ଆମ ଘରେ ଥାନ୍ତି । ବୋଉର ଅନେକ ନଣନ୍ଦ । ନୀର ଅପା, ସୁର ଅପା, ମନି ଅପା, ଲକ୍ଷ୍ମୀ ଅପା ପ୍ରଭୃତି ସଣ୍ଣା ତାଲିମ ବୋଉ ପାଖରେ ପାଇବାକୁ ଆମ ଘରେ ଆସି ରହନ୍ତି । ମଣି ଅପା ଦିନେ ଦୁଧ ଘରେ ପିଠା କରୁଥିଲା । ସମସ୍ତଙ୍କ ଘର ପରି ଆମ ଘରେ ମଧ୍ୟ ପ୍ରତି ବଖରା ଗୋଟାଏ ଲେଖା ନାଆଁ ଥିଲା । – ଦୁଧଘର, ଆଲୁଅ ଘର, ପାଣିଘର, ସରଘର, ଠାକୁର ଘର, ଅରୁଆ ଘର, ଗମ୍ଭୀରି ଘର, ପଢ଼ା ଘର, ବଡ଼ ଘର ମଝି ଘର, ଧାଈଙ୍କ ଘର ଇତ୍ୟାଦି ଇତ୍ୟାଦି । ମୋର ମଧ୍ୟ ଚକୁଳି ପିଠା କରିବାକୁ ମନ ହେଲା । ପିଠା ଲେଉଟାଇଲା ବେଳକୁ ଭାଙ୍ଗିଗଲା । ମୁଁ ବହୁତ କାନ୍ଦିଲି । ମା ଧାଇଁଆସି ମୋତେ ବୋଧ ଦେଲା । ପିଠାପାତିଆ ଧରାଇ ଚକୁଳି ପିଠା ଲେଉଟାଇବା ଶିଖାଇ ଦେଲା । ଏହାପରେ ବୋଉ ମୋତେ ମୋହନଭୋଗ କରିବା ଶିଖାଇ ଦେଲା । ଏହିପରି ଭାବରେ ମୋତେ ନାନାପ୍ରକାର କାମ ଶିଖାଇବା ଆରମ୍ଭ କଲା । ଝିଅ ଜନମ କରିଛି ତେଣୁ ତା ଛାତିରେ କାତେ ପାଣି – କାଲେ ଝିଅ ନାଆଁ ପକେଇବ, ବୋଲଣା ଶୁଣିବ । ଶାଶୁଘର ବ୍ୟାପାରଟାରେ ଝିଅକୁ ସଚେତନ କରାଇବା କାମଟା ଝିଅ ଶେଢଶୁଆ ଛୁଆ ଥିବାବେଳୁ ଆରମ୍ଭ ହୋଇ ଯାଉଥିଲା । ' ମୋ କୁନୀକୁ ମାଇଲେ ଶାଶୁ ଦେଇ ପଠାଇବି ଡ଼ୋଲ୍ଲା ଗଉଡ଼ ମୋ କୁନୀ ଶାଶୁଘରୁ ଆସୁ' । ବୋଉ ଝିଅକୁ ଗେଲ କରୁକରୁ କହନ୍ତି କଥାଣି–ଏ ଝିଅ ମୋର ଶାଶୁଠାରୁ ମାଡ଼ ଖାଇବ । ସେଥିପାଇଁ ଝିଅ କିପରି ମାଡ଼ରୁ ବର୍ତ୍ତିବ ତାର

ଉପାୟ ପାଞ୍ଚି ବୋଉ କହୁଛି - 'ମୋ କୁନୀ ଯାଇଥିବ ଶାଶୁ ଘରକୁ ମୁଁ ଡ଼ୋଲା ଆଗେ ଦେବି ଗାଇ, ସାଇ ପଡ଼ଶୁଣୀ ଦେଖି କହୁଥିବେ ଧନ୍ୟ ତାର ବାପ ଭାଇ' । ସେଥିରେ ସୁଦ୍ଧା ଯଦି ଶାଶୁ ପ୍ରସନ୍ନ ନ ହେଲା, ଶେଷ ବିନତି ହେଉଛି - ମୋ କୁନୀକୁ ମାରିବ ନାହିଁ । ମୋ କୁନୀର ଯେବେ କାଇଲି ହେବ ତା ବାପା ତ ବୁଝିବେ ଯାଇ' । ଏ ନାନାବାୟା ଗୀତରେ କେତେ କରୁଣ ମା ହୃଦୟର ବେଦନା ବୋଲା ଅଭିବ୍ୟକ୍ତି । ସେହିପରି ଥିଲା ବାହୁନା । ଅନେକେ ଅବଶ୍ୟ ମୁଖସ୍ଥ ହୋଇଥିବା ଗୀତ ପରି ବାହୁନନ୍ତି । କିନ୍ତୁ ଅନେକ ଝିଅଙ୍କ ବାହୁନାରେ ଅନିଶ୍ଚିତତାର ଆଶଙ୍କା ଓ ଅପରିଚିତ ଜନଙ୍କ ତୀକ୍ଷ୍ଣ ବାକ୍ୟବାଣର ସମ୍ଭାବନାର ବେଦନା ଝରି ପଡ଼େ । ଆମ ପିଲାଦିନ ଚଳଣିରେ କରଣ ଘର ଝିଅ ବିଭା ପରେ ପୁଆଣୀ ହୋଇ ବାପ ଘରକୁ ଯିବା ଥିଲା ସୁଦୂର ପରାହତ । ଏପରିକି ବାପମାଆଙ୍କୁ ମୃତ୍ୟୁ ଶଯ୍ୟାରେ ସୁଦ୍ଧା ଦେଖିବାର ଆଶା ଛାଡ଼ି ଝିଅ ଶାଶୁଘରକୁ ଯାଉଥିଲା । ତହିଁରେ ପୁଣି ଶାଶୁଘର ଯିବା ବାଟରେ ଯଦି ନଈ ଥିବ ତେବେ ବାପ ବାଧିକିବା ଖବର ପାଇ ଶୁଭବେଳରେ ଅନୁକୂଳ କରି ଆସି ନଈକୂଳରେ ପହଞ୍ଚି ଦେଖାଯିବ ନାଉରୀ ବାପୁଡ଼ା ଗାଏବ । ରାମଚନ୍ଦ୍ର ମହାପ୍ରଭୁଙ୍କ ମିଥିଳା ଯାତ୍ରା ବେଳୁ ଆଜିଯାଏ ନାଉରୀ ସେହି ମଗଜିଆ । ସେହି ଦୁର୍ଦ୍ଦଶାକୁ କଳ୍ପନା କରି ଝିଅ ଯେତେବେଳେ କାନ୍ଦେ - 'ଏକା ମହାନଦୀ ସହସ୍ର କୋଶ ଲୋ ମୋ ବୋଉ !' ଏ କାନ୍ଦଣା ଶୁଣି କୋଉ ବୋଉ ଭଲା ଧୈର୍ଯ୍ୟ ଧରି ରହିବ ।

ଜାତି ଯାତକ ଯୌତୁକ ଉପରେ ପ୍ରତିଷ୍ଠିତ ବିବାହ ଅନୁସାରେ ବାପ ଦାଦି ପାତ୍ର ଖୋଜି ଖୋଜି ଶେଷରେ ଦୁଃଖୀ ଘର ହେଉପଛେ ଜାତକ ସୁଝିବା ଦୃଷ୍ଟିରୁ ବନ୍ଧୁ କରିବାକୁ ସେଇଠି ନିର୍ବନ୍ଧ କରନ୍ତି । ଝିଅ ବଢ଼ିଥିବ ପଥର ଘରେ ଶୋଇଥିବ ପଲଙ୍କରେ କ୍ଷୀର ପିଇଥିବ ରୂପା ଶାମୁକାରେ । କାନ ପାରି ସେ ଶୁଣି ସାରିଛି ଶଶୁର ଘର ପରିସ୍ଥିତି । ସେ ଖୁଡ଼ୀକୁ ଧରି ବାହୁନେ 'ବାଉଁଶ ପେଲାକୁ ବରଡ଼ା ତାଟି ଶୁଣିଲେ ମୁର୍ଚ୍ଛନା ଯାଉଛି ଫାଟି, ସେ ଘରେ ଝିଅକୁ ଦେଇ ନ ଥାନ୍ତୁ କି ଖୁଡ଼ି ! ଇନ୍ତୁଡ଼ି ଶାଳରେ ଜିଭ ତଳେ ଲୁଣ ଦେଇ ନ ଥାନ୍ତ କି ଖୁଡ଼ି !'

କିନ୍ତୁ ଆମ ଲକ୍ଷ୍ମୀ ଅପା (ରାଘବାନନ୍ଦ ଦାସଙ୍କ ଝିଅ)
ଏସବୁ ବାହୁନା ଶୁଣି ବାହୁନିବା ଆରମ୍ଭ କରନ୍ତି -
ମୋତେ ଦେଇଥିଲ କୁକୁରଟିଏ
ମୁଁ ତାକୁ କରିଛି ଠାକୁରଟିଏ ଗୋ ଭାଉଜବୋହୂ

ମୋତେ ବାପା ଦେଇଛନ୍ତି ଧଇଁଆ ବର

ତାକୁ ସେକି ସେକି ମୋତେ କଲାଣି ଜର ଗୋ ଭାଉଜ ବୋହୂ

ଲକ୍ଷ୍ମୀ ଅପାଙ୍କ ମୁଖଭଙ୍ଗୀ ଓ ଏ କାନ୍ଦଣା ଶୁଣି କିଏ ଭଲା ନ ହସିବ ?

ଦିନେ ଆମ ଘରକୁ ଆସିଲେ ଏସ୍.କେ ରାୟ । ସେ ଖଦୀ ଲୁଗାକୁର୍ତ୍ତା ପିନ୍ଧି ଥାଆନ୍ତି । ଖଦୀ ପିନ୍ଧା ଲୋକ ତ ଆମର ପରମ ଆତ୍ମୀୟ । ଫଳରେ ସେ ଘରଲୋକ ପାଲଟି ଗଲେ । ସେ ଆସି ଆମ ସୂତାକାଟିବା ଲୁଗାବୁଣା ଆଦିର ଫଟୋ ନିଅନ୍ତି । ଭାଇ ମଧ ତାଙ୍କ ସଂଗେ ମିଶି ଫଟୋ ଉଠାନ୍ତି । ଦିନେ ବାପାଙ୍କ ସାଙ୍ଗରେ ଆମେ କଲେଜିଏଟ୍ ସ୍କୁଲ୍‌କୁ ଗଲୁ । ସେଠି ଏସ୍.କେ.ରାୟ ମ୍ୟାଜିକ୍ ଲ୍ୟାଣ୍ଟର୍ଣ୍ଣରେ ଛବି ଦେଖାଇ ବକ୍ତୃତା ଦେଲେ । ଇଷ୍ଟ୍ ଇଣ୍ଡିଆ କୋମ୍ପାପାନୀ କିପରି ଭାରତର ଗ୍ରାମ୍ୟଶିଳ୍ପକୁ ଧ୍ୱଂସ କରି ଭାରତକୁ ଦୀନହୀନ କଲା । ଭାରତର ତନ୍ତୀମାନେ କିପରି ଇଷ୍ଟ ଇଣ୍ଡିଆ କମ୍ପାନୀର ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ନିଜ ବୁଢ଼ା ଆଙ୍ଗୁଠି ନିଜେ କାଟି ପକାଇଲେ । ବିଲାତର ବସ୍ତ୍ରଶିଳ୍ପ କିପରି ଭାରତର ବସ୍ତ୍ରଶିଳ୍ପକୁ ନଷ୍ଟ କରି ଦେଲା ତାହାହିଁ ସେ ବୁଝାଉଥାନ୍ତି । ପୁଣି ଆଉ କେତେ ଥର ସଂକ୍ରାମକ ରୋଗର ନିରାକରଣ, ପର୍ଦ୍ଦାପ୍ରଥାର ଫଳାଫଳ ବିଷୟରେ ବକ୍ତୃତା ଦେଲେ । କିନ୍ତୁ ସେହି ପ୍ରଥମ ଦିନର ବକ୍ତୃତାଟି ଅବିସ୍ମରଣୀୟ ହୋଇ ରହିଲା ।

ବାପା ଆମକୁ କହିଲେ ଆଜି ଆମ ଅଗଣାରେ ମ୍ୟାଜିକ୍ ଲ୍ୟାଣ୍ଟର୍ଣ୍ଣ ଦେଖାଅ । ଦର୍ଶକ ହେଲେ କାମୀଦିଦି, ସରନାନୀ, ଧୋବଣୀ ବୋଉ, ପଠାଣୀ ମା ଆଦି ସାହି ଲୋକ । ଚାଦର ଟଙ୍ଗା ହେଲା । ଭାଇ ସ୍ଲାଇଡ୍ ଖଞ୍ଜିଲେ ମୁଁ ବାଡ଼ି ଖଣ୍ଡେ ଧରି ବକ୍ତୃତା ଦେଲି । ବିଷୟଟି ଥିଲା ରାମାୟଣ । ଜଣା ବିଷୟ, ତଥାପି ପାଟି ଖନି ମାରି ଯାଉଥାଏ । ଜଳଚିକିତ୍ସା ହେଲା ଆମ ଘରର ଆଉ ଏକ ପାଲା । ବାପା ଓ ଗିରିଧାରୀ ଜଗତି ଥିଲେ ଏ ଜଳ-ଚିକିତ୍ସାର ପ୍ରବର୍ତ୍ତକ । ଆମେ ପ୍ରତିଦିନ ଦୁଇଓଳି ଗାଧୋଇଲୁ । ଏ ଚିକିତ୍ସାରେ ପାଣି ଟବ୍‌ରେ ଗୋଡ଼ ପଦାକୁ କାଢ଼ି ନାହି ତଳଯାଏ ପେଟ ପାଣିରେ ବୁଡ଼େଇ ଦଶ ବା ପନ୍ଦର ମିନିଟ ପରେ ନରମ ତଉଲିଆରେ ତଳି ପେଟକୁ ଘଷିବାକୁ ହେବ । ତାହାପରେ ଦେହବୁଡ଼ାଇ ଗାଧୋଇବାକୁ ହେବ । ଟବ୍ ନ ଥିଲେ ଗୋଟିଏ ପିଢ଼ାରେ ଗୋଡ଼ ଲମ୍ବେଇ ବସି ଆଉ ଗୋଟିଏ ପିଢ଼ାରେ ଗୋଡ଼ ରଖି ପାଖରେ ବାଲତିରେ ପାଣି ରଖି ସେଥିରେ ଗାମୁଛା ଓଦା ସରସର କରି ଆଣି ତଳିପେଟ ଘଷିବାକୁ ପଡ଼େ । ମା ଛଡ଼ା ଆମେ ସମସ୍ତେ ଏ ଜଳ-ଚିକିତ୍ସାର ଅନ୍ତର୍ଭୁକ୍ତ ହେଲୁ । ଚୌଦକୁଳାଟରୁ ରବି ଆସି ଆମ ସାଂଗରେ ଏ ଜଳ-ଚିକିତ୍ସା କଲା । ଏ ଚିକିତ୍ସାରେ ଖାଇବାର ତିନିଘଣ୍ଟା ପରେ ଗାଧୋଇବା ବିଧି

ଏବଂ ଗାଧୋଇବାର ଏକଘଣ୍ଟା ପରେ ଖାଇବା କଥା । ରବି ବିଚରା ଛୋଟ ହୋଇଥାଏ । ଗାଧୋଇ ସାରିଲେ ତାକୁ ଭୋକ କରେ କିନ୍ତୁ ଚାରା ନାହିଁ । ଜଳଖିଆ ଘରର ସାଢ଼େ ଛଅଫୁଟ ଉଚ୍ଚ କବାଟଟା ହିଁ ବନ୍ଦ । ରବି ଦୋତାଲା ବାରଣ୍ଡାର ରେଲିଂ ଫାଙ୍କରେ ଜଳଖିଆ ଖାଇବା ଘର ଆଡ଼କୁ ବଗ ମାଛକୁ ଧରିଲା ପରି ଚାହିଁ ରହିଥାଏ । କବାଟ ଫିଟିବା ମାତ୍ରେ - ହେଇ ମାଇଁ କବାଟ ଫିଟାଇଲାଣି ଘୋଷଣା କରି ତଳକୁ ଚାଲି ଆସେ ।

ଆମକୁ ଜ୍ୱର ହେଲେ ତଳିପେଟରେ ମାଟି ପଟି ଲଦା ହୁଏ । ସର୍ଦ୍ଦିକାଶ ହେଲେ ଆମେ ବେକରେ ପାଣିପଟି ବାନ୍ଧୁ । ଆମେ ତ ଏତିକିରେ ରହିଥିଲୁ । ବଂଶୀଧର ଉପାଧ୍ୟାୟ ତାଙ୍କର ସଦ୍ୟଜାତ ଝିଅ ନାଭି ଉପରେ ମାଟି ପଟି ଦେଇ ଦେଲେ । ଶ୍ରୀ ମୁକୁନ୍ଦ ମିଶ୍ର ତାଙ୍କ ସ୍ତ୍ରୀଙ୍କ ଜରାୟୁଜନିତ ରୋଗର ଚିକିତ୍ସାରେ ପାଣି ମାଟି ପ୍ରୟୋଗ କରିଥିଲେ । ଏ କାଣ୍ଡ କାରଖାନା ଦେଖି ବହୁତ ଲୋକ ତାଜ୍ଜୁବ୍ ହୋଇଗଲେ । । ଆମ ବଡ଼ଅପା ମତବ୍ୟକ୍ତ କଲେ - 'ମେଣ୍ଢା ଧୋଉ ଧୋଉ ନିର୍ବାଳ' । ଅପାଘର ଚଳଣିରେ ଘରେ ଥଣ୍ଡା ପଶି ଆସିବ ବୋଲି ଝରକା କବାଟର କାଚ ଓ କାଠ ଦୁଇଟିଯାକ କବାଟ ବନ୍ଦ କରାହୁଏ ।

ଜଳ ଚିକିତ୍ସା ପୂର୍ବରୁ ଆମ ଘରେ ଚାଲିଥିଲା ପଣ୍ଡିତଙ୍କ ଚିକିତ୍ସା । ପଣ୍ଡିତ ଜଣେ ସଂସ୍କୃତ ଶିକ୍ଷକ ଥିଲେ । ମୋ ଅପା ବିଭା ହୋଇଗଲାରୁ ଭାଇ ତାକୁ ଝୁରିଲେ । କାରଣ ଭାଇ ଜନ୍ମ ହେବା ପରେ ମୋ ବୋଉ ଖୁବ୍ ଅସୁସ୍ଥ ହୋଇ ପଡ଼ିଥିଲା । ଡ଼ାକ୍ତରୀ ଚିକିତ୍ସା କିଛି ବୋଲ କଲା ନାହିଁ । ଶେଷରେ ଭାଇ ପଣ୍ଡିତଙ୍କ ଚିକିତ୍ସାରେ ଭଲ ହେଲେ । ପଣ୍ଡିତ ଖାଲି ରୋଗୀର ପେଟ ଚିପି ଚିପି ରୋଗ ନିର୍ଣ୍ଣୟ କରୁଥିଲେ ଓ ନିଜେ ତିଆରି କରିଥିବା ଔଷଧ ଦେଉଥିଲେ ଆମ ଘରେ ସେ କିଛି ଦିନ ରହିଥିଲେ । ସେ ନିୟମିତ ହୋମ କରନ୍ତି । ଦିନେ ଦିନେ ହୋମରୁ ଉଠି ବୋଉକୁ କହନ୍ତି- ମା ! ଆଜି ବାଛୁରୀ ଫିଟେଇ ଦିଅ, ଗାଈ ଦୁହଁ ନାହିଁ । ତାଙ୍କ କଥା ଅନୁସାରେ ଗାଈ ସେଦିନ ଦୁହାଁ ହୁଅନ୍ତି ନାହିଁ । ଅନେକ ରୋଗୀ ତାଙ୍କ ଦ୍ୱାରା ଚିକିତ୍ସିତ ହେବାକୁ ଆସୁଥିଲେ । ଆଉ ଅନେକ ତାଙ୍କ ଚିକିତ୍ସା ପଦ୍ଧତିକୁ ଉପହାସ କରୁଥିଲେ । ବୋଉ ତାଙ୍କ ପାଖରେ ସଂସ୍କୃତ ପଢୁଥିଲା ।

ହୋମିଓପ୍ୟାଥି ଚିକିତ୍ସା ମଧ୍ୟ କିଛିଦିନ ଆମ ଘରେ ପଶିଥିଲା । ଅବଶ୍ୟ ବାପା ଅଳକାଶ୍ରମରେ ଥିବା ବେଳେ ଆଖପାଖ ଗାଁର ଲୋକଙ୍କୁ ହୋମିଓପାଥି ଔଷଧ ଦେଉଥିଲେ ଏବଂ ସେ ବାବଦରେ ତାଙ୍କର ହାତଯଶ ମଧ୍ୟ ଥିଲା । ମାତ୍ର ଯେତେବେଳେ ତାଙ୍କୁ

ହୋମିଓପାଥି ଔଷଧ ଦିଆଗଲା ସେ ଜ୍ୱର ବାଉଳାରେ କି କଣ ଆଦୌ ତାହା ଖାଇଲେ ନାହିଁ । ବାପାଙ୍କୁ କି ଜ୍ୱର ହୋଇଥିଲା କିଜାଣି ଆଦୌ ଛାଡ଼ିଲା ନାହିଁ । ଦିନେ ତ ତାଙ୍କ ଦେହରୁ ଝାଳ ବୋହି ହାତଗୋଡ଼ ଥଣ୍ଡା ହୋଇଯାଇ ସନ୍ନିପାତ ଭଳି ହୋଇ ଯାଇଥିଲା । ମାମୁଁମାନେ ସବୁବେଳେ ବାପାଙ୍କୁ ଜଗି ରହିଥାନ୍ତି । ବାପା ଫଳରସ ଖାଉଥାନ୍ତି । ମୋର ଫଳରସ ଖାଇବାକୁ ଇଚ୍ଛା ହେବାରୁ ମୁଁ ଚୂପଚାପ୍ ଶୋଇ ରହିଲି । ମୋତେ ଖାଇବାକୁ ଡ଼କା ହେଲାରୁ ମୁଁ କହିଲି ମୋତେ ଜ୍ୱର ହୋଇଛି ମୁଁ ଫଳରସ ଖାଇବି ।

କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ ଓ ଆନନ୍ଦ ବାବୁ ଡ଼ାକ୍ତରଙ୍କ ଚିକିତ୍ସା ବୋଲ କରୁ ନ ଥାଏ । ବାପାଙ୍କର ଚେତା ନ ଥାଏ ସେ ପ୍ରଳାପ କରୁଥାନ୍ତି । ଏହି ବେଳରେ କଲିକତାରୁ ଜଣେ ହୋମିଓପାଥି ଡ଼ାକ୍ତର ବଙ୍କିମ ବାବୁ କଟକ ଆସିଲେ । ବାପାଙ୍କ ଚିକିତ୍ସା ପାଇଁ ତାଙ୍କୁ ଡ଼କା ହେଲା । ସେ ରୋଗୀକୁ ଦେଖିଲେ ସିନା ଔଷଧ ଦେବେ ! କାହିଁକି କେଜାଣି ତାଙ୍କୁ ଦେଖିବା ମାତ୍ରେ ବାପା ଡରକିଲେ । ସେ ବିଚରା ବାରଣ୍ଡାରେ ବସି ଝରକା ଫାଙ୍କରେ ବାପାଙ୍କୁ ଦେଖି ଔଷଧ ଦେଲେ । ବାପାଙ୍କ ଆଖି ଯଦି ଦୈବାତ ତାଙ୍କ ଉପରେ ପଡ଼ିଯାଏ ବାପା ପାଟି କରନ୍ତି – ହେଇ ସେ ବସିଛି । ତାର ତିନିଟା ଆଖି । ମୁଁ ତା ଔଷଧ ଖାଇବି ନାହିଁ । ଦାଦା ହୋମିଓପାଥି ଔଷଧ ବାପାଙ୍କୁ ଖୁଆଇବାକୁ ଆଣିଲେ ବାପା କହନ୍ତି – ତୁ ସେ ତିନି ଆଖିଆର ଔଷଧ ଆଣିଛୁ । ଦାଦା କହେ – ଏ ତ ପିଇବା ପାଣି । ବାପା କହନ୍ତି – ଯଦି ପାଣି ତେବେ ସେଥିରେ କର୍ପୁର ମିଶା ମୁଁ ଦେଖିବି । ପ୍ରଳାପରେ ବାପା ଏସବୁ କରନ୍ତି । ଯାହାହେଉ, ସେହି ଚିକିତ୍ସାରେ ବାପା ଭଲ ହେଲେ । କଟକରେ ସେ ଡ଼ାକ୍ତରଙ୍କ ନାମ ତ୍ରିଲୋଚନ ବାବୁ ହୋଇଗଲା । ସେ ସନ୍‌ସାଇନ୍ ଫିଲ୍ଡର ଉତ୍ତର ପଟେ ଗୋଟାଏ ଭଡ଼ା ଘରେ ରହିଥିଲେ । ମୋତେ କାମୀଦିଦି ତାଙ୍କ ଘରକୁ ବୁଲେଇ ନିଏ । ବାପା ସୁସ୍ଥ ହେବା ପରେ ସେ ଡ଼ାକ୍ତର କେଉଁଠିକି ଚାଲିଗଲେ କିଛି ଜାଣି ହେଲା ନାହିଁ ।

କାମୀଦିଦି ଘର କିଶୋର ନଗରରେ । ସେ ଓ ତାଙ୍କ ଭାଇ ଆମ ଘୋଡ଼ାଶାଳ ଘରଟାରେ ରହୁଥିଲେ । କାମୀଦିଦି ଭାରି ସଣ୍ଢ଼ା । ତାଙ୍କ କାମ ଭାରି ସଣ୍ଢ଼ା । ତାଙ୍କ କାମ ମୋ ମା ମନକୁ ପାଏ । କାମୀଦିଦି ଅପା ଘରକୁ ଆମକୁ ନେଇଯାଆନ୍ତି । ସାହି ଯାକର ଖବର ସରବରାହ କରିବାରେ ସେ ନିପୁଣ ଥିଲେ । ସେଥିପାଇଁ ଅନେକେ ତାଙ୍କୁ 'ଗେଜେଟ୍' ଡ଼ାକୁଥିଲେ ।

ଗୋଟାଏ ଗୋଟାଏ ଘଟଣା କେମିତି କମ୍ପ୍ୟୁଟର୍ ପରି ପିଲା ମଗଜରେ ଛାପି ହୋଇଯାଏ ସେ କଥା ଭାବିଲେ ଆଶ୍ଚର୍ଯ୍ୟ ବୋଧହୁଏ । ଦିନେ ରାତିରେ ବର୍ଷା ଗାଲୁ

ଥାଏ । ଘରୁ ବାରଣ୍ଡାକୁ ବାହାରି ହେଉ ନ ଥାଏ । କିନ୍ତୁ ରନ୍ଧା ବଢ଼ା ତ ହେବ ! ଦାଦା କହିଲା – ଆଜି ଏଇ ଘର ଭିତରେ ଷ୍ଟୋଭ୍‌ରେ ଲୁଚି, ବାଇଗଣ ଭଜା ହେବ । ଆମେ ଏଇଠି ବସି ଖାଇବା । ସେ ଯୁଗରେ ଷ୍ଟୋଭ୍‌ରେ ରନ୍ଧାବଢ଼ାର ଚଳଣିଟା ବହୁତ କମ୍ ଥାଏ । ଆମର ଗୋଟାଏ ନୂଆ ଷ୍ଟୋଭ୍ ଆସିଥାଏ । ଷ୍ଟୋଭ୍ ଆସିଲା ମାତ୍ର ଶତ ଚେଷ୍ଟା ସତ୍ତ୍ୱେ ଷ୍ଟୋଭ୍ ଜଳିଲା ନାହିଁ । ସେ ଯୋଜନା ରଦ୍ଦ ହେଲା । ଚୂଲି ଲାଗି ଲୁଚି ବାଇଗଣ ଭଜାହୋଇ ଖିଆ ହେଲା ।

ବାପା କୁଆଡ଼େ ଗସ୍ତରେ ଯାଇଥିଲେ । ସେ ତା' ପରଦିନ ଗସ୍ତରୁ ଫେରିଲେ । ବାପା ଭାତ ଖାଇସାରି ଟିକିଏ ବିଶ୍ରାମ କରି ଡ଼ିଷ୍ଟ୍ରିକ୍ଟ ବୋର୍ଡ୍ ଅଫିସ୍‌କୁ ଯାଆନ୍ତି । ସେ ଅଫିସ୍‌କୁ ଯିବାକୁ ବାହାରିଲା ବେଳେ ବୋଉ ତାଙ୍କ ଆଗରେ ଷ୍ଟୋଭ୍‌ଟା ଥୋଇ ଦେଇ କହିଲା – ଏଇଟା କାହିଁକି ଜଳୁ ନାହିଁ ଦେଖିଲ । ବାପା ଷ୍ଟୋଭ୍ ଲଗାଇ କଣ ଦେଖା ଦେଖି କରୁ କରୁ ହଠାତ୍ ହୁତୁହୁତୁ ହୋଇ ନିଆଁ ଜଳି ବାପାଙ୍କ ଦାଢ଼ିରେ ଲାଗିଗଲା । ବୋଉ ତରବର ହୋଇ ତା' ପିନ୍ଧା ଲୁଗାର ପଣତ କାନିରେ ବାପାଙ୍କ ମୁହଁଟା ଘୋଡ଼ାଇ ଦେଲା । ନିଆଁ ତ ଲିଭିଗଲା । କିନ୍ତୁ ମୋଟା ଖଦଡ଼ ଲୁଗା ଘସି ହୋଇ ମୁହଁରୁ ଚମ ଛାଡ଼ିଗଲା । ସେ ପୋଡ଼ା ଘା ଡ଼ାକ୍ତରୀ, କବିରାଜୀ, ହୋମିଓପାଥୀ ଆଦି କୌଣସି ଉପଚାରରେ ଭଲ ହେଲା ନାହିଁ । ବାପାତ ଖଟରେ ଶୋଇବା ଛାଡ଼ି ଦେଇଥିଲେ । ତଳେ ତାଙ୍କ ବିଛଣା ହେଲା । ସମସ୍ତଙ୍କର ମନରେ ଏକା ଚିନ୍ତା ଘା' କେମିତି ଶୁଖିବ ।

ଶ୍ରୀ କୁଳମଣି ସା'ନ୍ତରାଙ୍କ ଭଉଣୀ ହୈମବତୀ ଦେବୀ ବୋଉର ଭାରି ସାଙ୍ଗ । ସେ ଆସି ପୋକସୁଂଘା ପତ୍ର, କଳିଚୂନ, ମରା ନଡ଼ିଆ ତେଲରେ ଔଷଧ ତିଆରି କରିଦେଲେ । ପାରା ପରରେ ସେ ମଲମ ଘା'ରେ ଲଗା ହେଲା । ଘା' ଶୁଖିଗଲା । ପୋଡ଼ା ଚିହ୍ନ ସୁଦ୍ଧା ରହିଲା ନାହିଁ ।

ଏଇ ପୋଡ଼ିଯିବା କଥାରୁ 'ସ୍ନେହଲତା' କଥା ମନେ ପଡ଼ିଯାଉଛି । କେତେ ବର୍ଷ ତଳର କଥା ମନେ ନାହିଁ । ହଠାତ୍ ସ୍ନେହଲତା ନାଆଁଟା ଘରେ ଘରେ ଶୁଣାଗଲା । ଯାହା ଘରକୁ ଯାଅ, ଅନ୍ଦର ମହଲକୁ ପଶିଲା ମାତ୍ରେ 'ସ୍ନେହଲତା' କଥା ଶୁଣିବ । ଗରିବ ବାପର ଚଉଦ ବର୍ଷର ଝିଅ ସ୍ନେହଲତା । ବାପ ବରପଣ ଦେଇପାରୁ ନାହିଁ ବୋଲି ଝିଅ ବିଭାଘର ହୋଇ ପାରୁ ନାହିଁ । ଏଣେ ଚଉଦବର୍ଷର ଝିଅକୁ ବିଭା ନ କରି ଘରେ ରଖିଥିବାରୁ ସାହିଭାଇ ଏକଘରକିଆ କରିବାକୁ ଧମକ ଦେଲେଣି । ବାପ ନିରୁପାୟ ହୋଇ ଏକାନ୍ତରେ ମାଆକୁ କହିଲା – ଭିଟାମାଟି ବିକି ପଛେ ଗଛମୂଳରେ ରହିବି ଝିଅକୁ

ବିଭା କରି ଦେବି । ମା କହିଲା – ଆଉ ଯେଉଁ ପିଲା ଅଛନ୍ତି ତାଙ୍କ ଦଶା କଣ ହେବ ? ସ୍ନେହଲତା ଏ କଥା ଶୁଣିଲା । ତା ପାଇଁ ତା ବାପ ସର୍ବସ୍ୱାନ୍ତ ହେବ ଜାଣି ନିଜ ଦେହରେ କିରୋସନ ଢାଳି ନିଆଁ ଲଗାଇଦେଲା । ସ୍ନେହଲତା ଚାଲିଗଲା ତା ସାଂଗରେ ବଂଗପ୍ରଦେଶର ନିଷ୍ଠୁର 'ବରପଣ' ପ୍ରଥାକୁ ମଧ୍ୟ ନେଇଗଲା । ସେ ସ୍ନେହଲତା ଆଜି ଯାଏ ମୋ ଅନ୍ତରରେ ସଂଜୀବିତ ।

ମୋ ଦାଦା ବିଭାଘର ହେଲା ୧୯୨୭ରେ । ଦାଦା ତ ପାଠଛାଡ଼ି ଭାରତୀ ମନ୍ଦିର, ଅଳକାଶ୍ରମ ସହିତ ସଂପୃକ୍ତ ହୋଇଥିଲା । ଶାନ୍ତି ନିକେତନକୁ ଜଣେ ବିଦ୍ୱାନ୍‌ଙ୍କ ବକ୍ତୃତା ଶୁଣିବାକୁ ଯାଇ ସେଠି ରହି ପଢ଼ାଶୁଣା କରୁଥିଲା । ସେ ଯେତେବେଳେ ଖୁଡ଼ୀଙ୍କୁ ବିଭା ହେବାକୁ ସ୍ଥିର କରି ବାପାଙ୍କୁ ଜଣାଇଲା ମାଆ ଓ ଆତ୍ମୀୟସ୍ୱଜନ ଏ ବିବାହର ବିରୋଧ କଲେ । କାରଣ ଖୁଡ଼ୀ ଥିଲେ ବଂଗାଳୀ ବ୍ରାହ୍ମଣ ପରିବାରର ଝିଅ । କେବଳ ବାପାଙ୍କ ମାମୁଁ ହରିଅଜା, ଚାଟଭାଇ, ଦୁର୍ଗା ଚରଣ ଦାସ ଓ ବୋଉର ମାମୁଁ ବଡ଼ ଜେଜେ ଏ ବିବାହକୁ ସମର୍ଥନ କଲେ । ଆଉ ସମସ୍ତେ ବର୍ଜନ ନୀତି ଧରିଲେ । ବି ଦାସଙ୍କ ସହଧର୍ମିଣୀ ରୁକ୍ମିଣୀ ଅପା ଥିଲେ ଆଉ ଜଣେ ସହଯୋଗୀ । ଖୁଡ଼ୀଙ୍କ ମାଆ ଥିଲେ ସେକାଳର ଆଇ.ସି.ଏସ୍. ବିହାରୀଲାଲ ଗୁପ୍ତଙ୍କ ଝିଅ । ନିଜେ ଲରେଟୋରେ ପାଠ ପଢ଼ିଥିଲେ ଏବଂ ବ୍ୟାରିଷ୍ଟର ସ୍ୱାମୀଙ୍କ ମୃତ୍ୟୁ ପରେ ବେଥୁନ୍ ସ୍କୁଲ୍‌ରେ ଶିକ୍ଷୟିତ୍ରୀ ହୋଇଥିଲେ । ଇଂରେଜୀ ଚଳଣିରେ ସହର ବଜାରରେ ଚଳିବାରେ ଅଭ୍ୟସ୍ତ ସ୍ନେହଲତା ସେନ ମଧ୍ୟ ଅଜଣା ଅଶୁଣା ରାଇଜରେ ଝିଅ ବିଭା ଦେବାକୁ ଶଙ୍କିଲେ । ଏଣ୍ଡୃଜ୍ ସାହେବଙ୍କ ଠାରୁ ପାତ୍ରର ପରିଚୟ ପାଇ ସେ ଏ ବିବାହ ପ୍ରସ୍ତାବରେ ସମ୍ମତ ହେଲେ । ଖୁଡ଼ୀ ୧୯୨୧ରେ ମ୍ୟାଟ୍ରିକ୍ୟୁଲେଶନ ପାସ୍ କଲା ପରେ ଶାନ୍ତିନିକେତନରେ ସାତବର୍ଷ ରହି ପାଠ ପଢିଥିଲେ ଓ ସଂଗୀତ ଶିଖିଥିଲେ । ପିଲାଦିନେ ସାହେବୀ କାଇଦାରେ ବଢ଼ି ଥିଲେ ହେଁ ଶାନ୍ତିନିକେତନରେ ସେ ଖାଲି ଗୋଡ଼ରେ ଖରାବର୍ଷାରେ ବୁଲିବାରେ ଅଭ୍ୟସ୍ତ ହେଲେ । ଶ୍ରୀନିକେତନରେ ଗ୍ରାମ ଉନ୍ନୟନ କାର୍ଯ୍ୟର ନମୁନା ଦେଖିଲେ । ଏ ପ୍ରକାର ପରିସ୍ଥିତିରେ ଲାଳିତା ପାଳିତା ଖୁଡ଼ୀ ଆସିଲେ ପଦ୍ମାବତୀ ଦେଈଙ୍କ ଗୋବରପାଣି ସିଞ୍ଚା ବାତାବରଣକୁ । ଦୃଢ ମନୋବଳର ପରିଚୟ ଦେଇ ସେ ଏ ପରିସ୍ଥିତିର ମୁକାବିଲା କଲେ ଏବଂ ଆଖର ନିଜ ଗୁଣରେ ପଦ୍ମାବତୀ ଦେଈଙ୍କ ହୃଦୟ ଜୟ କଲେ ।

ବିବାହ ପରେ ଦାଦାଖୁଡ଼ୀ ତରିକୁନ୍ଦ ଖମାର ବିଲୁଆ ଖାଇ ନଈକୂଳରେ ଡେରାରେ ରହି ଚାଷର ପ୍ରୟୋଗ ଚଳାଇବା ସଂଗେ ସଂଗେ ନୈଶ ବିଦ୍ୟାଳୟ, ଯୁବ ସଂଗଠନ

ଅସ୍ପୃଶ୍ୟତା ନିବାରଣ ଆଦି କାମ କଲେ । ସେଠି ଆମର ଏକ ଚକିଆ ଜମି ଥିଲା । ଡ଼ାକଘର ନାଁ ଅଣଖିଆ । ଖୁଡ଼ୀଙ୍କ ବାପଘର ଲୋକେ କହନ୍ତି 'ଆନୀଖିଆ' । ସେଠି ପକକା, ଇଟାକାନ୍ଥ, ଛଣ ଛପର ଘର । ଫରାସୀ ଚଳଣିର ବଡ଼ ବଡ଼ ଝରକା ଲଗା ତିନି ବଖରା ଘର । ଦାଦା ସେଠି ଉନ୍ନତ ଧରଣର ଗୁଡ଼, ଆଳୁଚାଷ, ଆଖୁଚାଷ ଆଦି କଲା । ଆଖ ପାଖରେ ଚାଷୀ ସେ ସବୁ ଶିଖିଲେ । ଜମିଟାର ଗୋଟାଏ ପଟେ ନଈ କୂଳରେ ଶ୍ମଶାନ, ଆଉ ଗୋଟାଏ ପଟେ ପଠାଣ ସାହି ପାଖରେ ଗୋରସ୍ଥାନ । ଗୋଟାଏ କେଳାବସ୍ତି ସେ ଜମିର ସରହଦରେ ଥାଏ । ସେହି ଜନମାନବ ଶୂନ୍ୟ ଭୂତପ୍ରେତ ଖବିଷଙ୍କ ଲୀଳାଭୂମିରେ ଦାଦା ଆଗ ଯାଇ ଏକୁଟିଆ ରାତି କଟେଇବା ଦେଖି ଲୋକେ କହିଲେ - ସେମାନେ ଗୁଣିଆ ପାଖରେ ଦେହ କିଳେଇଛନ୍ତି । ପୁଣି ଖୁଡ଼ୀ ଯେଉଁ ଦିନ କେଳାସାହି ଯାଇ ତାଙ୍କ ରସା ଭାଇ ଘରେ ଖାଇଲେ, ଶୁଣିବା ଲୋକେ ସେଦିନ ମୁଣ୍ଡରେ ହାତ ଦେଲେ । ୧୯୨୮ରେ ଉତ୍ତରା ଜନ୍ମଗ୍ରହଣ କଲା । ଦାଦା ଉତ୍ତରା ନାଁ ଦେଲା (ଓଡ଼ିଶାରେ ଉତ୍ତରା ନାଆଁ ଦେବାକୁ ସମସ୍ତେ କୁଣ୍ଠାବୋଧ କରନ୍ତି । ଦାଦାକୁ ସେ କଥା କହିଲାରୁ ଦାଦା କହିଲା, ଅଭିମନ୍ୟୁ ପରି ସ୍ୱାମୀ ପାଇ ସେ ଯଦି ଅକାଳ ବୈଧବ୍ୟ ଭୋଗ କରେ ତେବେ ତାହା ତା'ର ସୌଭାଗ୍ୟ ହେବ) । ଉତ୍ତରାକୁ ଦାଦା ଖୁଡ଼ୀ ବିଜ୍ଞାନସମ୍ମତ ପଦ୍ଧତିରେ ଲାଳନ ପାଳନ କଲେ । ଏହା ଆମ ଆତ୍ମୀୟସ୍ୱଜନଙ୍କ ଦୃଷ୍ଟି ଆକର୍ଷଣ କଲା ଏବଂ ସେମାନଙ୍କ ଉପରେ ଏହାର ପ୍ରଭାବ ପଡ଼ିଲା ।

ଦାଦା ଖୁଡ଼ୀ ଅଣଖିଆରେ ଥିବା ବେଳେ ଆମେ ମଝିରେ ମଝିରେ ସେଠାକୁ ଯାଉ । ଆମେ ସେଠି ଆଖୁଗଛ ଆଣ୍ଠୁରେ ଭାଙ୍ଗି ଦାନ୍ତରେ ଚୋପା ଛଡ଼େଇ ଖାଉ । ହେଟାବାଘ, ବିଲୁଆ ଦେଖୁ, କେନାଲ୍‌ରେ ଗାଧୋଉ, ଖୁଡ଼ୀଙ୍କ ରନ୍ଧା ଖାଉ । ଦିନେ ଦିନେ ଖୁଡ଼ୀଙ୍କୁ ଦାଦା ଓ ସେଠାରେ ରହୁଥିବା ବଳଦେବ ଦାଦା ଜାଣିଶୁଣି ଧନ୍ଦେଇ ଦିଅନ୍ତି । ଖୁଡ଼ୀଙ୍କ ମା ଗୋଟାଏ ମୋଟା ଖାତାରେ ନାନା ପ୍ରକାର ତୁଣ ତରକାରୀ ମିଷ୍ଟାନ୍ନ ଆଦି ରନ୍ଧନ ପ୍ରଣାଳୀ ଲେଖି ଦେଇଥାନ୍ତି । ଖୁଡ଼ୀ ପଚାରନ୍ତି ଆଜି କଣ ରନ୍ଧା ହେବ ? ଖାତାଟି ବାହାରେ । ଦାଦା ଯାହା ରାନ୍ଧିବାକୁ କହେ ବଳଦେବ ଦାଦା ସେଥିରେ ସମ୍ମତ ହୁଅନ୍ତି ନାହିଁ । ବଳଦେବ ଦାଦା ଯାହା ବାଛନ୍ତି ଦାଦା ତାକୁ ମନା କରେ । ଶେଷରେ ଯାହା ରାନ୍ଧିବାକୁ ଦୁହେଁ ସମ୍ମତ ହୁଅନ୍ତି ତାହା ରାନ୍ଧିବା ସାମଗ୍ରୀ ଆଦୌ ଘରେ ନ ଥିବାର ଦେଖାଯାଏ । ସେଉଠୁ ଘରେ ଯାହା ଥାଏ ତାହାହିଁ ରନ୍ଧା ହୁଏ । ଦିନେ ନୀଳମଣି ସେନାପତି (ଆଇ.ସି.ଏସ୍)ଙ୍କ ସ୍ତ୍ରୀ ଆଉ କେତେଜଣ ଭଦ୍ର ମହିଳାଙ୍କ ସଂଗେ ଅଣଖିଆ

ବୁଲି ଯାଇଥିଲେ । ଖୁଡ଼ୀ ସେମାନଙ୍କୁ ଚା ଯାଚିବାରୁ ସେମାନେ ଚା ପିଇବାକୁ ମନା କଲେ । ସେମାନେ ଗଲା ପରେ ବୋଉ କହିଲା - ମିନୁ! ଘରେ ତ ଆଦୌ କ୍ଷୀର ନାହିଁ । ଯଦି ସେମାନେ ଚା ପିଇ ଥାଆନ୍ତେ ଚା କେମିତି କରାହୋଇଥାନ୍ତା ? ଖୁଡ଼ୀ କହିଲେ - ଏଇ ପଡ଼ିଆରେ ଛେଳିଗୁଡ଼ାକ ଚରୁଛନ୍ତି । ସେଥିରୁ ଦୁଇ ଚାରିଟା ଧରି ଆଣି କ୍ଷୀର ଦୁହିଁ ଦେଇଥାନ୍ତି ।

ସାନ ଭାଇ ବିଜି ବାହୁଡ଼ି ଗଲା ପରେ ମୁଁ ପୁଣି ବୋଉ କୋଳରେ ଶୋଇଲି, ବୋଉ ପଛେ ପଛେ ବୁଲିଲି । ବୋଉ କେମିତି ଚଉରାରେ ପାଣି ଦିଏ, ଠାକୁରଘର ଧୁଏ, ବୋଉ ଆମକୁ ଛାତ ଉପରକୁ ଡ଼ାକି ନେଇ ସୂର୍ଯ୍ୟ କାଞ୍ଜି ପିଆଏ, ଜଳଖିଆ ଖାଇବାକୁ ଦିଏ । ବୋଉ ତୁଣ ତରକାରୀ ରାନ୍ଧେ, ପିଠାପଣା କରେ ଆଚାର ମୋରବ୍ବା ତିଆରି କରେ । ସମସ୍ତେ ଖାଇ ସାରିଲେ ବୋଉ ମା ସାଂଗ ହୋଇ ଏକା ଥାଳିରେ ଖାଆନ୍ତି । ବୋଉ ନିତି ଖରାବେଳେ ମା'କୁ ଘଷି ଦିଏ । ସେ ସୂତାକଟେ, ସିଲେଇ କରେ । କପିଳା ମା ଆସିଲେ ନାକରେ ଗୋଟାଏ ଦଣ୍ଡି ଗୋଡ଼ରେ ମଲ ପିନ୍ଧି ନଖ ଫିଟାଏ, ଅଳତା ଲଗାଏ । ବୋଉ ଖରାବେଳେ ଶୋଇଲେ ଟମେଇ ନ ହେଲେ ନାଣ୍ଡୀମା ବୋଉକୁ ଘଷି ଦିଅନ୍ତି ।

ସଞ୍ଜ ବୁଡ଼ିଲେ ବୋଉ ଅଣ୍ଟାପାଣ୍ଟି କରି ଆସି ନାଲିଆ ଦକ୍ଷିଣି ପାଟ ପିନ୍ଧି ସଞ୍ଜ ବଳିତା ବଳେ । ଗୁହାଳ ଦ୍ୱାରେ, ରୋଷେଇ ଘରେ, ଚଉରାରେ, ଅମାରରେ ସେ ସଞ୍ଜ ଦିଏ, ସଞ୍ଜବଳିତା ସାଙ୍ଗରେ କେତେ ଖଣ୍ଡ କୁଟା ଧରିଥାଏ । କୁଟା ଉପରେ ସଞ୍ଜ ବଳିତା ରଖେ । ସଞ୍ଜ ଦେଇସାରି ସେ ଠାକୁର ଘର ପିଣ୍ଡାରେ ତୁନି ହୋଇ ବସି ରହେ । ମୁଁ ତା ପାଖରେ ବସେ ।

ବୋଉ ପାଖରେ ଥାଇ ମୁଁ ଦେଖେ ଦିନା ଗାଇ ଦୁହେଁ । ମୂଷି ଶ୍ୱେତପୁରୁଣି ମୂଳ ବାଟେ । ଦିନା କଞ୍ଚା କ୍ଷୀରରେ ଶ୍ୱେତ ପୁରୁଣୀ ମୂଳ ବଟା ମିଶାଇ ଭାଇଙ୍କୁ ପିଇବାକୁ ଦିଏ । ନାଥିଆ ମା ଦୁଆର ଖରକେ । ସେ ଗୁଡ଼ ଖାଇବାକୁ ଭଲ ପାଏ । ବୋଉ ତାକୁ ମନ ପୂରେଇ ଗୁଡ଼ ଖାଇବାକୁ ଦିଏ । ନାନୀଙ୍କ ପଣତ କାନୀରେ ଚାଉଳ ଦିଏ । ଗଂଗାଧର ତାଳପତ୍ରରେ ଲେଖା ଭାଗବତ ପଢ଼ନ୍ତି । ମା ହାତଯୋଡ଼ି ବସି ଶୁଣେ ମଝିରେ ମଝିରେ ଦଣ୍ଡବତ ହୁଏ । ଆମ ଦିନା ବାପାଙ୍କୁ ଘଷି ଦେଲା ବେଳେ ତାଙ୍କ ପିଠିରେ ବିଧା ଚାପୁଡ଼ା ମାରେ । ବାପା ତାକୁ କିଛି କହନ୍ତି ନାହିଁ । ଦାଦା ବାପା ଏକା ଥାଳିରେ ଭାତ ଖାଇ ବସିଲେ ମା ଶାଗ ଖରଡ଼ି ଗରମ ଶାଗ ପରଷେ ।

୧ ୯ ୨ ୭ର ବୈତରଣୀ ବନ୍ୟାପରେ ସ୍ୱନାମଧନ୍ୟ ଦୀନବଂଧୁ ଏଣ୍ଡରୁଜ୍ ଆସି ଆମ ଘରେ ରହିଲେ। ସେତେବେଳେ ଖୁଡ଼ୀ କଟକରେ ଅନୁପସ୍ଥିତ ଥିଲେ । ଏଣ୍ଡରୁଜ୍ ସାହେବ ଖଦଡ଼ ଧୋତି ପଞ୍ଜାବୀ ପିନ୍ଧୁଥିଲେ । ତଳେ ଆସନରେ ବସି ଓଡ଼ିଶୀ ଡୁଣ ତରକାରୀ ଖାଉଥିଲେ । ଓଉ, ସଜନା ଛୁଇଁ ସୁଦ୍ଧା ଖାଉଥିଲେ । ବୋଉ ତାଙ୍କୁ ସେତେବେଳେ ଆଡ଼ ହେଉଥିଲା । ଖୁଡ଼ୀ ନ ଥିବାରୁ ମୁଁ ଅପଟୁ ହସ୍ତରେ ତାଙ୍କୁ ଓ ତାଙ୍କ ଇଂରେଜ ସଚିବଙ୍କୁ ଟା ପରଷୁ ଥିଲି । ଏଣ୍ଡରୁଜ୍ ସାହେବ ଖଣ୍ଡି ବଂଗଳା କହି ପାରୁ ଥିବାରୁ କାମ ଚଳି ଯାଇଥିଲା ।

ଏଣ୍ଡ୍ରୁଜ ସାହେବଙ୍କ ପାଖକୁ ନାନା ଦେଶରୁ ଚିଠି ଆସେ । ଭାଇଙ୍କର ଡ଼ାକଟିକଟ ସଂଗ୍ରହ କରିବା ସଉଖ ଥିଲା । ଏଣ୍ଡରୁଜ୍ ସାହେବ ବିଦେଶୀ ଡ଼ାକଟିକଟଗୁଡ଼ିକ ଭାଇଙ୍କୁ ଦିଅନ୍ତି । ସେ ଆମ ଘରୁ ଯିବା ପରେ ଭାଇ ତାଙ୍କୁ ଡ଼ାକଟିକଟ ପଠାଇବାକୁ ଚିଠି ଲେଖନ୍ତି । ସେ ତାହା ପଠାନ୍ତି । ଭାଇଙ୍କ ପ୍ରରୋଚନାରେ ମୁଁ ମଧ ତାଙ୍କୁ ଡ଼ାକଟିକଟ ପଠାଇବାକୁ ଇଂରାଜୀରେ ଚିଠି ଲେଖିଲି । ତାହା ହିଁ ମୋର ପ୍ରଥମ ଇଂରାଜୀ ଚିଠି । ଏଣ୍ଡରୁଜ୍ ସାହେବ ସେ ଚିଠିର ଉତ୍ତରରେ ଡ଼ାକଟିକଟ ପଠାଇଥିଲେ । ଚୈତନ୍ୟ ଦେବଙ୍କ ଅମାନିନଂ ମାନଦେବ ଭାଷ୍ୟ ଅନୁସାରେ ଏଣ୍ଡୃଜ୍ ସାହେବ ଥିଲେ ପରମ ବୈଷ୍ଣବ ।

ଏଣ୍ଡରୁଜ୍ ସାହେବ ଆମ ଘରେ ରହୁଥିବା ବେଳେ ଦାସେ ଆପଣେ ଘନଘନ ଆମ ଘରକୁ ଆସୁଥିଲେ । ପୂର୍ବରୁ ମଧ ମଝିରେ ମଝିରେ ଆସୁଥିଲେ । ସେ ଆମକୁ ଆମ ଘରେ, ନଈକୂଳରେ ବା ସ୍ୱରାଜ ଆଶ୍ରମରେ ଦେଖିବା ମାତ୍ରେ ସସ୍ନେହ ସମ୍ଭାଷଣ କରୁଥିଲେ । ଥରେ ମୁଁ ଗୀତ ଅଭ୍ୟାସ କଲାବେଳେ ସେ ଆସିଲେ । ହସି ହସି ମୋତେ କହିଲେ ଗୀତ ସାଂଗରେ ପାଠ ପଢୁଛ ଟିକି ? ଉମାକାନ୍ତ ବାବୁ ଥିଲେ ତାଙ୍କର କଲେଜ୍ ସାଙ୍ଗ । ସେ ତାଙ୍କ ଘରକୁ ମଝିରେ ମଝିରେ ଆସୁଥିଲେ । ଦିନେ ବାସ ଓ ମୁଁ ଖେଳୁଛୁ, ସେ ତାଙ୍କ ଘରକୁ ଆସି ବୈଠକଖାନାରେ ବସି କଥାବାର୍ତ୍ତା କଲେ । ଗୋଟିଏ ରେକାବିରେ କେହି ତାଙ୍କ ଆଗରେ ରସଗୋଲା ଥୋଇ ଦେଲେ । ଦାସେ ଆପଣେ କହିଲେ– ହଇହେ ଉମାକାନ୍ତ ! ଲୋକେ ତୋରାଣି ମୁନ୍ଦିଏ ପାଉ ନାହାନ୍ତି ତୁମେ ମୋତେ ରସଗୋଲା ପରଷୁଛ ? ତାଙ୍କ ଆଖିରୁ ଲୁହ ବୋହିଗଲା । ତୋରାଣୀ ରସଗୋଲାର ଅନୁବଂଧ ହୃଦୟଙ୍ଗମ କରି ନ ପାରି ମୁଁ ଭାବିଲି – ଏ ଜଣେ କାନ୍ଦୁରା ।

ବଡ଼ ବଡ଼ ସମସ୍ୟାର ଚିନ୍ତାରେ ବିଭୋର ଥାଇ ସୁଦ୍ଧା ଆଖପାଖର ଅକିଞ୍ଚନ ମଣିଷଙ୍କୁ ପଦେ ସ୍ନେହପୂର୍ଣ୍ଣ କଥା କହିଦେବା ଟିକିଏ ହସିକରି ଚାହିଁ ଦେବାରେ ମଧ

ମଣିଷକୁ ସଂପନ୍ନ କରି ଦେବାର ଶକ୍ତି ଯେ ରହିଛି ତାହା ଦ୍ୱାଏସେ ଆପଣେ ଓ ଏଣ୍ଡରୁଜ୍ ସାହେବଙ୍କ ମଧ୍ୟରେ ଥିଲା । ପରିଣତ ବୟସରେ ଏହି ସ୍ନେହ ସ୍ପର୍ଶ ବିତରଣ କରିବାର ପରାକାଷ୍ଠା ଗାନ୍ଧିଜୀଙ୍କ ମଧ୍ୟରେ ଅନୁଭବ କରିଥିଲି ।

କେତେ ସତ୍‌ପୁରୁଷ କେତେ ସ୍ନେହୀଜନଙ୍କ ସ୍ନେହ ଶ୍ରଦ୍ଧାରେ ମାନବ ଶିଶୁ ମଣିଷ ହୁଏ ତାହାକୁ ବାଳୁତ ବୟସରେ ହେଜି ମନେ ରଖିବା କା'ଣ ସମ୍ଭବ ? ସେଇଥିପାଇଁ ତ ଶାସ୍ତ୍ର ପଞ୍ଚଋଣ ପରିଶୋଧର ବ୍ୟବସ୍ଥା ଦେଇଛି । ପିତୃପକ୍ଷ ତର୍ପଣ ସୃଷ୍ଟି କରିଛି ।

ଆମ ଘରକୁ ଆସୁଥିଲେ ଦୁଇଟି ଜାଆଁଳା ଭାଇ । ଏକାପରି ଦେଖିବାକୁ । ବାଳୁତ ଆଖିରେ ବାରି ହୁଏ ନାହିଁ । ଜଣଙ୍କର ଟିକିଏ ପାଟିଲାଗେ । ଦୁହେଁ ଏକ ଅପରକୁ ଡ଼ାକନ୍ତି ''କୁଶ ଲବ'' । ବୋଉ କହିଦେଲା ଯାହାଙ୍କର ପାଟି ଲାଗୁଛି ସେ ବି.ଦାସ-ଭୁବନାନନ୍ଦ ଦାସ । ଦୁହେଁ ଆମ ଘର ତିଆରୀ କାଞ୍ଜି ପିଅନ୍ତି । ବାପାଙ୍କ ସଂଗେ କଥାବାର୍ତ୍ତା ହୋଇ ମୋତେ କାଖେଇ କରି ତାଙ୍କ ଘରକୁ ନେଇ ଯାଆନ୍ତି । ତାଙ୍କ ଘରେ ସରସ୍ୱତୀ ଅପା ଲାବଣ୍ୟ ଅପାଙ୍କ ସାଂଗରେ ମୁଁ ଖେଳେ । ତାଙ୍କ ଘର ଦେବଅପା କବିତା ଲେଖନ୍ତି । ବୋଉ କହେ ଦେବଙ୍କର ଭାରି ବୁଦ୍ଧି । ବି. ଦାସ ବିଭା ହେବାକୁ ରାଜି ହେଉ ନ ଥିଲେ । ରୁକୁଣା ଅପାଙ୍କୁ ବିଭା ହେବାକୁ ସମ୍ମତ ହେବା ମାତ୍ରେ ବ୍ରାହ୍ମଣ ପୁରୋହିତଙ୍କୁ ଭୂତେଇ ଦେଇ ପୁରୁଣା ପାଞ୍ଜି ଦେଖେଇ ପୁଷମାସରେ ବି.ଦାସଙ୍କ ବିଭାଘର କରିଦେଲେ । ପୁଣି ବୋଉ କହେ - ବି. ଦାସ ତ ଅଦିନରେ ଅତିଥିରେ ବିଭା ହେଲେ - ସେଥିଯୋଗୁ ତାଙ୍କ ପାରିବାରିକ ଜୀବନରେ କୋଉ ଅଘଟଣ ଘଟିଲା ଯାହା ବିଧିବିଧାନ ମାନିବାବାଲାଙ୍କ ଜୀବନରେ ଆଦୌ ଘଟୁ ନାହିଁ ?

ରୁକୁଣା ଅପା ବୋହୂ ହୋଇ ଆସି ଖୁବ୍ ପରଦାରେ ରହିଲେ । ସ୍ୱାମୀଜୀଙ୍କ ଘରେ ଭାରି ପରଦା ଚଳଣି । ରୁକୁଣା ଅପା ଘରୁ ବାହାରିବା କଥା ହେଲେ ଦାଣ୍ଡରୁ ସବୁ ପୁରୁଷ ଲୋକ ଉହାଡ଼ ହେବେ । ଘୋଡ଼ାଗାଡ଼ିର କବାଟ ଝିଡ଼କୀ ନିବୁଜ ହୋଇ ବନ୍ଦ ହେବ । ସେହି ରୁକୁଣା ଅପା ଦିଲ୍ଲୀ ଯାଇ ଲର୍ଡ଼ ଆରଭଇନ୍, ଲର୍ଡ଼ ଉଇଲିଂଡ଼ନଙ୍କ ଭୋଜି ସଭାରେ ଯୋଗ ଦେଲେ । କିନ୍ତୁ ସେଠି ଅନ୍ନସ୍ପର୍ଶ କରନ୍ତି ନାହିଁ । ବଡ଼ଲାଟଆଣୀ ବଳେଇଲେ ଫଳଟିଏ ମେଜରୁ ଉଠେଇ ନିଅନ୍ତି ।

ତାଙ୍କ ସନ୍ତାନ ଗୌରୀ, ବାବୁ, କୁମ, ଆବୁ, ପାପୁ କୁନୀ । ସେମାନଙ୍କ ସଂଗେ ସହୋଦର ସହୋଦରା ସଂପର୍କ । ରୁକୁଣା ଅପାଙ୍କ ପ୍ରତାପ ଦେଖାଗଲା ଯେତେବେଳେ ଅଲ ଇଣ୍ଡିଆ ଉଇମେନସ୍ କନଫରେନ୍ସର ଉତ୍କଳ ଶାଖାର ସମ୍ମିଳନୀ ପାଇଁ ମିସ୍ ଶୈଳବାଳା

ଦାସ ମିସେସ୍ ମ୍ୟାକ୍‌ଫରସନଙ୍କୁ ଅଧ୍ୟକ୍ଷା ବାଛିଲେ । ରୁକୁଣା ଅପା ନାଗୁଣୀ ପରି ଗ୍ରୀବା ଟେକି କହିଲେ - କହିଁକି ? ଓଡ଼ିଶାରେ କଣ ଅଧ୍ୟକ୍ଷା ହେବାକୁ ଓଡ଼ିଆ ଝିଅ ନାହାନ୍ତି ? ବିଲାତର ମେମ୍ ଆସି ଆମ ସମ୍ମିଳନୀର ଅଧ୍ୟକ୍ଷା ହେବେ ? ଇଂରାଜୀରେ ଯାହାକୁ ଲବିଂ କହନ୍ତି ସେ ବ୍ୟାପାରଟା ରୁକୁଣା ଅପା ଦିଲ୍ଲୀରେ ଭଲକରି ଅନୁଧ୍ୟାନ କରିଥିଲେ । ଆସେମ୍ବଲିରେ ଗୋଟାଏ ବିଲ୍ ପେଶ୍ ହେଲା ବେଳକୁ ବି.ଦାସଙ୍କ ଘରେ କେତେ ଭୋଜିଭାତ କେତେ ଲବିଂ ! ରୁକୁଣା ଦେବୀଙ୍କ ଲବିଂ ଫଳରେ ଭକ୍ତକବିଙ୍କ ଝିଅ ଅବନ୍ତୀ ଦେବୀ ସମ୍ମିଳନୀରେ ଅଧ୍ୟକ୍ଷତା କଲେ, ଏ ଅନୁଷ୍ଠାନର ସଦସ୍ୟା ଥିଲେ ସୁନ୍ଦରମଣି ପରିଜା, ସୁଖଲତା ରାଓ, ସୁପ୍ରଭା କର, ପ୍ରତିଭା କର ପ୍ରମୁଖ । ଲତିକା ରାୟ ସେତେବେଳେ ନବବଧୂ । କିନ୍ତୁ ସେ ମଧ୍ୟ ସମ୍ମିଳନୀରେ ଭାଷଣ ଦେଇଥିଲେ ।

ସ୍ୱାମୀଜୀଙ୍କ ଅତିଥିପରାୟଣତା ହେତୁ ଆମ ପିଲାଦିନେ ବହିରାଗତ ଅତିଥିମାନେ ସ୍ୱାମୀଜୀଙ୍କ ଘରେ ହିଁ ରହୁଥିଲେ । ଏହି ସଂସାର ତ୍ୟାଗୀ ବ୍ୟକ୍ତିଟି ସଂସାରର କେତେ ଅର୍ଦ୍ଧୋଳି ମେଣ୍ଟାଇଛନ୍ତି ତାର ଲେଖାଯୋଖା ନାହିଁ । ସମାଜ ଯାହାକୁ ବର୍ଜନ କରେ ତାଙ୍କର ଆଶ୍ରୟଦାତା ତ ଥିଲେ ସ୍ୱାମୀଜୀ । ସ୍ୱାମୀଜୀ କହନ୍ତି ଟୁଆଁ ମୋତେ ଏ ଅନାଥାଶ୍ରମ ଧନ୍ଦାରେ ପୂରେଇଥିଲା । ଦିନେ ଟୁଆଁ (ମୋ ଦାଦା) ଗୋଟିଏ ସ୍ତ୍ରୀଲୋକକୁ ସାଂଗରେ ଆଣି ମୋତେ କହିଲା ସ୍ୱାମୀଜୀ ! ଏ ଝିଅକୁ ଆମ ଘରେ ରଖିବେ ନାହିଁ କି ଆପଣଙ୍କ ଘରେ ରଖିବେ ନାହିଁ । ତାକୁ ମୁଁ ସେଲ୍‌ଟରରେ ଛାଡ଼ିବି । ସେ ଖ୍ରୀଷ୍ଟିଆନ୍ ହେବ । ଟୁଆଁ ମୋ ଆଖି ଖୋଲି ଦେଲା । ମୁଁ ଅନାଥାଶ୍ରମ କଲି ।

କଟକରେ ରହିଲେ ସାରଙ୍ଗଧର ବାବୁଙ୍କ ସ୍ତ୍ରୀ ଫ୍ରିଡ଼ା ଦାସ । ସେ ଛବି ଆଙ୍କିଥିଲେ ଆମ ସାହି ଗଦେଇ ନନ୍ଦଙ୍କର ମୁହଁରେ ଦାଢ଼ି, କାନରେ ୫ ଭରି ସୁନାର କୁଣ୍ଡଳ । ରାଜକିଶୋର ବାବୁଙ୍କ ପ୍ରଥମ ପୌତ୍ର ଯୁଗଳର ଏକୋଇଶିଆ ଉପଲକ୍ଷ୍ୟ ନନ୍ଦଙ୍କୁ ମିଳିଥିଲା । ଆମ ବୁଢ଼ୀ କୁମ୍ଭାରୁଣୀ କଂସାର ପଶୁରିଏ ଓଜନର ବାହିଚୂଡ଼ି ପିନ୍ଧି ତା ଢାଲରେ ହାଣ୍ଡି ପୂରେଇ ପାଖରେ ରଖି ବସିଥିବା ଛବି ମଧ୍ୟ ସେ ଆଙ୍କିଥିଲେ । ତାଙ୍କ ଘରେ ଗୋଟାଏ ରକମ ମାଟି ଥିଲା ତାକୁ ଖରାରେ ରଖିଲେ ନରମ ହୋଇଯାଏ । ଭାଇ ଦାଦା ସାଇକେଲ ପଛରେ ବସି ତାଙ୍କ ଘରକୁ ଯାଇ ସେ ମାଟିରେ ଖେଳନା ଗଢୁଥିଲେ ।

୧୯୨୮ରେ ଦାସେ ଆପଣେଙ୍କ ତିରୋଧାନ ପରେ ବାପାବୋଉଙ୍କ ସାଂଗରେ ମୁଁ ସାକ୍ଷୀଗୋପାଳ ଗଲି । ସେଠା ଆଶ୍ରମରେ ଶ୍ରୀମତୀ କୁନୀ, ସୁନାମଣି ମାଉଷୀ ଓ ଅନ୍ନପୂର୍ଣ୍ଣା ସାହୁ ଥିଲେ । ସେମାନେ କୁଲା ଉପରେ ତୁଳା ରଖି ତୁଳା ଭିଣୁଥିଲେ । ଜଗନ୍ନାଥ

ବାବୁ (ରଥ) ସେଠି କ'ଣ କାମ କରୁଥିଲେ । ତାଙ୍କୁ ବାପା ଚିମା ରଥ ଡ଼ାକୁଥିଲେ । ତାଙ୍କ ସ୍ତ୍ରୀ ତାଙ୍କ ଘରୁ ଆସି ବୋଉ ସଙ୍ଗେ ଗପସପ ହେଲେ । ମୁଁ ଶୁଣୁଥାଏ । ସେ ବିଭା ହୋଇ ପହିଲି ପାଳି ଆସିବା ପରେ ସରୁ ଚକୁଳି ଓଟାରି ଜାଣିଲେ ନାହିଁ ବୋଲି ତାଙ୍କ ଶାଶୁ କେମିତି ତାଙ୍କ ହାତ ପାପୁଲି ତତଲା ପଲମରେ ମାଡ଼ି ଦେଇ ଥିଲେ ତାହା ସେ ଅନୁଚ୍ଚ ସ୍ୱରରେ ବୋଉକୁ କହୁଥାନ୍ତି । ଏ ବର୍ଣ୍ଣନା ଶୁଣି ମୋର ହୃତ୍‌କଂପ ହେଲା । ପରବର୍ତ୍ତୀକାଳରେ ତାଙ୍କ ପୁତ୍ରବଧୂ ଶାରଦାଙ୍କ ଭାଷଣ ଉତ୍କଳ ବିଶ୍ୱବିଦ୍ୟାଳୟରେ ଶୁଣିବା ବେଳେ ମୋର ଏହି ଘଟଣା ମନେ ପଡ଼ିଯାଉଥାଏ ।

ମୋ ପିଲାଦିନେ ବାରମ୍ବାର ଶୁଣୁଥିଲି - ଝିଅ ଜନମ ଚୂଲି ମୁଣ୍ଡକୁ । ଏହାର ତାତ୍ପର୍ଯ୍ୟଟା ବହୁତ ଗୁରୁତ୍ୱପୂର୍ଣ୍ଣ ହୋଇଥିଲେ ହେଁ ଏଇ କାମଟା ଅତି ତୁଚ୍ଛ ଓ ଝିଅ ଜୀବନର ଅସାରତା ପ୍ରତିପନ୍ନ କରିବା ଉଦ୍ଦେଶ୍ୟରେ ଏହା କୁହାଯାଉଥିଲା । ପୁଣି ଝିଅ ବୟଃପ୍ରାପ୍ତ ହେବା ପରେ ମା ଖୁଡ଼ୀଙ୍କ କିପରି ଶଙ୍କିତ ହୋଇ ଝିଅ ଉପରେ ସଦା ସତର୍କ ଦୃଷ୍ଟି ରଖୁଥିଲେ ତାହା ଏ ଯୁଗର ଝିଅମାନେ କଳ୍ପନା କରିବା ସମ୍ଭବ ହେବ ନାହିଁ । ଝିଅମାନେ ଯଦି କୌଣସି ଅସଂଗତ କାମ କରି ପକାଇବେ ବା କେହି ସେମାନଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କ ସହିତ ଅସତ୍ ଆଚରଣ କରିବ ତେବେ କୁଳରେ କଳଙ୍କ ଲାଗିବ, ସେ ଝିଅର ପରିବାର ମଧ୍ୟରେ ଓ ସମାଜରେ ଆଉ ସ୍ଥାନ ରହିବ ନାହିଁ ଏଇଟା ଥିଲା ସବୁଠାରୁ ବଡ଼ ଭୟ । ଝିଅର ଦେହଟାକୁ କାଚବାସନ ପରି ମନେ କରାଯାଉଥିଲା । ସାମାନ୍ୟ ଆଘାତରେ କାଚବାସନ ଯେପରି ଫାଟିଯାଏ, ସେମିତି ପୁରୁଷର ସ୍ପର୍ଶ ବାଜିଲେ କିମ୍ବା କେହି ପୁରୁଷ ଝିଅକୁ ଚାହିଁ ହସିକରି କଥାପଦେ କହିଦେଲେ ଝିଅଟା ମାରା ହୋଇ ଯାଉଥିଲା । କେହି ଅନାତ୍ମୀୟ ପୁରୁଷ ଚିଠି ଖଣ୍ଡେ ଲେଖିଦେଲେ ତ କଥା ସରି ଯାଉଥିଲା । ତେଣୁ ଉଚ୍ଚ ଶିକ୍ଷା ସେମାନଙ୍କ ପକ୍ଷରେ ସ୍ୱପ୍ନ ଥିଲା ।

ଏହି ସଂକୀର୍ଣ୍ଣ ବିଚାରର ଗଣ୍ଡି ମଧ୍ୟରେ ଆବଦ୍ଧ ଥାଇ ସ୍ୱାଧୀନ ଚେତା ପ୍ରତିଭାଧର ଝିଅମାନେ କିପରି ଅଣନିଃଶ୍ୱାସୀ ହୋଇଯାଉଥିଲେ ତାହାର ଦୃଷ୍ଟାନ୍ତ ହେଉଛନ୍ତି ଆମ ବୀଣା ଅପା । ବୀଣା ଅପାଙ୍କ ବାପା ସୈନ୍ୟବିଭାଗରେ ଡ଼ାକ୍ତର ଥିଲେ । ଧୋୟା ମୂଳକର ଝିଅ ବୀଣାଅପା ପାଠ ପଢ଼ିବାକୁ ଚାହିଁଲାରୁ ରେଭେନ୍ସା କଲେଜର ଅଧ୍ୟାପକମାନଙ୍କୁ ତାଙ୍କ ଦାଦା ବୁଦ୍ଧି ମାଗିଲେ । ଦାଦା ନିଜେ ମଧ୍ୟ ଥିଲେ ସ୍ତ୍ରୀ-ଶିକ୍ଷାର ବିରୋଧୀ । ତେଣୁ ସେ ବୀଣାଅପାଙ୍କୁ ବୁଝାଇବାକୁ ଚେଷ୍ଟାକଲେ ଯେ ବଡ଼ ବଡ଼ ପଣ୍ଡିତ ଅଧ୍ୟାପକମାନେ କହୁଛନ୍ତି - ଝିଅମାନେ ପାଠପଢ଼ିବା ଦରକାର ନାହିଁ । ବୀଣାଅପା କହିଲେ - ସେମାନେ

ପାଠପଢ଼ିଛନ୍ତି ବୋଲି ତମେ ତାଙ୍କ କଥା ଉପରେ ଗୁରୁତ୍ୱ ଦେଉଛ ! ମୁଁ ମଧ୍ୟ ପାଠ ପଢ଼ିଲେ ତାଙ୍କ ପରି ହେବି । ତାଙ୍କ ବାପା ଏ ଖବର ପାଇଁ ତାକୁ ସ୍କୁଲରେ ଭରତି କରିଦେବାକୁ ଚିଠି ଲେଖିଲେ । ସମାଜରେ ବହୁତ ହଇଚଗୋଳ ହେଲା । କିଛିଦିନ ପରେ ବୀଣାଅପାଙ୍କ ମାମୁଁ ଗୋପାଳପ୍ରସାଦ ମହାନ୍ତି ବୀଣାଅପାଙ୍କ ଘରକୁ ଆସି ତାଙ୍କ ମାଆଙ୍କୁ ବୁଝାଇଲେ ଯେ ଝିଅଙ୍କୁ ପାଠ ପଢ଼େଇ କିଛି ଲାଭ ନାହିଁ କାରଣ ଅଙ୍କ ଓ ଇଂରାଜୀ ଝିଅମାନଙ୍କ ମୁଣ୍ଡରେ ପଶିବ ନାହିଁ । ବୀଣା ଅପାଙ୍କ ମାଆ କହିଲେ ଭାଇ ! ତୁମେ ଟିକିଏ ଦେଖିଲ ସେ ବୀଣା ଓ ଜ୍ୟୋତ୍ସ୍ନା ଦି ଭଉଣୀ କଣ ପଢୁଛନ୍ତି । ଗୋପାଳବାବୁ ବୀଣା ଅପାଙ୍କ ଖାତାପତ୍ର ଘାଣ୍ଟି ଦେଖିଲେ ଯେ ସେ ଇଂରାଜୀରେ କବିତା ରଚନା କରିଛନ୍ତି । ଗୋପାଳବାବୁଙ୍କ ମତ ବଦଳିଗଲା । ବୀଣା ଅପା ଡ଼ାକ୍ତରୀ ପଢ଼ି ବିଲାତ ଯାଇଥିଲେ । ସେ ସ୍ୱାସ୍ଥ୍ୟବିଭାଗର ଜଏଣ୍ଟ ଡ଼ିରେକ୍ଟର ହୋଇ ଅବସର ନେଲେ ।

ବୋଉ ଏ ଦୁଇନଣନ୍ଦଙ୍କୁ ଭାରି ସ୍ନେହ କରୁଥିଲା । ସେ ଦୁହେଁ ମଧ୍ୟ ନୂଆବୋହୂଙ୍କୁ ବିହିତ ସମ୍ମାନ ଦେଉଥିଲେ । ବୀଣା ଅପା ଜ୍ୟୋସ୍ନା ଅପା ଡ଼ାକ୍ତରୀ ପଢ଼ିବାକୁ ଗଲାବେଳେ ବୋଉ ତାଙ୍କୁ ନିମନ୍ତ୍ରଣ କରି ଖୁଆଇଲା ବୋଲି ଅନେକେ ବୋଉକୁ ନିନ୍ଦା କଲେ ।

ବୋଉର ଗୋଟାଏ ଢ଼ଙ୍ଗ ସେ ଯାହା ଠିକ୍ ମନେ କରିବ ତାହା ଅବଶ୍ୟ କରିବ । କେହି ବିରୋଧ କଲେ ବାଦ ବିସମ୍ବାଦ ଭିତରେ ନ ପଶି ନୀରବ ରହିବ । ବାପା ଚାକିରୀ ଛାଡ଼ିଲେ, ଦାଦା କଲେଜ ପାଠ ଛାଡ଼ିଦେଲା, ଘରର ଚଳଣି ବଦଳିଗଲା, ଏଥିପାଇଁ ବୋଉକୁ ବହୁତ ନିନ୍ଦା, ସମାଲୋଚନା କରାଗଲା । କିନ୍ତୁ ସେ ତା କଥାରେ ଅଟଳ ରହିଲା । ବୋଉ କଥା ଅନେକ ସମୟରେ ଆମକୁ ଓଲଟା ଜଣା ପଡ଼େ । ଛୋଟ ଶିଶୁର ସ୍ୱାଚ୍ଛନ୍ଦ୍ୟ ପ୍ରତି ବୋଉ ଅତ୍ୟଧିକ ଧ୍ୟାନ ଦେଉଥିଲା । ସଦ୍ୟଜାତ ଶିଶୁ କାନ୍ଦିବା ମାତ୍ରେ ସେ ନିଶ୍ଚୟ ତାକୁ କୋଳରେ ଜାକି ଧରିବ । ଦିନେ ତାକୁ କୁହାଗଲା – ଏମିତି କୋଳରେ ଧରି ଧରି ତୁ ଛୁଆକୁ କୋଳଆଖିଆ କରି ଦେଉଛୁ । ବୋଉ କରୁଣ ଦୃଷ୍ଟିରେ ଚାହିଁ କହିଲା – ମୁଁ କେମିତି କୋଳ ଆଖିଆ କଲି ? ସେ ପରା ତା ମା ଗର୍ଭରେ କୋଳରେ ପଶିଲା ପରି ଜାକି ହୋଇ ଥିଲା । ଏବେ ପଦାକୁ ଆସି ତାକୁ ଆକାଶିଆ ଲାଗୁଛି ବୋଲି ସେ କାନ୍ଦୁଛି ! ଆକଟ କରିବା ଲୋକ ତୁନି ପଡ଼ିଗଲେ ।

ବୋଉ ଖୁଡ଼ୀ ଦୁହିଁଙ୍କୁ ଆଳସ୍ୟ ଓ ଜଡ଼ତା ଛୁଇଁ ନ ଥିଲା । ଦୁହେଁ ପିଲାଦିନେ ଏକାନ୍ନବର୍ତ୍ତୀ ପରିବାରରେ ଚଳିଥିଲେ ବୋଲି କି କ'ଣ ବହୁ ଲୋକଙ୍କୁ ନେଇ ଚଳିବାରେ ସେ ଦୁହେଁ ଅଭ୍ୟସ୍ତ ଥିଲେ । ଦୁହେଁ ପିଲାଦିନେ ସାହେବୀ କାଇଦା ଓ ସୁଖସ୍ୱାଚ୍ଛନ୍ଦ୍ୟ ମଧ୍ୟରେ

ବଢ଼ି ଥିଲେ ହେଁ ଜୀବନର ଆଦର୍ଶକୁ ରୂପାୟିତ କରିବା ପାଇଁ ସେ ସବୁକୁ ତୃଣବତ୍ ଜ୍ଞାନ କରି ତ୍ୟାଗ କରିଦେଲେ । ଦେଶର ସ୍ୱାଧୀନତା ଓ ସମାଜର ସଂସ୍କାର ଆଣିବା ପାଇଁ ଦୁହେଁ ଯେଉଁ ବାଟ ଧରିଲେ ତାହା କୁସୁମାକୀର୍ଣ୍ଣ ନ ଥିଲା । କିନ୍ତୁ ସେହି କଣ୍ଟକମୟ ପଥ-ସଙ୍କଟକୁ ପାରିହେବା ବେଳର ଦୁଃଖକଷ୍ଟକୁ ଦୁହେଁ ଉପଭୋଗ କରୁଥିଲେ । ସେ କଣ୍ଟା ତାଙ୍କ ସନ୍ତାନମାନଙ୍କ ଗୋଡ଼କୁ ମଧ ବେଳେ ବେଳେ କଣ୍ଟକବିଦ୍ଧ କରିଛି କିନ୍ତୁ ସେଥିପାଇଁ ଦୁହେଁ ସନ୍ତାନ ମୋହର ବଶବର୍ତ୍ତୀ ହୋଇ ଗନ୍ତବ୍ୟ ପଥ ହୁଡ଼ି ନ ଥିଲେ । ସନ୍ତାନମାନେ ମଧ୍ୟ ସେହି କ୍ଷତ ପାଇଁ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ ।

ଘରେ ବାହାରେ ସମସ୍ତଙ୍କୁ ଖୁଆଇ ତୃପ୍ତ କରିବାରେ ବୋଉଖୁଡ଼ୀ ଆନନ୍ଦ ପାଉଥିଲେ । ନାଥିଆ ମା ଆମ ସାହିର ଅଭାବଗ୍ରସ୍ତ ସ୍ତ୍ରୀଲୋକ । ସେ ଆମ ଘରେ ବୋଲହାକ କରେ । ସେ ଗୁଡ଼ ଖାଇବାକୁ ଭାରି ଭଲ ପାଉଥିଲା । ଆମର ସେତେବେଳେ ବାଙ୍କିରୁ ବଣାରେ ପଶି ଗୁଡ଼ ଆସୁଥିଲା । ବଣାରୁ ଗୁଡ଼ ସରିଯାଇ ସେରେ ଖଣ୍ଡେ ଥିବ, ବୋଉ ନାଥିଆମାକୁ ଡ଼କାଇ ଗୁଡ଼ବଣା ଧୋଇବାକୁ କହିବ । ବଣାରେ ହାତ ପୁରେଇ ଗୁଡ଼ ଥିବାର ଜାଣି ନାଥିଆ ମା ର ଆକର୍ଣ୍ଣ ବିସ୍ତୃତ ହସ ମୁଁ ବର୍ତ୍ତମାନ ସୁଦ୍ଧା ମନଶ୍ଚକ୍ଷୁରେ ଦେଖି ପାରୁଛି । ନାନୀ ପିଇବା ପାଣି ସିଝେଇବେ, କାମୀ ଦିଦି ପରିବା କାଟିବେ, ଟମେଇ ବୋଉକୁ ଘସି ଦେବ, ଦୁଲି ସଉଦା ଆଣି ଦେବ, ରାଧାମଣି ପିଠୋଉ ବାଟିବ ଏ ସମସ୍ତଙ୍କୁ ବୋଉ ମନବୋଧ କରି ଚାଉଳ ମାପି ଦେବ । ସେଥିପାଇଁ ବୋଉ ଉପରେ ସମସ୍ତେ ପ୍ରସନ୍ନ ।

ଓଷାବାର ବିଭାବ୍ରତ ଆଦିର ବିଧିବିଧାନ ବାବଦରେ ମୋ ମାଆ ଥିଲା ଜୀବନ୍ତ ସଂବିଧାନ । ତାହାର ସେହି ବିଧିବିଧାନକୁ ରକ୍ଷା କରି ବୋଉ କେମିତି ଘର ସମ୍ଭାଳେ, ଅନେକେ ବିଶେଷରେ ସରଳା ଦେବୀ ତାହା ବୁଝି ପାରନ୍ତି ନାହିଁ । ସରଳା ଦେବୀ ୧୯୨୧ରେ ଅସହଯୋଗ ଅନ୍ଦୋଳନରେ ଯୋଗ ଦେଇଥିଲେ । ଶାଶୁ ଶଶୁର ଜୀବିତ ଥିବାରୁ ଘରକରଣା ଦାୟିତ୍ୱ ତାଙ୍କୁ ତୁଲାଇବାକୁ ପଡୁ ନ ଥିଲା । ଆନ୍ଦୋଳନ ଚର୍ଚ୍ଚାରେ ସେ ଅଧିକ ସମୟ ଦେଉ ଥିଲେ । କାହାରି କୌଣସି ତ୍ରୁଟି ଦେଖିଲେ ସେ ତାର କଡ଼ା ସମାଲୋଚନା କରୁଥିଲେ ଏବଂ ସେ ଚାହୁଁଥିଲେ ବୋଉ ସେଥିରେ ସାମିଲ ହେଉ । ପରନିନ୍ଦା, ପରଚର୍ଚ୍ଚା, କାହାରିକୁ ସମାଲୋଚନା କରିବା ବୋଉ ଖୁଡ଼ୀଙ୍କର ରୁଚି ବିରୁଦ୍ଧ ଥିଲା । ସେଥିପାଇଁ ସରଳାଦେବୀ ଅବୋଧ୍ୟ ଠାରରେ ଯେତେବେଳେ ବୋଉ ଆଗରେ କାହାରି ଅପକୀର୍ତ୍ତି ବୟାନ କରୁଥିଲେ, ବୋଉ ଧୈର୍ଯ୍ୟ ସହକାରେ ସେ ସବୁ ଶୁଣୁଥିଲା । କୌଣସି ମନ୍ତବ୍ୟ ଦେଉ ନ ଥିଲା । ବୋଉ ତା ମାଆ ଛଡ଼ା ଆଉ କାହାରି ପାଖରେ ଅନ୍ତରକଥା କହୁ ନ ଥିଲା ବୋଲି ମୋର ଧାରଣା ଜନ୍ମିଥିଲା ।

ଦାଦାର ସବୁ କଥା ଓଲଟା । ଗ୍ରହଣ ପୂର୍ବରୁ ହାଣ୍ଡିଛାଡ଼ ହୁଏ । ଦାଦା ହାଣ୍ଡିଛାଡ଼ ଓ ଗ୍ରହଣ ଲାଗିଥିବା ବେଳେ କିଛି ଖାଇବ ଓ ଆମକୁ ଖୋଇବ । ମାଆ ପ୍ରତିବାଦ କଲେ ଦାଦା କହିବ - ଗ୍ରହଣ ବେଳେ ଖାଇଲେ କଣ ହୁଏ ଜାଣିବା ପାଇଁ ପରା ଖାଉଛି ।

ବାପାଙ୍କ ଠାରୁ ଦାଦାର ସାନ୍ନିଧ୍ୟ ପିଲାଦିନେ ଆମେ ବେଶୀ ପାଇଛୁ । ଦାଦା ଆମକୁ ପାଚିଲା କଦଳୀ କିପରି ଚୋପା ଅଳ୍ପ ଅଳ୍ପ ଛଡ଼େଇ ଖାଇବାକୁ ହୁଏ, ଖାଇଲା ବେଳେ ଆଙ୍ଗୁଠିରେ କେମିତି ଭାତ ତରକାରୀ ସାଲୁ ସାଲୁ ହୋଇ ନ ଲାଗିବ, ଚିନାବାଦାମ ଖାଇ ତା ଚୋପା କିପରି ଏଣେତେଣେ ନ ଫିଙ୍ଗିବ । ଦାନ୍ତକାଠିରେ କେମିତି ଦାନ୍ତ ଘଷିଲେ ଦାନ୍ତ ଭଲ ସଫା ହେବ, ଏପରିକି ମଳତ୍ୟାଗ କରି ସାରିବା ପରେ ଆଉ ଥରେ ପ୍ରସାବ ନ ହେବା ଯାଏ କିପରି ଶୌଚ ହେବ ନାହିଁ ଇତ୍ୟାଦି ଛୋଟିଆ ଛୋଟିଆ କଥା ସୁଦ୍ଧା ଶିଖାଏ ।

ଦାଦାର ସାଙ୍ଗ ଶ୍ରୀଧର ସାମଲ ଥିଲେ ତଥାକଥିତ ଅଛୁଆଁ ଜାତିର ଲୋକ । ସେ ସରକାରୀ ଚାକିରୀ ପାଇଲେ ବୋଲି ଦାଦା ତାଙ୍କୁ ଆମ ଘରକୁ ଖାଇବାକୁ ଡ଼ାକିଲା । ମା'ର ତ ଛୁଆଁ ଛୁଇଁ ବାରଣ ଥାଏ । ଜେଜେଙ୍କ ଅମଳର ପୋର୍ସେଲିନ୍ ବାସନରେ ତାଙ୍କୁ ଖାଦ୍ୟ ପରଷା ହେଲା । ଚାରକବାକର କେହି ତାଙ୍କ ଅଇଣ୍ଠା ଛୁଇଁଲେ ନାହିଁ । ଦାଦା ସେ ବାସନ ମାଜିଲେ ।

ପୁର୍ବେ ବାପାମାନେ ନିଜ ସନ୍ତାନର ଯତ୍ନ ନେବାଟା ଅନାବଶ୍ୟକ ଏପରିକି ଅସମ୍ମାନଜନକ ମନେ କରୁଥିଲେ । ଉତ୍ତରା ଜନ୍ମ ହେବା ପରେ ଦାଦା ଖୁଡ଼ୀ ତାକୁ ଟ୍ରୁବୀ କିଙ୍ଗ୍ ପଦ୍ଧତିରେ ପାଳିଲେ । ସେ କୋଳରେ ଶୁଏ ନାହିଁ, ପେରାମ୍ବୁଲେଟରରେ ଶୁଏ । ରାତିରେ ମା କୋଳରେ ନ ଶୋଇ ଅଲଗା ଖଟରେ ଶୁଏ । ପଟ୍‌ରେ ବସି ମଳତ୍ୟାଗ କରେ । ଗାଈ ପନ୍‌ହା ପୋଟାସିୟମ୍ ପରମାଙ୍ଗାନେଟ୍ ପାଣିରେ ଧୁଆ ହୋଇ ତା ପାଇଁ କ୍ଷୀର ଦୁହାଁ ହୁଏ । ଏ ସବୁ ଚଳଣି ସଂପୂର୍ଣ୍ଣ ନୂଆ । ଦାଦା ଏସବୁ କାମରେ ସାହାଯ୍ୟ କଲା ବୋଲି ଅନେକେ ଥଟ୍ଟା ପରିହାସ କଲେ କିନ୍ତୁ ଧୀରେ ଧୀରେ ଏହି ଲାଳନ ପାଳନ ପଦ୍ଧତିକୁ ଗ୍ରହଣ କରିନେଲେ ।

ବାପାଙ୍କର ତ ଜଳ ଚିକିତ୍ସା ଠାରୁ ଆରମ୍ଭ କରି କେବଳ ଗଜାମୁଗ ଗଜାବୁଟ ଗଜା ଗହମ ଖାଇ ରହିବା ଯାଏ କିଛି ନା କିଛି ପ୍ରୟୋଗ ଚାଲିଥାଏ । ପୁଣି ଅଳକାଶ୍ରମର ଛାତ୍ରମାନେ ଜ୍ୱରରେ ପଡ଼ିଲେ ଆମ ଘରେ ଆସି ରହନ୍ତି । ବନ୍ଧୁବାନ୍ଧବ ଆତ୍ମୀୟସ୍ୱଜନଙ୍କ ମଧ୍ୟରୁ କିଏ ବୁନ୍ଦିଲଡୁ ଲଗେଇ କେତେ ଭାତ ଖାଇବେ ତା କାହାର ମଗ ସାର ସଂଯୋଗରେ

ସାଗୁଆତୀ ରନ୍ଧା ହେବ । କାହାର ସୁଜିଗୁଟି ପଥ୍ୟ ତ ଆଉ ଜଣକର ପାଉଁଗୁଟି ନଖପତଳା ହୋଇ କଟା ହେବ । ବୋଉ ଏ ସବୁ ସମ୍ଭାଳି ପାରିଥିଲା ବୋଲି ବୋଧହୁଏ ଶହ ଶହ ସହକର୍ମୀଙ୍କୁ ଚଳେଇ ପାରିଥିଲା । ଅବଶ୍ୟ ବାପା କହନ୍ତି ଯେ ବୋଉ ତା ବାପଘରୁ ଏ ବ୍ୟବସ୍ଥା ଆୟତ୍ତ କରିଛି । ବୋଉ ବିଭାଘରକୁ ସାଆନ୍ତ ମର୍ଯ୍ୟାଦା ସଂଖ୍ୟାଥିଲା ପଚାଶ । ସାଆନ୍ତମାନେ ସବାରିରେ ଯିବା ବିଧି । ଅନ୍ୟ ବରଯାତ୍ରୀଙ୍କ ପାଇଁ ଅନ୍ୟ ବ୍ୟବସ୍ଥା ।। ୫୦ x ୮ =୪୦୦ ବେହେରାଙ୍କ ପାଇଁ ବୋଉ ବାପଘରେ ପ୍ରତି ବେହେରା ଦଳ ପାଇଁ ଅଲଗା ଅଲଗା ଚୂଲି, ପଟିଘର ଓ କ୍ଷୀରି ମାଛ ଆରିସା ସମ୍ବଳିତ ସିଧାର ବ୍ୟବସ୍ଥା ହୋଇଥିଲା । ବାପା କହନ୍ତି ବୋଉର ବ୍ୟବସ୍ଥା ସମ୍ବନ୍ଧୀୟ ପଦାର୍ଥ ପାଠ ସେଇଠି ହୋଇଛି ।

ଦାଦାବାପା ଆନ୍ଦୋଳନରେ ପଶିବା ଫଳରେ ଆମ ଘରକୁ ସର୍ବଶ୍ରୀ ଯଦୁମଣି ମଂଗରାଜ, ପ୍ରାଣକୃଷ୍ଣ ପଢ଼ିହାରୀ, ଗୋଦାବରୀଶ ମିଶ୍ର, ନିରଞ୍ଜନ ପଟ୍ଟନାୟକ, ହରେକୃଷ୍ଣ ମହତାବ, ଲକ୍ଷ୍ମୀନାରାୟଣ ମିଶ୍ର, ନୀଳକଣ୍ଠ ଦାସ, ଆଚାର୍ଯ୍ୟ ମହାଶୟ, ଦାସେ ଆପଣେ ପ୍ରମୁଖ ମଝିରେ ମଝିରେ ବରାବର ଆସିଲେ । ସେମାନଙ୍କ ମଧ୍ୟରୁ ଅନେକେ ଆମ ସଂଗେ ମିଶୁଥିଲେ । ଗପସପ ହେଉଥିଲେ । ଯଦୁମଣି ବାବୁ(ମଂଗରାଜ) ଥିଲେ-ଏ ଗପ କହିବାରେ ଅଗ୍ରଗଣ୍ୟ । ସେ କଲେଜ୍‌ରେ ପଢୁଥିଲେ । ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ଗୋରା ପ୍ରିନ୍ସିପାଲ ଛାତ୍ରଶିକ୍ଷକଙ୍କର ସମ୍ମିଳିତ ସଭା ଡ଼ାକି ଛାତ୍ରମାନଙ୍କୁ ବିଦ୍ୟାଭ୍ୟାସରେ ମନୋନିବେଶ କରିବାକୁ ଉପଦେଶ ଦେଲେ । ସେ ସଭାରେ ଯଦୁମଣି ବାବୁ ହଠାତ୍ ଛିଡ଼ା ହୋଇ କହିଲେ - ସାର୍ ! ଆପଣମାନେ ଆମକୁ ପଢ଼େଇଲେ -

"Cannon to the right of them
Cannon to the left of them
Cannon in front of them
Volleyed and thundered
Into the valley of death
Rode the six hundred
Theirs is not to question why.
Theirs is but to DO AND DIE"

ଆପଣ ଏବେ କହୁଛନ୍ତି ଆମେ ବିଦ୍ୟାଭ୍ୟାସରେ ମନୋନିବେଶ କରିବୁ ? ପ୍ରିନ୍ସିପାଲ୍ ବୁଝିଗଲେ ଏ ପିଲାଟି ଅଖାଡୁ । ସେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କୁ ଦାୟିତ୍ୱ ଦେଲେ ମଙ୍ଗରାଜଙ୍କୁ ପହରା ଦେବାକୁ । ଏବେ ଯେଉଁଠି କଲେଜିଏଟ୍ ସ୍କୁଲ ହୋଇଛି

ସେଇ ପାଖରେ ଥିଲା ରେଭେନ୍ସା କଲେଜ । ସେ ସମୟରେ ନଈବାଲିରେ ପ୍ରତିଦିନ ରାଜଦ୍ରୋହୀଙ୍କ ସଭା ହେଉଥିଲା । ସଭାବେଳ ହେଲାରୁ ମଂଗରାଜ ଆର୍ତ୍ତବାବୁଙ୍କୁ କହିଲେ ସାର୍ ! ଟିକିଏ ବୁଲି ଯିବା । ଆର୍ତ୍ତବାବୁ ନିମଚଉଡ଼ି ଆଡ଼କୁ ବୁଲି ବାହରିଲାରୁ ମଂଗରାଜ କହିଲେ ସାର୍ ! ନଈକୂଳ ପବନ ଭଲ, ଚାଲନ୍ତୁ ନଈକୂଳକୁ ଯିବା । ସାର ଅଗତ୍ୟା ନଈକୂଳ ଆଡ଼େ ମୁହାଁଇଲେ । ନଈକୂଳେ ବୁଲୁବୁଲୁ ସଭା ଆରମ୍ଭ ହୋଇଗଲା । ମଂଗରାଜ କହିଲେ - ସାର୍ ! ମୁଁ ଟିକିଏ ସଭାକୁ ଯାଉଛି କହି ତରବର ହୋଇ ସଭାକୁ ଚାଲିଗଲେ । ସାର୍ ତ ରାଜଦ୍ରୋହୀଙ୍କ ସଭାକୁ ଯିବା କଥା ନୁହେଁ । ସେ ନଈକୂଳେ ରହିଲେ । ମଂଗରାଜ ସଭାରୁ ସ୍ୱରାଜ- ଆଶ୍ରମକୁ ଚାଲିଗଲେ ।

ହରେକୃଷ୍ଣ ମହତାବ ତ ଆମରି ଘରେ ରହୁଥିଲେ । ବାପା ତାଙ୍କୁ ଡ଼ାକନ୍ତି 'ଘୋଡ଼ା' । ମହତାବବାବୁ ନୁରଯାହାନ୍, ମେବାର ପତନ ଆଦି ଦ୍ୱିଜେନ୍ଦ୍ର ଲାଲ ରାୟଙ୍କ ନାଟକ ଆଣିଥାନ୍ତି । ଆମକୁ ପଢ଼ିବାକୁ ମିଳିଯାଏ ।

ଆଉ ରାଜକୃଷ୍ଣ ବାବୁ ? କାନ୍ଧରେ ଖଦୀଲୁଗା ପକେଇ ସେ ଜାତୀୟ ସପ୍ତାହରେ ଖଦୀ ବିକନ୍ତି । ଅଭାବଗ୍ରସ୍ତ ପରିବାରମାନଙ୍କରେ କେହି ମରିଗଲେ ସେମାନଙ୍କ ଶବ ସତ୍କାର କରିବା ପାଇଁ ସେ ମଡ଼ାଚଣ୍ଡିଆ ଦଳ ଗଢ଼ିଥିଲେ । ସେ Star of Utkal ଓ ଲୋକମତ ପତ୍ରିକା ମଧ୍ୟ ସଂପାଦନା କରୁଥାନ୍ତି । ସାଧାରଣ ସଭାରେ ବକ୍ତୃତା ଦେବା ତ ତାଙ୍କର ନିତ୍ୟକାର୍ଯ୍ୟ । ତଥାପି ସେ ଆମ ସଂଗେ ହସଗପ କରନ୍ତି, କେନାଲ୍‌ରେ ପହଁରନ୍ତି ।

ପଣ୍ଡିତ ଗୋଦାବରୀଶ ମିଶ୍ର ଥିଲେ ଧୀର ପୁରୁଷ । ତାଙ୍କ ଚାହାଣୀରେ ସ୍ନେହ ଝରି ପଡ଼େ । ପରବର୍ତ୍ତୀକାଳରେ ସେ ବିଧାନ ସଭାର ସଦସ୍ୟ ଥିବା ବେଳେ ତାଙ୍କୁ ଚାନ୍ଦା ମାଗିବାକୁ ଗଲି । ସେ ଦଶୋଟି ଟଙ୍କା ଦେଲେ । ଆଉ କିଛି ଦେବାକୁ ବିନତି କରିବାରୁ ହସି ହସି କହିଲେ - ତୁମେ ଆସିଛ ବୋଲି ଏତକ ଦେଲି । ଆଉ କେହି ଆସିଥିଲେ ଆଦୌ ଦେଇ ନ ଥାନ୍ତି ।

ଆଚାର୍ଯ୍ୟ ମହାଶୟ ଦାସେ ଆପଣେଙ୍କ ଦେହାନ୍ତ ପରେ ପୁରୀରେ ରହୁଥିଲେ । ତାଙ୍କରି ମୁହଁରୁ ଶୁଣିଛି ଦିନେ ବାପା ପୁରୀ ଯାଇ କହିଲେ ହରିଭାଇନା ! ଏଠିଟାରେ କହିଁକି ବସିଛନ୍ତି ? କଟକ ଚାଲନ୍ତୁ । ଆଚାର୍ଯ୍ୟ ମହାଶୟ ବାପାଙ୍କ ସଂଗେ କଟକ ଆସି ସ୍ୱରାଜ୍ୟ ଆଶ୍ରମରେ ରହିଲେ । ତୁଳସୀ ଚଉରା ଚଉତରା ଉପରେ ବସି ପୂଜା କରନ୍ତି, ତକଲୀରେ ସୂତା କାଟନ୍ତି । ସାକ୍ଷାତ୍ ବୈଦିକ ଯୁଗର ଋଷି । ତାଙ୍କ ସଂଗେ ବେଶୀ କୋଡ଼ି ହେଲୁ ୧୯୩୦-୩୧ରେ ।

ଆଉଜଣେ ଥିଲେ ପରିଜା ସାହେବ । ଆମ ପିଲାଦିନେ କଟକରେ ଦୁଇଜଣ ସାହେବ ଥିଲେ ପରିଜା ସାହେବ ଓ ତ୍ରିପାଠୀ ସାହେବ । ଭିକ୍ଟୋରିଆ ଯୁଗର ଶିଷ୍ଟାଚାରର ପ୍ରତିମୂର୍ତ୍ତି ଥିଲେ ପରିଜା ସାହେବ । ମୋତେ ଓ ଭାଇଙ୍କୁ ସେ ବହୁତ ଖେଳେଇଛନ୍ତି । ମା, ବୋଉ, ସୁନ୍ଦରମଣି ଅପା ଯିବେ ରେଭେନ୍ସା କଲେଜର ଅଧ୍ୟାପକ ଘନଶ୍ୟାମ ଦାସ, ନାରାୟଣ ଦାସ, ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତିଙ୍କ ଘରକୁ । ଆମେ ରହିବୁ ପରିଜା ସାହେବଙ୍କ ପାଖରେ । ଦିନେ ମାଇକ୍ରୋସ୍କୋପ୍‌ରେ ଗୋଟାଏ ଛାରପୋକ ଦେଖାଇ ଥିଲେ । ମନେ ପଡୁଛି ଅତି ପିଲାଦିନେ ପରିଜା ସାହେବ ମୋତେ କୋଳରେ ଧରି ଗୀତ ବୋଲୁଛନ୍ତି 'ବିଲ ମାଛ ଚିଲ ନେଲା ଖଇଁଚି ଖଣ୍ଡିଏ ବୁଣ ।' ସେ ବିଭାହେଲେ ବୋଉର ଦୂରସମ୍ପର୍କୀୟ ଭଉଣୀ ସୁନ୍ଦରମଣି ଅପାଙ୍କୁ । ସୁନ୍ଦରମଣି ଅପା ମୋଟର ଚଳାଇବା ଶିଖିବା ପରେ ନିଜେ ମୋଟର ଚଳାଇ ଆମକୁ ବୁଲେଇ ନିଅନ୍ତି । ତାଙ୍କ ପୁଅ ଠୁରା ଥରେ ଅମୃତାଂଜନ ଶିଶିର ଠିପି ଗିଳି ଦେଲା । ପରିଜା ସାହେବ ଘରେ ନ ଥିଲେ । ସୁନ୍ଦରମଣି ଅପା ମୋଟର ଗାଡ଼ି ଚଳେଇ ଠୁରାକୁ ଡ଼ାକ୍ତରଖାନାକୁ ନେଇ ତା ପ୍ରାଣ ରକ୍ଷା କଲେ ।

କେତେ ସ୍ନେହୀ । ଆତ୍ମୀୟଙ୍କର କେତେ ସ୍ମୃତି । ନଗୁ ପିଉସା ନେଇ ଯାଆନ୍ତି ଆମକୁ ଦଶରା, ଝୁଲଣରେ ବୁଲେଇବାକୁ । 'ପାଣ୍ଡୁ' ପିସା ନିଅନ୍ତି ରେଭେନ୍ସା କଲେଜକୁ । ବେଣ୍ଟକାରରୁ ଆସନ୍ତି ଟିକାଦାଦା, ଗୋରାଦାଦା, ଝଗ୍ରୁ ଦାଦା, ବାଲୁ ଦାଦା, ନଟ ଦାଦା, ଭବ ଦାଦା, ଟୁନୀ ଅପା ଓ ରୁନି ଅପା । ଏ ସମସ୍ତେ ହରି ଅଜାଙ୍କ ପିଲ୍ଲା । ଟିକା ଦାଦା କଲେଜ୍‌ରେ ପଢୁଥିବା ବେଳେ ପରୀକ୍ଷାର ପ୍ରଶ୍ନପତ୍ରରେ ଲେଖାଥିଲା – ଯେ କୌଣସି ପାଞ୍ଚୋଟି ପ୍ରଶ୍ନର ଉତ୍ତର ଦିଅ । ଟିକାଦାଦା ସବୁ ପ୍ରଶ୍ନର ଉତ୍ତର ଦେଇ ଲେଖିଦେଲେ ଯେ କୌଣସି ପାଞ୍ଚୋଟି ଉତ୍ତର ପରୀକ୍ଷା କର ।

ଟୁନୀ ଅପା ପିଲାଦିନେ ଭାଇମାନଙ୍କ ସାଂଗରେ ସାଙ୍ଗ ହୋଇ ପାଠ ପଢ଼ିଲେ । ମା କହୁଥିଲେ ସେ ବିଭା ହୋଇ ଶାଶୁ ଘରକୁ ଗଲା ବେଳେ ହରିଅଜା ଗୋଟାଏ ଖାତାରେ ତାଙ୍କର ବିବାହିତ ଜୀବନର କର୍ତ୍ତବ୍ୟ ବିଷୟରେ ଲେଖି ତାଙ୍କ ନିର୍ମାଲ୍ୟ କୋଥଳୀରେ ଦେଇ ଦେଇଥିଲେ । ଟୁନୀ ଅପା ତଦନୁସାରେ ଶାଶୁ ଘରେ ଚଳିଥିଲେ । ଆମେ ବେଣ୍ଟକାର ମଧ ଯାଉଥିଲୁ । କିନ୍ତୁ ସେଠା ଘଟଣାବଳୀ ବିଶେଷ ମନେ ନାହିଁ ।

ଆମ ପଛପଟ ଘରେ ଅନେକ ଛାତ୍ର ଗୋଟାଏ ମେସ୍ କରି ରହୁଥିଲେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁଅ ଅଶୋକ ସେହି ମେସରେ ଥିଲେ । ସେ ସେତେବେଳେ ଆଜିକାଲିକା ଅଷ୍ଟମ ଶ୍ରେଣୀ ଛାତ୍ର । ସେ ଆମର ଖେଳ ସାଙ୍ଗ । ପିଲାଦିନେ କେମିତି

ସାମାନ୍ୟ ସାମାନ୍ୟ ଘଟଣା ଗପିବାରେ ଆନନ୍ଦ ମିଳେ ତାହା ଭାବିଲେ ଅବାକ୍ ଲାଗେ । ପ୍ରଚାରକ ଅନନ୍ତ ମିଶ୍ରଙ୍କ ପୁଅ ଶଶୀ କେମିତି ଚୂଡ଼ା କଦମା ଖାଏ । ସତ୍ୟବାଦୀ ବିଦ୍ୟାଳୟର ପିଲାଏ କେମିତି ଓଡ଼ିଆ ଇଂରାଜୀ ମିଶାଇ କହନ୍ତି, ରାମ ସାହୁ and ଦାମ ସାହୁ, began to ମରାମରି, get a ଫାଳିଆ ବଡା under the ବାଉଁଶ ବୁଦା । ପୁଣି ଇଷ୍ଟଇଣ୍ଡିଆ କଂପାନୀ ଅମଳରେ ଲୋକେ ଯାହାକୁ ଇଂରାଜୀରେ ପଣ୍ଡିତ ବିଚାରୁ ଥିଲେ ତାଙ୍କ ଇଂରାଜୀ ହେଲା my uncle ବିଶ୍ୱନାଥ ସାହା । He come ten O'Clock go four O' clock . Speak !Speak ବି ନାହିଁ, tobacco !tobacco ବି ନାହିଁ । your ଖାଉ ନାହିଁ your ପିନ୍ଧୁ ନାହିଁ । your wall is not any ଚାଳିଆ । 2 lakh 3 lakh gone ବିଶ୍ୱନାଥ ଲାହାର ଭାସି gone .

ଆଉ ଥରେ ଜଣେ ରେଳ ବିଭାଗର ଗୋରା ହାକିମ ଜରୁରୀ କାମରେ ଘୋଡ଼ାଗାଡ଼ିରେ ଯାଉ ଯାଉ ଗାଡ଼ି ଭାଙ୍ଗିଗଲା । ସାହେବ ରାଗିକରି ତମ୍ ତମ୍ ହୋଇଗଲେ ଓ ବହୁ କଷ୍ଟରେ କର୍ମ ସ୍ଥଳରେ ପହଞ୍ଚିଲେ । ପରଦିନ ଘୋଡ଼ାଗାଡ଼ିର ମାଲିକ ଗାଡ଼ି ଭଡ଼ା ନେବାକୁ ଆସିଲେ । ସାହେବଙ୍କ ଲୋକ କହିଲେ .– ସାହେବ ରାଗିଛନ୍ତି । ଯାଅନା ମାଡ଼ ଖାଇବ । ଗାଡ଼ି ମାଲିକ ସେ କଥା ନ ଶୁଣି ସାହେବଙ୍କ କୋଠରୀକୁ ଗଲାମାତ୍ରେ, ସାହେବ ଗର୍ଜନ କରି ଉଠିଲେ । ଗାଡ଼ି ମାଲିକ ତଦପେକ୍ଷା ଉଚ୍ଚ ସ୍ୱରରେ ଗର୍ଜନ କରି କହିଲେ 'Your Sir, Iron horse, Iron Carriage, Iron Road, Still Collision, mine Sir, animal horse, wooden Cariage, Kankar road, why not Collision of Course Collision. ସାହେବ ଏ ଭାଷା ଶୁଣି ହସି ହସି ଭଡ଼ା ଟଙ୍କା ଗଣି ଦେଲେ ।

ସମ୍ପୂର୍ଣ୍ଣ ବାଜେ ଗପ । କିନ୍ତୁ ସେଇଥିରେ କେତେ ଆନନ୍ଦ ମିଳୁଥିଲା ।

ପରିଣତ ବୟସରେ ଥରେ ଅଶୋକ ସଂଗେ ସମାଜ କାର୍ଯ୍ୟାଳୟରେ ଗୋଟାଏ ସଭାରେ ଦେଖା ହେଲା । ସେ ଆଗ ଧାଡ଼ିରେ ବସିବାକୁ ମୋତେ ଡ଼ାକିଲେ । ମୁଁ କହିଲି ସେ ଧାଡ଼ିରେ ଆଡ଼ଭୋକେଟ ଜେନେରାଲ ବସନ୍ତି । ଅଶୋକ ସେ ଧାଡ଼ିରୁ ଉଠି ଆସି ମୋ ପାଖରେ ବସି ସୁଖଦୁଃଖ ହେଲେ । କେହି, ଜଣେ ତାଙ୍କୁ ଆଗ ଧାଡ଼ିକୁ ଯିବାକୁ ଡ଼ାକିଲାରୁ ଅଶୋକ କହିଲେ–ଏଠି ମୋ ସାଂଗ ସାଥିରେ କଥାଭାଷା ହେଉଛି । ମୁଁ ଏଇଠି ବସିବି । କେଡ଼େ ବଡ଼ ସ୍ୱୀକୃତି !

ଆଉ ଗୋଟାଏ ପରିବାରର ସ୍ନେହ ଧାରା ଆମକୁ ସିକ୍ତ କରି ଦେଉଥିଲା – ବ୍ରଜସୁନ୍ଦର ଦାସଙ୍କ ପରିବାର । ଦଶହରାରେ ଆମେ ଦେବୀ ବିସର୍ଜନ ଦେଖିବାକୁ

ଯାଉଥିବୁ, ପଛଆଡୁ ଗୋଟାଏ ଗାଡ଼ି ଆସି ଅଟକିବ । ଟିମ୍ ଆଈଙ୍କ ପାଟି ଶୁଭିବ 'ଢୋ' କବାଟ ଫିଟା, ବେଲୁ ପିଲାଏ ଗାଡ଼ିରେ ବସିବେ । ତାଙ୍କ ପିଲାଙ୍କ ସାଙ୍ଗରେ ଗୁଞ୍ଜି ହୋଇ ବସି ଆମେ ଦେବୀ ଦେଖି ଯିବୁ । ଟିମ୍ ଆଈ ଆମକୁ ଯୋଉଠି ଦେଖିବେ ସ୍ନେହ ଶ୍ରଦ୍ଧାରେ ପୋତି ପକେଇବେ ।

୧ ୯ ୨ ୮ରେ କଲିକତା କଂଗ୍ରେସକୁ ବାପା ବୋଉଙ୍କ ସାଙ୍ଗରେ ଗଲୁ । ସେମାନେ ତାଙ୍କ ଧନ୍ଦାରେ ରହିଲେ, ଆମକୁ ଗଛେଇ ଦେଲେ ଶ୍ରୀଧର ମାମୁଁ–ବୋଧପୁରର ଶ୍ରୀଧର ମହାନ୍ତିଙ୍କୁ । ଶ୍ରୀଧର ମାମୁଁ ବିଚରା ଆମକୁ ସାଙ୍ଗରେ ନେଇ ଚିଡ଼ିଆଖାନା, ମ୍ୟୁଜିଅମ୍, ଭିକ୍ଟୋରିଆ ମେମୋରିଆଲ୍ ହଲ୍‌ଠାରୁ ଆରମ୍ଭ କରି ଚୌରଙ୍ଗୀ, ବିର ମାର୍କେଟ ଯାଏ କଲିକତାର ଅନ୍ଦିସନ୍ଧି ବୁଲେଇ ଦେଖେଇଲେ । ଚନ୍ଦାମୁଣ୍ଡ, ଆମ ପାଇଁ ଖରାରେ ବୁଲି ସେ କେତେ କଷ୍ଟ ନ ସହିଲେ !

୧ ୯ ୨ ୯ ରେ ଆମେ ଗଲୁ ଅଳକାଶ୍ରମରେ ରହିବାକୁ । ଅଳକାଶ୍ରମ ଚାରିପଟେ ଆମ୍ବତୋଟା । ସେଠି ସେତେବେଳେ ଜମି ବନ୍ଦୋବସ୍ତ ଚାଲିଥାଏ । ଜଣେ ବିହାରି ହାକିମ ମହେନ୍ଦ୍ର ସିଂ ତମ୍ବୁ ପକେଇ ସେହି ତୋଟାରେ ଥାନ୍ତି । ତାଙ୍କ ଝିଅ ତିନି ଚାରି ବର୍ଷର । ବବି ପ୍ରତିଦିନ ଅଳକାଶ୍ରମକୁ ଆସି ଗୋଟିଏ ନଡ଼ିଆ ନିଏ ଏବଂ ତା ବାପାଙ୍କୁ ଯାଇ କହେ ଆକୁ କଣାକଲେ ମିଠାପାଣି ବାହାରିବ । ମହେନ୍ଦ୍ର ସିଂହଙ୍କ ପରଦା ମାନନ୍ତି । ବିହାରରେ ସେ ଯୁଗରେ ପରଦାର ଚଳଣି ପ୍ରବଳ ଥିଲା । ୧ ୯୩୪ର ବିହାର ଭୂମିକମ୍ପ ବେଳେ ସୁଦ୍ଧା ପର୍ଦ୍ଦା ଯୋଗୁଁ ସ୍ତ୍ରୀ ଲୋକମାନେ ପଦାକୁ ବାହାରିବା ପାଇଁ 'ଘଟାଟୋପ୍' ସଜଡ଼ା ହେଉ ହେଉ କୋଠା ଭୁଷୁଡ଼ି ମଲେ । ଶ୍ରୀମତି ସିଂ ରାତି ଦଶଟାରେ ନିଶା ଗରଜିଲେ ଆଶ୍ରମକୁ ବୋଉ ସଙ୍ଗେ ଗପସପ କରିବାକୁ ଆସନ୍ତି । ବୋଉ ପିଲାଦିନେ ବିହାରରେ ଥିଲା ବୋଲି ହିନ୍ଦୀ ଜାଣିଥିଲା । ତେଣୁ ଗପ ଭଲ ଜମେ । ମୁଁ ତାଙ୍କ ପାଖରେ ବସି ହିନ୍ଦୀ ବୋଲି ଶୁଣେ ।

ଏହି ମହେନ୍ଦ୍ର ସିଂହଙ୍କ ପାଖରେ ଜେ.ଟି ସଣ୍ଡରଲ୍ୟାଣ୍ଡ ଲେଖିଥିବା "India in bondage" ବହିଟି ଥିଲା । ସରକାର ଏ ବହିଟି ବାଜ୍ୟାପ୍ତ କରିଥିଲେ । ଆମର ଜଣେ ଦୂର ସଂପର୍କୀୟ ଆତ୍ମୀୟ ବହିଟି ମହେନ୍ଦ୍ର ସିଂହଙ୍କ ଠାରୁ ପଢ଼ିବାକୁ ନେଇ ପୁଲିସକୁ ଜଣାଇ ଦେଲେ ଯେ ସରକାରୀ ହାକିମଙ୍କ ପାଖରେ ଏ ରାଜଦ୍ରୋହ ସୂଚକ ବହିଟି ଅଛି । ପୁଣି ମହେନ୍ଦ୍ର ସିଂହଙ୍କୁ ବହିଟି ଫେରାଇ ଦେଇ କହିଦେଇ ଗଲେ ଯେ ଆପଣଙ୍କ ପାଖରେ ଏ ବହି ଅଛି ବୋଲି ପୁଲିଶ ଜାଣିଲେଣି । ମହେନ୍ଦ୍ର ସିଂହ ବହିଟିକୁ ତୁରନ୍ତ ବାପାଙ୍କ ପାଖକୁ ପଠାଇ ଦେଲେ । ପରଦିନ ପୁଲିଶ ତାଙ୍କ ରାଉଟି ଖାନତଲାସ କରିବାକୁ

ଆସି ବହି କଥା ପଚାରିବାରୁ ସେ କହିଲେ ବହିଟି ମୋ ପାଖରେ ଥିଲା । ତାହା ବାଜ୍ୟାପ୍ତ ହୋଇଛି ବୋଲି ଜାଣିବାରୁ ମୁଁ ତାକୁ ନଷ୍ଟ କରି ଦେଲି ।

ଅଳକାଶ୍ରମରେ ସେତେବେଳେ ଖଦୀ ସଂଘ ପକ୍ଷରୁ ଖଦୀ କାମ ହେଉଥାଏ, ହାଟପାଳିଦିନ ଭିଣାଳୀ କଟାଳୀ ଓ ତନ୍ତୀ ବଳଣା ସୂତା ଓ ଲୁଗା ନେଇ ଆସନ୍ତି, ଖୁବ୍ ଗହଳି ହୁଏ । ବୋଉ ଘର ରନ୍ଧାବଢ଼ା ମା'କୁ ଘଷି ଦେବା ଆଦି ନିତ୍ୟକୃତ୍ୟ ସାରି ଚାଟରା, ବେଣୀପୁର, ଯଶୋବନ୍ତ ପୁର, ଦେଭୋଗ ଆଦି ଗାଁକୁ ଖରାବେଳିଆ ଯାଇ ସ୍ତ୍ରୀଲୋକଙ୍କୁ କଂଗ୍ରେସ ମେମ୍ବର କରେ । ମୁଁ ତା ସାଂଗରେ ଯାଏ ।

ଅଳକାଶ୍ରମରେ  ବିଦ୍ୟାଳୟ ଚାଲିଥିବା ବେଳେ ଗୋଟିଏ ହାତଲେଖା ପତ୍ରିକା 'ଅଳକା' ଛାତ୍ରମାନେ ବାହାର କରୁଥିଲେ । ସରଳା ଦେବୀ, ଅନ୍ନଦାଶଙ୍କର ରାୟଙ୍କ ରଚନା ମଧ୍ୟ ସେଥିରେ ବାହାରୁଥିଲା । ରାମକୃଷ୍ଣ ନନ୍ଦ ପ୍ରମୁଖ ଛାତ୍ର ସେଥିରେ ଲେଖାଲେଖି କରୁଥିଲେ । ଅଳକାରେ ପ୍ରକାଶ ପାଇଥିବା ରାମକୃଷ୍ଣ ନନ୍ଦଙ୍କର ଗୋଟିଏ କବିତା ଥିଲା-

ସୁଖ ସ୍ୱପ୍ନ ତାର ଯାଇଛି ଭାଜି ଅପେୟ ଆଜି ଅଳକା ପାଣି
ଅଳକାର ସେହି ନବୀନ ଗାଥା ପରାଣେ ବ୍ୟଥା ଦିଅଇ ଆଣି
ଅଳକା ବକ୍ଷେ ବଣିକ ତରୀ ବାହି ନାଉରୀ ନଗାଏ ଗାନ
ଅଳକାକୁ ମୋର ମୁକ୍ତ କର ଯୁକ୍ତକର ହେ ଭଗବାନ
ସେହି ଅନ୍ନଦାଶଙ୍କରଙ୍କର ଗୋଟାଏ କବିତା ଥିଲା :
ଅଗ୍ନି ଶିକ୍ଷା  ଅଗ୍ନି ଶିକ୍ଷା ଦେହ ଦୀପେ ଜାଳ

ଦୀପ୍ତ ଶିଖା

ସେ ପତ୍ରିକା ବନ୍ଦ ହୋଇ ଯାଇଥିଲା । ଭାଇ ପୁଣି 'ଅଳକା' ବାହାର କଲେ ।

ଦିନେ ପଢ଼ିଆରୀ ମହାଶୟ ମୋତେ ପରିହାସ କଲା ପରି କହିଲେ - ଦେଖ୍, ବୋଉ କେମିତି କଂଗ୍ରେସ ମେମ୍ବର କରୁଛି । ତୁ କରି ପାରିବୁ ? ନା ଖାଲି ତୋଟାରେ ବୁଲିବୁ! ମୋ ଠେଇଁ ଛଳ ପଶିଗଲା । ମୁଁ ତାଙ୍କଠାରୁ ଖଣ୍ଡେ ରସିଦ ବହି ମାଗି ନେଇ ଚାଟରା ଚାଲିଗଲି । ଚାଟରାରେ ମୋ ପିଉଷା ଦୁର୍ଗାଚରଣ ମହାପାତ୍ରଙ୍କ ଘର । ସେହି ପରିବାର ଅଳକାଶ୍ରମ ପାଇଁ ଜମି ଦାନ ଦେଇଥିଲେ । ଭାଗୁ ଭାଇ – ଭାଗୀରଥି ମହାପାତ୍ର ତାଙ୍କରି ପୁଅ । ମୁଁ ଚାଟରାରେ ଚଇଁ ଭାଇ, ନିତ ଭାଇ, ସୁନ୍ଦରମଣି ଭାଉଜ, ଶଚୀ ଭାଉଜ, ବଂଶୀ ଭାଇ କ୍ଷମା ଭାଉଜ ଆଦି ପଚିଶ ଜଣଙ୍କୁ କଂଗ୍ରେସ ମେମ୍ବର କରି ଦମ୍ ନେଲି । କଂଗ୍ରେସ ମେମ୍ବର ହେବାର ବିଧାନ ହେଲା – ରସୀଦ୍ ଖାତାରେ ଲେଖା

ହୋଇଥିବା 'ମୁଁ ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଂଗତ ଉପାୟରେ ସ୍ୱରାଜ୍ୟ ପ୍ରାପ୍ତିରେ ବିଶ୍ୱାସ କରେ'' ତଳେ ଯେ ଦସ୍ତଖତ କରି ଚାରିଅଣା ପଇସା ଦେବେ ସେ କଂଗ୍ରେସ ମେମ୍ବର ବର୍ଷକ ପାଇଁ ହେବେ । ମୁଁ ବଡ଼ ଦମ୍ଭରେ ବଢ଼ିହାରୀ ମହାଶୟଙ୍କୁ ରସୀଦ ଖାତା ଫେରାଇ ଦେବା ବେଳେ ସେ ହସିଲେ । ସେତେବେଳେ ମୁଁ ବୁଝିଲି ଯେ ସେ ଜାଣିଶୁଣି ମୋତେ ଚଳେଇ କରି ଏ କାର୍ଯ୍ୟଟି କରାଇ ନେବାକୁ ଚାହୁଁ ଥିଲେ ।

ପଣ୍ଡିତ ମହାଶୟଙ୍କ ଘର ଜୟବଢ଼ରେ । ସେ ସରକାରୀ ଚାକିରୀ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ଜଣେ ପ୍ରଥମ ଶ୍ରେଣୀୟ ନିଷ୍ଠାପର କର୍ମୀ ଥିଲେ । ଜଗତ୍‌ସିଂହପୁରରୁ ୨୮ ମାଇଲ୍ ବାଟ ଚାଲି କଟକ ଯାଇ କଂଗ୍ରେସ କମିଟି ବୈଠକର ନୋଟିସ ବାଣ୍ଟି ସେ ସଭା ଆୟୋଜନ କରୁଥିଲେ । ସେହିପରି ପଣ୍ଡିତ କୃପାସିନ୍ଧୁ ହୋତା ସାକ୍ଷୀଗୋପାଳରୁ ଚାଲି କରି ଯାଇ କଂଗ୍ରେସ କମିଟିର ବୈଠକରେ ଯୋଗ ଦେଉଥିଲେ । ସେମାନେ ଥିଲେ ଶରୀରଂ ବା ପାତୟେତ୍ ମନ୍ତ୍ରଂ ବା ସାଧୟେତ୍ ଉକ୍ତିର ପ୍ରତିମୂର୍ତ୍ତି ।

ଅଳକାଶ୍ରମରେ ରହିବା ପରେ ଗୋଟାଏ ମାନସିକ ପରିବର୍ତ୍ତନ ଦେଖାଦେଲା । କଟକ ଦିଆଲୀ, ଦଶହରା, ବାଲିଯାତ୍ରା ଆଦୌ ମନକୁ ଟାଣିଲା ନାହିଁ । କଟକରେ ଦିଆଲୀ ବେଳେ ଥରେ ବାପା ଆମକୁ ନୟା ସଡ଼କକୁ ବୁଲେଇ ନେଲେ । କଟକ ସହର ମଣିମାଳା ପିନ୍ଧିଲା ପରି ଦିଶୁଥାଏ । ବାପା ଆମକୁ ତ ଅଟଳ ବିହାରୀ ଆଚାର୍ଯ୍ୟଙ୍କ ଡ଼ାକ୍ତରଖାନା ସ୍ୱରାଜ ମେଡ଼ିକାଲ୍ ହଲକୁ ନେଇଗଲେ । ତାଙ୍କ ଦୋକାନ ଆଗରେ ଦୀପାଳି ଯେଉଁଠି ଜଳୁଥିଲା ସେଠି ଲେଖା ହୋଇଥିଲା

'ପରଦୀପ ଶିଖା ନଗରେ ନଗରେ
ତୁମି ଯେ ତିମିରେ ତୁମି ସେ ତିମିରେ'

ଅଟଳ ବାବୁ ସନ୍ତ୍ରାସବାଦୀ ଥିଲେ । ଦିନେ ପୁଲିଶ ତାଙ୍କ ଘର ଖାନତଲାସ କରିବାକୁ ଆସି ଘରକୁ ତନ୍ନ ତନ୍ନ କରି ଖୋଜି କିଛି ନ ପାଇ ଫେରିଗଲେ । ଅଥଚ ତାଙ୍କ ଘର ଦ୍ୱାର ମୁହଁରେ ଯେଉଁ କାଳୀଙ୍କ ଚିତ୍ର ଟଙ୍ଗା ହୋଇଥିଲା, ତାହାରି ପଛରେ ତାଙ୍କ ରିଭଲଭର୍ ଥିଲା । ୧୯୨୧ରେ ସେ ଅହିଂସା ଆନ୍ଦୋଳନରେ ଯୋଗ ଦେଲେ । ଜାତୀୟ ସପ୍ତାହରେ ତ ଅବଶ୍ୟ ସାଧାରଣ ସଭା ହେବ । କନ୍ତୁ ଲୋକେ ଭୟଭୀତ । ଅଟଳବାବୁ ଏକା ନଈବାଲିରେ ଜାତୀୟ ପତାକା ଉଡ଼ାଇ ବକ୍ତୃତା ଦେଇଥିଲେ । ତାଙ୍କ ସ୍ତ୍ରୀ ଆଶାଲତା ଆଚାର୍ଯ୍ୟ ମଧ ୧୯୩୨ରେ ସତ୍ୟାଗ୍ରହରେ ଯୋଗ ଦେଇ କାରାରୁଦ୍ଧ ହୋଇଥିଲେ ।

ବାଲିଯାତ୍ରା ତ କଟକର ନିଜସ୍ୱ ଉତ୍ସବ । ପିଲାଦିନେ ବାଲିଯାତ୍ରାର ବୋଇତି କଖାରୁ ପରି ରସଗୋଲା, ପାଣି କଖାରୁ ପରି ପାନ୍ତୁଆ ଠାରେ ହିଁ ମନ ଲାଖି ଯାଉଥିଲା । ଚୈତନ୍ୟ ଦେବଙ୍କ ଆଗମନ ପାଇଁ କି ବାଲିଦ୍ୱୀପକୁ ବଣିଜ କରିଯିବା ପାଇଁ ଏ ଯାତ୍ରାର ଉଦ୍‌ଭବ ହେଲା ସେ ବିଷୟରେ ପିଲାଦିନେ ମୁଣ୍ଡ ଖେଳେଇବା ପ୍ରଶ୍ନ ହିଁ ନ ଥିଲା । ପରିଣତ ବୟସରେ ମୁଁ ଯେତେବେଳେ ବ୍ରାହ୍ମଣଶାସନ ବୀର ନରସିଂହପୁରରେ ବୋଇତ ବନ୍ଦାଣର ମୁରୁଜ ପଡ଼ିବାର ଦେଖିଲି ବାଲିଯାତ୍ରା ବାବଦରେ ଗୋଟାଏ ନିଜସ୍ୱ ସିଦ୍ଧାନ୍ତରେ ଉପନୀତ ହେଲି । କାର୍ତ୍ତିକ ପୂର୍ଣ୍ଣିମା ପୂର୍ବଦିନ ବ୍ରାହ୍ମଣ ଶାସନର ଝିଅ ବୋହୂ ରାତି ଉଜାଗର ହୋଇ ବୋଇତ ବନ୍ଦାଣ ମୁରୁଜ ପକାନ୍ତି । ସେ ମୁରୁଜ କଥା କହେ । ବୋଇତ, ସାଧବ, ପୁରୋହିତ, ଗ୍ରହବିପ୍ର ଏପରିକି ଚକୁଳିଆ ପଣ୍ଡା ସୁଦ୍ଧା ସେ ମୁରୁଜରେ ବାଦ ପଡ଼ି ନ ଥିବ । ସେଥିରେ ପୁଣି ଗ୍ରହବିପ୍ରଙ୍କ ଚୂଟିଟା ଯଦି ହାତେ ଲମ୍ବ, ପୁରୋହିତଙ୍କ ଦୁଇ ଗୋଡ଼ ଗୋଦର । ବୋଇତରେ ବୋଝେଇ ହେଉଥିବା ପଣ୍ୟଦ୍ରବ୍ୟ ମଧ୍ୟ ସେହି ମୁରୁଜରେ ଚିତ୍ରିତ ହୋଇଥିବ । ମଣିଷର ହାତ ଆଙ୍ଗୁଳି କି ଅସାଧ ସାଧନ କରିପାରେ ତାହାର ଆଭାସ ବୋଇତ ବନ୍ଦାଣ ମୁରୁଜ ଦେଖିଲେ କଳି ହୁଏ ।

ସେହି ମୁରୁଜ ଦେଖି ମୋର ମନେ ହେଲା ଯେ ଓଡ଼ିଶାର ପାଣିପାଗରେ କାର୍ତ୍ତିକମାସ ଅମାବାସ୍ୟା ଯାଏ ଝଡ଼ ତୋଫାନର ସମ୍ଭାବନା ଥିବାରୁ କାର୍ତ୍ତିକର ଶେଷ ଆଡ଼କୁ ଓଡ଼ିଆ ସାଧବ ସମୁଦ୍ରରେ ବୋଇତ ମେଲି ଦେଉଥିଲା । ଆଗ ଜମ୍ବୁ ଅଂଚଳ ପରି ଜାଭା, ବାଲି ଆଦି ଦ୍ୱୀପର ମାଟିରେ ହାଣ୍ଡି ଗଢ଼ି ହୁଏ ନାହିଁ । ମାଟି ହାଣ୍ଡି ଓଡ଼ିଶାରୁ ରପ୍ତାନି ହେବା କଥା ଫକୀର ମୋହନ ମଧ୍ୟ ଲେଖିଛନ୍ତି । ବୋଇତମାନଙ୍କରେ ପଣ୍ୟଦ୍ରବ୍ୟ ବୋଝେଇ ହୋଇ ସାରିବା ପରେ ଯାହା ବଳୁଥିଲା ସେହିଗୁଡ଼ିକ ବୋଧହୁଏ ବାଲି ଯାତ୍ରା ପଡ଼ିଆରେ ବିକ୍ରୀ ଖରିଦ ହେଉଥିଲା ।

ପୁଣି କାର୍ତ୍ତିକ ମାସ ଅମାବାସ୍ୟା ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଆକାଶ-ଦ୍ୱୀପ ବସେ । ଗୋଟିଏ ମାଟି ହାଣ୍ଡି ଦେହରେ ଛୋଟ ଛୋଟ କଣା କରି ତା ଭିତରେ ଘିଅ ଦୀପ ରଖି ପଲମ ଘୋଡ଼େଇ ଶିକାରେ ଥୋଇ ପତାକା ଉତ୍ତୋଳନ ପଦ୍ଧତିରେ ହାଣ୍ଡିଟିକୁ ଗୋଟିଏ ଉଚ୍ଚ ବାଉଁଶ ଅଗଯାଏ ଟେକି ନେଇ ଦଉଡ଼ି ବାନ୍ଧି ଦିଆଯାଏ । ମୋ ମାଆ କାର୍ତ୍ତିକ ମାସରେ ଆକାଶ ଦୀପ ଉଠି ସାରିଲେ ହବିଷ୍ୟାନ୍ନ ଗ୍ରହଣ କରୁଥିଲା । ମୁଁ ଭାବୁଥିଲି ଏଇଟା ସ୍ୱର୍ଗରେ ସ୍ଥାନ ସଂରକ୍ଷଣ ପାଇଁ ଆଗତୁରା ଟିକେଟ କିଣା ବ୍ୟାପାର । କିନ୍ତୁ ମୋ ଝିଆରୀ ମାଧବୀ ଯେତେବେଳେ ଜଳଯାନରେ ଜାପାନ୍ ଗଲା ମୋ ଭାଇ ତାକୁ ବିଦାୟ ଦେବାକୁ

ଯାଇଥିଲେ । ଜାହାଜ ଛାଡ଼ିବା ପୂର୍ବରୁ ଗୋଟାଏ ଲମ୍ବା ଫିତାର ଗୋଟାଏ ମୁଣ୍ଡ ଜାହାଜରେ ଯାଉଥିବା ଝିଅାରୀ ହାତରେ ଆଉ ଗୋଟାଏ ମୁଣ୍ଡ ଭାଇଙ୍କ ହାତରେ ଧରେଇ ଦିଆହେଲା । ଜାହାଜ କ୍ରମେ ଦୂରକୁ ଚାଲିବାରୁ ଫିତାଟା ପଟ୍ କରି ଛିଣ୍ଡିଗଲା । ବେତାରରେ ଝିଅର କଣ୍ଠସ୍ୱର ଶୁଭିଲା –'ବା ମୁଁ ଯାଉଛି' ।

ସାତ ସମୁଦ୍ର ତେର ନଈ ପାରି ହୋଇ ଓଡ଼ିଆ ସାଧବ ଯାଉଥିଲା ବଣିଜ କରି । ଓଡ଼ିଆଣୀ ମନରେ କେତେ ଆଶଙ୍କା କେତେ ଉଦ୍‌ବେଗ ! ଚଉରା ପାଖରେ ଦୂରପଥ ଯାତ୍ରୀର ଶୁଭ ମନାସି ଜୁହାର ହୋଇ ସେ ଜାଳିଦିଏ ଆକାଶଦୀପ । ଦୂରରୁ ବାପଭାଇ ସେହି ଜଳୁଥିବା ଆଲୁଅକୁ ଦେଖି ଗାଁକୁ ଠାବ କରିବେ – କାହା ମୁହଁଟି କାହା ଆଖି ଆଗରେ ଭାସି ଉଠିବ କିଏ ଜାଣେ ?

ମହାନଦୀ କାଠଯୋଡ଼ି ମଝିରେ ପଣତ ମେଲେଇ ଆମକୁ ଆଶ୍ରୟ ଦେଇଥିବା କଟକ ସହରଟିରେ କଲିକତା ପରି ଚିଡ଼ିଆଖାନା ନ ଥିଲା କି ବମ୍ବେ ସହର ପରି ମାଲାବାର ହିଲ୍ ନ ଥିଲା କି ନାହିଁ । ତଥାପି ସେ ସହରର ଛୋଟ ଛୋଟ ଉତ୍ସବ ଛୋଟିଆ ଛୋଟିଆ ଘଟଣା ମନକୁ ମୋହି ନିଏ । ବଡ଼ଲୋକ ଘର ମାଆ ତା ପୁଅକୁ ଯେତେ ସ୍ନେହ କରେ ଗରିବ ଘର ମାଆ ତା ପୁଅକୁ କଣ ଊଣା ସ୍ନେହ କରେ କି ? ଅଭିବ୍ୟକ୍ତିରେ ଫରକ ଥାଇପାରେ ମାତ୍ର ଅନ୍ତରରେ ଦୁହିଁଙ୍କ ହୃଦୟରେ ଏକା ବାତ୍ସଲ୍ୟ ମମତା ।

କଟକର କାଠଯୋଡ଼ି ବନ୍ଧ, ନଈକୂଳରେ ବରଗଛରେ ବର ଓହଳ, ନଈ ସେପାରିରୁ ରାତିରେ ବରଫଳ ଖାଇବାକୁ ବିଲୁଆ ଏପାରିକି ଆସି ପହରକୁ ପହର ଭୁକନ୍ତି, କମିଶନ୍‌ର ସାହେବଙ୍କ ହାତୀ ବରଡ଼ାଳ ଆଣିବାକୁ ନିତି ହାତୀଗଡ଼ା ଘାଟ ବାଟେ ସେପାରିକୁ ଯାଏ । ତ୍ରିଗୁଣା ବାବୁଙ୍କ ଅବାଗିଆ କାଳିଆ ଘୋଡ଼ାଟା ମୁହଁ ବଙ୍କେଇ ବଙ୍କେଇ ଚାଲେ – ସେଥିପାଇଁ କଟକରେ କୌଣସି ପିଲା ଅବୁଝା ହେଲେ ଘରେ କହନ୍ତି ସେଇଟା ତ୍ରିଗୁଣା ବାବୁ ଘୋଡ଼ା ପରି ହେଉଛି – ଭଗତ ଘର ଦୋଳିରେ କାକତୁଆ ସାଂଗକୁ ଦିଆଲିରେ ଫୁଟବଲ୍ ପରି ଭଗତଘର ଲଡୁ – ଆମ କିଲଟରିରୁ ଲାଲବାଗ ଯାଏ ଲାଲ୍‌ବାଗ୍ ଦେଉଡ଼ି, ବିଡ଼ାନାସୀରେ ଡଙ୍ଗାରେ ବସି ଅଣ୍ଡିଆ କୁମ୍ଭୀର ଦେଖିଦେଖିକା ଧବଳେଶ୍ୱର-ଯାତ୍ରା ସାଂଗକୁ କଣ୍ଟେଇ କୋଳି ଭୂଇଁବର କୋଳିର ସୁଆଦ, ଚଇତ ମାସରେ ଚଇତି ଘୋଡ଼ା, ବୈଶାଖରେ ଚନ୍ଦନ ଯାତ, ଫଗୁଣରେ କଟକୀ ହୁରୀ ମାଘରେ ଅଗିଜଳା ପୂନେଇ – କଟକ ପିଲା କାଠି ବାଡ଼େଇ ବାଡ଼େଇ ମାଗଣ କରନ୍ତି – ଓଡ଼ିଆ ବାବୁ! ପଇସା ଦେବୁ, ପଇସା ନ ଦେଲେ ସୁକି ଦେବୁ, ସୁକି ନ ଦେଲେ ଅଧୁଲି ଦେବୁ, ଅଧୁଲି

ନ ଦେଲେ ରୂପିଆ ଦେବୁ, ରୂପିଆ ନ ଦେଲେ ମାଡ଼ ଖାଇବୁ – ପୁଣି ମହରମ୍‌ରେ ଯୋଉ ବାଘ ନାଚ ! ଦେଖିଲେ ଛାତି ଧଡ଼ ଧଡ଼ ହୁଏ । ତାଜିଆ ବାହାରେ ବନାଟି ବୁଲେ ବାଡ଼ି ଖେଳ ହୁଏ । ପୁଣି କାଠଯୋଡ଼ି କୂଳର ସେ ସୀତାରାମ ରାଧେଶ୍ୟାମ ବାବାଜି ? ରାଧେଶ୍ୟାମ ବାବାଜୀଙ୍କୁ ସୀତାରାମ କହିଲେ ସେ ଫୁରକୁଟି ପରି ଡ଼େଇଁବେ । ସୀତାରାମ ବାବାଜୀଙ୍କୁ ରାଧେଶ୍ୟାମ କହିଲେ ସେ ମୁରକି ହସା ଦେବେ । ସେ ଶୁକୁଟା ତାଙ୍କର ଛେଳି ଦାଢ଼ି । ରାଧେଶ୍ୟାମ ବାବାଜୀ ମୋଟାତାଜା ତାଙ୍କର ବହଳ ଦାଢ଼ି ।

ଟଙ୍କା ଗାଡ଼ି ଆସିଲା, ଟଙ୍ଗା ଗାଡ଼ି ଆସିଲା, ପିଲାଙ୍କ ପାଟି ଶୁଭେ । ଆମେ ପଦାକୁ ବାହାରି ଆସୁ । ଆନନ୍ଦମଠ ବହିରେ ଯେପରି ବର୍ଣ୍ଣନା ଅଛି ଠିକ୍ ସେହିପରି ବଳଦଗାଡ଼ିରେ ବୋଝେଇ ହୋଇ ଟଙ୍କାଗାଡ଼ି କଚେରୀ ଆଡୁ ପୁରୀଘାଟ ଆଡ଼କୁ ଯାଏ । ଗାଡ଼ି ଚାରିପାଖେ ବନ୍ଧୁକଧାରୀ ପୁଲିଶ ଚାଲିଥାନ୍ତି ।

ସେହିପରି ଡ଼ାକ ନେଇକରି ଯାଏ ଧାଉଡ଼ିଆ । ଗୋଟାଏ ବାଡ଼ିରେ ଲୁହା ମଲ ପଶି ଝମର ଝମର ଶବ୍ଦ କରେ । ଧାଉଡ଼ିଆ ଗୀତ ବୋଲି ବୋଲି ଡ଼ାକମୁଣା ଧରି ଧାଇଁ ଧାଇଁ ଚାଲେ । ତା ମଲର ଝମର ଝମର ଶବ୍ଦରେ ଆମର ନିଦ ଭାଙ୍ଗିଯାଏ । ଏସବୁ ଛୋଟିଆ ଛୋଟିଆ କଥା ପିଲାଦିନେ ମନକୁ ଚହଲେଇ ଦିଏ । ସେ ଡ଼ାକବାଲା ଯାଉଛି କୁଆଡ଼େ ? ତାକୁ ବାଘ ଖାଇଯିବ ନାହିଁ ତ ? ନୀଳା ଗୋପାଳୁଣୀ ଝିଅାରୀକୁ ତ ବାଘ ଖାଇଗଲା । ଖରାଦିନ ସମସ୍ତେ ଅଗଣାରେ ଶୋଇଛନ୍ତି ନୀଳାର ଝିଅାରୀକୁ ବାଘ ଧରିଲା । ସେ କେତୀନାନୀ କେତୀନାନୀ ଡ଼ାକୁ ଡ଼ାକୁ ବାଘ ତା ତଣ୍ଟି ଚିପି ଦେଲାରୁ 'କେଁ' ଶବ୍ଦ ଶୁଭିଲା । କେତେ ରାତିରେ ନିଦ ଭାଙ୍ଗିଗଲେ ମନେ ପଡ଼େ କେତୀନାନୀ ! କେତୀନାନୀ ! କେଁ ।

କଟକର ନାଲି ମାଙ୍କଡ଼ା ପଥର ସଡ଼କ ଆଉ ନାହିଁ । ସଡ଼କ କଡ଼ର କିରାସିନୀ ବତି ଜାଳିବା ଖୁଣ୍ଟ ମଧ୍ୟ ନାହିଁ । ବାଲୁବଜାରର ପଣ୍ଡିତ ଆକୁଳ ମିଶ୍ର କାବ୍ୟତୀର୍ଥଙ୍କ ଏକମାତ୍ର ବହି ଦୋକାନ ନାହିଁ କି ଦୋକାନରେ ବାଘଛାଲ ପକେଇ ବସିଥିବା ଅକ୍ଷୟ ଚକ୍ରବର୍ତ୍ତୀ ମଧ୍ୟ ନାହାନ୍ତି । ଏକମାତ୍ର ଚକଚକିଆ ବିଲିମୋରିଆ ଦୋକାନ ଏବେ ଆଉ ଆଖିକୁ ଟାଣୁ ନାହିଁ । ପିଲାଦିନେ ମିଲ୍କ ଅଫ କ୍ୟାରାମେଲ୍ ଟଫି ଚକୋଲେଟ୍ ତ ସେଇଠି ମିଳୁଥିଲା । ପଛରେ ହେଲା କୋହିନୁର ଷ୍ଟୋର, ଦୁଲଭ ଦୋକାନ ଓ ମସ୍ତାନ୍ ଦୋକାନ ।

ସେହିପରି କଟକରେ ଏବେ କେତେ ଖବର କାଗଜ, କେତେ ମାସିକ ପତ୍ରିକା । ଉତ୍କଳଦୀପିକା ଓ ସାପ୍ତାହିକ ସମାଜ ଥିଲା ଖବର ଜାଣିବାର ମାଧ୍ୟମ । ମୁକୁର ଓ ଉତ୍କଳ ସାହିତ୍ୟ ଥିଲା ମାସିକ ପତ୍ରିକା । ସେହି ବାଳୁତ ବୟସରେ 'ବାସନ୍ତୀ' ଉପନ୍ୟାସ ପଢ଼ିବା

ପାଇଁ ଉତ୍କଳ ସାହିତ୍ୟକୁ ଚାହିଁ ରହିଥାଏ । ଅନ୍ନଦାଶଙ୍କର ରାୟ ଦାଦାର ସାଂଗ । ଉତ୍କଳ ସାହିତ୍ୟରେ ତାଙ୍କ କବିତା ବାହାରେ । ପରୀ ମହଲର କବିତା ବୋଲି ତାଙ୍କୁ ଚିଡ଼େଇବାକୁ ଚେଷ୍ଟା କରୁ । ତାଙ୍କ ହସ ଲିଭେ ନାହିଁ ।

ଆମ ରେଭେନ୍ସା କଲେଜ୍ ! ଆମେ କହୁ ଫୁଲ୍ ଅଫ୍ ନଲେଜ୍ । ତାର ଶୂନ୍ ଛାତ ତା ବଟାନୀ ଡ଼ିପାର୍ଟମେଣ୍ଟ, ତା କନିକା ଲାଇବ୍ରେରୀ ପିଲା ଆଖିରେ ବହୁତ ବଡ଼ ବହୁତ ସୁନ୍ଦର । ଆଜିକାଲି ପ୍ରତି ସାହିରେ ସ୍କୁଲ । ରେଭେନ୍ସା କଲେଜିଏଟ୍, ମିଶନ୍ ଭିକ୍ଟୋରିଆ, ପ୍ୟାରିମୋହନ, ମୋସଲେମ ମେସିନାରୀ – ଏତିକି ତ ସ୍କୁଲ ଥିଲା । ବାଳିକା ବିଦ୍ୟାଳୟ ବୋଇଲେ ରେଭେନ୍ସା ଗାର୍ଲ ସ୍କୁଲ ଦେଖତେ ବଡ଼ ବିଉଟିଫୁଲ ।

ଏଇ କଟକ । ଏଠି ବିହାରୀ ଚୋର ଚୋରୀ କରୁଥିଲା । ମଶାମାଛି ଭଣଭଣ ହେଉଥିଲେ, ପାଞ୍ଚ ଆଇନକୁ ଅମାନ୍ୟ କରି ଲୋକେ କାଠଯୋଡ଼ି ଶଯ୍ୟାକୁ ଶୌଚାଗାର କରୁଥିଲେ; କଟକର ଚିନି କଣ୍ଢେଇ, ତିଲୁଆ ଓ ବରାଗୁଲଗୁଲା ବମ୍ବେ, କଲିକତା ଠାରୁ କେତେ ନିକୃଷ୍ଟ ! ତଥାପି କଟକୀ କଟକକୁ ନଗରୀରାଣୀ ମନେ କରେ । କଟକର 'ନଈପାଣି' ତାର ସ୍ୱର୍ଗର ମନ୍ଦାକିନୀ ।

କଟକୀ ପିଲାଙ୍କର ହକି କ୍ରିକେଟ ହେଉଛି – ଗୁଡ଼ି, ଲଟୁ । ଋତୁ ଅନୁସାରେ କଟକୀ ପିଲାଏ କଟକ ସଡ଼କରେ ଗୁଡ଼ି ଖେଳିବେ । ଘରେ ବସି ଶୁଣିବ ପିଲାଙ୍କ ପାଟି – 'ଦୋନାଲ୍' 'ଦେଦିୟା'ଚାରମଲ୍ 'ନେହି ଦିଆ' । ସେହିପରି ଶୀତ ଦିନଟା ଗୁଡ଼ି ଉଡ଼ା ମୌସୁମ । ଗୁଡ଼ିରେ ଗୁଡ଼ିରେ ପେଁଚ କଟାକଟି ହେବ । ହଠାତ୍ ଶୁଣାଯିବ । 'ଉକାଟା' ଅର୍ଥାତ୍ ଗୁଡ଼ି କଟିଗଲା । କେତେ ପ୍ରକାର ଗୁଡ଼ି ! ଲଟକମାଣୀ, କଡ଼କମାଣି, ବେଙ୍ଗ ପାଟିଆ, ଚିଡ଼ିଆ ରାଣୀ । ଗୁଡ଼ିର ପରିଭାଷା ହିଁ ଅଲଗା – ଗୁଡ଼ି ଗୋତ୍ ଖାଉଛି, ଗୁଡ଼ି ଘାଲେଇଛି । ମାଞ୍ଜା ମଧ କେତେ ପ୍ରକାର ।

କଟକର ପାଟୁଆ ନାଚ, ଘଣ୍ଟପାଟୁଆଙ୍କ ରଣପା ବନ୍ଧା ଚାଲି । କେଳାକେଲୁଣୀଙ୍କ ବାଉଁଶରାଣୀ, ଭାନୁମତୀ କୁହୁକ, ସୋମନାଥ ମହାପାତ୍ରଙ୍କ ଗୋଟିପୁଅ ନାଚ, ମୋହନ ଗୋସେଇଁ ଥିଏଟର, ଭ୍ରମରବର ପାଲାରେ ପଛ ଗାହାଣଙ୍କ ଝମର ଝମର ଝାଞ୍ଜ ପିଟା, ମ୍ୟୁନିସିପାଲଟି ପଡ଼ିଆରେ କାର୍ଲିକର ସର୍କସ, ବାଞ୍ଛା ଗୁଡ଼ିଆ ଦୋକାନ ରସଗୋଲା, ଗୋପାଳଜୀଙ୍କ ଭୋଗ, ଦିଆଲୀରେ ଚିନି କଣ୍ଢେଇ ସର୍ବୋପରି ଆମ କଟକୀ ମଶା କଣ ଉଣା ଚିତ୍ତାକର୍ଷକ ଥିଲା !

ଏଇ କଟକକୁ ଛାଡ଼ି ଆମେ ଅଲକାଶ୍ରମରେ ରହିଲୁ ସ୍ୱାଧୀନତା ଆନ୍ଦୋଳନର ପୂର୍ବ ପ୍ରସ୍ତୁତି ପାଇଁ । ସତୀଶଚନ୍ଦ୍ର ଦାସଗୁପ୍ତ, ବାପା, ପଡ଼ିଆରୀ ମହାଶୟ ରଣହତା ଓ ଆଉ କେତେ ଗାଁରେ ଗଠନମୂଳକ କାମ ଆରମ୍ଭ କଲେ । ଆମେ କିଛି ବୁଝୁ ନାହିଁ । ବାପା ରାତିରେ ଗାନ୍ଧିଜୀଙ୍କ ଦ୍ୱାରା ସଂକଳିତ ୟଙ୍ଗ ଇଣ୍ଡିଆ ପଢ଼ି ବୋଉକୁ ସବୁକଥା ବୁଝାନ୍ତି । ବୋଉ ଓ୍ୟାକିବ୍‌ହାଲ୍ ଥାଏ । ଦାଦାଖୁଡ଼ି ତ ଅଣଖିଆରେ ଥାନ୍ତି । ୧୯୨୯ ଡ଼ିସେମ୍ବର ମାସ ଆସିଗଲା । କଲିକତା କଂଗ୍ରେସରେ ଗାନ୍ଧିଜୀ ବ୍ରିଟୀଶ ସରକାରଙ୍କୁ ବର୍ଷେ କଣ୍ଟ ଦେଇଥିଲେ । ବର୍ଷକ ମଧ୍ୟରେ ଔପନିବେଶିକ ସ୍ୱାୟତ୍ତ ଶାସନ ନ ଦେଲେ ପୂର୍ଣ୍ଣ ସ୍ୱରାଜ୍ୟ ପାଇଁ ଲଢ଼େଇ ଅବଶ୍ୟମ୍ଭାବୀ । କଣ୍ଟ ପୂରିଲା । ଡ଼ିସେମ୍ବର ୩୧ ତାରିଖ ରାତି ବାରଟା ବେଳେ କଂଗ୍ରେସ ସଭାପତି ପଣ୍ଡିତ ନେହେରୁ ରାବୀ ନଈକୂଳରେ ପତାକା ଉତ୍ତୋଳନ କରି ପୂର୍ଣ୍ଣ ସ୍ୱରାଜ ଘୋଷଣା କଲେ ।

ବାରବର୍ଷ ବୟସରେ ମୋର ବାଲ୍ୟକାଳ ସରିଗଲା । ୧୯୩୦ ମସିହା ଜାନୁଆରୀ ଛବିଶ ତାରିଖରେ ପୂର୍ଣ୍ଣ ସ୍ୱରାଜ୍ୟର ଶପଥ ନେଲୁ – ଏଣିକି ଇଷ୍ଟ ମନ୍ତ୍ର ହେଲା ଲୋକମାନ୍ୟ ତିଲକ ଦେଇ ଯାଇଥିବା ମନ୍ତ୍ରଟି ''Swaraj is my birth right and I must have it'' ସ୍ୱରାଜ୍ୟ ମୋର ଜନ୍ମସିଦ୍ଧ ଅଧିକାର ଏବଂ ତାହା ମୁଁ ନିଶ୍ଚୟ ହାସଲ କରିବି । ''

ପ୍ରାଦେଶିକ କଂଗ୍ରେସ କମିଟି ଓଡ଼ିଶାରେ ଲବଣ ସତ୍ୟାଗ୍ରହ ପରିଚାଳନା କରିବାର ଦାୟିତ୍ୱ ବାପାଙ୍କ ଉପରେ ଦେଲେ । ଲବଣ ସତ୍ୟାଗ୍ରହ ଆରମ୍ଭ ହେବା ପୂର୍ବରୁ ଆମ କାଠଯୋଡ଼ି କୂଳ ଘରଟା ସତ୍ୟାଗ୍ରହୀ ଶିବିର ପାଲଟି ଗଲା । ୨୬ ଜାନୁଆରୀର ଶପଥ ଗ୍ରହଣ କରିବା ପରେ ଆମେ ପୁଣି ଅଲକାଶ୍ରମକୁ ଫେରିଗଲୁ । ବାପା ତ ଚରକୀ ପରି ବୁଲୁଥାନ୍ତି । ବାପାବୋଉ କ'ଣ ବିଚାର କରି ଠିକ୍ କଲେ ଯେ ସତ୍ୟାଗ୍ରହୀମାନଙ୍କ ସ୍ତ୍ରୀମାନେ ଆସି ଅଲକାଶ୍ରମରେ ରହିବେ । ତଦନୁସାରେ ଅନ୍ତର୍ଯାମୀ ପଣ୍ଡାଙ୍କ ସ୍ତ୍ରୀ ଶୋଭା ଅପା, ବାଲେଶ୍ୱରର ବିଶ୍ୱନାଥ ହୋତାଙ୍କ ସ୍ତ୍ରୀ ପ୍ରଫୁଲ୍ଲ ଅପା, ପୁରୀର ସତ୍ୟବାଦୀ ନନ୍ଦଙ୍କ ସ୍ତ୍ରୀ ଲକ୍ଷ୍ମୀ ଅପା ଓ ଲାଲବିହାରୀ ଦାସଙ୍କ ସ୍ତ୍ରୀ ଗୁଣମଞ୍ଜରୀ ଅପା ଆସି ଅଲକାଶ୍ରମରେ ରହିଲେ । ବୋଉ ସତ୍ୟାଗ୍ରହରେ ଯୋଗ ଦେଇ ଏଣେ ତେଣେ ବୁଲିବାରୁ ସେମାନେ ସ୍ୱସ୍ଥାନକୁ ଫେରିଗଲେ ।

୬ ଏପ୍ରିଲ, ୧୯୩୦ ମସିହାରେ ସତ୍ୟାଗ୍ରହୀମାନେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ପାଇଁ ଆମ କାଠଯୋଡ଼ି କୂଳ ଘରୁ ଅନୁକୂଳ କଲେ । ସେହି ସମାରୋହ ଦେଖିବା ପାଇଁ ଆମେ କଟକ ଆସି ଦେଖିଲୁ ଆମ ଘର ସରଗରମ୍ । ଯାତ୍ରାର ପୂର୍ବଦିନ ରାତିରେ ଆଚାର୍ଯ୍ୟ ମହାଶୟ ଓ ଅନ୍ୟମାନେ ଆସି ଆମଘରେ ରହିଥାନ୍ତି । ପ୍ରାତଃ ପ୍ରାର୍ଥନାରେ

ପୁରୀର ରଘୁନାଥ ବାବୁ ଗୀତା ପାଠ କଲେ । -

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ

ନ ଚୈନଂ କ୍ଳେଦୟୋନ୍ତାପ ନ ଶୋଷୟତି ମାରୁତଃ

ଦୀର୍ଘ ଋଜୁ ଦେହ -ତପ୍ତ କାଞ୍ଚନ ବର୍ଣ୍ଣ- ସମଂଶିରୋକାୟ ଗ୍ରୀବ ହୋଇ ରଘୁବାବୁ ଗୀତାପାଠ କରୁଥାନ୍ତି । ଅକାରଣରେ ଛାତିରେ କୋହ ଉଠିଲା ।

ଆଚାର୍ଯ୍ୟ ମହାଶୟଙ୍କ ଶ୍ରୀଧର ସ୍ୱାମୀ ଭାଷ୍ୟର ଅନୁବାଦ ସମ୍ବଳିତ ଗୀତା ଘରର ଗୋଟିଏ କଣରେ ଗଦା ହୋଇଥାଏ । ମୁଁ ଖଣ୍ଡିଏ ଗୀତା ନେଇ ପଢ଼ିବାକୁ ଚେଷ୍ଟାକଲି ।

ଆମ ପରିବାରର ପରିସର ପରିବ୍ୟାପ୍ତ ହୋଇ ଗଲା । କେବଳ ମା'ର ଖାଦ୍ୟପେୟ ଅଲଗା ରନ୍ଧା ହେଉଥାଏ । ଆମେ ସମସ୍ତେ ଶିବିରାର୍ଥୀଙ୍କ ସାଙ୍ଗରେ ଖିଆପିଆ କଲୁ । ନୂଆ ନୂଆ ସତ୍ୟାଗ୍ରହୀ ଆସୁଥାନ୍ତି, ଗହଳି ବଢ଼ି ଚାଲିଥାଏ । ୬ ଏପ୍ରିଲ୍‌ରେ ସତ୍ୟାଗ୍ରହୀମାନେ ଅନୁକୂଳ କରିଯିବା ପରେ ଆମେ ଅଳକାଶ୍ରମ ଫେରି ଆସିଲୁ । ଏଣିକି ଗ୍ରାମେ ଗ୍ରାମେ ସଭା କରି ସତ୍ୟାଗ୍ରହ ବାର୍ତ୍ତା ପ୍ରଚାର କରିବା ହେଲା ମୁଖ୍ୟ କାମ । ଚାଟରାର ବ୍ରହ୍ମାନନ୍ଦ ଚୌଧୁରୀ ଜଣେ ମୁଖ୍ୟ ବକ୍ତା ଥିଲେ । ଗାଁ ଲୋକେ କୀର୍ତ୍ତନ କଲେ

''ଗାନ୍ଧୀ ଆମାର୍ ଗୌର ହୟେ ଆବାର୍ ଏସେଛେ ରେ

ଭାରତମାତା ମଲିନ୍ ଦେଖେ ଆବାର୍ ଏସେଛେ ରେ ''

ଗାୟକ ହାରମୋନିୟମ୍ ବଜାଇ ସଭାରେ ଉଦ୍‌ବୋଧନ ସଂଗୀତ ବୋଲିଲେ-

ଦିନେ ଏହି ମାଟି ଉଲୁସି ଉଠିବ ଫୁଟିବ କନକ କଇଁ

ରାଇଜେ ରାଇଜେ ଡ଼ିଙ୍ଗୁରା ବାଜିବ ସେ ଦୃଶ୍ୟ ଦେଖିବା ପାଇଁ ।

କଟକରେ ବାପା ସାଧାରଣ ସଭାରେ ୧୪୪ ଧାରା ଅମାନ୍ୟ କରିଥିବା ହେତୁ ଇଞ୍ଚୁଡ଼ିଯିବା ବାଟରେ ତାଙ୍କୁ କୃଷ୍ଣନପୁର ଠାରେ ଗିରଫ କରାଗଲା ଏବଂ ବିଚାରରେ ସାତଦିନ ଜେଲ ଓ ପଚାଶ ଟଙ୍କା ଜୋରିମାନା କରାଗଲା । ଜଗତ୍‌ସିଂହପୁରର ପୁଲିଶ କର୍ତ୍ତା ଜୋରିମାନା ଆଦାୟ କରିବାକୁ ଅଳକାଶ୍ରମକୁ ଆସିଲେ । ଏହି ପୁଲିଶକର୍ତ୍ତାଙ୍କୁ ଆମେ 'ସଦେଇ ନନା' ଡ଼ାକୁଥିଲୁ, ଅବଶ୍ୟ ତାଙ୍କ ଅନୁପସ୍ଥିତିରେ । ଅଳକାଶ୍ରମରେ ଆଶ୍ରମର ଗୋଟିଏ ଗାଇ ଓ ଆମର ଦୁଇଟି ଗାଇ ଥିଲେ । ଗୋପବାବୁଙ୍କ ଗାଇ କେଉଁ ଦୁଇଟା ତାହା ଜାଣିବାକୁ ସଦେଇ ନନା ବହୁ ଚେଷ୍ଟା କଲେ । ମାତ୍ର କେହି ଗାଇ ଚିହ୍ନେଇ ନ ଦେବାରୁ ସଦେଇ ନନା ଅଡୁଆରେ ପଡ଼ିଗଲେ ।

ବାଲେଶ୍ୱରର କୁଖ୍ୟାତ ପଲ୍ଲୀରୁ ଉଦ୍ଧାର କରାଯାଇଥିବା ଗୋଟିଏ ଛୋଟ ଝିଅ ଲକ୍ଷ୍ମୀ ଆମ ଘରେ ରହିଥିଲା । ସଦେଇ ନନା ତାକୁ ଆମ୍ଭ ତୋଟାକୁ ନେଇ ଯାଇ କୋଳରେ ବସାଇ ମିଠେଇ ଖୁଆଇ ତାଦ୍ୱାରା ଗାଈ ଚିହ୍ନଟ କରାଇ ଗାଈ ଦୁଇଟି ଥାନାକୁ ନେଇଗଲେ । ସେ ଗାଈ ନିଲାମ ପାଇଁ ଡ଼ିଙ୍ଗୁରା ଦିଆଗଲା । ସଦେଇ ନନାଙ୍କ ଭଗୀରଥ ପ୍ରଯତ୍ନ ସତ୍ତ୍ୱେ ଜଗତ୍‌ସିଂହପୁରରେ କେହି ସେ ଗାଈକୁ ନିଲାମ ଧରିଲେ ନାହିଁ । । ଗାଈ ଦୁଇଟି କୁଆଡ଼େ ଗଲେ କେଜାଣି ?

ବୋଉ ଖୁଡ଼ୀ ଇଞ୍ଚୁଡ଼ି ଯାଇ ଲବଣ ଆଇନ୍ ଅମାନ୍ୟ କରି ଆସି କୁଜଙ୍ଗରେ ଲବଣ ସତ୍ୟାଗ୍ରହ କରିବାକୁ ଗଲେ । ଉତ୍ତରା ଅଳକାଶ୍ରମରେ ମା ଘରେ ରହିଲା । ସାବିତ୍ରୀ ଅମାବାସ୍ୟା ବେଳକୁ ମୌସୁମୀ ବାୟୁ ପ୍ରବାହିତ ହେବାରୁ କୁଜଙ୍ଗରେ ଲୁଣମରା ବନ୍ଦ ହେଲା । ଆମେ ସମସ୍ତେ ଅଳକାଶ୍ରମରୁ ଡ଼େରା ଉଠେଇ କଟକ ଘରକୁ ଆସି ସତ୍ୟାଗ୍ରହୀଙ୍କ ମେଳରେ ରହିଲୁ । ଆମ ପରିବାରଟା ଏକ ଇହତ ଏକାନ୍ନବର୍ତ୍ତୀ ପରିବାରରେ ପରିଣତ ହୋଇଗଲା ।



# ବାର ନମ୍ବର ଉଆର୍ଡ୍

(୧୯୪୨ ସ୍ୱାଧୀନତା ଆନ୍ଦୋଳନ ସମୟରେ ଜେଲ୍ ଭୋଗିଥିବା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣାଙ୍କର ଜେଲ୍ ଡାୟରୀର କୀୟଦଂଶ)

ବାର ନମ୍ବର ଉଆର୍ଡ୍ । ଅତି ରହସ୍ୟମୟ, ବଡ଼ ଥାନ ସେ । ପୃଥିବୀ ଯେପରି ତା'ର ମାଧ୍ୟାକର୍ଷଣ ଶକ୍ତି ବଳରେ ଚରାଚରକୁ ନିଜ ଆଡ଼କୁ ଟାଣୁଛି, ବାର ନମ୍ବର ଉଆର୍ଡ ସେହିପରି ତାର ବିଚିତ୍ର ମନମୋହିନୀ ଶକ୍ତିରେ ଆମକୁ ଟାଣୁଥାଏ । ସେମିତି ସେ କହି ଲାଗିଥାଏ — ମୋ କୋଳକୁ ମୋ କୋଳକୁ ଆସ । ମୋ କୋଳକୁ ନଆସିଲେ ତୁମର ମାନମର୍ଯ୍ୟାଦା ରହିବ ନାହିଁ । ତୁମେ ଚିରଜୀବନ ଅପାଂକ୍ତେୟ ହୋଇ ରହିବ ।

ସେହି ବାର ନମ୍ବର ଉଆର୍ଡ୍ କୋଳରେ ପଶିବାର ସୌଭାଗ୍ୟ ମୋତେ ମିଳିଲା ୧୯୩୨ ମସିହା ମାର୍ଚ୍ଚ ୧୨ ତାରିଖ ରାତି ଏଗାରଟାରେ । ସେଦିନ ଦାଣ୍ଡିଯାତ୍ରା । ଅର୍ଥାତ୍ ୧୯୩୦ ମସିହାରେ ସେହି ମାସ ସେହି ତାରିଖରେ ଲବଣ ସତ୍ୟାଗ୍ରହ କରିବା ପାଇଁ ଗାନ୍ଧିଜୀ ଦାଣ୍ଡିଅଭିମୁଖେ ଯାତ୍ରା କରିଥିଲେ । ସେହି ଐତିହାସିକ ପଦଯାତ୍ରାର ସ୍ମୃତିରକ୍ଷା କରିବା ପାଇଁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ମୁଖ୍ୟ କର୍ମୀ ନୀଳମଣି ପ୍ରଧାନଙ୍କ ନିର୍ଦ୍ଦେଶରେ ବ୍ୟାସକବି ଫକୀର ମୋହନ ସେନାପତିଙ୍କ ଦୌହିତ୍ରୀ କରୁଣା ଓ ମୁଁ ବେଆଇନ୍ ଲୁଣ ବିକି ବାହାରିଲୁ । ବେଆଇନ୍ ଲୁଣ ବା contraband saltର ଅର୍ଥ ହେଲା ସରକାରଙ୍କ ଲବଣ ଆଇନ୍ ଅମାନ୍ୟ କରି ସତ୍ୟାଗ୍ରହୀମାନେ ଯେଉଁ ଲୁଣ ମାରି ନାନା ନିର୍ଯ୍ୟାତନା ସହୁଥିଲେ, ସେହି ଲୁଣ । ଜଗନ୍ନାଥ ମହାପ୍ରଭୁଙ୍କ ନିର୍ମ୍ମାଲ୍ୟ ପରି ସେ ଲୁଣକୁ ଛୋଟ ଛୋଟ ପୁଡ଼ିଆରେ ବାନ୍ଧି ମୁଣିରେ ପୂରେଇ ଆମେ କଟକ ସ୍ୱରାଜ ଆଶ୍ରମରୁ ବାହାରି ଭାଷାକୋଷ ଗଳିବାଟେ ନିମଚଉଡ଼ି-ବାଲୁବଜାର-ନୟାସଡ଼କର ଯାଏ ଲୁଣ ପୁଡ଼ିଆ ବିକି ବିକି ଚାଲିଲୁ । ନୟାସଡ଼କର ସ୍ୱରାଜ ମେଡ଼ିକାଲ ହଲ୍‌ରେ

ଲୁଣ ବିକିବାବେଳେ ସାଧାରଣ ପୋଷାକ ପିନ୍ଧିଥିବା ଜଣେ ଲୋକ ଆମକୁ ଲୁଣ ମାଗିଲେ । ଆନ୍ଦୋଳନକୁ ସମର୍ଥନ ଜଣାଇବା ଉଦ୍ଦେଶ୍ୟରେ ଲୋକେ ସେହି ଲୁଣ ପୁଡ଼ିଆକୁ ଆଠଣା ଟଙ୍କାଏ ଦେଇ କିଣୁଥାନ୍ତି ଏବଂ ବେଆଇନ୍ ଲୁଣ କିଣିବାଟା ମଧ୍ୟ ରାଜଦ୍ରୋହ ହୋଇଥିବାରୁ ଏହା କିଣିବା ଗୋଟାଏ ସାହସିକତାର କାର୍ଯ୍ୟ । ସେ ଲୋକ ଲୁଣ ମାଗିବାରୁ ଆମେ ଅତି ଆଗ୍ରହରେ ଲୁଣ ପୁଡ଼ିଆ ତାଙ୍କ ହାତକୁ ବଢ଼ାଇ ଦେବା ମାତ୍ରେ ପୁଲିସ ପୋଷାକ ପିନ୍ଧିଥିବା ଜଣେ ପୁଲିସ ବାହାରି 'ଆପଣ ଗିରଫ ହେଲେ' କହି ଆମ ଦୁହିଁଙ୍କୁ ଗିରଫ କଲେ । ସେତେବେଳକୁ ସେ ସ୍ଥାନରେ ଲୋକ ଜମା ହୋଇଗଲେଣି । ଆମେ ଲୁଣ ପୁଡ଼ିଆତକ ଲୋକଙ୍କ ଭିତରେ ତରବର ହୋଇ ବାଣ୍ଟିଦେଇ "ଭାରତମାତାକୀ ଜୟ" କହି ପୁଲିସଙ୍କ ପଛେ ପଛେ ଲାଲବାଗ ଥାନା ଆଡ଼କୁ ଚାଲିଲୁ । ଥାନାରେ ଇନ୍‌ସପେକ୍‌ଟରଙ୍କ ସ୍ଥାନରେ ଜଣେ ପୁଲିସ ଅଫିସର ଶ୍ରୀ ବିମଳ ଘୋଷ ବସିଥାନ୍ତି । ଚୌଧୁରୀ ବଜାରର କର୍ମବୀର ଗୌରୀଶଙ୍କର ରାୟଙ୍କ ପରିବାର ସହିତ ତାଙ୍କର ଘନିଷ୍ଠତା ଥିଲା । ସେହି ରାୟ ପରିବାରର ଝିଅ ଅଂଶୁମାଳୀ ଓରଫ୍ କ୍ଷମା ସେଦିନ ବିମଳବାବୁଙ୍କ ଘରେ ଥିଲା । କ୍ଷମା ଆମର ସାଙ୍ଗ । ତା' ଭାଇ ପ୍ୟାରୀବାବୁ ତ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇସାରିଥାନ୍ତି । ସେ ଆମ ସାଥିରେ ସଭା, ଶୋଭାଯାତ୍ରା, ପତାକା ଉତ୍ତୋଳନ ଆଦିରେ ଯୋଗ ଦେଉଥାଏ । ସ୍ୱେଚ୍ଛାସେବିକା ତାଲିମ୍ କେନ୍ଦ୍ରରେ ମଧ୍ୟ ତାଲିମ ନେଇଥାଏ । ଏ ସବୁ ତ ରାଜଦ୍ରୋହ ! କିନ୍ତୁ ତାହାର ବୟସ ଅଳ୍ପ ହୋଇଥିବାରୁ ତାକୁ ଗିରଫ କରାଯାଇ ନଥାଏ ।

ଆମ ଗିରଫ ଖବର ପାଇ କ୍ଷମା ଥାନାକୁ ଧାଇଁ ଆସିଲା । ଆମେ ଆମ ଲୁଣ ବିକ୍ରି ପଇସାତକ ତାହାରି ହାତରେ ନୀଳମଣି ବାବୁଙ୍କ ପାଖକୁ ପଠାଇଦେଲୁ । ବିମଳବାବୁ ଏ କାରବାର ଦେଖି ନ ଦେଖିଲା ପରି ରହିଥିଲେ ବୋଲି ପରେ କ୍ଷମାର ମା'ଙ୍କୁ କହିଥିଲେ । ଆମେ ଥାନାରେ ପହଞ୍ଚିଲା ବେଳକୁ ସଞ୍ଜବତୀ ଲାଗିଗଲାଣି । ଆମେ ବିନା ଉଆରେଣ୍ଟରେ ଧରା ହୋଇଥିବାରୁ ମାଜିଷ୍ଟ୍ରେଟଙ୍କ ପାଖରୁ ଗିରଫ ପରୁଆନା ଆଦି ଦୋରସ୍ତ କରି ଆଣୁ ଆଣୁ ରାତି ନଅଟାରୁ ଅଧିକ ହୋଇଗଲା । ତାପରେ ଆମକୁ ଗୋଟାଏ ଘୋଡ଼ାଗାଡ଼ିରେ ବସାଇ ଜଣେ ପୋଲିସ୍ ଅଫିସର ସାଙ୍ଗରେ କଟକ ଜେଲ୍‌କୁ ପଠାହେଲା ।

କଟକ ଜେଲ୍‌ର ଜେଲର୍ ଥାନ୍ତି ଧନପତି ବାବୁ । ସହକାରୀ ଜେଲର୍ ଥାନ୍ତି ବ୍ରଜେନ୍ ବାବୁ ଓ ଶମ୍ଭୁ ବାବୁ । ଶମ୍ଭୁ ବାବୁଙ୍କର କାଇଞ୍ଜରୀ ବାଘୁଆ ନିଶ । ସେଇ

ଆମକୁ ରାତି ଦଶଟାରେ ଜେଲ୍ ଫାଟକରେ ସମ୍ବର୍ଦ୍ଧନା ଜଣେଇଲେ । ଆମର ବଂଶ ପରିଚୟ, ଉଚ୍ଚତା, ଦେହର ରଙ୍ଗ, କେଶ ଓ ଆଖିଡ଼ୋଳାର ରଙ୍ଗ, ଦେହରେ କେଉଁଠି କି ଚିହ୍ନ ଅଛି, ପାଠ କେତେ ଆଦି ତଦାରଖ ହୋଇ ଟିପା ହେଲା । ଆମ ଜିନିଷ ଓ ଆମ ଦେହକୁ ମଧ୍ୟ ତଲାସିଲେ । ଶମ୍ଭୁବାବୁ ତ ତୀର୍ଥପଣ୍ଡା ପରି ବିଧିବିଧାନରେ ଲାଗିଥାଆନ୍ତି । ଆମ ମନ ଉଚ୍ଛନ୍ନ ହେଉଥାଏ ବାର ନମ୍ବର ଉଆର୍ଡ୍‌କୁ ଯିବାକୁ । ଦାଣ୍ଡି ଡୋରି ଲାଗି ଯାଇଥାଏ ।

ସ୍ୱାଗତ କାର୍ଯ୍ୟକ୍ରମ ସରିଲାରୁ ଜମାଦାରଜୀ ବୋଲାଉଥିବା ଜଣେ ମହିଳାଙ୍କୁ ଆମକୁ ବାର ନମ୍ବର ଉଆର୍ଡ୍‌କୁ ନେଇଯିବାକୁ ଆଦେଶ ଦିଆଗଲା । ତାଙ୍କ ନାଆଁ ଶ୍ରୀମତୀ ନଇମୀ । ଶାଢ଼ୀ ଉପରେ ଆପାଦଲମ୍ବିତ ନୀଳ ଆପ୍ରନ୍ ମଡ଼େଇ ସେହି ପାଞ୍ଚଫୁଟ ଆଠ ଇଞ୍ଚ ଦୀର୍ଘତା ବିଶିଷ୍ଟା କ୍ଷୀଣଦେହା କୃଷ୍ଣାଙ୍ଗୀ ମହିଳା ପରିବେଶ ଅନୁସାରେ 'ଫ୍ୟାସନେବ୍‌ଲ' ଦିଶୁଥାନ୍ତି । ତାଙ୍କ ପଛେ ପଛେ ଆମେ ବାର ନମ୍ବର ଉଆର୍ଡ୍‌କୁ ଚାଲିଲୁ । ଆମ ପଛରେ ଜଣେ ଜମାଦାର ଗୋଛାଏ ଚାବି ଝମକାଇ ଚାଲିଲେ ।

କଟକ ଜେଲ୍ ଭିତରେ ଜେଲ୍ ହେଲା ବାର ନମ୍ବର ଉଆର୍ଡ୍ । ଜେଲର୍ ସଂକ୍ରାମକ ରୋଗଗ୍ରସ୍ତ କଇଦୀଙ୍କୁ ଅଲଗା କରି ରଖିବା ପାଇଁ ସେ ଉଆର୍ଡ୍‌ଟି ତିଆରି ହୋଇଥିଲା । ସେଥିପାଇଁ ସେ ବଖରାଟିର ତିନିପଟେ ଆହୁରି ପରସ୍ତେ ପାଚେରୀ ବୁଲିଛି । ପାଚେରୀରେ ଗୋଟିଏ ପ୍ରବେଶଦ୍ୱାର । ବାର ନମ୍ବର ଉଆର୍ଡ୍‌କୁ ଏଗାର ନମ୍ବର ଉଆର୍ଡ୍ ଲାଗିଛି । ଦୁଇ ଉଆର୍ଡ୍ ମଝିରେ ପାଚେରୀ । ପାଚେରୀରେ କବାଟ ଅଛି ମାତ୍ର ସବୁବେଳେ ଚାବି ପଡ଼ିଥାଏ । ଏଗାର ନମ୍ବର ଉଆର୍ଡ୍‌ରେ ମହିଳା ଅପରାଧୀମାନେ ରହନ୍ତି ।

ବାର ନମ୍ବର ଉଆର୍ଡ୍‌ର ଏହି ବିଶେଷତ୍ୱ ଯୋଗୁ ୧୯୩୦ ମସିହାରେ ମହିଳା ରାଜନୈତିକ ବନ୍ଦୀଙ୍କୁ ଏହି ଉଆର୍ଡ୍‌ରେ ରଖାଗଲା । ଏହି ଉଦ୍‌ଘାଟନ ଉତ୍ସବର ପୁରୋଧା ହୋଇଥିଲେ ଶ୍ରୀମତୀ ମାଳତୀ ଚୌଧୁରୀ । ଏତେବଡ଼ ସମ୍ମାନ ହାସଲ କରିବା ପାଇଁ ସେ ଇଞ୍ଚୁଡ଼ି ଓ ଶ୍ରୀଜଙ୍ଗ ଯାଇ ରମାଦେବୀ ଓ କିରଣବାଳା ସେନ୍‌ଙ୍କ ସାଙ୍ଗରେ ଗାଁ ଗାଁ ବୁଲି ଲବଣ ଆଇନ୍ ଅମାନ୍ୟ କରି ଲୁଣ ରାନ୍ଧିଲେ । ମଦ ଦୋକାନ, ବିଲାତୀ ଲୁଗା ଦୋକାନରେ ପିକେଟିଂ କଲେ । ଗାଁଗଣ୍ଡାରେ ବୁଲି ସତ୍ୟାଗ୍ରହ ଚଳାଇବା ପାଇଁ ଧନଜନ ସଂଗ୍ରହ କଲେ । ଶେଷରେ ସ୍ୱାୟତ୍ତ ଶାସନ ସଂସ୍ଥାର କର୍ମକର୍ତ୍ତା ନିର୍ବାଚନରେ ଦେଶବାସୀଙ୍କୁ ଭୋଟ ନ ଦେବାକୁ ବୁଝାଇ କହିବାରୁ ସେ ସେପ୍‌ଟେମ୍ବର ୨୦, ୧୯୩୦ରେ ଗିରଫ

ହୋଇ ଆଗ ମହିଳା ଅପରାଧୀଙ୍କ ସଙ୍ଗରେ ରହିଲେ । ତା'ପରେ ତାଙ୍କୁ ଏ ଓଆର୍ଡ଼କୁ ଅଣାଗଲା । ଅବଶ୍ୟ ସରଳା ଦେବୀ ସେତେବେଳକୁ କାରାବରଣ କଲେଣି, କିନ୍ତୁ ସେ ବ୍ରହ୍ମପୁରରେ ଗିରଫ ହୋଇଥିବାରୁ ଏବଂ ଗଞ୍ଜାମ ସେତେବେଳେ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଅନ୍ତର୍ଗତ ଥିବାରୁ ତାଙ୍କୁ ଭେଲୋର ଜେଲ୍‌ରେ ରଖାଯାଇଥିଲା ।

ତାଙ୍କ ପରେ ଏ ଓଆର୍ଡ଼କୁ ଆସିଲେ ରମାଦେବୀ ଚୌଧୁରୀ ।

ସେ ମଧ୍ୟ ଲବଣ ସତ୍ୟାଗ୍ରହ ଆଦି କାର୍ଯ୍ୟକ୍ରମରେ ଯୋଗ ଦେବା ପରେ ଡାକ୍ତର ବ୍ରଜନାଥ ମିଶ୍ର ଗିରଫ ହେବା ପରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଦ ଗ୍ରହଣ କଲାରୁ ୧୯୩୦ ମସିହା ନଭେମ୍ବର ଆଠ ତାରିଖରେ ଏ ଓଆର୍ଡ଼କୁ ଆସିଲେ । ଆଉ ଗୋଟିଏ ଅଢ଼େଇ ବର୍ଷର ଶିଶୁ ମଧ୍ୟ ଏ ଓଆର୍ଡ଼ରେ ପ୍ରବେଶ କରିବାର ଅଧିକାର ପାଇଥିଲା । ସେ ହେଉଛି ମାଳତୀ ଚୌଧୁରୀଙ୍କ କନ୍ୟା ଉତ୍ତରା ।

୧୯୩୨ ମସିହାରେ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟରେ ବାର ନମ୍ବର ଓଆର୍ଡ଼କୁ ଓଡ଼ିଆଣୀଙ୍କ ସୁଅ ଛୁଟିଲା । ମହିଳା ସତ୍ୟାଗ୍ରହୀଙ୍କ ସଂଖ୍ୟା ଅଧିକ ହୋଇ ସ୍ଥାନ ନ କୁଳେଇବାରୁ ସେମାନଙ୍କୁ ହଜାରିବାଗ, ଭାଗଲପୁର ଜେଲକୁ ପଠାହେଲା । ଏହିରୂପେ ଓଆର୍ଡ଼ ଆମର ମୁକ୍ତି ମଣ୍ଡପରେ ପରିଣତ ହେଲା । ଏହାକୁ ଜେଲ୍ ଭିତରେ ଜେଲ୍ କହିବାର ଉଦ୍ଦେଶ୍ୟ ହେଉଛି ଏହି ଜେଲ୍‌ରେ ପୁରୁଷ ବନ୍ଦୀମାନଙ୍କର ଜେଲ୍ ବାହାରର ଦୁନିଆ ସାଙ୍ଗରେ କୌଣସି ସମ୍ପର୍କ ନ ଥାଏ ସତ୍ୟ ମାତ୍ର ଜେଲ୍ ଭିତରେ ଯେଉଁ ବିରାଟ ସଂସାର ଗଢ଼ି ଉଠିଛି, ସେଥିରେ ଥାଏ ସେମାନଙ୍କର ସ୍ୱଚ୍ଛନ୍ଦ ବିହାରର ଅଧିକାର । ଜେଲ୍ ଭିତରେ ଶହଶହ ଲୋକଙ୍କ ବସବାସ । ଜେଲ୍ ଅଫିସ୍, ଜେଲ୍ ଭଣ୍ଡାର, ଜେଲ୍ ଘଣାଘର, ଜେଲ୍ ବଗିଚା, ଜେଲ୍ ଡାକ୍ତରଖାନା ଆଦି ନାନା ବିଭାଗ ଜେଲ୍ ଭିତରେ ରହିଛି । ପୁରୁଷ କଇଦୀମାନେ ଏସବୁ ବିଭାଗକୁ ଯାଇପାରନ୍ତି । ସ୍ତ୍ରୀ କଇଦୀ ପର୍ଦ୍ଦାନଶିନ୍ ବେଗମ୍‌ଙ୍କ ପରି ଓଆର୍ଡ଼ ଓ ଓଆର୍ଡ଼କୁ ଲାଗିଥିବା ଅଗଣାରେ ଆବଦ୍ଧ ରହନ୍ତି । କେବଳ ନିଜର କେହି ଆତ୍ମୀୟ ଦେଖା କରିବାକୁ ଆସିଲେ ପ୍ରଧାନମନ୍ତ୍ରୀଙ୍କ ଗାଡ଼ି ଆଗରେ ପାଇଲଟ୍ ପଛରେ ପ୍ରୋଟେକ୍‌ସନ୍ ଚାଲିଥିଲା ଭଳି ଆଗରେ ଜମାଦାର ପଛରେ ଜମାଦାରିଣୀଙ୍କ ଗହଣରେ ସ୍ତ୍ରୀ କଇଦୀ ଜେଲ୍ ଅଫିସ୍‌କୁ ଯାଇପାରନ୍ତି ।

ପାଚେରୀରେ ଥିବା ଦ୍ୱାରର ଚାବି ଖୋଲି ଜମାଦାରିଣୀ ଆମକୁ ଓଆର୍ଡ଼ ଅଗଣା ଭିତରକୁ ନେବା ମଧ୍ୟରେ ଓଆର୍ଡ଼ ଭିତରେ ଚାବି ପଡ଼ିରହିଥିବା ବନ୍ଦିନୀମାନେ କଳରବ କରି ଉଠିଲେ । ରାତି ଅଧରେ ଓଆର୍ଡ଼ର କବାଟ ଫିଟିବା ଗୋଟାଏ ବଡ଼

ରୋମାନ୍‌ସ । ଜାନୁୟାରୀ ଛବିଶି, ମାର୍ଚ୍ଚ ବାର, ଏପ୍ରିଲ୍ ଛଅ ଆଦି ରାଷ୍ଟ୍ରୀୟ ଦିବସଗୁଡ଼ିକରେ ଜେଲ୍‌କୁ ନୂଆ ଅଭ୍ୟାଗତ ଆସିବେ ବୋଲି ପ୍ରତ୍ୟାଶା କରାଯାଇଥାଏ । ଉଆର୍ଡ଼ କବାଟ ଚାବି ଖୋଲୁ ନ ଖୋଲୁଣୁ ଭାରତମାତାକୀ ଜୟ, ଇନ୍‌କିଲାବ ଜିନ୍ଦାବାଦ ଆଦି ଜୟଘୋଷରେ ଉଆର୍ଡ଼ ଭିତର କମ୍ପି ଉଠିଲା । ଏତେଦିନେ ମୋର ବହୁବାଞ୍ଛିତ ତୀର୍ଥଭୂମିରେ ପ୍ରବେଶ କରିବାର ଅଧିକାର ମୁଁ ଚଉଦବର୍ଷ ଚାରିମାସ ବୟସରେ ହାସଲ କଲି ।

ଉଆର୍ଡ଼ରେ ପଶିଯିବା ମାତ୍ରେ ଚାଲିଲା ହୋ ହା । ଆମ ଦେହରେ ମୁକ୍ତ ପରିବେଶର ସୁଗନ୍ଧ । ଆଗ ସମସ୍ତେ ଆମକୁ ଆଉଁସି ପକେଇଲେ । ତାପରେ ଚାଲିଲା ଆନ୍ଦୋଳନ ବିଷୟରେ ଆଲୋଚନା । ନୂଆ ଭଉଣୀ କିଏ କିଏ ଆସି କାହା କାହା ଘରେ ଲୁଚି ରହିଛନ୍ତି, ଏପ୍ରିଲ୍ ଛଅକୁ କିଏ କିଏ ଆସିବେ, ବୁଲେଟିନ୍ କୋଉଠି ଛପା ହେଉଛି ଆଦି ନାନା କଥା ଗପିସାରି ଆମର ନୂତନ ଆବାସ ଆଡ଼କୁ ଦୃଷ୍ଟି ପକେଇଲି । ୧୯୩୨ ମସିହାରେ କଟକ ଜେଲ୍‌ରେ ବିଜୁଳୀ ଆଲୁଅ ନ ଥିଲା । କିରାସିନୀ ଲଣ୍ଠନଟିଏ ଜଳୁଥାଏ । ଘରଟାରେ ପ୍ରାୟ ୮ ଫୁଟ ଉଚ୍ଚ ଚାରିଫୁଟ ଓସାରର ବିରାଟ ବିରାଟ କବାଟ । ଗୋଟିଏ ପ୍ରବେଶ ପଥ । ଝରକା ଓ କବାଟରେ ମୋଟା ମୋଟା ଲୁହାଛଡ଼, କାଠପାଲା ଲାଗିନାହିଁ । ବର୍ଷା, ଶୀତ, ଖରା ପାଇଁ ଦ୍ୱାର ଅବାରିତ । ଘରଟା ଗୋଟାଏ ବିରାଟ ପଞ୍ଜୁରୀ । ପଞ୍ଜୁରୀର ଗୋଟିଏ କଣରେ ପ୍ରାୟ ଆଠଫୁଟ ଲମ୍ବ ଓ ୬ ଫୁଟ ଓସାରର ଜାଗା ଅଧାକାନ୍ଥି ଦେଇ ଘେରା ହୋଇଛି । ଘରେ ଚାବି ବନ୍ଦ ଥିବା ବେଳେ ସେଇଠି ମଳତ୍ୟାଗ କରିବା ପାଇଁ ଆଲକାତରା ବୋଳା ମାଟିକୁଣ୍ଡ ଓ ପ୍ରସ୍ରାବ କରିବା ପାଇଁ ଟିଣ ଡ୍ରେମ୍ ରହିଛି । ସକାଳେ ତାଲା ଫିଟିବାଯାଏ ମଳମୂତ୍ର ଗନ୍ଧରେ ଆମ ଉଆର୍ଡ଼ଟି ଆମୋଦିତ ହେଉଥାଏ । ଘରେ ଚବିଶଟି ମାଟି ପିଣ୍ଡି । ଗୋଟିଏ ଗୋଟିଏ ପିଣ୍ଡିର ଉଚ୍ଚତା ପ୍ରାୟ ଅଢ଼େଇ ଫୁଟ; ଲମ୍ବ ଛଅ ଫୁଟ, ଓସାର ପ୍ରାୟ ଅଢ଼େଇ ଫୁଟ ହେବ । ପିଣ୍ଡିର ଗୋଟିଏ ପଟ ତକିଆ ଭଳି ଉଚ୍ଚ । ପ୍ରତ୍ୟେକ ପିଣ୍ଡି ଉପରେ ଜେଲ୍ ତରଫରୁ ଦିଆଯାଇଥିବା ଚାଦର, ଶାଢ଼ୀ, କମ୍ବଳ ଥୁଆ ହୋଇଛି । ଶାଢ଼ୀ ବୋଇଲେ ଚଉତାରି ଧଳା ଥାନରେ ଲମ୍ବା ବାଗରେ ନୀଳ ରଙ୍ଗର ଡୋରା କଟା ହୋଇଛି । ମଶାରୀ ନାସ୍ତି । ସେଯୁଗରେ କଟକରେ ଗୋଟିଏ ପ୍ରବାଦ ଥାଏ :—

"କଟକ ସହରେ କରିବ ଘର
କଉପୁନୀ ମାରି ମଶାରି କର ।"

ପ୍ରତ୍ୟେକ ପିଣ୍ଡି ପାଖରେ କଡ଼ା ଲାଗି ନ ଥିବା କରେଇ ପରି ଦୁଇଟି ଲେଖା ଲୁହା ବାସନ । ସେହି ବାସନରେ ଖାଇବା, ପାଣି ପିଇବା, ଗାଧୋଇବା, ଶୌଚ ହେବା ଆଦି ବହୁବିଧ କାର୍ଯ୍ୟ ସମାଧାନ ହୁଏ ।

ଏତକ ଦେଖି ଶୁଣି ପରିତୃପ୍ତ ହୃଦୟ ଓ ପ୍ରସନ୍ନ ଚିତ୍ତରେ କରୁଣା ଓ ମୁଁ ଦୁଇଟି ମାଟି ପିଣ୍ଡି ଅଧିକାର କରି ଆପାଦମସ୍ତକ ଘୋଡ଼େଇ ହୋଇ ଶୋଇପଡ଼ିଲୁ । ମାତ୍ର ନିଦ କାହିଁ ?

ପିଣ୍ଡିରେ ଅଗଣିତ ଛାରପୋକ ।

ମାର୍ଚ୍ଚ ତେର ତାରିଖ ସୌମ୍ୟ ସକାଳଟି ଆରମ୍ଭ ହେଲା ସମବେତ ପ୍ରାର୍ଥନାରେ । ଜେଲ୍‌ରେ ତ ରାତିସାରା ପ୍ରତି ଘଣ୍ଟାରେ ଘଣ୍ଟା ବର୍ଜାହୁଏ ଏବଂ ୱାର୍ଡ୍ ଭିତରେ ଚାବି ପଡ଼ି ରହିଥିବା କଇଦୀଙ୍କୁ ପ୍ରତି ଘଣ୍ଟାରେ ଗଣତି କରାଯାଏ । ଆମ ପ୍ରାର୍ଥନା ଘଣ୍ଟା ବାଜିଲା ଦୁଇପଟ ଲୁହା ଦଗେଇରେ ଝାଞ୍ଜ ପିଟା ହୋଇ ସେ ସମୟରେ ଗାନ୍ଧିଜୀଙ୍କ ସାବରମତୀ ଆଶ୍ରମ ପ୍ରାର୍ଥନା 'ପ୍ରାତଃ ସ୍ମରମି-ହୃଦିସଂସ୍ଫର ଦାମ୍ଭେଂ ।' ଓଡ଼ିଶାରେ ଚଳି ନ ଥିଲା । ଆମେ ସମସ୍ତେ ଏକାଠି ଛିଡ଼ା ହୋଇ ପ୍ରାର୍ଥନା କଲୁ ।

ଐ ମାତୃଭୂମି ତେରେ ଚରଣୌଁମେଁ ଶିର ନମାଉଁ
ମୌଁ ଭକ୍ତି ଭେଁଟ୍ ଅପନୀ ତେରୀ ଶରଣମେଁ ଲାଉଁ ।।
ଜିହ୍ୱା ପୈ ତୁମ୍ ହୋ ଚନ୍ଦନ ଛାତି ପୈ ତୁମ୍ ହୋ ମାଲା
ମାଥେ ପୈ ଗୀତ୍ ତୁମ୍ ହୋ ମୈଁ ତେରା ନାମ୍ ଗାଉଁ ।।

x x x x x

ସେବାମେଁ ତେରୀ ସାରେ ଭେଦୌଁକୋ ଭୁଲ ଜାଉଁ
ଵହ ପୁଣ୍ୟ ନାମ ତେରା ପ୍ରତିଦିନ ସୁନୁଁ ସୁନାଉଁ ।।
ତେରେ ହୀ କାମ ଆଉଁ ତେରା ହି ମନ୍ତ୍ର ଗାଉଁ
ମନ ଔର ଦେହ ତୁଝ ପର୍ ବଲିଦାନ ମୈଁ ଚଢ଼ାଉଁ ।।

୧୯୩୧ ମସିହାରେ ପୁରୀରେ ନିଖିଳ ଭାରତ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନ ପାଇଁ ଯେତେ ଯେତେ ଆୟୋଜନ ହୋଇଥିଲା, ସ୍ୱେଚ୍ଛାସେବିକା ତାଲିମ ଶିବିର ତନ୍ମଧ୍ୟରୁ ଅନ୍ୟତମ । କର୍ଣ୍ଣାଟକର ଡକ୍ଟର ହାର୍ଡ଼ିକରଙ୍କ ଦ୍ୱାରା ସଂସ୍ଥାପିତ ହିନ୍ଦୁସ୍ଥାନୀ

ସେବାଦଳ ନାମକ ସ୍ୱେଚ୍ଛାସେବକ ସଂଗଠନ ସେତେବେଳ ଭାରତବର୍ଷରେ ନିଜ ସଂଗଠନ ଶକ୍ତି ପାଇଁ ସୁନାମ ଅର୍ଜିଥାଏ । ସେହି ସଂଗଠନ ପକ୍ଷରୁ ଶ୍ରୀଯୁକ୍ତ ମୁକୁନ୍ଦ ରାଓ ବଲସୱାର ଓ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସୁଶୀଲାବାଇ ବଲସୱାରଙ୍କ ତତ୍ତ୍ୱାବଧାନରେ ଓଡ଼ିଶାରେ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକା ତାଲିମ ଶିବିର ଚାଲିଥିଲା । ଡ୍ରିଲ୍, ଛୁରା ଖେଳ, ଲାଠି ଖେଳ, ଆସନ ନମସ୍କାର, ପତାକା ଉତ୍ତୋଳନ ବିଧି, ପ୍ରାଥମିକ ଉପଚାର ଠାରୁ ଆରମ୍ଭ କରି ପାଇଖାନା ସଫାଇ ରାତିରେ ପହରା ଦେବାଯାଏ ବିଭିନ୍ନ ପ୍ରକାର ବ୍ୟାବହାରିକ ଓ ବୌଦ୍ଧିକ ଶିକ୍ଷା ସେ ଶିବିରରେ ସାମରିକ କାଇଦାରେ ଦିଆଯାଉଥିଲା । ଆଚାର୍ଯ୍ୟ ହରିହର ଦାସ, ଜଗବନ୍ଧୁ ସିଂହ (ଓକିଲ), ଗୋପବନ୍ଧୁ ଚୌଧୁରୀ, ଜଗନ୍ନାଥ ମିଶ୍ର (ଓକିଲ) ସ୍ୱୟଂ ବଲସୱାର ଆମକୁ ଶିକ୍ଷା ଦେଉଥାନ୍ତି । ଜେଲ୍ ଭିତରେ ଆମେମାନେ ସେହି ପ୍ରକାର ଅନୁଶାସନ ରକ୍ଷା କରି ଚଳିବାକୁ, ସେହି ଶିବିର-ପ୍ରାର୍ଥନା ଗୀତ ବୋଲିବାକୁ, ସେହି ଜୀବନ କଟାଇବାକୁ ଚେଷ୍ଟା କରୁଥାଉ । ପ୍ରାର୍ଥନା ପରେ ଆସନ ନମସ୍କାର କରାଗଲା । ସେହି ଶିବିରରୁ ତାଲିମ ପାଇ ପରେ ଗିରଫ ହୋଇଥିବା କଏଦୀ ଏହା କରାଇଲେ । ଗାଁ ଗଣ୍ଡାରୁ ଆସିଥିବା ନୂଆ ଝିଅବୋହୂମାନେ ତାହା ଶିଖିଲେ ।

ସକାଳ ହେଲାରୁ ଜମାଦାର ଓ ଜମାଦାରଣୀ ଆସି ଉଆର୍ଡ଼ ଦୁଆର ଫିଟାଇଲେ । ଗୁହାଳରୁ ଗୋରୁପଲ ଫିଟିଲା ପରି ଆମେ ସବୁ ଉଆର୍ଡ଼ରୁ ବାହାରି ନିତ୍ୟକର୍ମ ସାରିବାକୁ ଧାଇଁଲୁ । କଟକ ଜେଲରେ ୧୯୩୨ରେ ପାଣିକଳ ନ ଥିଲା । ଗୋଟାଏ ରହଟ୍ ବା ପର୍ସିଆନ୍ ହୁଇଲ୍‌କୁ ଆଠଜଣ କଇଦୀ ବୁଲେଇ ବୁଲେଇ ବାମ୍ଫିରୁ ପାଣି କାଢୁଥିଲେ । ଆମ ଉଆର୍ଡ଼ରେ ଗୋଟିଏ ସିମେଣ୍ଟ ତିଆରି ପ୍ରାୟ ଆଠଫୁଟ ଲମ୍ୱ ପାଣି ହାଉଦା ଥାଏ । ହାଉଦାର ଓସାର ଦୁଇଫୁଟ, ଗଭୀରତା ସେହି ଦୁଇଫୁଟ ହେବ । ଆମକୁ ସେହି ହାଉଦାରେ ପାଣି ଯୋଗାଇ ଦିଆଯାଏ । ଶୌଚକ୍ରିୟା, ଦାନ୍ତ ଘଷା, ଗାଧୁଆ, ଲୁଗାଧୁଆ, ବାସନମଜ୍ଜା ଆଦି ସବୁ କାମ ସେହି ହାଉଦା ପାଣିରେ ସମାଧାନ ହୁଏ । ହାଉଦା ଭିତରେ ଶିଉଳି ବସି ସୁଶ୍ୟାମଳ ଦିଶୁଥାଏ । ସପ୍ତାହରେ ଥରେ ହାଉଦା ଚୂନରେ ଧଉଳା ହୁଏ, ମାତ୍ର ଶିଉଳି ଦୁର୍ନିବାର । ସେ ପାଣି ହାଉଦା ଠାରୁ ପ୍ରାୟ ଦୁଇଫୁଟ ଛଡ଼ାରେ ଧାଡ଼ିଏ ଟିଣପଲା । ତିନିଫୁଟ ଲମ୍ୱ, ତିନିଫୁଟ ଓସାର, ସାଢ଼େ ତିନିଫୁଟ ଉଚ୍ଚରେ ଟିଣକାନ୍ଥ ଟିଣ ଛପର ଦିଆ ଛୋଟ ଛୋଟ ଘର । ସେଥିରେ କବାଟ ନାହିଁ । ବୈଠକୀ ମଝିରେ ଛୋଟ ଛୋଟ ଆଲକାତରାବୋଳା ମାଟି କୁଣ୍ଡ ଥୁଆ ହୋଇଥାଏ । ଏକା ସମୟରେ ଏକାଧିକ ପ୍ରାର୍ଥୀ ପାଇଖାନାକୁ ଗଲେ ସମସ୍ତେ

ଯଦି ଏକା ସମୟରେ ପାଇଖାନା ଭିତରୁ ବାହାରି ନ ଆସି ଆଗପଛ ହୋଇ ବାହାରନ୍ତି, ତେବେ ଟିକିଏ ନିର୍ଲଜ୍ଜ କାରବାର ହୋଇଯାଏ । ବୈଷ୍ଣବ ଶାସ୍ତ୍ରରେ କୁଆଡ଼େ ଭଗବତ୍ ପ୍ରାପ୍ତି ପାଇଁ ଲଜ୍ଜା ଛାଡ଼ିବାକୁ ନିର୍ଦ୍ଦେଶ ଅଛି । ସ୍ୱରାଜ୍ୟପ୍ରାପ୍ତି ତ ଆମ ପାଇଁ ଭଗବତ୍‌ପ୍ରାପ୍ତି ସଙ୍ଗେ ସମାନ ହୋଇଥାଏ । ତେଣୁ ଏସବୁ ନିର୍ଲଜ୍ଜତା ଧର୍ତ୍ତବ୍ୟ ନୁହେଁ ବୋଲି ବିଚାରିଲେ ପାଇଟି ଛିଡ଼ିଲା । କିନ୍ତୁ ଆମ ଭିତରେ କମୋଡ଼ ବ୍ୟବହାର କରିବାରେ ଅଭ୍ୟସ୍ତା, ଗାଧୁଆ ଘରେ କଳପାଣିରେ ଗାଧୋଇବା କଇଦୀ ମଧ ଥାନ୍ତି । ସେମାନଙ୍କ ପାଇଁ ଏଗୁଡ଼ାକ ନରକ ଯନ୍ତଣା ।

ଯାହାହେଉ, ନିତ୍ୟକର୍ମ ସରିଲାରୁ ଆମ କ୍ୟାମ୍ପ କମାଣ୍ଡର ମାଳତୀ ଚୌଧୁରୀ ମୋତେ ସାଥୀମାନଙ୍କୁ ଡ୍ରିଲ୍ କରେଇବାକୁ ଆଦେଶ ଦେଲେ । ବାର ନମ୍ବର ଉଆର୍ଡ଼ର ଅଗଣା କଣରେ ପଲସ୍ତରା ହୋଇଥିବା ଜାଗା ଅରାଏ ଥାଏ । ସେଇଠି ସମସ୍ତେ ଡ୍ରିଲ୍ କଲେ । ହିନ୍ଦୁସ୍ତାନୀ ସେବାଦଳ ହିଁ ପ୍ରଥମେ ହିନ୍ଦୀରେ ଡ୍ରିଲ୍ ଆଦେଶ ଦେବା ପ୍ରଚଳନ କରିଥିଲେ । "ହୋସିଆର", "କଦମଖୋଲ୍", ବାଏଁ ରୁଖ୍, ନମସ୍ତେ ଆଦି ଆଦେଶଗୁଡ଼ିକ ଏବେ ବଦଳିଗଲାଣି ।

ଡ୍ରିଲ୍ ସରିଲାବେଳକୁ ଆମ ପ୍ରାତଗ୍ରାଶ ଆସିଗଲା । ଡ୍ରିଲ୍ କଲାବାଲା ଓ କରେଇବାବାଲା ଡ୍ରିଲ୍ ଚାଲିଥିବାବେଳେ ଯେତିକି ଅନୁଶାସନ ରକ୍ଷା କରିଥିଲେ ଠିକ୍ ସେହି ଅନୁପାତରେ କଳରବ କରି ସାତଭାୟା ଚଢ଼େଇ ପରି କିଚିରି ମିଚିରି ହୋଇ ଲୁହାଥାଳି ଆଣିବାକୁ ଧାଇଁଲୁ । ସେଦିନର ପ୍ରାତଗ୍ରାଶ ଥିଲା ଉଷୁନା ଚାଉଳ ଖେଚେଡ଼ି ଓ ସାମାନ୍ୟ ଗୁଡ଼ । ରାତିର ବଳକା ଭାତ ଏ ଖେଚେଡ଼ିରେ ମିଶା ହୋଇଥିବାରୁ ସେ ଭାତଟେଳା ନିଜର ସ୍ୱାତନ୍ତ୍ୟ ରକ୍ଷା କରୁଥାନ୍ତି । ମୁଗଜାଇ ଖୋଜିଲେ ଫାଳେ ଅଧଫାଳେ ମିଳନ୍ତା ପରା । ସେ ଖେଚୁଡ଼ି ନାଲି ଦକ୍ଷିଣୀ ଲଙ୍କାରେ ଛୁଙ୍କା ହୋଇଥାଏ । ସେ ଲଙ୍କାରୁ ଗୋଟିଏ ଯାହା ଭାଗରେ ପଡ଼ିଲା ତାର ସେଦିନ ଅମୃତ ଯୋଗ । ସେ ଲଙ୍କାକୁ ଚିପିଦେଲେ ଟିକିଏ ନାଲି ରସ ବାହାରେ, ସେହି ରସ ଟିକକ ହେଉଛି ସେହି ଖେଚୁଡ଼ି ସାଙ୍ଗକୁ "କିକ୍" । ସେ ସ୍ୱାଦ ଆଗରେ ମହୁର ବେସର, ଶାକର, ଆମ୍ବିଳ ତୁଚ୍ଛ । ବାର ନମ୍ବର ଉଆର୍ଡ଼ର ଅନ୍ତେବାସୀ ସମସ୍ତେ ମହିଳା । ତେଣୁ ପୂର୍ବାଶ୍ରମରେ ଘୃତ ତଣ୍ଡୁଳ ତୈଳ ଲବଣାଦି ଥିଲା ସମସ୍ତଙ୍କ ପୋର୍ଟଫୋଲିଓ । ସେ ଖେଚୁଡ଼ିର ଗୁଣଦୋଷର ସମୀକ୍ଷା ସଙ୍ଗେ ସଙ୍ଗେ ଚଟ୍‌କରି ନିଜ ନିଜ ବଣ୍ଟାର ଖେଚୁଡ଼ିତକ ଉଦରସାତ୍ କରିଦେଇ ପ୍ରାୟ ସମସ୍ତେ ଉଠିଗଲେ । କାରଣ ଆସନ – ନମସ୍କାର ଡ୍ରିଲ୍ ପରେ ଯେଉଁ ଭୋକ !

ଭୋକ ହେଉଛି ମସଲା ଜୀରାମରିଚ ଗୁଣ୍ଡ । ଆମେ ହାଉଦା ପାଣିରେ ମୁହଁ ଧୋଇ ଆସି ଦେଖିଲୁ କେତେଜଣ ଭଉଣୀ ସେ ଖେଚୁଡ଼ି ଲୁହା ଥାଳିରେ ଖେଳେଇ ଖେଳେଇ ନ ଖାଇ ଉଠିଗଲେ । ମୁଁ ପଚାରିଲି, – କ'ଣ ହେଲାକି ? ଜଣେ କହିଲେ, "ଲୁହାଟିଆ ଗନ୍ଧେଇଲା ।" ଆଉ ଜଣେ ଖେଚୁଡ଼ିରୁ ଗୋଡ଼ି କାଢ଼ି ଦେଖେଇଲେ ।

ଜଳଖିଆ ସରିବା ବେଳକୁ ଦୁଇଜଣ ପୁରୁଷ କଇଦୀ ଦୁଇଟି ଚାଉଳବସ୍ତା ପିଠିରେ ଲଦି ଆମ ଅଗଣାରେ ପଶିଲେ । ଆମର ସେଇ ପରେଡ୍ ପଡ଼ିଆ ଅର୍ଥାତ୍ ପଲସ୍ତରା ହୋଇଥିବା ଜାଗା ଅରାକରେ ସେ ବସ୍ତା ଥୋଇ ଦେଇଗଲେ । ଗଣ୍ଡାଏ ଛଅଟା କୁଲା ମଧ ଆସିଲା । ସେ ଚାଉଳକୁ ବାଛି ପାଛୁଡ଼ି ବାଗେଇବା ହେଲା ସଶ୍ରମ କାରାଦଣ୍ଡ । (Rigorous imprisonment) ପାଇଥିବା ସ୍ତ୍ରୀ କଇଦୀଙ୍କ କାମ । ଅପରାଧୀମାନଙ୍କୁ ସଶ୍ରମ ଓ ଅଶ୍ରମ ଦୁଇପ୍ରକାର ଦଣ୍ଡ ମିଳେ । ସଶ୍ରମ ଦଣ୍ଡ ମିଳିଥିବା କଇଦୀଙ୍କର ସୁବିଧା ହେଉଛି, ସେମାନଙ୍କୁ ମାସକୁ ଚାରି ଦିନ "ମାର୍କ" ମିଳେ । ଅର୍ଥାତ୍ ଜଣେ କଇଦୀକୁ ଯଦି ଛଅମାସ ସଶ୍ରମ କାରାଦଣ୍ଡ ମିଳିଥିବ, ତେବେ ସେ ଛଅମାସ ପୂରିବାର ଚବିଶିଦିନ ପୂର୍ବରୁ ଜେଲ୍‌ରୁ ଖଲାସ ହେବ । ଜେଲ୍ ପରିଭାଷାରେ ଏହି ଚବିଶି ଦିନ ହେଉଛି "ମାର୍କା" । ସଶ୍ରମ ଦଣ୍ଡ ପାଇଥିବା ପୁରୁଷ କଇଦୀମାନଙ୍କୁ ତେଲ ଘଣାରେ ବଳଦ ପରି ଯୋଚି ଘଣା ଠେଲିବା, କତା ବାଡ଼େଇବା, ପାଇଖାନା ସଫା, ବଗିଚା କାମ, ରୋଷେଇ, ଚକୀ ପେଷା, ରାତିରେ ଉଆର୍ଡ଼ ଭିତରେ ପହରା, ଜେଲ୍ ଅଫିସ୍‌ରେ ରେକର୍ଡ଼ ପୂରଣ କରିବା କାମ କରନ୍ତି । ପୁଣି ପାଇଖାନା ସଫା ଓ ରାତିରେ ଚେଇଁ ପହରା ଦେଉଥିବା କଇଦୀକୁ ଆଉ ଟିକିଏ ଅଧିକ ମାର୍କା ଓ କିଛି ପଇସା ମିଳେ । ଖଲାସ ହେଲାବେଳେ ସେମାନେ ସେ ପଇସାତକ ପାଆନ୍ତି । ସ୍ତ୍ରୀ କଇଦୀ ତ ଉଆର୍ଡ଼ ବାହାରକୁ ଯିବେ ନାହିଁ, ତେଣୁ ପାଛୁଡ଼ା ପାଛୁଡ଼ି କାମ କରନ୍ତି । ଅଶ୍ରମ କାରାଦଣ୍ଡ (simple imprisonment) ପାଇଥିବା କଇଦୀ ପୂରା ଦଣ୍ଡ ଭୋଗନ୍ତି । ବିଚାରଧୀନ କଇଦୀ (undertrial prisoner)ଙ୍କୁ ମଧ କାମ ଦିଆଯାଏ ନାହିଁ । କିନ୍ତୁ ଆମେ ସଶ୍ରମ, ଅଶ୍ରମ, ବିଚାରାଧୀନ ସମସ୍ତେ ଚାଉଳ ବଛାରେ ଲାଗିଗଲୁ । କେବଳ ଅଧରମଣି ଅପା ମାଳତୀ ଦେବୀଙ୍କ ଚାରିମାସର ପୁଅଟିକୁ ଜଗିଲା । ଚାଉଳ ବଛାବେଳେ ଆମର ଗୀତାନ୍ତ ଚାଲିଥାଏ । ସମସ୍ତେ ହସଖୁସିରେ ଥାନ୍ତି । କେବଳ ଧୂଆଁପତ୍ର, ପାନ ଆଦି ଅମଳବାଲା ଉଦାସିଆ ଦିଶୁଥାନ୍ତି ।

ଚାଉଳ ବଛା ସରିବା କିଛିକ୍ଷଣ ପରେ ଡାକ ଶୁଭିଲା- "ଜମାଦାରଣୀ ! ଭାତ ଆସିଲା ।" ଆମେ ଉତ୍ସୁକ ନୟନରେ ଦ୍ୱାର ଆଡ଼କୁ ଚାହିଁଲୁ । ଆଖୁଗୁଡ଼ ରନ୍ଧା

ଚାରିକଣିଆ କରେଇ କିନ୍ତୁ ତା'ଠାରୁ କମ୍ ଗହୀରା ଗାଲ୍‌ଭାନାଇଜଡ୍ ଟିଣ ବାସନରେ ଭାତ ଭରତି ହୋଇ ତା' ଉପରେ ଖଣ୍ଡେ କନା ଘୋଡ଼ା ହୋଇଥାଏ । ତାକୁ ଦୁଇଜଣ ପୁରୁଷ କଇଦୀ ବୋହି ଆଣିଲେ । ଦୁଇଟା ବାଲତିରେ ଡାଲି ତରକାରୀ । ଭାତ ପରଷିବାକୁ କୋଡ଼ି ପରି ଗୋଟିଏ କରଚୁଲି । ତା'ର ନାଆଁ "ଫାଇଲ୍" । ଜଣକୁ ଫାଇଲେ ଭାତ ମିଳେ । ଆମେ ଆମ ବେରାଇ ଆକାରର ଲୁହା ଥାଳି ଧରି ବସିଗଲୁ । କଇଦୀମାନେ ଖାଦ୍ୟ ସାମଗ୍ରୀ ପରଷି ଦେଇ ବାସନପତ୍ର ଧରି ଚାଲିଗଲେ । ଡାଲିକୁ ଚାହିଁ ଜଣେ କହିଲେ, "ଆଜି ମା' ଗଙ୍ଗା ବିଜେ କରିଛନ୍ତି ।" ମୁଁ ଅନଭିଜ୍ଞ ହୋଇଥିବାରୁ ସାଙ୍ଗସାଥୀ ବୁଝାଇଦେଲେ ଯେ ଜେଲ୍‌ରେ ସଶ୍ରମ କଇଦୀକୁ ପାଏ ଚାଉଳର ଭାତ ଓ ଛଟାଙ୍କିଏ ମୁଗ ବା ହରଡ଼ଡାଲି ପଡ଼ିଦିଆଯାଏ । ଏ କୃଷ୍ଣ ମନ୍ଦିର (ଜେଲ୍) ବେଢ଼ାରେ ବହୁ ଦେବାଦେବୀ ଅଛନ୍ତି । ସେମାନଙ୍କଠାରେ ଭୋଗ ଲାଗି ହେବା ପରେ ବଳକା ପ୍ରସାଦ କଇଦୀଙ୍କ ଭାଗରେ ପଡ଼େ । ତରକାରୀରେ ସେଦିନ ମୂଳା ହିଁ ଶାକନାୟକ । ସେ ମୂଳା ଚୋବେଇଲେ ଜମା ଛିଣ୍ଡୁ ନ ଥାଏ । ଅଭିଜ୍ଞ ସାଥୀ କୃଷ୍ଣକାମିନୀ ଅପା ବୁଝାଇଦେଲା– ଆମ ସାନ ଜେଲର୍ ଶମ୍ଭୁବାବୁ ଭାରି ଘରକରଣା ଲୋକ । ଶୀତଦିନେ ଜେଲ୍ ବଗିଚାରୁ ଉତ୍ପନ୍ନ ପରିବା ଖାଇ ଖାଇ ଯାହା ବଳେ, କୋବି ମୂଳା ଆଦି ଶମ୍ଭୁବାବୁ ଶୁଖେଇ କରି ରଖିଦିଅନ୍ତି । ତାହା ପରିବା ନିଅଣ୍ଟିଆବେଳେ ପାଣିରେ ବତୁରା ହୋଇ ରନ୍ଧା ହୋଇ କଇଦୀକୁ ଦିଆହୁଏ । ଏ ସେହି ମୂଳା । ଏହାର ଦ୍ରବ୍ୟଗୁଣ ଅତି ଉତ୍ତମ । ପେଟରେ ପଥର ହୋଇଥିଲେ ମୂଳା ଖାଇଲେ ତାକୁ ତରଳାଇ ଦେବ । ମୁଁ ବୋକାଙ୍କ ପରି ପଚାରିଲି– ଏଇକ୍ଷଣି ତ ପେଟରେ ଯେଉଁ ନିଆଁ ଜଳୁଛି, ପଥରକୁ ଗିଳି ଦେଲେ ସେ ପଥର ସୁଦ୍ଧା ଭସ୍ମ ହୋଇଯିବ । ତୁ ମୂଳାର ପ୍ରଶସ୍ତି ଗାଉଛୁ କାହିଁକି ? ଏହିପରି ଖାଦ୍ୟାଲୋଚନା ମଧ୍ୟରେ ମଧ୍ୟାହ୍ନ ଭୋଜନ ସରିଲା । ଖାଇ ସାରିବା ପରେ ଦେଖିଲି ଛାୟା ଇଟାଗୁଣ୍ଡରେ ତାହା ଲୁହା ବାସନକୁ ପ୍ରାଣପଣେ ଘଷି ଘଷି ମାଜୁଛି । କହିଲି – ଛାୟା ! ତୁ ପାଗଳ ହେଲୁଣି କି ? ଏତେ ଜୋର୍‌ରେ ବାସନ ମାଜୁଛୁ, ଭାତ ଆସିବା ଆଗରୁ ତ ସବୁ ଖାଦ୍ୟ ହଜମ ହୋଇଯିବ, ସେତେବେଳକୁ ? ଛାୟା ଦାନ୍ତ ବିକଶିତ କରି କହିଲା – ଆଲୋ ଓଲି ! ତୁ ଜାଣୁ କ'ଣ ? ଏ ବାସନକୁ ମାଜି ଚକଚକ କରି ରଖିଲେ "ମାର୍କା" ମିଳେ ।

ବିଶ୍ରାମ ପରେ ବିଦ୍ୟାଧ୍ୟୟନ ଆରମ୍ଭ ହେଲା । ଅଧ୍ୟୟନ ବୋଇଲେ ଶ୍ରବଣଉକ୍ତି । ବହି ସିଲଟ, କାଗଜ ପେନ୍‌ସିଲ୍ ନ ଥାଇ ସେଇ ବୈଦିକ ଯୁଗ ପରି ଶୁଣି ଶୁଣି ଶିଖିବା ପ୍ରଣାଳୀ । ବାଲିରେ ଆଙ୍ଗୁଳିରେ ଲେଖି ଅଆ, କଖ, ଚିହ୍ନିବାଠାରୁ ଆରମ୍ଭ

କରି ସତ୍ୟାଗ୍ରହ ଆନ୍ଦୋଳନ, ଭାରତବର୍ଷର ଇତିହାସ ଯାଏ ନାନା ବିଷୟ ପଢ଼ା ହେଲା । ସାକ୍ଷର ନିରକ୍ଷର, ଉଚ୍ଚଶିକ୍ଷିତା ସବୁପ୍ରକାର ଭଉଣୀ ଆମ ଭିତରେ ଥିଲେ । ତେଣୁ ସମସ୍ତଙ୍କୁ ଯେଝା ଗ୍ରହଣ ଶକ୍ତି ଅନୁସାରେ ଶିକ୍ଷା ଦେବା ପ୍ରୟୋଗ ଜାଣି ଚାଲିଥାଏ ।

ଚାରିଟା ବାଜିଲାରୁ ସମସ୍ତେ ଖେଳିବା ପାଇଁ ଅଗଣାରେ ଜମା ହେଲୁ । ସେ ସମୟରେ ଆମର ଗୋଟିଏ ଖେଳ ଥିଲା "ଦେଶ୍ କେ ଲିଏ ।" ଖେଳ ପଦ୍ଧତି ହେଉଛି ସମସ୍ତେ ଡ୍ରିଲ୍ କରିବା ପାଇଁ ଛିଡ଼ା ହେବେ । ଯେ ଡ୍ରିଲ୍ କରାଇବେ ସେ ପ୍ରତ୍ୟେକ ଆଦେଶ ପୂର୍ବରୁ "ଦେଶ କେ ଲିଏ" କହି ଆଦେଶ ଦେବେ । ଯଥା : "ଦେଶ କେ ଲିଏ ହୋଶିଆର୍", "ଦେଶ କେ ଲିଏ ନମସ୍ତେ" । ଯେଉଁ ଆଦେଶ ପୂର୍ବରୁ "ଦେଶ କେ ଲିଏ" କୁହାଯାଇ ନ ଥିବ ସେ ଆଦେଶ କେହି କାର୍ଯ୍ୟକାରୀ କରିବେ ନାହିଁ । ଯେ ଏ ତରବର ହୋଇ ତାହା କାର୍ଯ୍ୟକାରୀ କରିବେ, ସେ ଧାଡ଼ିରୁ ବାହାରି ଯିବେ । ଆଦେଶଦାତା ଜାଣି ଶୁଣି ମଝିରେ ମଝିରେ "ଦେଶ କେ ଲିଏ" ନ କହି ଆଦେଶ ଦେବେ । ଯେଉଁମାନେ ଶେଷଯାଏ ସଚେତନ ରହି କେବଳ "ଦେଶ କେ ଲିଏ" ଯୋଗ କରି ଦିଆଯାଇଥିବା ଆଦେଶ ମାନିବେ, ସେମାନେ ଜିତିବେ ।

ଜେଲ୍‌ରେ ସୂର୍ଯ୍ୟାସ୍ତ ପୂର୍ବରୁ ରାତ୍ରିଭୋଜନ ମିଳେ । କାରଣ ସୂର୍ଯ୍ୟାସ୍ତ ବେଳକୁ କଇଦୀଙ୍କୁ ଉଆର୍ଡ଼ ବା ଖୁଆଡ଼ରେ ପୂରାଇ ଚାବି ପକାଇ ଦିଆଯାଏ । ତେଣୁ ଘଣ୍ଟାଏ ଖଣ୍ଡେ ଖେଳି ନିତ୍ୟକର୍ମ ସାରୁ ସାରୁ ଖାଦ୍ୟ ଆସିଗଲା । ପଟକ ପାଞ୍ଚତୋଲା ଓଜନର ରୁଟି ସାଙ୍ଗକୁ, ଡାଲି, ତରକାରୀ । ଖାଇ ସାରିବାର କିଛି ସମୟ ପରେ ଜେଲର ସାହେବ, ହାବିଲଦାର, ବଡ଼ ଜମାଦାର, ଜମାଦାରଙ୍କୁ ସାଙ୍ଗରେ ଧରି ଆସିଲେ ଆମେ ଧାଡ଼ି ବାନ୍ଧି ଛିଡ଼ାହେଲୁ । ସେ ଯୁଗରେ କ୍ୟୁ ଶବ୍ଦର ଚଳଣି ନ ଥିଲା । ଆଜିକା ଭାଷାରେ ଖୁଆଡ଼ ଆଡ଼କୁ ମୁହଁକରି ଆମେ କ୍ୟୁ କରି ଛିଡ଼ା ହେଲୁ । ଜମାଦାରଣୀ ପ୍ରତ୍ୟେକଙ୍କ ପିଠିରେ ହାତମାରି ଆମକୁ ଗଣି ଗଣି ଖୁଆଡ଼ରେ ପୂରେଇଲେ । କେଁ କେଁ ଆର୍ତ୍ତନାଦ କରି ଲୁହା କବାଟ ବନ୍ଦ ହୋଇଗଲା । ଜମାଦାର ତାଲା ପକାଇ ପୁଣି ସେ ତାଲାକୁ ଟାଣି ପରଖ କଲେ – ଚାବି ପଡ଼ିଛି କି ନାହିଁ । ଆମକୁ ଚାରି ଚାବି ପକେଇ ଅର୍ଥାତ୍ ଉଆର୍ଡ଼ ଦ୍ୱାରରେ ଚାବି, ଉଆର୍ଡ଼ ପାଚେରୀ ଦ୍ୱାରରେ ଚାବି, ଜେଲ୍ ଭିତର ଫାଟକରେ ଚାବି, ଜେଲ୍‌ର ଫାଟକରେ ଚାବି ପକେଇ ଜେଲର ସାହେବ ବିଦା ହେଲେ ।

୧. ଅଧରମଣି ଦେବୀ, ଅଟୀଗ, ଜି. କଟକ
(ସ୍ୱାମୀ ପୂର୍ବତନ ବାଚସ୍ପତି ନନ୍ଦକିଶୋର ଦାସ)

୨. ଛାୟା ପରିଡ଼ା, ବାହାରଣା, ଜି. କଟକ
(ସ୍ୱାମୀ ବିଶ୍ୱନାଥ ପରିଡ଼ା)
୩. କୃଷ୍ଣକାମିନୀ ଦେବୀ, ବାଉଁଶବାଡ଼ି, ଜି. କଟକ
(ସ୍ୱାମୀ ସୁବୋଧ ଚନ୍ଦ୍ର ଦାସ)

ଏହିପରି ଚାରିଦିନ ତୀର୍ଥବାସ କଲା ପରେ ଦିନେ ଖରାବେଳେ ପାଚେରୀ ଦ୍ୱାରପଟୁ ଡାକ ଶୁଭିଲା– "ଜମାଦାରଣୀ ! କରୁଣା ଦେବୀ, ଅନ୍ନପୂର୍ଣ୍ଣା ଚୌଧୁରୀ କୋର୍ଟକୁ ଯିବେ ।" ପୁଣି ନୂଆ ଅଭିଜ୍ଞତା ହାସଲ ହେବ ବିଚାରି ଛାତି ଦୁଲୁକି ଉଠିଲା । କରୁଣା ଓ ମୁଁ ଜମାଦାରଣୀ ସାଙ୍ଗରେ ଜେଲ୍ ଅଫିସ୍ ଆଡ଼କୁ ଗଲୁ ।

ଆଶା ଥିଲା, କଟକର ନାଲି ମାଙ୍କଡ଼ା ପଥର ବିଛା ସଡ଼କରେ କିରାସୀନି ବତୀଖୁଣ୍ଟ, ଧକଡ଼ ଧକଡ଼ ଘୋଡ଼ାଗାଡ଼ି, ଦୁର୍ଲଭ ଦୋକାନର ଚକଚକିଆ ମନୋହାରୀ ଜିନିଷ, ବାଲୁବଜାର ଛକରେ ବାଞ୍ଛା ସାହୁ ରଙ୍ଗିଆ ସାହୁର ଦୋକାନରୁ ଭାସି ଆସୁଥିବା ମିଷ୍ଟାନ୍ନ ର ବାସନା ବାରି ବାରି ଆମେ ସଡ଼କ ଦୁଇପଟେ ଦେବଦାରୁ ସୁସଜ୍ଜିତ ଲାଲବାଗ ଦେଉଡ଼ି ବାଟେ କୋର୍ଟକୁ ଯିବୁ । ସେ ଆଶା ବିଫଳ ହେଲା । ଜେଲ୍ ଅଫିସ୍‌କୁ ଯାଇ ଦେଖିଲୁ ସେ ଅଫିସ୍‌ଟା କୋର୍ଟ ପାଲଟି ଯାଇଛି । ଶ୍ରୀଯୁକ୍ତ ଆୟାର୍ ନାମରେ ଜଣେ ଫାଷ୍ଟକ୍ଲାସ୍ ମାଜିଷ୍ଟ୍ରେଟ୍ ଜେଲର ସାହେବଙ୍କ ଚଉକୀ ଅଧିକାର କରି ବସିଛନ୍ତି । କୋର୍ଟ ଇନିସ୍‌ପେକ୍ଟର ମହୋଦୟ ଶ୍ମଶ୍ରୁବହୁଳ ପ୍ରଶାନ୍ତ ବଦନରେ ନଥିପତ୍ର ଧରି ଦଣ୍ଡାୟମାନ । ସାକ୍ଷୀ ଦୁଇ ତିନିଜଣ ଗରୁଡ଼ ପରି କରଯୋଡ଼ି ଛିଡ଼ା ହୋଇଛନ୍ତି । ତାଙ୍କ ଭିତରୁ ଜଣଙ୍କୁ ଚିହ୍ନିଲୁ । ସେ ସ୍ୱରାଜ ମେଡ଼ିକାଲ୍ ହଲ୍ ଆଗରେ ଆମକୁ ଲୁଣ ମାଗିଥିଲେ । ଶ୍ରୀ ଆୟାରଙ୍କ ମୁଣ୍ଡ ଉପରେ ଟଣାପଙ୍ଖା ଚାଲିଥାଏ । ସେଇ ଘରର ଦ୍ୱାର ପାଖକୁ ଖଣ୍ଡେ ଚାଖଣ୍ଡେ ଓସାରର ଘୋଡ଼ିଆ ପଡ଼ିଥିଲା । ହାକିମଙ୍କ ଆଜ୍ଞାରେ ଆମେ ଦୁହେଁ ସେହି ଘୋଡ଼ିଆ ଉପରେ ବସିଲୁ । ସାକ୍ଷୀ ସାକ୍ଷ୍ୟ ଦେଲେ ଯେ ଆମେ ଦୁହେଁ ବେଆଇନ୍ ଲୁଣ ବିକୁଥିଲୁ । ହାକିମ ଦକ୍ଷିଣ ଭାରତୀୟ । ତେଣୁ ତାଙ୍କୁ ଶୋଭା ଦେବା ଭଳି ଓଡ଼ିଆରେ ସେ ମୋତେ ପଚାରିଲେ– "କଂଗ୍ରେସଟା ବେଆଇନ୍, ଏହା ତୁ ଜାଣୁ ତ ?" ମୁଁ ଉତ୍ତେଜିତ ହୋଇ କହିଲି– "ବ୍ରିଟିଶ୍ ସରକାରଙ୍କ ଶାସନଟା ହିଁ ବେଆଇନ୍ ବୋଲି ମୁଁ ଜାଣେ । କଂଗ୍ରେସ ବେଆଇନ୍ ନୁହେଁ ।" ଏହି କେତେପଦ କଥା କହିଦେଇ ମୋ ଛାତି ଦାଉଁ ଦାଉଁ ହେଲା । ଆୟାରଂ ସାହେବ କିଛିକ୍ଷଣ ନୀରବ ରହି କରୁଣାକୁ କହିଲେ– "ତୋ ସ୍ୱାମୀ ତୋତେ ନେବାକୁ ଆସିଛି । ତୁ କ୍ଷମା

ମାଗିଲେ ତୋତେ ଛାଡ଼ିଦେବି ।" କରୁଣାର ହଳଦିଆ ଗୋରା ମୁହଁ ତମ୍ବା ପାଲଟି ଗଲା । ସେ ଆସ୍ତେ ଆସ୍ତେ ମୋତେ କହିଲା – "ମୋ ପାଖରେ ଛୁରା ଥିଲେ ମୁଁ ଏଇକ୍ଷଣି ନାୟାରକୁ ନିଶ୍ଚୟ ଆକ୍ରମଣ କରିଥାନ୍ତି ।" ତାହାପରେ ସେ ଆତ୍ମ ସମ୍ବରଣ କରି କହିଲା – "ମୁଁ ଯାହା କରିଛି ଠିକ୍ କରିଛି ।" ବିଚାରପତି ରାଗରେ ତମ ତମ ହୋଇ କହିଲେ – "ମିସ୍‌ଚିଭସ୍ ଗାର୍ଲ ।" ଜଣେ ପ୍ରତିଷ୍ଠିତ ଓକିଲଙ୍କ ସ୍ତ୍ରୀ ଏପରି ଗର୍ହିତ କାର୍ଯ୍ୟ କରୁଥିବାର ଦେଖି ତାଙ୍କର ବୋଧହୁଏ ଧୈର୍ଯ୍ୟଚ୍ୟୁତି ଘଟିଲା । କରୁଣା ଓଠ କାମୁଡ଼ି ଚୁପ୍ ହୋଇ ରହିଥାଏ । ଏ ଅପମାନକୁ ଗଳାଧଃକରଣ କରିବା ତା ପକ୍ଷରେ ବଡ଼ କଠିନ ହେଉଥାଏ । ମୋ ଭିତରେ ସେତେବେଳେ ବୋଧହୁଏ କରୁଣା ପରି ମର୍ଯ୍ୟାଦାଜ୍ଞାନ ବିକଶିତ ହୋଇ ନ ଥିଲା କିମ୍ବା ୧୯୩୦ରୁ ସରକାରୀ କର୍ମଚାରୀମାନଙ୍କର ଏ ପ୍ରକାର ମର୍ଯ୍ୟାଦା ଲଂଘନକାରୀ ଆଚରଣ କଥା ଶୁଣି ଶୁଣି ମୋ ଅଜାଣତରେ ବୋଧହୁଏ ଏ ପ୍ରକାର ଅପମାନ ଦେହ ସୁହା ହୋଇଯାଇଥିଲା । ସେଥିପାଇଁ ଏ ବିଚାର ପ୍ରହସନଟାକୁ ମୁଁ ବେଶ୍ ଉପଭୋଗ କରିପାରୁଥାଏ ।

ମୋର ବୟସ ଚଉଦ ବର୍ଷ ଚାରିମାସ ହୋଇଥିବାରୁ ମୋତେ ନାୟାର ସାହେବ ଅର୍ଥଦଣ୍ଡ ଦେଲେ । ମୁଁ ଜୋରିମାନା ଦେବି ନାହିଁ ବୋଲି କହିବା ସତ୍ତ୍ୱେ ସେ ମୋତେ ଖଲାସ କରିଦେଲେ । କରୁଣାକୁ ଦୁଇମାସ ଅଶ୍ରମ କାରାଦଣ୍ଡ ମିଳିଲା ।

ଖଲାସ ଆଦେଶ ପାଇ ମନଟା ଦବିଗଲା । ମନର କେତେ ଅରମାନ ଅପୂର୍ଣ୍ଣ ରହିଗଲା । ଭାଗଲପୁର ସେଣ୍ଟ୍ରାଲ୍ ଜେଲ୍‌ର ବର୍ଣ୍ଣନା ବୋଉ ଖୁଡ଼ୀଙ୍କ ଠାରୁ ୧୯୩୦ ମସିହାରୁ ଶୁଣି ଶୁଣି ଥରେ ସେ ଜେଲ୍‌ରେ ରହିବା ବାସନାଟା ମନରେ ବଳବତୀ ହୋଇ ଉଠିଥିଲା । ବିହାର, ଓଡ଼ିଶା ଏକା ସାଙ୍ଗରେ ଥିବା ହେତୁ ଓଡ଼ିଶାର 'କ' ଓ 'ଖ' ଶ୍ରେଣୀ ବନ୍ଦୀଙ୍କୁ ହଜାରିବାଗ ଓ ଭାଗଲପୁର ଜେଲ୍‌କୁ ପଠାଇ ଦିଆହେଉଥିଲା । ସତ୍ୟାଗ୍ରହ ଆନ୍ଦୋଳନ ଯୋଗୁ ଓଡ଼ିଶାର ଜେଲଗୁଡ଼ିକରେ ସତ୍ୟାଗ୍ରହୀ କଇଦୀ ଅଧିକ ହୋଇ ଯାଉଥିଲେ । ସେମାନଙ୍କୁ ହଜାରିବାଗ, ଭାଗଲପୁର, ପାଟନା କ୍ୟାମ୍ପ ଜେଲ୍‌କୁ ପଠା ଯାଉଥିଲା । ଓଡ଼ିଶାରୁ ମଙ୍ଗଳା ସେନ୍, ଜାହ୍ନବୀ ଦେବୀ, କୋକିଳ ଦେବୀ ପ୍ରଭୃତି ଆମର ବହୁ ପରିଚିତ ଗୁରୁଜନ ଓ ସାଙ୍ଗସାଥୀ ସେତେବେଳେ ଭାଗଲପୁର ଜେଲ୍‌ରେ ଥିଲେ । ଆମକୁ ଛୁରା ଖେଳ ଶିଖାଇଥିବା ବାସନ୍ତୀ ଦାସଗୁପ୍ତ ମଧ୍ୟ ପୁରୁଲିଆରେ ଗିରଫ ହୋଇ ସେଇଠି ଥିଲେ । ତେଣୁ କେବେ ବିଚାର ସରିବ, କେବେ ଭାଗଲପୁର ଜେଲ୍‌କୁ ଯିବୁ, ମାଟି ପିଣ୍ଡିରେ ଶୋଇ ରାତିସାରା ହାବିଲଦାର ଓ ୱାର୍ଡ଼ମାନଙ୍କର ଦାସେ ଆପଣେଙ୍କ

ଭାଷାରେ "ସଂଖ୍ୟା ସଂକୀର୍ତ୍ତନ" ଶୁଣିବୁ – ଏହି ବାସନା ପ୍ରବଳରୁ ପ୍ରବଳତର ହେଉଥିବା ବେଳେ ନାୟାର ସାହେବ ସବୁ ବାସନା କାମନା ଚୂନା କରିଦେଲେ ।

ଏହାଛଡ଼ା ଆଉ ଗୋଟିଏ ଘଟଣାର ସ୍ମୃତି ମୋତେ ବାରମ୍ବାର ବାର ନମ୍ବର ଉଆର୍ଡ଼କୁ ଆସିବାକୁ ଅଥୟ କରୁଥାଏ । ତାହା ହେଉଛି ୧୯୩୦ ମସିହା ଏପ୍ରିଲ୍ ଛଅ ତାରିଖରେ ଗାନ୍ଧିଜୀ ଲବଣ ଆଇନ୍ ଅମାନ୍ୟ କଲେ । ସେ ଲବଣ ଆଇନ୍ ଅମାନ୍ୟ କରିବା କଥା ଘୋଷଣା କଲାବେଳେ ବିଲାତର ଜାଠଦଳ ମୁଖିଆ କହିଥିଲେ – "Let the dog bark, the caravan shall pass by." ଦେଶ ଭିତରେ ମଧ ପଣ୍ଡିତ ମୋତିଲାଲ ନେହରୁଙ୍କ ଭଳି ନେତା ଏହି କାର୍ଯ୍ୟକ୍ରମର କାର୍ଯ୍ୟକାରିତା ବିଷୟରେ ସଂଶୟୀ ହୋଇ ଗାନ୍ଧିଜୀଙ୍କୁ ପଚାରିଥିଲେ, "ଲୁଣ ମାରିଲେ କ'ଣ ହେବ ?" ଗାନ୍ଧିଜୀ ଜବାବ ଦେଇଥିଲେ, "ନିଜେ ଲୁଣ ମାରି ଦେଖ ।" ଏଲାହାବାଦ ଆଖପାଖରେ ସମୁଦ୍ର ନାହିଁ । ତଥାପି ସତ୍ୟାଗ୍ରହୀମାନେ ସହରର ମଝି ଛକରେ ଚୂଲି ଲଗାଇ ଲୁଣପାଣି ହାଣ୍ଡି ବସାଇଲେ । ଚଉଠି ଦିନ ନୂଆବୋହୂ ପାକସ୍ପର୍ଶ କଲା ପରି ମୋତିଲାଲ୍‌ଜୀ ଲୁଣ ରାନ୍ଧିବା ଆରମ୍ଭ କରିବା ମାତ୍ରେ ପୁଲିସ କମିଶନର ତାଙ୍କୁ ଗିରଫ କଲେ । ଏଲାହାବାଦରେ ଅଭୂତପୂର୍ବ ଉନ୍ମାଦନା ଦେଖାଦେଲା । ଲୋକେ ସହସ୍ର ସଂଖ୍ୟାରେ ସ୍ୱରାଜ-ଯଜ୍ଞରେ ଜୀବନ ବଳିଦେବାକୁ ଆଗେଇ ଆସିଲେ । ମୋତିଲାଲ୍‌ଜୀ ଗାନ୍ଧିଜୀଙ୍କୁ ତାର କଲେ– "ଲୁଣ ମାରିଲି, ପରିଣାମ ଦେଖିଲି ।" ୧୯୩୦ ମାର୍ଚ୍ଚ ମାସରେ ରାଷ୍ଟ୍ରଗଗନରେ ଏ ଲବଣ ସତ୍ୟାଗ୍ରହର ସଫଳତା ବାବଦରେ ସଂଶୟର ଘନଘଟା ଥିବା ସ୍ଥଳେ ୧୯୩୧ ମସିହା ମାର୍ଚ୍ଚ ମାସରେ ଭାରତର ବଡ଼ଲାଟ୍ ଲର୍ଡ଼ ଇରଉଇନ୍‌ଙ୍କ ପକ୍ଷରୁ ଗାନ୍ଧିଜୀଙ୍କ ପାଖକୁ ସନ୍ଧି ପ୍ରସ୍ତାବ ଆସିବାଟା ଦେଶବାସୀଙ୍କୁ ଅଭିଭୂତ କରିଦେଲା । ସେଥିପାଇଁ ସେତେବେଳେ ଯେଉଁମାନେ ଜେଲ୍‌ରୁ ଖଲାସ ହୋଇ ଆସିଥିଲେ ଦେଶବାସୀ ସେମାନଙ୍କୁ ବିଜୟୀ ବୀରର ପ୍ରାପ୍ୟ ସମ୍ବର୍ଦ୍ଧନା ଜଣାଇଥିଲେ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଦ୍ୱାରା ରଚିତ ଜାତୀୟ ସଙ୍ଗୀତ "ଗର୍ଜି ଉଠୁଛି ତୂର୍ଯ୍ୟନାଦ ଉଡୁଛି ବିଜୟ ଜୈତ୍ର, ଆର୍ଯ୍ୟବାହିନୀ ଫେରିଛି ଆଜି ବର୍ଜି ସମର କ୍ଷେତ୍ର x x x x ବଜାଅ ବଜାଅ ବିଜୟ ବାଦ୍ୟ ବଜାଅରେ ରଣଡ଼ଙ୍କା, ପୂର୍ଣ୍ଣ ହୋଇଛି ଜୀବନ ଯଜ୍ଞ ଚୂର୍ଣ୍ଣ ହୋଇଛି ଶଙ୍କା" ବୋଲି ବୋଲି ଲୋକେ ସେମାନଙ୍କୁ ପାଛୋଟି ନେଉଥାନ୍ତି । ବାଲେଶ୍ୱରରୁ ସତ୍ୟାଗ୍ରହୀମାନେ ଯେଉଁ ରେଳଗାଡ଼ିରେ କଟକ ଆସିଲେ ସେ ରେଳଗାଡ଼ିର ଏମୁଣ୍ଡରୁ ସେମୁଣ୍ଡ ଫୁଲମାଳରେ ମଣ୍ଡି ହୋଇଥାଏ । ପ୍ରତି ଷ୍ଟେସନରେ ମାଲ୍ୟାର୍ପଣ, ମାନପତ୍ର ପାଠ, ମିଷ୍ଟାନ୍ନ ବଣ୍ଟନ ଚାଲିଥାଏ । ଲୋକେ

ମନ ପୂରେଇ ଅଭ୍ୟର୍ଥନା କରିସାରିବା ଯାଏ ଗାଡ଼ି ପ୍ଲାଟଫର୍ମରେ ଛିଡ଼ା ହୋଇ ରହିଥାଏ । ସେ ଯୁଗରେ ସାଧାରଣତଃ ଗୋରାମାନେ ରେଳଗାଡ଼ିର ଡ୍ରାଇଭର ଓ ଗାର୍ଡ଼ ହେଉଥିଲେ । ଆମର ସେ ରେଳଗାଡ଼ିର ଗୋରା ଡ୍ରାଇଭର ଓ ଗାର୍ଡ଼ ଏ କାଣ୍ଡକାରଖାନା ଦେଖି ଅବାକ୍ ହୋଇ ଚାହିଁ ରହୁଥାନ୍ତି । କଟକ ଷ୍ଟେସନରେ ପହଞ୍ଚିବା ବେଳକୁ ଷ୍ଟେସନରେ ଲୋକାରଣ୍ୟ । ଷ୍ଟେସନରୁ କଲେଜ ଛକ ପର୍ଯ୍ୟନ୍ତ କଟକର ନାଲି ମାଙ୍କଡ଼ା ପଥର ସଡ଼କ ଗୋଲାପ ଜଳରେ ଓଦା ହୋଇଗଲା । ଫୁଲମାଳର କଳନା ନାହିଁ, କୋଠା ଉପରୁ ମହିଳାମାନେ ଅତର ସିଞ୍ଚୁଥାନ୍ତି । ବାଜା, ଜୟଧ୍ୱନିରେ କାନ ଅତଡ଼ା ପଡୁଥାଏ । ଭକ୍ତକବି ମଧୁସୂଦନଙ୍କ ବର୍ଣ୍ଣନା :

"ସିନ୍ଧୁ ନାଦ ପ୍ରାୟ ଶୁଭେ ଚହଲ,
ଲହରୀ ପରାଏ ଲୋକ ଗହଳ,
ପ୍ରାସାଦ ଶିଖରେ ଠୁଳ
ଘନ-ନୀଳକେଶୀ ବିଦ୍ୟୁତନୟନା
ଅଯୋଧ୍ୟା ରମଣୀକୁଳ ।"

ସେଦିନ ପ୍ରତ୍ୟକ୍ଷୀଭୂତ ହେଲା । ଗୋଟିଏ ପରାଧୀନ ରାଷ୍ଟ୍ର ବହୁ ଶତାବ୍ଦୀ ପରେ ନିଜର ଆତ୍ମବଳ ଉପଲବ୍ଧି କରିପାରିଲେ, ଆତ୍ମମର୍ଯ୍ୟାଦା ଫେରି ପାଇଲେ ଯାହା ହେବା କଥା, ତାହା ହେଉଥାଏ ।

ପରଦିନ ସକାଳ ଓଳି କଟକ ଚୌଧୁରୀ ବଜାରସ୍ଥ ଜୈନମନ୍ଦିରରେ ଏହି ସତ୍ୟାଗ୍ରହୀମାନଙ୍କୁ ଅଭିନନ୍ଦନ ଜଣାଇବା କାର୍ଯ୍ୟକ୍ରମ ଥାଏ । ୧୯୩୦ ମସିହାରେ ସରକାର କଂଗ୍ରେସକୁ ବେଆଇନ୍ ଘୋଷଣା କରି ସ୍ୱରାଜ୍ୟ ଆଶ୍ରମରେ ତାଲା ପକାଇଦେଲେ । ପୁଣି କଂଗ୍ରେସ କର୍ମୀଙ୍କୁ ଯେ ରହିବାକୁ ସ୍ଥାନ ଦେବ, ଖାଇବାକୁ ଦେବ, ସେ ଦଣ୍ଡନୀୟ ହେବ ବୋଲି ଅର୍ଡ଼ିନାନ୍ସ ଜାରି ହେଲା । ସେତେବେଳେ ଜାଉଁଳିଆପଟିର ପ୍ରାତଃସ୍ମରଣୀୟ ପର୍‌ବାର୍ ପରିବାରଙ୍କର ସାହସିକତା ହେତୁ ଏହି ଜୈନମନ୍ଦିର ସତ୍ୟାଗ୍ରହୀମାନଙ୍କର ଆଶ୍ରୟସ୍ଥଳ ହୋଇଥିଲା । ମହିଳା ସତ୍ୟାଗ୍ରହୀମାନେ ତେଲଙ୍ଗା ବଜାରରେ ରାଧୁବାବୁଙ୍କ ଘରେ ଶ୍ରୀକୃଷ୍ଣ ପ୍ରଧାନଙ୍କ ବସାରେ ଆଶ୍ରୟ ନେଉଥିଲେ ।

ସେଦିନ ସକାଳେ ଆମେ ଜୈନମନ୍ଦିରରେ ଏକତ୍ର ହୋଇ ଆମ ଜେଲ୍‌ଫେରନ୍ତା ସାଥୀଙ୍କ ସଙ୍ଗେ ଗପସପ ହେଉଛୁ, ଏହି ସମୟରେ ଜଣେ ବୟୋଜ୍ୟେଷ୍ଠ ହଠାତ୍

ଘୋଷଣା କଲେ ଯେ ଯେଉଁମାନେ ଜେଲ୍‌ରୁ ଖଲାସ ହୋଇ ଆସିଛନ୍ତି କିମ୍ବା ପୂର୍ବରୁ ଜେଲ୍ ଯାଇଛନ୍ତି, ସେମାନେ ସଭା ମଣ୍ଡପର ଡାହାଣ ପଟେ ବସିବେ । ଅନ୍ୟମାନେ ବାମପଟେ ବସିବେ । ଏ ଘୋଷଣା ଶୁଣି ମୋ ମୁଣ୍ଡରେ କଙ୍କଡ଼ା ବିଛା କାମୁଡ଼ି ଦେଲାପରି ଲାଗିଲା । ଖରା ବର୍ଷାକୁ ନ ମାନି ଆମେ ଯେ କଟକ ସହରର ନାଲି ସଡ଼କରେ ବୁଲି ବୁଲି "ସାରା ବିଲାତରେ ହାହାକାର ଆମେ ପକେଇ ଦେବୁ" ବୋଲି ବୋଲି ଥେୟା ହେଲୁ, ଯେଉଁ ବୁଲେଟିନ୍ ଦାଉରେ ଅସ୍ଥିର ହୋଇ ସରକାର ତାକୁ 'ବୁଲେଟ୍' ଆଖ୍ୟା ଦେଇଥିଲେ, ସେହି ବୁଲେଟିନ୍‌କୁ ପୁଲିସର ଶ୍ୟେନଦୃଷ୍ଟିରୁ ରକ୍ଷା କରି ଛାପିଲୁ । ଗଳି କନ୍ଦିରେ ବୁଲି ବୁଲି ବାଣ୍ଟିଲୁ, ତାହାର ଫଳ ହେଲା ଏୟା । ତାହାହେଲେ ସ୍ୱରାଜ-ସାଧନାର ମାପକାଠି ହେଉଛି କାରାଦଣ୍ଡ ? ମୁଖ୍ୟତଃ ଏହି ଘଟଣାଟି ମୋତେ ବାର ନମ୍ବର ଉଆର୍ଡ଼ରେ ପଶିବା ପାଇଁ ପ୍ରବର୍ତ୍ତନା ଦେଇଥିଲା ।

କିନ୍ତୁ ହାୟ ! ଆୟାର ସାହେବ ମୋର ମନୋବେଦନା ଜାଣିଲେ ନାହିଁ । ତେଣୁ ଖୁଡ଼ୀ, ଟିକିଭାଇ ଓ ସାଙ୍ଗସାଥୀଙ୍କ ଠାରୁ ମେଲାଣି ନେଇ ମୁଁ ବାର ନମ୍ବର ଉଆର୍ଡ଼ ଛାଡ଼ିଲି ।

ମନକୁ ସାନ୍ତ୍ୱନା ଦେଲି– କୋଠା ମଡରଣୀତ ହେଲି ⁄ ଆଉ ଅପାଙ୍‌କ୍ତେୟ ହୋଇ ରହିବି ନାହିଁ । ମାତ୍ର ମନ ମାନୁ ନ ଥାଏ ।

(୪)

ଦଶବର୍ଷ କାଳ ଏ ଅନ୍ତର୍ବେଦନାକୁ ବହନ କରି କରି ମୁଁ ପୁଣି ବାର ନମ୍ବର ଉଆର୍ଡ଼କୁ ଆସିଲି ୧୯୪୨ ମସିହା ସେପ୍ଟେମ୍ବର ମାସରେ । ଏ ଦଶବର୍ଷକାଳ ଜେଲ୍‌ଯିବା କାର୍ଯ୍ୟକ୍ରମ ଯେ ଆଦୌ ନ ଥିଲା, ତାହା ନୁହେଁ । ୧୯୩୩ ମସିହା ଯାଏଁ ସତ୍ୟାଗ୍ରହ ଆନ୍ଦୋଳନ ଚାଲିଲା । ମୋ ସାଙ୍ଗ ବାନରମାନେ ଜେଲ୍ ଗଲେ । ମୋ ଠାରୁ ବୟସରେ ଛୋଟ କିନ୍ତୁ ଉଚ୍ଚତାରେ ଢ଼େର୍ ବଡ଼ ତୁଳସୀ ଜେଲ୍ ଭୋଗି ଆସିଲା । ଅଥଚ ମୁଁ ଆନ୍ଦୋଳନ ପାଇଁ ଖୋଲାଖୋଲି ବୁଲେଟିନ୍ ବାଣ୍ଟି, ଚାନ୍ଦାକରି, ଶୋଭାଯାତ୍ରାରେ ଯୋଗ ଦେଇ ସୁଦ୍ଧା ଗିରଫ ହେଲି ନାହିଁ । ସତ୍ୟାଗ୍ରହୀ-ସଂଗ୍ରହ କାମରେ ରମାଦେବୀଙ୍କ ସାଙ୍ଗରେ ମୁଁ କୋରେଇ, ଅହିଆସ ଅଞ୍ଚଳ ବୁଲିଲି । ସେ ଅଞ୍ଚଳରୁ ମହିଳା ସତ୍ୟାଗ୍ରହୀ ବାହାରି ଜେଲ୍ ଯିବାରୁ ରମାଦେବୀ kidnapping (ପିଲା ଚୋରୀ) ଅପରାଧରେ

ଗିରଫ ହେଲେ । କିନ୍ତୁ ମୋତେ ବିଧି ବାମ ହେଲା । କିମ୍ବା ମୋ ବାପା, ବୋଉ, ଦାଦା, ଖୁଡ଼ୀ, ଭାଇ ସମସ୍ତେ ଜେଲ୍ ଭିତରେ ଥିବା ଯୋଗୁଁ ମୋତେ ବାହାରେ ରହିବା ଦଣ୍ଡ ମିଳିଲା ।

ଏହିପରି କାମ କରୁ କରୁ ୧୯୩୨ ମସିହା ସେପ୍ଟେମ୍ବର ମାସରେ ଗାନ୍ଧିଜୀ ୟେରବାଦା ଜେଲ୍‌ରେ ସାଂପ୍ରଦାୟିକ ଭାଗବଣ୍ଟା (communal award)ର ବିରୋଧ କରି ଆମରଣ ଅନଶନ କଲେ । ଏ ଖବର ପାଇବା ମାତ୍ରେ ଅସ୍ପୃଶ୍ୟତା ନିବାରଣ ପାଇଁ ଜୋରସୋର୍‌ରେ ଆନ୍ଦୋଳନ ଚାଲିଲା । ଗୋପବନ୍ଧୁ ଚୌଧୁରୀ ଓ ମାଳତୀ ଚୌଧୁରୀ ସେତିକିବେଳେ ଜେଲ୍‌ରୁ ଖଲାସ ହୋଇଥାନ୍ତି । ସେମାନଙ୍କ ତତ୍ତ୍ୱାବଧାନରେ ଆମେ ଅସ୍ପୃଶ୍ୟତା ନିବାରଣ କାମରେ ଲାଗିଲୁ । କଟକର ବିଭିନ୍ନ ସାହିରେ ସଭାକରି ଅସ୍ପୃଶ୍ୟତା ଯେ ଶାସ୍ତ୍ରାନୁମୋଦିତ ନୁହେଁ ତାହା ଆଲୋଚନା କରିବା, ଅସ୍ପୃଶ୍ୟତା ବିରୋଧୀ ବ୍ୟକ୍ତିଙ୍କ ସ୍ୱାକ୍ଷର ସଂଗ୍ରହ କରିବା, ଶୋଭାଯାତ୍ରାରେ ଅସ୍ପୃଶ୍ୟତା ଦୂର କରିବା ପାଇଁ ଗାନ୍ଧିଜୀ ଅନଶନ କରିଥିବା କଥା ଗୀତରେ ବୋଲିବା ଆଦି କାମରେ ଲାଗିଲୁ । ଗାନ୍ଧିଜୀ ଅନଶନ ଭାଙ୍ଗିବା ପରେ ମଧ ଅସ୍ପୃଶ୍ୟତା ନିବାରଣ କାମ ଚାଲିଥାଏ । କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟଙ୍କ ସଭାପତିତ୍ୱରେ ଅସ୍ପୃଶ୍ୟତା ନିବାରିଣୀ ସଂଘ ଗଢ଼ା ହେଲା । ପରେ ଏହାର ନାମ ହେଲା 'ହରିଜନ ସେବକ ସଂଘ' । କବିରାଜ ମହାଶୟଙ୍କ ପ୍ରବର୍ତ୍ତନାରେ ହିନ୍ଦୋଳର ଦେବମନ୍ଦିର ଦ୍ୱାର ହରିଜନଙ୍କ ପାଇଁ ଉନ୍ମୁକ୍ତ ହେଲା । ତଥାକଥିତ ଅସ୍ପୃଶ୍ୟ ପିଲାଙ୍କୁ ପାଠଶାଳାରେ ଅଲଗା କରି ବସା ଯାଉଥିଲା । ଶିକ୍ଷକ ଦଣ୍ଡଦେବା ଆବଶ୍ୟକ ମଣିଲେ ବେତ ଫିଙ୍ଗି ସେମାନଙ୍କୁ ମାରୁଥିଲେ । ସବୁ ପିଲା ଏକାଠି ବସିବା ପାଇଁ, ସର୍ବସାଧାରଣ କୂଅ ପୋଖରୀ ସମସ୍ତଙ୍କୁ ବ୍ୟବହାର କରିବାକୁ ଦେବା ପାଇଁ, ଠାକୁର ଦର୍ଶନ ସକାଶେ ମନ୍ଦିରକୁ ଯିବାକୁ ଦେବା ପାଇଁ ଲୋକଙ୍କ ସଙ୍ଗେ ଆଲୋଚନା ଚାଲିଲା । କଟକ ସହରର ଝାଞ୍ଜିରୀମଙ୍ଗଳା, ମଠସାହି, ରାଜାବଗିଚା ଓ ହାଡ଼ିଗାଡ଼ିଆ ମେହେନ୍ତର ବସ୍ତିକୁ ଯାଇ ବସ୍ତି ସଫାଇ, ପିଲାଙ୍କୁ ପାଠ ପଢ଼େଇବା, ଔଷଧ ଆଣି ଦେବା, ବୟସ୍କ ଲୋକଙ୍କୁ ପୁରାଣ ଶୁଣାଇବା, ମଳା ପଶୁମାଂସ ଓ ଗୋରୁମାଂସ ନ ଖାଇବାକୁ ପ୍ରବର୍ତ୍ତାଇବା ଆଦି କାମରେ ଆମେ ଲାଗିଲୁ । କଟକରେ "କୈବଲ୍ୟ କୁଟୀର"ରେ ରହି ହରିଜନ ପିଲା ପାଠ ପଢ଼ିଲେ, କାଠ କାମ, ସିଲେଇ ଆଦି ଶିଖିଲେ । ଗାନ୍ଧିଜୀଙ୍କ ଦ୍ୱାରା ସମ୍ପାଦିତ 'ହରିଜନ' ପତ୍ରିକା, ପୁରୀର ଲୋକନାଥ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ଓଡ଼ିଆ 'ହରିଜନ' ପତ୍ରିକା ବିକ୍ରୀ କରିବା, ଏସବୁ କାମ ପାଇଁ ଅର୍ଥ ସଂଗ୍ରହ ଆଦି ମଧ ଆମେ କରୁଥାଉ । ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ, କବିରାଜ ରାଧାନାଥ

ଶତପଥୀ, ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରମୁଖ ଏ କାମରେ ଲାଗି ପଡ଼ିଲେ । 'ମଲାଜହ୍ନ'ର ଲେଖକ ଉପେନ୍ଦ୍ର କିଶୋର ଦାସ ଆମକୁ ପ୍ରଭାତଫେରୀରେ ବୋଲିବା ପାଇଁ ଗୀତ ଲେଖି ଦେଲେ ।

ଏହି ଧରଣର କାମ କରୁ କରୁ ୧୯୩୪ ମସିହା ମେ ମାସରେ ଗାନ୍ଧିଜୀ ଓଡ଼ିଶା ଗସ୍ତରେ ଆସିଲେ । ପୁରୀରେ ପହଞ୍ଚି ଗାନ୍ଧିଜୀ ପାଦରେ ଚାଲି ଚାଲି ଗସ୍ତ କରିବେ ବୋଲି ଘୋଷଣା କଲେ । ସେତିକିବେଳେ ଗାନ୍ଧିଜୀଙ୍କ ସହିତ ନିକଟ ସମ୍ପର୍କରେ ଆସିବାର ସୌଭାଗ୍ୟ ମିଳିଲା । ସ୍ୱାଧୀନତା ସଂଗ୍ରାମର ଅଧିନାୟକରୂପେ ଯେଉଁ ଗାନ୍ଧିଜୀଙ୍କୁ ଯେଉଁ ଲୋକେ ତ୍ରାଣକର୍ତ୍ତାର ଆସନରେ ବସାଇ ଠାକୁର ପରି ପୂଜିବା ଆରମ୍ଭ କରିଦେଇଥିଲେ, ସେହି ଗାନ୍ଧିଜୀ ଯେତେବେଳେ ଛୁଆଁ ଅଛୁଆଁ ଭେଦ ଉଠାଇଦେବା କଥା କହିଲେ, ସେହି ଲୋକେ ଛୁଆଁଛୁଇଁ ଛାଡ଼ିବା ଦୂରେ ଥାଉ ଗାନ୍ଧିଜୀଙ୍କୁ ହିନ୍ଦୁ ଧର୍ମର ପରମ ଶତ୍ରୁ ମଣିଲେ । ଗାନ୍ଧୀ ଇରୱଇନ୍ ସନ୍ଧି ପରେ ଜେଲ୍ ଫେରନ୍ତା ସତ୍ୟାଗ୍ରହୀଙ୍କୁ ପଣ୍ଡିତ ପରୀକ୍ଷିତ ଦାଶଶର୍ମା ମହୋଦୟ ନଡ଼ିଆ ଓ ଫୁଲ ଦେଇ ସ୍ୱାଗତ କରିବା ସ୍ଥଳେ ୧୯୩୪ ମସିହାରେ କାଠଯୋଡ଼ି ନଦୀବାଲି ସଭାରେ ସେହି ମହାଶୟ ଗାନ୍ଧିଜୀଙ୍କୁ କଳାପତାକା ଦେଖାଇବା ଦୃଶ୍ୟ ଆମେ ଦେଖିଲୁ । ଅସ୍ପୃଶ୍ୟତାଟା ଶାସ୍ତ୍ର ସମ୍ମତ ବୋଲି ପଣ୍ଡିତମାନେ ସୁଦ୍ଧା କିପରି ବିଶ୍ୱାସ କରୁଥିଲେ ଏହି ଦୃଷ୍ଟାନ୍ତରୁ ତାହା ଜଣାପଡ଼େ ।

ସେହି ୧୯୩୪ ମସିହା ଅଗଷ୍ଟ ମାସରେ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଗୋପବନ୍ଧୁ ଚୌଧୁରୀ ଓ ରମା ଦେବୀ ବରୀ ଗଲେ । ରଚନାତ୍ମକ କାର୍ଯ୍ୟ ମାଧ୍ୟମରେ ଲୋକଙ୍କ ମଧ୍ୟରେ ସ୍ୱରାଜ୍ୟ ଚେତନା ଜାଗ୍ରତ କରିବା ଥିଲା ମୂଳ ଲକ୍ଷ୍ୟ । କଟକ ହରିଜନ ବସ୍ତିରେ କାମ କରୁଥିବା ଆମେ ସାତ ଭଉଣୀ, ସୁଶୀଳା, ମଙ୍ଗଳା, ଶୋଭା, ଗୋଦାବରୀ, ମାଣିକ, ତୁଳସୀ, ଅନ୍ନପୂର୍ଣ୍ଣା ଓ ପରବର୍ତ୍ତୀ କାଳର ରାଜସ୍ୱ ମନ୍ତ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ ତାଙ୍କ ସାଙ୍ଗରେ ବରୀ ଗଲୁ । କିଛିଦିନ ପରେ ଜ୍ଞାନମଣ୍ଡଳ ପ୍ରଣେତା ବିନୋଦ କାନୁନ୍‌ଗୋ ଆମ ସାଙ୍ଗରେ ଯୋଗଦେଲେ । ଜନସାଧାରଣଙ୍କ ସହିତ ଏକରୂପ ହୋଇ ଗଠନମୂଳକ କାର୍ଯ୍ୟ ମାଧ୍ୟମରେ ଲୋକଙ୍କ ମଧ୍ୟରେ ଚେତନା ଆଣିବାର ଯେଉଁ ପରଖ ଗାନ୍ଧିଜୀ ସେତେବେଳେ ଚଳାଇଥିଲେ ତାହା ଲେଖିଲେ ଗୋଟିଏ ସ୍ୱତନ୍ତ୍ର ପୋଥି ହେବ । ଟ୍ରେଞ୍ଚ ପାଇଖାନାର ଗଭୀରତା କେତେ ହେବା ଦରକାର, ବାଉଁଶ ଅରଟର ପକ୍ଷୀର ଘେର କେତେ ହେଲେ ସୂତାକଟାଳୀର ସୂତାକାଟିବା ଗତି ବଢ଼ିବ, ବାଡ଼ିରେ କେଉଁ ଗଛ ଲଗାଇବା ଉପରେ ଗୁରୁତ୍ୱ ଦେବାକୁ ହେବ ଆଦି ବିଷୟରେ ଗାନ୍ଧିଜୀ ସ୍ୱହସ୍ତରେ ଚିଠି

ଲେଖି ଆମକୁ ଉତ୍ସାହିତ କରୁଥିଲେ । ତାଙ୍କ ଦୃଷ୍ଟିରେ ସ୍ୱାଧୀନତା ଅର୍ଜନ କରିବା ଯେତିକି ଗୁରୁତ୍ୱପୂର୍ଣ୍ଣ ଥିଲା, ସ୍ୱାଧୀନ ଭାରତର ଉପଯୁକ୍ତ ନାଗରିକ ଗଢ଼ିବା ଥିଲା ତା'ଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ।

ଏହି ଗ୍ରାମ ସଂଗଠନ ଅର୍ଥାତ୍ ଖଦୀ, ନିଶା ନିବାରଣ, ପ୍ରୌଢ଼ ଶିକ୍ଷା, ସ୍ତ୍ରୀ ଶିକ୍ଷା, ମୌଳିକ ଶିକ୍ଷା, ଗାଁ ସଫେଇ, ଗୋ ସୁଧାର, ମହୁମାଛି ପାଳନ, କଂଗ୍ରେସ କମିଟି ଗଠନ ଆଦି କାମ କରୁ କରୁ ୧୯୩୯ ମସିହା ସେପ୍ଟେମ୍ବର ମାସରେ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ସରକାରୀ ଅର୍ଡ଼ିନାନ୍‌ସର ବିରୋଧ କରି ଗାନ୍ଧିଜୀ ବ୍ୟକ୍ତିଗତ ସତ୍ୟାଗ୍ରହ ଆରମ୍ଭ କଲେ । ବିନୋବାଜୀ, ପଣ୍ଡିତ ନେହେରୁଙ୍କ ସ୍ତରର କର୍ମୀମାନେ ବ୍ୟକ୍ତିଗତ ସତ୍ୟାଗ୍ରହ ପାଇଁ ବଛାହେଲେ । "ଯୁଦ୍ଧକୁ ସାହାଯ୍ୟ କରିବା ପାପ ବା ହାରାମ୍" ଏତିକି କହିଲେ ସତ୍ୟାଗ୍ରହୀଙ୍କୁ ଗିରଫ କରାଯାଉଥିଲା । ଆମର ବନ୍ଧୁ ସହକର୍ମୀ ଏ ସତ୍ୟାଗ୍ରହରେ ଯୋଗ ଦେଇ ଜେଲ୍ ଗଲେ । ମୁଁ ସେତେବେଳେ ମୌଳିକଶିକ୍ଷାର ପରଖ କାମରେ ମୁଣ୍ଡ ପୂରାଇ ଥିଲି । ମୋର ଆଗ୍ରହ ସତ୍ତ୍ୱେ ମୌଳିକଶିକ୍ଷା ପରିଷଦ ମୋତେ ଏ ସତ୍ୟାଗ୍ରହରେ ଯୋଗ ଦେବାକୁ ଅନୁମତି ଦେଲେ ନାହିଁ । କାରଣ ଗାନ୍ଧିଜୀଙ୍କ ବିଚାରରେ ମୌଳିକଶିକ୍ଷା ଥିଲା ସବୁଠାରୁ ବଡ଼ ବିପ୍ଳବାତ୍ମକ କାର୍ଯ୍ୟକ୍ରମ ।

ତା'ପରେ ଆସିଲା ୧୯୪୨ ମସିହା । ଅଗଷ୍ଟ ନଅ ତାରିଖରେ ସମଗ୍ର ଭାରତବର୍ଷରେ ପ୍ରାୟ ସବୁନେତା ଗିରଫ ହେଲେ । ସରକାରଙ୍କ ଆଦେଶରେ ପୁଲିସ ଗୋପବନ୍ଧୁ ଚୌଧୁରୀଙ୍କ କର୍ମକେନ୍ଦ୍ର ସେବାଘର ଦଖଲ କରିବାକୁ ବରୀ ଆସିଲେ । ଗୁଣନିଧି ମହାନ୍ତି ଓ ମଙ୍ଗଳା ଦେବୀ ପୁଲିସକୁ ଦଖଲ କରାଇ ନ ଦେବା ଅପରାଧରେ ୧୦/୮/୪୨ରେ ଗିରଫ ହେଲେ । ମୁଁ ସେଠାରେ ଉପସ୍ଥିତ ଥାଏ । କିନ୍ତୁ ଏକାଦିନେ ସମସ୍ତେ ଗିରଫ ନ ହୋଇ ଆନ୍ଦୋଳନ ଚଳାଇବା ପାଇଁ ନିଷ୍ପତ୍ତି ନିଆ ସରିଥିବାରୁ ମୁଁ ଆଡ଼େଇ ହୋଇ ରହିଲି । ସେହିଦିନ କଟକ ଆସି ତେଲେଙ୍ଗା ବଜାର ହେମନ୍ତବାବୁଙ୍କ ଘରେ ଏକତ୍ର ହୋଇ ଅନୀଲ କୁମାର ଘୋଷ, ଦାଶରଥି ବେହେରା, ଶରତ୍ ଚନ୍ଦ୍ର ମହାରଣା ସ୍ଥିର କଲେ ଯେ ଅଗଷ୍ଟ ବାର ତାରିଖ ଦିନ ଗୌରୀଶଙ୍କର ପାର୍କରେ ସଭା ହେବ । ଦାଶରଥି ବେହେରା ବକ୍ତୃତା ଦେବେ । ସଭା ହେଲା, ମୁଁ ସଭାରେ ଥିଲି । ଦାଶରଥି ବାବୁ ଗିରଫ ହେଲେ । ଶୋଭାଯାତ୍ରା ବାହାରିଲା । ପୁଲିସ ସାହେବ ଗୌରକୃଷ୍ଣ ମହାନ୍ତି ଶୋଭାଯାତ୍ରା କରାଇ ଦେଲେ ନାହିଁ । ମୁଁ ଶୋଭାଯାତ୍ରାରେ ଥିଲି ଗିରଫ ହେଲି

ନାହିଁ । ବରୀ ଫେରି ଆସି ଗାଁ ଗାଁ ବୁଲି ମରଣ-ସେନା ଗଢ଼ିଲୁ, ପ୍ରେସିଡେଣ୍ଟ, ଦଫାଦାର, ଚୌକିଦାରଙ୍କ ଇସ୍ତଫାପତ୍ର ସଂଗ୍ରହ କଲୁ । ସମାନ୍ତରାଳ ସ୍ୱାଧୀନ ସରକାର ପ୍ରତିଷ୍ଠା କରିବା ଥାଏ ଲକ୍ଷ୍ୟ । ଅଗଷ୍ଟ ୨୬ ତାରିଖ ଦିନରେ କାଇପଡ଼ାରେ ମରଣ-ସେନା ଓ ବ୍ରିଟିଶ୍ ଫୌଜ ମୁହାଁମୁହିଁ ହେଲେ । କଳାମାଟିଆରେ ମାୟାଧର ଭୂୟାଁ ନିଜ ଛାତି ରକ୍ତରେ ଭୂଇଁ ନାଲି କରି ଶହୀଦ ହେଲେ । ସାଉଁଟି ମଳିକ, ହାଡ଼ିବନ୍ଧୁ ପଣ୍ଡା, ସାନନ୍ଦ ସ୍ୱାଇଁ ବନ୍ଧୁକ ଗୁଳିରେ ପ୍ରାଣ ଦେଲେ । ଦଶବର୍ଷର ବାଳକ ସୁପ୍ରଭାତର ବାହୁ ସଙ୍ଗୀନ ମୁନରେ କ୍ଷତ ବିକ୍ଷତ ହେଲା; ରାମ ଜେନା, ନିଧି ସାମଲ ଗୁଳିମାଡ଼ରେ ଆହତ ହେଲେ; ଋଷି ବେହେରା, ହୁରୁଷି ଭାଇ ଆଦି ବନ୍ଧା ହୋଇ ଗଲେ । ମୁଁ ସେଠାରେ ଉପସ୍ଥିତ ଥାଇ ମଧ୍ୟ ସେ ସୌଭାଗ୍ୟରୁ ବଞ୍ଚିତ ହେଲି ।

ଅବଶେଷରେ ମୋର ପିତୃବନ୍ଧୁ କଟକର ଆଡ଼ିସ୍‌ନାଲ୍ ଡ଼ିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ଜନାବ ମୋସାହେବ ଖାଁ ମୋତେ ବାର ନମ୍ବର ଉଆର୍ଡ଼କୁ ପଠାଇବାର ବ୍ୟବସ୍ଥା-ପତ୍ର ଦେଲେ । ଏହି ମାଜିଷ୍ଟ୍ରେଟ୍‌ଙ୍କ କାର୍ଯ୍ୟକଳାପରୁ ମୋତେ ଦୁଇଟି ପଦାର୍ଥ-ପାଠ ମିଳିଲା । ପ୍ରଥମତଃ, ବ୍ରିଟିଶ୍ ସରକାରଙ୍କର ଭେଦ ସୃଷ୍ଟି କରି ଶାସନ କରିବା ନୀତି (divide and rule)କୁ ଶ୍ରୀ ଜ୍ଞାନାଞ୍ଜନ ନିୟୋଗୀଙ୍କ ଠାରୁ ଆରମ୍ଭ କରି ଆଚାର୍ଯ୍ୟ ହରିହର ଦାସ ଯାଏ ଯେତେ ବୁଝାଇ ପାରି ନ ଥିଲେ, ମାଜିଷ୍ଟ୍ରେଟ୍ ତାହା ମୁହୂର୍ତ୍ତକେ ବୁଝାଇ ଦେଲେ । ଦ୍ୱିତୀୟତଃ ଜାତିଭେଦ ବା ଜାତି ଯିବା ଭୟଟା ଯେ ଆମ ପରାଧୀନତାର ଗୋଟାଏ ବଡ଼ କାରଣ, ସେ କଥାଟା ଅହମଦ୍ ଶାହ ଅବ୍‌ଦଲିଙ୍କ ପାନିପଥ ଲଢ଼େଇଠାରୁ ମହାତ୍ମା ଗାନ୍ଧୀଙ୍କ ଆମରଣ ଅନଶନ ଯାଏ ସବୁ ଦେଖି ଶୁଣି ଯେତେ ବୁଝି ନ ଥିଲି ବରୀରେ ସମୂହ ଜୋରିମାନା ଆଦାୟ ହେବାବେଳେ ତାହା ଜଳ ଜଳ ବୁଝିଗଲି । ସମୂହ ଜୋରିମାନା ପଇଠ ନ କଲେ ସରକାର ଆମ ଘରେ ପାଣ ପଠାଣ ପୂରେଇ ଦେବ, ଆମେ ସାଇଭାଇ ଜାତିପତି ହରେଇବୁ, ଏ ଭୟ ଆଗରେ "କର ବା ମର" ସଂକଳ୍ପ ପାଣି ଫାଟିଗଲା । କଟକ ଜିଲ୍ଲାର ଅତିରିକ୍ତ ପୁଲିସ ସାହେବ ଜ୍ୟୋତିଷ ଚନ୍ଦ୍ର ଘୋଷ ଓ ଯୁଦ୍ଧ ଫେରନ୍ତା ଗୋରା ସର୍ଜେଣ୍ଟ ଜନ୍ ସାହେବଙ୍କ ତତ୍ତ୍ୱାବଧାନରେ ଗିରଫ ହୋଇ. ବେସରକାରୀ ମୌଳିକ ବିଦ୍ୟାଳୟର ଶିକ୍ଷକ ଓ ଗ୍ରାମବାସୀଙ୍କ ସହିତ ନାହାରେ ବସି ଯାଜପୁର ଆସି ସେଠାରୁ ସିଧା କଟକ ଆସିଲୁ । ଆମ ମୁଖ୍ୟ ଜଗୁଆଳି ଜନ୍ ସାହେବ ଜେଲ୍ କର୍ତ୍ତୃପକ୍ଷଙ୍କ ଜିମାରେ ଆମକୁ ଛାଡ଼ି ଆମଠାରୁ ବିଦାୟ ନେଲାବେଳେ ଶରତ ଚନ୍ଦ୍ର ମହାରଣା ତାଙ୍କୁ ପଚାରିଲେ– Mr. John, when do we meet again ?

ପରବର୍ତ୍ତୀ ବାକ୍ୟରେ ସେ ଜନ୍‌ଙ୍କୁ କହିଲେ,"Perhaps we meet in free India." ସର୍ଜେଣ୍ଟ ନିର୍ବାକ ହୋଇଗଲେ । ତାଙ୍କ ଆଖି ଛଳଛଳ ହୋଇଗଲା । ମିଲିଟାରୀ କାଇଦାରେ ସାଲ୍ୟୁଟ କରି "ଗୁଡ୍‌ବାଇ" କହି ସେ ଆମଠାରୁ ମେଲାଣି ନେଲେ ।

ପୁଣି ଆମର ଗୃହ-ବ୍ୟବସ୍ଥା ତ ଥାଏ, ହେଉପଛେ ଜେଲ୍‌ଖାନା । ଅପରାଧୀ ସାଧାରଣ କଇଦୀମାନେ ଦୁଇଓଳି ଜମାଦାର ସାଙ୍ଗରେ ଆସି ଆମ ଉଆର୍ଡ଼ ଭିତର, ଅଗଣା, ପାଇଖାନା ଆଦି ସଫା କରିଦେଇ ଯାଆନ୍ତି । ଆମେ ନିଜ ହାତରେ ସଫାଇ କାମ କରିବାକୁ ଠିକ୍ କଲୁ । କେବଳ ପାଇଖାନା ସଫାଟି କରିପାରିଲୁ ନାହିଁ । କାରଣ ମଳପୂର୍ଣ୍ଣ ପାତ୍ରକୁ ଆମ ଉଆର୍ଡ଼ ବାହାରକୁ ନେବାକୁ ହୁଏ । ଆମର ତ ପାଚେରୀ ଡେଇଁବା ମନା । ତେଣୁ ଘରସଫା, ଘରପୋଛା, ପରିବେଷଣ, ରୋଗୀ ପରିଚର୍ଯ୍ୟା ଆଦି କାମ ଆମେ କଲୁ । ଆମ ଭିତରୁ ଅନେକେ ଅଟକବନ୍ଦୀ ହେବାରୁ କ୍ଷୀର ଗରମ କରିବାକୁ ଆମକୁ ଚୂଲି ଲଗେଇବା ପାଇଁ ଅନୁମତି ମିଳିଥିଲା । ବାର ନମ୍ବର ଅଗଣାରେ ଗୋଟିଏ ଛୋଟିଆ ତମ୍ବୁ ପକାଯାଇ ସେଇଠି ଚୂଲି ପରାହେଲା । ଶକୁନ୍ତଳା, କିରଣ ଓ ଉରରା ଆଖର ପିଲାଲୋକ ତ ! ସକାଳେ ଯେଉଁ ମୁଠାଏ ଗଜାମୁଗ ବା ଖେଚେଡ଼ି ମିଳେ ଦଶଟା ନ ବାଜୁଣୁ ତାଙ୍କର ସେତକ ହଜମ ହୋଇଯାଏ । ସେଥିପାଇଁ ସକାଳ ଜଳଖିଆରୁ ସମସ୍ତଙ୍କ ଭାଗରୁ ଗଜାମୁଗ ବଳେଇ ଦେହରେ ଲଗାଇବାକୁ ମିଳୁଥିବା ଶୋରିଷ ତେଲରୁ ଦୁଇଠୋପା ପକେଇ ସେ ଗଜାମୁଗ ଖରଡ଼ି ଦେଲେ ସେମାନେ ପାଟିରେ ପକାନ୍ତି । ଏହାଛଡ଼ା ଏକାଦଶୀର ଆହାର୍ଯ୍ୟ ପ୍ରସ୍ତୁତ କରିବା, ସୁନାମଣି ଦେବୀଙ୍କ ପାଇଁ ହବିଷଭାତ ରାନ୍ଧିବା ଆଦି କାମ ମଧ୍ୟ ଆମ ରୋଷ ଘରେ ହୁଏ ।

ପ୍ରାୟ ପ୍ରତି ସପ୍ତାହରେ ମନୋରଞ୍ଜନାତ୍ମକ କାର୍ଯ୍ୟକ୍ରମ ମଧ୍ୟ ପ୍ରଦର୍ଶିତ ହୁଏ । ଅବଶ୍ୟ ଆମେ ଶ୍ରୋତା, ଆମେ ବକ୍ତା । ସାଥୀମାନଙ୍କ ନାମରେ ବ୍ୟଙ୍ଗକବିତା ରଚନା କରି କ୍ୟାରୀକେଚର କରିବା, ଛୋଟ ଛୋଟ ନାଟକ ଅଭିନୟ, କବିତା ଆବୃତ୍ତି ଆଦି ଚାଲେ । ଖେଳ ଭିତରେ ପ୍ରିୟମ୍ବଦା ଦେବୀଙ୍କର ପ୍ରଧାନ ଖେଳ ହେଲା ତାସ୍ । ସେ ମନଧ୍ୟାନ ଦେଇ 'ସମାଜ'ର ସମ୍ବାଦଗୁଡ଼ିକ ଆମୂଳଚୂଳ ଶୁଣି ସାରିବା ପରେ ପାଞ୍ଚଶହ ଗଜ ଖଣ୍ଡେ ସୂତା କାଟିଦେଇ ତାସ ମୁଠାକ ବାହାର କରନ୍ତି । ପ୍ରତିଦିନ ତିନିଚାରି ଘଣ୍ଟା ତ ସେ ନିଶ୍ଚୟ ତାସ୍ ଖେଳିବେ, ଏକାଦଶୀ ଦିନ ଚାଲିବ ଅଖଣ୍ଡ ତାସ୍ କ୍ରୀଡ଼ା । ସକାଳୁ ଦିନ ବାରଟା ଯାଏ ସେ ନିଜେ ବସି ଖେଳି ଲାଗିଥିବେ, ବାକି ତିନିଜଣ ଖେଳି ଖେଳି ଥକି ଯାଉଥିବାରୁ ବଦଳି ବଦଳି ଖେଳିବେ । ମଧ୍ୟାହ୍ନରେ ମୁଗସିଝା, ଆଳୁସିଝା ବା

ସେହିପରି ଗୋଟାଏ କିଛି ଏକାଦଶୀ ଉପଯୋଗୀ ଜେଲ୍ ଖାଦ୍ୟ ଖାଇଦେଇ ଘଣ୍ଟାଏ ଯାଇଥିବ କି ନାହିଁ ଡାକ ପକେଇବେ– "ମାଳ, କିରଣ, ହାରାମଣି ଆସ, ଆସ ।"

ଏ ତାସ୍ ଆସିଲା କେଉଁଠୁ ? ଭୂତପୂର୍ବ କୁଳପତି ପ୍ରାଣକୃଷ୍ଣ ପରିଜାଙ୍କ ସହଧର୍ମିଣୀ ସୁନ୍ଦରମଣି ପରିଜା ଜେଲ୍ ପରିଦର୍ଶିକା ହିସାବରେ ଥରେ ବାର ନମ୍ବର ଉଆର୍ଡ଼ ଭିତରକୁ ଆସିଥିଲେ । ଆମର ଭଲ ମନ୍ଦ ବୁଝିସାରି ସେ ପଚାରିଲେ – ତମର ଆଉ କ'ଣ ଦରକାର ? କ୍ଷେତ୍ରମଣି ଦେବୀଙ୍କ ମୁହଁରୁ ବାହାରି ପଡ଼ିଲା – "ମୁଠାଏ ତାସ୍ ।" ଆଉଦିନେ ଆମକୁ ପରିଦର୍ଶନ କରିବାକୁ ଆସି ସେ ତାସ୍ ଦେଇଗଲେ ।

ଆମକୁ ଅର୍ଥାତ୍ ଅଟକବନ୍ଦୀଙ୍କୁ ମିଳୁଥିବା ସନ୍‌ଲାଇଟ୍ ସୋପ୍‌ର ମୋଟା କାଗଜ ଖୋଳକୁ କାଟି ଆମେ Word making - Word taking ଖେଳ ତିଆରି କଲୁ । କଉଡ଼ି ଖେଳ ମଧ୍ୟ ଚାଲିଲା । ମୋଟ ଉପରେ ରମାଦେବୀ, ମାଳତୀ ଦେବୀ, ପ୍ରଭୃତି ଯେଉଁମାନଙ୍କର ଦୀର୍ଘକାଳ ଜେଲ୍‌ରେ ରହିବାର ପୂର୍ବାନୁଭୂତି ଥିଲା, ସେମାନେ ଆମମାନଙ୍କର ମନଧ୍ୟାନ ସବୁବେଳେ କୌଣସି ନା କୌଣସି କାମରେ ଲଗାଇ ରଖିବାପାଇଁ ସତତ ପ୍ରୟାସ କରୁଥିଲେ । କାରଣ କେତେ ମାସ କେତେ ବର୍ଷ ଏହିପରି ଭାବରେ ଆମକୁ ସେ ପିଞ୍ଜରା ଭିତରେ ରହି ସେହି ଏକା ଖାଦ୍ୟ ଖାଇ, ଏକା ମୁହଁ ଦେଖି ଦେଖି ଦିନ ସାରିବାକୁ ହେବ ତାହା କଳନା କରିହେଉ ନ ଥିଲା ।

କିଛିଦିନ ଚାଲିଲା ବଗିଚା କାମ । ଆମ ଉଆର୍ଡ଼ ଅଗଣାରେ ମୁଥା ଘାସଟିଏ ସୁଦ୍ଧା ନ ଥାଏ । ଗୋଟାଏ ପଟେ ପଲସ୍ତରା, ଗୋଟାଏ ପଟେ ତମ୍ବୁ । ଆମେ ସାଂଧ୍ୟ ଭ୍ରମଣ ପାଇଁ ଖଣ୍ଡେ ଲମ୍ବାପଟି ଛାଡ଼ିଦେଇ ଛୋଟ କିଆରୀ ତିନି ଚାରିଖଣ୍ଡ ତିଆରି କରି ଆମକୁ ମଧ୍ୟେ ମଧ୍ୟେ ଖାଇବାକୁ ମିଳୁଥିବା ପିଆଜ ଲଗେଇଲୁ । ବାବାଜୀ ବଳଭଦ୍ର ମିଶ୍ର ଅନୁଗୁଳରୁ କିଛି ଅଁଳା ଓ ଲେମ୍ବୁ ପଠାଇଥିଲେ । ରମାଦେବୀ ଅଁଳା ଓ ଲେମ୍ବୁ ମଞ୍ଜିରୁ ଚାରା ଉଠାରି ନର୍ସରୀ ସ୍ଥାପନ କଲେ । ସେ ଅଁଳା ଚାରା ଦେଖି ଜେଲର ସୁଦ୍ଧା ଲୋଭେଇଲେ ଏବଂ ଚାରାକୁ ନେଇ ଜେଲ୍ ଦାଣ୍ଡରେ ଲଗାଇଲେ । ଏବେ ଜେଲ୍‌ରୁ ଉତ୍ପନ୍ନ ହେଉଥିବା ଜିନିଷ ବିକ୍ରୀପାଇଁ ଗୋଦାମ ତିଆରି ବେଳେ ସେ ଅଁଳା ଗଛଟି କଟି ପଡ଼ିଲା ।

ବାବାଜୀଙ୍କ ଦ୍ୱାରା ପ୍ରେରିତ ଲେମ୍ବୁକୁ ପୁଣି ଆଚାର ତିଆରି କରିବା ଯୋଜନା ପ୍ରସ୍ତୁତ ହେଲା । ଅଧେ ଲେମ୍ବୁରୁ ରସ ଚିପୁଡ଼ା ହୋଇ ଆମକୁ ପଡ଼ିରେ ମିଳୁଥିବା

କଞ୍ଚାଲଙ୍କା ଓ ଲୁଣ ସେଥିରେ ପକାଇ ପ୍ରକାରେ ଆଚାର ହେଲା । ସେ ଲେମ୍ବୁରସ କାହାରି ଜିଭରେ ବାଜିବା ପୂର୍ବରୁ ଶିଶିଟି ଭାଙ୍ଗିଯାଇ ରସତକ ଗଡ଼ିଗଲା । କିଛି ଲେମ୍ବୁ ଖଣ୍ଡ ଖଣ୍ଡ ହୋଇ କଟାହୋଇ ଲୁଣରେ ଜଗା ହେଲା । ଲୁଣରେ ପଡୁ ପଡୁ ସେଥିରୁ ଚଉଦଅଣା ଅଂଶ ଚଖାଚଖିରେ ସରିଗଲା । ବାକି ରହିଲା ଚୋପା । ମଙ୍ଗଳା ଦେବୀ ସେ ଚୋପାକୁ ଟିକି ଟିକି କରି କାଟି ସେଥିରେ ପୁଞ୍ଜାଏ ଲେମ୍ବୁରସ ଚିପୁଡ଼ି କେବଳ ଲୁଣ ସଂଯୋଗରେ ଯେଉଁ ଆଚାର ତିଆରି କଲେ ଚବିଶିଘଣ୍ଟା ନ ପୁରୁଣୁ ଜେଲ୍-ଖେଚୁଡ଼ି ସଙ୍ଗେ ତାର ବିନିଯୋଗ ଆରମ୍ଭ ହୋଇଗଲା । ଆଃ ! ସେ ଯେଉ ସୁଆଦ ! ପାଠକ ପାଠିକା ଚାହିଁଲେ ଉପଯୁକ୍ତ ପଦ୍ଧତିରେ ସେ ଆଚାର ତିଆରି କରିପାରନ୍ତି ମାତ୍ର ଗୋଟିଏ ଗୋପନ ତଥ୍ୟ ସେଥିରେ ରହିଛି । କଟକ ଜେଲ୍‌ରେ ବର୍ଷେ ରହି 'ସି' ଡିଭିଜନ୍ ଖାଦ୍ୟ ଖାଇ ତାପରେ ଜେଲ୍-ଖେଚୁଡ଼ି ସଙ୍ଗେ ଆଚାର ଖାଇଲେ ତା ସ୍ୱାଦୁ ବାରିପାରିବେ ।

ବାର ନମ୍ବର ଉଆର୍ଡ୍‌ରେ ଆମେ ତେଇଶ ଜଣ ଯେ ପରସ୍ପର ମୁହଁ ଚୁହାଁଚୁହିଁ ହୋଇ ଦିନ କଟଉଥିଲୁ, ଏହାଙ୍କ ଛଡ଼ା ଜେଲ୍ କର୍ତ୍ତୃପକ୍ଷଙ୍କ ସଂସ୍ପର୍ଶରେ ମଧ୍ୟ ଆମକୁ ଆସିବାକୁ ପଡୁଥିଲା । ଆମ ଅମଳରେ ପ୍ରଥମ ଜେଲ୍ ସୁପର ଥିଲେ ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟ । ତାଙ୍କପରେ ଆସିଲେ ଡକ୍‌ଟର ସୈୟଦନ୍ ଅହମ୍ମଦ । ସୁପର ପ୍ରତିଦିନ ସକାଳ ଆଠଟାରେ ଜେଲ୍ ଦଫତରକୁ ଆସନ୍ତି । ବିଗୁଲଧ୍ୱନି ତାଙ୍କ ଆଗମନ ବାର୍ତ୍ତା ଆମକୁ ଶୁଣାଇଦିଏ । ସପ୍ତାହରେ ଥରେ ସୋମବାର ଦିନ ସୁପର ଜେଲ୍ ପରିଦର୍ଶନ କରନ୍ତି । ପୂର୍ବେ ଜେଲ୍‌ରେ ସୁପରଙ୍କ ଆଗରେ ଧାଡ଼ିବାନ୍ଧି ଛିଡ଼ା ହୋଇ ଦାନ୍ତ ଦେଖାଇବା "ସରକାର ସଲାମ" ଦେବା ଆଦି ଯେଉଁ ରୀତି ଥିଲା, ୧୯୪୨ କୁ ତାହା ନ ଥିଲା । ତଥାପି ସୁପର ଆସି ଫେରିଯିବା ଯାଏ ତାଙ୍କ ଅଧସ୍ତନ କର୍ମଚାରୀମାନେ ସନ୍ତ୍ରସ୍ତ ହୋଇ ରହିଥାନ୍ତି ।

ଆମ ଉଆର୍ଡ୍‌ରେ ସେଦିନ କିଏ କେଉଁ ବିଷୟ ସୁପରଙ୍କ ଆଗରେ ଉତ୍‌ଥାପନ କରିବେ, ତାହା ପୂର୍ବରୁ ମସୁଧା ହୋଇଥାଏ । ସକାଳ ଜଳଖିଆ ଖେଚୁଡ଼ିରେ ରାତି ପଖାଳର ପରିମାଣ ବେଶୀ ହୋଇଗଲେ କିମ୍ବା ଅଧିକ ସଂଖ୍ୟକ ଚାଉଳ ପୋକ ବାହାରିଲେ ଅଥବା ମଧ୍ୟାହ୍ନ ଭୋଜନରେ ଭାତରେ ଗୋଡ଼ିବାଲି ଅଧିକ ହୋଇଗଲେ ପ୍ରିୟମ୍ବଦା ଦେବୀ ନମୁନା ସହ ସେକଥା ସୁପରଙ୍କ କର୍ଣ୍ଣଗୋଚର କରାନ୍ତି । ଖବରକାଗଜ, ଚିଠିପତ୍ର, ଜେଲ୍ ପରିଚାଳନାରେ ଅବ୍ୟବସ୍ଥା ବିଷୟରେ ମାଳତୀ ଦେବୀ କହନ୍ତି । ରୋଗୀମାନଙ୍କ ପଥ୍ୟ, ଚିକିତ୍ସା ଓ ଅନ୍ୟାନ୍ୟ ସୁବିଧା ଅସୁବିଧା କଥା ରମା ଦେବୀ କହନ୍ତି । ହରିପ୍ରିୟା

ଦେବୀ ଆମ ଉଆର୍ଡ଼ରେ କୁଳବୃଦ୍ଧା, ବୟସ ଷାଠିଏରୁ ଅଧିକ । ତାଙ୍କର ସବୁ ରୋଗ ଥଣ୍ଡା ଗରମ ଏହି ଦୁଇ ଭାଗରେ ବିଭକ୍ତ, ତେଣୁ ସେ ନିଜେ ନିଜ ରୋଗର ବିବରଣୀ ଦିଅନ୍ତି । ତାଙ୍କର କେଉଁଦିନ ପେଟ ଗରମ ତ କେଉଁଦିନ ମଗଜ ଥଣ୍ଡା । ଔଷଧ କିନ୍ତୁ ଗୋଟିଏ – କାର୍‌ମିନେଟିଭ୍ ମିକ୍‌ସଚରର ଜେଲ୍ ସଂସ୍କରଣ ।

ଆମ ମଧ୍ୟରୁ କେହି କଦବା ଜେଲ୍ ଆଇନ୍ ଦୃଷ୍ଟିରୁ ବେଆଇନ୍ କାମ କଲେ ସୁପର ଆମ ଚିଠିପତ୍ର ଓ ଖବରକାଗଜ ଅଟକାଇ ରଖନ୍ତି । ବହିର୍ଜଗତ ସହିତ ଆମର ଏଇ କ୍ଷୀଣ ସଂପର୍କଟି ତୁଟେଇ ଦେବା ଯେ ଆମପ୍ରତି ଚରମଶାସ୍ତି ଏ କଥାଟା ସେମାନେ ଜାଣନ୍ତି ବୋଲି ସାଧାରଣ କଇଦୀଙ୍କୁ ଯେପରି ଅଖା ପିନ୍ଧିବା, ଲେହି ଖାଇବା ଆଦି ଦଣ୍ଡ ଦିଆଯାଏ, ସେ ପ୍ରକାର ଶାରୀରିକ ଦଣ୍ଡ ନ ଦେଇ ଏହି ଧରଣର ଶାସ୍ତି ଆମ ପାଇଁ ଅଧିକ କଠୋର ହେବ ବିଚାରି ଏ ଦଣ୍ଡ ଦିଅନ୍ତି ।

ଆମର ମଧ୍ୟ ଗୁଣ କମ୍ ନୁହେଁ । ଟିକ୍‌ଡ଼ମ୍‌ରେ ଅର୍ଥାତ୍ ଲୁଚାଚୋରାରେ ଖବର ମିଳିଲା– ଜୟପ୍ରକାଶ ନାରାୟଣ ହଜାରିବାଗ ଜେଲ୍‌ରୁ ପଳାଇଛନ୍ତି । ସେଦିନଟି ଥିଲା ନଭେମ୍ବର ଛଅ ତାରିଖ, ଦୀପାବଳୀ ଅମାବାସ୍ୟା । ସେହିଦିନ ଜେଲ୍‌ରୁ ପଳାଇବା ପାଇଁ ଜୟପ୍ରକାଶଜୀ ମନେ ମନେ ମସୁଧା କରିଥିଲେ । ଏହା ମଧ୍ୟରେ ବିହାରର ସୋସାଲିଷ୍ଟ କର୍ମୀ ରାମନନ୍ଦନ ମିଶ୍ର କଟକ ଜେଲ୍‌ରୁ ବଦଳି ହୋଇ ହଜାରିବାଗ ଜେଲ୍‌କୁ ବଦଳି ହେଲେ । ଜୟପ୍ରକାଶଜୀଙ୍କର ସେତେବେଳେ ଏକମେବ ଚିନ୍ତା– କିପରି ଜେଲ୍ ବାହାରକୁ ଯାଇ ଦେଶସାରା ଗୁପ୍ତ ସଂଗଠନ କରି ଆନ୍ଦୋଳନ ତେଜି ଗୋଟାଏ ପୂର୍ଣ୍ଣାଙ୍ଗ ବିପ୍ଳବ ପାଇଁ ପରିସ୍ଥିତି ସୃଷ୍ଟି କରନ୍ତେ । ରାମନନ୍ଦନଜୀ ଓ ଅନ୍ୟ ଜେଲ୍‌ସାଥୀମାନେ ଏ ପ୍ରସ୍ତାବକୁ ପସନ୍ଦ କଲାରୁ ଚାଲିଲା ଆୟୋଜନ ।

ପାଚେରୀ ଡ଼େଇଁବା କଳାକୌଶଳ ତ ଆଗରୁ ଜଣାଥିଲା । ଜୟପ୍ରକାଶଜୀ ନିତି ସଯତ୍ନରେ କ୍ଷୌରକର୍ମ ସମାପ୍ତ କରିବାରେ ଅଭ୍ୟସ୍ତ । ହଠାତ୍ ସେ ଦାଢ଼ି ଛାଡ଼ିଦେଲେ । କେହି ପଚାରିଲେ ସେ ଜବାବ ଦିଅନ୍ତି – ଏ ବି ଗୋଟାଏ ପ୍ରକାର । ହଜାରିବାଗ ଜେଲ୍‌ରେ ସେ ସମୟରେ ରାତି ଆଠଟାରେ କଇଦୀଙ୍କୁ "ନମ୍ବର ବନ୍ଦ" କରାଯାଉଥିଲା । ତେଣୁ ଦିଆଲୀ ଦିନ ଠିକ୍ ସଞ୍ଜ ବୁଡ଼ିବା ମାତ୍ରେ ଜୟପ୍ରକାଶଜୀ ସମେତ ଛଅଜଣ ପାଚେରୀ ଡ଼େଇଁ ପଳାଇବା ଠିକ୍ ହେଲା । ସ୍ଥାନୀୟ ବାଟଘାଟ ଜାଣିଥିବା ଲୋକ ଯେ ପଳେଇବା ସ୍ଥିର ହେଲା ସେ ଜେଲ୍‌ରୁ ପାଞ୍ଚଛଅ ମାଇଲ୍ ଦୂରବର୍ତ୍ତୀ କୌଣସି ନିର୍ଭରଯୋଗ୍ୟ ଗାଁରେ ଜୟପ୍ରକାଶଜୀ ଓଗେରଙ୍କୁ ପହଞ୍ଚେଇ ଦେବା

ସ୍ଥିର ହେଲା । କିଛିଦିନ ସେଠାରେ ଛପି ରହି ସରକାରଙ୍କ ଖୋଜାଖୋଜି ଧିମେଇଗଲେ କୌଣସି ଦ୍ରୁତଗାମୀ ଯାନରେ କଲିକତା ଯାଇ ଅମୁକ କଇଦୀଙ୍କ ନାମରେ ଖଣ୍ଡେ ବହି ଡାକରେ ପଠାଇଲେ ଜେଲସାଥୀ ଜାଣିବେ ଯେ କାମ ଫତେ ହୋଇଗଲା ।

ହଜାରିବାଗ ଜେଲ୍‌ଟା ଗୋଟାଏ ଦୁର୍ଗ ପରି । ବିରାଟ ଜେଲ୍ ଚାରିପଟେ ମେଘନାଦ ପାଚେରୀ, ପାଚେରୀ ମଝିରେ ମଝିରେ ଉଚ୍ଚ ଗୁମୁଟିରେ ଦିନରାତି ପହରାବାଲା ବସି ରହନ୍ତି । ପାଚେରୀ କଡ଼େ କଡ଼େ ଖଣ୍ଡେ ଖଣ୍ଡେ ଛଡ଼ାରେ ଚବିଶିଘଣ୍ଟା ପହରା । ପାଚେରୀ ଚାରିପଟେ କଟକ ବାରବାଟୀ ଦୁର୍ଗ ପରିଖା ପରି ଗଭୀର ପରିଖା । ପରିଖା ପାରି ହେବାକୁ ସେତୁ ମାତ୍ର ଗୋଟିଏ । ପ୍ରଥମ ବିଶ୍ୱଯୁଦ୍ଧବେଳେ ଗୋରା ଯୁଦ୍ଧବନ୍ଦୀଙ୍କ ପାଇଁ ସେ ଜେଲ୍‌ରେ ଏ ପ୍ରକାର ବ୍ୟବସ୍ଥା ହୋଇଥିଲା । ଜୟପ୍ରକାଶଜୀ ଥିଲେ ଛୋକ୍‌ରା କେତାରେ । 'କେତା'ର ଅର୍ଥ ହେଲା ଉଆର୍ଡ଼ । ତାଙ୍କ ଉଆର୍ଡ଼ ପାଖ ପାଚେରୀ ପାଖରେ ଗୁଡ଼ାଏ ବଡ଼ ବଡ଼ ଗଛ ଛାଇ ପଡ଼ି ପାଚେରୀ ଉପରଟା ଅନ୍ଧାରୁଆ ଦେଖାଯାଏ । ପଳାଇବା ପାଇଁ ସେହି ସ୍ଥାନଟି ଠିକ୍ କରାଗଲା । ମସୁଧା ହେଲା – ଦିଆଲୀ ଦିନ ନବବର୍ଷ ଉପଲକ୍ଷେ ଭୋରରୁ ରାତି ବାରଟାଯାଏ ନାନାପ୍ରକାର ମନୋରଞ୍ଜନାତ୍ମକ କାର୍ଯ୍ୟକ୍ରମ ଚାଲିବ । ସଞ୍ଜ ବୁଡ଼ିବା ମାତ୍ରେ ସେ ଅନ୍ଧାରୁଆ ପାଚେରୀ ପାଖରେ ଜଗିଥିବା ପ୍ରହରୀକୁ ସୁରତୀ ଅର୍ଥାତ୍ ଧୂଆଁପତ୍ର ଲୋଭ ଦେଖାଇ ଦୂରକୁ ହଟେଇ ନିଆଯିବ । ସୁର୍‌ତୀ ଲୋଭରେ ପ୍ରହରୀ ସେ ଜାଗା ଛାଡୁଛି କି ନାହିଁ ତାହା ମଧ ପରୀକ୍ଷା କରି ଦେଖାଗଲା । ପ୍ରହରୀ ହଟିଗଲେ ଜୟପ୍ରକାଶଜୀ ସମେତ ଛଅଜଣ ବନ୍ଦୀ ପାଚେରୀ କଡ଼ରେ ଟେବୁଲ ପକେଇ ତା କାନ୍ଧକୁ ତା କାନ୍ଧକୁ ଚଢ଼ିଯାଇ ପାଚେରୀ ପାରି ହୋଇ ପୂର୍ବରୁ ନିର୍ଦ୍ଦିଷ୍ଟ ହୋଇଥିବା ଗାଁକୁ ପଳାଇବେ । ଏତକ କରିବାକୁ ଚାରିଘଣ୍ଟା ସମୟ ଲାଗିବ । ଏଇ ଚାରୋଟି ଘଣ୍ଟାରେ ନାନା ପ୍ରକାର କାର୍ଯ୍ୟକ୍ରମ ସୃଷ୍ଟି କରି "ନମ୍ବର ବନ୍ଦ" ସମୟକୁ ଗଡ଼ାଇ ଦେବାକୁ ହେବ । କାରଣ "ନମ୍ବର ବନ୍ଦ" ବେଳେ କଇଦୀ ଗଣା ହେଉଥିବାରୁ ନିଶ୍ଚିତ ଭାବରେ ଛଅଜଣଙ୍କ ଅନୁପସ୍ଥିତି ଧରା ପଡ଼ିଯିବ । ଏହି "ନମ୍ବର ବନ୍ଦ" ସମୟ ଗଡ଼ାଇବା ଦାୟିତ୍ୱରେ ରହିଲେ ରାମବୃକ୍ଷ ବେନୀପୁରୀ । ଗୋଟାଏ କଥାକୁ ସମସ୍ତଙ୍କର ଡର– ଯଦି ହଠାତ୍ ଜେ.ପି.ଙ୍କର ସାଇଟିକା ଯନ୍ତ୍ରଣା ବାହାରିବ ତେବେ ସଇଲା ପାଠ । ଶୁକ୍ଳଜୀ କ୍ଳେମତ୍ ଦେଉଥାନ୍ତି– ଜେ.ପି. ଖାଲି ପାଚେରୀ ଡେଇଁ ପଡ଼ିଲେ ମୁଁ ତାଙ୍କୁ କାନ୍ଧରେ ବସାଇ ଦଉଡ଼ି ଦଉଡ଼ି ଛଅମାଇଲ୍ ବାଟ ସାରିଦେବି ।

ଦିଆଲୀ ଦିନ ସକାଳୁ ବେନୀପୁରୀଜୀ ୱାର୍ଡ଼ରୁ ବାହାରିବା ମାତ୍ରେ ଜେଲ୍‌ସାରା ବୁଲି ବୁଲି ପ୍ରଚାର କଲେ ଆଜି ରାତିରେ ଦୀପାବଳୀ ଉପଲକ୍ଷେ ଏକ ଅଭିନବ ନାଟକ ପ୍ରଦର୍ଶିତ ହେବ । ସେ ନାଟକ ଦେଖିବା ପାଇଁ ସମସ୍ତଙ୍କୁ ସାଦର ଆମନ୍ତ୍ରଣ ଜଣାଉଛି । ବିଭିନ୍ନ ୱାର୍ଡ଼ର ବନ୍ଦୀମାନେ ଉତ୍ସୁକ ହୋଇ ପଚାରୁଥାନ୍ତି – କି ନାଟକ ? ଅଭିନେତା ଓ ନାଟ୍ୟକାର କିଏ ? ବେନୀପୁରୀଜୀ ଜବାବ୍ ଦେଉଥାନ୍ତି – ଦେଖିଲେ ଜାଣିବେ ।

ଜୟପ୍ରକାଶଜୀ ଦିନସାରା ଜେଲ୍ ପ୍ରଦକ୍ଷିଣ କରୁଥାନ୍ତି । କାହା ସାଙ୍ଗରେ ବାଜିଏ ତାସ୍ ଖେଳି ଦେଉଥାନ୍ତି ତ କେଉଁଠି ନ୍ୟାୟବଳର ସାର ଚାଳି ଦେଉଥାନ୍ତି । ଗପସପ ଥଟ୍ଟା ପରିହାସରେ ସମସ୍ତେ ମଶଗୁଲ୍ ହୋଇ ରହିଥାନ୍ତି । ସଞ୍ଜବେଳକୁ ଜୟପ୍ରକାଶଜୀଙ୍କ ସାଙ୍ଗରେ କଂଗ୍ରେସ ନେତାଙ୍କର ବ୍ୟାଡ଼ମିଣ୍ଟନ ପ୍ରତିଯୋଗିତା ଥାଏ । ଚାରିଟା ସୁଦ୍ଧା ଖେଳ ପଡ଼ିଆରେ ଦେଖଣାହାରୀ ଜମା ହୋଇଗଲେ । ପ୍ରତିଯୋଗିତା ସରିଲାରୁ ଜୟପ୍ରକାଶଜୀ ନୀରବ ଲକ୍ଷଣରେ ସମସ୍ତଙ୍କଠୁ ବିଦାୟ ନେଲେ ।

ଲଳିତ୍‌ଜୀ ସୁର୍ତ୍ତୀ ଲୋଭ ଦେଖାଇ ଜଗୁଆଳୀକୁ ଦୂରକୁ ନେଇଗଲେ । ପାଚେରୀ ପାଖରେ ଟେବୁଲ୍ ପକେଇ ଆଗ ଚଢ଼ିଲେ ଶୁକ୍ଳଜୀ । ଶୁକ୍ଳଜୀଙ୍କ କାନ୍ଧରେ ଗୁଲାଲୀଜୀ, ସୁର୍‌ଜୀ ଗୁଲାଲୀଜୀଙ୍କ କାନ୍ଧ ଉପରକୁ ଚଢ଼ିଯାଇ ପାଚେରୀ ଉପରକୁ ଚଢ଼ିଗଲେ, ତାଙ୍କ ଅଣ୍ଟାରେ ବନ୍ଧା ହୋଇଥିବା ଧୋତିକୁ ଧରି ଜୟପ୍ରକାଶଜୀ, ଶାଳିଗ୍ରାମଜୀ ଓ ରାମନନ୍ଦନଜୀ ପାଚେରୀ ଉପରକୁ ଚଢ଼ି ସେପଟକୁ ଚାଲିଗଲେ । ଟଙ୍କା, ଖାଦ୍ୟସାମଗ୍ରୀ, ଜୋତା, କୁର୍ତ୍ତାଥିବା ଗଣ୍ଠିଲିଟି ଦଉଡ଼ିରେ ବାନ୍ଧି ପାର୍ କରୁକରୁ ଦଉଡ଼ିଟି ଛିଡ଼ିଯାଇ ଗଣ୍ଠିଲିଟି ଏଇପଟେ ରହିଗଲା । ସେମାନେ ପଳେଇବା ପରେ ଟେବୁଲ ଓ ଗଣ୍ଠିଲିର ବିହିତ ବ୍ୟବସ୍ଥା କରି ଲଳିତଜୀ ବେନୀପୁରୀଜୀଙ୍କୁ ଏହା ମହାଭିନିଷ୍କ୍ରମଣ ସମାଚାର ଦେଲେ ।

ସେଇଠୁ ଆରମ୍ଭ ହେଲା ଦିଆଲୀ କାର୍ଯ୍ୟକ୍ରମ । ଗୋଟାଏ ପରାତରେ ବୟାଳିଶଟି ଦୀପ ଜାଳି ଜଣେ ସେ ପରାତ ଧରି ଆଗେ ଆଗେ ଚାଲିଲେ । ବେନୀପୁରୀଜୀ ଗୀତ ଆରମ୍ଭ କଲେ–

"ଦିୱାଲୀ ଫିର୍ ଆଗୟୀ ସଜନୀ ! ଦୀପକ୍ ରାଗ୍ ସଜାଲେ ।" ପଛରେ ସମସ୍ତେ ଦୁଆ ଧରୁଥାନ୍ତି ।

"ଆରେ ହୋ ହୋ ଦୀପକ ରାଗ ସଜାଲେ ।" ଏ ଶୋଭାଯାତ୍ରା ଜେଲ୍‌ସାରା ବୁଲିଲା । ପ୍ରତି ୱାର୍ଡ଼କୁ ଯାଇ କୁଣ୍ଢିଆକୁଣ୍ଢି, ମିଠେଇ ପାଇଁ ଅଳି ଚାଲିଥାଏ । ଶୋଭାଯାତ୍ରା

ପରେ ଗୋଟିଏ ସଭା ହେଲା । ସଭା ମଉଳିଲା ରାତି ବାରଟାରେ । ନମ୍ବର ବନ୍ଦ ବେଳେ କଇଦୀ ଗଣିତ ହେଲାବେଳକୁ ଦେଖାଗଲା ଛଅଟି ବୃଷଭ ପଘା ଛିଣ୍ଡାଇଛନ୍ତି ।

ଏ ଘଟଣା ଜାଣିବା ପରେ ଆମ ବାର ନମ୍ବର ଉଆର୍ଡ଼ର ଅନେକ ଚଢ଼େଇ ପଞ୍ଜୁରୀରୁ ଉଡ଼ିଯିବାର ସ୍ୱପ୍ନ ଦେଖିଲେ । ଯିବେ କିପରି ? ଆମ ଭିତରୁ କେତେଜଣଙ୍କୁ ଶୋଇବା ପାଇଁ ତକ୍ତପୋଷ ମିଳିଥିଲା । ଜେଲ୍ ପାଚେରୀ ପାଖରେ ତକ୍ତପୋଷ ଉପରେ ତକ୍ତପୋଷ ପକାଇ ଉଚ୍ଚ କରି ଶାଢ଼ୀକୁ ଶାଢ଼ୀ ଗଅଣ୍ଠେଇ ସେହି ଶାଢ଼ୀ ଧରି ପାଚେରୀ ଆରପଟକୁ ଓହ୍ଲାଇ ଯିବାର କଳ୍ପନା ଜଳ୍ପନା ଚାଲିଲା । ମାଳତୀ ଦେବୀ ଓ ତାଙ୍କର ସାଙ୍ଗରେ ନିଶାମଣି ଦେବୀ ପାଚେରୀ ଡ଼େଇଁବା ପାଇଁ ପ୍ରସ୍ତୁତ ହେଲେ । ନିଶାମଣି ଦଉଡ଼ିବାରେ ଧୁରନ୍ଧର । ସେଥିପାଇଁ ସେ ଏ କାମ ପାଇଁ ଯୋଗ୍ୟ ବିବେଚିତ ହେଲେ । ସେମାନେ ପଳେଇଯିବା ପରେ ଜେଲ୍ କର୍ତ୍ତୃପକ୍ଷଙ୍କ ପକ୍ଷରୁ ଆମ ଉପରେ ଯେଉଁ ଅତ୍ୟାଚାର ହେବ, ଆମେ ତାକୁ ବରଦାସ୍ତ କରିବୁ ବୋଲି ପ୍ରତିଶ୍ରୁତି ଦେଲୁ ।

ଆମ ଉଆର୍ଡ଼ରେ ଆମକୁ ଚବିଶିଘଣ୍ଟା ଜଗିବା ପାଇଁ ଦୁଇଜଣ ଜମାଦାରଣୀ ନିଯୁକ୍ତ ହୋଇଥାନ୍ତି । ଏତେ ଛୋଟିଆ ଜାଗାଟିରେ ଏହି ଜମାଦାରଣୀମାନଙ୍କ ଅଗୋଚରରେ ଏ କାମ ହେବ କିପରି ? ହେମ ନାମ୍ନୀ ଜମାଦାରଣୀଙ୍କ ହୃଦୟ ପରିବର୍ତ୍ତନ ପାଇଁ ଉଦ୍ୟମ ଆରମ୍ଭ ହେଲା । ହେମ ଯେତେହେଲେ ବ୍ରିଟିଶ୍ ସରକାରଙ୍କ ପ୍ରତିନିଧି, ତେଣୁ କୂଟନୀତିରେ ପ୍ରବୀଣା । ସେ ହୁଁ ମାରି ମୌଖିକ ସମର୍ଥନ ଜଣାଇବାରୁ ଜହ୍ନରାତିରେ ଏହି ପରଖ ଆରମ୍ଭ ହେଲା । ଖଟ ଉପରେ ଖଟ, ତା' ଉପରେ ଖଟ, ଏହିପରି ଛଅ କି ସାତଟା ଖଟ ପକେଇ ତା' ଉପରେ କିରଣଲେଖା ଚଢ଼ିଲା । କଟକ ସିଟି ହସ୍‌ପିଟାଲ୍ ପଟକୁ ଥିବା ଜେଲ୍ ପାଚେରୀ ଏ ପଟେ ଏ ଲୀଳା ଲାଗିଥାଏ । କିରଣଲେଖା ସବା ଉପର ଖଟ ଉପରକୁ ଚଢ଼ିଯାଇ ଆନନ୍ଦରେ ଚିତ୍କାର କଲା– ମୋତେ ଚୌଧୁରୀ ବଜାର କୋଠା ଦିଶୁଛି । ରାତି ଅଧିକ ହେବାରୁ ସେ ପରଖ ସେତିକିରେ ରହିଲା ।

ହେମ ଜମାଦାରଣୀ ପାଣି ହାଉଦା ପାଖରେ ବସି ଆମ କ୍ରିୟାକଳାପ ଦେଖୁଥାନ୍ତି । ରାତି ପାହାନ୍ତାରେ ପାଳି ବଦଳ ବେଳେ ସେ ଏ ସମୁଦାୟ ଘଟଣା ହାବିଲଦାରଙ୍କୁ ଜଣାଇ ଦେଇ ଗଲେ । ଏଣେ ଆଠଟା, ନଅଟା, ଦଶଟା, ଏଗାରଟା, ବାଜିଲା, ଭାତ ଆସିଲା, ଖବରକାଗଜର ଦେଖାଦର୍ଶନ ନାହିଁ । ଜମାଦାରକୁ ପଚାରିବାରୁ ଜବାବ ମିଳୁଥାଏ– ବୁଝିକରି କହିବି । ତା' ପରଦିନ ମଧ୍ୟ ଖବରକାଗଜ ଆସିଲା ନାହିଁ । ସେଇଠୁ ଆମେ କହିଲୁ ଯେ କଥାରେ ପେଞ୍ଚ ଅଛି । ସେଦିନ ସୋମବାର ।

ସୁପରିନ୍‌ଟେଣ୍ଡେଣ୍ଟ ଆମ ୱାର୍ଡ଼କୁ ଆସିଲାରୁ ତାଙ୍କ ଆଗରେ ଖବରକାଗଜ ମିଳୁ ନ ଥିବା କଥାଟା କୁହାଗଲା । ସୁପରିଟେଣ୍ଡେଣ୍ଟ ହଠାତ୍ ଉତ୍ତେଜିତ ହୋଇଯାଇ କହିଲେ– ଆପଣମାନେ ଖଟ ଉପରେ ଖଟ ପକେଇ ତା' ଉପରେ ଚଢ଼ି ପଦାକୁ ଉହୁଙ୍କୁଛନ୍ତି । ସେଥିପାଇଁ ଖବରକାଗଜ ବନ୍ଦ କରାହୋଇଛି । ବଡ଼ମାନଙ୍କ ମୁହଁରୁ କଥା ନ ବାହାରୁଣୁ କିରଣଲେଖା ଆଗେଇ ଆସି କହିଲା– ଓଃ, ସେଇଟା ତ ଆମେ ସିଂହାସନ ଖେଳ ଖେଳୁଥିଲୁ । ସିଂହାସନ ଉପରେ ବସି ରାଜ୍ୟ ଦେଖିବା ଖେଳ ସେଇଟା । କିରଣଲେଖାର କଥାରେ ସୁପରିନ୍‌ଟେଣ୍ଡେଣ୍ଟ ହସି ପକେଇ ପୁଣି ଖୁବ୍ ଗମ୍ଭୀର ହୋଇଯାଇ କହିଲେ– ଏ ସିଂହାସନ ତିଆରି ତ ବଡ଼ ସାଂଘାତିକ ଖେଳ । ନବାବ୍ ପୁଅକୁ ଜବାବ୍ ଦେବାବାଲୀ କିରଣଲେଖା କହିଲା– ବାଃ'ରେ ଜେଲ୍‌ରେ ରଖିଲେ ବୋଲି ଟିକିଏ ଖେଳିବା ସୁଦ୍ଧା ମନା ! ସୁପରିଟେଣ୍ଡେଣ୍ଟ ମୁଣ୍ଡ ପୋତି ତରବର ହୋଇ ୱାର୍ଡ଼ରୁ ବାହାରି ଗଲେ ।

କିନ୍ତୁ ଖବରକାଗଜ ମିଳିଲା ନାହିଁ । କାଗଜ କିପରି ପୁଣି ମିଳିବ, ସେଥିପାଇଁ ନାନା କଳ୍ପନା ଜଳ୍ପନା ପରେ ସ୍ଥିର ହେଲା ଯେ ଆମ ୱାର୍ଡ଼ରୁ ପାଞ୍ଚଜଣ ପ୍ରତିନିଧି ଜେଲ୍ ଅଫିସ୍‌କୁ ଯାଇ ଖବରକାଗଜ ପାଇଁ ଅଡ଼ି ବସିବେ । କିନ୍ତୁ ଅଫିସ୍‌କୁ ଯିବୁ କେମିତି ? ଜଳଖିଆ, ଭାତ, ସଫେଇବାଲା ଆସିଲାବେଳେ, ୱାର୍ଡ଼ ପାଚେରୀର ପ୍ରବେଶ ଦ୍ୱାର ଫିଟେ । ଦ୍ୱାର ଫିଟେଇ ଜମାଦାର ଦ୍ୱାର ମୁହଁରେ ଛିଡ଼ା ହୋଇ ରହନ୍ତି । ଜମାଦାର ଆମ ମତଲବ ଜାଣିଲେ ତ ଆହୁରି ସତର୍କ ହୋଇଯିବେ । ସେଥିପାଇଁ ପ୍ରିୟମ୍ବଦା ଦେବୀଙ୍କ ନେତୃତ୍ୱରେ ଆମେ ପାଞ୍ଚଜଣ ୱାର୍ଡ଼ ପାଚେରୀରେ ଥିବା ପ୍ରବେଶ ଦ୍ୱାର ପାଖରେ ଜଗି ରହିଲୁ । ଜମାଦାର ଜମାଦାରଣୀକୁ 'ଜଳଖିଆ ଆସିଲା' ପାଟିକରି ସୂଚେଇ କବାଟ ଫିଟେଇବା ମାତ୍ରେ କାବଟ ଠେଲି ପାଚେରୀ ଏପଟକୁ ଚାଲି ଆସିଲୁ । ଜମାଦାର ଏ ଅପ୍ରତ୍ୟାଶିତ ଘଟଣା ଦେଖି ଆବାକାବା ହୋଇଗଲେ । ତାହାପରେ ଅନନ୍ୟୋପାୟ ହୋଇ ଆମକୁ ଅଫିସ୍‌କୁ ନେଇଗଲେ । ଆମର ଲିଖିତ ଅଭିଯୋଗପତ୍ର ଜେଲର୍‌ଙ୍କ ନିକଟରେ ପେଶ୍ କରି କିଛି ସମୟ ଅଫିସ୍‌ରେ ଅପେକ୍ଷା କରିବା ପରେ ଆମକୁ ଖବରକାଗଜ ଦିଆଯିବ ବୋଲି ଜଣାଇ ଦିଆଗଲା ।

କିରଣଲେଖା, ଉତ୍ତରା ଓ ଶକୁନ୍ତଳା ଅନେକ ସମୟରେ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଦ୍ୱନ୍ଦ୍ୱରେ ପକାଇ ଦେଉଥିଲେ । ସେମାନଙ୍କ କଥାବାର୍ତ୍ତା ସ୍ଥୂଳତଃ ହାସ୍ୟରସାତ୍ମକ ବୋଧ ହେଉଥିଲେ ହେଁ ତାହା ମଞ୍ଜରେ ଯେ କରୁଣ ରସ ପୂରି ରହୁଥିଲା ତାହା ସୁପରିନ୍‌ଟେଣ୍ଡେଣ୍ଟ ଉପଲବ୍ଧି କରିପାରୁଥିଲେ । ଦଶହରା ଆସିଲା । ଜନ୍ମାଷ୍ଟମୀ ପରଦିନ ନନ୍ଦୋତ୍ସବ ।

ଦାଣ୍ଡରେ ବାଜା ବାଜିଲା । ପିଲାଏ କହିଲେ – ହେଇ, ଦେବୀ ଗଢ଼ା ହେବା ପାଇଁ ମାଟି ଅଣାହେଲା । ମହଳୟା ତିଥି ଆସିଲାରୁ ପିଲାଏ କହିଲେ ଆଜି ଦେବୀଙ୍କ ଠେଇଁ ଖଡ଼ି ଚଢୁଛି । ଏହିପରି ଜେଲ୍ ଭିତରେ ପିଲାଏ ପାର୍ବଣକୁ ଝୁରୁ ଥାଆନ୍ତି । ଦୁର୍ଗାପୂଜା ମଝିରେ ଗୋଟିଏ ସୋମବାରରେ ସୁପର୍ ପରିଦର୍ଶନରେ ଆସି ହଠାତ୍ ପିଲାଙ୍କୁ ପଚାରିଦେଲେ– "ତମର କଅଣ ଦରକାର ?" କିରଣ କାଳ ବିଳମ୍ବ ନ କରି କହିଲା – "ସିଡ଼ି" । ସୁପର ବୁଝି ନ ପାରି ଯା ତା' ମୁହଁକୁ ଚାହିଁ ପଚାରିଲେ- "ସିଡ଼ି ! ସିଡ଼ି କଣ ?" ଜେଲର୍ ଅର୍ଥ ବୁଝାଇ ଦେଲେ । ସୁପର ବିସ୍ମିତ ହୋଇ ପଚାରିଲେ– "ସିଡ଼ି କ'ଣ ହେବ ?" କିରଣ ଗମ୍ଭୀର ହୋଇ କହିଲା – "ସିଡ଼ି ଲଗାଇ ପାଚେରୀ ଉପରେ ଚଢ଼ି ଆମେ କଟକ ଦଶରା ଦେଖିବୁ ।" ସୁପର ତରବର ହୋଇ ୱାର୍ଡ଼ରୁ ବାହାରି ଗଲେ । କିଶୋର ବୟସର ଝିଅ ଗୁଡ଼ିଙ୍କୁ ମାସ ମାସ ଧରି ପଞ୍ଜୁରୀରେ ରଖିଲା ପରି ରଖିବାଟା କେଡ଼େ ନିଷ୍ଠୁରତା, ତାହା ସେ ମର୍ମେ ମର୍ମେ ବୁଝୁଥିଲେ । ସୁପରିନ୍‌ଟେଣ୍ଡେଣ୍ଟ ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କୁ ମୋ ବାପା ନାତି ଡାକନ୍ତି । ଏପରି ଘନିଷ୍ଠତା ଥିବା ସ୍ଥଳେ ଆମକୁ ଦଣ୍ଡ ଦେବା, ଆମର ସାମାନ୍ୟ ସାମାନ୍ୟ ଅସୁବିଧା ଦୂର କରି ନ ପାରିବାଟା ତାଙ୍କ ପାଇଁ କେତେ ବେଦନାଦାୟକ ତାହା ଆମେ ବୁଝି ପାରୁଥାଉ । ପରବର୍ତ୍ତୀ କାଳରେ ଉତ୍ତରାର ବିଭାଘରେ ଉତ୍ତରାକୁ ଆଶୀର୍ବାଦ କରିବାକୁ ଆସି ଡକ୍ଟର ରାୟ କହିଥିଲେ– "କି ଉତ୍ତରା ! ଏବାରେ ଯେଉଁ ଜେଲ୍‌କୁ ଯାଉଛ ସେ ଜେଲ୍‌ରୁ ଆଉ ମୁକ୍ତି ନାହିଁ ।"

ସୁପରିନ୍‌ଟେଣ୍ଡେଣ୍ଟଙ୍କ ପରବର୍ତ୍ତୀ ଜେଲ୍ କର୍ତ୍ତା ହେଉଛନ୍ତି ଜେଲର୍ ସାହେବ ଶ୍ରୀ ସତ୍ୟବାଦୀ ପ୍ରଧାନ । ୧୯୩୦-୩୨ରେ ସେ ହଜାରିବାଗ୍ ଜେଲ୍‌ରେ ଆସିଷ୍ଟାଣ୍ଟ ଜେଲର୍ ପଦରେ ଥିବାରୁ ଆମ ପରିବାର ସହିତ ତାଙ୍କର ଆତ୍ମୀୟତା ଜନ୍ମି ସାରିଥିଲା । ତେଣୁ ଏପଟେ ବ୍ରିଟିଶ୍ ସରକାର ସେପଟେ ମାନବିକତା– ମୃଦଙ୍ଗର ଦୁଇପଟେ ହାତ ପକେଇ ସେ ଯେ କୌଣସି ପ୍ରକାରେ କର୍ତ୍ତବ୍ୟ ସଂପାଦନ କରିବାର କୌଶଳ ଆୟତ୍ତ କରିଥାନ୍ତି । ରାଜନୈତିକ ବନ୍ଦୀମାନେ ତାଙ୍କୁ "ଅତିରିକ୍ତ ଜ୍ୱାଳାତନ" ନ କଲେ ସେ ତାଙ୍କର କଡ଼ା ମିଜାଜ୍ ଦେଖାନ୍ତି ନାହିଁ । ତାଙ୍କ ପରେ ବ୍ରହ୍ମପୁର ଜେଲ୍‌ରୁ ବଦଳି ହୋଇ ଆମର ଶାସନ କର୍ତ୍ତା ହୋଇ ଆସିଲେ ନାୟାର ସାହେବ । ମାନ୍ଦ୍ରାଜ ପ୍ରଦେଶରେ ଫାଶୀ ଆସାମୀକୁ ଫାଶୀ ଦେଇଥିବା ଲୋକକୁ ଫାଶୀ ଦେବା ଦିନଟି ଛୁଟି ମିଳେ ଓ ନଗଦ ଦଶ ଟଙ୍କା ପାରିତୋଷିକ ମିଳେ । ଜନରବ ଶୁଣା ଯାଉଥାଏ ଯେ ନାୟାର ସାହେବ

ମାନ୍ଦ୍ରାଜ ପ୍ରଦେଶରେ ଜେଲ୍ ବିଭାଗରେ କାମ କରୁଥିବା ବେଳେ ଏହି ସୁଯୋଗଟି ଗ୍ରହଣ କରିବାରେ ଅଭ୍ୟସ୍ତ ଥିଲେ । ଫାଶୀ ଦେବା ପରେ ପାରିତୋଷିକ ଦଶଟଙ୍କାରେ ସୁରାପାନ କରିବା ଥିଲା ତାଙ୍କର ଅବସର ବିନୋଦନ । ଥରେ ନାୟାର ସାହେବ ଫାଶୀ ଦେବା ପୂର୍ବଦିନ ରାତିରେ ତାଙ୍କ ଘରେ ମଦ ଖାଇ ଜିନିଷପତ୍ର ଫୋପଡ଼ା କଚଡ଼ା କରି ପାଟିତୁଣ୍ଡ ଆରମ୍ଭ କରିଦେଲେ । ବାର ନମ୍ବର ଉଆର୍ଡ଼ ପାଚେରୀକୁ ଜେଲର ସାହେବଙ୍କ ବସା ଲାଗିଛି । ଗୋଳମାଳ ଏତେଦୂର ହେଲା ଯେ ଆମେ ଶୋଇ ପାରିଲୁ ନାହିଁ । ବୁଝାଗଲା ଯେ ସେହି ଗୋଳମାଳଟା ନାୟାର ସାହେବଙ୍କ ଫାଶୀ ଦେବା କାର୍ଯ୍ୟର ପୂର୍ବପ୍ରସ୍ତୁତି । ବିଭୁତି ବାବୁ, ଯୁଧିଷ୍ଠିର ବାବୁ, ସୁବ୍ରମଣ୍ୟ ବାବୁ ପ୍ରଭୃତି ଆସିଷ୍ଟାଣ୍ଟ ଜେଲର୍ ପଦରେ ଥାଆନ୍ତି । ସେମାନେ ପ୍ରତ୍ୟେକେ ଆକ୍ଷରିକ ଅର୍ଥରେ ଥିଲେ His master's voice । ଅର୍ଥାତ୍ ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିଷ୍ପତ୍ତିକୁ କଡ଼ାମିଠା କଥା କହି କୌଣସି ପ୍ରକାରେ କାର୍ଯ୍ୟକାରୀ କରେଇବା ଥିଲା ସେମାନଙ୍କର ନୀତି । ସେମାନଙ୍କ ସହିତ ଅନେକ ଥର ଅନେକ ବିରୋଧ ଘଟିଥିବା ସତ୍ତ୍ୱେ ବର୍ଷବର୍ଷ କାଳ ସମ୍ପର୍କରେ ଆସିବା ଫଳରେ ଆମ ଅଜାଣତରେ ଯେ ଆମେ ସ୍ନେହ ବନ୍ଧନରେ ବାନ୍ଧି ହୋଇ ଯାଇଥିଲୁ, ତାହା ଏବେ ମୁକ୍ତ ପରିବେଶରେ ଦେଖା ହେଲା ବେଳେ ଅନୁଭବ କରୁଛୁ ।

ଜଣେ ଜେଲ୍ ହାକିମଙ୍କ ଦର୍ଶନ ଲାଭର ସୌଭାଗ୍ୟ ଆମକୁ ପ୍ରତିଦିନ ମିଳେ । ସେ ହେଉଛନ୍ତି ଜେଲ୍ ଡାକ୍ତର ଘୋଷାଲ୍ ବାବୁ । ସେ ସମସ୍ତଙ୍କ ସ୍ୱାସ୍ଥ୍ୟ ସମାଚାର ବୁଝି ସାରିବା ପରେ ମାଳତୀ ଦେବୀ ତାଙ୍କୁ ଆମ ଆନ୍ଦୋଳନ ସମାଚାର ପଚାରନ୍ତି । ଡାକ୍ତରବାବୁ ଏ ପ୍ରଶ୍ନ ଶୁଣିବା ମାତ୍ରେ ଗୋଟିଏ ବିରାଟ ହାଇ ମାରି କହନ୍ତି– "ମୁଁ ଖେଳ ଖବର ଛଡ଼ା ଆଉ କୌଣସି ଖବର ବୁଝେ ନାହିଁ ।" ମାଳତୀ ଦେବୀ ସଙ୍ଗେ ସଙ୍ଗେ କହନ୍ତି – "ଆପଣଙ୍କ ହାଇମରାରୁ ଆପଣଙ୍କ ଖେଳାଳୀ ପଣିଆ ଜଣାପଡ଼ି ଯାଉଛି ।" ଡାକ୍ତରବାବୁ ତୁରନ୍ତ ବିଷୟାନ୍ତର କରିଦେଇ ଥାକରେ ଥୁଆ ହୋଇଥିବା ବହି ବିଷୟରେ କଥା ପକାନ୍ତି ।

ଏମାନଙ୍କ ପରବର୍ତ୍ତୀ ଶାସନକର୍ତ୍ତା ହେଉଛନ୍ତି ବଡ଼ ଜମାଦାର । ସୁପର ସାହେବ ବା ଜେଲର୍ ସାହେବ ଉଆର୍ଡ଼କୁ ଆସିଲେ ବଡ଼ ଜମାଦାର ସେମାନଙ୍କ ସଙ୍ଗେ ବିଜେ କରନ୍ତି । ମକ୍‌କା ମଞ୍ଜି ପରି ଧଳା ଧଳା ଦାନ୍ତ, ପାଚିଲା ଦାଢ଼ି, ସୁର୍ମାଲଗା ଆଖି, ବ୍ରିଚେସ୍ କୋଟା ମୋଜା ପରିହିତ ବଡ଼ ଜମାଦାର ସବୁବେଳେ ତାଙ୍କ ପୋଜିସନ୍

ବିଷୟରେ ସଚେତନ । କଇଦୀମାନେ ଯେ ମଣିଷ, ଏ କଥାଟା ବୋଧହୁଏ ବଡ଼ ଜମାଦାର କେବେହେଁ କଳ୍ପନା ସୁଦ୍ଧା କରିନାହାନ୍ତି ।

ଯାହାହେଉ, ଜମାଦାର ଓ ଜମାଦାରଣୀମାନଙ୍କ ସଙ୍ଗେ ଆମର ବେଶୀ କାରବାର । ରଘୁ, ଗୁଲ୍‌ଜାର୍, ସାଉଣ୍ଡି ଆଦି ଜମାଦାରମାନେ ଆମ ଅମଳରେ କଟକ ଜେଲ୍‌ରେ ରାଜୁତି କରୁଥିଲେ । ରଘୁ ଜମାଦାର ସବୁବେଳେ ସମତଉଲ । ସେ ବେଶୀ କଥା କହନ୍ତି ନାହିଁ । କିନ୍ତୁ ଆମର ଦରକାରୀ ଆବଶ୍ୟକତା ଗୁଡ଼ିକ ପୂରଣ କରିବା ପାଇଁ ସେ ଆନ୍ତରିକତା ସହକାରେ ଚେଷ୍ଟା କରନ୍ତି । ସାଧାରଣ ଖୁଣୀ ଆସାମୀ ବା ଚୋରୀ କଇଦୀଙ୍କ ସଙ୍ଗେ ରଘୁ ଜମାଦାର ଅସୌଜନ୍ୟପୂର୍ଣ୍ଣ ବ୍ୟବହାର କରିବା କଥା ଆମ କାନରେ ପଡ଼ିନାହିଁ । ଗୁଲ୍‌ଜାର୍ ଜମାଦାରଙ୍କର ଜେଲ୍ କଇଦୀ ଅଡ଼େଇ ଅଡ଼େଇ ଦାଢ଼ି ପାଚି ଯାଇଥାଏ । ତାଙ୍କରି ସାଙ୍ଗରେ ଆମର ଅନେକ ସମୟରେ ସରସ ବଚସା ହୁଏ । ଅଧିକାଂଶ ଦିନ ଆମ ଉଆର୍ଡ଼କୁ ଏତେ କମ୍ ପାଣି ଆସେ ଯେ ନିତ୍ୟକର୍ମ ସାରିବା ଅସମ୍ଭବ ହୋଇପଡ଼େ । ଥରେ ମାଳତୀ ଦେବୀ କ୍ଷୁବ୍‌ଧ ହୋଇ କହିଲେ– ଗୁଲ୍‌ଜାର ! ପିଲାଗୁଡ଼ାକ ପାଣି ପାଇଁ ହଇରାଣ ହୋଇଯାଉଛନ୍ତି, ପାଣି କାହିଁ ? ଗୁଲ୍‌ଜାର୍ ଶାନ୍ତ ସ୍ୱରରେ କହିଲେ– "ଗୁଲ୍‌ଜାର୍ ସବୁ ପାଣି ପିଇଦେଲା ।" ତାଙ୍କ କହିବା ଶୈଳୀ କ୍ଷୁବ୍‌ଧ ବାତାବରଣକୁ ହାସ୍ୟରସରେ ଭରିଦେଲା । ଆଉଥରେ ଉଭରା କହିଲା– ଗୁଲ୍‌ଜାର୍ ! କାଲି ରାତିରେ ମୁଁ ପାଚେରୀ ଡ଼େଇଁ ଆମ ଘରକୁ ଯାଇଥିଲି । ଆଜି ସକାଳେ ଫେରିଲି । ଗୁଲ୍‌ଜାର୍ ଉତ୍ତରିଲେ – "ସେଇକଥା କହୁନା । ମୁଁ ବଡ଼ ପଞ୍ଚରରେ ଉଠି ଦେଖିବା ବେଳକୁ ମୋ ଦରବାଜା ସାମ୍‌ନାରେ ବସ୍ତାଏ ଚାଉଳ ଥୁଆ ହୋଇଛି । ମୁଁ ତ ଦଙ୍ଗ୍ ରହିଗଲି – ଏ ଲଢ଼େଇ ବଜାର କଣ୍ଟ୍ରୋଲ ଜମାନାରେ ବସ୍ତାଏ ଚାଉଳ କିଏ ମୁଫତ୍‌ରେ ଦେଇଗଲା ! ମୋ ଜମିନ୍‌ଦାର ଝିଅ ମୋ ମୁସିବତ୍ ବରଦାସ୍ତ କରି ନ ପାରି ଭୋର୍ ଭୋର୍ ଚାଉଳ ରଖିଗଲା । ଦେଖ ହୋ !!''

ସାଉଣ୍ଡି ଜମାଦାର ଭାରି ହାଜିର୍ ଜବାବ୍ । ଥରେ ରବିବାର ଦିନ ସାଉଣ୍ଡି ଜମାଦାର କବାଟ ଫିଟେଇ ଆସିବାରୁ ମାଳତୀ ଦେବୀ କହିଲେ– "କିହୋ ସାଉଣ୍ଡି ! ଆଜି ରବିବାରରେ ତୁମର ଛୁଟି ନାହିଁକି ?" ଜମାଦାର ତୁରନ୍ତ ଜବାବ ଦେଲେ– "ଯେତେ 'ଖାନା' କାହିଁରେ ଛୁଟି ନାହିଁ । ଜେଲ୍‌ଖାନା, ରେଲ୍‌ଖାନା, ଡାକ୍‌ଖାନା, ଡାକ୍ତରଖାନା, ପାଇଖାନା କେଉଁଠି ଛୁଟି ଅଛି ?" (୧୯୪୨ରେ ଡାକଘର ରବିବାରେ ବନ୍ଦ ହେଉ ନ ଥିଲା ।)

ଜମାଦାରଙ୍କ ତଳକୁ ଜମାଦାରଣୀ । ଉଷା ଓ ବନଲତା ହେଉଛନ୍ତି ଜନାନା ଓଆର୍ଡ଼ରେ ସ୍ଥାୟୀ ଜମାଦାରଣୀ । ଆମେ ଯେ ଆକସ୍ମିକ ଉତ୍ପାତ ଦେଖାଦେଲୁ ଆମ ପାଇଁ ଅସ୍ଥାୟୀ ଜମାଦାରଣୀ ମରିୟମ୍, ଜେସ୍ମିନ୍, ଆନି ଆଦି ନିଯୁକ୍ତ ହେଲେ । ସେମାନେ ଓଆର୍ଡ଼କୁ ଆସିବାବେଳେ ମୁକ୍ତ ପରିବେଶର ସୁଗନ୍ଧ ଟିକିଏ ବାରି ହୁଏ । ଆମେ ସେମାନଙ୍କ ପିଲାଛୁଆଙ୍କ ଅଝଟ, ପତିପତ୍ନୀ ମନୋମାଳିନ୍ୟ, ରୋଗବଇରାଗ, ହସଖେଳ କଥା ଶୁଣି ଉପଭୋଗ କରୁ । ପାରିବାରିକ ସମସ୍ୟାର ସମାଧାନର ଉପାୟ ମଧ୍ୟ ରମା ଦେବୀ, ମାଳତୀ ଦେବୀ ପ୍ରଭୃତି ସେମାନଙ୍କୁ ବତାଉଥିବାର ଆମେ ଶୁଣୁ । ଜମାଦାରଣୀମାନେ ମଧ୍ୟ ନିଜ ନିଜର ବିଶେଷ ଗୁଣର ପରିଚୟ ଦିଅନ୍ତି । ଯେସ୍ମିନ୍ କିଛିଦିନ ଗଣେଶଲାଲ୍ ପଣ୍ଡିତଙ୍କ ଘରେ ବିହାରିବାଗ୍‌ରେ ଥିଲେ । ସେ କାଶ୍ମିରୀ ରୋଷେଇର ରେସିପି ବତେଇବାକୁ ଭଲ ପାଆନ୍ତି । ସେ ସବୁ ଶୁଣି ଶ୍ରବଣେନ ଅର୍ଦ୍ଧ ଭୋଜନଂ କେଜାଣି ହେଲେ ହେଉଥିବ । ଯେସ୍ମିନ୍ ସୁକଣ୍ଠୀ, ସେ ଆମ ଅନୁରୋଧରେ ଆମକୁ ଖ୍ରୀଷ୍ଟୀୟ ଭଜନ ଶୁଣାନ୍ତି । ଆନୀ ଗୋରା ସାହେବଙ୍କ ଘରେ ଆୟା ଥିଲେ । ସାଇବ ଘରର ଚଳଣୀ, ପିଲା ପାଳିବା ପ୍ରଣାଳୀ ବିଷୟରେ ସେ ଆମକୁ ଶୁଣାନ୍ତି । ବନଲତାଙ୍କର ସିଲେଇରେ ଶରଧା । ସବୁବେଳେ ହାତରେ ରୁମାଲ, ଟେବୁଲ୍ କ୍ଲଥ୍ ବା ବ୍ଲାଉଜ୍‌ପିସ୍ ଧରା ହୋଇଥିବ । ମରିଅମ୍ ବହୁ ସନ୍ତାନବତୀ, ସ୍ୱାମୀ ବୃଦ୍ଧ ଓ ଅକର୍ମଣ୍ୟ । ସେ ତାଙ୍କ ଦୁଃଖ କାହାଣୀ କହି ନିଜକୁ ହାଲୁକା କରନ୍ତି ଆମ ଆଗରେ !!

ଜେଲର ଅଣରାଜନୈତିକ ବନ୍ଦୀଙ୍କ ସମ୍ପର୍କରେ ଆସିବାର ଯୋଗାଯୋଗ ବେଳେ ବେଳେ ଘଟିଯାଏ । ଆମ ଖାଦ୍ୟ ସାମଗ୍ରୀ, ଜେଲ୍ ଡାକ୍ତରଖାନାର ଔଷଧ ଓ ପଥ୍ୟ ଆଦି ଏହି କଇଦୀମାନେ ଆଣି ଦିଅନ୍ତି । ପାଇଖାନା ସଫା, ପାଣି ହାଉଦା ସଫା ମଧ୍ୟ ସେହିମାନେ କରନ୍ତି । ବୁଢ଼ା ବୁଢ଼ା କଇଦୀ ଆସିଲେ ଆମେ ତାଙ୍କ ସଙ୍ଗେ ବେଳେବେଳେ କଥାବାର୍ତ୍ତା କରୁ । ଥରେ ଜଣେ ଆଜୀବନ କାରାଦଣ୍ଡ ପାଇଥିବା ବୁଢ଼ା କଇଦୀ ଆମ ଓଆର୍ଡ଼କୁ ସଫେଇ କରିବା ପାଇଁ ଆସିଲେ । ସେ କେଉଁ ଅପରାଧରେ ଦଣ୍ଡ ପାଇଛନ୍ତି ପଚାରିବାରୁ ସେ କହିଲେ ସେ ହେଉଛନ୍ତି ସମ୍ବଲପୁର ଜିଲ୍ଲାର ଜଣେ ଗୌନ୍ତିଆ । ତାଙ୍କ ପୁଅ ମରାପିଟା କରୁ କରୁ ଜଣେ ଲୋକକୁ ମାରି ଦେଲା । ଭେଣ୍ଡିଆ ପୁଅ, ନୂଆ ବିଭା ହୋଇଛି, ତା'ର ସଂସାର ଭୋଗ ଆରମ୍ଭ ମାତ୍ର ହୋଇଛି । ବାପ ତ ବୁଢ଼ା, ଆଉ କେତେ ଦିନ ବା ବଞ୍ଚିବ ବିଚାରି ସେ ପୁଅକୁ ବଞ୍ଚାଇବାକୁ ପୁଅ ଦୋଷ ନିଜ ମୁଣ୍ଡକୁ ନେଇ ଆଜୀବନ କାରାଦଣ୍ଡ ଭୋଗୁଛନ୍ତି । ଖୁଣୀ ଆସାମୀକୁ ଯେ

ଆଜୀବନ ଅର୍ଥାତ୍ କୋଡ଼ିଏ ବର୍ଷ ସଜା ମିଳେ, ସେଥିରୁ ମାର୍କା କଟିଯାଇ ଚଉଦ ବର୍ଷ ଜେଲ୍‌ରେ ରହିବାକୁ ପଡ଼େ । ବୁଢ଼ାଙ୍କର ସାତବର୍ଷ କଟିଲାଣି । ଘରେ ଦୁଇ ସ୍ତ୍ରୀ, ଅମାରରେ ଧାନ ବୋଝେଇ, ହାତୀ ପରି ହଳିଆ, ଏଠି ମେଟ୍ ଆଗରେ କେଡ଼େ ନିଉନ ହୋଇ ଗୌନ୍ତିଆ ବୁଢ଼ା ଛିଡ଼ା ହୋଇଛନ୍ତି । ମନଟା ଭାରାକ୍ରାନ୍ତ ହୋଇଗଲା ।

ରୋଗୀଙ୍କ ଔଷଧ, ପଥ୍ୟ ନେଇ ଆମ ୱାର୍ଡ଼କୁ ଆସନ୍ତି ଭାଗୀରଥି । କମ୍ପାଉଣ୍ଡରଙ୍କ ପରି ତାଙ୍କର କାରବାର । ପ୍ରତ୍ୟେକ ରୋଗୀର ନାଆଁ ଧରି ଡାକି ସେ ଡାକ୍ତରଖାନା ଭାତ, ଘୋଳ ଦହି ଓ ଆଳୁ ଚକଟା ବାଢ଼ି ଦେଇ ଯାଆନ୍ତି । ଗହମ ପରି ଦେହ ରଙ୍ଗ, ସୁସ୍ଥ ସବଳ ମଧ୍ୟବୟସୀ ଲୋକ । କେନ୍ଦୁଝରରେ ଘର । ଜମି ମାମଲାରେ ରାଗିଯାଇ ପାହାରେ ପକାଇବା ମାତ୍ରେ ଜ୍ଞାତି ଭାଇଟିର ପ୍ରାଣ ଛାଡ଼ିଗଲା । ତାହାପରେ ଭାଗ୍ୟରଥୀଙ୍କ ଭାଗ୍ୟ ତାଙ୍କୁ କଟକ ଜେଲ୍‌କୁ ଟାଣି ଆଣିଲା । ତାଙ୍କର ସଂଯତ ସୌଜନ୍ୟପୂର୍ଣ୍ଣ ବ୍ୟବହାର, ଦାୟିତ୍ୱ ତୁଲାଇବାରେ ତତ୍ପର । ଡାକ୍ତରଖାନା କାମରୁ ଡାକ୍ତରବାବୁ ତାଙ୍କୁ ଛାଡ଼ିବାକୁ ନାରାଜ ।

ଆମ ୱାର୍ଡ଼କୁ ଲାଗି ଏଗାର ନମ୍ବର ୱାର୍ଡ଼ । ମଝିରେ ପାଚେରୀ । ପାଚେରୀରେ ଗୋଟାଏ ଦଦରା କବାଟରେ ଚାବି ପଡ଼ିଥାଏ । ଅଣରାଜନୈତିକ ସ୍ତ୍ରୀ କଇଦୀମାନେ ସେହି ୱାର୍ଡ଼ରେ ରହନ୍ତି । ହାରାମଣି ଦେବୀ ପ୍ରଭୃତି ବେଳେ ବେଳେ କବାଟ ଫାଙ୍କରେ ଚାହିଁ ସେ ୱାର୍ଡ଼ର କାଣ୍ଡ କାରଖାନା ଦେଖନ୍ତି, କାହାରି କାହାରି ସାଙ୍ଗରେ ଆଳାପ ଜମାନ୍ତି । ଜଣେ କଇଦୀ ଥିଲେ ବହୁଗ୍ରାମ ପାଖ ଗାଁର । ସେଥିପାଇଁ ରମା ଦେବୀ ଓ ଜାଆ ମାଳତୀ ଦେବୀଙ୍କୁ ସେ ନିଜ ଗାଁ ଝିଅ ଲେଖା କରି ଦେଇ ଡାକନ୍ତି । ଅନେକ ସମୟରେ କଞ୍ଚା ପିଆଜଟିଏ ପାଇଁ ନେହୁରା ନିଶତ ହୁଅନ୍ତି । ଯୌବନରେ ସ୍ୱାମୀ ମରିଯିବାରୁ କାମଦାମ ନ ପାଇ ଭୋକଉପାସ ସହି ନ ପାରି କାହାଘରୁ ଖଣ୍ଡିଏ ବାସନ ଚୋରେଇ ଆଣି ସେ ବିକି ଦେଇଥିଲା । ସେଥିପାଇଁ ବହୁତ ଖୋଳତାଡ଼ କୋର୍ଟକଚେରୀ ହୋଇ ଧୋବୀକୁ ସଜା ହେଲା । ଛଅମାସ ସଜା ଭୋଗିସାରି ସେ ଗାଆଁକୁ ଫେରିଲାରୁ ସାହିଭାଇ ତାକୁ ବାସନ୍ଦ କଲେ । କିଛିଦିନ ଏଣେ ତେଣେ ବୁଲି ପେଟ ଜ୍ୱାଳା ସହି ନ ପାରି ଧୋବୀ ଜଣଙ୍କର ଡ଼ାଳଟିଏ ଆଣି ବିକିବା ବେଳେ ଧରାପଡ଼ି ପୁଣି ଜେଲ୍‌କୁ ଆସିଲେ । ଯାହାହେଉ, ଧୋବୀକୁ ଜୀବନ ନିର୍ବାହ କରିବାର ବାଟ ମିଳିଗଲା । ସେ ଜେଲ୍‌ରୁ ବାହାରିବା ମାତ୍ରେ ଯା ଘର ବାସନ, ତା ଘରେ ଥୋଇ ତୁରନ୍ତ ଗିରଫ ହୋଇ ଜେଲ୍‌କୁ ଚାଲି ଆସନ୍ତି । ମାନ ଅପମାନ କ'ଣ ଏ ନିଅଁଣିଆ ପେଟ ବୁଝେ ? ଭାତ ଗଣ୍ଡାକ ତ ଜେଲ୍‌ରେ ଥୁଆ । ୧୯୩୦ରୁ ଧୋବୀ ଏଗାର

ନମ୍ବରର ବାସିନ୍ଦା । ପାହାନ୍ତରେ ନିଦ ଭାଙ୍ଗିଗଲେ ଧୋବୀର ଗୀତ ଶୁଭେ– "ଥିରି ଥିରି କରି ତୋଳଗୋ ସାଆନ୍ତେ ଗଛରୁ ପତର ନ ଝଡ଼େଟି" । ଧୋବୀର ଜୀବାତ୍ମା ରାତି ଅଧରେ ଏଗାର ନମ୍ବରରୁ ଚାଲିଯାଇ ମାଆ କୋଳର ଉଷୁମ ଟାଣେ– ସେ କଥା ଜମାଦାରଣୀ ଜାଣିପାରେ ନାହିଁ ।

ବରଦା ଖଣ୍ଡେଇତ ଘର ଝିଅ, ଗୋଟିଏ ଚାଉଳରେ ଗଢ଼ା । ବୟସ ପଚିଶି ଭିତରେ ହେବ । ସେ ଖୁଣୀ । ଗରିବ ବାପ ଧାନ ଅମାର, ପିତ୍ତଳ ହାଣ୍ଡି, ଦାଣ୍ଡଆଡ଼େ କୂଅ, ବାରିଆଡ଼େ ପୋଖରୀ ଦେଖି ଝିଅ ପେଟ କଷ୍ଟ ପାଇବ ନାହିଁ ବିଚାରୀ ଦୋବେଇ ବରକୁ ବିଭା କରି ଦେଇଥିଲେ । ସଉତଣିଆ ପୁଅ ବୋହୂ ସେ ଘରେ ସର୍ବେସର୍ବା । ଦିନରାତି ଲାଞ୍ଛନା, ଗଞ୍ଜଣା । ଚଉଦ ବରଷର ବରଦାକୁ ଭାଇ ଭଗାରିଆ କିଏ ଖଳ ଲୋକ ଶିଖାଇଲେ ବୁଢ଼ାକୁ ମାରି ସୁନାରୂପା ଘେନି ବାପଘରକୁ ପଳା, ସୁଖରେ ରହିବୁ । ଏଠି ଏତେ ଦହଗଞ୍ଜ ହେଉଛୁ କିଆଁ ?

କଅଁଳ ଗାଧୁଆ ବେଳ ଗଡ଼ିଗଲା, ବରଦା ଶୋଇବା ଘର କବାଟ ନ ଫିଟିବାରୁ ବଡ଼ବୋହୂ ଦେଖିଲା ବେଳକୁ ବୁଢ଼ା ହଣା ହୋଇ ପଡ଼ିଛି । ଧାର ଧାର ରକ୍ତ ଧାନ ଓଳିଆ କଡ଼ ଦେଇ ବହିଯାଇ ଦୁଆର ମୁହଁରେ ଜମା ହୋଇଛି । ବରଦା କାଠ ପରି ବସି ବୁଢ଼ା ସ୍ୱାମୀକୁ ଚାହିଁଛି । ବୋହୂର ହୂରି ହେମାଳି ଶୁଣି ଲୋକ ଥାଟ ପଟାଳି ଭାଙ୍ଗିଲେ । ବରଦା ସାଙ୍ଗେ ସାଙ୍ଗେ ଗିରଫ ହୋଇ କୋଡ଼ିଏ ବର୍ଷ ସଜା ପାଇ ଏଗାର ନମ୍ବରକୁ ଚାଲାଣ ହେଲା । ଏଇ ବରଦା ନ ଥିଲେ ଏଗାର ନମ୍ବରର କଇଦୀ ମାଡ଼ ମରାମରି ହୋଇ ଖଣ୍ଡିଆ ଖାବରା ହୋଇ ଯାଉଥାନ୍ତେ । ବନଲତା ଜମାଦାରଣୀ ମତରେ ବରଦା ପରି ସହିଷ୍ଣୁ, ବୁଦ୍ଧିମତୀ, ପରିଶ୍ରମୀ, ସର୍ବୋପରି ପରିସ୍ଥିତିକୁ ସମ୍ଭାଳିବାବାଲା କଇଦୀ ଅଛି ବୋଲି ଏଗାର ନମ୍ବର ଥୟ ପଡ଼ିଛି ।

ଜେଲର ପ୍ରଧାନ ପାଚେରୀ ଯେଉଁଠି ଏଗାର ନମ୍ବର ପାଚେରୀ ସଙ୍ଗେ ମିଶି ନବେ ଡ଼ିଗ୍ରୀ କୋଣ ସୃଷ୍ଟି କରିଛି, ସେଇଠି ପହରା ଦିଏ ଜଣେ ଖୁଣୀ ଆସାମୀ ଭିକାରୀ । ସୁସ୍ଥ ସବଳ ଯୁବକଟା ଏକୁଟିଆ ଘଣ୍ଟା ଘଣ୍ଟା ଧରି ପାଚେରୀ ପାଖରେ ଛିଡ଼ା ହୋଇ ରହେ । ବେଳେ ବେଳେ ନିଛାଟିଆ ଖରା ଦିପହରରେ ସେ ଗାଏ "କଟକ ଜେଲର ଇଟାପଥର" । ଏହି ପଦିକ ଗୀତ ସେ ବାରମ୍ୱାର ଘୋଷି ହୁଏ । ଏହି ଚାରୋଟି ଶବ୍ଦରେ ବଣପାହାଡ଼ର ଶ୍ୟାମଳିମା କୋଳରେ ବଢ଼ିଥିବା ଆଦିବାସୀ ଯୁବକଟିର ମର୍ମବେଦନା ପରିସ୍ଫୁଟ ହୋଇ ଉଠେ ।

ସବୁଠାରୁ ଅସ୍ୱସ୍ତିକର ବୋଧହୁଏ ପାହାନ୍ତାରେ ବିଗୁଲ୍ ବାଜିଲେ । ଆମେ ଜାଣୁ ଯେ ସେଦିନ କେହି ଫାଶୀଖୁଣ୍ଟରେ ଝୁଲିବ ବୋଲି ସୁପରିନ୍‌ଟେଣ୍ଡେଣ୍ଟ ଆସିଲେଣି । ମଙ୍ଗଳକୃତ୍ୟରେ ସାତ ଅହିଅ ଲୋଡ଼ା ହେବା ବିଧି ବିଧାନ ପରି ଫାଶୀ ଦିଆଗଲା ବେଳେ ଜେଲ୍ ସୁପରିନ୍‌ଟେଣ୍ଡେଣ୍ଟ, ଜଣେ ମାଜିଷ୍ଟ୍ରେଟ୍, ଜେଲର୍, ଜେଲ୍ ଡାକ୍ତର ଓ ବଡ଼ ଜମାଦାର ଉପସ୍ଥିତ ରହିବା ହେଉଛି ବିଧି । ଫାଶୀ ଦିଆସରି ଲାସ୍ ସ୍ଥାନାନ୍ତରିତ ହେବା ପରେ ଉଆର୍ଡ଼ ଦୁଆରମୁହଁ କବାଟ ଚାବି ଫିଟୁଥିବାରୁ ସାଧାରଣତଃ ଫାଶୀଦିନ ବିଳମ୍ବରେ ଆମେ ଉଆର୍ଡ଼ରୁ ବାହାରୁ ।

ଦିନେ ମୁଁ ମୁଲାକାତୀ ପାଇଁ ଅଫିସ୍‌କୁ ଯିବାବେଳେ ଦେଖିଲି, ଫାଶୀ ଆସାମୀଙ୍କ ପାଇଁ ନିର୍ଦ୍ଦିଷ୍ଟ ସେଲ୍ ଆଡୁ କେତେଜଣ ସାମରିକ ଅଫିସର୍ ଆସୁଛନ୍ତି । ମୁଁ ଅଫିସ୍‌ରେ ଥିବା ବେଳେ ସେମାନେ ଜେଲରଙ୍କ ନିକଟକୁ ଆସି କିଛି ଟଙ୍କା ଦେଇ କହିଲେ– ଆମେ ତ ତାକୁ ଯେତେ ପଚାରିଲୁ, ସେ ଟୋକାଟା କିଛି କହିଲା ନାହିଁ । ଆପଣ ତା'ପାଇଁ କିଛି ମିଠା ଜଳଖିଆ ମଗେଇ ଦେବେ । ମୁଁ ଅଫିସ୍‌ରେ ଥାଉ ଥାଉ ମିଠା ଜଳଖିଆ ଆସିଲା, ତାକୁ ଜେଲ୍ ଡାକ୍ତର ଚାଖିଲେ । କାରଣ ସବୁ କଇଦୀଙ୍କ ଖାଦ୍ୟ ଜେଲ୍ ଡାକ୍ତର ଚାଖିବା ହେଉଛି ନିୟମ । ସେ ଜଳଖିଆ ଜେଲ୍ ଭିତରକୁ ପଠାହେଲା ।

ପରଦିନ ରାତି ନ ପାହୁଣୁ ଜେଲ୍ ଫାଟକରେ ବିଗୁଲ୍ ବାଜି ଉଠିଲା । ଏ ବିଗୁଲ୍ ବାଜିବା ସାଙ୍ଗରେ କାଲି ସନ୍ଧ୍ୟାରେ ଜଳଖିଆ କିଣାର ଅନୁବନ୍ଧ ଆରମ୍ଭ ହେଲା । ରାତି ପାହିଲା । ଜମାଦାରଣୀ ବଦଳ ବେଳ ଗଡ଼ିଯାଇ କବାଟ ଫିଟିଲା । ମରିଅମ୍ ଜମାଦାରଣୀ କେମିତି ଆତଙ୍କିତ ହେଲା ପରି ଦିଶୁଥାନ୍ତି । କଥା ପଚାରିଲେ ତାଙ୍କ ପାଟିରୁ ବଚନ ବାହାରୁ ନ ଥାଏ । କିଛି କ୍ଷଣ ପରେ ଗୁଲ୍‌ଜାର୍ ଜମାଦାର ସଫାଇ କରାଇବା ପାଇଁ ଆସିବାରୁ ଆମେ ତାଙ୍କୁ ସିଧା ସଳଖ ପଚାରିଲୁ– "ଆଜି କାହାକୁ ଫାଶୀ ଦିଆହେଲା ?" ଗୁଲଜାର ଆକାଶରୁ ଖସି ପଡ଼ିଲା ପରି ମୁହଁ କରି କହିଲେ, "ଫାଶୀ ? ଫାଶୀ କାହିଁକି କାହାକୁ ଦିଆହେବ ? (ଜେଲ୍ କୋଡ୍‌ରେ ସ୍ତ୍ରୀ କଇଦୀଙ୍କୁ ଫାଶୀ ଦେବା ବ୍ୟାପାର ଜଣାଇବା ନିଷିଦ୍ଧ), ସେଇଠୁ ଆରମ୍ଭ ହେଲା ଆମର ସମ୍ମିଳିତ ଜେରା । ପନ୍ଦର ଜଣ ବାରିଷ୍ଟରଙ୍କୁ ଜଣେ ମାତ୍ର ଆସାମୀ । ଫାଶୀ ଯଦି ଦିଆ ହୋଇନାହିଁ ତେବେ ପାହାନ୍ତାରେ ବିଗୁଲ ବାଜିଲା କାହିଁକି ? ସୁପରିନ୍‌ଟେଣ୍ଡେଣ୍ଟ ଆସିଥିଲେ ଟି ? ଗୁଲଜାର ଅମ୍ଳାନ ବଦନରେ ଜବାବ ଦେଲେ– "ଜେଲ୍ ଡାକ୍ତରଖାନାରେ ଜଣେ ସାଂଘାତିକ ବେଗମ୍, ସୁପର୍ ତାଙ୍କୁ ଦେଖିବାକୁ ଆସିଥିଲେ ।" ପୁଣି ଜେରା ହେଲା–

ସାହେବ ଯଦି କେବଳ ରୋଗୀ ଦେଖିବାକୁ ଆସିଥିଲେ ତେବେ ଜମାଦାରଣୀ ବନ୍ଦଲ ବିଳମ୍ବ ହେଲା କାହିଁକି ? "ମୁଁ ସାହେବଙ୍କ ସାଙ୍ଗରେ ରହିଗଲି । ଚାବି ମୋ ପାଖରେ ଥିବାରୁ ଉଛୁର ହେଲା ।" ଏହିପରି ସବାଲ ଜବାବ କିଛିକ୍ଷଣ ଚାଲିଲା ପରେ ସିଧା ଆକ୍ରମଣ ହେଲା– ହଉ ଜମାଦାର ! ଆମକୁ ସବୁ ଓଲୁ ଠଉରେଇଛ । କାଲି ନିଜ ଆଖିରେ ଦେଖିଲୁ ଫାଶୀ ସେଲ୍‌ରୁ ଲୋକ ଅଫିସ୍‌କୁ ଆସିଲେ, ଜଳଖିଆ କିଣା ହୋଇ ଫାଶୀ ସେଲ୍‌କୁ ଗଲା, ତଥାପି ଆମକୁ ଭୁଲାଉଛ ?

ଏଥର ଗୁଲଜାର ତରଳିଲେ । ଚାରିଆଡ଼କୁ ସନ୍ତର୍ପଣରେ ଚାହିଁ ଦେଇ ସାରି ଥପ୍ କରି ବସିଗଲେ । ତାପରେ ଆଖିରୁ ବହିଲା ଗଙ୍ଗା ଯମୁନା ଧାର । ପଞ୍ଜାବୀ ଟୋକାଟା । ଦୁଧରେ ଲହୁ ଫେଣ୍ଟି ଦେଲା ପରି ତା ରୂପ । ଚୌଦ୍ୱାର ସୈନ୍ୟ ଛାଉଣୀରେ ଥିଲା । ସାଙ୍ଗସାଥୀ କାହା ସାଙ୍ଗରେ କଣ ବୋଲା ବୋଲି ହେଲା । ସେହି ରାଗ ରଖି ରାତିରେ ନିଜ ବ୍ୟାରାକ୍‌ରୁ ଉଠି ଯାଇ ତାକୁ ଗୁଳି କରିଦେଇ ଆସିଲା । ଜଣାପଡ଼ିବା ମାତ୍ରେ କମାଣ୍ଡର୍ ସମସ୍ତଙ୍କୁ 'ଫଲଇନ୍' କରିଦେଇ ରାଇଫଲ୍ ବ୍ୟାରେଲ ଯାଞ୍ଚ କରିଦେଲା । ଏଇ ଟୋକାର ବନ୍ଧୁକ ନଳୀରେ କାର୍ତ୍ତୁଜ୍ ପାସ୍ କରିଛି ଦେଖି ସଙ୍ଗେ ସଙ୍ଗେ କୋର୍ଟ ମାର୍ଶାଲ ହୋଇ ଫାଶୀ ସଜା ହୋଇଗଲା । ବିଶ୍ ପଚିଶ୍ ବର୍ଷର ଜବାନ୍ । ତାକୁ ଦେଖି ଆମ ଆଖିରେ ଲୁହ ଜକଉଛି, ସେ ଓଲଟି ଆମକୁ ବୋଧ ଦେଉଛି – କାନ୍ଦୁଛ କାହିଁକି ? ଆମ ଘରେ ମୋ ନାନା, ମୋ ମାମା ସମସ୍ତେ ଏମିତି ଜବାନ୍ ଉମର୍‌ରେ ଫାଶୀରେ ଲଟକିଛନ୍ତି । ତାରି ପାଇଁ ଜଳଖିଆ ଆସିଥିଲା ।

ରାତି ପାହିଲେ ଯାହାକୁ ସଂସାରରୁ ବିଦାୟ ଦିଆଯିବ, ତା ମନ ଅରମାନ ମେଣ୍ଟେଇ ତାକୁ ରସଗୋଲା କ୍ଷୀରମୋହନ ଖୋଇବା କେଡ଼େ ମର୍ମନ୍ତୁଦ କଥା ।

## (୧୦)

ବହିର୍ଗତ ସହିର୍ଗତ ଯୋଗାଯୋଗର ଆଉ ଗୋଟିଏ ସୂତ୍ର ହେଉଛି ମଧେ ମଧେ ମୁଲାକାତୀ ଅର୍ଥାତ୍ ଦେଖାସାକ୍ଷାତ ଓ ଚିଠିପତ୍ର । ଓଆର୍ଡ଼ ପାଚେରୀ ସେପଟ ଯେତେବେଳେ ଜମାଦାର୍ ଡାକ ଦିଅନ୍ତି– "ଜମାଦାରଣୀ, ଅମକଙ୍କର ମୁଲାକାତୀ ଆସିଛି", ସେତେବେଳେ ସେ କଣ୍ଠସ୍ୱରରେ ମହୁ ବୋଳା ହୋଇଥିଲା ପରି ଲାଗେ ।

ବାର ନମ୍ବରରୁ ଯେ କେହି ମୁଲାକାତୀଙ୍କୁ ଗଲେ ସମସ୍ତଙ୍କର ମନ ଖୁସି ହୋଇଯାଏ । ପୁଣି ମୁଲାକାତୀରୁ ଫେରିବା ବେଳ ହେଲେ ଆମେ ସମସ୍ତେ ସନ୍ତ୍ରସ୍ତ ହୋଇ ରହୁ କି ପ୍ରକାର ସମ୍ବାଦ ଶୁଣିବାକୁ ମିଳିବ କିଏ ଜାଣେ ? ଆମର ସାଧନା ହେଲା–

ସୁଖଂ ବା ଯଦିବା ଦୁଃଖଂ ପ୍ରିୟଂ ବା ଯଦିବାପ୍ରିୟଂ
ପ୍ରାପ୍ତଂ ପ୍ରାପ୍ତମୁପାସିତ ହୃଦୟେନା ପରାଜିତ ॥
କିନ୍ତୁ ସିଦ୍ଧି ତ ମିଳି ନ ଥାଏ ।

ଦିନେ ମଧ୍ୟାହ୍ନ ଭୋଜନ ପରେ ବସି ମୁଁ ତୁଳା ସୁଆଁରୁଛି ମଙ୍ଗଳା ଦେବୀ ତାଙ୍କ ଚଢ଼େଇ ନିଦରୁ ଉଠି କହିଲେ– ମୁଁ ଏଇକ୍ଷଣି ସ୍ୱପ୍ନ ଦେଖିଲି କେହି ଜଣେ ମୋତେ କହୁଛି, ଲକ୍ଷ୍ମୀ ସ୍ୱାମୀ ସନ୍ତୋଷର ଦେହ ଖରାପ, ଲକ୍ଷ୍ମୀ କାନ୍ଦୁଛି । ଲକ୍ଷ୍ମୀ ମଙ୍ଗଳା ଦେବୀଙ୍କର ବଡ଼ବାପା ଝିଅ ଭଉଣୀ । ମୁଁ କଥାଟା ହାଲୁକା କରିଦେବା ପାଇଁ କହିଲି– ଦିବା ନିଦ୍ରାରେ ସ୍ୱପ୍ନ କେବେ ସତ ହୁଏ ? ମୋ ପାଟିରୁ କଥା ନ ସରୁଣୁ ରଘୁ ଜମାଦାର ଡାକ ଦେଲେ– ଜମାଦାରଣୀ, ମଙ୍ଗଳା ସେନଙ୍କର ମୁଲାକାତୀ ଅଛି । ମଙ୍ଗଳା ଦେବୀ ଆମମାନଙ୍କଠାରୁ କେତେକ ଖବର ନେଇ ଜେଲ୍ ଅଫିସ୍‌କୁ ଗଲେ । ମୁଁ ଶକୁନ୍ତଳା, କିରଣଲେଖା ପ୍ରଭୃତିଙ୍କୁ ଗଣିତ ପଢ଼େଇ ବସିଲି । ଅଧ ଘଣ୍ଟାଏ ପରେ ମଙ୍ଗଳା ଦେବୀ ଫେରି ଆସି କହିଲେ– "ଲକ୍ଷ୍ମୀର ସ୍ୱାମୀ ସତରେ ମରିଯାଇଛନ୍ତି ।"

ଏହିପରି ମୁଲାକାତୀରେ ପାଇଲୁ ଗାନ୍ଧିଜୀଙ୍କର ୧୯୪୩ ମସିହା ଅନଶନ ଖବର । ବାର ନମ୍ବର ଉଆର୍ଡ଼ ସ୍ତବ୍ଧ ହୋଇଗଲା । ଗାନ୍ଧୀ ଟଟେନ୍‌ହାମ୍ ପତ୍ର ବିନିମୟ ସେ ପର୍ଯ୍ୟନ୍ତ ଖବରକାଗଜରେ ପ୍ରକାଶ ପାଇ ନ ଥାଏ । ତେଣୁ ଆମେ ସେ ବାବଦରେ ସମ୍ପୂର୍ଣ୍ଣ ଅନ୍ଧାରରେ ଥାଉଁ । ଅବଶ୍ୟ, 'ଭାରତ ଛାଡ଼' ଆନ୍ଦୋଳନ ଆରମ୍ଭ ପୂର୍ବରୁ ଏ ଆନ୍ଦୋଳନର ରୂପରେଖ ଓ ସରକାରଙ୍କ ମତିଗତି ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ ଗାନ୍ଧିଜୀ ମହାଦେବ ଦେଶାଇ, କିଶୋରଲାଲ୍ ମଶରୁୱାଲା, କାକାସାହେବ କାଲେକର ପ୍ରମୁଖ ତାଙ୍କ ଅହିଂସା ଲଢ଼େଇର ଲେଫ୍‌ଟେନାଣ୍ଟମାନଙ୍କୁ ସୂଚେଇ ଦେଇଥିଲେ ଯେ ଏଥରକ ମୁଁ ଗିରଫ ହେବା ମାତ୍ରକେ ଆମରଣ ଅନଶନ କରିବା କଥା ଭାବୁଛି । ପରିସ୍ଥିତି ଯାହା ଦେଖାଯାଉଛି ବ୍ରିଟିଶ୍ ନିଜର ସ୍ୱାର୍ଥରକ୍ଷା ପାଇଁ ଅନନ୍ୟୋପାୟ ହୋଇ ମୋତେ ବିନା ଦ୍ୱିଧାରେ ବଳି ଦେବ । ସେତେବେଳେ ଏହି ଲେଫ୍‌ଟେନାଣ୍ଟମାନେ ସମସ୍ୱରରେ ଆମରଣ ଅନଶନ ବିରୁଦ୍ଧରେ ଯୁକ୍ତି କରିଥିଲେ । କେବଳ ବିନୋବାଜୀ କହିଥିଲେ– "ରାମ୍ ଯୋ କାମ ବୁଦ୍ଧିସେ କର୍ ସକ୍‌ତା ହୈ, ହନୁମାନ୍ ଉସେ ଶ୍ରଦ୍ଧାସେ

କର୍ ସକେଗା ।” ଗାନ୍ଧିଜୀ ବମ୍ବେରେ ଗିରଫ ହେବା ପରେ ପରେ ବ୍ରିଟିଶ୍ ସରକାର ସବୁ ବଡ଼ ବଡ଼ ଲଡୁଆଙ୍କୁ ଜେଲ୍‌ରେ ଭରତି କରିଦେଲେ । ବିନୋବାଜୀ ମଧ୍ୟ ଗିରଫ ହୋଇ ନାଗପୁର ଜେଲ୍‌କୁ ଆସିଲେ । ଜେଲ୍‌ରେ ପଶିବା ମାତ୍ରେ ଜେଲର୍‌ଙ୍କୁ କହିଦେଲେ– ସବୁଥର ଆନ୍ଦୋଳନରେ ଆମେ ଜେଲ୍ ବାହାରେ ଥିବାବେଳେ ସରକାରଙ୍କ ସହିତ ଅସହଯୋଗ କରୁଁ, କିନ୍ତୁ ଜେଲ୍‌ରେ ପଶିବା ମାତ୍ରେ ଜେଲ୍ ଆଇନ୍ ମାନୁ । ଏଥର ଆମର ଜେଲ୍ ଭିତରେ ମଧ୍ୟ ଅସହଯୋଗ ଚାଲିବ । ତେଣୁ ମୁଁ ଜେଲ୍‌ରେ ଥିବା ଯାଏ ଅନଶନ କରିବି ।

କାଲଠାର କାଲ ମାଆ ଜାଣେ । ଗାନ୍ଧିଜୀ ଗିରଫ ହେବା ମାତ୍ରେ ସ୍ୱାମୀ ଆନନ୍ଦଙ୍କୁ କହିଲେ– ତୁମେ ତ ଶୀଘ୍ର ଗିରଫ ହେବ । ଗିରଫ ହେବା ପୂର୍ବରୁ ତୁରନ୍ତ ବିନୋବା ରହିଥିବା ଜେଲ୍‌କୁ ଚାଲିଯାଅ । ସରକାର ତୁମକୁ ବିନୋବା ସହିତ ସାକ୍ଷାତ କରିବାକୁ ଦେବେ ନାହିଁ । ତୁମେ ସେ ଜେଲ୍‌ର ଜେଲର୍‌ଙ୍କୁ କହିବ– ମୋତେ ଗାନ୍ଧିଜୀ ପଠାଇଛନ୍ତି । ମୁଁ ବିନୋବାଙ୍କ ଉପସ୍ଥିତିରେ ଆପଣଙ୍କୁ କେବଳ ଏତିକି କହିବି ଯେ ଗାନ୍ଧିଜୀ ଅନଶନ ବିଚାର ଛାଡ଼ିଛନ୍ତି । ବିନୋବା ଜେଲ୍‌ରେ ନିଶ୍ଚୟ ଆମରଣ ଅନଶନ ଆରମ୍ଭ କରି ଦେଇଥିବ । ମୋର ଏହି ଖବର ଶୁଣାଇବାକୁ ସେମାନେ ନିଶ୍ଚୟ ରାଜି ହେବେ । ସତକୁ ସତ ସ୍ୱାମୀ ଆନନ୍ଦ ବିନୋବାଜୀ ଥିବା ଜେଲ୍‌ରେ ପହଞ୍ଚି ଗାନ୍ଧିଜୀଙ୍କର ଏକଥା କହିବା ମାତ୍ରେ ଜେଲର୍ ବିନୋବାଜୀଙ୍କୁ ଡକେଇ ଆଣିଲେ ଏବଂ ସ୍ୱାମୀ ଆନନ୍ଦଙ୍କ କଥା ଶୁଣି ବିନୋବାଜୀ ଅନଶନରୁ ନିବୃତ୍ତ ହେଲେ । ସେ ସନ୍ଧିକ୍ଷଣ ତ ବିତିଗଲା । ଏ କେଉଁ ନୂଆ ପ୍ରକରଣ ଆରମ୍ଭ ହେଲା ।

ଏହିପରି ଉଦ୍‌ବେଗରେ କାଳ କାଟୁଥିବା ବେଳେ ଗାନ୍ଧୀ ଓ ବଡ଼ଲାଟ୍‌ଙ୍କ ଘରୋଇ ବିଭାଗ ସଚିବ ଟଟେନ୍‌ହାମଙ୍କ ମଧ୍ୟରେ ହୋଇଥିବା ପତ୍ର ବିନିମୟ ପ୍ରକାଶ ପାଇଲା । ଟଟେନ୍‌ହାମଙ୍କ କଠୋର ବାକ୍ୟବାଣ ଆମକୁ ଜର୍ଜରିତ କରି ଦେଲା । ଗାନ୍ଧିଜୀ ଏକୋଇଶ ଦିନ ଅନଶନ କରିବାକୁ ସଂକଳ୍ପ କରିଥିବାର ଜାଣି ତଥାପି ଟିକିଏ ବିବ୍ରତ ହେଲୁ । କାରଣ ସେ ଆମରଣ ଅନଶନ କରିବା କଥା ଶୁଣିବା ପରଠାରୁ ଆମକୁ ଏହି ଚିନ୍ତା ଘାରୁଥାଏ ଯେ ସରକାର ଯଦି ଗାନ୍ଧିଜୀଙ୍କୁ ଜେଲ୍‌ରୁ ଖଲାସ ନ କରିବେ, ଗାନ୍ଧିଜୀଙ୍କର ମୃତ୍ୟୁ ସୁନିଶ୍ଚିତ । ସେତେବେଳେ ଭାରତର ଅବସ୍ଥା କ'ଣ ହେବ ? ସ୍ୱାଧୀନତାକାମୀ ଲକ୍ଷ ଲକ୍ଷ ଭାରତୀୟଙ୍କୁ ଯେ ଗୋଟାଏ ଅଦୃଶ୍ୟ ଡୋରିରେ ବାନ୍ଧି ରଖିଛନ୍ତି, ଯେ ଡୋରି ଛିଡ଼ିଗଲେ ଆନ୍ଦୋଳନ ଚାଲିବ କିପରି ? ଏହି ଚିନ୍ତାରେ

ଆମେ ସମସ୍ତେ ବ୍ୟାକୁଳ ହେଉଥିଲୁ । ଏକୋଇଶ ଦିନ ଅନଶନ କରିବା ଖବର ପାଇ ଆମେ ସେ ଏକୋଇଶି ଦିନ ଗାନ୍ଧିଜୀବନୀ ଆଲୋଚନା, ଉପବାସ, ସୂତ୍ରଯଜ୍ଞ ପ୍ରାର୍ଥନା ଆଦିରେ ମନକୁ ନିୟୋଜିତ କରି ରଖିଲୁ । ଏହିପରି ଉଦ୍‌ବେଗ ଭିତରେ ଦିନ କଟିଥିଲା ଗାନ୍ଧିଜୀଙ୍କ ସହଧର୍ମିଣୀ କସ୍ତୁରବା ଗାନ୍ଧିଜୀଙ୍କର ଜେଲ୍ ଭିତରେ ଅସୁସ୍ଥତା ଓ ମୃତ୍ୟୁ ସମୟରେ । ପୁଣି ଜୟପ୍ରକାଶଜୀ ଯେତେବେଳେ ଧରା ପଡ଼ିଗଲେ, ଡ଼ିସେମ୍ବର ମାସ ଶୀତ ରାତିରେ ତାଙ୍କୁ ଲାହୋର ରେଳ ଷ୍ଟେସନରେ ବରଫ ଖଣ୍ଡ ଉପରେ ବସାଇ ରଖିବା ଖବର ଯେତେବେଳେ ମୁଲାକାତୀରୁ ଶୁଣି ଆସିଲୁ, ପ୍ରାଣ କଲବଲ ହୋଇଗଲା । ଆହୁରି ଶୁଣିଲୁ ଅଷ୍ଟିଚିମୁରରେ ସରକାରଙ୍କ ପକ୍ଷରୁ ସ୍ତ୍ରୀଲୋକଙ୍କ ଉପରେ ଯେଉଁ ଅକଥନୀୟ ଅତ୍ୟାଚାର ହୋଇଥିଲା ତାର ଅନୁସନ୍ଧାନ ଦାବୀ କରି ତେଷଠି ଦିନ ଅନଶନ କଲେ ଅଧ୍ୟାପକ ଭଣଶାଳୀ । ଭଣଶାଳୀଜୀ ଅକ୍‌ସଫୋର୍ଡ଼ରେ ପାଠ ପଢ଼ି ଅଧ୍ୟାପକ ହୋଇଥିଲେ । ଆତ୍ମଜିଜ୍ଞାସା ପ୍ରବଳ ହେବାରୁ ଓଠ ସିଲେଇ କରି ନିମପତ୍ର ଖାଇ ଜୀବନଧାରଣ କରି ସେ ଯୋଗାଭ୍ୟାସ କରୁଥିଲେ ଗାନ୍ଧିଜୀଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ସେବାଗ୍ରାମ ଆଶ୍ରମରେ ରହିଥିଲେ । ତାଙ୍କ ପରି ସାଧୁ ବ୍ୟକ୍ତିଙ୍କ ପ୍ରତି ସୁଦ୍ଧା ସରକାର ଏ ପ୍ରକାର ମତିଗତି ଦେଖାଇଲେ ।

ପୁରୀରେ ଝଡ଼ ତୋଫାନ ହେଲା । ଉଡ଼ା ଖବର ଆସିଲା ଯେ ଜେଲ୍ କାନ୍ଥ ଭାଙ୍ଗି ନବକୃଷ୍ଣ ଚୌଧୁରୀ ଓ ଅଲେଖ ପାତ୍ର ପଳେଇଛନ୍ତି । ଉଡ଼ା ଖବର ଉଡ଼ି ଆସେ ପବନ ଗତିରେ । ପରବର୍ତ୍ତୀ ନିର୍ଭରଯୋଗ୍ୟ ସମ୍ବାଦ ସିନା ତା ପଛେ ପଛେ ଉଡ଼ି ଆସିଲେ ହୁଅନ୍ତା ! ନିର୍ଭରଯୋଗ୍ୟ ସମ୍ବାଦ ମିଳିବ ସେହିଦିନ, ଯେଉଁଦିନ ପଦ୍ମାବତୀ ଦେବୀ ଚୌଧୁରାଣୀ ଆସିବେ ମୁଲାକାତୀ ପାଇଁ । ବୈଷ୍ଣବ ପଟ୍ଟନାୟକଙ୍କ ଗୁଳିମାଡ଼ ଖିଆ ହାତ ଖବରଠାରୁ ଆରମ୍ଭ କରି ବ୍ରହ୍ମପୁର ଜେଲ୍, ପୁରୀ ଜେଲ୍ ଆଦି ଖବର ସେ ଦିଅନ୍ତି । କାରଣ ତାଙ୍କ ପରିବାର ଓଡ଼ିଶାର ଚାରିଟା ଜେଲ୍‌ରେ ଡ଼େରା ପକେଇଥାନ୍ତି ।

ଚିଠିପତ୍ର ତ ଜେଲ ଅଫିସ୍‌ରେ ଓ ପୁଲିସ୍ ବିଭାଗ ଦ୍ୱାରା ଯାଞ୍ଚ ହୋଇ ଆସୁଥାଏ । କୌଣସି ଗୋଟିଏ ଶବ୍ଦର ଅର୍ଥ ଘେନି କର୍ତ୍ତାଙ୍କ ମନରେ ସନ୍ଦେହ ଜନ୍ମିଲେ ସେ ଶବ୍ଦଟିରେ କାଳି ବୋଳି ଦିଆ ହୁଏ । ଦିନା କେତେ ଯୁଦ୍ଧ ବିଭାଗ ପରି ସରକାର ଆମକୁ ଛାପାକାର୍ଡ଼ ଯୋଗାଇଦେଲେ । ସେଥିରେ "ମୁଁ ଭଲ ଅଛି" ଏତିକି ଛାପା ହୋଇଥାଏ । ସେହି କାର୍ଡ଼ରେ ଦସ୍ତଖତ କରି ପଠାଇଦେଲେ ଅଟକବନ୍ଦୀଙ୍କ ଆତ୍ମୀୟଙ୍କୁ ତାହା ସହଜରେ ମିଳିଯାଏ । ଆମର ବ୍ରହ୍ମପୁର ଜେଲ୍, ପୁରୀ ଜେଲ୍, ଅନୁଗୁଳ ଜେଲ୍‌ରେ

ଥିବା ସମସ୍ତ ଆତ୍ମୀୟଙ୍କ ସଙ୍ଗେ ଚିଠି ଲେଖାଲେଖି ଚାଲିଥିବାରୁ ବେଳେବେଳେ ଏସବୁ ଜେଲ୍‌ରେ ଚିଠି ଯାଞ୍ଚ ହୋଇ ଚିଠିର ଚଉଦ ଅଣା ଅଂଶରେ କାଳି ବୋଳା ହୋଇଥାଏ । ଆମ ଭିତରୁ ଏକମାତ୍ର ଉତ୍ତରା ଏ କାଳିବୋଳା ଅଂଶର ପାଠୋଦ୍ଧାର କରିପାରୁଥିଲା । ଏତେ ଯାଞ୍ଚ ପଡ଼ତାଳ ସତ୍ତ୍ୱେ ଅନେକ ରାଜଦ୍ରୋହ ସୂଚକ ଖବର ଆମକୁ ଏ ଚଠିରୁ ମିଳିଥିଲା । ଉଦାହରଣ ସ୍ୱରୂପ ନବକୃଷ୍ଣ ଚୌଧୁରୀ ପୁରୀ ଜେଲ୍‌ରୁ ଲେଖିଲେ– ବ୍ରଜବାବୁଙ୍କ ଜ୍ୱାଁଇ ଖବର ଆଜି ଖବରକାଗଜରୁ ପଢ଼ି ଭାରି ଖୁସି ହୋଇଛୁ । ପ୍ରଭା ଘରେ ଅଛି କି ମାମୁଁ ଘରକୁ ଯାଇଛି କିଏ ଜାଣେ ? ବ୍ରଜବାବୁଙ୍କ ଜ୍ୱାଇଁ ହେଉଛନ୍ତି ଜୟପ୍ରକାଶ ନାରାୟଣ, ପ୍ରଭା ହେଉଛନ୍ତି ତାଙ୍କ ସ୍ତ୍ରୀ, ମାମୁଘର ବୋଇଲେ ଜେଲ୍ । କିନ୍ତୁ ଏଥିରେ କାଳି ବୋଳା ହୋଇ ନ ଥିଲା ।

ସୃଷ୍ଟି ସତତ ପରିବର୍ତ୍ତନଶୀଳ । ମଣିଷ ମଧ୍ୟ ସ୍ୱଭାବତଃ ପରିବର୍ତ୍ତନ-ପ୍ରେମୀ । ନଦୀରେ ଏଇ ମୁହୂର୍ତ୍ତର ପାଣି ଆର ମୁହୂର୍ତ୍ତକୁ ବହି ଯାଇ ନୂଆ ପାଣି ଚାଲି ଆସୁଛି । ଆଜି ସକାଳର ପାଗ ଆଜି ସଞ୍ଜକୁ ନାହିଁ । ଆକାଶ ଦିନସାରା କେତେ ପ୍ରକାର ରଙ୍ଗ ବଦଳଉଛି । ଏହିପରି ଭାବରେ ସୃଷ୍ଟି ସତତ ବଦଳିବାରେ ଲାଗିଛି, ମଣିଷ ମଧ୍ୟ ପ୍ରତି ମୁହୂର୍ତ୍ତରେ ବଦଳି ଯାଉଛି । କେତେ ନୂଆ ମଣିଷ, ନୂଆ ଘର, ନୂଆ କଣ୍ଠସ୍ୱର, ନୂଆ ନୂଆ ଫୁଲଫଳ ଆମେ ସୃଷ୍ଟିରେ ଓ ସମାଜରେ ଦେଖୁଛୁ ଏବଂ ଏହି ନୂଆ ନୂଆ ରୂପ ଆମ ମନରେ ଆମ ଅଜାଣତରେ କେତେ ପ୍ରସନ୍ନତା ଭରି ଦେଉଛି ତାହା କଳି ହେବ ନାହିଁ । ଜେଲ୍ ଭିତରେ ଯେଉଁମାନେ ବହୁଦିନ ଆବଦ୍ଧ ହୋଇ ରହନ୍ତି, ସେମାନଙ୍କୁ ଏହି ମାନସିକ ଖୋରାକି ମିଳୁ ନ ଥିବାରୁ ବନ୍ଦୀ ଜୀବନରେ ନାନା ପ୍ରକାର ବିକୃତି, ଦୁର୍ବଳତା ଦେଖାଦିଏ ବୋଲି ଆମେ ଶୁଣିଥିଲୁ । ସନ୍ତ୍ରାସବାଦୀମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ଆଣ୍ଡାମାନକୁ ନିର୍ବାସିତ କରି ଦିଆଯାଉଥିଲା, ସେମାନଙ୍କ ମଧ୍ୟରୁ ଅନେକଙ୍କର ମାନସିକ ଅବସାଦ ଦେଖା ଦେବାର ବର୍ଣ୍ଣନା ସେହିମାନଙ୍କ ରଚନାରୁ ପଢ଼ିଥିଲି । ଏବେତ ଆମେ ସେହି ପରିସ୍ଥିତିର ଶିକାର ହେବାକୁ ବସିଲୁ । ସେଥିପାଇଁ ଖେଳ କୌତୁକ, ଆସନ-ନମସ୍କାର, ପିଞ୍ଜରାରେ ଥିବା ସର୍କସ ବାଘ ପରି ଉଆର୍ଡ଼ ଅଗଣାରେ ସାନ୍ଧ୍ୟଭ୍ରମଣ, ବିଦ୍ୟାଧ୍ୟୟନ, ହାତକାମ, ସଙ୍ଗୀତ ଚର୍ଚ୍ଚା, ରୋଗୀ ସେବା ଆଦି କାର୍ଯ୍ୟକ୍ରମରେ ନିଜକୁ ପାରୁପର୍ଯ୍ୟନ୍ତ ମଜେଇ ରଖିବା ସତ୍ତ୍ୱେ ମାନସିକ ଦୁର୍ବଳତା ଧୀରେ ଧୀରେ ମୁଣ୍ଡ ଟେକିଲା । କୌଣସି ରୋଗର ଲକ୍ଷଣ ଓ ଉପସର୍ଗ ଜଣାଥିଲେ ରୋଗ ଚିହ୍ନିବା ଓ ତାର ଚିକିତ୍ସା କରିବା ସହଜ ହୁଏ । ଆମେ ଜାଣିଥାଉ ଯେ ଗୋଟିଏ ଛୋଟିଆ ପଞ୍ଜୁରୀରେ ଅନେକ

ଗୁଡ଼ିଏ ଚଢ଼େଇକୁ ଦୀର୍ଘକାଳ ରଖିଦେଲେ ସେମାନେ ଆପଣା ଭିତରେ ଖୁମ୍ପାଖୁମ୍ପି ହୁଅନ୍ତି । ବାର ନମ୍ବର ଓ୍ୱାର୍ଡ଼ରେ ଯେ ତେଇଶିଟି ମଣିଷକୁ ବର୍ଷାଧିକ କାଳ ବନ୍ଦ କରି ରଖାଯାଇଛି, ସେପରି ରଖିବାର ମୁଖ୍ୟ ଉଦ୍ଦେଶ୍ୟ ହେଲା ସେମାନଙ୍କର ମାନସିକ ଶକ୍ତିକୁ ପୂରାପୂରି ପଙ୍ଗୁ କରିଦେବା । ଆମେ ଯଦି ଆମ ପ୍ରତିପକ୍ଷର ଏହି କୌଶଳର ଶିକାର ହୋଇଯିବୁ ତେବେ ତ ଜାଣି ଜାଣି ହାରିବୁ । ସେଥିପାଇଁ ନିଜର ଆଚରଣକୁ ତଉଲି ଚଳିବାକୁ ଆମେ ପାରୁପର୍ଯ୍ୟନ୍ତ ଉଦ୍ୟମ କରୁଥାଉ । ତତ୍‌ସତ୍ତ୍ୱେ ଆମେ ଲକ୍ଷ୍ୟ କଲୁ ଯେ ଆମ ଭିତରୁ କେହି କେହି ଅବସାଦଗ୍ରସ୍ତ ହୋଇଯାଉଛୁ । ଅତି ଅମାୟିକ ସ୍ୱଭାବର ଲୋକ ମଧ୍ୟ ଚିଡ଼ଚିଡ଼ା ହେବା ଆରମ୍ଭ କରି ଦେଲେ । "ଯାହା ପାଅ ତାହା ଖାଅ" ଯାହାଙ୍କର ଇଷ୍ଟମନ୍ତ୍ର, ସେ ସୁଦ୍ଧା ଜେଲ୍ ଖାଦ୍ୟ ଦେଖିବା ମାତ୍ରେ 'ନିତି ନିତି ସେହି ଥୋଡ଼, ବଡ଼ି, ଖଡ଼ା,' କହି ଥରେ ଅଧେ ଉପାସ ରହିବାର ଦେଖାଗଲା । ନିତି ଡାଏରୀ ଲେଖିବାକୁ ଆଉ ଉତ୍ସାହ ନାହିଁ । ଆସନ-ନମସ୍କାର ବନ୍ଦ, ଆପଣା ଭିତରେ ଛୋଟ ଛୋଟ କଥାରେ ମତଭେଦ, ଯଥା ଘରଟା ଏ ମୁଣ୍ଡରୁ ଓଳା ନ ହୋଇ ସେ ମୁଣ୍ଡରୁ ଓଳା ହୋଇଥାନ୍ତା, ଲଣ୍ଠନଟା ଏଠି ନ ରହି ସେଠି କାହିଁକି ରହିଲା, ଇତ୍ୟାଦି ଇତ୍ୟାଦି ।

ଶାରୀରିକ ଶକ୍ତି ମଧ୍ୟ ଧୀରେ ଧୀରେ କ୍ଷୟପ୍ରାପ୍ତ ହେଲା । ଆମ ସାଙ୍ଗରେ 'ସି' ଡ଼ିଭିଜନ୍ ବନ୍ଦୀ ମଧ୍ୟ ଥାଆନ୍ତି । ତେଣୁ ଆମେ ସମସ୍ତେ 'ସି' ଡ଼ିଭିଜନ ଖାଦ୍ୟ ଖାଇବାକୁ ନିଷ୍ପତ୍ତି କରିଥାଉ । ପେଟପୂରା ଖାଇବାକୁ ନ ମିଳିବାରୁ ଅର୍ଶ, କୋଷ୍ଠକାଠିନ୍ୟ, ପେଟମରା ଆଦି ରୋଗ ଦେଖାଦେଲା । ଯେଉଁମାନଙ୍କୁ ହାଡ଼ଫୁଟି, ଡ଼ିସେଣ୍ଟ୍ରି ବା ଜ୍ୱର ହେଲା, ସେମାନେ ରୋଗମୁକ୍ତ ହେବା ପରେ ମଧ୍ୟ ପୂର୍ବ ସ୍ୱାସ୍ଥ୍ୟ ଆଉ ଫେରି ପାଇଲେ ନାହିଁ । ଜେଲ୍ ଡାକ୍ତର ତାଙ୍କ ପ୍ରଣାଳୀରେ ଚିକିତ୍ସା କରୁଥାନ୍ତି । ହାରାମଣି ଦେବୀଙ୍କୁ ଡ଼ିସେଣ୍ଟ୍ରି ଧରିଲା । ସୋଡ଼ିସଲଫ, ମ୍ୟାଗ୍‌ସଲଫ ଔଷଧ ସାଙ୍ଗକୁ ଦୁଧ, ବାର୍ଲି ପଥ୍ୟ ପିଇ ସେ ଚିତ୍‌ପଟାଙ୍ଗ ହେଲେ । ହାଡ଼ଫୁଟି ଦେଖାଦେବାରୁ ହାଡ଼ଫୁଟି ରୋଗୀଙ୍କୁ ଅଲଗା ରଖିବା ପାଇଁ ବାର ନମ୍ବର ଏଗାର ନମ୍ବର ମଧ୍ୟସ୍ଥିତ ଗୁପ୍ତ ଦ୍ୱାର ଖୋଲିଲା । ରମାଦେବୀ ହାଡ଼ଫୁଟି ରୋଗୀଙ୍କ ସେବା କରୁ କରୁ ନିଜେ ହାଡ଼ଫୁଟିର ଶିକାର ହେବାରୁ ମାଳତୀ ମଙ୍ଗ ଧରିଲେ । ମାତ୍ର ରୋଗୀ ସଂଖ୍ୟା ଏତେ ବଢ଼ିଗଲା ଯେ ବାର ନମ୍ବର ଓ୍ୱାର୍ଡ଼ଟି ହାଡଫୁଟି ଓ୍ୱାର୍ଡ଼ ହୋଇଗଲା । ସୁପରିନ୍‌ଟେଣ୍ଡେଣ୍ଟ ସାହେବଙ୍କର କଡ଼ା ତାଗିଦ ଥାଏ ହାଡ଼ଫୁଟି ନ ମଉଳିବା ଯାଏ କେବଳ ପାଣିଆ ବାର୍ଲି ପଥ୍ୟ ଦିଆଯିବ । ଭାଗ୍ୟରଥି ଦଶଇଞ୍ଚିଆ ବାଲ୍‌ଟିରେ

ବାଲ୍‌ଟିଏ ବାର୍ଲି ଓ ବୋଧହୁଏ ବାଲ୍‌ଟି ଇଞ୍ଚ ହିସାବରେ ଇଞ୍ଚକୁ ଚା’ ଚାମୁଚରେ ଚାମୁଚେ ହିସାବରେ ଚିନି ଥୋଇ ଦେଇ ଯାଆନ୍ତି । ସ୍ୱୟଂ ସୁପରିଟେଣ୍ଡେଣ୍ଟ ରୋଗୀ ଦେଖି ଟିକେଟରେ ଲେଖିଦେଲେ ଯାଇ ଭାତ, ଫୁଲବଡ଼ି ଆକାରର ଆଳୁ ଭରତା ଓ ଦୁଧ ପରଶ ଦିଆ ଏକ ପ୍ରକାର ପାନୀୟ (ଯାହାକୁ ଆସାମୀ ଭାଷାରେ ‘ଗାକ୍ଷୀର ପାନୀ’ କୁହାଯାଇ ପାରିବ) ଖାଇବାକୁ ମିଳୁଥିଲା । ଲଗାତାର ଦଶବାର ଦିନ ଚିନି ପରଶ ଦିଆ ବାର୍ଲି ପିଇବା ପରେ ସେହି ଅନ୍ନ ପଥ୍ୟ ପାଇଁ ରୋଗୀମାନେ ରଙ୍କ ପରି ହୁଅନ୍ତି । ତାହାପରେ !! ଅବଶ୍ୟ ଖାଦ୍ୟରେ ଯାହା ତ୍ରୁଟି ରହେ ଡାକ୍ତର ଆୟରନ୍ ଟନିକ୍ ଦେଇ ତାହା ପୂରଣ କରିବାକୁ ଯତ୍ନବାନ୍ ହୁଅନ୍ତି । କିନ୍ତୁ ସେତେବେଳେ ଯୁଦ୍ଧ-ବଜାର । ଜେଲ୍ କଇଦୀଙ୍କ କଥା ଦୂରେ ଥାଉ ଅବସ୍ଥାପନ୍ନ ଲୋକଙ୍କୁ ସୁଦ୍ଧା ଔଷଧ ମିଳୁ ନ ଥାଏ । ତେଣୁ ଟନିକ୍‌ରେ ଜଳ ଚିକିତ୍ସା ଚାଲେ ।

ହାଡ଼ଫୁଟି ପ୍ରକରଣ ପରେ ବିଷମ ଜ୍ୱରରେ ପଡ଼ିଲେ ମାଳତୀ ଦେବୀ । ଜ୍ୱର ଆଦୌ ଓହ୍ଲାଇଲା ନାହିଁ । ସୁପରିନ୍‌ଟେଣ୍ଡେଣ୍ଟଙ୍କ ଅବସ୍ଥା ‘ଗାଇ ମାଇଲେ ମଲି, ଗାଇକୁ ମାଇଲେ ମଲି’ ସଦୃଶ ହେଲା । ମାଳତୀ ଦେବୀଙ୍କ ପରି ବିପଦଜନକ କଇଦୀକୁ ଜେଲ୍‌ରୁ ଖଲାସ କରିଦେବାକୁ ତାଙ୍କ ଛାତି ପତାଉ ନ ଥାଏ । ଏଣେ ଜେଲ୍‌ରେ ଯଦି ସେ ଦେହ ଛାଡ଼ିଲେ ତେବେ ବନ୍ଧୁବାନ୍ଧବରେ ମୁହଁ ଦେଖାଇବା ମୁସ୍କିଲ ହେବ । ଫାଶୀ ଆସାମୀକୁ ଫାଶୀ ପୂର୍ବଦିନ ଶେଷ ଇଚ୍ଛା ପଚାରିଲା ପରି ଦିନେ ସୁପରିନ୍‌ଟେଣ୍ଡେଣ୍ଟ ମାଳତୀ ଦେବୀଙ୍କୁ ପଚାରିଲେ – “ଆପଣଙ୍କର କ’ଣ ଖାଇବାକୁ ଇଚ୍ଛା ହେଉଛି ?” ଉତ୍ତର ମିଳିଲା “ସପୁରୀ” । ସଙ୍ଗେ ସଙ୍ଗେ ସପୁରୀ ଯୋଗାଇ ଦେବାକୁ ହୁକୁମ ଦିଆଗଲା । ଚାରିଦିନ ସପୁରୀ ରସ ଖାଇବାପରେ ମାଳତୀ ଦେବୀଙ୍କୁ ଜ୍ୱର ଛାଡ଼ିଗଲା । ମଙ୍ଗଳା ଦେବୀଙ୍କର ଆରମ୍ଭ ହେଲା ବାନ୍ତି । କୁମ୍ଭୀର ପରି ପ୍ରତିଦିନ ପ୍ରତ୍ୟେକ ଥର ଖାଇସାରିବା ପରେ ବାନ୍ତି କରିଦେଇ ଆସନ୍ତି । ଧୀରେ ଧୀରେ ସେ ଏତେ ଦୁର୍ବଳ ହୋଇଗଲେ ଯେ ବିଛଣାରୁ ଉଠି ପାରିଲେ ନାହିଁ । କବାଟ ବା ପଲା ଲାଗି ନ ଥିବା ଝରକାବାଟେ ଆସୁଥିବା ଖରା ବା ଆଲୁଅ ତାଙ୍କୁ ଯନ୍ତ୍ରଣାଦାୟକ ହେଲା । ଦିନସାରା ମଶାରୀ ଟଙ୍ଗେଇ ପଙ୍ଖାରେ ବିଞ୍ଚି ବିଞ୍ଚି ତାଙ୍କୁ ଆରାମ ଦେବା ପାଇଁ ଚେଷ୍ଟା ଚାଲେ । ଶେଷରେ ତାଙ୍କ ଅନ୍ତରେ ଯକ୍ଷ୍ମା ହୋଇଛି ବୋଲି ସନ୍ଦେହ କରାଯାଇ ତାଙ୍କୁ ଖଲାସ କରି ଦିଆହେଲା । କିନ୍ତୁ କ’ଣ ସହଜ ଜନ୍ତୁ । ପଦାକୁ ଯିବାମାତ୍ରେ ପୁଣି ଆନ୍ଦୋଳନରେ ମାତି ସେ କଲିକତାରେ ଗିରଫ ହେଲେ ।

ଦିନେ ସୁଶୀଳା ଦେବୀଙ୍କ ପେଟରେ ଯନ୍ତ୍ରଣା ହେଲା । ଦିନ ଥାଉ ଥାଉ ଜେଲ୍ ଡାକ୍ତରଖାନାକୁ ଖବର ଦିଆହେଲା । କିନ୍ତୁ ଚିକିତ୍ସାର କିଛି ବନ୍ଦୋବସ୍ତ ହେଲା ନାହିଁ । ସଞ୍ଜ ବୁଡ଼ିବାପରେ ଜେଲ୍‌ରେ ପ୍ରାଣ ଗଲେ କେହି ଶୁଣିବା ମୁସ୍କିଲ । କିନ୍ତୁ ରୋଗ ସେ କଥା ବୁଝିଲା ନାହିଁ । ଯନ୍ତ୍ରଣା ବଢ଼ି ବଢ଼ି ସେ ବେହୋସ୍ ହେଲାପରି ହୋଇଗଲେ । ଡାକ୍ତରଙ୍କୁ ଡାକିବାକୁ ଜମାଦାରଣୀଙ୍କୁ ବାରମ୍ବାର କୁହାଯାଉଥାଏ । ମାତ୍ର ସେ ବିଚାରୀ ତ ଆମରି ପରି ଓ୍ୱାର୍ଡ଼ ଭିତରେ ତାଲା ପଡ଼ି ରହିଥାନ୍ତି । କବାଟ ଫାଙ୍କରେ ଚାହିଁ ଚାହିଁ ପଇଁତରା ମାରୁଥିବା ଓ୍ୱାର୍ଡରକୁ ଦେଖିଲେ ସେ ଡାକ୍ତରଖାନାକୁ ଖବର ଦେବାକୁ କହୁଥାନ୍ତି । ସେ ଓ୍ୱାର୍ଡର ତ ତାଙ୍କ ଲକ୍ଷ୍ମଣରେଖା ଡେଇଁବେ ନାହିଁ । ସେ ଆଉଜଣଙ୍କୁ ଜଣେଇବେ, ସେ କହିବେ ଆଉ ଜଣଙ୍କୁ । ଏହି ରୀତିରେ ଡାକ୍ତରଖାନା ଯାଏ ଖବର ଯାଉ ଯାଉ ରାତି ଏଗାରଟା ହେଲା । ପ୍ରିୟମ୍ବଦା ଦେବୀ, ମାଳତୀ ଦେବୀ ପ୍ରମୁଖ ଚାରି ପାଞ୍ଚଜଣ ନିରୁପାୟ ହୋଇ ପାଚେରୀ ପାଖ କବାଟରେ ଜୋର୍ ଧକ୍କା ମାରିଲେ । ଓ୍ୱାର୍ଡ଼ ଆରପଟେ ପହରାରେ ଥିବା ଓ୍ୱାର୍ଡ଼ର ବୋଧହୁଏ ଭାବିଲେ ଯେ ବାର ନମ୍ବର ଓ୍ୱାର୍ଡ଼ର କଇଦୀମାନେ କବାଟ ଭାଙ୍ଗି ପଳେଇବାକୁ ବସିଛନ୍ତି । ଆଗରୁ ତ ଖଟ ଉପରେ ଖଟ ପକାଇବା କୀର୍ତ୍ତି ପ୍ରଚାରିତ ହୋଇଥିଲା । ଓ୍ୱାର୍ଡ଼ର ସଙ୍ଗେ ସଙ୍ଗେ ବିପଦସୂଚକ ସିଟି ବଜାଇ ଦେଲେ । ଜେଲ୍ ନିୟମ ଅନୁସାରେ ଅନ୍ୟ ଓ୍ୱାର୍ଡ଼ରମାନେ ତାକୁ ଦୋହରେଇଲେ । ଫଳରେ "ପାଗଳା ଘଣ୍ଟି" ବାଜି ଉଠିଲା । ଜେଲ୍‌ରେ "ପାଗଳା ଘଣ୍ଟି" ବା "ପାଗଳୀ" ବାଜିବାର ଅର୍ଥ ହେଉଛି କେହି ଜେଲ୍ ଭାଙ୍ଗି ପଳେଇଛି କିମ୍ବା କେହି କଇଦୀ ଜେଲ୍ କର୍ମଚାରୀଙ୍କୁ ଆକ୍ରମଣ କରିଛି ଅଥବା କଇଦୀ ସଂଖ୍ୟା ଗଣତିବେଳେ କଇଦୀ ସଂଖ୍ୟା କମ୍ ହେଉଛି ଇତ୍ୟାଦି ଇତ୍ୟାଦି । "ପାଗଳୀ" ଶୁଣିବା ମାତ୍ରେ ଜେଲର୍ ସାହେବ ବସାରୁ ଧାଇଁ ଆସିଲେ । ଜେଲ୍ ପାଇକମାନେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଯୁଦ୍ଧଂ ଦେହୀ ମିଜାଜରେ ଛିଡ଼ା ହୋଇଗଲେ । ପ୍ରତ୍ୟେକ ଓ୍ୱାର୍ଡ଼ର କଇଦୀ ସଂଖ୍ୟା ପୁଣି ଥରେ ଯାଞ୍ଚ କରିବା ଆରମ୍ଭ ହେଲା । ସୁପରିଟେଣ୍ଡେଣ୍ଟ ମଧ ପହଞ୍ଚିଗଲେ । ଘଟଣା କ'ଣ ନା ବାର ନମ୍ବର ଓ୍ୱାର୍ଡ଼ର କଇଦୀମାନେ କବାଟ ଭାଙ୍ଗୁଥିଲେ । ବିପଦ ସ୍ଥାନ ନିରୂପିତ ହେବାରୁ ସୁପର୍ ଓ ଜେଲର୍ ସଶସ୍ତ୍ର ପ୍ରହରୀ ସହ ବାର ନମ୍ବରକୁ ବିଜେ କଲେ । ସେତେବେଳକୁ ସୁଶୀଳା ଦେବୀଙ୍କ ଗୋଡ଼ହାତ ଖିଲି ମାରିଲାଣି ।

ଜେଲ୍ କବାଟ ଭାଙ୍ଗିବା ଅପରାଧରେ ଆମ ଚିଠିପତ୍ର ଅଟକ ହେଲା କିନ୍ତୁ ସୁଶୀଳା ଦେବୀ ବଞ୍ଚିଗଲେ ।

ଆଚାର୍ଯ୍ୟ ମହାଶୟ ଓ ଗୋପବନ୍ଧୁ ଚୌଧୁରୀ ନିଜ ଜେଲ୍ ଜୀବନର ଅଭିଜ୍ଞତା ଶୁଣାଇ ଆମକୁ ବରାବର ଚେତେଇ ଦେଇଥିଲେ ଯେ ଜେଲ୍‌ର ଘଷରା ଜୀବନର ଅବସାଦ ଓ ଅଧୀରତାରୁ ରକ୍ଷା ପାଇବାର ଏକମାତ୍ର ଉପାୟ ହେଉଛି ନିଜର ଆଧାତ୍ମିକ ଶକ୍ତି ବଢ଼ାଇବା ପାଇଁ ସତତ ଯତ୍ନବାନ୍ ହେବା ଏବଂ ମଣିଷର ମନ ଭିତରେ ଯେଉଁ ଆନନ୍ଦର ଉତ୍ସ ରହିଛି ତାକୁ ଉପଲବ୍ଧି କରିବା । ସେଥିପାଇଁ ଉଣା ଅଧିକେ ଆମେ ପ୍ରାୟ ସମସ୍ତେ ଗାନ୍ଧୀ, ବିନୋବା, ରବୀନ୍ଦ୍ର ନାଥ, ରାମକୃଷ୍ଣ ପରମହଂସ, ବିବେକାନନ୍ଦଙ୍କ ଶରଣାପନ୍ନ ହେଲୁ । ଗାନ୍ଧିଜୀଙ୍କ ଆଶୀର୍ବାଦରୁ ରକ୍ତ ସମ୍ପର୍କ ବା କୌଣସି ପ୍ରକାର ସାମାଜିକ ସମ୍ପର୍କ ନ ଥାଇ କେବଳ ଆଦର୍ଶଗତ ଐକ୍ୟକୁ ଭିତ୍ତି କରି ଠାଏ ଏକାଠି ରହିବା, ପାଟି ସୁଆଦକୁ ପ୍ରାଧାନ୍ୟ ନ ଦେଇ ଗରିବଙ୍କ କଥା ମନେପକେଇ ଏକାପ୍ରକାର ଖାଦ୍ୟ ଲଗାତାର ଅନେକ ଦିନ ଯାଏ ଖାଇବା, ମତଭେଦ ଘଟିଲେ ମଧ୍ୟ ପରସ୍ପର ସହିତ ସଦ୍‌ଭାବ ରକ୍ଷାକରି ଚଳିବା, କୌଣସି ବ୍ୟସନର ଦାସ ନ ହେବା ଆଦି ଯେଉଁ ଅଭ୍ୟାସଗୁଡ଼ିକ ଜେଲ୍‌କୁ ଆସିବା ପୂର୍ବରୁ ଆମେ ଆୟତ୍ତ କରିଥିଲୁ, ବାର ନମ୍ବର ୱାର୍ଡ଼ରେ ତାହା ବହୁତ କାମ ଦେଲା । ଏ ପ୍ରକାର ଜୀବନରେ ଅଭ୍ୟସ୍ତ ହେବାକୁ ଗାନ୍ଧିଜୀ କାହିଁକି ଆମକୁ ପ୍ରବର୍ତ୍ତାଉଥିଲେ ଏବଂ ସ୍ୱାଧୀନତା ସଂଗ୍ରାମ ସହିତ ଏ ପ୍ରକାର ଜୀବନ ଯାତ୍ରା ପ୍ରଣାଳୀର କି ସମ୍ପର୍କ ଅଛି, ତାହା ଆମେ ଜେଲ୍‌ରେ ଦୀର୍ଘକାଳ ରହିବା ପରେ ଭଲ କରି ବୁଝିଲୁ ।

ଜେଲ୍ ବାହାରେ କାମ କରୁଥିବା ବେଳେ ତ ଆମେ ଏକା ଲାଉର ମଞ୍ଜି ହୋଇଥିବା ସତ୍ତ୍ୱେ ଆମ ଭିତରେ ଖୁମ୍ପାଖୁମ୍ପି ଚାଲିଥିଲା । ଆନ୍ଦୋଳନ ଜୋର୍‌ସୋର୍‌ରେ ଚାଲିଥିବା ବେଳେ 'ମଇଁଷି ଶିଙ୍ଗ ଫଟା, ଜୁଝିଲା ବେଳକୁ ଗୋଟା' ନୀତିରେ ସମସ୍ତଙ୍କର ମିଜାଜ ସରିଫ ହୋଇଯାଏ ସିନା, ମାତ୍ର ଆନ୍ଦୋଳନ ଭଟ୍ଟା ପଡ଼ିଆସିଲା ବେଳକୁ ତ ଆପଣା ଭିତରେ ଦୋଷ ଦିଆ ଦେଇ ଚାଲେ । ପ୍ରଦେଶ କଂଗ୍ରେସ କମିଟିର କର୍ମୀ କହିବେ— ଗଠନମୂଳକ କର୍ମକେନ୍ଦ୍ର ଗୁଡ଼ାକ ଗୋଟାଏ ଗୋଟାଏ ମଠ ମହନ୍ତଙ୍କ ଆଡ଼୍‌ଡ଼ା, ଚରଖା ସଂଘର କର୍ମୀଗୁଡ଼ାକ ଲୁଗା ବେପାରୀ, ବୁଢ଼ୀ ମାଇପଙ୍କ କାମ କରୁଛନ୍ତି । ପୁଣି ଚରଖା ସଂଘ କର୍ମୀ କହିବେ— କଂଗ୍ରେସ ଅଫିସରେ ଚାନ୍ଦା ପଇସାର ହିସାବ କିତାବ ନାହିଁ, ସବୁ ହରିବୋଲିଆ କାରବାର । ଖାଲି ଗୁଡ଼ାଏ ଗପିଲେ କ'ଣ ସ୍ୱରାଜ ହେବ ? ଏସବୁ କଥା ଖୁମ୍ପାଖୁମ୍ପି ଓ ଅକାରଣ ଶକ୍ତିକ୍ଷୟର ଅଭିଜ୍ଞତାକୁ ମନେ ପକେଇ ଆମ ଘଷରା ଜୀବନରେ ଯେପରି ଏ ପରିସ୍ଥିତି ନ ଉପୁଜିବ, ସେଥିପାଇଁ ସାବଧାନ ରହିଥାଉ ।

ସବୁଠାରୁ ମଜା ହୁଏ ଯେତେବେଳେ ଆମେ କଥାବାର୍ତ୍ତା କରୁ କରୁ ସେଥିରେ ମଜ୍ଜି ଯାଇ ଜେଲ୍‌ରେ ଆବଦ୍ଧ ଥିବା କଥା ଭୁଲିଯାଉ । କେହି ସାହିତ୍ୟିକ ସେସବୁ ଶୁଣିଥିଲେ ହାସ୍ୟରସାତ୍ମକ ସାହିତ୍ୟ ସୃଷ୍ଟି କରିଥାନ୍ତେ । ଖରାଦିନିଆ ଦି'ପହରଟା ଆମର ଗରମରେ ଛଟପଟ ହୋଇ କଟେ । ଓ୍ୱାର୍ଡ଼ର ବିରାଟ ବିରାଟ ଝରକାରେ କବାଟ ନାହିଁ । ତେଣୁ ବୈଶାଖୀ ଖରା ଝାଞ୍ଜିରେ ଘର ଭିତରଟା ତାଉଆ ପରି ତାତି ଯାଏ । ଗରମ ଅସହ୍ୟ ହେଲେ ପଢ଼ିବା ପଢ଼େଇବା ଦିନେ ଦିନେ ଅସମ୍ଭବ ହୋଇପଡ଼େ । ସେତେବେଳେ ଚାଲେ ଏଣୁ ତେଣୁ ଖୁସିଗପ । ଦିନେ ସେହି ତତଲା ପାଗରେ ମନମୋହନ ଚୌଧୁରୀଙ୍କ ବିଭାଘର କଥା ପଡ଼ିଲା । ତାଙ୍କର ବିବାହଯୋଗ୍ୟ ବୟସ ହେଲାଣି । ତେଣୁ ଶୁଭପରିଣୟ ଶୀଘ୍ର ସମାଧାନ କରିବା ଉଦ୍ଦେଶ୍ୟରେ ପାତ୍ରୀ ବଛାବଛି ଚାଲିଲା । ପାତ୍ରୀ ଅମୁକ ପରି ପତଳା ହେଲେ ଭଲ ହେବ କି ସମୁକ ପରି ମୋଟା ହେଲେ ଭଲ ହେବ, ତାହାରି ଉପରେ ଘଣ୍ଟାଏ ଖଣ୍ଡେ ତୁମୁଳ ତର୍କ ଚାଲିଲା । ପରବର୍ତ୍ତୀ ଘଣ୍ଟାରେ ଯେ ଯେତେ ସୁନ୍ଦରୀ ଝିଅ ଦେଖିଥିଲେ ସମସ୍ତଙ୍କ ସାଙ୍ଗରେ ତାଙ୍କର ବିବାହ ପ୍ରସ୍ତାବ ପଡ଼ିଗଲା । (ଏଣେ ସେ ବିଚରା ବ୍ରହ୍ମପୁର ଜେଲ୍‌ରେ ଅଟକବନ୍ଦୀ !) ହଠାତ୍ ଉଭରା ଉତ୍ତେଜିତ ହୋଇ ରମା ଦେବୀଙ୍କୁ କୁଣ୍ଢେଇ ପକେଇ କହିଲା– ବୋଉ ! ତୁ ମୋ ଭାଇକୁ ଚଞ୍ଚଳ ବିଭା କରି ଦେ । ରମାଦେବୀ ତୁରନ୍ତ ଜବାବ ଦେଲେ– ତୁ ପାତ୍ରୀ ଠିକ୍ କରିବା ମାତ୍ରେ ବିଭାଘର ହେବ । ଏ କଥା ଶୁଣି ମାଳତୀ ଦେବୀ ପାଟି କରି କହିଲେ– ଅମୁକଙ୍କ ଝିଅକୁ ମୁଁ ବୁଲାକୁ ବିଭା କରିବାକୁ ଠିକ୍ କରିଛି । ପ୍ରିୟମ୍ବଦା ଦେବୀ କହିଲେ– ସେ ଝିଅ ପରା ଅମୁକଙ୍କ ଘରେ ବିଭା ହୋଇଗଲାଣି ? ମାଳତୀ ଦେବୀ ଚମକିପଡ଼ି କହିଲେ– ଏଁ, ଆମ ବୋହୂକୁ କାହିଁକି ସେମାନେ ନେଇଗଲେ ? ମୁଁ ଖଲାସ ହେବା ମାତ୍ରେ ଆମ ବୋହୂକୁ ଆମ ଘରକୁ ନେଇ ଆସିବି । ସମସ୍ତଙ୍କ ହାସ୍ୟରୋଳରେ ଓ୍ୱାର୍ଡ଼ର ଟେମ୍ପରେଚର ଅନେକ ତଳକୁ ଖସିଆସିଲା ।

ରଗାରଗି ମଧ୍ୟ ତଦନୁରୂପ । ଏକାଦିକ୍ରମେ ବର୍ଷେ ଏଗାର ମାସ ଜେଲ୍‌ରେ ରହି ଖଲାସ ହେଲା ବେଳକୁ ମୋ ଉପରେ ଯାଜପୁର ଜୁରିସ୍‌ଡିକସନ୍ ଭିତରକୁ ନ ଯିବାକୁ ନିଷେଧାଜ୍ଞା ଜାରି କରାଯାଇ ନୋଟିସ୍ ଖଣ୍ଡେ ମୋ ହାତକୁ ବଢ଼ାଇ ଦିଆହେଲା । ସେ ନିଷେଧାଜ୍ଞା ଅମାନ୍ୟ କରି ମୁଁ ପୁଣି ଗିରଫ ହୋଇ ଯାଜପୁର ଜେଲ୍‌ରେ ଦୁଇମାସ ବିଚାରାଧୀନ ବନ୍ଦୀ ହୋଇ ରହିଲି । ସେଠା ଜନାନା ଓ୍ୱାର୍ଡ଼ଟି ଗୋଟିଏ ଛେଳି ଗୁହାଳ ପରି ଛୋଟିଆ । ନିଜକୁ କାର୍ଯ୍ୟରତ ରଖିବା ପାଇଁ ମୁଁ ପିଲାଦିନେ ଶିଖି ପାଶୋରି

ପକେଇଥିବା ଉର୍ଦ୍ଦୁ ଭାଷାକୁ ପୁଣି ପଢ଼ିବାକୁ ଆରମ୍ଭ କଲି । ବିଚାର ହୋଇ ସଜା ହେବା ପରେ ମୋତେ କଟକ ଜେଲ୍‌କୁ ବଦଳି କରାଗଲା । ବାର ନମ୍ବର ଉଆର୍ଡ଼ରେ ସେତେବେଳକୁ ମାଳତୀ ଦେବୀ ଓ ଉତ୍ତରା ଥାଆନ୍ତି । ଉଆର୍ଡ଼ଟା ଖାଁ ଖାଁ ଗୋଡାଉଥାଏ । ମୁଁ ମୋ ଉର୍ଦ୍ଦୁ ପଢ଼ା କଥା କହିବାରୁ ସେ ତୁରନ୍ତ ଉର୍ଦ୍ଦୁ ପଢ଼ିବା ଆରମ୍ଭ କରିଦେଲା । ଅସାଧାରଣ ଧୀସମ୍ପନ୍ନା ହୋଇଥିବାରୁ ଦୁଇମାସରେ ମୁଁ ଯାହା ପାଠୋଦ୍ଧାର କରିଥିଲି, ଆଠ ଦଶ ଦିନରେ ସେ ତାହା ଶିଖିଗଲା । ଦୁହେଁ ବସି ଅଧିକାଂଶ ସମୟ ଉର୍ଦ୍ଦୁ ପଢୁଥାଉ । ଗୋଟାଏ ନିଶା ଲାଗିଥାଏ । ମାଳତୀ ଦେବୀ ସେତେବେଳେ ଟ୍ରଟ୍‌ସ୍କୀଙ୍କ ଦ୍ୱାରା ଲିଖିତ ରୁଷ୍ ବିପ୍ଳବର ଇତିହାସକୁ ଆଉଥରେ ପଢ଼ିବାରେ ମଜ୍ଜି ରହିଥା'ନ୍ତି । ହଠାତ୍ ସେ ଲକ୍ଷ୍ୟ କଲେ ଯେ ଆମେ ଦୁହେଁ ଅଧିକାଂଶ ସମୟରେ ଯୋଡ଼ି ହୋଇ ବସି କଣ ଫୁସ୍ ଫୁସ୍ ହେଉଛୁ । (ମାଳତୀ ଦେବୀଙ୍କ ଅଧ୍ୟୟନରେ ବ୍ୟାଘାତ ଘଟିବ ବୋଲି ଆମେ ଅନୁଚ୍ଚ ସ୍ୱରରେ ପଢୁଥାଉ ।) ସେ ଅତ୍ୟନ୍ତ ବିରକ୍ତିବ୍ୟଞ୍ଜକ ସ୍ୱରରେ ଉତ୍ତରାକୁ ଡାକି ପଚାରିଲେ– ଏତେ ସମୟ ଯାଏ କ'ଣ ଗପୁଛ ? ଉତ୍ତରା କହିଲା– ଉର୍ଦ୍ଦୁ ପଢୁଛି । "କାହିଁ ଦେଖେ" କହି ସେ ଉତ୍ତରା ପାଖରୁ ସବୁତକ ଉର୍ଦ୍ଦୁ ବହି ନେଇ ନିଜେ ଅଲିଫ୍ ବେ ଚିହ୍ନିବା ଆରମ୍ଭ କରିଦେଲେ । ଇତିହାସ ବନ୍ଦ ହୋଇ ଚାଲିଲା ତାଙ୍କର ଅବିରାମ ଉର୍ଦ୍ଦୁ ପାଠ । ଯୋଉଠି ପାଠ ଅଟକିବ, ଅତ୍ୟନ୍ତ ବିରକ୍ତ ହୋଇ ଆମକୁ ଡ଼ାକ ପକେଇବେ । ଯେପରି ସେ ନ ପଢ଼ି ପାରିବାଟା ଆମରି ଅପରାଧ । ଉର୍ଦ୍ଦୁ ପଢ଼ା ସାଙ୍ଗରେ ସରକାରଙ୍କୁ ଉର୍ଦ୍ଦୁ ଭାଷାରେ ତିରସ୍କାର ମଧ ଚାଲିଲା । (ଏହା ପୂର୍ବରୁ ଟ୍ରଟ୍‌ସ୍କୀଙ୍କ ଇତିହାସରୁ ଶବ୍ଦ ବଛା ହୋଇ ସରକାରଙ୍କ ପ୍ରତି ତାହା ପ୍ରୟୋଗ କରାଯାଉଥିଲା ।) ଆମ ସାଙ୍ଗରେ ମଧ ସେ ଉର୍ଦ୍ଦୁ ଲବ୍‌ଜ ପ୍ରୟୋଗ କରି କଥା କହିଲେ । ଆମ ଉର୍ଦ୍ଦୁ ପଢ଼ା ସେତିକିରେ ରହିଲା ।

ଏହିପରି ହରଷ ବିଷାଦର ଜୁଆର ଭଟ୍ଟାର ଲହଡ଼ି ଭାଙ୍ଗି ଭାଙ୍ଗି ଆମେ ଦିନ ସାରୁଥାଉ । ବାହାରେ ସ୍ୱାଧୀନତା ଆନ୍ଦୋଳନ ଧିମେଇ ଯାଉଛି । ଖବରକାଗଜରୁ ଓ ଜେଲ୍‌କୁ ନବାଗନ୍ତୁକ ନ ଆସୁଥିବାରୁ ତାହା ସ୍ପଷ୍ଟ ଜଣା ପଡୁଥାଏ । ତେଣେ ଆଫ୍ରିକାରେ ଇଟାଲୀୟ ସେନାଙ୍କ ମେରୁଦଣ୍ଡ ଭାଙ୍ଗି ପଡୁଥାଏ । ରୁଷିଆ ଦଖଲ ଯେତେ ସହଜ ହେବ ବୋଲି ହିଟ୍‌ଲର୍ ଭାବିଥିଲେ ତାହା ଯେ ହେଲା ନାହିଁ, ସେ କଥା ଯୁଦ୍ଧ ସମ୍ବାଦ ପଢ଼ି ଜାଣି ହେଉଥାଏ । ସୁଦୂର ପ୍ରାଚ୍ୟରେ ଜାପାନର ପଇଁତରା ମରା ବଢ଼ି ଚାଲିଥାଏ । ଏଣେ ଚର୍ଚ୍ଚିଲଙ୍କ ଆଦେଶରେ ଜେଲ୍‌ଖାନା ଭିତରେ କାନ୍ଥବାଡ଼ରେ ସୁଦ୍ଧା ଭି (V) ଲେଖା ହେଉଥାଏ । ଘଣ୍ଟା ତ ଘଣ୍ଟାଏ ଆଗକୁ ଆଗେଇ ଦିଆ ହୋଇଥାଏ ।

ଭାରତର ଆଭ୍ୟନ୍ତରୀଣ ପରିସ୍ଥିତି ଅତି ବିକଟ ହୋଇଥାଏ । ବଙ୍ଗ ପ୍ରଦେଶରେ ମନୁଷ୍ୟକୃତ ଦୁର୍ଭିକ୍ଷ ହୋଇ ଲକ୍ଷ ଲକ୍ଷ ଲୋକ ମରିଗଲେ । ମନୁଷ୍ୟକୃତ କହିବାର ଅର୍ଥ ହେଲା ଯୁଦ୍ଧ ସକାଶେ ସରକାର ଦେଶର ଖାଦ୍ୟ ସାମଗ୍ରୀ ସୈନ୍ୟଙ୍କ ପାଇଁ ମହଜୁଦ ରଖୁଥିବାରୁ ସାଧାରଣ ଲୋକେ ତାହା ପାଇଲେ ନାହିଁ । କଲିକତା ଫୁଟ୍‌ପାଥ୍‌ରେ ପଟାଳି ପରି ଲୋକ ମରି ପଡ଼ିଥିବା ଛବି ଖବରକାଗଜମାନଙ୍କରେ ବାହାରୁଥାଏ । ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳ ବରିଶାଲ ଆଦିରୁ ଶହ ଶହ ଝିଅ ବୋହୂଙ୍କୁ ପେଟ ଜ୍ୱାଳାରେ ସୈନ୍ୟଙ୍କ ଉପଭୋଗ ପାଇଁ ବିକ୍ରୀ କରି ଦେଇଥିବା ସମ୍ବାଦ ଖବରକାଗଜରୁ ପଢ଼ି କାହା ମନ ନ ଚହଲିବ ? ଓଡ଼ିଶାରେ ଉତ୍ତର ବାଲେଶ୍ୱରର ଅବସ୍ଥା ମଧ୍ୟ ଶୋଚନୀୟ ହୋଇଗଲା । ବାଲେଶ୍ୱର ସହରର ଷ୍ଟେସନ ବଜାରରେ ପ୍ରତିଦିନ ନିରନ୍ନ ଲୋକ ମରି ପଡୁଥିବା ଖବର ମିଳୁଥାଏ । କଟକ ସହରଟାରେ ଅନେକ ସମୟରେ ଆମ ଉଆର୍ଡ଼ର ଚୌଧୁରୀ ବଜାର ପଟରୁ ବହୁତ ପାଟିତୁଣ୍ଡ ଶୁଭେ । ଜମାଦାରଣୀଙ୍କୁ ପଚାରିଲେ ଜବାବ ମିଳେ– କୁଆଡୁ ଗୁଡ଼ାଏ ମାଗିଖିଆ ଆସି କଟକରେ ମାଳମାଳ ହୋଇ ବୁଲୁଛନ୍ତି । ସେହିମାନେ ଏ ପାଟିତୁଣ୍ଡ କରୁଛନ୍ତି । ସେମାନଙ୍କୁ ଦେଖି "ଭାତ" ନାମରେ ଗୋଟିଏ ନାଟକ ଲେଖା ହୋଇ ଅଭିନୀତ ହେଉଛି ବୋଲି ମଧ୍ୟ ଶୁଣିଲୁ । ଦେଶର ଏ ପ୍ରକାର ପରିସ୍ଥିତିରେ ନିରୁପାୟ ହୋଇ ବସି ରହିବା କି ଯନ୍ତ୍ରଣାଦାୟକ ତାହା ଅନୁଭବି ହିଁ ବୁଝିବେ ।

କଳାବଜାର, କିଳାପୋତେଇ ଆଦି ଶବ୍ଦଗୁଡ଼ିକର ସର୍ବସାଧାରଣ ପ୍ରୟୋଗ ସେତିକିବେଳେ ଆରମ୍ଭ ହେଲା । ଖାଦ୍ୟ ପଦାର୍ଥରେ ଅପମିଶ୍ରଣ କେଉଁ ମାତ୍ରାରେ ବଢ଼ି ଚାଲିଥାଏ, ତାହା ଆମକୁ ମିଳୁଥିବା ଖାଦ୍ୟରୁ ଆମେ କଳି ପାରୁଥାଉ । ଚାରିଆଡ଼େ ଏକ ଦିଗରେ ଆତଙ୍କ ଅବସାଦ ତ ଅନ୍ୟ ଦିଗରେ ସ୍ୱାର୍ଥସିଦ୍ଧି ଓ ସମ୍ଭୋଗର ଲୀଳା ଚାଲିଥାଏ ।

ଏହା ସାଙ୍ଗକୁ ବିଦେଶୀ ସୈନ୍ୟଙ୍କ ଅନାଚାର ଖବର ମଧ୍ୟ କାନରେ ପଡୁଥାଏ । କଟକ ସହରରେ ମଧ୍ୟ ଆମେରିକାନ୍ ନିଗ୍ରୋ ସୈନିକ ଯଥେଚ୍ଛାଚାର ଚଳାଇଥାନ୍ତି । ସେମାନଙ୍କ କଲ୍ୟାଣରୁ ଗହଣା ବ୍ୟବସାୟୀଙ୍କର ଦଶଟଙ୍କା ମୂଲ୍ୟର ଗହଣା ଶହେ ଟଙ୍କାରେ ବିକ୍ରୀ ହେବା କଥା ମଧ୍ୟ ଶୁଣୁଥାଉ । ଭାରତର ଚାରିଆଡ଼େ ଏହି ସୈନ୍ୟମାନଙ୍କ ଦ୍ୱାରା ସ୍କୁଲ କଲେଜ ଛାତ୍ରୀମାନଙ୍କର ଶୀଳତା ହାନି, ଫୁଟ୍‌ପାଥରେ ମରି ପଡ଼ିଥିବା ସ୍ତ୍ରୀ ଲୋକଙ୍କ ଉପରେ ବଳତ୍କାର ପୁଣି ଏହି ସୈନ୍ୟମାନଙ୍କ ମନୋରଞ୍ଜନ ପାଇଁ ସୁସଂଭ୍ରାନ୍ତ ପରିବାରର ଝିଅ ବୋହୂମାନେ ରେଳ ଷ୍ଟେସନକୁ ଯାଇ ସେମାନଙ୍କୁ କେକ୍, ଚକୋଲେଟ୍, ପାନୀୟ ଆଦି ପରଷିବା ଖବର ଜେଲ୍ ଚାରିକାନ୍ଥ ଭେଦି ଆମ କାନରେ ପଡୁଥାଏ ।

ଗାନ୍ଧିଜୀ ଜେଲ୍‌କୁ ଯିବା ପୂର୍ବରୁ ବମ୍ବେରେ ଅଷ୍ଟ୍ରେଲିଆନ୍ ସୈନ୍ୟମାନଙ୍କର ଯଥେଚ୍ଛାଚାର ସମ୍ବନ୍ଧରେ ବଡ଼ଲାଟ୍‌ଙ୍କୁ ଚିଠି ଲେଖିଥିଲେ । ବଡ଼ଲାଟ୍ ଜବାବ୍ ଦେଇଥିଲେ ଯେ ଯୁଦ୍ଧକ୍ଳାନ୍ତ ସୈନିକମାନଙ୍କର ସେହି ଆଚରଣକୁ ବରଦାସ୍ତ କରିବାକୁ ହିଁ ପଡ଼ିବ । ସୈନ୍ୟଶକ୍ତିକୁ ଆଶ୍ରୟ କରି ତିଷ୍ଠିଥିବା ସମାଜରେ ନାରୀର ଦଶା କ'ଣ ହୁଏ ତାହାର ପଦାର୍ଥପାଠ ଏହି ଘଟଣାବଳୀରୁ ଆମକୁ ମିଳୁଥାଏ ।

ଯାହାହେଉ ଈଶ୍ୱରଲାଲ୍ ଭାଇ (ବ୍ୟାସ) ବାହାରେ ଥିବାରୁ ଉତ୍ତର ବାଲେଶ୍ୱରରେ ସେ ସଂକଟତ୍ରାଣ (ରିଲିଫ୍) କାମରେ ଲାଗି ଯାଇଥାନ୍ତି । ଦୁର୍ଭିକ୍ଷରେ ମୃତ ଲୋକଙ୍କ ଅନାଥ ପିଲାଙ୍କ ରକ୍ଷଣାବେକ୍ଷଣ ବ୍ୟବସ୍ଥା ପୁରବାଇଙ୍କ ସୋରୋ ଆଶ୍ରମରେ ହେଉଥାଏ । ଶକୁନ୍ତଳା ଜେଲ୍‌ରୁ ଖଲାସ ହୋଇ ସେହି କାମରେ ଲାଗି ଯାଇଥାଏ । ରାମଚନ୍ଦ୍ରପୁରର ବେସରକାରୀ ମୌଳିକ ବିଦ୍ୟାଳୟର ଶିକ୍ଷକମାନେ ଗୋଟି ଗୋଟି ହୋଇ ଜେଲ୍‌ରୁ ଖଲାସ ହୋଇ ରିଲିଫ୍ କାମରେ ଲାଗୁଥିବା ଆଦି ଖବର ଆମକୁ ସାନ୍ତ୍ୱନା ଦେଉଥାଏ ।

ଏହି ସମୟରେ ଖବର ବାହାରିଲା ଗାନ୍ଧିଜୀଙ୍କୁ ଜେଲ୍ ଭିତରେ ଜ୍ୱର ହୋଇଛି । ଅନେକ ଦିନ ଯାଏ ଜ୍ୱର ନ ଛାଡ଼ିବାରୁ ଗାନ୍ଧିଜୀଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ ତାଙ୍କୁ ଖଲାସ କରାଗଲା ବୋଲି ସରକାରୀ ଇସ୍ତାହାରରେ ବାହାରିଲା । ଆମେ ମୁଲାକାତୀକୁ ଯାଇ ଜାଣିଲୁ କର୍ଣ୍ଣେଲ୍ ଭଣ୍ଡାରୀ ପ୍ରମୁଖ ଡାକ୍ତରମାନେ ଗାନ୍ଧିଜୀଙ୍କ ବଞ୍ଚିବା ଆଶା ସଂପୂର୍ଣ୍ଣ ପରିତ୍ୟାଗ କଲାରୁ ସରକାର ତାଙ୍କୁ ଖଲାସ କଲେ । ଅତିମାତ୍ରାରେ ରକ୍ତଶୂନ୍ୟ ହୋଇ ଗାନ୍ଧିଜୀ ୧୯୪୪ ମସିହା ମଇ ଛଅ ତାରିଖରେ ଖଲାସ ହେଲେ । ଖୁଁ ଖୁଁ କାଶ ସାଙ୍ଗକୁ ପାଦ ଦୁଇଟି ଫୁଲିଥାଏ, ହାତ ଥରୁଥାଏ । ଜେଲ୍‌ରୁ ବାହାରି ଗାନ୍ଧିଜୀ କିଛିଦିନ ବମ୍ବେର ସମୁଦ୍ରକୂଳ ଜୁହୁରେ ରହି ସେବାଗ୍ରାମ ଆସିଲେ । ପ୍ରତ୍ୟକ୍ଷଦର୍ଶୀ ଆଶା ଦେବୀ କହୁଥାନ୍ତି– ସେତେବେଳକୁ ମୌସୁମୀ ବାୟୁ ପ୍ରବାହିତ ହେଲାଣି । ଝିପିରି ଝିପିରି ମେଘ ବରଷାରେ ସୁଶୀଲା ନାୟାରଙ୍କ କାନ୍ଧରେ ଭରା ଦେଇ ଗାନ୍ଧିଜୀ ସାନ୍ଧ୍ୟ ଭ୍ରମଣରେ ବାହାରନ୍ତି । ଚାରିଆଡ଼େ ନୈରାଶ୍ୟ ଓ ବିଷାଦର ଅନ୍ଧକାର ।

୧୯୪୪ ମସିହା ଜୁଲାଇ ଦ୍ୱିତୀୟ ସପ୍ତାହରେ ରମା ଦେବୀ ଜେଲ୍‌ରୁ ମୁକୁଳିଲେ । ପ୍ରିୟମ୍ବଦା ଦେବୀ, ଗୋଦାବରୀ ଦେବୀ ପ୍ରଭୃତି ସେତେବେଳକୁ ଦଣ୍ଡ ଭୋଗ ଶେଷ ହେଲାରୁ ଜେଲ୍‌ରୁ ଖଲାସ ହୋଇ ସାରିଥାନ୍ତି । ବ୍ରହ୍ମପୁର ଓ ଅନ୍ୟାନ୍ୟ ଜେଲ୍‌ରୁ ମଧ୍ୟ ଅଟକବନ୍ଦୀଙ୍କୁ ଖଲାସ କରିବା ଆରମ୍ଭ ହେଲା । ରମାଦେବୀ ମୁକୁଳିବାର ସାତଦିନ ପରେ ଯାଜପୁର ଜୁରିସ୍‌ଡିକ୍‌ସନ୍‌ରେ ପଶିବା ପାଇଁ ନିଷେଧାଜ୍ଞା ଜାରି ହୋଇଥିବା

ନୋଟିସ୍ ଖଣ୍ଡେ ଧରେଇ ଦେଇ ମୋତେ ଜେଲ୍‌ରୁ ବିଦା କରିଦେଲେ । ନୋଟିସ୍ ଖଣ୍ଡ ଦେଖି ମନରେ ଆଶା ଜନ୍ମିଲା ଯେ ପୁଣିଥରେ ତୀର୍ଥବାସ ହେବ । ଏବେ ବୋଧହୁଏ ପୁଣ୍ୟ କ୍ଷୀଣ ହେବାରୁ ମର୍ତ୍ତ୍ୟକୁ ଯାଉଛି ।

"କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶତି" ପରା !!

ସରକାରଙ୍କୁ ପତ୍ରଦ୍ୱାରା ଜଣାଇ ମୁଁ ଯାଜପୁର ରୋଡ୍ ଷ୍ଟେସନ୍ ବାଟେ ରାମଚନ୍ଦ୍ରପୁର ବାହାରିଲି । ରମା ଦେବୀ ଓ ଶରତଚନ୍ଦ୍ର ମହାରଣା ମଧ ରାମଚନ୍ଦ୍ରପୁର ଯାଉଥାନ୍ତି । ମୋ ଚିଠି ପାଇ ମୁଁ ଯାଜପୁର ଜୁରସ୍‌ଡିକ୍‌ସନ୍‌ରେ ପାଦ ଦେବା ମାତ୍ରେ ମୋତେ ଗିରଫ କରିବାକୁ ଆଦେଶ ମିଳିଛି ବୋଲି ପୁଲିସ୍ ଅଫିସର ମୋତେ କହିଲେ । ମାତ୍ର ଲୁଚକାଳି ଖେଳରେ ଗୋଡ଼ାଗୋଡ଼ି ପରି ପୁଲିସ୍ ମୋତେ ଧରିବାପାଇଁ ଗୋଡ଼ାଇବା ସତ୍ତ୍ୱେ ମୁଁ ରାମଚନ୍ଦ୍ରପୁରରେ ପହଞ୍ଚିଗଲି । ପୁଲିସ୍ ସବ୍‌ଇନିସ୍‌ପେକ୍ଟର ମୋତେ ବ୍ୟସ୍ତ ହୋଇ କହିଲେ– ଗିରଫ ପରୁଆନା ଧରି ମୁଁ ଯାଜପୁରରେ ପହଞ୍ଚିବା ବେଳକୁ ଆପଣ ଆସି ଗୁହାଳୀରେ । ଆମେ ଗୁହାଳୀ ଧରିବା ବେଳକୁ ଆପଣ ବରୀରେ । ବରୀରେ ପହଞ୍ଚିବା ବେଳକୁ ଆପଣ ରାମ୍‌ଚନ୍ଦ୍ରପୁରରେ ହାଜର । ଏ ବର୍ଷାରେ ଆମେ ଯେଉଁ ହିନସ୍ତା ହେଲୁଣି, କ'ଣ କହିବି ! ସେତେବେଳକୁ ଖିଆପିଆ ସାରି ଆମେ ସାନ୍ଧ୍ୟ ପ୍ରାର୍ଥନାରେ ବସିଲୁଣି । ଆମକୁ ପୁଣି ପୁଲିସଙ୍କ ଖାଇବା, ରହିବା ପାଇଁ ସାନି ବନ୍ଦୋବସ୍ତ କରିବାକୁ ପଡ଼ିଲା ।

ଆମେ ତିନିଜଣ 'ବିପଜ୍ଜନକ' ଲୋକ ଏକାଠି ବୁଲୁଥିବାର ଦେଖି ମୁନ୍‌ସିବାବୁ ବୋଧହୁଏ ଛାନିଆ ହୋଇ କେବଳ ମୋରି ନାଆଁରେ ଉଆରଣ୍ଟ ଥିବା ସ୍ଥଳେ ଆମ ତିନିଜଣଙ୍କୁ ଗିରଫ କରିବା ଉଚିତ୍ ମନେକଲେ । ରମା ଦେବୀ ଓ ଶରତ ଚନ୍ଦ୍ର ମହାରଣାଙ୍କୁ ମଧ ଭାରତ ରକ୍ଷା ଆଇନ୍ ବଳରେ ଗିରଫ କରି ସେ ଆମକୁ ବିଞ୍ଝାରପୁର ନେବା ବନ୍ଦୋବସ୍ତ କଲେ ।

ଭାଦ୍ର ମାସ । ବିଲ ପାଟ ବଢ଼ି ପାଣିରେ ବୁଡ଼ି ରହିଥାଏ । ଖାଲି ଦିଗ୍‌ବଳୟରେ ସବୁଜ ରେଖା ଦିଶୁଥାଏ । ଡଙ୍ଗାରେ ପାଟ ପାରିହେଲେ ବିଞ୍ଝାରପୁର । ବାରମ୍ବାର ଗିରଫ ହେବା ଫଳରେ ପୁଲିସ ଗହଣରେ ଯିବାଟା ଆମକୁ ଆଉ ରୋମାଞ୍ଚକର ଲାଗୁ ନ ଥାଏ । ପୁଲିସ ଜଗୁଆଳୀ ମଧ ବୋଧହୁଏ ଆମ ଆଡୁ କୌଣସି ବିପଦର ଆଶଙ୍କା ନ ଦେଖି ପୂର୍ବଥର ପରି ବନ୍ଧୁକ ବାଗେଇ ସତର୍କ ହୋଇ ରହି ନ ଥାନ୍ତି । କାରଣ

ଜଣେ ଜଗୁଆଳୀ ନିଜ କିଟ୍‌ସ୍ ବ୍ୟାଗ୍‌ରୁ ବଟୁଆଟିଏ ବାହାର କରି ସେଥିରୁ ଗୁଆକାଟି କାଢ଼ି ଖୁଟ୍ ଖୁଟ୍ କରି ଗୁଆ ଭାଙ୍ଗିବା ଆରମ୍ଭ କରିଦେଲେ । ଆଉଜଣେ ଚୂନଦାନୀ ପଛ ପାଖରୁ ପାନ ବାହାର କରି 'ତାମ୍ବୁଲ ପୃଷ୍ଟ ଭାଗେନ୍' କହି ମନୋଯୋଗ ସହକାରେ ପାନରେ ଚୂନ ଲଗାଇଲେ ।

ଶରତବାବୁଙ୍କ ଜଣେ ସହପାଠୀ ଶ୍ରୀ ମେକୁଦ୍ଦିନ ଅହମ୍ମଦ ଯାଜପୁରରେ ଏସ୍.ଡ଼ି.ଓ. ଥାଆନ୍ତି । ରମାଦେବୀ ଓ ଶରତବାବୁଙ୍କୁ ସୁଦ୍ଧା ଧରି ନେଇଥିବାର ଦେଖି ସେ ଆଶ୍ଚର୍ଯ୍ୟ-ଚକିତ ନେତ୍ରରେ ଚାହିଁ ରହିଲେ । ଦେଖ ଏ କଟୁଆଳଙ୍କ କରାମତି "ଯୋ କହା ସୋ କିଆ ଯୋ ନହି କହା- ସୋ ଭି କର୍‌କେ ଦିଖାୟା ।" କିନ୍ତୁ ପୁଲିସ୍ କୌଣସି ଅନ୍ୟାୟ ବା ଭୁଲ୍ କଲେ ସରକାର ତାଙ୍କୁ ଆକଟ କରନ୍ତି ନାହିଁ ଏଇଥି ପାଇଁ ଯେ କାଳେ ଫୋର୍ସ୍ ଦବିଯିବ । ଫୋର୍ସ୍ ଯଦି ଦବିଯିବ ଶାସନ ଚାଲିବ କାହା ବଳରେ । ତେଣୁ ରମାଦେବୀ ଓ ଶରତବାବୁଙ୍କୁ କେତେଦିନ ଯାଜପୁର ଜେଲ୍‌ରେ ରଖି ଛାଡ଼ି ଦିଆହେଲା । ମୋତେ କଣ ଦଣ୍ଡ ଦିଆଯିବା ଉଚିତ୍ ତାହା ସ୍ଥିର କରିବାକୁ ସରକାରଙ୍କୁ ଦୁଇମାସ ସମୟ ଲାଗିଲା । ସେ ଦୁଇମାସ ମୋର ଏକ ପ୍ରକାର ଏକାନ୍ତ ବାସରେ କଟିଲା । କେବଳ ସଫାଇ କାମବେଳେ କବାଟ ଫିଟିଲେ ଛତ୍ରପଡ଼ାର ପଦ୍ମନାଭ ରାୟଙ୍କ ଦେଖା ମିଳେ । ସେ ଗୀତା ପ୍ରେମୀ । ତେଣୁ ସେହି ସ୍ୱଳ୍ପ ସମୟ ମଧ୍ୟରେ ଗୀତାର ଗୋଟିଏ ଦିଓଟି ଶ୍ଳୋକ ଉପରେ କଥାବାର୍ତ୍ତା ଚାଲେ । ଦିନେ ସଫାଇ ବେଳେ ଦେଖିଲି ବାଲିବିଲର ଜଣେ ସହକର୍ମୀ ଗିରଫ ହୋଇ ଆସିଲେ । ପଚାରିଲି— ଘରେ ସବୁ ଭଲ ତ ? ସେ ସଦ୍ୟ ବ୍ରହ୍ମପୁର ଜେଲ୍‌ରୁ ମୁକୁଳି ପୁଣି ଗିରଫ ହୋଇ ଆସିଥାନ୍ତି । ସ୍ମିତ ମୁଖରେ ଜବାବ ଦେଲେ— ଜାଣନ୍ତି ତ ଆମର ଧୋୟା ଜମି । ବିଲବାଡ଼ିରୁ ଆଶା ଶୂନ୍ । ଘରକୁ ମୁଁ ଥିଲି ଏକା ରୋଜଗାରିଆ । ମୁଁ ତ ଜେଲ୍‌କୁ ଯାଇ ଖାଇ ପିନ୍ଧି ରହିଲି । ଏ ଯେଉଁ କାଳ ପଡ଼ିଲା ଶାଶୁ ବୋହୂ ଦୁଇଟା ଭାଗି ହିନସ୍ତା ହୋଇଗଲେ । ଅସଲ ଯାତନା ଭୋଗିଲେ ମୋ ମାଆ ଓ ସ୍ତ୍ରୀ । ମୁଁ ଆସି ଦେଖିଲି ତାଙ୍କ କଣ୍ଠା ଦୋହଲୁଛି । ମୋତେ ଦେଖି ଦୁହେଁଯାକ ଭେଁ ଭେଁ ରଡ଼ିଲେ । ମୁଁ କହିଲି— କାନ୍ଦୁଛ କାହିଁକି ? କାଳରେ କେତେ ଲୋକ ମଲେ । ତମେ ବଞ୍ଚିଛ, ତମ ସଙ୍ଗେ ଭେଟାଭେଟି ହେଲା, ଏହି ତ ଈଶ୍ୱରଙ୍କର ଅପାର କରୁଣା । ଜେଲ୍‌ରୁ ଆସିବାର ସାତଦିନ ପୂରିନାହିଁ, ମୋ ଉପରେ ଥିବା କଟକଣା ଭାଙ୍ଗି ପୁଣି ଆସିଲି । ଏ ବେଳରେ ଘରେ ବସିବା କ'ଣ ମଣିଷପଣିଆ ହୋଇଥାନ୍ତା ? ଜମାଦାର ଚାବି ପେନ୍ଥାକ ଧରି ସମ୍ମୋହିତ ହେଲା ପରି

ତାଙ୍କ ଆଡ଼କୁ ଚାହିଁ ରହିଥାନ୍ତି । ନିତି ଗଭୀର ରାତିରେ ସେ ସହକର୍ମୀଙ୍କ କଣ୍ଠରୁ ଶୁଭେ "ଭଜ ଗୋବିନ୍ଦଂ ସ୍ମର ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ଼ ମତେ ।"

ଦୁଇମାସ ବିଚାରାଧୀନ ବନ୍ଦୀ ହୋଇ ରହି ବିଚାରରେ ତିନି ମାସ ସଜା ପାଇ ବାର ନମ୍ବର ଉଆର୍ଡ଼କୁ ଆସିଲି । ବାର ନମ୍ବରରେ ସେତେବେଳେ ମାଳତୀ ଦେବୀ ଓ ଉତ୍ତରା ଥାଆନ୍ତି । ଆଉ ଥାଏ ଆମ 'ବାବୁଲି' ବିଲେଇ । ମୂଷାମାନେ ଆମ ବିଛଣା, ଲୁଗାପଟା, ବହିପତ୍ର କାଟି ଶେଷରେ ଶକୁନ୍ତଳାକୁ କାମୁଡ଼ିବାରୁ ଜେଲର୍ ବାବୁ ଜେଲ୍ ଡାକ୍ତରଖାନାରେ ଥିବା ବିଲେଇଟିକୁ ଆମ ଉଆର୍ଡ଼କୁ ବଦଳି କରି ଦେଇଥିଲେ । ସୁନେଲି ରଙ୍ଗ, କାବୁଲି ବିଲେଇ ଲାଞ୍ଜ ପରି ମୋଟ ଲାଞ୍ଜ, ପଶମ ପରି ନରମ ଓ ଗରମ ଦେହ, ବିଲେଇଟି ଯଥାର୍ଥରେ ସୁନ୍ଦର । ସେ ଆସିବାର ଆଠଦିନ ନ ପୂରୁଣୁ ବାର ନମ୍ବରରେ ମୂଷା ଥିଲେ କି ନାହିଁ ସେ ବିଷୟରେ ସଂଶୟ ଉପୁଜିଲା । ମୂଷା ତ ସରିଗଲେ । କିନ୍ତୁ ବିଲେଇଟି ରହିଗଲା । ମାତ୍ର ସେ ଖାଇବ କ'ଣ ? କର୍ତ୍ତାଙ୍କ ପାଖରେ ଅଳି କଲାରୁ ଚାରି ଛଅ ଖଣ୍ଡ କଲିଜା ବିଲେଇ ପାଇଁ ମଞ୍ଜୁର ହେଲା । ମାତ୍ର ଆମ ବାବୁଲି ତ ବାଘର ମଉସା । ସେ ଆମ ଉଆର୍ଡ଼ର ଖୋଲରେ ରହୁଥିବା ଦେଉଳିଆ ପାରା ଶିକାର କରି ପେଟ ପାଳିଲା । କିନ୍ତୁ ବାବୁଲାଟାକୁ ଆମର ବହୁତ କାଇଦା ଜଣା । 'ତସଲୀମ୍ ଦେ' କହିବା ମାତ୍ରେ ସେ ଗୋଡ଼ ପାଖରେ ଲେଉଟି ଯିବ । ଭାଗ୍ୟରଥି କ୍ଷୀର ଥୋଇ ଦେଇ ଗଲେ ତାକୁ ଖାଇଦେବା ପରିବର୍ତ୍ତେ ଜଗିକରି ଶୋଇବ । ସେ ବିଲେଇ ମଝେ ମଝେ ପାଇଖାନା ନଳାମୁହଁ ବାଟେ ବର୍ହିଭ୍ରମଣରେ ଯାଏ । ଥରେ ତା ବେକରେ ଗୋଟିଏ ପରିଚୟ ପତ୍ର ବାନ୍ଧି ଦିଆହେଲା । ଉଦ୍ଦେଶ୍ୟ, ସେ ବାହାରକୁ ଗଲେ କେହି ସେ ପରିଚୟ ପତ୍ର ପଢ଼ିବେ । କିନ୍ତୁ ବାବୁଲା ନଳା ପାଣିରେ ଏପରି ବୁଡୁବୁଡୁ ହୋଇ ଫେରିଲା ଯେ ପରିଚୟ ପତ୍ରର ସତ୍ତା ରହିଲା ନାହିଁ ।

ସେହି ବିଲେଇ ଓ ଆମେ ତିନିହେଁ ତିନି ମାସ ବାର ନମ୍ବର ଉଆର୍ଡ଼ରେ ରହିଲୁ । ପୂର୍ବ ଗହଳି ତ ନ ଥାଏ । ଅଧ୍ୟୟନ, ସିଲେଇ, ସୂତାକଟା ଆଦିରେ ସମୟ କଟୁଥାଏ । ନବକୃଷ୍ଣ ଚୌଧୁରୀ କଟକ, ଅନୁଗୁଳ, ପୁରୀ, ବ୍ରହ୍ମପୁର ଜେଲ୍‌ରେ ରହି ପୁଣି କଟକ ଜେଲ୍‌କୁ ବଦଳି ହୋଇ ଆସିବାରୁ ତାଙ୍କ ସଙ୍ଗେ ଦେଖା ସାକ୍ଷାତ ହେଲା । ନିତ୍ୟାନନ୍ଦ କାନୁନ୍‌ଗୋ ମଧ୍ୟ କଟକ ଜେଲ୍‌କୁ ଆସିଲେ । ସେ ସେତେବେଳେ ଗେରୁଆ ବସ୍ତ୍ର ପିନ୍ଧି ସ୍ୱପାକୀ ହୋଇଥାନ୍ତି । ଦିନେ ଦିନେ ସ୍ୱହସ୍ତ ପ୍ରସ୍ତୁତ ମରିଚ ପାଣି, କୋବି ଷ୍ଟ୍ୟୁ ଆମ ପାଇଁ ପଠାନ୍ତି । ଏହା ମଧ୍ୟରେ ଥରେ ମାଳତୀ ଦେବୀ ସମୁଦାୟ ଜେଲ୍ ବୁଲି

ଦେଖିବାକୁ ଜିଦ୍ କଲେ । ଜେଲର୍ ତାଙ୍କୁ ବୁଝାଇଲେ ଯେ ଜେଲ୍ ନିୟମ ଅନୁସାରେ ଏହା ହୋଇ ପାରିବ ନାହିଁ । ସେ ନ ବୁଝିବାରୁ ଜେଲର୍ ନବବାବୁଙ୍କ ଶରଣାପନ୍ନ ହେଲେ । ନବବାବୁ ବୁଝାଇ କହିଲେ ଯେ ଦଶ ବାରବର୍ଷ କାଳ ସ୍ତ୍ରୀ ଲୋକଙ୍କ ମୁହଁ ନ ଦେଖି ରହିଥିବା ପୁରୁଷ କଇଦୀଙ୍କ ମେଳକୁ ସ୍ତ୍ରୀଲୋକଙ୍କୁ ନେଇ କରି ଯିବା ଝୁଙ୍କି ମୁଣ୍ଡାଇବା ଆଦୌ ଉଚିତ ନୁହେଁ । ନାନାପ୍ରକାର ଦୃଷ୍ଟାନ୍ତ ଶୁଣି ସେ ପ୍ରସ୍ତାବ ରଦ୍ଦ ହେଲା ।

ବାର ନମ୍ବରରେ ଥିବାବେଳେ ମାଳତୀ ଦେବୀ ଅନେକ ଥର ବିରକ୍ତ ହୋଇ କହୁଥାନ୍ତି– ଏ ଜାଗାଟାର ସ୍ମୃତି ଏତେ ଖରାପ ଯେ ଏଠୁ ବିଦା ହୋଇ ଯିବାପରେ ଥରେ ସୁଦ୍ଧା ଏ ଉଆର୍ଡ଼ କଥା ମନେ ପଡ଼ିବ ନାହିଁ । କିନ୍ତୁ ଦୀର୍ଘ ଅଠେଇଶ ବର୍ଷ ବିତିଯିବା ପରେ ସୁଦ୍ଧା ଦେଖାଯାଉଛି ବାର ନମ୍ବର ଉଆର୍ଡ଼ରେ କଟିଥିବା ଦୁଇବର୍ଷ ଚାରିମାସରୁ କିଛି ଅଧିକ କାଳର ଘଟଣାବଳୀ ସ୍ମୃତିର ମଣିମଞ୍ଜୁଷାରେ ବେଶି ବେଶି ଉଜ୍ଜ୍ୱଳି ଉଠୁଛି । ଆଖି ଆଗରେ ନାଟକ ଦେଖିଲା ପରି ଦିଶିଯାଉଛି ଫଗୁଣ ମାସିଆ ଶୀତ ଯିବ ଯିବ କହି ଯାଇନାହିଁ । ସରି ଆସୁଥିବା ଶୀତଦିନିଆ ଖରା ଝରକା ମାପରେ ଘର ଭିତରେ ପଡ଼ିଛି । ଘର ଖରାରେ ଝରକାର ଲୁହା ଛଡର ଛାଇ । ଉଆର୍ଡ଼ ଓଳିତଳେ ବସି ସକାଳ ଜଳଖିଆ ଗଜାମୁଗ ଖାଇ ଉଆର୍ଡ଼ ଭିତରକୁ ପଶିବା ବେଳକୁ ଶୁଭିଛି ପ୍ରଥମ ଝରକା ପାଖରେ ବସିଥିବା ମାଳତୀ ଦେବୀଙ୍କ ଗୀତ—

ଏକ୍‌ଟି ନମସ୍କାରେ ପ୍ରଭୁ ଏକଟି ନମସ୍କାରେ
ସକଲ୍ ଦେହ ଲୁଟିୟେ ପଡୁକ୍ ତୋମାର୍ ଏ ସଂସାରେ
ଘନ ଶ୍ରାବଣ୍ ମେଘେର୍ ମତ
ରସେର୍ ଭାରେ ନମ୍ରନତ
ଏକ୍‌ଟି ନମସ୍କାରେ ପ୍ରଭୁ ଏକ୍‌ଟି ନମସ୍କାରେ
ସମସ୍ତ ମନ ପଡ଼ିୟା ଥାକ୍‌ବେ ଭବନ୍ ଦ୍ୱାରେ
ନାନା ସୁରେର୍ ଆକୁଲ୍ ଧାରା
ମିଲିୟେ ଜିୟେ ଆତ୍ମହରା
ଏକ୍‌ଟି ନମସ୍କାରେ ପ୍ରଭୁ ଏକ୍‌ଟି ନମସ୍କାରେ
ସମସ୍ତ ଗାନ୍ ସମାପ୍ତ ହୋକ୍ ନୀରବ୍ ପାରାବାରେ

ହଂସ ଯେମନ୍ ମାନସ୍ ଯାତ୍ରୀ
ତେମନି ସାରା ଦିବସ ରାତ୍ରି
ସମସ୍ତ ପ୍ରାଣ୍ ଉଡ଼େ ଚଲୁକ୍ ମହାମରଣ୍ ପାରେ ।

ଉଆର୍ଡ଼ରେ ସୂଚୀଭେଦ୍ୟ ନୀରବତା । ଗୀତ ସରିଲା । ଗୋଦାବରୀ ଦେବୀ 'Intelligent Women's Guide' ଧରି ମାଳତୀ ଦେବୀଙ୍କ ପାଖରେ ପଢ଼ି ବସିଲେ ।

ହାରାମଣି କାନୁନ୍‌ଗୋ, କ୍ଷେତ୍ରମଣି ଦେବୀ, ଶଶୀବାଳା ଦେବୀ ସକାଳୁଆ ଖରା ଉପଭୋଗ କରିବା ପାଇଁ ଦ୍ୱିତୀୟ ଝରକା ପାଖରେ ବସି ହିନ୍ଦୀ ପାଠ ମୁଖସ୍ଥ କରୁଛନ୍ତି–

ମୈଁ ଖାତା ହୁଁ — ମୁଁ ଖାଏ ।
ହମ୍ ଖାତେ ହେଁ — ଆମେ ଖାଉ ।

ଉତ୍ତରା ନିଜେ ଆବିଷ୍କାର କରିଥିବା ନୂଆ ଡ଼ିଜାଇନ୍‌ର ସ୍ୱେଟ୍‌ର ବୁଣା ପ୍ରଭା ଦେବୀଙ୍କୁ ଶିଖାଇବା ସଙ୍ଗେ ସଙ୍ଗେ ସେକ୍‌ସ୍‌ପିଅର କିଙ୍ଗ୍ ଲିଅର ନାଟକରେ କିପରି ଗାଳିର ନୂଆ ଶୈଳୀ ସୃଷ୍ଟି କରିଛନ୍ତି, ତାହା ଅନ୍ନପୂର୍ଣ୍ଣାଙ୍କୁ ଶୁଣାଇ କହୁଛି 'Your vain fool' ।

ଅନ୍ନପୂର୍ଣ୍ଣା ଓ ଶୋଭା ଦେବୀ ତୁଳାଭିଣା ସଜ କରୁଛନ୍ତି । ସବୁ ଗୁରୁଜନଙ୍କ ତୁଳା ସେ ଦୁହେଁ ଭିଣି ଦେବେ ।

ତୃତୀୟ ଝରକା ପାଖରେ ଆମ ବିଲେଇ ଖରାରେ ଚାରିକାତ ମେଲାକରି ଖରା ପୋଇଁବା ସଙ୍ଗେ୍ ସଙ୍ଗେ ଉଆର୍ଡ଼ ଅଗଣାରେ ଆଧାର ଖୁଣ୍ଟୁଥିବା ଦେଉଳିଆ ପାରାଙ୍କ ଆଡ଼କୁ ଲୋଲୁପ ଦୃଷ୍ଟିରେ ଚାହୁଁଛି ।

ଚତୁର୍ଥ ଝରକା ପାଖରେ ମଙ୍ଗଳା ଦେବୀ ରୋଗ ଶଯ୍ୟାରେ ଶୋଇଛନ୍ତି । ସକାଳ ଜଳଖିଆରେ ଖାଇଥିବା ଗଜାମୁଗତକ ବାନ୍ତି କରିଦେଇ ସେ ହାଲିଆ ହୋଇ ପଡ଼ି ରହିଛନ୍ତି । ରମାଦେବୀ ତାଙ୍କ ପିଠି ଆଉଁଷି ଦେଉଛନ୍ତି । କିନ୍ତୁ ହାରାମଣି ଦେବୀ ନଛୋଡ଼ବନ୍ଧା । ମୋଜା ଗୋଇଠି ଶିଖିବା ପାଇଁ ସେ ରମାଦେବୀଙ୍କୁ ଜଗି ବସିଛନ୍ତି ।

ଘର ମଝିରେ ଅଧାକାନ୍ଥ ଉପରେ ରବୀନ୍ଦ୍ରନାଥ, ବଙ୍କିମଚନ୍ଦ୍ର, ଇବ୍‌ସେନ୍, ସେକ୍‌ସପିଅର, ପର୍ଲବ୍‌କ୍, ରାମକୃଷ୍ଣ, ବିବେକାନନ୍ଦଙ୍କ ଗ୍ରନ୍ଥାବଳୀ ସାଙ୍ଗରେ ଗୀତା, ବାଇବେଲ୍, କୋରାନ୍ ସରିଫ୍ ଥୁଆ ହୋଇଛି ।

ଅଧାକାନ୍ଥ ଆରପଟେ ସୂତା କାଟୁ କାଟୁ ତନ୍ମୟ ହୋଇ ସୁଶୀଳା ଦେବୀ ଭଜନ ବୋଲୁଛନ୍ତି– କାଟ ମୋର ମୁଣ୍ଡ ବୈକୁଣ୍ଠରେ ଯିବି, ନମ ଶତପତ୍ର ଡୋଳା ହେ ! ହେଳା କର କାହିଁକି ଆଉ ?

ପ୍ରିୟମ୍ବଦା ଦେବୀଙ୍କ ହାତରେ ତାସ୍ । ଖେଳସଙ୍ଗୀ ବର୍ତ୍ତମାନ ବିମଳା, ଶକୁନ୍ତଳା, ହାରାମଣି । କିନ୍ତୁ ହାରାମଣିଙ୍କ ମନ ମୋଙ୍ଗା ଗୋଇଠି ବୁଣାରେ ।

ଘର କଣରେ କୁଳବୃଦ୍ଧା ହରପ୍ରିୟା ଦେବୀ ସକାଳଟାରେ ମଶାରି ବାନ୍ଧି ତା' ଭିତରେ ପଶିଛନ୍ତି । ତାଙ୍କୁ କୁଆଡ଼େ ଗୁଣ୍ଡିମଶା କାମୁଡୁଛନ୍ତି ।

କିରଣଲେଖା ଏବେ ବଙ୍ଗଳା ଶିଖୁଛି । ଶିଲଟରେ ଛବି ଆଙ୍କି ସେ ସୁନାମଣି ଦେବୀଙ୍କୁ ଦେଖେଇ କହୁଛି–

"ଦି ମଶାୟେର ଜର ହୟେଛେ
ଡିଙ୍ଗି ଗେଲ୍ ଡାକ୍ତର ଆନ୍‌ତେ
ବସ୍‌ତେ ଦିଲ୍ ପିଁଡ଼ି
ଏକ୍‌ଟାନେ ହୟେ ଗେଲ ଶୁଆ ପାଖି ।"
ଉଠିଲା ହସର ତରଙ୍ଗ ।

ସୁନାମଣି ଦେବୀ ସୂତା କାଟିବାରେ ନିମଗ୍ନ । ବେଲଦେବୀ, ନିଶାମଣୀ ଦେବୀ ଓ ନିବାସୀ ଦେବୀ ବସି ଗଣେଶ୍ୱରପୁର ଆଶ୍ରମର ସ୍ମୃତିଚାରଣ କରୁଛନ୍ତି । ଉଷା ଦେବୀ ଜମାଦାରଣୀ ଉଷାଙ୍କ ସହିତ କଲ୍ୟାଣପୁର କରଣ ଗୋଷ୍ଠୀଙ୍କ ବଂଶପରମ୍ପରା ବିଷୟରେ ଗବେଷଣା କରୁଛନ୍ତି ।

'ସମାଜ' ଏ ପର୍ଯ୍ୟନ୍ତ ଆସିନାହିଁ । ଆସିଲେ ସାମୂହିକ ପାଠ ଆରମ୍ଭ ହେବ । ହଠାତ୍ ଡ୍ରପ୍ ସିନ୍ ଉଠିଗଲା ପରି ହରପ୍ରିୟା ଦେବୀଙ୍କ ମଶାରୀ ଟେକି ହୋଇଗଲା । ଗୋଡ଼ରେ ଚିପା ପାଇଜାମା ପରି ଜେଲ୍ ଶାଢ଼ୀ ଗୁଡ଼ାଇ, ବ୍ଲାଉଜ୍ ଉପରେ ଜେଲ୍ ଚାଦର ଛନ୍ଦି, ମଥାର ସ୍ୱଳ୍ପ କେଶକୁ କାନପଟେ ବୁଲାଇ ଆଣି ନାକ ତଳେ ଛନ୍ଦି ଚୀନା ନିଶ ପରି ଓହଳାଇ ହରିପ୍ରିୟା ଦେବୀ ଢ଼ଳି ଢ଼ଳି ଆସି ଗାଇଲେ–

"ବାଟ ଛାଡ଼ ବାଟ ଛାଡ଼ ମଲୁ ଆସୁଛି
ପ୍ରସାରୁଣୀ ପତ୍ର ପ୍ରାୟେ ଦେହ ବାସୁଛି ।"

ପ୍ରହସନଟା ଜମି ଆସିଲାବେଳକୁ ରଘୁ ଜମାଦାର ତୁଣ୍ଡ ଶୁଣେଇଲେ, "ଜମାଦାରଣୀ ! ସମାଜ" । ଜମାଦାରଣୀ ହାତକୁ ସମାଜ ଖଣ୍ଡକ ଆସିବା ମାତ୍ରକେ ସେ ଖଣ୍ଡ ଝାମ୍ପି ନେଇ ଆଖି ବୁଲେଇଲା ବେଳକୁ ପ୍ରଥମ ପୃଷ୍ଠାରେ ଲେଖା ହୋଇଛି ଗାନ୍ଧିଜୀଙ୍କର ସହଧର୍ମିଣୀ କସ୍ତୁରବା ଗାନ୍ଧୀଙ୍କର ବନ୍ଦୀ ଅବସ୍ଥାରେ ମୃତ୍ୟୁ ସମାଚାର । ବନ୍ଦୀଥାଇ ଆତ୍ମୀୟ ଠାରୁ ବଳି ନିକଟତର ବନ୍ଦୀର ମୃତ୍ୟୁ ସମାଚାର । ବାର ନମ୍ବର ଉଆର୍ଡ଼ ସ୍ତବ୍ଧ ହୋଇଗଲା । ତେଇଶଟି ମୁଣ୍ଡ ଭିତରେ ମୁହୂର୍ତ୍ତକ ମଧ୍ୟରେ କେତେ

ପ୍ରକାର ଭାବନା ଖେଳିଗଲା, କଳି ହେବ ନାହିଁ । ଆମେ ଅଟକବନ୍ଦୀ । ଆମର ଭବିଷ୍ୟତ, ବର୍ତ୍ତମାନ ସବୁ ଏହି କଟକ ଜେଲ୍‌ର ବାର ନମ୍ବର ଉଆର୍ଡ଼ ଭିତରେ । ପ୍ରତ୍ୟକ୍ଷ ଦେଶସେବା, ସନ୍ତାନ-ପରିଚର୍ଯ୍ୟା, ଆଉ ଯେତେ ଯେତେ ମଣିଷ ଜୀବନର ଆଶା ଆକାଙ୍‌କ୍ଷା ଅଂରିମାନ, ସେ ସବୁର ସମାପ୍ତି ଘଟି ସାରିଛି । କେବଳ ଆତ୍ମୀୟ ସ୍ୱଜନ ମାନଙ୍କର, ଦେଶ ଦୁନିୟାର କୁଶଳ ସମାଚାର ଟିକକ ମନକୁ ଭୁଲେଇ ରଖିବାର ଉପାଦାନ ସିନା ! ଲୋକମାତା କସ୍ତୁରବାଙ୍କ ସମାଚାର ଜାଣି ଆଖି ଆଗରେ ସ୍ପଷ୍ଟ ଚିତ୍ର ଲେଖି ହୋଇଗଲା– କିଏ ଜାଣେ ? ଏହି କାରାରୁଦ୍ଧ ଅବସ୍ଥାରେ ଗୋଟି ଗୋଟି ହୋଇ ଆଗପଛ ହୋଇ ସମ୍ଭସ୍ତେ ଯିବୁ । କାରା ପ୍ରାଚୀର ବାହାରେ ଥିଲେ ମଧ ଶେଷ ପରିଣତି ତ ସେୟା ହୋଇଥାନ୍ତା । କିନ୍ତୁ ମାତ୍ର ମୁକ୍ତ ପରିବେଶ, ସତ୍ୟ-ଶିବ-ସୁନ୍ଦରଙ୍କର ଏ ବିଶାଳ ବିଶ୍ୱର ମମତାପୂର୍ଣ୍ଣ ସ୍ପର୍ଶ ସେ ଶୋକାଘାତ ଉପରେ ସର ପକେଇ ଦେଇଥାନ୍ତା । ପୁଣି ଏ ସ୍ୱାଧୀନତା ସଂଗ୍ରାମ ! ସ୍ୱାଧୀନତା ପାଇଁ ଆତ୍ମବଳି ଦେବାର ସଂକଳ୍ପ ଏହି ବାର ନମ୍ବର ଉଆର୍ଡ଼ ଭିତରେ ପୂର୍ଣ୍ଣ ହେବ ।

ଘୋର ଅଙ୍ଗିରସ ଋଷି ବାସୁଦେବ କୃଷ୍ଣଙ୍କୁ ଉପଦେଶ ଦେଇଥିଲେ ତ୍ରିସନ୍ଧ୍ୟାରେ ତିନୋଟି ମନ୍ତ୍ରରେ ଥିବା ଅକ୍ଷର ସଂଖ୍ୟା ଅନୁସାରେ ମଣିଷ ଜୀବନ ତିନି ଭାଗରେ ବିଭକ୍ତ । ପ୍ରଥମ ଚବିଶ ବର୍ଷ ଗାୟତ୍ରୀର ଚବିଶ ଅକ୍ଷର ଅନୁସାରେ ବ୍ରହ୍ମଚର୍ଯ୍ୟ ଓ ସ୍ୱାଧ୍ୟାୟ ପାଇଁ ନିର୍ଦ୍ଦିଷ୍ଟ, ତାହା ପରେ ଚଉରାଳିଶ ବର୍ଷ ଗୃହସ୍ଥ ରହି ଗୃହ ଓ ସମାଜର କଲ୍ୟାଣ କାର୍ଯ୍ୟ କରି ଅଠଷଠି ବର୍ଷ ବୟସରୁ ଏ ସମସ୍ତ କାର୍ଯ୍ୟରୁ ନିଜକୁ ପ୍ରତ୍ୟାହୃତ କରିବା– ସମାଜର ଭାବନାତ୍ମକ ସେବା କରିବା ହିଁ ବିଧି । ଏହି ବିଚାରକୁ ଅନୁସରି ବାସୁଦେବ କୃଷ୍ଣ ମହାଭାରତ ଯୁଦ୍ଧରେ ଅସ୍ତ୍ରଧାରଣ କରି ନ ଥିଲେ ବୋଲି କଥିତ ଅଛି ପରା । ତାହାହେଲେ ? ତାହାହେଲେ ଅଠେଇଶ ବର୍ଷ ବୟସରୁ ଅଠଷଠି ବର୍ଷ ପାଇଁ ପ୍ରଯୁକ୍ତ ଭାବନାତ୍ମକ ସେବା ସାଧନାର ଶୁଭାରମ୍ଭ ବାର ନମ୍ବର ଉଆର୍ଡ଼ରେ ହେଉ ।

ଏହିପରି କେତେଦିନର କେତେ ଘଟଣା, କେତେ ବିଚାର, କେତେ ବିଚ୍ଛେଦ-ବିୟୋଗ-ବିରହର ସ୍ମୃତିବିଜଡ଼ିତ ବାର ନମ୍ବର ଉଆର୍ଡ଼ର ଜୀବନଗାଥା ଭୁଲିବା ପରିବର୍ତ୍ତେ ଦିନକୁ ଦିନ ପୁଣ୍ୟ ସ୍ମୃତିରେ ପରିଣତ ହେଉଛି । ଇଂରାଜୀ କବି ସେଲି କହିଛନ୍ତି–

"Our sweetest songs are those
that tell of saddest thoughts." *

---

* ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଦୌହିତ୍ରୀ ଲୋକାନ୍ତରିତା ଶ୍ରୀମତୀ ପ୍ରଭାମୟୀ ଦେବୀଙ୍କୁ ଶୁଣାଇବା ପାଇଁ ଏହି "ବାର ନମ୍ବର ଉଆର୍ଡ଼" ଲିପିବଦ୍ଧ ହୋଇଥିଲା ।

# ଅମୃତ ଅନୁଭବ

"Bliss it was on that happy day to be alive
But to be young was very heaven."

— **Wordsworth**

## କୈଫିୟତ୍

ଭାରତରେ ସ୍ୱରାଜ୍ୟ ହାସଲ କରିବା ପାଇଁ ଯେଉଁ ଲଢ଼େଇ ଚାଲିଥିଲା, ତାହା ଅହିଂସାତ୍ମକ ସତ୍ୟାଗ୍ରହ ହୋଇଥିବାରୁ ତାହାର ରୀତିନୀତି ଲୋକଙ୍କ ପାଇଁ ନୂଆ ଥିଲା । ଅବଳା ବୋଲାଉଥିବା ମହିଳା ଓ ଅପ୍ରାପ୍ତବୟସ୍କା ବାଳିକାମାନେ ଯେ ବହୁ ସଂଖ୍ୟାରେ ସେ ଲଢ଼େଇରେ ଯୋଗ ଦେଇ ଉଲ୍ଲେଖଯୋଗ୍ୟ କାମ କରିଥିଲେ, ଏହା ଥିଲା ଆନ୍ଦୋଳନର ବା ଲଢ଼େଇର ଅନ୍ୟତମ ବୈଶିଷ୍ଟ୍ୟ । ସେ ଲଢ଼େଇରେ ବିଶ୍ୱ ଜଣେ ଲକ୍ଷ୍ମୀବାଈ ବା ଜଣେ ତାରାବାଈର ବୀରତ୍ୱ ନୁହେଁ ସହସ୍ର ସହସ୍ର ଲକ୍ଷ୍ମୀବାଈ, ତାରାବାଈଙ୍କର ନିଷ୍ଠା ଓ ବୀରତ୍ୱ ପ୍ରତ୍ୟକ୍ଷ ଦେଖିଥିଲା ।

ସେହି ଆନ୍ଦୋଳନରେ ବା ଲଢ଼େଇରେ ଯୋଗ ଦେବାବେଳେ ମୁଁ ଥିଲି ଗୋଟିଏ ଅପ୍ରାପ୍ତବୟସ୍କା ବାଳିକା । ମୋର ବାପା ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଥିବାରୁ ମୁଁ ବିଦେଶୀ ସରକାରଙ୍କ ଦ୍ୱାରା ପରିଚାଳିତ ବିଦ୍ୟାଳୟର ଏଗୁଣ୍ଡିବନ୍ଧ ମାଡ଼ି ନ ଥିଲି । ମୋର ପାରିବାରିକ ପରିବେଶ ଭିନ୍ନ ଥିଲେ ହେଁ ଜଣେ ଅପ୍ରାପ୍ତବୟସ୍କ ବାଳିକା ଓ ତା'ର ଅପ୍ରାପ୍ତବୟସ୍କ ସାଥୀ "ବାନର"ମାନେ ସତ୍ୟାଗ୍ରହ ଆନ୍ଦୋଳନରେ କି କାମ କରିଥିଲେ ଏବଂ ସତ୍ୟାଗ୍ରହ ବିଷୟରେ ସେମାନଙ୍କର କ'ଣ ଧାରଣା ଥିଲା, ତାହାର ଟିକିଏ ଆଭାସ ଦେବା ହିଁ ହେଉଛି ଏ ରଚନାର ଉଦ୍ଦେଶ୍ୟ ।

ମୋତେ କେତେକ ବୈଜ୍ଞାନିକ କହିଲେ ଯେ "ବ୍ୟକ୍ତିର ଅନୁଭବକୁ ଆଧାର କରି ବିଜ୍ଞାନର ବିକାଶ ଘଟେ । ତେଣୁ ସମାଜ ବିଜ୍ଞାନର ବିକାଶ ଦୃଷ୍ଟିରୁ ବିଶେଷ

କରି ଅହିଂସାତ୍ମକ ଉପାୟରେ ଅନ୍ୟାୟର ପ୍ରତିକାରର ବିକାଶ ଦୃଷ୍ଟିରୁ ଏହି ଲଢ଼େଇର ଅଭିଜ୍ଞତା ଲିପିବଦ୍ଧ ହେବା ଉଚିତ । ଏହା ଏକ ସାମାଜିକ କର୍ତ୍ତବ୍ୟ ।" ତେଣୁ ଏ ଧୃଷ୍ଟତା ।

ମହାବିଷୁବ ସଂକ୍ରାନ୍ତି

୧୩ ଏପ୍ରିଲ୍ ୧୯୭୦

## ପୂର୍ଣ୍ଣ ସ୍ୱରାଜ୍ୟର ସଂକଳ୍ପ

ଆମକୁ କୁହାଯାଇଥିଲା ଯେ କୁଳବୃଦ୍ଧ ଦାଦାଭାଇ ନୌରଜୀ ହିଁ ସର୍ବପ୍ରଥମେ ଭାରତ ଜାତୀୟ କଂଗ୍ରେସର ମଞ୍ଚ ଉପରେ ସ୍ୱରାଜ୍ୟ ଶବ୍ଦ ଉଚ୍ଚାରଣ କରିଥିଲେ । ତାଙ୍କ ଉତ୍ତାରୁ ଲୋକମାନ୍ୟ ତିଲକ ଏ ଦେଶକୁ ଗୋଟିଏ ମନ୍ତ୍ର ଦେଲେ "ସ୍ୱରାଜ୍ୟ ମୋର ଜନ୍ମସିଦ୍ଧ ଅଧିକାର ଏବଂ ମୁଁ ତାହା ହାସଲ କରିବି ।" ତାଙ୍କ ଅନ୍ତେ ଆସିଲା ପ୍ରାୟ ଗୋଟିଏ ଦଶକ ପରେ ୧୯୩୦ ମସିହାର ଜାନୁୟାରୀ ଛବିଶ ତାରିଖ । ପରାଧୀନ ଭାରତର ଏହା ହିଁ ଥିଲା ଶ୍ରେଷ୍ଠ ପୁଣ୍ୟ ତିଥି । ଆସମୁଦ୍ର ହିମାଚଳ ଭାରତବର୍ଷ ସେହିଦିନ ପୂର୍ଣ୍ଣ ସ୍ୱରାଜ୍ୟ ହାସଲ କରିବା ପାଇଁ ସଂକଳ୍ପ ଗ୍ରହଣ କରିଥିଲା । ଜାତି ଜୀବନରେ ଜାନୁଆରୀ ଛବିଶ ତାରିଖର ସଂକଳ୍ପ ଯେଉଁ ଉନ୍ମାଦନା, ନବ ଚେତନା, ନବ ସ୍ପନ୍ଦନ ଆଣିଦେଲା ତାହା ଆଜି ସୁଦ୍ଧା ସ୍ମୃତିପଟରେ ସମୁଜ୍ଜ୍ୱଳ ହୋଇ ରହିଛି ।

କଟକ ସହରର କାଠଗଡ଼ା ସାହିରେ ଥିଲା ଲୋକସେବା ପ୍ରେସ୍ । ତାହାରି ମୁକ୍ତାଙ୍ଗନ ହୋଇଥିଲା ପୂର୍ଣ୍ଣ ସ୍ୱରାଜ୍ୟ ଦିବସର ଜାତୀୟ ପତାକା ଉତ୍ତୋଳନ ସମାରୋହର ପୀଠସ୍ଥାନ । ପରାଧୀନ ଭାରତରେ ୟୁନିୟନ୍ ଜ୍ୟାକ୍ ହିଁ ସର୍ବତ୍ର ଜାତୀୟ ପତାକାର ସ୍ଥାନ ଗ୍ରହଣ କରିଥିଲା । ନିଜର ସ୍ୱତନ୍ତ୍ର ଜାତୀୟ ପତାକା ଉଡ଼ାଇବାର ଅଧିକାର ଭାରତୀୟ ମାନଙ୍କର ନ ଥିଲା ।

ନିର୍ଦ୍ଧାରିତ ଶୁଭକ୍ଷଣ ଆସିବା ପର୍ଯ୍ୟନ୍ତ ଜାତୀୟ କବି ବୀରକିଶୋର ଦାସଙ୍କ ଦ୍ୱାରା ରଚିତ ଜାତୀୟ ସଂଗୀତ ଚାରଣ କବି ବାଞ୍ଛାନିଧି ମହାନ୍ତି ଗୋଟିକ ପରେ ଗୋଟିଏ ବୋଲି ଯାଉଥାନ୍ତି —

"ଦେଖ ପଞ୍ଚାୟତ ଆଦେଶ ଦେଉଛି ଆଜି ଶୁଭଦିନ ଭାଇ,
ସ୍ୱାଧୀନତା ଯୁଦ୍ଧ ଆରମ୍ଭ ଆଜିଠୁଁ ଚାରିଆଡ଼େ ଦେଖ ଚାହିଁ ।"

ପତାକା ଉତ୍ତୋଳନର ଅବ୍ୟବହିତ ପୂର୍ବରୁ ବାଞ୍ଛାନିଧି ବାବୁ ସ୍ୱରଚିତ ଜାତୀୟ ସଂଗୀତ ବୋଲିଲେ—

ଉଡ଼ି ଖେଳରେ ଜାତି ପତାକା ଆଜି
ଶୁଭବେଳରେ ତୋର ସ୍ୱରୂପ ସାଜି ।
ଉଡ଼ ପବନେ ବୁଲି ସୁମନ ମନେ
ଦେଖ ଜାତି ଗୌରବ ଗରବ ଗାନେ
ଜାତୀୟ ଗୌରବ ସ୍ୱାଧୀନ ସୌରଭ
ପାଲଟେ ସମୀରଣ ତୋ ଅଙ୍ଗେ ବାଜି
କେଡ଼େ ସୁନ୍ଦର ତୋର ମୂରତି ଆଭା
କେଡ଼େ ମଧୁର ସ୍ୱାଧୀନ ଶୋଭା
ସ୍ୱାଧୀନ ସ୍ୱାଧୀନ ସଂଗୀତ ଗାଉଛୁ ତୁ
ଫରଫର ଉଡ଼ି ନୀଳ ଗଗନେ ରାଜି
ତିନି ରଙ୍ଗରେ ତୋର ବରଣ ସାଜେ
ତହିଁ ସଂଗରେ ଚାରୁ ଚରଖା ରାଜେ
ଜାତୀୟ ଏକତା ପୀରତି ମୂରତି
ନବଯୁଗେ ନବତେଜେ ଉଠୁ ବିରାଜି ।

ପତାକା ଉତ୍ତୋଳନ ଓ ଭାଷଣ ପରେ ବାଞ୍ଛାନିଧି ବାବୁ ବୋଲିଲେ ତାଙ୍କର ପ୍ରଖ୍ୟାତ ଜାତୀୟ ସଂଗୀତ—

ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ
ଗାଏ ସାଗର ଭୂଧର ଅମ୍ବର ଚୁମ୍ବିତ
ଭାଲ ହିମାଚଳ ଗିରିବର କମ୍ପିତ
ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ
କମ୍ପେ ବିନ୍ଧ୍ୟଗିରି କାନନ କୁଞ୍ଜେ

ଛନ୍ଦେ ନିର୍ଝରିଣୀ ପ୍ରପାତ ପୁଞ୍ଜେ
ଚପଳା ଚମକେ ଗଗନେ ପୁଲକେ
ନୀରଦ ବିଲୀନ ରେ
ପାବନୀ ଗଙ୍ଗା ଯମୁନା ସଂଗେ
ସିନ୍ଧୁ ମହାନଦୀ କାବେରୀ ରଂଗେ
ପ୍ଲାବିତ ଭୁବନ ସୁରଧୁନୀ ଶୋଭନ
ସୂଚିତ ସ୍ୱାଧୀନ ରେ
ବଙ୍ଗୋପସାଗର ଉତ୍କଳ ଦେଶେ
ନର୍ତ୍ତନ କୀର୍ତ୍ତନ ଉନମତ୍ତ ବେଶେ
ଅଙ୍ଗେ ଅଙ୍ଗେ ତରଙ୍ଗ ରଙ୍ଗେ
ସୂଚିତ ସ୍ୱାଧୀନ ରେ
ଜାତୀୟ କେତନ ଉଡ଼ଇ କି ଗର୍ବ
ଅରିକୁଳ ଦର୍ପ କରିବ ସେ ଖର୍ବ
ସେ ତ ଜାତୀୟ ଗୌରବ ଜାତୀୟ ସମ୍ପଦ
ଜାତୀୟ ଜୀବନରେ ।

ସେହି ସମାରୋହରେ ଯୋଗ ଦେଇଥିବା ଏକମାତ୍ର ମହିଳା ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ସହିତ ମୁଁ ସେଠାରେ ଉପସ୍ଥିତ ଥିଲି । ସମାରୋହ ସମାପ୍ତ ହେବା ପୂର୍ବରୁ ମାଳତୀ ଦେବୀ ଉଦ୍‌ବୋଧକ ସଂଗୀତ ଗାଇଲେ–

ହବେ ଜୟ ହବେ ଜୟ ହବେ ଜୟ ରେ
ଓହେ ବୀର ହେ ନିର୍ଭୟ
ଜୟୀ ପ୍ରାଣ ଚିରପ୍ରାଣ ଜୟୀରେ ଆନନ୍ଦ ଗାନ
ଜୟୀ ପ୍ରେମ ଜୟୀ କ୍ଷେମ
ଜୟୀ ଜ୍ୟୋତିର୍ମୟ ରେ ।

ଉପରଓଳିକୁ ଥିଲା ଅସଲ କାର୍ଯ୍ୟକ୍ରମ– ପୂର୍ଣ୍ଣ ସ୍ୱରାଜ୍ୟର ସଂକଳ୍ପ ପାଠ । କଟକ ମ୍ୟୁନିସିପାଲିଟି ପଡ଼ିଆରେ ଏହି ସଂକଳ୍ପ ଗ୍ରହଣ ସଭା ହେବା ସ୍ଥିର ହୋଇଥିଲା ।

ସରକାର ଶେଷ ମୁହୂର୍ତ୍ତରେ ସେଠାରେ ସଭା ହୋଇ ପାରିବ ନାହିଁ ବୋଲି ଘୋଷଣା କଲେ । ଏହି ସଭା ନିଷିଦ୍ଧ ହେବା ଖବର ତୁଣ୍ଡବାଇଦରେ ଚାହୁଁ ଚାହୁଁ ସହର ସାରା ଖେଳେଇ ହୋଇଗଲା । ୰ଗୋକୁଳାନନ୍ଦ ଚୌଧୁରୀଙ୍କ କାଠଯୋଡ଼ି ନଦୀକୂଳ ବାସଭବନ ହତାରେ ଏହି ସଭା ହେବ ସ୍ଥିର ହେଲା ବେଳକୁ ହଜାର ହଜାର ସଂଖ୍ୟାରେ ଲୋକ ଜମା ହୋଇଗଲେ । ଚୌଧୁରୀ ଘର ହତା ଉଛୁଳି ହତା ପାଚେରୀ, କାଠଯୋଡ଼ି ବନ୍ଧ, ସନ୍‌ସାଇନ୍ ଫିଲଡ୍‌ରେ ମଣିଷ ଛାଇ ହୋଇଗଲେ । ୧୯୩୦ରେ କଟକରେ ଡାକବାଜି ଯନ୍ତର ବ୍ୟବହାର ପ୍ରାୟ ନ ଥିଲା । ବାଞ୍ଛାନିଧି ବାବୁ ଗୋଟିକ ପରେ ଗୋଟିଏ ଜାତୀୟ ସଂଗୀତ ବୋଲି ଲୋକଙ୍କୁ ମତେଇ ରଖିଥାଆନ୍ତି । ସେ ତ ଗୀତ ନୁହେଁ – ସ୍ୱାଧୀନତା ଆନ୍ଦୋଳନ ଇତିହାସର ଗୀତ ପ୍ରବନ୍ଧେ ଭାଗବତ । ଆଜି ମଧ୍ୟ କାନରେ ବାଜୁଛି, ବାଞ୍ଛାନିଧି ବାବୁ ବୋଲୁଛନ୍ତି—

"ସାଇମନ୍ ରିପୋର୍ଟ ଲେଖା, ସରିଗଲା ହେଲା ବଜାରେ ବିକା ।"

ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ନେତୃତ୍ୱରେ ଶ୍ରୀ ରାଜକୃଷ୍ଣ ବୋଷଙ୍କ ଉଦ୍ୟମରେ ସୁରେନ୍ଦ୍ରନାଥ ପଟ୍ଟନାୟକ, ସୁଶୀଳ କୁମାର ଘୋଷଙ୍କ ସଙ୍ଗେ ମୁଁ ମଧ୍ୟ ବୋଲିଲି–

ମୋରା ଭୟ କରବୋ ନା ଭୟ କରବୋ ନା
ଦୁବେଲା ମରାର ଆଗେ ମରବୋ ନା
ଭାଇ ମରବୋ ନା
ଶକ୍ତ ଯା ତାଇ ସାଧତେ ହବେ
ମାଥା ତୁଲେ ରଇବ ଭବେ
ବିପଦ ଯଦି ଏସେ ପଡ଼େ
ଘରେର୍ କୋନେ ସରବୋ ନା ।

ଠିକ୍ ସଂକଳ୍ପ ପାଠ ପୂର୍ବରୁ ବୋଲା ହେଲା ଜାତୀୟ କବିଙ୍କର ସେହି ଗୀତଟି ଯେଉଁ ଗୀତ ପାଇଁ ସେ ୧୨୪ (କ) ଦଫାରେ ଗିରଫ ହୋଇ ଦଣ୍ଡିତ ହୋଇଥିଲେ–

ବିଦ୍ରୋହୀ ଉଠ ସୈନିକ ଉଠ
ରଣନାଶୀ ରଣ ସେବକ
ମୁକ୍ତ କଣ୍ଠେ ଗାଅ ହେ ସର୍ବେ
ଆମ୍ଭେ ସ୍ୱାଧୀନ ଯୁବକ

ଭଗତ ସିଂହ ଜାଗ୍ରତ ଆଜି
ଅଳସ ତନ୍ଦ୍ରା ଯାଇଅଛି ଭାଜି
ଅତ୍ୟାଚାରୀର ମାନସ ରାଜ୍ୟେ
ଆଣିଅଛି ଭୀମ ଚମକ ।

କଟକରେ ସମ୍ପୂର୍ଣ୍ଣ ସ୍ୱରାଜ୍ୟର ସଂକଳ୍ପ ପାଠ କରିଥିଲେ ଗୋପବନ୍ଧୁ ଚୌଧୁରୀ । ବ୍ରିଟିଶ୍ କେଶରୀଙ୍କର ଜଳ, ସ୍ଥଳ ଓ ଆକାଶ ବାହିନୀର ପ୍ରବଳ ପରାକ୍ରମ ସମ୍ବନ୍ଧରେ ଅବହିତ ଥାଇ ନିରସ୍ତ୍ର କଟକବାସୀ ଅସ୍ତୋନ୍ମୁଖ ସୂର୍ଯ୍ୟ ନାରାୟଣଙ୍କ ସମକ୍ଷରେ ସେ ସଂକଳ୍ପକୁ ଦୋହରେଇ ବିଦ୍ରୋହ ଘୋଷଣା କରିଥିଲେ ।

"ଆମ୍ଭମାନଙ୍କର ବିଶ୍ୱାସ ଭାରତ ସ୍ୱାଧୀନ ହେବ, ନିଜ ପରିଶ୍ରମର ଫଳ ଭୋଗ କରିବା ଏବଂ ଜୀବନର ଆବଶ୍ୟକ ବସ୍ତୁ ହାସଲ କରିବାର ଅଧିକାର ଭାରତୀୟ ଜନସାଧାରଣଙ୍କର ଅଛି । ପୁଣି ଆମ୍ଭେମାନେ ବିଶ୍ୱାସ କରୁ ଯେ ଯଦି କୌଣସି ସରକାର ଜନସାଧାରଣଙ୍କୁ ଏହି ଅଧିକାରରୁ ବଞ୍ଚିତ କରୁଥାଏ ବା ସେମାନଙ୍କ ଉପରେ ଅତ୍ୟାଚାର କରୁଥାଏ, ତେବେ ସେ ସରକାରକୁ ବଦଳାଇ ଦେବାର ବା ମୂଳପୋଛ କରିଦେବାର ଅଧିକାର ମଧ୍ୟ ଜନସାଧାରଣଙ୍କର ଅଛି ।

ବ୍ରିଟିଶ୍ ସରକାର ଭାରତୀୟମାନଙ୍କୁ ଯେ କେବଳ ଏହି ଅଧିକାରରୁ ବଞ୍ଚିତ କରିଛି ସେତିକି ନୁହେଁ ଅଧିକନ୍ତୁ ଜନସାଧାରଣଙ୍କୁ ଶୋଷଣ କରି ସେହି ଶୋଷଣ ଉପରେ ନିଜକୁ ପ୍ରତିଷ୍ଠିତ କରିଛି ଏବଂ ଆର୍ଥିକ, ରାଜନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ଭାରତବର୍ଷକୁ ଉଜାଡ଼ି ଦେଇଛି ।

ଆର୍ଥିକ ଦୃଷ୍ଟିରୁ ଆମ ଦେଶବାସୀଙ୍କ ଠାରୁ ସେମାନଙ୍କ ଆୟର ଅନୁପାତରେ ଅତ୍ୟଧିକ ଖଜଣା ନିଆଯାଉଛି । ଆମର ହାରାହାରି ଦୈନିକ ଆୟ ସାତ ପଇସା । ଆମେ ଯେଉଁ ଖଜଣା ଦେଉଛୁ ସେଥିରୁ ଶତକଡ଼ା କୋଡ଼ିଏ ଭାଗ ଚାଷୀଙ୍କଠାରୁ ନିଆଯାଉଛି ଏବଂ ଶତକଡ଼ା ତିନିଭାଗ ଲୁଣ ଟିକସରୁ ଆଦାୟ ହେଉଛି । ଫଳରେ ପ୍ରତ୍ୟେକ ଗରିବ ପ୍ରଜାକୁ ଏ ଟିକସ ଭାର ମୁଣ୍ଡାଇବାକୁ ପଡୁଛି ।

ଗ୍ରାମ୍ୟଶିଳ୍ପକୁ ଧ୍ୱଂସ କରି ଦିଆଯିବା ଫଳରେ ଚାଷୀ ବର୍ଷରେ ଚାରିମାସ ବେକାର ରହୁଛି । ହସ୍ତଶିଳ୍ପ ଅଭାବରେ ତା'ର ବୁଦ୍ଧି କୁଣ୍ଠିତ ହୋଇଯାଉଛି । ଶୁଳ୍କ ଓ ମୁଦ୍ରାନୀତିର ଯେଉଁ ବ୍ୟବସ୍ଥା ହୋଇଛି, ତାହା ଚାଷୀକୁ ଆହୁରି କ୍ଷତିଗ୍ରସ୍ତ କରୁଛି । ଶୁଳ୍କ ଆଇନ୍‌ରେ

ବ୍ରିଟିଶ୍ କଳମାଲିକଙ୍କ ପ୍ରତି ପକ୍ଷପାତ କରାଯାଇଛି । ଶାସନ କଳରେ ଅପବ୍ୟୟ ପୂରି ରହିଛି । ବିନିମୟ ପଦ୍ଧତିରେ ମନମୁଖୀ କାରବାର ଚାଲିଛି, ଯାହା ଫଳରେ କୋଟି କୋଟି ଟଙ୍କା ବିଦେଶକୁ ଚାଲିଯାଉଛି ।

ବ୍ରିଟିଶ୍ ଅମଳରେ ରାଜନୀତି କ୍ଷେତ୍ରରେ ଭାରତର ଯେଉଁ ପତନ ହୋଇଛି, ତାହା ଅତୀତରେ କେବେହେଁ ହୋଇ ନ ଥିଲା । ଶାସନ ସଂସ୍କାର ଦ୍ୱାରା ଜନସାଧାରଣଙ୍କୁ ପ୍ରକୃତ ଶାସନ କ୍ଷମତା ମିଳିନାହିଁ । ଆମ ମଧ୍ୟରେ ଶୀର୍ଷସ୍ଥାନୀୟ ବ୍ୟକ୍ତିଙ୍କୁ ସୁଦ୍ଧା ବ୍ରିଟିଶ୍ ଶାସକଙ୍କ ଆଗରେ ମୁଣ୍ଡ ନୁଆଁଇବାକୁ ପଡୁଛି । ନିଜର ମତ ବ୍ୟକ୍ତ କରିବାର ବା ସ୍ୱାଧୀନ ଭାବରେ ପରସ୍ପର ସହିତ ମିଶିବାର ସ୍ୱାଧୀନତା ସୁଦ୍ଧା ଆମକୁ ଦିଆଯାଉନାହିଁ । ଆମର ରାଜ୍ୟ ଶାସନ କରିବା ପ୍ରତିଭାକୁ ନଷ୍ଟ କରି ଦିଆଯାଇଛି ।

ଆମ ସଂସ୍କୃତିକୁ ଲୋପ କରିଦେବା ଉଦ୍ଦେଶ୍ୟରେ ଇଂରାଜୀ ଶିକ୍ଷା ପଦ୍ଧତି ଆମକୁ ଆମ ପ୍ରକୃତ ଅବସ୍ଥାରୁ ଦୋହଲାଇ ଦେବାକୁ ଉଦ୍ୟମ ଚଳାଇଛି ଏବଂ ତାର ଦାସତ୍ୱ ଶୃଙ୍ଖଳରେ ବାନ୍ଧି ହୋଇ ରହିବା ପାଇଁ ଶିକ୍ଷା ଦେଇଛି ।

ଆମକୁ ନିରସ୍ତ୍ର କରାଯାଇ ଆଧ୍ୟାତ୍ମିକ ଦୃଷ୍ଟିରୁ ନପୁଂସକ କରି ଦିଆଯାଇଛି ଏବଂ ଆମ ଦେଶକୁ ଅଧିକାର କରି ବସିଥିବା ବିଦେଶୀ ସୈନ୍ୟବାହିନୀକୁ ଦେଖାଇ ଆମକୁ ଏହା ହିଁ ଜଣାଇ ଦିଆଯାଉଛି ଯେ ଆମେ ଆମ ଘର ବା ଦେଶକୁ ରକ୍ଷା କରିବାକୁ ସମର୍ଥ ନୋହୁଁ ।

"ଆମ୍ଭମାନଙ୍କର ବିଶ୍ୱାସ, ଆମେ ଯଦି ଏହି ଅମଣିଷ ସରକାର ସହିତ ସହଯୋଗ ନ କରିବୁ ଏବଂ ଏ ସରକାରକୁ ଖଜଣା ଟିକସ ଦେବା ବନ୍ଦ କରିଦେବୁ ଓ ଆମକୁ ଯେତେ ଉତ୍ତେଜିତ କରାଗଲେ ସୁଦ୍ଧା ହିଂସା କରିବା ପାଇଁ ଆମେ ଉତ୍ତେଜିତ ନ ହେବୁ ତେବେ ଏ ସରକାର ନିଶ୍ଚୟ ହଟିଯିବ ।"

ନରସମୂହ ରୂପରେ ନାରାୟଣଙ୍କର ଏହି ସଂକଳ୍ପ କାଠଯୋଡ଼ି ପଥର ବନ୍ଧରେ ପ୍ରତିଧ୍ୱନିତ ହୋଇ ଅନ୍ତରୀକ୍ଷକୁ ଆଚ୍ଛନ୍ନ କରିଦେଲା ।

- ଦୁଇ -

# ପୂର୍ବ ପ୍ରସ୍ତୁତି

ଧରି ବସିଲେ ପୂର୍ବ ପ୍ରସ୍ତୁତି ଆରମ୍ଭ ହୋଇଥିଲା ପଲାଶୀର ଆମ୍ବ ତୋଟାରୁ । ଅସରାଏ ଅଦିନ ମେଘ ମୁର୍ଶୀଦାବାଦର ନବାବଙ୍କ ବାରୁଦ ଭଣ୍ଡାରକୁ ତିନ୍ତେଇ ଦେଇ ଯେ ଭାରତର ଭାଗ୍ୟକୁ ବଦଳେଇଦେଇଥିଲା, ସେ ଇତିହାସ କିଏ ନ ଜାଣେ ? ପଲାଶୀ ଯୁଦ୍ଧ ପରେ ଖୋର୍ଦ୍ଧାର "ପାଇକ ବିଦ୍ରୋହ, ସିପାହୀ ବିଦ୍ରୋହ, ବଙ୍ଗଭଙ୍ଗ ଓ ସ୍ୱଦେଶୀ ଆନ୍ଦୋଳନ, ଖୁଦୀରାମ ପ୍ରମୁଖଙ୍କ ଆତ୍ମବଳିଦାନ ଦିଲ୍ଲୀର ଚାନ୍ଦିନୀଚୌକ୍‌ରେ ବଡ଼ଲାଟଙ୍କ ଉପରେ ବୋମା ନିକ୍ଷେପ, ଅରବିନ୍ଦଙ୍କ ଅଗ୍ନିଯୁଗ, ଆନିବେଶାନ୍ତଙ୍କ ଇଣ୍ଡିଆନ୍ ହୋମ୍‌ରୁଲ୍, ରୌଲାଟ୍ ଆକ୍ଟ ସତ୍ୟାଗ୍ରହ, ଜାଲିଆନ୍‌ୱାଲା ସ୍ୱରାଜ-ଖିଲାଫତ୍ ସତ୍ୟାଗ୍ରହ, ଅସହଯୋଗ ଆନ୍ଦୋଳନ ଓ ପଞ୍ଚବର୍ଜନ, ଓଡ଼ିଶାରେ ଦାସେ ଆପଣେଙ୍କ କୀର୍ତ୍ତନ, "କାଉନସିଲ୍‌ରେ ନାହିଁଟି ମାନ, କାଉନସିଲକୁ କର ବର୍ଜନ" ପୁଣି ସ୍ୱରାଜ୍ୟ ପାର୍ଟି ଗଠନ, ନୋ ଚେଞ୍ଜର୍, କୋ ଚେଞ୍ଜର୍, ପ୍ରୋ ଚେଞ୍ଜର୍ ପାଲା, ବର୍‌ଦୌଲୀରେ ଖଜଣା ବନ୍ଦ ସତ୍ୟାଗ୍ରହର ବିଜୟ, ସାଇମନ କମିଶନ୍ ବର୍ଜନ ଓ ଲାଠି ପ୍ରହାର ହେତୁ ଲାଲା ଲାଜପତ୍ ରାୟଙ୍କ ମୃତ୍ୟୁ ଆଦି ହେଉଛି ଆମର କାନଶୁଣା କଥା । ଆଖିରେ ଦେଖିବା ଅଙ୍ଗେ ଲିଭେଇବା ଆରମ୍ଭ ହେଲା ୧୯୨୮ ମସିହା ଡିସେମ୍ବର ମାସ କଲିକତା କଂଗ୍ରେସ ଅଧିବେଶନରୁ । ଅବଶ୍ୟ ୧୯୨୨ ମସିହାରେ ଗୟାର କଂଗ୍ରେସ ଅଧିବେଶନକୁ ଦେଖିବା ସୁଯୋଗ ମିଳିଥିଲା ଏବଂ ଜାତୀୟ ସପ୍ତାହ ଉପଲକ୍ଷେ ହେଉଥିବା ସାଧାରଣ ସଭାରେ ଯୋଗ ଦେବା ଫଳରେ ଭାରତବର୍ଷରେ ସ୍ୱାଧୀନତା ହାସଲ କରିବା ପାଇଁ ଯେ ଏକ ବିରାଟ ଆୟୋଜନ ଚାଲିଛି, ବାଳୁତ ବୁଦ୍ଧିରେ ସେ ବିଷୟରେ ଗୋଟାଏ ଧାରଣା ଜନ୍ମିଥିଲା । ମାତ୍ର କଲିକତା କଂଗ୍ରେସ ଅଧିବେଶନରେ ସୁଭାଷ ଚନ୍ଦ୍ର ବୋଷଙ୍କ ଦ୍ୱାରା ସୁସଂଗଠିତ ବିରାଟ ସ୍ୱେଚ୍ଛାସେବକ ବାହିନୀର କାର୍ଯ୍ୟକଳାପ ମନରେ ଗୋଟାଏ ଚମକ ଆଣିଦେଲା । ଅର୍ଦ୍ଧ ଶତାବ୍ଦୀର ଅଧିକ କାଳ ପୂର୍ବର କଲିକତା ସହରରେ ଘୋଡ଼ସବାର ସମେତ ଦୁଇହଜାର ସ୍ୱେଚ୍ଛାସେବକ ଓ ପାଞ୍ଚଶହ ସ୍ୱେଚ୍ଛାସେବିକା ସାମରିକ ପରିଚ୍ଛଦରେ ସାମରିକ ଅନୁଶାସନ ରକ୍ଷା କରି ଯେତେବେଳେ ସେହି ଅଧିବେଶନରେ ସଭାପତି ପଣ୍ଡିତ ମୋତିଲାଲ ନେହେରୁଙ୍କୁ ସାମରିକ କାଇଦାରେ ସମ୍ମାନ ପ୍ରଦର୍ଶନ କଲେ, ସମଗ୍ର ଭାରତବର୍ଷ ଆଶ୍ଚର୍ଯ୍ୟ ଚକିତ ହୋଇଗଲା । ଅଧିବେଶନ ନିମନ୍ତେ

ଗଠିତ ହୋଇଥିବା ଅଭ୍ୟର୍ଥନା ସମିତି ସୁଭାଷ ବାବୁଙ୍କୁ ଜେନେରାଲ କମାଣ୍ଡିଂ (ଅଫିସର) ପଦରେ ନିଯୁକ୍ତ କରିଥିଲେ । ସୈନ୍ୟ ବିଭାଗର ଅବସରପ୍ରାପ୍ତ ଅଫିସରମାନଙ୍କ ସାହାଯ୍ୟରେ ସୁଭାଷବାବୁ ଏହି ସ୍ୱେଚ୍ଛାସେବକ ବାହିନୀକୁ ତାଲିମ ଦେଇଥିଲେ । ଏହି ସଂଗଠନ ହିଁ ପରବର୍ତ୍ତୀ କାଳରେ ବେଙ୍ଗଲ୍ ଭଲେଣ୍ଟିଅର୍ସ (ବି.ଭି.) ନାମରେ ଖ୍ୟାତିଲାଭ କଲା ଏବଂ ଚଟ୍ଟଗ୍ରାମ-ଅସ୍ତ୍ରାଗାର ଲୁଣ୍ଠନ ଠାରୁ ଆରମ୍ଭ କରି ଲେବଂ ଘୋଡ଼ାଦୌଡ଼ ପଡ଼ିଆ ଯାଏ ବିଭିନ୍ନ ସ୍ଥାନରେ ବ୍ରିଟିଶ୍ ସରକାରଙ୍କୁ ଅଥୟ କରି ପକାଇଲା ।

ବ୍ରିଟିଶ୍ ସରକାରଙ୍କ ନିକଟରେ ତୁରନ୍ତ ପୂର୍ଣ୍ଣ ସ୍ୱରାଜ୍ୟ ଦାବୀ କରାଯିବ କି ଔପନିବେଶିକ ସ୍ୱାୟତ୍ତଶାସନ ଦାବୀ କରାଯାଇ ସରକାରଙ୍କୁ ଏକବର୍ଷ କଣ୍ଟ ଦିଆଯିବ, ଏହା ହିଁ ଥିଲା କଲିକତା ଅଧିବେଶନର ମୁଖ୍ୟ ବିଚାର୍ଯ୍ୟ ବିଷୟ । ୧୯୨୮ ମସିହା ଡିସେମ୍ବର ଏକତିରିଶ ତାରିଖ ରାତି ବାରଟା ପର୍ଯ୍ୟନ୍ତ ଅଧିବେଶନରେ ଏହି ପ୍ରସ୍ତାବ ଉପରେ ଆଲୋଚନା ହୋଇ ଶେଷରେ ଭୋଟ୍ ନିଆଗଲା ଏବଂ ଗାନ୍ଧିଜୀ ଯେ ଔପନିବେଶିକ ସ୍ୱାୟତ୍ତଶାସନ ଦାବୀ କରି ସରକାରଙ୍କୁ ବର୍ଷେ କଣ୍ଟ ଦେବା ପ୍ରସ୍ତାବ ଦେଇଥିଲେ, ସେହି ପ୍ରସ୍ତାବଟି ବହୁ ମତରେ ଗୃହୀତ ହେଲା । ଏହି ପ୍ରସ୍ତାବ ଗୃହୀତ ହେବା ପରେ ଗାନ୍ଧିଜୀ ଘୋଷଣା କଲେ ଯେ ୧୯୨୯ ମସିହା ଡ଼ିସେମ୍ବର ଏକ ତାରିଖ ସୁଦ୍ଧା ଭାରତକୁ ଔପନିବେଶିକ ସ୍ୱାୟତ୍ତଶାସନ ନ ମିଳିଲେ ମୁଁ ପୂର୍ଣ୍ଣ ସ୍ୱରାଜ୍ୟର ଦାବୀ ଘୋଷଣା କରିବି ।

କଲିକତା କଂଗ୍ରେସ ଅଧିବେଶନରେ ଆଉ ଗୋଟିଏ ଆକର୍ଷଣୀୟ ବିଷୟ ଥିଲା ଜାତୀୟ ସଂଗୀତ । ସରଳା ଦେବୀ ଚୌଧୁରାଣୀଙ୍କ ଦ୍ୱାରା ରଚିତ ଜାତୀୟ ସଂଗୀତ ଆଜି ସୁଦ୍ଧା କାନରେ ଗୁଞ୍ଜରି ଉଠୁଛି—

ଆଲ୍ଲା ହୋ ଆକ୍‌ବର ହିନ୍ଦୁସ୍ତାନ
ହରେ ମୁରାରେ ହିନ୍ଦୁସ୍ତାନ
ଅଲେଖ ନିରଞ୍ଜନ ହିନ୍ଦୁସ୍ତାନ
ନମୋ ହିନ୍ଦୁସ୍ତାନ ।

ଗୟା କଂଗ୍ରେସକୁ ମାତ୍ର ତିନିଜଣ ମହିଳା ପ୍ରତିନିଧି ଯାଇଥିବା ସ୍ଥଳେ କଲିକତା କଂଗ୍ରେସରେ ସର୍ବଶ୍ରୀ ଜାହ୍ନବୀ ଦେବୀ, ସରୋଜିନୀ ଚୌଧୁରୀ, ସରଳା ଦେବୀ, ରମା ଦେବୀ, କୋକିଳ ଦେବୀ, ରସାମଣି ଦେବୀ ପ୍ରମୁଖ ପ୍ରତିନିଧିତ୍ୱ କରିଥିଲେ ।

କଲିକତା କଂଗ୍ରେସ ଅଧିବେଶନ ପରେ ଆମେ ଅଳକାଶ୍ରମରେ ରହି ସେଠା କାମ ସହିତ ଘନିଷ୍ଠ ସମ୍ପର୍କରେ ଆସିଲୁ । ୧୯୨୧ରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାକୁ ଯେଉଁ ଛାତ୍ର ଓ ଶିକ୍ଷକମାନେ ସରକାରୀ ଶିକ୍ଷାନୁଷ୍ଠାନ ଛାଡ଼ିଥିଲେ, ସେମାନେ କଟକ ଜିଲ୍ଲା ଜଗତ୍‌ସିଂହପୁରରେ ଅଳକାଶ୍ରମ ନାମ ଦେଇ ଗୋଟିଏ ଜାତୀୟ ବିଦ୍ୟାଳୟ ସ୍ଥାପନ କରିଥିଲେ । ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ, ବାବାଜୀ ରାମଦାସ, ସର୍ବଶ୍ରୀ ଗୋପବନ୍ଧୁ ଚୌଧୁରୀ, ଭାଗିରଥୀ ମହାପାତ୍ର ପ୍ରମୁଖ ଏ ଅନୁଷ୍ଠାନର ମୁରବୀ ଥିଲେ । ସର୍ବଶ୍ରୀ ନୀଳମଣି ପ୍ରଧାନ, ଗୋକୁଳାନନ୍ଦ ମହାନ୍ତି, ନବକୃଷ୍ଣ ଚୌଧୁରୀ ଆଦି କଲେଜ ଛାଡ଼ିଥିବା ଯୁବକ ଛାତ୍ରମାନେ ଥିଲେ ଏହାର ଶିକ୍ଷକ । ସର୍ବଶ୍ରୀ ଉଦୟନାଥ ଷଡ଼ଙ୍ଗୀ, ରାମକୃଷ୍ଣ ନନ୍ଦ, ବିଶ୍ୱନାଥ ପରିଡ଼ା, କୈଳାସ ମହାନ୍ତି, ନଦିୟାବିହାରୀ ମହାନ୍ତି, ବଳଦେବ ଦାସ, ଅକ୍ରୁରଚରଣ ଦାସ ଆଦି ବହୁସଂଖ୍ୟକ ସ୍କୁଲ ଛାତ୍ର ଏଠାରେ ରହି ପାଠପଢ଼ା ସଙ୍ଗେ ସୂତାକଟା, ଲୁଗାବୁଣା, ଗାଁରେ ହଇଜା ରୋଗୀ ସେବା, ଗାଁରୁ କୁ-ସଂସ୍କାର ଦୂର କରିବା, ଔଷଧ ବାଣ୍ଟିବା ଆଦି କାମ କରୁଥିଲେ । 'ଅଳକା' ନାମରେ ହାତ ଲେଖା ମାସିକ ପତ୍ରିକା ଏହି ଅନୁଷ୍ଠାନ ପକ୍ଷରୁ ଛାତ୍ର ଓ ଶିକ୍ଷକମାନେ ବାହାର କରୁଥିଲେ । ଅନ୍ନଦା ଶଙ୍କର ରାୟ, ସରଳା ଦେବୀ ପ୍ରଭୃତିଙ୍କ ରଚନା ମଧ୍ୟ 'ଅଳକା'ରେ ବାହାରୁଥିଲା । ଅଳକାଶ୍ରମ ଚାଲିବାର କିଛି ବର୍ଷ ପରେ ବାବାଜୀ ଆଧ୍ୟାତ୍ମିକ ସାଧନା କରିବା ପାଇଁ ହୃଷିକେଶ ଗଲେ ଏବଂ ଅଧିକାଂଶ ଛାତ୍ର ଓ ଶିକ୍ଷକ ବିଭିନ୍ନ କାମରେ ଲାଗିବାରୁ ଏହି ଶିକ୍ଷାନୁଷ୍ଠାନରେ ପାଠପଢ଼ା କଥାଟି ବନ୍ଦ ହେଲା । ବିରାଟ ଆମ୍ବ ତୋଟା ଭିତରେ ମାଟି କାନ୍ଥ, ଛଣ ଛପର ଘର । ଆମେ ଗଲାବେଳକୁ ସେଠାରେ ଖଦୀସଂଘ ପକ୍ଷରୁ ଖଦୀ କାମ ଚାଲିଥାଏ ଅର୍ଥାତ୍ ଗାଁର ସୂତାକଟାଳୀମାନେ ଅଳକାଶ୍ରମରୁ ତୁଳା ନେଇ ସୂତାକାଟି ଆଣି ଦେଇ ମଜୁରୀ ନେଇଥାନ୍ତି । ତନ୍ତୀମାନେ ସେ ସୂତା ନେଇ ଲୁଗା ବୁଣିଦେଇ ମଜୁରୀ ନିଅନ୍ତି । ରଣହତା ଗାଁରେ ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିହାରୀ ଗ୍ରାମ ସଂଗଠନ କାମ କରୁଥାନ୍ତି । ଗାଁରେ କଂଗ୍ରେସ-ମେମ୍ବର କାମ ଚାଲିଥାଏ । ରମା ଦେବୀ ଅଳକାଶ୍ରମର ଆଖପାଖ ବେଣ୍ଣପୁର, ଯଶୋବନ୍ତପୁର ଆଦି ଗାଁକୁ ଖରାବେଳିଆ ଯାଇ ସ୍ତ୍ରୀ ଲୋକମାନଙ୍କୁ ବୁଝାଇ କଂଗ୍ରେସ-ମେମ୍ବର କରନ୍ତି । କଂଗ୍ରେସ-ମେମ୍ବର ହେବା ଅର୍ଥ ହେଉଛି—ଖଣ୍ଡିଏ ରସିଦ ବହିରେ "ମୁଁ ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଂଗତ ଉପାୟରେ ସ୍ୱରାଜ ପ୍ରାପ୍ତିରେ ବିଶ୍ୱାସ କରେ" ଏହି ବାକ୍ୟଟି ଲେଖାଥାଏ । ଚାରିଅଣା ପଇସା ଦେଇ ସେହି ରସିଦ ଖାତାରେ ଯେଉଁମାନେ ନାମ ସ୍ୱାକ୍ଷର କରନ୍ତି ସେମାନେ କଂଗ୍ରେସ-ମେମ୍ବର ବୋଲାନ୍ତି । ଅର୍ଥାତ୍ ଯେ ଏହି ଲକ୍ଷ୍ୟକୁ ସ୍ୱୀକାର କରନ୍ତି ସେ ସ୍ୱରାଜ୍ୟମେଳିରେ ଯୋଗ ଦିଅନ୍ତି ।

ଏହିପରି ଆୟୋଜନ ମଧ୍ୟରେ ୧୯୨୯ ମସିହା ଡ଼ିସେମ୍ବର ଏକତ୍ରିଶ ତାରିଖ ଆସି ଯିବାରୁ ବ୍ରିଟିଶ ସରକାରଙ୍କୁ ଦିଆଯାଇଥିବା କଣ୍ଟ ପୂରିଗଲା । ସେହି ଏକତ୍ରିଶ ତାରିଖ ଦିନ ଲାହୋର କଂଗ୍ରେସ ଅଧିବେଶନରେ ପଞ୍ଜାବର ହାଡ଼ଭଙ୍ଗା ଶୀତରେ ରବି ନଦୀ କୂଳରେ ରାତି ବାରଟା ବେଳେ ପତାକା ଉତ୍ତୋଳନ କରି ପୂର୍ଣ୍ଣ ସ୍ୱରାଜ୍ୟ ହାସଲ କରିବା ପାଇଁ ଶପଥ ଗ୍ରହଣ କରାଗଲା । ନିଖିଳ ଭାରତ କଂଗ୍ରେସ କମିଟି ଅହିଂସାତ୍ମକ ପନ୍ଥାରେ ସ୍ୱାଧୀନତା-ଯୁଦ୍ଧ ଚଳାଇବା ଦାୟିତ୍ୱ ଗାନ୍ଧିଜୀଙ୍କ ଉପରେ ଦେଲେ । ପ୍ରତ୍ୟକ୍ଷଦର୍ଶୀ ଆଚାର୍ଯ୍ୟ ହରିହର ଦାସଙ୍କ ମୁହଁରୁ ସେ ରାତିର ଘଟଣାମାନ ଶୁଣି ଦେହ ଉଲୁସି ଉଠୁଥାଏ ।

୧୯୩୦ ମସିହା ଜାନୁୟାରୀ ଛବିଶ ତାରିଖରେ ପୂର୍ଣ୍ଣ ସ୍ୱରାଜ୍ୟ ଦିବସ ପାଳିତ ହେବା ପରେ ଗାନ୍ଧିଜୀ ମାର୍ଚ୍ଚ ପ୍ରଥମ ସପ୍ତାହରେ ବଡ଼ଲାଟଙ୍କୁ ଖଣ୍ଡେ ଚିଠି ଲେଖିଲେ । ଗାନ୍ଧିଜୀଙ୍କ ଦ୍ୱାରା ସମ୍ପାଦିତ ସାପ୍ତାହିକ ପତ୍ରିକା 'ୟଙ୍ଗ ଇଣ୍ଡିଆ'ରେ ସେ ଚିଠି ପ୍ରକାଶ ପାଇଲା । ଗୋଟିଏ ପ୍ରତିଷ୍ଠିତ ସରକାରଙ୍କର ଶାସନମୁଖ୍ୟଙ୍କ ପାଖକୁ ଜଣେ ନିଃଶସ୍ତ୍ର ବିଦ୍ରୋହୀର ସେ ପତ୍ର ପୃଥିବୀର ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏକ ଦୀପସ୍ତମ୍ଭ ହୋଇ ରହିଛି । ବ୍ରିଟିଶ ସରକାର ଖଜଣା ଟିକସ ଦ୍ୱାରା କିପରି ଭାରତକୁ ଶୋଷଣ କରୁଛନ୍ତି, ଗରିବର ନିତିଦିନିଆ ପ୍ରୟୋଜନୀୟ ବସ୍ତୁ ଉପରେ ସରକାର କିପରି ଟିକସ ବସାଇଛନ୍ତି, ମଦ ଗଞ୍ଜେଇ ଅଫିମକୁ ଏକ ସରକାରୀ ଆୟର ପନ୍ଥା କରିଦେବା ଫଳରେ ନିଶାଦ୍ରବ୍ୟର ପ୍ରଚଳନ ବଢ଼ିଯାଇ କିପରି ଜାତୀୟ ଚରିତ୍ର ଶିଥିଳ ହୋଇଯାଉଛି, ବଡ଼ଲାଟଙ୍କ ସମେତ ବଡ଼ ବଡ଼ ସରକାରୀ କର୍ମଚାରୀ କିପରି ଗରିବ ଭାରତୀୟଙ୍କ ପଇସାରେ ମୋଟା ଦରମାରେ ପୋଷା ହେଉଛନ୍ତି ଆଦି ବିଷୟ ଦର୍ଶାଇ ଏହି ଶାସନ ବିରୁଦ୍ଧରେ ଯେଉଁ ଅହିଂସାତ୍ମକ ଆନ୍ଦୋଳନ ଚାଲିବ, ସେ ବିଷୟରେ କଥାବାର୍ତ୍ତା କରିବା ପାଇଁ ସେ ବଡ଼ଲାଟଙ୍କୁ ସମୟ ମାଗିଥିଲେ । ସାବରମତୀ ନଦୀକୂଳସ୍ଥ ସତ୍ୟାଗ୍ରହ ଆଶ୍ରମରେ ରହୁଥିବା ଗାନ୍ଧିଜୀଙ୍କର ଜଣେ ଇଂରେଜ ଅନୁରାଗୀ ରେଜିନାଲଡ୍ ରୋନାଲଡ୍ ଖଦୀ ପରିଚ୍ଛଦ ପିନ୍ଧି ଗାନ୍ଧିଜୀଙ୍କ ପତ୍ରବାହକ ହୋଇ ଦିଲ୍ଲୀ ବଡ଼ଲାଟ ଭବନକୁ ଯାଇଥିଲେ । ବ୍ରିଟିଶ୍ ସରକାର ବିରୁଦ୍ଧରେ ଲଢ଼େଇ, ବ୍ରିଟିଶ୍ ଯୁବକ ସେ ଯୁଦ୍ଧବାର୍ତ୍ତାର ବାର୍ତ୍ତାବହ ! ଆମ ପାଇଁ ଏ ଘଟଣାଟି ଥିଲା ଅତୀବ ରୋମାଞ୍ଚକର ।

ପୂଜ୍ୟ ଭାଗିରଥୀ ମହାପାତ୍ର ଅଲକାଶ୍ରମକୁ ପ୍ରାୟ ଆସନ୍ତି । ଗୋପବାବୁ ନ ଥିଲେ ରମାଦେବୀଙ୍କ ଅନୁରୋଧରେ ସେ 'ୟଙ୍ଗ୍ ଇଣ୍ଡିଆ'ରୁ ଗାନ୍ଧିଜୀଙ୍କ ଲେଖା ଓଡ଼ିଆରେ

ତର୍ଜମା କରି ଶୁଣାନ୍ତି । ଗାନ୍ଧିଜୀଙ୍କର ଏହି ଚିଠିର ଜବାବ୍‌ରେ ବଡ଼ଲାଟଙ୍କ ସେକ୍ରେଟାରୀ ଯେଉଁ ପତ୍ର ଗାନ୍ଧିଜୀଙ୍କୁ ଲେଖିଥିଲେ ତାହା ପାଇ ଗାନ୍ଧିଜୀ 'ୟଙ୍ଗ୍ ଇଣ୍ଡିଆ'ରେ ଲେଖିଲେ, "ମୁଁ ବଡ଼ଲାଟଙ୍କ ଆଗରେ ଆଣ୍ଠୁମାଡ଼ି ବସି ରୁଟି ମାଗିଥିଲି । ରୁଟି ପରିବର୍ତ୍ତେ ସେ ମୋତେ ପଥର ଦେଇଛନ୍ତି ।"

- ତିନି -

## ଦରିଆ ଦଖଲ

ଗାନ୍ଧିଜୀ ଏପ୍ରିଲ୍ ୬ ତାରିଖ ଦିନ ଦାଣ୍ଡୀ ସମୁଦ୍ର କୂଳରେ ଲୁଣମାଟି ସଂଗ୍ରହ କରି ଲବଣ ଆଇନ୍ ଅମାନ୍ୟ କଲେ । ଲୋକଙ୍କ ମଧ୍ୟରେ ଅଭୂତପୂର୍ବ ଜାଗରଣ ଦେଖା ଦେଲା । ଭାରତର ବିଭିନ୍ନ ପ୍ରଦେଶର ସମୁଦ୍ର ଉପକୂଳବର୍ତ୍ତୀ ସ୍ଥାନରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବାର ଆୟୋଜନ ଚାଲିଲା ।

ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗୋପବନ୍ଧୁ ଚୌଧୁରୀଙ୍କ ଉପରେ ଲବଣ ଆଇନ୍ ଅମାନ୍ୟ ଆନ୍ଦୋଳନ ଆରମ୍ଭ କରିବା ଦାୟିତ୍ୱ ଦେଇଥିଲେ । ଓଡ଼ିଶାରେ ବାଲେଶ୍ୱର ଜିଲ୍ଲା ଇଞ୍ଚୁଡ଼ି ଚଟାଣରେ ଲବଣ ସତ୍ୟାଗ୍ରହ ଆରମ୍ଭ କରିବା ସ୍ଥିର ହେଲା । ସତ୍ୟାଗ୍ରହୀମାନେ ଏପିଲ୍ ୬ ତାରିଖ ଦିନ କଟକରୁ ପଦଯାତ୍ରା ଆରମ୍ଭ କରି ଇଞ୍ଚୁଡ଼ିରେ ପହଞ୍ଚି ଲୁଣ ମାରିବା ସ୍ଥିର ହେଲା । ତତ୍‌ପୂର୍ବରୁ ପ୍ରଚାରକାର୍ଯ୍ୟ ଓ ସଭାସମିତି ଚାଲିଥାଏ । କଟକ କାଠଯୋଡ଼ି ବାଲିରେ ଗୋଟିଏ ବିରାଟ ସାଧାରଣ ସଭା ଆରମ୍ଭ ହେବାକୁ ଯାଉଥିବାବେଳେ ଗୋପବନ୍ଧୁ ଚୌଧୁରୀ ଓ ପୂର୍ଣ୍ଣଚନ୍ଦ୍ର ବୋଷଙ୍କ ଉପରେ ୧୪୪ ଧାରା ଜାରି କରାଗଲା । ସେମାନେ ୧୪୪ ଧାରା ଅମାନ୍ୟ କରି ସଭାରେ ବକ୍ତୃତା ଦେଲେ । ସେହି ସଭାରେ ଉପସ୍ଥିତ ଥିବା ଲୋକଙ୍କ ଭିତରୁ ସତେଇଶ ଜଣ ଯୁବକ ବାହାରି ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାଇଲେ ।

୧୪୪ ଧାରା ଅମାନ୍ୟ କରିଥିବାରୁ ଗୋପବାବୁ ଯେ କୌଣସି ମୁହୂର୍ତ୍ତରେ ଗିରଫ ହୋଇଯିବାର ସମ୍ଭାବନା ଥିବାରୁ ସେ ଗିରଫ ହେଲେ ଆଚାର୍ଯ୍ୟ ହରିହର ଦାସ

ସତ୍ୟାଗ୍ରହ ପରିଚାଳନା କରିବା ସ୍ଥିର ହେଲା । ଆଚାର୍ଯ୍ୟ ମହାଶୟ ତ ସାକ୍ଷୀଗୋପାଳରେ ରହୁଥିଲେ । ୧୯୨୮ ମସିହାରେ ନେତ୍ରୋତ୍ସବ ଦିନ ଦାସେ ଆପଣେଙ୍କ ତିରୋଧାନ ପରେ ଆଚାର୍ଯ୍ୟ ମହାଶୟ ଯାଇ ପୁରୀରେ ରହିଲେ । ତାଙ୍କରି ମୁହଁରୁ ଶୁଣିବା କଥା । ଦିନେ ଗୋପବନ୍ଧୁ ଚୌଧୁରୀ ପୁରୀଯାଇ ତାଙ୍କୁ କହିଲେ, "ହରି ଭାଇନା ! ଏଠି କାହିଁକି ବସିବେ ? ଚାଲନ୍ତୁ କଟକ ଯିବେ ।" ସେ ଏହା କହି ତାଙ୍କୁ ସାଙ୍ଗରେ କଟକ ନେଇଆସିଲେ । କଟକରେ ଆଚାର୍ଯ୍ୟ ମହାଶୟ ସ୍ୱରାଜ୍ୟ ଆଶ୍ରମରେ ରହିଲେ । ସ୍ୱରାଜ୍ୟ ଆଶ୍ରମର ତୁଳସୀ ଚଉରାର ଉଚ୍ଚ ଚାନ୍ଦିନୀ ଉପରେ ବସି ସେ ପ୍ରାତଃ ଉପାସନା କଲାବେଳେ ବୈଦିକ ଯୁଗର ଋଷି ଏହିପରି ହୋଇଥିବେ ବୋଲି ମୋର ମନେ ହେଉଥାଏ । ଦୀର୍ଘ ନାସା, ଆଜାନୁଲମ୍ବିତ ଭୁଜ, ତପ୍ତକାଞ୍ଚନ ବର୍ଣ୍ଣ ଆଦି ଋଷିମୁନିଙ୍କର ସବୁ ଦୈହିକ ଲକ୍ଷଣ ସାଙ୍ଗକୁ ଧ୍ୟାନାବସ୍ଥିତ ତଦ୍‌ଗତ ଭାବ ମିଶି ଏକ ଅପୂର୍ବ ସୌନ୍ଦର୍ଯ୍ୟ ସୃଷ୍ଟିକରେ ।

ଏହି ସତ୍ୟାଗ୍ରହ ଅଭିଯାନ ଆରମ୍ଭ ହେବାର ଅଳ୍ପ ଦିନ ପୂର୍ବରୁ ଆମେ ଅଳକାଶ୍ରମରୁ କଟକ ଆସି ଦେଖିବା ବେଳକୁ ଗୋକୁଳାନନ୍ଦ ଚୌଧୁରୀଙ୍କ କାଠଯୋଡ଼ି କୂଳ ଘର ସତ୍ୟାଗ୍ରହୀ ଶିବିର ପାଲଟି ଯାଇଛି । ସାରା ଓଡ଼ିଶାରୁ ସତ୍ୟାଗ୍ରହୀମାନେ ଆସି ଗହଳ ଲଗାଇଛନ୍ତି । ସର୍ବଶ୍ରୀ ଗୁଣନିଧି ମହାନ୍ତି (କଟକ) ବିଶ୍ୱନାଥ ହୋତା (ବାଲେଶ୍ୱର) ଦୁର୍ଗାପ୍ରସାଦ ଗୁରୁ (ସମ୍ବଲପୁର) ସୁଧାଂଶୁ ଗୁପ୍ତ (ସମ୍ବଲପୁର) ରାମ ପ୍ରସାଦ ସାହୁ (ସମ୍ବଲପୁର), ଗୌରାଙ୍ଗ ଚରଣ ଦାସ (ବାଗଲପୁର, କଟକ) ରଘୁନାଥ ମିଶ୍ର (ପୁରୀ) ଆଚାର୍ଯ୍ୟ ହରିହର ଦାସ, ଗୋପବନ୍ଧୁ ଚୌଧୁରୀ, ମୁରାରୀ ତ୍ରିପାଠୀ (ପୁରୀ) ବିନୋଦ ଚୌଧୁରୀ (ଚୌଦ୍ୱାର) ବନମାଳୀ ପୃଷ୍ଟି (କଟକ) ଗୋଲକ ବିହାରୀ ଦେ (ବାଲେଶ୍ୱର) ଗୋକୁଳାନନ୍ଦ ମହାନ୍ତି (ବାଲେଶ୍ୱର) ଚକ୍ରପାଣି ରାଉଳ (ଗଞ୍ଜାମ) କୃପାସିନ୍ଧୁ ଖୁଣ୍ଟିଆ (କଟକ) ରଘୁନାଥ ଦାସ (କଟକ) ଡ. କୃପାସିନ୍ଧୁ ଭୁକ୍ତ (ଅନୁଗୁଳ) ସୁଦର୍ଶନ ପ୍ରହରାଜ (କଟକ) ଘନଶ୍ୟାମ ପଟ୍ଟନାୟକ (ଗଞ୍ଜାମ) ଇଞ୍ଚୁଡ଼ିକୁ ପ୍ରଥମ ଦଳରେ ସତ୍ୟାଗ୍ରହ କରିବା ପାଇଁ ଯିବା ସ୍ଥିର ହୋଇଥାଏ । ଗୋବିନ୍ଦ ପ୍ରଧାନ 'ସମାଜ'ର ସମ୍ବାଦଦାତା ହୋଇ ତାଙ୍କ ସାଙ୍ଗରେ ଯାଉଥାନ୍ତି ।

ଏହି ଏପ୍ରିଲ୍ ଛଅ ତାରିଖ ଦିନ ବ୍ରାହ୍ମ ମୁହୂର୍ତ୍ତରେ ପ୍ରାର୍ଥନା ହେଲା । ପ୍ରାର୍ଥନାରେ କ'ଣ ବୋଲା ହେଲା, ମୋର ମନେ ପଡୁନାହିଁ । ପୁରୀର ରଘୁନାଥ ମିଶ୍ର ଗୀତାପାଠ କଲେ । ତାଙ୍କ ସ୍ୱର ଏବେ ବି କାନରେ ବାଜୁଛି–

"ନୈନଂ ଛିନ୍ଦନ୍ତି ଶସ୍ତ୍ରାଣିନୈନଂ ଦହତି ପାବକଃ ।

ନ ଚୈନଂ କ୍ଲେଦୟୋନ୍ତାପ ନ ଶୋଷୟତି ମାରୁତଃ ।।"

କାହିଁକି କେଜାଣି ତାଙ୍କ ଗୀତା ପାଠ ଶୁଣି ମୋର "ଗୀତା" ପଢ଼ିବାକୁ ମନ ଉଚ୍ଛନ୍ନ ହେଲା । ବାପା ପ୍ରତିଦିନ ଦୋତାଲା ବଡ଼ଘର ବାରଣ୍ଡାରେ ଗୀତାପାଠ କରୁଥିଲେ । ତାହା ଶୁଣିକରି କେବେହେଁ ଗୀତା ପଢ଼ିବାର ଇଚ୍ଛା ମୋ ମନରେ ଦେଖା ଦେଉ ନ ଥିଲା । ଏଇଟା ପରିବେଶର ପ୍ରଭାବ ବୋଲି ମୁଁ ଏବେ ଭାବୁଛି । ଆଚାର୍ଯ୍ୟ ମହାଶୟଙ୍କ ଦ୍ୱାରା ଅନୁଦିତ ଗୀତା ଗୋଟାଏ ଘର କଣରେ ଗଦା ହୋଇଥାଏ । ମୁଁ ଅନାୟାସରେ ସେଥିରୁ ଖଣ୍ଡେ ଗୀତା ପାଇ ପାରିଲି ।

ପ୍ରାର୍ଥନା ଓ ଗୀତାପାଠ ପରେ ଘରଟି ଭିତରେ କୋଡ଼ିଏ ଜଣଯାକ ସତ୍ୟାଗ୍ରହୀ ଧାଡ଼ି ବାନ୍ଧି ଛିଡ଼ା ହେଲେ । ସେମାନଙ୍କର ଯତ୍‌ସାମାନ୍ୟ ଲୁଗାପଟା ଓ ବିଛଣା ସେମାନେ ନିଜ ନିଜ କାନ୍ଧରେ ପକାଇଥାନ୍ତି । ରାତି ଢାଙ୍ଗୁଲୁ ଢାଙ୍ଗୁଲୁ ପାହି ଆସୁଥାଏ । ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟଙ୍କ ସହଧର୍ମିଣୀ ଆଶାଲତା ଦେବୀ ମଲ୍ଲିଫୁଲମାଳ ଗୁନ୍ଥି ଆଣିଥାନ୍ତି । ତାଙ୍କ ସହିତ ରମା ଦେବୀ ଓ ମାଳତୀ ଦେବୀ ସତ୍ୟାଗ୍ରହୀମାନଙ୍କୁ ଫୁଲମାଳ ଓ ଚନ୍ଦନ ପିନ୍ଧାଇ ଦେଲେ । ଆମେ ଦେଖଣାହାରୀ ସେ ଦୃଶ୍ୟ ଦେଖୁଥାଉ । ସତ୍ୟାଗ୍ରହୀମାନେ ଯାତ୍ରା ଆରମ୍ଭ କଲେ । ସେମାନେ ଯୋବ୍ରାଘାଟରେ ପହଞ୍ଚିଥିବେ କି ନାହିଁ ହେଲା କୁଆପଥର ବୃଷ୍ଟି । ଆମ ବୁଆଲୀ ଭାଇ (ସାହେବଜାଦା ବଜାର) କହିଲେ କୌଣସି ଶୁଭ କାମ ଆରମ୍ଭ ହେଲା ବେଳେ ବର୍ଷା ହେଲେ ତାହା ଆଲ୍ଲାଙ୍କ ଆଶୀର୍ବାଦ ବୋଲି ଆମ ଧର୍ମରେ କୁହାଯାଇଛି । ସତ୍ୟାଗ୍ରହୀମାନେ ମହାନଦୀ ପାରି ହୋଇ କେନ୍ଦ୍ରାପଡ଼ା, ଆଳି, କନିକା, ଚାନ୍ଦବାଲି ବାଟେ ବାଲେଶ୍ୱର ଯିବା ଠିକ୍ ହୋଇଥାଏ ।

ସତ୍ୟାଗ୍ରହୀମାନେ ଅନୁକୂଳ କରି ଯିବା ପରେ ସତ୍ୟାଗ୍ରହ ଶିବିରରେ ଅର୍ଥ ସଂଗ୍ରହର ଆବଶ୍ୟକତା ଦେଖା ଦେବାରୁ ସେହିଦିନ ପ୍ରଥମେ ରମା ଦେବୀ ପଢ଼ିହାରୀ ମହାଶୟଙ୍କ ସାଙ୍ଗରେ ଚାନ୍ଦା ମାଗିବା ପାଇଁ ବାହାରିଲେ । ସେଦିନର ପ୍ରଥମ ଚାନ୍ଦା ଦାତା ଥିଲେ ସତୀଶ ସୁର୍ । ସେହି ଛଅ ତାରିଖରେ ସାପ୍ତାହିକ "ସମାଜ" ଦୈନିକ "ସମାଜ" ହେଲା । ପହିଲ୍‌ମାନ୍ ଉଚ୍ଛବ 'ସମାଜ' ଅଫିସ୍‌ରେ କାମ କରୁଥାନ୍ତି । ସନ୍ଧ୍ୟାହେବା ମାତ୍ରେ ଶିରୋନାମା ଗୁଡ଼ିକ ବଡ଼ ପାଟିରେ ଡ଼ାକି ଡ଼ାକି ସେ 'ସମାଜ' ବିକନ୍ତି । କଟକରେ ଏଇଟା ନୂଆ କଥା । ଉଚ୍ଛବଙ୍କୁ ଦେଖିବା ମାତ୍ରେ ଉଚ୍ଛବଙ୍କୁ ଅନୁକରଣ କରି ଆମେ ପାଟିକରୁ "ଅଲ୍ ଇଣ୍ଡିଆ ଭାରତ ସମ୍ବାଦ– ଶିମଳା ପାହାଡ଼ରୁ ଘନ ଘନ

ତାର ଚାଲିଛି ।" ଏପ୍ରିଲ୍ ମାସ– ଖରା ଦିନରେ ବଡ଼ଲାଟ ଶିମଳା ପାହାଡ଼ରେ ରହୁଥିବାରୁ ସେହିଠାରେ ଶାସନ କାର୍ଯ୍ୟ ମୁଖ୍ୟତଃ ଚାଲୁ ଥିବାରୁ ଉତ୍କଳବଙ୍କର ଏ ଡାକହାକ ।

ଗୋପବାବୁ କୁସୁନପୁରଠାରେ ଗିରଫ ହୋଇଗଲେ । ଇତି ମଧ୍ୟରେ ନିଖିଳ ଭାରତ କଂଗ୍ରେସ କମିଟିର ନିର୍ଦ୍ଦେଶ ଆସିବାରୁ ଆଚାର୍ଯ୍ୟ ମହାଶୟଙ୍କ ନେତୃତ୍ୱରେ ସତ୍ୟାଗ୍ରହୀଦଳ ରେଳ ଯୋଗେ ବାଲେଶ୍ୱର ଚାଲିଗଲେ । ବାଲେଶ୍ୱରରେ ଯେଉଁ କୋଠିରେ ବ୍ରିଟିଶ୍ ବଣିକ ପ୍ରଥମେ ଓଡ଼ିଶାରେ ବାଣିଜ୍ୟ କରିବା ପାଇଁ ସନନ୍ଦ ପାଇଥିଲେ ସେହି ପରମିଟ୍ କୋଠିରେ ସତ୍ୟାଗ୍ରହୀ ଶିବିର ହେଲା । ସେ ପର୍‌ମିଟ୍ କୋଠି ବର୍ତ୍ତମାନ ଜଣେ ବ୍ୟବସାୟୀଙ୍କ ଘର ସଙ୍ଗେ ମିଶି ଗଲାଣି ।

ଇତି ମଧ୍ୟରେ ୧୧/୪/୩୦ ତାରିଖ ଦିନ ଜୀବରାମ ଭାଇ ଲୁଣ କିପରି ମରାହୁଏ ତାହା ଜାଣିବାକୁ ପୁଲିସ ଆଗରେ ଲୁଣପାଣି ହାଣ୍ଡି ଚୂଲିରେ ବସାଇ ଲୁଣ ମାରିବା ଆରମ୍ଭ କରିଦେଲେ । ଫଳରେ ତାଙ୍କୁ ସେହିଦିନ ଗିରଫ କରାଗଲା ଏବଂ ଛଅମାସ ସଜା ମିଳିଲା । ଜୀବରାମ କଲ୍ୟାଣୀ କୋଠାରୀ ଜଣେ ଗୁଜୁରାଟୀ ବ୍ୟବସାୟୀ । ଗାନ୍ଧିଜୀଙ୍କ ପ୍ରେରଣାରେ ସେ ଓଡ଼ିଶାକୁ ସେବାକାର୍ଯ୍ୟ କରିବାକୁ ଆସିଥିଲେ ଏବଂ ଭଦ୍ରଖରେ ଶ୍ରୀମତୀ ନିଶାମଣି ଦେବୀଙ୍କ ଘରେ ଆଶ୍ରମ ସ୍ଥାପନ କରି ପରେ ତାଙ୍କରି ଦ୍ୱାରା ପ୍ରଦତ୍ତ ଜମିରେ ପ୍ରଥମେ ସାଳନ୍ଦୀ ନଦୀ କୂଳରେ ଗରଦପୁର ଗାଁରେ ଗୋଟିଏ ଆଶ୍ରମ ସ୍ଥାପନ କରିଥିଲେ । ତାଙ୍କର ସହଧର୍ମିଣୀ ନାଥୀବାଈ ଓ ଆଉ ଜଣେ ଗୁଜରାଟୀ ମହିଳା ପୂର୍‌ବାଈ ତାଙ୍କ ସଙ୍ଗେ ବୁଲି ମହିଳାମାନଙ୍କ ମଧ୍ୟରେ ଖଦୀ ଓ ସୂତାକଟା ପ୍ରଚାର କାମ କରୁଥିଲେ । ପରେ ପୁର୍‌ବାଈ ସୋରୋରେ ଗୋଟିଏ ଆଶ୍ରମ ସ୍ଥାପନ କରି ଅରଟ ପ୍ରଚାର ଓ ଅନାଥ ଶିଶୁକୁ ଲାଳନ ପାଳନ କରିବା କାମ କଲେ । ଜୀବରାମଜୀଙ୍କ ଆଶ୍ରମ ବର୍ତ୍ତମାନ 'ଗାନ୍ଧୀ ଓଡ଼ିଶା ବାଳାଶ୍ରମ' ନାମରେ ନାମିତ ହୋଇଛି ଏବଂ ପୂରବାଈଙ୍କ ମୃତ୍ୟୁ ପରେ ତାଙ୍କ ଆଶ୍ରମ 'ପୂରବାଈ କନ୍ୟାଶ୍ରମ' ନାମରେ ନାମିତ ହୋଇଛି ।

ଆଚାର୍ଯ୍ୟ ମହାଶୟ ଓ ଛଅଜଣ ସତ୍ୟାଗ୍ରହୀ ୧୯୩୦ ମସିହା ଏପ୍ରିଲ୍ ତେର ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ଇଞ୍ଚୁଡ଼ି ଚଟାଣରେ ଲୁଣମାଟି ସାଉଁଟିବା ମାତ୍ରେ ଗିରଫ ହେଲେ । ବାକି ଛଅଜଣଙ୍କଠାରୁ ଲୁଣାମାଟି ଛଡ଼ାଇ ନେବା ପାଇଁ ପୁଲିସଙ୍କ ଛଡ଼ାଛଡ଼ି ପାଳା ଚାଲିଲା । ସତ୍ୟାଗ୍ରହୀ ଲୁଣମାଟି ମୁଠେଇ ଧରନ୍ତି, ପୁଲିସ ମୁଠା ଫିଟେଇ ଲୁଣମାଟି କାଢ଼ି ନେବାକୁ ସବୁମନ୍ତେ ଚେଷ୍ଟା କରନ୍ତି । ସତ୍ୟାଗ୍ରହୀକୁ ମାଡ଼ି ବସି ଆଙ୍ଗୁଠିର ଗଣ୍ଠିକୁ ଛେଚି ଅଙ୍ଗୁଠିକୁ ମୋଡ଼ି ମୁଠା ଫିଟେଇବା ଚେଷ୍ଟା ଚାଲେ ।

ଜଣେ ସତ୍ୟାଗ୍ରହୀ ବିନୋଦ ଚଉଧୁରୀଙ୍କଠାରୁ ଲୁଣମାଟି ଛଡ଼ାଇବା ପାଇଁ ତାଙ୍କ ଉପରେ ପୁଲିସ ଯେଉଁ ଅତ୍ୟାଚାର କଲେ ଏବଂ ମୁଠା ନ ଫିଟାଇବା ପାଇଁ ସେ ଯେଉଁ ଟାଣ ପଣ ଦେଖାଇଲେ ତାହା ଆମ ପାଇଁ ଏକ ବୀର ଗାଥା ହୋଇଗଲା । ସତ୍ୟାଗ୍ରହୀଙ୍କୁ ବ୍ୟାଟନ୍‌ରେ ପିଟିବା, ତାଙ୍କ ହାତକୁ ପିଠିପଟେ ବାନ୍ଧିବା, ଲୁଣ ରନ୍ଧା ହାଣ୍ଡି ଭାଙ୍ଗିବା, ଆଙ୍ଗୁଠି ଗଣ୍ଠି ଛେଚି ଛେଚି ଅକାମୀ କରିଦେବା ଆଦି କୌଶଳ ପ୍ରୟୋଗ ସତ୍ତ୍ୱେ ସତ୍ୟାଗ୍ରହୀମାନେ ଲୁଣମାଟି ସଂଗ୍ରହ କରି ଲୁଣ ମାରିଲେ ଏବଂ ସେ ଲୁଣ ପ୍ରକାଶ୍ୟରେ ବିକ୍ରି ହେଲା । ଲୋକେ ମହାପ୍ରସାଦ ପରି ତାକୁ ଆଦରରେ କିଣିନେଲେ ।

ଗୋପବାବୁ ଜେଲ୍‌ରୁ ବାହାରିବା ପରେ ବାଲେଶ୍ୱରରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ବୈଠକ ହୋଇ ସ୍ଥିର ହେଲା ଯେ ଏଣିକି ଜନସାଧାରଣଙ୍କୁ ମଧ ଲବଣ ଆଇନ୍ ଅମାନ୍ୟ କରିବା ପାଇଁ ଅନୁମତି ଦିଆଯିବ । ଏହା ଜାଣିବା ପରେ ଇଞ୍ଚୁଡ଼ି, ଶ୍ରୀଜଙ୍ଗ, ସାର୍ଥା ଆଦି ସମୁଦ୍ର କୂଳିଆ ଗାଁ ଲୋକେ ଅତି ଉତ୍ସାହରେ ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ । ଲବଣ ସତ୍ୟାଗ୍ରହ ଏକ ଗଣ ଆନ୍ଦୋଳନ ହୋଇଗଲା । ପୁଣି ଗାଁ ଲୋକେ ପୁଲିସକୁ ବାସନ୍ଦ କରିବା ଆରମ୍ଭ କରିଦେଲେ । ପୁଲିସ ଇଞ୍ଚୁଡ଼ି ଗାଁରେ ରହିବାକୁ ଚାଳିଆ ଖଣ୍ଡେ ବି ପାଇଲେ ନାହିଁ । ଲୋକଙ୍କ ଉତ୍ସାହ ପରଖି ଦେଖିବାକୁ ସାରଥୀ, ଶ୍ରୀଜଙ୍ଗ ଆଦି ଗାଁରେ ଲବଣ ଆଇନ୍ ଅମାନ୍ୟ ହେବ ବୋଲି ସତ୍ୟାଗ୍ରହୀଙ୍କ ପକ୍ଷରୁ ସରକାରଙ୍କୁ ଜଣାଇ ଦିଆଗଲା । ପୁଲିସର ଉପସ୍ଥିତିରେ ଶହ ଶହ ଗ୍ରାମବାସୀ ଲୁଣ ମାରିବା ଆରମ୍ଭ କରିଦେଲେ । ପୁଲିସ କେତେ ଲୋକଙ୍କୁ ଗିରଫ କରିବେ ? ଅନୁମାନ କରି ଯେଉଁମାନଙ୍କୁ ଆଗୁଆ ଭାବିଲେ ସେମାନଙ୍କୁ ମାରଧର କଲେ । ମାତ୍ର ଲୋକେ ଦୁର୍ନିବାର ହୋଇଗଲେ । ଗଣ-ଆନ୍ଦୋଳନ ଆରମ୍ଭ ହୋଇଗଲା ।

ଇଞ୍ଚୁଡ଼ି, ଶ୍ରୀଜଙ୍ଗ ଆଦି ଗାଁରେ ଏହି ଆନ୍ଦୋଳନ ଜନ ଜାଗରଣ ପୁଣି ଗୁଜରାଟ ରାଜ୍ୟରେ ମହିଳାମାନେ ସତ୍ୟାଗ୍ରହରେ ଯୋଗ ଦେଇଥିବା ଖବର ବିଦ୍ୟୁତ୍ ଗତିରେ ଚାରିଆଡ଼େ ବ୍ୟାପିଯିବା ପରେ ଓଡ଼ିଶାରେ ସତ୍ୟାଗ୍ରହୀ ମହିଳାମାନଙ୍କ ପକ୍ଷରୁ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଗଲା । କଟକରୁ ସର୍ବ ଶ୍ରୀମତୀ କିରଣବାଳା ସେନ୍, ରମାଦେବୀ ଓ ମାଳତୀ ଦେବୀ ଇଞ୍ଚୁଡ଼ିକୁ ଯାଇ ପ୍ରଥମେ ଲୁଣ ମାରିଲେ । ସମୁଦ୍ର କୂଳରେ ଗୋଟାଏ ପ୍ରକାର ଛୋଟ ଛୋଟ ଗଛ ଉଠେ । ତାହାରି ଶୁଖିଲା ଝଟା ସଂଗ୍ରହ କରି ଆଣି ଚୂଳି ଜାଳି ଲୁଣ ପାଣିରୁ ଲୁଣମରା ହୁଏ । କିରଣବାଳା ସେନ୍, ରମାଦେବୀ, ମାଳତୀ

ଦେବୀ, ଆଖପାଖ କଅଁରପୁର, ବୋଇତା, ଆଦି ଗାଁମାନଙ୍କରେ ବୁଲି ସ୍ତ୍ରୀଲୋକମାନଙ୍କୁ ଲୁଣ ମାରିବା ପାଇଁ ବାହାରିବାକୁ ବୁଝାଇଲେ । ଫଳରେ ସେହି ଅଞ୍ଚଳରୁ ଶହ ଶହ ସଂଖ୍ୟାରେ ସ୍ତ୍ରୀଲୋକ ଘର କୋଣ ଭୁଆଷୁଣୀମାନେ ସୁଦ୍ଧା ଘରୁ ବାହାରି ଖଞ୍ଜ ବଞ୍ଜେଇ ଲୁଣ ମାରିବାକୁ ବାହାରିଲେ । ହଜାର ହଜାର ପୁରୁଷଲୋକ ଏହା ଦେଖିବାକୁ ଜମା ହୋଇଥାନ୍ତି । ଲଜ୍ଜା ଆଡ଼ହେବା, ପରଦା, ମାଇନ ସବୁ ଉଭେଇଗଲା । ସେଥିପାଇଁ ମହିଳା ବିଦ୍ୟାଳୟର ପ୍ରତିଷ୍ଠାତା ମହର୍ଷି କର୍ଭେ କହିଲେ ଆମେ ଜୀବନଯାକ ଲାଗି ଲାଗି ଯାହା କରିପାରି ନଥିଲୁ ମହାତ୍ମା ଗାନ୍ଧୀ ଆଖି ପିଛୁଳାକେ ତାହା କରିଦେଲେ । ପ୍ରକୃତରେ ସ୍ତ୍ରୀଲୋକମାନେ ସତ୍ୟାଗ୍ରହରେ ଯୋଗ ଦେବାଟା ସେ ସମୟରେ ଏକ ଅଭାବନୀୟ ବ୍ୟାପାରଥିଲା । ଯେଉଁ କୋଣ ଭୂଆଷୁଣୀ ଦାଣ୍ଡ ଦୁଆର ଦେଖି ନଥିଲେ ସେମାନେ ଭୀମ ବିକ୍ରମରେ ସମୁଦ୍ର ପନ୍ତାକୁ ଚାଲି ଆସି ପୁଲିସ ଥାଟକୁ ନଡ଼ରି ଲୁଣ ମାରିଲେ । ୧୯୩୦ ମସିହା ବୋଇଲେ ଆଜିକୁ ପଞ୍ଚସ୍ତରୀ ବର୍ଷ ପୂର୍ବର କଥା । ସଙ୍ଗେ ସୁଦ୍ଧା କଥା କହିବା ନିଷିଦ୍ଧ ଥିଲା । ଇସ୍କୁଲ କଲେଜରେ ପାଠ ପଢୁଥିବା ଓଡ଼ିଆ ଝିଅଙ୍କ ସଂଖ୍ୟା ଆଙ୍ଗୁଠି ଅଗରେ ଗଣି ହେଉଥିଲା । କେଉଁ ଅଦୃଶ୍ୟ ଶକ୍ତି କି ପୁଣ୍ୟ ପ୍ରେରଣା ଆଣିଦେଲା କେଜାଣି ସେମାନେ ଡ଼ୋରି ଲାଗିଲା ପରି ଆନ୍ଦୋଳନ ଆଡ଼କୁ ଟାଣି ହୋଇ ଆସିଲେ । କିନ୍ତୁ ଇଞ୍ଚୁଡ଼ିରେ ପୋଲିସ୍ କୌଣସି ମହିଳାଙ୍କୁ ଗିରଫ କଲେନାହିଁ ।

ଏହାପରେ ରମାଦେବୀ ଓ ମାଳତୀ ଦେବୀ କଟକ ଜିଲ୍ଲାର କୁଜଙ୍ଗ ଅଞ୍ଚଳରେ ଲବଣ ସତ୍ୟାଗ୍ରହ ଚଳାଇବାକୁ କୁଜଙ୍ଗ ଗଲେ । ଆମେ କେତେଜଣ ଝିଅ ସେତେବେଳେ ଅଳକାଶ୍ରମରେ ଥାଉ । ସତ୍ୟାଗ୍ରହୀମାନଙ୍କ ସ୍ତ୍ରୀମାନେ ଇଚ୍ଛାକଲେ ଅଳକାଶ୍ରମରେ ରହିପାରିବେ ବୋଲି ସ୍ଥିର ହୋଇଥାଏ । ବାଲେଶ୍ୱରର ଶ୍ରୀ ବିଶ୍ୱନାଥ ହୋତାଙ୍କ ସ୍ତ୍ରୀ ପ୍ରଫୁଲ୍ଲ କୁମାରୀ ଦେବୀ, ପୁରୀର ଶ୍ରୀ ସତ୍ୟବାଦୀ ନନ୍ଦଙ୍କ ସ୍ତ୍ରୀ ଲକ୍ଷ୍ମୀ ଦେବୀ, ଗଞ୍ଜାମର ଅନ୍ତର୍ଯ୍ୟାମୀ ପଣ୍ଡାଙ୍କ ସ୍ତ୍ରୀ ଶୋଭାରାଣୀ ଦେବୀ, ସାକ୍ଷୀଗୋପାଳର ଶ୍ରୀ ଲାଲବିହାରୀ ଦାସଙ୍କ ସ୍ତ୍ରୀ ଗୁଣମଞ୍ଜରୀ ଦେବୀ ଆସି ଅଳକାଶ୍ରମରେ ରହିଥାନ୍ତି । ପ୍ରଫୁଲ୍ଲ ଦେବୀ ରମାଦେବୀଙ୍କ ସାଙ୍ଗରେ କୁଜଙ୍ଗ ଯିବା ସ୍ଥିର ହେଲା । ଆମେ ସମସ୍ତେ ଅଳକାଶ୍ରମରେ ସୂତାକଟା, ତୁଳାଭିଣା, ଦୁଇଓଳି ପ୍ରାର୍ଥନା, ଗାଁରେ ହେଉଥିବା ସାଧାରଣ ସଭାରେ ଯୋଗଦେବା ଆଦି କାର୍ଯ୍ୟକ୍ରମରେ ନିଜକୁ ନିୟୋଜିତ କରିଥାଉ । ମାଳତୀ ଦେବୀ କୁଜଙ୍ଗ ଯାଇଥିବାରୁ ତାଙ୍କର ଦୁଇ ବର୍ଷ ବୟସର ଝିଅ ଉତ୍ତରା ମଧ୍ୟ ଆମ ପାଖରେ ଥାଏ ।

ରମା ଦେବୀ, ମାଳତୀ ଦେବୀଙ୍କ କାମରେ ବାଧା ଉପୁଜାଇବାକୁ ଓଡ଼ିଶାରେ ପର୍ଦ୍ଦାପ୍ରଥାଟି ଥିଲା ମର୍ଯ୍ୟାଦାସୂଚକ । ବାର ତେର ବର୍ଷର ଖଣ୍ଡାୟତ, ବ୍ରାହ୍ମଣ, କରଣ ଘରର ଝିଅ ବାପ ଭାଇଙ୍କୁ ସୁଦ୍ଧା ଆଡ଼ ହେଉଥିଲେ । ଶାଶୁ ନଣନ୍ଦଙ୍କ ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀ ମାଧବ ମିଶ୍ର ସେଠାକୁ ଯାଇଥାନ୍ତି । ସେଥିପାଇଁ ଜାତୀୟ କବି ବୀରବାବୁ କହୁଥାନ୍ତି ଏଥର ମୁଁ ମାଳତୀ ମାଧବ ନାଟକ ଲେଖି ନାଟ୍ୟକାର ହେବି । କେନ୍ଦୁପାଟଣାର ଡାକ୍ତର ବ୍ରଜନାଥ ମିଶ୍ର ସେମାନଙ୍କ ସାଙ୍ଗରେ ଥାନ୍ତି । ପାଟପୁର ଗାଁ ମୁଣ୍ଡରେ ବରଜୀ ମହାନ୍ତିଙ୍କ ଟୁଙ୍ଗୀ । ଟୁଙ୍ଗୀକୁ ଲାଗି ଗୋଟିଏ ମିଠା ଆମ୍ବଗଛ । ରମାଦେବୀ ପ୍ରଭୃତି ସେହି ଟୁଙ୍ଗୀରେ ଆଶ୍ରୟ ନେଲେ । ସେ କୁଜଙ୍ଗ ଆଜିକାଲିକା କୁଜଙ୍ଗ ନୁହେଁ । ମାଛ, ପାନ, ଭାତ ମନ ଇଚ୍ଛା ଖାଅ ମାତ୍ର ପନିପରିବା, ଶାଗ, ମୁଗ ନାଆଁ ଧରିବ ନାହିଁ । ମୋଟର ବସ୍ ଯାଉଥିଲା ତାରପୁର ଯାଏ ତେଣିକି ପଦ୍ମଚରଣଙ୍କ ସର୍ଭିସ୍ ନ ହେଲେ ବଳଦ ଗାଡ଼ି ଆଶ୍ରା । ବରଜୀ ମହାନ୍ତି ଭାତ ରାନ୍ଧିବା ପାଇଁ ପର୍ଯ୍ୟାପ୍ତ ଚାଉଳ ଦିଅନ୍ତି ମାତ୍ର ତିଅଣ ରାନ୍ଧିବା ପାଇଁ ବାହାର କରନ୍ତି ଗୋଟିଏ ବାଇଗଣ । ଏ ଗାନ୍ଧୀ ପଲଟନ୍ – ସହଜେ ଟୁଙ୍ଗୀଘର, ମାଛ, ଶୁଖୁଆ ପୂରାପୂରି ନିଷିଦ୍ଧ । ପ୍ରତ୍ୟେକ ଦିନ ସତ୍ୟାଗ୍ରହୀଙ୍କ ସଂଖ୍ୟା ଅନୁସାରେ ବରଜୀ ମହାନ୍ତି ସେହି ଗୋଟିଏ ବାଇଗଣକୁ ସେତିକି ନୋଳା କରି ଚାକୁରେ କାଟି ରାନ୍ଧିବାକୁ ଦିଅନ୍ତି । ଭାତ ବଢ଼ା ହେଲେ ଗମ୍ଭାରି ଘରୁ ଗୋଟିଏ ପାଚିଲା ଆମ୍ବ ଆଣି ତାକୁ ମଧ ଖାଉଟି ସଂଖ୍ୟା ଅନୁସାରେ ଚିରୁଳା ଚିରୁଳୀ କରି ପରଷନ୍ତି । ଏବେ ସେ ଟୁଙ୍ଗୀ ଆଉ ନାହିଁ । ମାତ୍ର ଡେ଼ପୁଟି ମାଜିଷ୍ଟ୍ରେଟ୍‌ଙ୍କ ଡରାଣକୁ ନ ଡରି ବରଜୀ ମହାନ୍ତି ଯେଉଁ ସାହାଯ୍ୟ ସହଯୋଗ କରିଥିଲେ ତାହା ମନରୁ ଲିଭି ନାହିଁ ।

ସେ ଅଞ୍ଚଳର ମୁଖ୍ୟ ଯୋଦ୍ଧା ଶ୍ରୀ ନାରାୟଣ ବୀରବର ସାମନ୍ତଙ୍କ ସଙ୍ଗେ ପରାମର୍ଶ କରି ଲୁଣ ମାରିବା ଆୟୋଜନ ଚାଲିଲା । ଶ୍ରୀ ମାଧବ ମିଶ୍ର ଗ୍ରାମେ ଗ୍ରାମେ ଡେଙ୍ଗୁରା ବାଡ଼େଇ ଦେଇଥାନ୍ତି ଯେ ସତ୍ୟାଗ୍ରହୀଙ୍କୁ ରହିବାକୁ, ଖାଇବାକୁ ଦେବାକୁ, ଡଙ୍ଗାପାରି କରିବାକୁ, ତାଙ୍କ ସଭାକୁ ଯିବାକୁ, ତାଙ୍କ କଥା ଶୁଣିବାକୁ ସରକାର ମନା କରିଛନ୍ତି । ଯୋଜନା ଅନୁସାରେ ମାଳତୀ ଦେବୀ ଓ ବ୍ରଜ ବାବୁ ଗଲେ ପୋଡ଼ାନଈ ଆଡ଼େ ଲୁଣ ମାରିବାକୁ । ରମା ଦେବୀ କୁଜଙ୍ଗ ରାଣୀଙ୍କୁ ତାଙ୍କ ପାରାଦୀପ ଉଆସରେ ସାକ୍ଷାତ କରି ଲୁଣ ମାରିବାକୁ ଯିବାକୁ ଆମନ୍ତ୍ରଣ ଦେଲେ । ରାତି ଗଭୀର ହେଲା । ଛାପିଛାପିକିଆ କାଳି ଜହ୍ନ ପଡ଼ିଥାଏ । ରାଣୀଙ୍କ କୋଠିଆ ରାଣୀଙ୍କୁ ଓ ରମା ଦେବୀଙ୍କୁ

ଡଙ୍ଗାରେ ପାରି କରିଦେଲେ । ରାତି ପାହିଲା ବେଳକୁ କାଳିଆ ପାଟରେ ହୁରି ପଡ଼ିଗଲା ନିଜେ ରାଣୀ ବିଜେ କରିଛନ୍ତି ଲୁଣ ମାରି ଯିବାକୁ । କାଳିଆ ପାଟରେ ହଜାର ହଜାର ସ୍ତ୍ରୀ ଲୋକ ଟୋକେଇ ମୁଣ୍ଡେଇ ରାଣୀଙ୍କ ସଙ୍ଗେ ଗଣ୍ଡକୀପୁରକୁ ଲୁଣ ମାରିଗଲେ । ନବ ନାମକ ସ୍ୱେଚ୍ଛାସେବକ ଫଟୋ ଉଠାଇ ଆଣି ଦେଖାଇଲେ–ଲୁଣା ମାଟି ଟୋକେଇରେ ମୁଣ୍ଡେଇ ରାଣୀ ଓ ରମା ଦେବୀଙ୍କ ସଙ୍ଗେ ସ୍ତ୍ରୀଲୋକମାନେ ଚାଲିଛନ୍ତି । ପୁଲିସ କିଂକର୍ତ୍ତବ୍ୟ ବିମୂଢ଼ ହୋଇ ଛିଡ଼ା ହୋଇଛନ୍ତି ।

ତେଣେ ପୋତା ନଈରେ ନିଜେ ମିଶ୍ରେ ଜଗିଥାନ୍ତି ମାଳତୀ ଦେବୀଙ୍କୁ । ସେ ବଡ଼ ହାକିମ, ଆକୃତି ମଧ ବଡ଼ । ଦୁଇଜଣ ଚଉକିଆଙ୍କ କାନ୍ଧରେ ଦୁଇ ହାତ ଭରା ଦେଇ ସେ ବାଟ ଚାଲନ୍ତି । ମାଳତୀ ଦେବୀ ବାଲି ହରିଣ ପରି ଧାଇଁ ପାରନ୍ତି । ତେଣୁ ମାଧବ ବାବୁ ରଣାଙ୍ଗନରେ ପହଞ୍ଚିବା ବେଳକୁ ଲୁଣ ମରା କାମ ସରି ଯାଇଥାଏ । ଖାଲି ପିଲାଗୁଡ଼ାକ ହାକିମଙ୍କ ପଛରେ ଗୋଡ଼େଇ ଗୋଡ଼ଇ ପଦ ପକାନ୍ତି –

"ମାଧିଆ ନନା ମାଧିଆ ନନା, ଲୁଣମରା ହେଲା ପଛକୁ ଅନା ।"

ଏହିପରି ଭାବରେ ସାବିତ୍ରୀ ଅମାବାସ୍ୟା ଠାରୁ ଦେବସ୍ନାନ ପୂର୍ଣ୍ଣିମା ପର୍ଯ୍ୟନ୍ତ କୁଜଙ୍ଗରେ ଲବଣ ସତ୍ୟାଗ୍ରହ ଚାଲିଲା । ଉତ୍କଳ ଭାରତୀ କୁନ୍ତଳାକୁମାରୀ ଲେଖିଥିଲେ–

"ଆମ୍ଭେ ନାରୀଗଣ କୋଣରୁ ବାହାରି ଧରିବୁ ଅସହଯୋଗ ତରବାରୀ
ଅହିଂସା ଅସହଯୋଗ ରଣାଙ୍ଗନେ କର୍ମୀ ହୋଇ ବାହାରିବୁ ଜଣେ ଜଣେ ।"

କବି କ୍ରାନ୍ତଦର୍ଶୀ । ତାଙ୍କର ସେ ଉକ୍ତି ସାର୍ଥକ ହେଲା ।

ମୌସୁମୀ ବାୟୁ ପ୍ରବାହିତ ହେବାରୁ କୁଜଙ୍ଗରେ ଲୁଣମରା ଅଭିଯାନ ବନ୍ଦ ହେଲା । ଶ୍ରୀ ନାରାୟଣ ବୀରବର ସାମନ୍ତ ଗିରଫ ହେଲେ କିନ୍ତୁ ମହିଳାମାନଙ୍କୁ ଗିରଫ କରାଗଲା ନାହିଁ ।

ସେତେବେଳେ ସରଳା ଦେବୀ ଥାନ୍ତି ବ୍ରହ୍ମପୁରରେ । ସେ "ଉଦ୍‌ଯୋଗ ମନ୍ଦିର" ନାମକ ଆଶ୍ରମ ସ୍ଥାପନ କରି ଆନ୍ଦୋଳନ ଚଳାଇଥାନ୍ତି । ହୁମା ଲୁଣ ଗୋଲା ଦଖଲ କରିବା ପାଇଁ ସେ ଦଳ ବଳ ନେଇ ହୁମା ବାହାରିଲେ । ଗଞ୍ଜାମ ୧୯୩୦ରେ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିର ଅନ୍ତର୍ଗତ ଥିଲା । ମାନ୍ଦ୍ରାଜ ସରକାର ସରଳା ଦେବୀଙ୍କୁ ଗିରଫ କରିବା ପାଇଁ ଅଜାଗାରେ ମାନ୍ଦ୍ରାଜ ମେଲକୁ ଅଟକାଇ ଦେଲେ ଏବଂ ତାଙ୍କୁ ଗିରଫ କରି ଏକୁଟିଆ ନେଇ ଯାଇ ଭେଲୋର୍ ଜେଲ୍‌ରେ ରଖିଲେ । ତାଙ୍କ ଉଦ୍ୟମରେ ବାହାରି ମହିଳାମାନେ କଟକକୁ ଆସି କାମରେ ଲାଗିଲେ ।

(୫)

ବୀରବାବୁ ଗୀତ ଲେଖିଲେ–
ଅରି ଫେରି ନାହିଁ
ଯୁଦ୍ଧ ସରିନାହିଁ
ଆସ ମୋ ଶିବିରେ ଆସ ଭାଇ
ଭକତ କେ ଅଛି ଦେବୀ ପୂଜା
ରକତ ମନ୍ଦାର ଢାଳି ଦେଇ
ତରୁଣ କେ ଅଛ ମରଣକୁ ଜିଣି ?
ଦେବତା ପରାଏ ଉଠ ଚେଇଁ

କଲେଜ ପାଠ ଛାଡ଼ି ଆସିଥିବା ନିମାଇଁ ଘୋଷଙ୍କ ମୁହଁରୁ ସେ ଗୀତ ଶୁଣି କେତେ କେତେ ଯେ ଆନ୍ଦୋଳନରେ ଝାସ ଦେଇଥିଲେ ତାର ଇୟତ୍ତା ନାହିଁ ।

ତେଣେ ଲୁଣ ମରା ଚାଲିଥାଏ, ଏଣେ ନୂଆ ସତ୍ୟାଗ୍ରହୀ ସତ୍ୟାଗ୍ରହ ଶିବିରରେ ପହଞ୍ଚି ଯାଉଥାନ୍ତି । ସର୍ବଶ୍ରୀ ବ୍ରଜ ସିଂହ, ଗତିକୃଷ୍ଣ ସ୍ୱାଇଁ, ସୁଧୀର ଘୋଷ କଲେଜ ଛାଡ଼ି ଆସିଲେ । ସୁଧୀର ବାବୁଙ୍କ ବାପା ହେମ ବାବୁ କଟକର ଓକିଲ । ବାଙ୍କା ବଜାରରେ ବସା । ସୁଧୀର ବାବୁ କଲେଜ ଛାଡ଼ିବାରୁ ସେ ତାଙ୍କୁ ଆଉ ଘରେ ପୂରେଇଲେ ନାହିଁ । ମେହେନ୍ତାଣୀ ଯିବା ଗଳି କବାଟ ପାଖରେ ସୁଧୀର ବାବୁ ଖାଇବା ବେଳ ଗଡ଼ି ଗଲେ ଯାଇ ଛିଡ଼ା ହୁଅନ୍ତି । ତାଙ୍କ ମାଆ ବାପାଙ୍କୁ ଲୁଚେଇ କିଛି ଖାଦ୍ୟ ସାମଗ୍ରୀ ଆଣି ତାଙ୍କୁ ସେଇଠି ଦେଇ ଦିଅନ୍ତି । ସୁଧୀର ବାବୁ ଠିଆ ଠିଆ ଖାଇଦେଇ ଆସନ୍ତି । ହାଇସ୍କୁଲ ପାଠ ଛାଡ଼ି ଆସିଲେ ବଳରାମ ପତି, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନ୍‌ଗୋ, ପ୍ୟାରୀଶଙ୍କର ରାୟ, ସୁରେନ୍ଦ୍ର ଦ୍ୱିବେଦୀ, ବିପିନ ପ୍ରଭୃତି କେତେ କେତେ ପିଲା । ଗାଁକୁ ମଧ୍ୟ ସତ୍ୟାଗ୍ରହୀଙ୍କ ସୁଅ ଛୁଟିଥାଏ । ପାଞ୍ଚ ବର୍ଷରୁ ଚଉଦବର୍ଷ ବୟସର ପିଲା ସୁଦ୍ଧା ପ୍ରାଇମେରୀ ସ୍କୁଲ ଛାଡ଼ି ଚାଲି ଆସୁଥାନ୍ତି । ସେମାନେ ବାନରସେନା ନାମରେ ନାମିତ ହେଲେ । ଛୋଟ ଛୋଟ ପିଲା ଖେଳ-କୁଦ, ଘରଛାଡ଼ି ଚାଲି ଆସୁଥାନ୍ତି । ବୈଦ୍ୟନାଥ ପାଠ ପଢ଼ିବାକୁ ସ୍କୁଲକୁ ଯିବା ବାଟରେ ସାଙ୍ଗ ପିଲାଙ୍କୁ କହିଲା – ଦେଖିବ କଂଗ୍ରେସକୁ ଯିବି ? ପିଲାଏ କହିଲେ – ଭାରି ଗଲାବାଲାଟାଏ ! ଗଲୁ ଦେଖିବା । ବୈଦ୍ୟନାଥ କିଛି ବାଟ ପଛେଇ ପଛେଇ ଯାଇ ଦୌଡ଼ି ପଳେଇଲା । ସାଙ୍ଗପିଲା

ସ୍କୁଲରୁ ଫେରି ଘରେ ଖବର ଦେଲେ – ବରଦା ବୋଉ ବଡ଼ ଭାଗ୍ୟବାନ୍ ? ତୋ ପୁଅ କଙ୍ଗରେସକୁ ଚାଲିଗଲା । ତା'ପରେ ଗୋଲକ, ବୈକୁଣ୍ଠ, ଶଙ୍କର, ସନାତନ, ନୀଳମଣି, ଭୋଳୀ, ପ୍ରଫୁଲ୍ଲ ଆଦି ବାନରମାନେ ଆସି ପହଞ୍ଚିଗଲେ । ନୀଳମଣି ପ୍ରଧାନ ହେଲେ ସେମାନଙ୍କ ତତ୍ତ୍ୱାବଧାରକ ।

କଟକ ସହର ନିତି ସଭା ନିତି ଶୋଭାଯାତ୍ରାରେ ସରଗରମ ହୋଇ ରହିଥାଏ । ସେହି ସଭାମାନଙ୍କରେ ବକ୍ତୃତା ଶୁଣି ଶୁଣି ବୌଦ୍ଧିକ ତାଲିମ ମିଳି ଯାଇଥାଏ । ବିଦେଶୀ ବର୍ଜନ, ଖଦୀ ପରିଧାନ ଉପରେ ବହୁତ ଗୁରୁତ୍ୱ ଦିଆଯାଉଥାଏ । କଟକ ସହର ବଜାରରେ ଦୋକାନୀମାନେ ସୁଦ୍ଧା ଦୋକାନରେ ବସି ତକଲୀରେ ସୂତା କାଟୁଥାନ୍ତି । ଯେଣେ ଚାହିଁବ ତେଣେ ଖାଲି ସୂତାକଟା ଦୃଶ୍ୟ – ଏହା ଅବିଶ୍ୱାସ ହେଲେ ହେଁ ସତ୍ୟ ।

ବଡ଼ ବଡ଼ ନେତା ଗିରଫ ହେଲେ ହରତାଳ କରାଇବା ଓ ସ୍କୁଲ କଲେଜ ବନ୍ଦ କରିବାକୁ ଧାରଣା ଦେବା ମଧ୍ୟ ଗୋଟାଏ କାର୍ଯ୍ୟକ୍ରମ ଥାଏ । କଟକରେ ଥରେ ବାଖରାବାଦର ଭରତସିଂ ପ୍ରଭୃତି ସ୍କୁଲବନ୍ଦ କରିବା ପାଇଁ ଧାରଣା ଦେବାରୁ ଖୁବ୍ ମାଡ଼ ଖାଇଲେ । ସରକାରୀ ଡାକ୍ତରଖାନାରେ ସତ୍ୟାଗ୍ରହୀଙ୍କୁ ପଚାରେ କିଏ ? ଆଲମଚାନ୍ଦ ବଜାରର ଡାକ୍ତର ରଜନୀକାନ୍ତ ଘୋଷଙ୍କ ଡାକ୍ତରଖାନାରେ ସେମାନେ ଚିକିତ୍ସିତ ହେଲେ । ଏପ୍ରିଲ୍ ତେର ତାରିଖ ଜାଲିଆନାଉଆଲା ଦିବସ ଓ ଆଚାର୍ଯ୍ୟ ମହାଶୟଙ୍କ ଗିରଫର ପ୍ରତିବାଦରେ ହରତାଳ ହେବା ସ୍ଥିରହେଲା । ଓଡ଼ିଶାରେ ରେଭେନ୍‌ସା କଲେଜ ଥାଏ ଏକୋଇର ବଳା । ରମା ଦେବୀ ଓ ମାଳତୀ ଦେବୀ ରେଭେନ୍‌ସା କଲେଜକୁ ଯାଇ କଲେଜ ବନ୍ଦ ରଖିବାକୁ ଧାରଣା ଦେବା ସ୍ଥିର ହେଲା । କଲେଜ ପିଲାଏ ଫୁଟ୍‌ବଲ୍ ଖେଳୁଥାନ୍ତି । ସେ ଦୁହେଁ ହତା ଭିତରକୁ ଯାଇ ପିଲାଙ୍କୁ ହରତାଳ କଥା କହିଲା ବେଳକୁ ଜିଲ୍ଲା ମାଜିଷ୍ଟ୍ରେଟ୍ ମାର୍‌ଉଡ଼୍ ସାହେବ ଘଟଣା ସ୍ଥଳରେ ପହଞ୍ଚିଗଲେ । ସେ ମାଳତୀ ଦେବୀଙ୍କୁ କହିଲେ – ଆପଣମାନେ ଆନ୍ଦୋଳନ କରିବେ ବୋଲି କଣ ପିଲାଙ୍କୁ ଖେଳିବାକୁ ଦେବେ ନାହିଁ ? ମାଳତୀ ଦେବୀ ଉତ୍ତର ଦେଲେ – ଆୟାରଲ୍ୟାଣ୍ଡ ସ୍ୱାଧୀନତା ପାଇଁ ଲଢୁଥିବା ବେଳେ ଆଇରିଶ୍ ଯୁବକମାନେ କଣ କରୁଥିଲେ ? ସିନ୍‌ଫେନ୍ ମୁଭ୍‌ମେଣ୍ଟ କଥା ମନେପକାନ୍ତୁ । ମାର୍‌ଉଡ଼୍ ସାହେବ ନିଜେ ଆୟରିଶ୍ ଥିଲେ । ମାର୍‌ଉଡ଼୍ ସାହେବ ବାଆଁରେଇ ହୋଇ ସେଠାରୁ ଚାଲିଗଲେ ।

ବର୍ଷାଋତୁ ଆରମ୍ଭ ହେଲାରୁ ଲୁଣମରା ବନ୍ଦ ହେଲା । ବିଲାତୀ ଲୁଗା ଦୋକାନରେ ପିକେଟିଂ ଖୁବ୍ ଜୋରସୋରରେ ଚାଲିଲା । ବାନର-ସେନା ଏ କାମରେ

ଅଗ୍ରଣୀ ହେଲେ । ସକାଳେ ଦୁର୍ଯ୍ୟୋଧନ ମାଷ୍ଟ୍ରେ (କୁଜଙ୍ଗ) ଗୋଟିଏ ବଡ଼ ଟବ୍‌ରେ ପନ୍ଦର କୋଡ଼ିଏ ସେର ଚୂଡ଼ା ଧୋଇ ସେଥିରେ ଗୁଡ଼ ଓ ପାଚିଲା କଦଳୀ ପରଖ ଦେଇ ଚକଟି ତହିଁର ଗୋଟିଏ ଗୋଟିଏ ଗୁଳା କରି ଦିଅନ୍ତି । ଘଣ୍ଟା ବାଜିଲେ ଆମେ ଧାଡ଼ି ହୋଇ ଛିଡ଼ା ହୋଇଯାଉ । ସେ ଆମ ହାତରେ ସେହି ଗୁଳାରୁ ଗୋଟିଏ ଗୋଟିଏ ଧରାଇ ଦିଅନ୍ତି । ଆମେ ସେତକ ଗଳାଧଃକରଣ କରି ସାରି ଦାଣ୍ଡରେ ଗୁଣ୍ଡ ହେଉ । ନୀଳମଣି ବାବୁ ଆମକୁ ଛୋଟ ଛୋଟ ଦଳରେ ବିଭକ୍ତ କରି ବିଲାତୀ ଲୁଗା ସଂଗ୍ରହ, ଲିଫ୍‌ଲେଟ୍ ବାଣ୍ଟିବା, ଶୋଭାଯାତ୍ରାରେ ଗୀତ ବୋଲି ବୋଲି ଚାନ୍ଦା ସଂଗ୍ରହ କରିବା ଆଦି କାମ ବାଣ୍ଟି ଦିଅନ୍ତି । ପିକେଟରମାନେ ଲୁଗା ଦୋକାନରେ ପିକେଟିଂ କରିବାକୁ ଯାଆନ୍ତି ।

ଆମଠାରୁ ଉଚ୍ଚସ୍ତରର ସତ୍ୟାଗ୍ରହୀ ବିନୋଦ କାନୁନ୍‌ଗୋ, ବଳରାମ ପତି ଆଦି ସଭା ସମିତିରେ ଭାଷଣ ଦିଅନ୍ତି– ପ୍ରଚାର କାର୍ଯ୍ୟରେ ମଫସଲକୁ ମଧ୍ୟ ଯାଆନ୍ତି । ରାଧାନାଥ ବାବୁ (ସମାଜ) ପ୍ରତିଦିନ ସତ୍ୟାଗ୍ରହ ଶିବିରକୁ ଆସି ଭାଷଣ ଡାକି ଦିଅନ୍ତି । ବିନୋଦ କାନୁନ୍‌ଗୋ ତାହାକୁ ଲେଖିନେଇ ସନ୍ଧ୍ୟାବେଳକୁ ସାଧାରଣ ସଭାରେ ତାକୁ ପଢ଼ନ୍ତି । ଏହି ବକ୍ତୃତାଗୁଡ଼ିକ ଖୁବ୍ ସରସ ହୁଏ । ଆନ୍ଦୋଳନକୁ ନିନ୍ଦିତ କରିବା ପାଇଁ ବ୍ରିଟିଶ୍ ସରକାରଙ୍କର କେତେକ ସ୍ତାବକ "ସ୍ୱଚ୍ଛ ଦର୍ପଣ" ନାମରେ ଖଣ୍ଡିଏ ଛୋଟିଆ ବହି ଛାପି ବାଣ୍ଟିଲେ । ତାହାର ହଳଦିଆ ମଲାଟ ଉପରେ ବାଘବକ୍‌ରୀ ଏକା ଘାଟରେ ପାଣି ପିଉଥିବା ଚିତ୍ର ଥିଲା । ସେଥିରେ ବ୍ରିଟିଶ୍ ସରକାରଙ୍କ ଗୁଣଗ୍ରାମ ଛାନ୍ଦରେ ଲେଖା ହୋଇଥିଲା । ତାହାର ଜବାବ୍ ମଧ୍ୟ ସେହି ଛାନ୍ଦରେ ଲେଖି ସାଧାରଣ ସଭାରେ ଦିଆଯିବ ବୋଲି ସ୍ଥିର ହେଲା । ରାଧାନାଥ ବାବୁ ସେ କବିତା ରଚନା କଲେ । ସ୍ୱଚ୍ଛ ଦର୍ପଣରେ ଲେଖାଥିଲା–

ଆଇନ୍ ଅମାନ୍ୟ ଅଟେ ମହାପାପ
ଯେ କରେ ସେ ପାପୀ ତାର ସର୍ବନାଶ
ଅଧୋଗତି ତାର ହୋଇବ ନିଶ୍ଚୟ
ନରକରେ ପଡ଼ି ଯନ୍ତ୍ରଣା ଲଭିବ ।

ଜବାବ୍‌ରେ ଲେଖାହେଲା –

ଏ ଆଇନ୍ ଗୋରା ସରକାର କଲେ
ମନୁସଂହିତାକୁ ମୋଡ଼ି ଫିଙ୍ଗିଦେଲେ
ଯେଣୁ ମନୁ ଥିଲେ ଅସଭ୍ୟ ସ୍ୱାଧୀନ
ଏ ଅମଳେ ହେଲେ ସଭ୍ୟ ପରାଧୀନ ।

ସ୍ୱଚ୍ଛ ଦର୍ପଣ

ଜଗନ୍ନାଥ ରାସ୍ତା କେଡ଼େ ଚମତ୍କାର
ତାକୁ ଗଢ଼ିଛନ୍ତି ଆମ ସରକାର ।

ପ୍ରତ୍ୟୁତ୍ତର—

ସାହେବଙ୍କ ବାପା ବଡ଼ବାପା ଆସି
ଗଢ଼ି ଯାଇଥିଲେ ଖଟି ଦିବାନିଶି ।

ଇତ୍ୟାଦି । ମୋଟକଥା ମଧ୍ୟମ ଶ୍ରେଣୀର ସତ୍ୟାଗ୍ରହୀମାନେ ଏସବୁ କବିତାକୁ ଯଥୋଚିତ ଭାବଭଙ୍ଗୀରେ ଆବୃତ୍ତି କରିବା, ଭାଷଣ ଦେବା ମଧ୍ୟେ ମଧ୍ୟେ ସଭାସମିତି କରିବାକୁ ମଫସଲକୁ ଯିବା କାମ କରୁଥାନ୍ତି । ବଡ଼ ବଡ଼ ନେତାମାନେ ତ ଆନ୍ଦୋଳନର ପ୍ରଥମ ଅବସ୍ଥାରୁ ଗିରଫ ହୋଇ ବନ୍ଦୀ ହୋଇ ସାରିଥାନ୍ତି ।

ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ, ରମା ଦେବୀ, ମାଳତୀ ଦେବୀ, ଡକ୍ଟର ବ୍ରଜନାଥ ମିଶ୍ର, ନୀଳମଣି ପ୍ରଧାନ, ସହଦେବ ଦାସ ଆଦି କଟକରେ ଅର୍ଥ ସଂଗ୍ରହ, ସତ୍ୟାଗ୍ରହୀ ସଂଗ୍ରହ, ପିକେଟିଂ ପରିଚାଳନା ଆଦି କାମ କରୁଥାନ୍ତି । ୧୯୩୦ରେ କଟକ ସହରର ପିକେଟିଂ, ଶୋଭାଯାତ୍ରା ଆଦିରେ ମୁଷ୍ଟିମେୟ ମହିଳା ଯୋଗ ଦେଇଥାନ୍ତି । ପାଲିତ୍ ପଡ଼ାର ବୀଣା ଦେବୀ, ରାଧାମଣି ଦେବୀ, ସୁନ୍ଦରମଣି ଦେବୀ, ଢଞ୍ଚାଳୀ ଦେବୀ, ଶୋଭା ଦେବୀ ପ୍ରଭୃତି ଏ କାମରେ ଅଗ୍ରଣୀ ଥିଲେ ।

ସର୍ବଶ୍ରୀ ଗଣେଶ କାଲୁ, ରାମେଶ୍ୱରଲାଲ ଆଦିଙ୍କ ଲୁଗା ଦୋକାନଗୁଡ଼ିକର ମାରୱାଡ଼ି ପଟ୍ଟିରେ ନାମ ଡାକଥିଲା । ସେମାନଙ୍କ ସହିତ ଦେଖାକରି ଆମ ମୁଖିଆମାନେ ଆଗ ବିଲାତି ଲୁଗା କାରବାର ବନ୍ଦ କରିବା ବିଷୟରେ କଥାବାର୍ତ୍ତା କଲେ । ମାରୱାଡ଼ି ପଟ୍ଟି ମନ୍ଦିରରେ ସବୁ ଲୁଗା ବ୍ୟବସାୟୀଙ୍କର ଗୋଟିଏ ବୈଠକ ହେଲା । ସେହି ବୈଠକରେ ସ୍ଥିର ହେଲା ଯେ ବିଲାତି ଲୁଗା ଓ ରାଜନନ୍ଦଗାଓଁ ଆଦି ଗୋରା ମାଲିକଙ୍କ ମିଲ୍‌ର ଲୁଗାସବୁ ସିଲ୍ ଦିଆଯାଇ ରଖାହେବ । ସେପଟେ ମାଜିଷ୍ଟ୍ରେଟ୍ ମାରଉଡ୍ ସାହେବ

ମଧ୍ୟ ତତ୍ପର ହେଲେ । ସେ ଲୁଗା ବ୍ୟବସାୟୀଙ୍କୁ ଜୋର୍ ଦେଇ ଅଭୟ ବାଣୀ ଶୁଣାଇଲେ ଯେ ତୁମେମାନେ ତୁଚ୍ଛାଟାରେ କ୍ଷତିଗ୍ରସ୍ତ ହେବାର କୌଣସି କାରଣ ନାହିଁ । ସିଲ୍ ଭାଙ୍ଗି ବିଲାତି ଲୁଗା ବିକ୍ରିକର । ଯଦି କେହି ଗୋଳମାଳ କରିବେ, ଆମ୍ଭେ ଅଛୁଁ କାହିଁକି ? ମାରୱାଡ଼ି ପଟ୍ଟିରେ ପୁଲିସ୍ ଟହଲ ମାରିବା ଆରମ୍ଭ ହୋଇଗଲା । କେତେକ ବ୍ୟବସାୟୀ ପୁଣି ବିଲାତି ଲୁଗା ବିକ୍ରୀ ଆରମ୍ଭ କରିଦେଲେ । ସଙ୍ଗେ ସଙ୍ଗେ ପିକେଟିଂ ମଧ୍ୟ ଆରମ୍ଭ ହେଲା ।

ମାଲ୍‌ଗୋଦାମରୁ ବିଲାତି ଲୁଗା ଗାଣ୍ଠି ମାରୱାଡ଼ି ପଟ୍ଟିକୁ ଏକ ବଳଦିଆ ଗାଡ଼ିରେ ବୁହାହୋଇ ଆସୁଥିଲା । ଟ୍ରକ୍ ଥିଲା ସାତସପନ । ଶଗଡ଼ିଆମାନଙ୍କୁ ବିଲାତି ଲୁଗାଗାଣ୍ଠି ନ ବୋହିବା ପାଇଁ ବୁଝାଇବାକୁ ରମା ଦେବୀ, ମାଳତୀ ଦେବୀ, ପୂର୍ଣ୍ଣଚନ୍ଦ୍ର ବୋଷ ପ୍ରଭୃତି ଶଗଡ଼ିଆ ସାହିକୁ ରାତିରେ ଯାଉଥାନ୍ତି । କାରଣ ଶଗଡ଼ିଆମାନଙ୍କୁ ଦିନରେ ଘରେ ପାଇବା ସମ୍ଭବ ନୁହେଁ । ରାତି ବାରଟାଯାଏ ସଭା ଚାଲେ । ଏଣେ ଘରେ ଶାଶୁ ପଦ୍ମାବତୀ ଦେବୀ ଛଟପଟ ହେଉଥାନ୍ତି । ଭୁଆଷୁଣୀ ଦୁଇଟା ଏତେ ରାତିଯାଏ ଶଗଡ଼ିଆଙ୍କ ମେଳିରେ ରହିବାଟା ତାଙ୍କୁ ଅଡୁଆ ଲାଗୁଥାଏ ।

ଯାହାହେଉ, ପିକେଟିଂ ଫଳରେ ବିଲାତି ଲୁଗା କାରବାର କିପରି ମାନ୍ଦା ପଡ଼ିଗଲା, ତାହା ସେହି ସମୟର ତଥ୍ୟ ସମ୍ବଳିତ ଖବରକାଗଜ ଦେଖିଲେ ଜଣା ପଡ଼ିଯାଏ । ପ୍ରଥମେ ପ୍ରଥମେ ତ ଏହି ପିକେଟିଂ ଆଶାତୀତ ଭାବରେ ସଫଳ ହେଲା । କିଛିଦିନ ଗତ ହେବାପରେ ବ୍ୟବସାୟୀମାନେ ପୁଣି ବିଲାତି ଲୁଗା ମଗାଇଲେ । ସେତେବେଳକୁ ପଡ଼ିହାରୀ ମହାଶୟ, ରମା ଦେବୀ, ମାଳତୀ ଦେବୀ ପ୍ରଭୃତି ବନ୍ଦୀ ହୋଇ ସାରିଲେଣି । କେବଳ ରାଧାନାଥ ବାବୁ (ରଥ)ଙ୍କ ପରାମର୍ଶରେ କାମ ହେଉଥାଏ । ଏହି ସମୟଟାରେ ବାନରମାନେ ହୋଇଗଲେ ପିକେଟିଂ ଚଳେଇବାରେ ସର୍ବେସର୍ବା । ମଣିଷକୁ ପ୍ରାଣରେ ମାରିଦେବା ବା ମାରଧର କରିବାଟା ହିଁ କେବଳ ହିଂସା ବୋଲି ସେମାନଙ୍କର ଧାରଣା ହୋଇଥିବାରୁ କେହି ଜଣେ ବାନର ବଙ୍କିମ ସିଂ ବା ସୁଧାଂଶୁ ମୈତ୍ର ବୁଦ୍ଧି ବାହାର କଲେ ଯେ ଲୁଗା ଗାଣ୍ଠିରେ ତେଜାବ୍ (ଏସିଡ଼୍) ଢାଳିଦେଲେ ବ୍ୟବସାୟୀ ପାଠ ଶିଖିବେ । ବିଲାତି ଲୁଗା ତ ସାକ୍ଷାତ ପାପ । ସେଥିପାଇଁ ତାହା ନିଆଁରେ ପୋଡ଼ା ହେଉଛି । ଏସିଡ଼୍‌ରେ ପୋଡ଼ିଦେଲେ ତହିଁରେ ଆଉ କି ଅନ୍ୟାୟ ହେବ ! ମସୁଧା ହେଲା ଲୋକନାଥ (ପରମହଂସ) ଶଗଡ଼ ତଳେ ଶୋଇବ । ଶଗଡ଼ରେ ଲୁଗାଗାଣ୍ଠି ଲଦା ସରିଲେ ଲୋକନାଥ ଶୋଇ ରହିଥିବା ହେତୁ ଶଗଡ଼

ଚାଲିପାରିବ ନାହିଁ । ବ୍ୟବସାୟୀ ଓ ଗାଡ଼ିବାଲା ଲୋକନାଥଙ୍କୁ ଉଠାଇବାକୁ ଚେଷ୍ଟା କରୁଥିବା ବେଳେ କେହି ଜଣେ ବାନର ଅଲକ୍ଷିତରେ ଲୁଗାଗାଣ୍ଠି ଉପରେ ତେଜାବ୍ ଢାଳିଦେବ । ମସୁଧା ଅନୁସାରେ କାମଟି ଉତୁରି ଗଲା ମାତ୍ର ସେ ତେଜାବ୍ ଲୁଗାଗାଣ୍ଠି ଭେଦି ଯାଇ ଗାଡ଼ିତଳେ ପେଟେଇ କରି ଶୋଇଥିବା ଲୋକନାଥର ପିଠି ଉପରେ ପଡ଼ି ପିଠି ପୋଡ଼ିଗଲା । ଲୋକନାଥ ଡାକ୍ତରଖାନା ଗଲା । ରାଧାନାଥ ବାବୁ ଦୋଷୀ ନିର୍ଦ୍ଦୋଷ ସବୁ ବାନରଙ୍କୁ ବସାଇ ଆମ ବୁଦ୍ଧିକୁ ଭଲକରି ମରାମ୍ମତ କଲେ ।

ବିଲାତି ଲୁଗା ପୋଡ଼ିବା ପାଇଁ ଆମେ ଦ୍ୱାର ଦ୍ୱାର ବୁଲି ବିଲାତି ଲୁଗା ମାଗିବାବେଳେ ଅନେକେ ଯୁକ୍ତି କରୁଥିଲେ – ବିଲାତି ଲୁଗା ପୋଡ଼ିବା ଠିକ୍ ନୁହେଁ । ଭାରତ ଗରିବ ଦେଶ । କେତେ ଗରିବ ଲୁଗା ଖଣ୍ଡେ ପିନ୍ଧିବାକୁ ପାଆନ୍ତି ନାହିଁ । ଏଣେ ଦେଶପ୍ରେମ ନାମରେ ଯେ ଲୁଗା ପୋଡ଼ା ଚାଲିଛି, ଏଇଟା ଉଚିତ୍ ହେଉନାହିଁ । ଆଉ ଅନେକ କହୁଥିଲେ ଏ ଲୁଗା ପୋଡ଼ିବାଟା ମଧ୍ୟ ଗୋଟିଏ ପ୍ରକାର ହିଂସା । ଆମେ ଏସବୁ ଅଭିମତ ଶୁଣି ଆସି ସତ୍ୟାଗ୍ରହ ଶିବିରରେ ମୁରବୀମାନଙ୍କୁ କହୁ । ସେମାନେ ଆମକୁ ବୁଝାନ୍ତି ଯେ ଗାନ୍ଧିଜୀ କହିଛନ୍ତି – ଭାରତବାସୀଙ୍କ ମନରେ ଇଂରେଜଙ୍କ ପ୍ରତି ଯେଉଁ ଘୃଣା ବା ବିଦ୍ୱେଷ ପୂରି ରହିଛି, ସେହି ଭାବନାକୁ ଅନ୍ୟଆଡ଼କୁ ମୁହାଁଇ ଦେବାକୁ ଏ ବିଲାତି ଲୁଗା ପୋଡ଼ା କାର୍ଯ୍ୟକ୍ରମ ରଖାଯାଇଛି । ସେମାନଙ୍କ ପ୍ରତି ହିଂସା ଆଚରଣ କରିବା ପରିବର୍ତ୍ତେ ସେମାନଙ୍କ ଲୁଗାକୁ ଘୃଣାକରି ପୋଡ଼ିବା ଫଳରେ ଜନସାଧାରଣଙ୍କର ସେହି ଘୃଣା ବା ବିଦ୍ୱେଷଭାବଟା ଶୀତଳ ହୋଇ ଯାଉଛି । ସଭାରେ ଗୀତ ବୋଲାହୋଇ ଲୁଗା ପୋଡ଼ା ହେଲାବେଳେ ପ୍ରକୃତରେ ମନେ ହେଉଥିଲା ଯେ ତଦ୍ୱାରା ଆମେ ସତେ ଯେପରି ବ୍ରିଟିଶ୍ ଶାସନକୁ ନିଆଁରେ ଜାଳୁଛୁ ।

## ମଦ ଦୋକାନରେ ପିକେଟିଂ

ବିଲାତୀ ଲୁଗା ଦୋକାନରେ ପିକେଟିଂ ବ୍ୟବସ୍ଥିତ ଭାବରେ ଚାଲିବା ପରେ ମଦ ଦୋକାନରେ ପିକେଟିଂ ଆରମ୍ଭ କରିବା ସ୍ଥିର ହେଲା । ପ୍ରଥମ ଦିନ କଟକ ସହରର ତେଲେଙ୍ଗା ବଜାର ମଦ ଦୋକାନକୁ ବାନରମାନେ ପିକେଟିଂ କରିବାକୁ ଗଲେ । ସେ ଦିନର ଘଟଣାବଳୀ ଅର୍ଦ୍ଧଶତାବ୍ଦୀ ଅତୀତ ହେବାପରେ ସୁଦ୍ଧା ଜଳ ଜଳ ଦିଶିଯାଉଛି । ଗୁଣନିଧି ଆଦି ବଛା ବଛା ମୁଗୁରିଆ ଦେହ ଗଢ଼ଣର ପିଲା ବଛାହେଲେ ମଦ ଦୋକାନରେ ପିକେଟିଂ କରିବା ପାଇଁ । ବିନୋଦ କାନୁନ୍‌ଗୋ ଗଲେ ପ୍ରଚ୍ଛନ୍ନ ରହି

ପିକେଟିଂର କ୍ରିୟା ପ୍ରତିକ୍ରିୟା ପର୍ଯ୍ୟବେକ୍ଷଣ କରିବାକୁ । ଆମେ ସବୁ କାଠଯୋଡ଼ି କୂଳ ଗୋକୁଳାନନ୍ଦ ଚୌଧୁରୀଙ୍କ ବାସଭବନରେ ନାଣ୍ଡି ଛାତ ଉପରେ ବସି ଏ ନୂଆ ପ୍ରୟୋଗର ଫଳାଫଳ ଶୁଣିବାକୁ ଅପେକ୍ଷା କରି ବସିଥାଉ । ସେହି ଘରଟା ସେତେବେଳେ ସତ୍ୟାଗ୍ରହୀ ଶିବିର ହୋଇଥିଲା । ବର୍ଷାଦିନ ଅନ୍ଧାର ରାତି । କଟକର ନାଲି ମାଙ୍କଡ଼ା ପଥର ସଡ଼କରେ ମ୍ୟୁନିସିପାଲ୍‌ଟିର କିରାସିନି ବତୀ ଟିମ୍ ଟିମ୍ ହୋଇ ଜଳୁଥାଏ । କେମିତି ଗୋଟାଏ ମାଡ଼ି ମାଡ଼ି ପଡୁଥାଏ । ବାତାବରଣକୁ ହାଲୁକା କରିବା ପାଇଁ ସୁନାମଣି ପୋଥାଳକୁ ମାଳତୀ ଦେବୀ ପ୍ରଭୃତି ନାନା ପ୍ରକାରରେ ଚିଡଉ ଥାଆନ୍ତି । ରାତି ପ୍ରାୟ ଆଠଟା ବେଳକୁ ବିଦୋଦ କାନୁନ୍‌ଗୋ ରଣକ୍ଷେତ୍ରରୁ ବାହୁଡ଼ିଲେ । ଆମମାନଙ୍କ କଳରବ ମଧ୍ୟରେ ସେ ବର୍ଣ୍ଣନା ଆରମ୍ଭ କରି କହିଲେ ଗୁଣନିଧି ପ୍ରଭୃତି ମଦ ଦୋକାନର ଦ୍ୱାର ଫିଟିବା ଆଗରୁ ଧାଡ଼ି ବାନ୍ଧି ମଦ ଦୋକାନ ଆଗରେ ଛିଡ଼ା ହୋଇଗଲେ । ମଦ ପିଇବା ଲୋକେ ମଦ ପିଇବାକୁ ଦୋକାନ ଦ୍ୱାରକୁ ଆସିବାରୁ ସେମାନେ ସେହି ଗରାଖମାନଙ୍କୁ ମଦ ନ ପିଇବା ପାଇଁ ବିନତି କଲେ । ଗରାଖଙ୍କ ପାଇଁ ଏହା ଏକ ଅପ୍ରତ୍ୟାଶିତ ପରିସ୍ଥିତି ଉପୁଜିଲା । ସେମାନେ ଦୋ ଦୋ ପାଞ୍ଚ ହେଲାପରି ମୁହଁ କରି ଆଡ଼େଇ ହୋଇ ଯାଇ ଦୋକାନ ଆଡ଼କୁ ଉତପ୍ତ ନୟନରେ ଚାହିଁ ରହିଲେ । ଆଉ କେତେଜଣ ସେଠାରୁ ଫେରିଗଲେ । ଏତିକିବେଳେ ଅବକାରୀ ବିଭାଗର ଗୋରା ସୁପରିଟେଣ୍ଡେଣ୍ଟ ଆଦି ପହଞ୍ଚିଗଲେ । ସେ ଦ୍ୱାର ମୁହଁରେ ଛିଡ଼ା ହୋଇଥିବା ପିକେଟରମାନଙ୍କୁ ଧକ୍‌କା ମାରି ଦୋକାନ ଭିତରକୁ ପଶିବାକୁ ଚେଷ୍ଟାକଲାରୁ ପିକେଟରମାନେ ହାତ ଛନ୍ଦାଛନ୍ଦି ହୋଇ ଦ୍ୱାର ମୁହଁରେ ଶୋଇପଡ଼ିଲେ । ଏହି ଟେକ୍‌ନିକ୍‌ଗୁଡ଼ିକ ବିଲାତୀ ଲୁଗା ଦୋକାନରେ ପିକେଟିଂ କଲାବେଳେ ସେମାନଙ୍କ ମଧ୍ୟରେ ବିକଶିତ ହୋଇ ସାରିଥିଲା । ଗୋରା ସୁପରିନ୍‌ଟେଣ୍ଡେଣ୍ଟ ଭାରି ବୁଟ୍ ପିନ୍ଧା ଜୋତାପିନ୍ଧା ପାଦରେ ସେମାନଙ୍କୁ ଗୋଇଠା ମାରି ଆଡ଼େଇ ଦେଇ ଦୋକାନରେ ପଶି ମଦ ବୋତଲ ଧରି ଢକ୍ ଢକ୍ କରି ମଦ ପିଇଗଲେ । ତାହାପରେ ଦୋକାନ ବାହାରେ କ୍ରମଶଃ ବଢ଼ି ଚାଲିଥିବା ଗରାଖମାନଙ୍କୁ ଦୋକାନ ଭିତରକୁ ଯାଇ ମଦ ପିଇବା ପାଇଁ ସାଦର ଆମନ୍ତ୍ରଣ ଜଣାଇଲେ । ପିଲାଗୁଡ଼ିକ ବାଟରେ ଛନ୍ଦାଛନ୍ଦି ହୋଇ ପଡ଼ିଛନ୍ତି । ଯେତେ ଶୋଷ ହେଲେ ବି ସେମାନଙ୍କୁ ମାଡ଼ିମକଚି ଦୋକାନ ଭିତରକୁ ଯିବାକୁ ସେମାନେ ପଛେଇଲେ । ଇତିମଧ୍ୟରେ ପୁଲିସ୍ ଆସିଗଲେ । ପୁଲିସ୍ ଆସିବା ମାତ୍ରେ ପିକେଟରମାନଙ୍କୁ ପାଦରେ ଠେଲି ଠେଲି ଦ୍ୱାର ମୁହଁରୁ କଡ଼କୁ ଗଡ଼ାଇ ଦେବାକୁ

ଚେଷ୍ଟାକରି ତାହା କରି ନ ପାରିବାରୁ ଟେକି ଘୋଷାରି ସଡ଼କ କଡ଼କୁ ଗଡ଼ାଇ ଦେଲେ । ସେତେବେଳକୁ ପିକେଟରଙ୍କ ଆଣ୍ଠୁଗଣ୍ଠି ଛିଡ଼ି ଲହୁଲୁହାଣ ହେଲାଣି । ତଥାପି ସେମାନେ ଚୁପ୍‌ଚାପ୍ ମଲାପରି ପଡ଼ିଥାନ୍ତି । ଦୋକାନ ଦ୍ୱାର ଖୋଲିହୋଇ ଯିବାରୁ ଗରାଖମାନେ ଦୋକାନରେ ପଶି ମଦ ଖାଇ ପାଟିତୁଣ୍ଡ ଆରମ୍ଭ କରିଦେଲେ । ପୁଲିସ୍ ଏକ ବଳଦିଆ ଗାଡ଼ି ଡକାଇ ପିକେଟରମାନଙ୍କୁ ସେଥିରେ ଲଦିଲାବେଳକୁ ମଦୁଆମାନେ ସେଠାକୁ ଯାଇ ପିକେଟରମାନଙ୍କୁ ଭିଡ଼ାଓଟରା କରିବା ଆରମ୍ଭ କରିଦେଲେ । ପୁଲିସ୍ ମଧ୍ୟ ସେମାନଙ୍କର ଏ ଆଚରଣକୁ ଆୟତ୍ତ କରିପାରିଲେ ନାହିଁ । ଶେଷରେ ବିନୋଦ କାନୁନ୍‌ଗୋ ମଦୁଆମାନଙ୍କ ନିକଟକୁ ଯାଇ ହାତ ଯୋଡ଼ି କହିଲେ– ଆପଣମାନେ ଯଦି ଏପରି ଗଣ୍ଡଗୋଳ କରିବେ ତେବେ ପିକେଟିଂ ଚାଲିପାରିବ ନାହିଁ । ଏ କଥାରେ ମଦୁଆମାନେ ଆହୁରି ଉତ୍ତେଜିତ ହୋଇ କହିଲେ, "କଣ ହେଲା ? ପିକେଟିଂ ବନ୍ଦ ହୋଇଯିବ ? ଯାହା ହେଲେ ହେଉ ପଛେ ପିକେଟିଂ ଅଲବତ୍ ଚାଲିବ ।"

ଏଣେ ବିନୋଦ କାନୁନ୍‌ଗୋଙ୍କ ମନରେ ସନ୍ଦେହ – ଗୁଣନିଧିଟା କାହିଁକି ହଲ୍‌ଚଲ୍ ହେଉନାହିଁ, ସେ ବୋଧେ ମରିଗଲାଣି । ବଳଦଗାଡ଼ିରେ ପିକେଟରମାନେ ଲଦାହୋଇ ଜାଉଁଳିଆପଟି ଭିତରେ ପଶିବାରୁ ବିନୋଦ ଗାଡ଼ି ପଛେ ପଛେ ଯାଇ ବିକଳ ସ୍ୱରରେ ଡାକ ପକାଇଲେ, "ଗୁଣନିଧି, ହେ ଗୁଣନିଧି", ଗୁଣନିଧି ଧୀର ସ୍ୱରରେ ଜବାବ୍ ଦେଲେ, "ମୁଁ ବଞ୍ଚିଛି ।"

ତେଲେଙ୍ଗାବଜାର ପିକେଟିଂ ବ୍ୟବସ୍ଥିତ ହେବାପରେ ବଜ୍ରକବାଟି ଓ ବକ୍‌ସିବଜାର ମଦ ଦୋକାନରେ ପିକେଟିଂ ଆରମ୍ଭ ହେଲା । ବର୍ତ୍ତମାନ ଇନ୍ଦ୍ରଭୁବନ ହେଲାଣି । ସେତେବେଳେ ସଡ଼କ ଦୁଇପଟେ ଖାଲି ଧାନବିଲ ତ ଇଟା ଭାଟି । ବାନରମାନେ ତ ଗିରଫ ହେଲେ ମଣିଷ ନିଶ୍ଚିନ୍ତ, ଗିରଫ ହେଲେ ବଜ୍ରକବାଟି, ଦୋଳମୁଣ୍ଡେଇ-ଖାନ୍‌ନଗର ତିନିମୁହାଣୀ ବାଟେ ନଈ କୂଳେ କୂଳେ ଶିବିରକୁ ଆସନ୍ତି । ଅବଶ୍ୟ ଜଣେ ପର୍ଯ୍ୟବେକ୍ଷକ ସାଙ୍ଗରେ ଥାନ୍ତି ତଥାପି ଶିବିରରେ ରମାଦେବୀ, ମାଳତୀ ଦେବୀ, ନୀଳମଣି ପ୍ରଧାନ ପ୍ରଭୃତି ସେମାନଙ୍କ ପାଇଁ ଉଦ୍‌ବେଗ ପ୍ରକାଶ କରନ୍ତି । ପୁଣି ଚଉଧୁରୀ ବଜାର ଅଫିମ ଗଞ୍ଜେଇ ଦୋକାନରେ ମଧ୍ୟ ପିକେଟିଂ ଚାଲିଲା । ଅଞ୍ଜଳୀ ଦେବୀ, ସୁନ୍ଦରମଣି ଦେବୀ, ଶୋଭା ଦେବୀ, ହୀରାମଣି ଦେବୀ, ପ୍ରଭୃତି ସେଠାରେ ପିକେଟିଂ କରୁଥିଲେ ।

ଏହିପରି ଏ ପିକେଟିଂ ଚାଲିଲା ୧୯୩୧ ମସିହା ମାର୍ଚ୍ଚରେ ଗାନ୍ଧୀ ଆରୱଇନ୍ ସନ୍ଧିପତ୍ର ସ୍ୱାକ୍ଷରିତ ହେବା ପର୍ଯ୍ୟନ୍ତ । ଆଗ ଆଗ ତ ଖୁବ୍ ଗିରଫଦାରୀ ଚାଲିଲା । ଓଡ଼ିଶାର ଜେଲ୍‌ଗୁଡ଼ିକ ଭରତି ହୋଇଗଲା । ସ୍ପେଶାଲ୍ ଟ୍ରେନ୍‌ରେ ଓଡ଼ିଶାର ରାଜବନ୍ଦୀଙ୍କୁ ପାଟନା କ୍ୟାମ୍ପ୍ ଜେଲ୍‌କୁ ପଠାଗଲା । ବାନରଙ୍କ ଭାଉ ବଢ଼ିଲା – "ଆମ ପାଇଁ ଲାଟ୍ ସାହେବଙ୍କ ପରି ସ୍ପେଶାଲ୍ ଟ୍ରେନ୍ ଆସିଲା ।" କି କଳରବ ସେ ସ୍ପେଶାଲ୍ ଟ୍ରେନ୍‌ରେ ! ସତେ କି ବରଯାତ୍ରୀ ଯାଉଛନ୍ତି । ବାଲେଶ୍ୱରରେ ଗାଡ଼ି ଅଟକି ଦଳେ ରାଜବନ୍ଦୀ ସେଠୁ ଟ୍ରେନ୍‌ରେ ଚଢ଼ିଲେ । ବନ୍ଦୀ ମୋଟା ଗୌର (ଗୌରଚନ୍ଦ୍ର ଦାସ) ଟ୍ରେନ୍‌ରେ ଚଢ଼ିବାବେଳେ ଲୋକ ଗହଳି ଦେଖି ଉଲ୍ଲସିତ ହୋଇ "ମହାତ୍ମା ଗାନ୍ଧୀ କି ଜୟ" ଧ୍ୱନି ଦେବା ଆରମ୍ଭ କରିଦେଲେ । ଚାଲିଲା ଗୋରା ସର୍ଜେଣ୍ଟଙ୍କ ବ୍ୟାଟେନ୍ ମାଡ଼ । ମାଡ଼ ଓ ଜୟଧ୍ୱନି ସମାନ ତାଳରେ ଚାଲିଲା । ଗୌର ଦାସଙ୍କ ମାଡ଼ଖିଆ ଚାଲିଥାଏ ଗାଡ଼ି ଛାଡ଼ିଦେଲା । ଦର୍ଶକ ଆଖି ପୋଛି ପୋଛି ଘରକୁ ଗଲେ ।

ସରକାର କେତେ ଗିରଫ କରିବେ ? ଏଟା ତ ବ୍ୟକ୍ତିଗତ ସତ୍ୟାଗ୍ରହ ନୁହେଁ– ଗଣଆନ୍ଦୋଳନ । ଆଜି ଯେ ଦର୍ଶକ କାଲି ସେ ସତ୍ୟାଗ୍ରହୀ । ତେଣୁ ସରକାର ନୂଆ ନୀତି ଧରିଲେ । ପିକେଟରମାନଙ୍କୁ ଧରି ନେଇ ବାଙ୍କୀ ରାସ୍ତାକଡ଼ ବଣରେ ଛାଡ଼ି ଦେଇ ଆସିଲେ । ବେଳେ ବେଳେ ଚଳନ୍ତା ପୁଲିସ୍ ଭ୍ୟାନ୍‌ରୁ ସେମାନଙ୍କୁ ଠେଲି ଦିଆଯାଏ । ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ! ବାଙ୍କୀର ସେ ବାଘ ବଣରୁ ଉଧୁରି ଚାଲି ଚାଲି ଆସି ସେମାନେ ଶିବିରରେ ହାଜର ହୁଅନ୍ତି । ବାଘବଣ ଇଲାଜ୍ କାଟୁ ନ କଲାରୁ ବେତମାଡ଼ ଆରମ୍ଭ ହେଲା । ପନ୍ଦରରୁ ତିରିଶ ପାହାରଯାଏ ବେତ ପାହାର ପିକେଟରଙ୍କ ହାତ ଉପରେ ବସିଲା । କୋର୍ଟରେ ମାଜିଷ୍ଟ୍ରେଟ୍‌ଙ୍କ ଆଗରେ ଜଣେ ଲୋକ ପିଲାଙ୍କ ହାତ ମେଲେଇ ଧରିବ, ଛାଟିଆ ପାଇଁ ପାଇଁ ବେତ ମାରିବ । ହାତ ପାପୁଲି ଫୁଲି ପାଉଁରୁଟି ପରି ହୋଇଯାଏ । ଧଳା ଧଳା ନସି ବହେ, ହାତ ଫାଟିଯାଏ । ବେତ ଖାଇବା ବେଳେ ବାନରମାନେ ଗୀତ ବୋଲନ୍ତି –

ତୁମେ ମାର କେତେ ବେତ ମାରିବ
ଦେଶଲାଗି ଆମେ ଜୀବନ ଦେଇଛୁ
ତୁମେ କି ଆମକୁ ପାରିବ ?
ଆମେ ଡ଼ରୁନାହୁଁ ମରଣେ
ମନ ଦେଇଅଛୁ ବିଭୁ ଚରଣେ ।

ତୁମ ଆମ କଥା ତାଙ୍କ ମିସଲରେ
ଦିନେ ତ ବିଚାର ହୋଇବ ।
ତୁମେ ଶୁଣିଥିବ କର୍ଣ୍ଣେ କୋରାନ୍
ଅବା ବେଦ ବାଇବେଲ୍ ପୁରାଣ ।
ମଦରେ ମୁକତି ଲେଖାଅଛି କାହିଁ
ଆମକୁ ବୁଝାଇ କହିବ ।

କଲେକ୍ଟରେଟ୍‌ରୁ ଏହି ଗୀତ ବୋଲି ବୋଲି ସେମାନେ ଲାଲ୍‌ବାଗ ଦେଉଡ଼ି-ବାଲୁବଜାର-ନୟାସଡ଼କ ବାଟେ ଶିବିରକୁ ଫେରନ୍ତି । ସେ ଦୃଶ୍ୟ ଯେ ଦେଖିଛି, ସେ ଯନ୍ତ୍ରଣା ଅନୁଭବିଛି ସେହି ଏକା ସେ ବେଳର ମନୋଦଶା କଳିପାରିବ । ପିଲାଏ ଗୀତଗାଇ ଫେରିଆସିଲେ ରମା ଦେବୀ, ମାଳତୀ ଦେବୀ, କିରଣବାଳା ସେନ୍ ସେମାନଙ୍କୁ ଦୁଧଭାତ ଗୋଳେଇ ଖୁଆଇ ଦିଅନ୍ତି, ହାତ ଫୁଲା କମିବା ମାତ୍ରେ ପୁଣି ହମ ହମ ହୁଅନ୍ତି ପିକେଟିଂ କରିବା ପାଇଁ । କିଏ ଭରି ଦେଲା ଧ୍ରୁବ ପ୍ରହଲ୍ଲାଦଙ୍କ ନିଷ୍ଠା ସେମାନଙ୍କ ଭିତରେ ? କେଉଁଠୁ ପାଇଲେ ସେମାନେ ଦେଶ ପାଇଁ ପ୍ରାଣ ଦେବାର ପୁଣ୍ୟ ପ୍ରେରଣା । ଭାରତର ଶିଶୁ ଭାରତର ସ୍ୱାଧୀନତା ପାଇଁ ଯେଉଁ ତପସ୍ୟା କଲା ତାହା ଧ୍ରୁବ ପହ୍ଲାଦଙ୍କ ତପସ୍ୟାକୁ ସୁଦ୍ଧା ଫିକା କରିଦେଲା ।

ସଭା, ଶୋଭାଯାତ୍ରା, ଲିଫ୍‌ଲେଟ୍ ବଣ୍ଟା, ବିଦେଶୀ ବର୍ଜନ, ମଦ, ଗଞ୍ଜେଇ, ଅଫିମ ଦୋକାନରେ ପିକେଟିଂ ଆଦି କାର୍ଯ୍ୟକ୍ରମ ସାଙ୍ଗକୁ ଗାଁ ଗହଳରେ ସତ୍ୟାଗ୍ରହ ବାର୍ତ୍ତା ପ୍ରଚାର, ସତ୍ୟାଗ୍ରହୀ ସଂଗ୍ରହ, ଅର୍ଥ ସଂଗ୍ରହ ଆଦି କାମ ମଧ୍ୟ ଚାଲିଥାଏ । ପ୍ରବୀଣ ସତ୍ୟାଗ୍ରହୀମାନେ ଗାଁ ଗହଳକୁ ଯାଆନ୍ତି । ବାନରମାନଙ୍କୁ ମଧ୍ୟ ସେମାନଙ୍କ ସାଙ୍ଗରେ ଯିବାର ସୁଯୋଗ ବେଳେବେଳେ ମିଳିଯାଏ । ମଫସଲରେ ମଧ୍ୟ କି ଉତ୍ସାହ, ଉନ୍ମାଦନା ! ରମାଦେବୀ ଗଲେ ବେଣାହାର ବାଲିକୁଦା ଅଞ୍ଚଳକୁ ସତ୍ୟାଗ୍ରହୀ ଓ ଅର୍ଥ ସଂଗ୍ରହ କରିବାକୁ । ତାଙ୍କ ସାଙ୍ଗରେ ଯିବା ପାଳି ମୋର ପଡ଼ିଲା । ସାଧାରଣ ସଭା ପରେ ଘର ଘର ବୁଲି ଅର୍ଥ ସଂଗ୍ରହ ଚାଲେ । ସ୍ତ୍ରୀ ଲୋକମାନେ ଗହଣା ଚାନ୍ଦା ଦିଅନ୍ତି । ବାଲିକୁଦାରେ ରମା ଦେବୀଙ୍କ ନଣନ୍ଦ ଘର । ପ୍ରଥମେ ଦୁଇ ନଣନ୍ଦ ସୁନା ଖଡୁ ଓ ସୁନା ହାର ଦେଇ ଅନୁକୂଳ କଲେ । ତାହାପରେ ଗଦା ହେଲା ସୁନା ଓ ରୂପା ଗହଣା । ବଡ଼ ବଡ଼ ପାଛିଆରେ ସେ ଢ଼ୋଲା ଢ଼ୋଲା ଗହଣା ସବୁ ରଖା ହୋଇଥାଏ । ମୁଁ ମଧ୍ୟ ଲକ୍ଷ୍ମୀଧର ପିଉସାଙ୍କ ବାରିକ ପାଣୁ ସଙ୍ଗେ ମୁସଲମାନ ବସ୍ତିକୁ ଯାଇ ପାଛିଆଏ ରୂପା ଗହଣା

ସଂଗ୍ରହ କରି ଆଣିଲି ।

ଦୋଳବେଦୀ ପାଖରେ ସଭା ହେଲା । ଜଣେ ସ୍ତ୍ରୀଲୋକ, ଯାହାକୁ ଦେଖିବା ସାତ ସପନ, ସେ ସଭାରେ ଛିଡ଼ା ହୋଇ ବକ୍ତୃତା ଦେବ । ଲୋକ ଥାଟପଟାଳି ଭାଙ୍ଗୁଥାନ୍ତି । ସଭା ସରିବା ପରେ ନାଗପୁରର ହରେକୃଷ୍ଣ ବିଶ୍ୱାଳ, କଣିଆର ବୈକୁଣ୍ଠ, ବାଲିକୁଦାର ଗୋବିନ୍ଦ ଦାସ, ବୀର ଦାସ ପ୍ରଭୃତି ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାଇଲେ । ଗୋବିନ୍ଦ ବାବୁ ବଢ଼ିଆ ଗୀତ ବୋଲନ୍ତି । ବାଜିଲା ବାଲିକୁଦା ଅଞ୍ଚଳରେ ସ୍ୱରାଜ୍ୟ-ଶଙ୍ଖ । ଅଳାଭରରୁ ନିଶାମଣି ଦେବୀଙ୍କ ନେତୃତ୍ୱରେ ଏକ ବିରାଟ ମହିଳା ଶୋଭାଯାତ୍ରା ଯେତେବେଳେ ବାଲିକୁଦାରେ ପହଞ୍ଚିଲା, ଲୋକେ ହତଚକିତ ହୋଇଗଲେ । କାଲି ଯେ ଘର କୋଣରେ ଆଜି ସେ ରାଜଦାଣ୍ଡରେ !

ମାଳତୀ ଦେବୀ ଓ ରମା ଦେବୀ କେନ୍ଦ୍ରାପଡ଼ା ଗସ୍ତରେ ଗଲେ । କେନ୍ଦ୍ରାପଡ଼ା ଏସ୍.ଡ଼ି.ଓ. ବସ୍ ମାଲିକଙ୍କୁ ଆଦେଶ ଦେଲେ ଯେ ସେ ଦୁହିଙ୍କୁ ବସ୍‌ରେ ବସାଇବ ନାହିଁ । ଦୁହେଁ ଚାଲି ଚାଲି ପଟ୍ଟାମୁଣ୍ଡାଇ ଗଲେ । ମେଘ ବରଷୁ ଥାଏ । ସଞ୍ଜ ବଢ଼ିଗଲା । ଗୋଟିଏ ଚାଳଘରର ତାଟିକବାଟ ଖଡ଼ଖଡ଼ କଲାରୁ ଜଣେ ବୁଢ଼ୀ କବାଟ ଫିଟେଇଲେ । ଦୁଇ ଝାଆ ଆଶ୍ରୟ ମାଗିବାରୁ ଘର ଭିତରକୁ ଡାକିନେଲେ । ପୁଣି କ'ଣ ଭାବି ଦୁହିଁଙ୍କ ମୁହଁକୁ ଚାହିଁଲେ, ତାହାପରେ ଘରୁ ବାହାରି ଯିବାକୁ କହିଲେ । ଦୁହେଁ ତିନି ତିନି ମାଟିଆ ଗାଁକୁ ଗଲେ । ସେ ଗାଁରେ ନବବାବୁଙ୍କର ଜଣେ ସହପାଠୀଙ୍କ ଘର । ରାତିଟା ସେଠି ଆଶ୍ରୟ ମିଳିଯିବ ପରା ! ସେ ମଧ ଘରେ ପୂରେଇଲେ ନାହିଁ । ଗୋଟିଏ ମଠ ବାରଣ୍ଡାରେ ଦୁଇଟିଯାକ ଭୁଆଷୁଣୀ ରାତି କଟେଇଲେ । ବର୍ଷା ଛାଡ଼ିଲା, ବିରାଟ ସଭା ହେଲା । ରାତି ପାହିଲାରୁ ଲୋକଙ୍କୁ ଭେଟି କଥାବାର୍ତ୍ତା କରି କଟକ ଫେରିଲେ । ସେତିକିବେଳେ କାଉନ୍‌ସିଲ୍ ନିର୍ବାଚନ ହେଉଥାଏ । ୧୯୩୦ ମସିହା ସେପ୍ଟେମ୍ବର କୋଡ଼ିଏ ତାରିଖ । ମାଳତୀ ଦେବୀ ଓ ଗୋଲାପସୁନ୍ଦରୀ ଦେବୀ ଭୋଟ୍ ନ ଦେବା ପାଇଁ ପିକେଟିଂ କରି ଗିରଫ ହେଲେ । ଗୋଲାପସୁନ୍ଦରୀ ଦେବୀଙ୍କୁ ଛାଡ଼ି ଦିଆହେଲା । ମାଳତୀ ଦେବୀଙ୍କୁ ଛଅମାସ ସଜା ହେଲା । ଦୁଇବର୍ଷ ତିନିମାସର ଝିଅ ଉତ୍ତରା ସହିତ ସେ ଭାଗଲପୁର ଜେଲ୍‌କୁ ଗଲେ । ଆମ ବାନର ଉସ୍‌ମାନ୍ ଜୟଧ୍ୱନି ଦେଲା– "ମାଲ୍‌ତୀ ଦେବୀ କି ଜୟ, ଉନ୍‌କୀ ବେଟୀକୀ ଜୟ ।"

ସଙ୍ଗୀତ ମଣିଷର ଜୀବନକୁ କିପରି ବଦଳାଇ ଦିଏ ତାହା ଦସ୍ୟୁ ରତ୍ନାକରଙ୍କ ଠାରୁ ଆରମ୍ଭ କରି ଛତ୍ରପତି ଶିବାଜୀଙ୍କ ପର୍ଯ୍ୟନ୍ତ ବହୁ ବ୍ୟକ୍ତିଙ୍କ ଜୀବନୀରେ ଉଲ୍ଲିଖିତ

ହୋଇଛି । କିନ୍ତୁ ଅଙ୍ଗେ ନିଭେଇବା କଥାଟା ନିଆରା । ବାଞ୍ଛାନିଧିବାବୁ ଓ ବୀରବାବୁଙ୍କ ଗୀତ ଲୋକପ୍ରାଣରେ ଗଭୀର ଦେଶଭକ୍ତିର ଜୁଆର ଆଣି ଦେଉଥିଲା । ଲବଣ ସତ୍ୟାଗ୍ରହ ଆରମ୍ଭ ହେବାମାତ୍ରେ ବୀରବାବୁ ଲେଖିଲେ –

ଆସରେ ଆଜି ଆସ

ଦରିଆ ଦଖଲ କରିଯିବ କିଏ ଆସ ।

ପତାକା ଉତ୍ତୋଳନ ପାଇଁ ବାଞ୍ଛାନିଧି ବାବୁ ଲେଖିଲେ–

ରେ ପତାକା ଜାତିର ଗରବ

ଜାତିର ଜୀବନ ପରାଣ ତୁହିରେ

ଗାନ୍ଧିଜୀଙ୍କ ଗିରଫରେ ବୀରବାବୁ ଲେଖିଲେ–

ଶୟନେ ସ୍ୱପନେ କିବା ଜାଗରଣେ

ସେହି ଗାନ୍ଧୀ କଥା ଭାବୁଛି ।

ଶୋଭାଯାତ୍ରାରେ ବୋଲା ହେଉଥିବା ଗୋଟିଏ ଗୀତ ଲୋକଙ୍କୁ ଭାରି ପ୍ରଭାବିତ କରୁଥିଲା ।

ସାରା ବିଲାତରେ ହାହାକାର

ଆମେ ପକାଇ ଦେବୁ ।

ଏହିପରି ପରିସ୍ଥିତି ଓ ପ୍ରତିଦିନର ଅତ୍ୟାଚାର ଓ ଦମନଲୀଳାର ବର୍ଣ୍ଣନା କରି ତୁରନ୍ତ ସେ ଦୁହେଁ ଶହ ଶହ ଗୀତ ଲେଖିଥିଲେ ।

ଶୋଭାଯାତ୍ରା, ସଭା, ପିକେଟିଂ ଆଦି ତ ନିତ୍ୟକର୍ମ । ପୁଣି ପର୍ବପର୍ବାଣୀ ପରି ଆମେ ଗୋଟିଏ ଗୋଟିଏ ବିଶେଷ ଦିବସ ଉପଲକ୍ଷେ ବିଶେଷ କାର୍ଯ୍ୟକ୍ରମ ପାଳନ କରୁଥିଲୁ । ଉଦାହରଣ ସ୍ୱରୂପ, ଏପ୍ରିଲ୍ ଛଅ ତାରିଖରୁ ତେର ତାରିଖ ପର୍ଯ୍ୟନ୍ତ ଜାତୀୟ ସପ୍ତାହ ରୂପେ ପାଳନ କରାଯାଉଥିଲା । ସଭା, ଶୋଭାଯାତ୍ରା, ଖଦୀ ବିକ୍ରୀ ସୂତାକଟା ପ୍ରତିଯୋଗିତା ଆଦି ଥିଲା ସେଥିରେ ମୁଖ୍ୟ କାମ । ବକ୍ତୃତାର ମୁଖ୍ୟ ବିଷୟବସ୍ତୁ ହେଉଥିଲା ଜାଲିଆନ୍‌ୱାଲାବାଗ ହତ୍ୟାକାଣ୍ଡ । ନିଖିଳ ଭାରତ କଂଗ୍ରେସ କମିଟିର ନିର୍ଦ୍ଦେଶରେ ନଭେମ୍ବର ଷୋଳ ତାରିଖଟି ଜବାହର ଦିବସ ରୂପେ ପାଳିତ ହେଲା । କାଠଯୋଡ଼ି ନଦୀ ବାଲି ତ ଆମର ଟାଉନ୍ ହଲ୍ । ଗୋଟାଏ ଗ୍ୟାସ୍ ବତୀ ଜାଳି ଚାରି

ପାଞ୍ଚଜଣ ବସିଗଲେ ଲୋକ ଜମନ୍ତି । ସବ୍‌ଡେପୁଟୀ ମାଜିଷ୍ଟ୍ରେଟ୍ ଶ୍ରୀ ରାଜକିଶୋର ଗଡ଼ନାୟକ ଲଣ୍ଠନ ଓ ତିନି ଚାରିଜଣ ପାଖଲୋକଙ୍କୁ ସାଙ୍ଗରେ ଧରି ସଭାକୁ ଗଡ଼ନ୍ତି ବକ୍ତୃତା ଟିପିବା ପାଇଁ । ଜବାହର ଦିବସ ଦିନ କାଳୀଘାଟ ପାଖରେ ନଦୀବାଲିରେ ସଭା ହେଲା । ସେହି ଉତ୍ସବର ବଳିବର୍ଦ୍ଦ ଥିଲେ ଗୁଣନିଧି ମହାନ୍ତି । ସେ ବକ୍ତୃତା ଦେବାକୁ ଛିଡ଼ା ହେବା ମାତ୍ରେ ଗିରଫ ହେଲେ । ତାଙ୍କପରେ ଆଉ ଜଣେ, ତାଙ୍କ ପରେ ଆଉ ଜଣେ ଏହିପରି ଛଅଷଠି ଜଣଙ୍କୁ ଗିରଫ କରାଯିବା ପରେ ସଭା ନ ଭାଙ୍ଗିବାରୁ ଡି.ଏସ୍.ପି. ରଥ ସାହେବ ଲାଠି ଚଳାଇବାକୁ ଆଦେଶ ଦେଲେ । କଟକରେ ଏହା ହିଁ ପ୍ରଥମ ଲାଠି ଚାଳନା । ମୁଁ ମୋ ସାନମା'ଙ୍କ ପାଖରେ ଥାଇ ଦୋତାଲା ବାରଣ୍ଡାରୁ ଦେଖୁଥାଏ ଲାଠି ଚାଲିଲାରୁ ନଈ ବାଲିରୁ ଲୋକେ ବନ୍ଧ ଉପରକୁ ଉଠି ଆସିଲେ । ପୁଲିସ୍ ସେମାନଙ୍କୁ ଗୋଡ଼େଇ ଗୋଡ଼େଇ ପିଟୁଥାନ୍ତି । ମନମୋହନ ଚୌଧୁରୀଙ୍କ ଅଣ୍ଟାରେ ସେହିଦିନ ଜବର ଠେଙ୍ଗା ପାହାର ବସିଥିଲା ।

ଭାରତ ଜାତୀୟ କଂଗ୍ରେସ ଅଧିବେଶନରେ ଯୋଗଦେବା ପାଇଁ ଯିବାଟା ମଧ୍ୟ ବିଶେଷ କାର୍ଯ୍ୟକ୍ରମ ହୋଇଗଲା ୧୯୩୦ରେ । କଂଗ୍ରେସ ବେଆଇନ୍ ଘୋଷିତ ହୋଇ ସାରିଥାଏ । ଉପରୁ ନିର୍ଦ୍ଦେଶ ଆସିଲା କଲିକତାରେ ଶ୍ରୀମତୀ ନେଲି ସେନ୍‌ଗୁପ୍ତାଙ୍କ ଅଧ୍ୟକ୍ଷତାରେ କଂଗ୍ରେସ ଅଧିବେଶନ ହେବ । କଲିକତାରେ ପ୍ରତିନିଧିମାନେ ବିଭିନ୍ନ ସ୍ଥାନରେ ଛପି ରହି ଅମୁକ ସମୟରେ ଅମୁକ ସ୍କୋୟାରରେ ଏକତ୍ର ହେବାମାତ୍ରେ ନେଲୀ ସେନ୍‌ଗୁପ୍ତ ଭାଷଣ ଦେବେ । ଯେତେ ଲୁଚେଇ ଛପେଇ ରଖିଲେ ସୁଦ୍ଧା ସରକାରଙ୍କୁ ଏହା ଅଛପା ରହିଲା ନାହିଁ । ଓଡ଼ିଶାରୁ ଯାଇଥିବା ପ୍ରତିନିଧିମାନେ ବାଟରୁ ଗିରଫ ହୋଇଗଲେ । କେବଳ ଅନ୍ତର୍ଯ୍ୟାମୀ ପଣ୍ଡା ମୁଣ୍ଡରେ ଠେକା ଭିଡ଼ି ଚିତା ଚଇତନ କାଟି ପୁରୀ ପଣ୍ଡା ବେଶ ଧରି କଲକତାରେ ପହଞ୍ଚି ଅଧିବେଶନରେ ଯୋଗ ଦେଲେ ।

ଗୋଲ୍‌ଟେବୁଲ୍ ବୈଠକକୁ ପାରଳାର ମହାରାଜା ପ୍ରତିନିଧି ହୋଇ ଗଲାବେଳେ କଟକରେ ତାଙ୍କୁ ସମ୍ବର୍ଦ୍ଧନା ଦେବା ପାଇଁ ଆୟୋଜନ ଚାଲିଲା । ଗାନ୍ଧିଜୀ ଓ ବିଶିଷ୍ଟ ନେତୃବୃନ୍ଦ ସେତେବେଳେ ଜେଲ୍‌ରେ । ଏପରି ଭାବରେ ବୈଠକ ଡାକିବାଟାକୁ କଂଗ୍ରେସ ପକ୍ଷରୁ ନିନ୍ଦା କରାଯାଇଥିଲା । କଟକର ଚିତ୍ରଶିଳ୍ପୀ ବିପିନ ବିହାରୀ ଚୌଧୁରୀ ଓ ମନମୋହନ ଚୌଧୁରୀ ମିଶି ଏକ ବିରାଟ ବ୍ୟଙ୍ଗଚିତ୍ର ଆଙ୍କିଲେ । ବାନରମାନେ ସେହି ପୋଷ୍ଟର ଧରି ସମ୍ବର୍ଦ୍ଧନା ସ୍ଥାନକୁ ଯାଇ ବିରୋଧ ପ୍ରଦର୍ଶନ କଲେ । ସାଲେପୁରର ଟିକି ଗୋଲକ ସେଦିନ ନେତା ହୋଇ ଖୁବ୍ ଜୋରଦାର ଭାଷଣ ଦେଲା– ପାରଳାର ଗଜପତି ! ଛି ଛି, ଲଜ୍ଜା, ଅପମାନ ଇତ୍ୟାଦି ।

କେହି ମୁଖ୍ୟ ବ୍ୟକ୍ତି ଗିରଫ ହେବା ବା ଜେଲ୍‌ରୁ ଖଲାସ ହେବାଟା ମଧ୍ୟ ଆମର ଗୋଟାଏ ଉତ୍ସବ । ଗିରଫ ହେଲେ ନୂଆ ଗୀତ ଲେଖା ହେବ, ଶୋଭାଯାତ୍ରା ବାହାରିବ, ସଭା ହେବ । ଜେଲ୍‌ରୁ ଖଲାସ ହେଲେ ମଧ୍ୟ ସେହି କାର୍ଯ୍ୟକ୍ରମ, ଖାଲି ଗୀତର ଭାଷା ଅଲଗା । ସରଳା ଦେବୀ ଗିରଫ ହେଲେ । ବିରାଟ ଶୋଭାଯାତ୍ରାରେ ଗୀତ ବୋଲା ହେଲା–

ଉତ୍କଳ ମହିଳା ଶ୍ରୀମତୀ ସରଳା
ଭାରତର ପ୍ରିୟ ନନ୍ଦିନୀ
ବନ୍ଦିନୀ ଆଜି ବନ୍ଦିନୀ

ଗୁଣନିଧି ବାବୁ ଜେଲ୍‌ରୁ ଖଲାସ ହେଲେ । ତାଙ୍କୁ ଶୋଭାଯାତ୍ରା କରି ଶିବିରକୁ ଅଣାଗଲା । ଗୀତ ବୋଲା ହେଲା–

ଭେଦି ଅରିଦୁର୍ଗ ଚାଲ ଭାଇ ଆଜି
ବଜାଇ ବିଜୟ ବାଦ୍ୟ
ପରାଧୀନ କିଏ କରିବ ଆମକୁ
ଜଗତରେ କାର ସାଧ୍ୟ ହେ
ଲୁହା ବାଡ଼ ମଧ୍ୟେ ଛନ୍ଦି
ଆମ ମନ ତ ନୁହଇ ବନ୍ଦୀ ହେ
ଲୁହାବାଡ଼ ମଧ୍ୟେ ଛନ୍ଦି .... ଇତ୍ୟାଦି ।

ନଭେମ୍ବର ଆଠ ତାରିଖରେ ନବକୃଷ୍ଣ ଚୌଧୁରୀ ଜେଲ୍‌ରୁ ଖଲାସ ହେଲେ । ସେ ଖଜଣା ବନ୍ଦ ଆନ୍ଦୋଳନ ଚଳାଇବାକୁ ଯାଇ ବାଲେଶ୍ୱରରେ ଗିରଫ ହୋଇଥିଲେ । ଆମେ ତାଙ୍କୁ ଜେଲ୍ ଫାଟକରୁ ପାଛୋଟି ଆଣିଲୁ । ସ୍ୱରାଜ୍ୟ ଆଶ୍ରମରେ ପ୍ରାଦେଶିକ କଂଗ୍ରେସ କମିଟି ବୈଠକ ବସିଲା । ନଈବାଲିରେ ସାଧାରଣ ସଭା ହେଲା । ନବ ବାବୁ ଟିକିଏ ଲମ୍ବା ବକ୍ତୃତା ଦିଅନ୍ତି । ରାତି ଏଗାରଟାରେ ସଭା ମଉଳିଲା । ସଭାରୁ ଫେରି ଦେଖାଗଲା ରମା ଦେବୀଙ୍କୁ ଗିରଫ କରିବାକୁ ପୁଲିସ୍ ତାଙ୍କ ଦାଣ୍ଡରେ ବସିଛନ୍ତି । ସ୍ୱରାଜ୍ୟ ଆଶ୍ରମରେ ପଣ୍ଡିତ ପଡ଼ିହାରୀଙ୍କୁ ଧରି ନେବାକୁ ପୁଲିସ୍ ଜଗିଛନ୍ତି । ସେହି ରାତି ଏଗାରଟାରେ ରମା ଦେବୀ, ପଢ଼ିହାରୀ ମହାଶୟ ଓ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ଗିରଫ କରାଯାଇ ରାତି ବାରଟାରେ କଚେରୀ ଖୋଲିଲା । ବନ୍ଦୀମାନଙ୍କୁ କୋର୍ଟରେ

ହାଜର କରାଇ ହାଜତକୁ ନିଆ ହେଲା । ରାତି ପାହିଲାରୁ କଟକ ସହରରେ ଚହଳ ପଡ଼ିଗଲା । ସାଧାରଣ ସଭା ପାଇଁ ବୀରବାବୁ ଗୀତ ଲେଖିଦେଲେ–

ଭାଇ ହେ ! ମୁଁ ତ ରହି ନ ପାରିବି ଏଣିକି

ବନ୍ଧୁ ହେ ! ମୁଁ ତ ସହି ନ ପାରିବି ଏଣିକି ।

ଜେଲ୍ ଭିତରେ ମଧ ସତ୍ୟାଗ୍ରହୀମାନେ ବିଶେଷତଃ ବାନରମାନେ ହାଉଆ ସରଗରମ କରି ରଖୁଥାନ୍ତି– ନିଜ ଗୁଣ ଅନୁସରି କର୍ମ କରୁଥାନ୍ତି । ବିଶିଷ୍ଟ ସତ୍ୟାଗ୍ରହୀ, ଯାହାକୁ ସରକାର 'କ' ବା 'ଖ' ଶ୍ରେଣୀରେ ରଖୁଥିଲେ, ସେମାନଙ୍କୁ ହଜାରିବାଗ୍ ସେଣ୍ଟ୍ରାଲ୍ ଜେଲ୍‌କୁ ପଠାଇ ଦିଆ ଯାଉଥିଲା । ମହିଳା ବନ୍ଦୀ ଯାଇଥିଲେ ଭାଗଲପୁର ଜେଲ୍‌କୁ । ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ କୃପାସିନ୍ଧୁ ହୋତା, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ବୟୋଜ୍ୟେଷ୍ଠମାନେ ଥିଲେ ହଜାରିବାଗ ଜେଲ୍‌ରେ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ପୁଅ ଅଶୋକ ଆମ ସାଙ୍ଗ । ସେ ସେଠାକୁ ଯାଇ ନୀଳକଣ୍ଠ ବାବୁଙ୍କ ସଙ୍ଗେ ଦେଖା କରି ଆସି ଆମକୁ ଜେଲ୍‌ରେ ଖବର ଶୁଣାଇଲେ – ନୀଳକଣ୍ଠ ବାବୁ ଗୀତାର ଭାଷ୍ୟ ଲେଖୁଛନ୍ତି ଏବଂ ବିଭିନ୍ନ ପ୍ରକାର ମାଛ ତରକାରୀ ରାନ୍ଧିବା ପ୍ରୟୋଗ ମଧ ଚଳାଇଛନ୍ତି । ଗୋପବାବୁ ତାଙ୍କୁ ଦିନେ ଦହିମାଛ ରାନ୍ଧି ଖୁଆଇ ମାଛ ରନ୍ଧାରେ ତାଙ୍କର ପ୍ରଶଂସାଭାଜନ ହୋଇଛନ୍ତି । ଆଚାର୍ଯ୍ୟ ମହାଶୟ ଉପନିଷଦ ଅନୁବାଦ କରୁଛନ୍ତି । ହଜାରିବାଗ୍ ଶୀତରେ ସେ ପାହାନ୍ତାରୁ ଉଠି ବାସି ପାଣିରେ ଗାଧୋଉଛନ୍ତି । ଗୋପବାବୁ ଗାଲିଚା ବୁଣାରେ ପାରଦର୍ଶୀ ହୋଇ ଗଲେଣି । ସମସ୍ତେ ଅଲଗା ଅଲଗା ଗୋଟିଏ ଗୋଟିଏ ସେଲ୍‌ରେ ରହୁଛନ୍ତି । ନମ୍ବର ବନ୍ଦ (ସେଲ୍ ଦ୍ୱାରରେ ଚାବି ପଡ଼ିବା) ପରେ ପୁରୁଲିଆର ନିରାପଦ ବାବୁ ସ୍ୱର ବଦଳାଇ ବଦଳାଇ ବଡ଼ ପାଟିରେ ଏକକ ନାଟକ ଅଭିନୟ କରି ସମସ୍ତଙ୍କର ମନୋରଞ୍ଜନ କରୁଛନ୍ତି । ବାବୁ ରାଜେନ୍ଦ୍ର ପ୍ରସାଦ ଶ୍ୱାସରେ ପେଲି ହେଉଛନ୍ତି କିନ୍ତୁ ସୂତାକଟା ଗତିରେ ସେ ପ୍ରଥମ । ଲିଙ୍ଗରାଜ ବାବୁ କଣ ଗୋଟାଏ ବହି ଲେଖା ଆରମ୍ଭ କରିଛନ୍ତି ଇତ୍ୟାଦି ଇତ୍ୟାଦି । ପାଟ୍‌ନା କ୍ୟାମ୍ପ ଜେଲ୍ ଓ ଓଡ଼ିଶା ଭିତରେ ଜେଲ୍‌ରେ ଥିବା ଯୁବକ ସତ୍ୟାଗ୍ରହୀଙ୍କ ମଧରେ ବିଶିଷ୍ଟ ଗୋକୁଳାନନ୍ଦ ମହାନ୍ତି, ଉପେନ୍ଦ୍ର ପଣ୍ଡା, ନବକୃଷ୍ଣ ଚୌଧୁରୀ ପ୍ରଭୃତିଙ୍କ କାର୍ଯ୍ୟକଳାପ ଆଉ ପ୍ରକାରେ । ଯଥା : ନବବାବୁ, ଗୋକୁଳିବାବୁ କାର୍ଲମାର୍କସ୍‌ଙ୍କ 'କ୍ୟାପିଟାଲ' ଲୁଚେଇ ଛପେଇ ଯୋଗାଡ଼ କରି ପଢ଼ନ୍ତି । 'ଟିକ୍‌ଡ଼ମ୍'ରେ ଅର୍ଥାତ୍ ଲୁଚେଇ ଛପେଇ ଜେଲ୍ ବାହାରକୁ ଚିଠିପତ୍ର ପଠାଇ ଆନ୍ଦୋଳନ କିପରି ତେଜିବ

ସେହି ସୂଚନାମାନ ଦିଅନ୍ତି । ବାନରମାନଙ୍କ ସଙ୍ଗେ ବୋହୂଚୋରୀ, କିତ୍‌କିତ୍ ଖେଳିବା, ସେମାନଙ୍କର ଜ୍ଞାନବର୍ଦ୍ଧନ ପାଇଁ ଆନ୍ଦୋଳନ ଓ ବିଭିନ୍ନ ବିଷୟରେ ଚର୍ଚ୍ଚା ଆଲୋଚନା କରିବା ଆଦିରେ ସମୟ ଦିଅନ୍ତି । ମଦନ ମୋହନ ପଟ୍ଟନାୟକଙ୍କ ନଜର ଜେଲ୍ ରଷୋଡ଼ା ଉପରେ । ଉପେନ୍ଦ୍ର ପଣ୍ଡା ଭଜନ, ହାସ୍ୟରସାଶ୍ରିତ ସଙ୍ଗୀତ ଲେଖିବାଠାରୁ ଆରମ୍ଭ କରି 'କମ୍ବଳ ଘୋଡ଼ିଆ' କାର୍ଯ୍ୟକ୍ରମ ଯାଏ ସବୁ କାର୍ଯ୍ୟରେ ଭାଗୀଦାର ।

ବିନୋଦ କାନୁନଗୋ, ନିତ୍ୟାନନ୍ଦ ମହାପାତ୍ର ଆଦି ଥିଲେ ଚିନ୍ତାଶୀଳ କିଶୋର ସତ୍ୟାଗ୍ରହୀ । ସେମାନେ ଅଧ୍ୟୟନ, ଆତ୍ମୋନ୍ନତିରେ ଅଧିକ ସମୟ ଦିଅନ୍ତି । ବାନରମାନଙ୍କର ହିତାହିତ ଜ୍ଞାନଶୂନ୍ୟତା ଓ ଯୁଗପତ୍ ବାନର ମନୋବୃତ୍ତି ଦେଖି ସେମାନଙ୍କର ଭବିଷ୍ୟତ ସମ୍ବନ୍ଧରେ ଚିନ୍ତିତ ହୋଇ ବାନରମାନଙ୍କୁ ସଦୁପଦେଶ ଦିଅନ୍ତି । ସନାତନ, ବୈଦ୍ୟନାଥ ଆଦି କେତେକ ବାନର ସେମାନଙ୍କ ସଦୁପଦେଶ ପ୍ରଭାବରେ 'ମଣିଷ' ହେବା ପାଇଁ ଚେଷ୍ଟା ମଧ କରୁଥାନ୍ତି । ଅଧିକାଂଶ ବାନର ଅଳ୍ପ ସମୟ ସଦୁପଦେଶ ଶ୍ରବଣ ଓ ଅଧିକ ସମୟ ଖେଳକୌତୁକ ଓ ମନୋରଞ୍ଜନରେ ସମୟ କଟାନ୍ତି । ବ୍ୟଙ୍ଗ କବିତା ରଚନା ଓ ବନ୍ଦୀ କବିମାନଙ୍କର ଅନୁକରଣ କରିବା ମଧ ସେମାନଙ୍କର ଗୋଟିଏ ପ୍ରିୟ କାର୍ଯ୍ୟ । ଉଦାହରଣ ସ୍ୱରୂପ ନିତ୍ୟାନନ୍ଦ ମହାପାତ୍ର ପାଟନା କ୍ୟାମ୍ପ ଜେଲ୍‌ରେ ଅମିତ୍ରାକ୍ଷର ଛନ୍ଦରେ କବିତା ଲେଖୁଥିବା କଥା ଆବିଷ୍କାର କରି କତିପୟ ବାନର ଆପଣା ମଧରେ ଅମିତ୍ରାକ୍ଷର ଛନ୍ଦରେ କଥାବାର୍ତ୍ତା କରିବା ଆରମ୍ଭ କଲେ– ଆସ ନିତ୍ୟାନନ୍ଦ ! ଯିବା ବାଉଁଶ ବାଡ଼ିକୁ, ଭାଙ୍ଗି ଦାନ୍ତକାଠି, ଘଷିବା ଏ ଦାନ୍ତ ଇତ୍ୟାଦି । ବାନରମାନଙ୍କ ମଧରେ ଆକୃତିରେ ଓ ବୟସରେ ଯଦୁମଣି ନାୟକ ସବୁଠାରୁ ସାନ । ସେଥିପାଇଁ ୧୯୩୦ରେ ନୀଳମଣି ବାବୁ ଯେତେ ବୁଲେଟିନ୍ ବାହାର କରୁଥିଲେ ସେ ବୁଲେଟିନ୍ ତଳେ ନାମ ରହୁଥିଲା 'ଯଦୁମଣି ନାୟକ, ପ୍ରଚାରକ' । ଆମେମାନେ ସେ ବୁଲେଟିନ୍ ବାଣ୍ଟୁ । ବୋଲିବା ବାହୁଲ୍ୟ ଏ ବୁଲେଟିନ୍ ସାଇକ୍ଲୋଷ୍ଟାଇଲ୍‌ରେ ଛାପିବା ଓ ବାଣ୍ଟିବା ବେଳେ ଧରାପଡ଼ିଲେ କାରାଦଣ୍ଡ ସୁନିଶ୍ଚିତ । ଜେଲ୍ ଭିତରେ ଯଦୁମଣି ଦେହରେ ଥରେ ବହୁତ କାଛୁ ହେଲା । ବିଚରାର ଉଠିବା ବସିବା ମଧ କଷ୍ଟକର ହେଲା । ଥରେ ରାତିରେ ସେ ଅସ୍ଥାନରେ ଅପକର୍ମ କରିଦେଲା । ଯଦୁମଣିର କୀର୍ତ୍ତିକୁ ଅମର କରିବା ପାଇଁ ବାନରମାନେ ସଙ୍ଗୀତ ରଚନା କଲେ–

ଜଗତେ ନ ଥିଲେ ଯଦୁ ଅବତାର
ପ୍ରଚାରକ କିଏ ହୁଅନ୍ତା ?

ଢେଏଲକୁ ଥରେ ଯାଇଥିଲେ ଯଦୁ

କାଛୁ ଅବଡାରେ ହେଲେ ଲୁଦୁବୁଦୁ

ଅନ୍ଧାର ରାତିରେ ଉଆର୍ଡ଼ ଭିତରେ

ଢେଗ ତଳେ କିଏ — ' ଇତ୍ୟାଦି

ନବବାବୁ ଜେଲ୍‌ରୁ ଖଲାସ ହେବା ବେଳେ ବିଦାୟ ସଙ୍ଗୀତ ବୋଲା ହେଲା–

ନମ୍ବରେ ନମ୍ବରେ ଟୁକୁରୀ ସଜା

ଢେଗେ ଗଙ୍ଗା ଭରା

ଧଡ଼ର ଧଡ଼ର ପଡ଼ର ପଡ଼ର

ହୁଏ ରାତି ସାରା

[୧]ବ୍ରଜେନ୍ ବାବୁର ମଧୁର ବାଣୀ

[୨]ଏକ ଆଖିଆର ଠାଣି

କଞ୍ଚାସାରୁ ନାଲୁଆ ଭେଣ୍ଡି

ନିଶ୍ଚେ ଆଣିବ ଟାଣି ନବବାବୁ

ନିଶ୍ଚେ ଆଣିବ ଟାଣି ।

୧. ଆସିଷ୍ଟାଣ୍ଟ ଜେଲର, ୨. ଜେଲ୍‌ର ଧନପତ୍ ବାବୁଙ୍କର ଗୋଟିଏ ଆଖି କାଚର ଥିଲା ।

ଅନେକ ହୃଦୟସ୍ପର୍ଶୀ ଭଜନ ଯଥା : 'ଘେନ ଅନ୍ତରପୂତ ଶତଶୁଦ୍ଧ ଭକତିଯୁତ ପ୍ରଣାମ', 'ଜଗତ ସୁନ୍ଦର ଜୀବନ ସୁନ୍ଦର ସୁନ୍ଦର ହେ ତୁମେ ଅନନ୍ତ ମହାନ, ଜଗଦାନନ୍ଦ ବର୍ଦ୍ଧନ ହେ' ... ଆଦି ଜେଲ୍ ଭିତରେ ହିଁ ରଚିତ ହୋଇଥିଲା । ଆଚାର୍ଯ୍ୟ ମହାଶୟଙ୍କ 'ଉପନିଷଦ୍‌ର ଭାଷ୍ୟ', ଗୋପବନ୍ଧୁ ଚୌଧୁରୀଙ୍କ 'ଚାଷୀ ମୂଲିଆ ଗାନ୍ଧୀ' ଓ 'ଗାନ୍ଧୀ ଓ ଉତ୍କଳ', ପଣ୍ଡିତ ନୀଳକଣ୍ଠ ଦାସଙ୍କ 'ଗୀତା ଭାଷ୍ୟ' ଓ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ 'ଜନଶକ୍ତି', 'ଦେଶର ଦାବୀ' ଜେଲ୍ ଭିତରେ ହିଁ ରଚିତ ହୋଇଥିଲା ।

ସବୁଠାରୁ ବଡ଼କଥା ହେଲା ବିଭିନ୍ନ ପ୍ରଦେଶର ଏକା ଆଦର୍ଶରେ ଅନୁପ୍ରାଣିତ ବ୍ୟକ୍ତି ଏକା ଜେଲ୍‌ରେ ରହିବା ଫଳରେ ଗୋଟାଏ ମହାଭାରତୀୟ ପରିବାର ଭାବନାର ସୂତ୍ରପାତ ଜେଲ୍ ଭିତରେ ହିଁ ହେଲା । ସୀମାନ୍ତ ପ୍ରଦେଶର ଖାନ୍ ଅବଦୁଲ୍ ଗଫର ଖାଁଙ୍କୁ, ବିହାରର ରାଜେନ୍ଦ୍ର ପ୍ରସାଦ ଗୋପବନ୍ଧୁ ଚୌଧୁରୀଙ୍କ ସହ ଏବଂ ବିହାରର ମୀରା

ଦେବୀ ବିଦ୍ୟାସେବାଙ୍କୁ, ବିନ୍ଦୁବାସିନୀ ଦେବୀଙ୍କୁ ରମା ଦେବୀ, ମାଳତୀ ଦେବୀଙ୍କ ସହ ନିବିଡ଼ ପାରିବାରିକ ବନ୍ଧନରେ ବାନ୍ଧିବାଟା ହଜାରିବାଗ୍ ସେଣ୍ଟ୍ରାଲ୍ ଜେଲ୍‌ର ହିଁ ଅବଦାନ ବୋଲି ଅନେକ ସମୟରେ ମନେହୁଏ ।

ଏହିପରି ଭାବରେ ଆନ୍ଦୋଳନର ନାନାବିଧ କାର୍ଯ୍ୟକ୍ରମ ପାଳନ, ବେତମାଡ଼, ଜେଲ୍‌ଯାତ୍ରା, ଲାଠି ଚାଳନା କଂଗ୍ରେସକୁ ବେଆଇନ କରିଦେବା ଫଳରେ ଅନିଶ୍ଚିତତାର ଅନୁଭବ ଭିତର ଦେଇ ହରଷ ବିଷାଦ ମିଶ୍ରିତ ସ୍ରୋତରେ ଭାସି ଭାସି ୧୯୩୦ ମସିହା ମେଲାଣି ନେଲା । ସ୍ୱରାଜ୍ୟ-ଆଶ୍ରମ (କଟକ)ରେ ସରକାର ତାଲା ପକାଇ ଦେବାରୁ ପ୍ରାତଃସ୍ମରଣୀୟ ପରିବାର ପରିବାରର ମହାନୁଭବତା ହେତୁ ସତ୍ୟାଗ୍ରହୀମାନେ ଚୌଧୁରୀ ବଜାରସ୍ଥ ଜୈନ ମନ୍ଦିରରେ ଆଶ୍ରୟ ନେଲେ । ବିଶିଷ୍ଟ ବିଶିଷ୍ଟ ସତ୍ୟାଗ୍ରହୀ ସମସ୍ତେ ବନ୍ଦୀଶାଳାରେ ଥାଆନ୍ତି । ସେମାନେ ଖଲାସ ହେବା ମାତ୍ରେ ପୁଣି ଗିରଫ ହେଉଥାନ୍ତି । ନୂଆ ନୂଆ ଲୋକ ଆନ୍ଦୋଳନରେ ଯୋଗ ଦେବା ଫଳରେ ଆନ୍ଦୋଳନ ଅବ୍ୟାହତ ରହିଥାଏ । ପିକେଟିଂ, ସଭା, ଶୋଭାଯାତ୍ରା, ଲୁଚେଇ କରି ସାଇକ୍ଲୋଷ୍ଟାଇଲ୍‌ରେ ବୁଲେଟିନ୍ ଛାପିବା ଓ ବାଣ୍ଟିବା କାମ ପୂରାଦମ୍‌ରେ ଚାଲିଥାଏ । ଭାରତର ବିଭିନ୍ନ ପ୍ରଦେଶ– ସୀମାନ୍ତ ପ୍ରଦେଶରେ ପଠାନ୍‌ମାନଙ୍କ ଅହିଂସାତ୍ମକ ଆନ୍ଦୋଳନ ଓ ଆତ୍ମବଳିଦାନ, ଧରାଷଣା ଲୁଣ ଗୋଲା ଦଖଲ, ସତ୍ୟାଗ୍ରହରେ ସତ୍ୟାଗ୍ରହୀମାନଙ୍କ ଉପରେ ଅକଥନୀୟ ଅତ୍ୟାଚାରର କାହାଣୀ ଲୋକଙ୍କୁ ଭୟଭୀତ କରିବା ପରିବର୍ତ୍ତେ ଦେଶପ୍ରେମରେ ଅଧିକ ଉଦ୍‌ବୁଦ୍ଧ କରୁଥାଏ । ତେଣୁ ଆନ୍ଦୋଳନର ଚେର ଗହୀରକୁ ମାଡ଼ିବା ସଙ୍ଗେ ସଙ୍ଗେ ଚାରିଆଡ଼କୁ ମେଲି ଲାଗିଥାଏ । ଏହି ସମୟରେ ଦିନେ ଖବରକାଗଜରେ ବଡ଼ ବଡ଼ ଅକ୍ଷରରେ ବାହାରିଲା ସାପ୍ରୁ ଜୟକାରଙ୍କ ଉଦ୍ୟମ ସଫଳ ହୋଇଛି । ବଡ଼ଲାଟ୍ ଲର୍ଡ଼ ଆରଉଇନ୍ ଗାନ୍ଧିଜୀଙ୍କ ସହ ମିଳାମିଶା କରିବାକୁ ଇଚ୍ଛୁକ ହେଲେଣି । ଖବରଟା ଶୁଣି ମନରେ କି ପ୍ରକାର ଭାବନା ଖେଳିଗଲା ତାହା ଭାଷାରେ ବର୍ଣ୍ଣନା କରିହେବ ନାହିଁ । ଆମ ଗାନ୍ଧୀ, ହଁ ପୂରାପୂରି ଆମରି ଗାନ୍ଧୀଙ୍କୁ କେତେ ହୀନିମାନ କରିଛନ୍ତି ଏ ସରକାର ! ଜାଠଦଳ ପରା କହିଥିଲେ – "Let the dogs bark, the carvan passes by." ଆଜି ସତେ ଉଷୁନା ଧାନ ଗଜା ହେବ !

ସନ୍ଧି କଥାବାର୍ତ୍ତା ଆରମ୍ଭ କରିବା ପାଇଁ ଗାନ୍ଧିଜୀ ପ୍ରଥମ ସର୍ତ୍ତ ରଖିଲେ – ସବୁ ସତ୍ୟାଗ୍ରହୀଙ୍କୁ ପ୍ରଥମେ କାରାମୁକ୍ତ କଲେ ଯାଇ ଆପୋଷ କଥାବାର୍ତ୍ତା ଆରମ୍ଭ ହେବ । ଫଳରେ ସରକାର ବନ୍ଦୀ ମୁକୁଳାଇବା ଆରମ୍ଭ କଲେ । ମୁକ୍ତ ବନ୍ଦୀଙ୍କୁ ସ୍ୱାଗତ କରିବା

ପାଇଁ ଜେଲ୍ ଫାଟକକୁ ଶୋଭାଯାତ୍ରା କରି ଗୀତ ବୋଲି ବୋଲି ଯିବା ଥିଲା ଆମର ଗୋଟିଏ ଉତ୍ସାହବର୍ଦ୍ଧକ କାର୍ଯ୍ୟକ୍ରମ । ବର୍ତ୍ତମାନ ସରକାର ସନ୍ଧି ପାଇଁ ଇଚ୍ଛୁକ ଥାଇ ବନ୍ଦୀଙ୍କୁ ଖଲାସ କରୁଥିବାରୁ ଜିତାପଟଟା ଆମର ବୋଲି ଆମେ ଗର୍ବରେ ଫୁଲୁଥାଉ । ତେଣୁ ରଣ ସଙ୍ଗୀତ ମଧ୍ୟ ତଦନୁରୂପ ହେବା ଚାହି ତ ! କାନ୍ତ କବି ଲକ୍ଷ୍ମୀକାନ୍ତ ଆମ ପାଇଁ ଲେଖିଥିବା ମାର୍ଚ୍ଚିଙ୍ଗ୍ ସଙ୍ଗ୍‌କୁ ଟିକିଏ ବଦଳାଇ ଆମେ ତଣ୍ଟି ଫଟାଇ ଚିତ୍କାର କରି ଚାଲିଲୁ–

"ଗର୍ଜି ଉଠୁଛି ତୂର୍ଯ୍ୟନାଦ ଉଡୁଛି ବିଜୟ ଝେଣ୍ଡ
ଆର୍ଯ୍ୟବାହିନୀ ଚାଲିଛି ଆଜି ବର୍ଜି ସମର କ୍ଷେତ୍ର
× × × × ×
ବଜାଅ ବଜାଅ ବିଜୟ ଶଙ୍ଖ ବଜାଅରେ ରଣଡ଼ଙ୍କା
ପୂର୍ଣ୍ଣ ହୋଇଛି ଜୀବନଯଜ୍ଞ ଚୂର୍ଣ୍ଣ ହୋଇଛି ଶଙ୍କା ।"

ପ୍ରକୃତରେ ଶଙ୍କା ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ଚାନ୍ଦା ମାଗିବାବେଳେ, ପିକେଟିଂ କଲାବେଳେ, ବିଲାତି ଲୁଗା ଦହନ ପାଇଁ ମାଗି ବୁଲିବା ବେଳେ, ବୁଲେଟିନ୍ ବାଣ୍ଟିବା ବେଳେ କେତେ ବ୍ୟଙ୍ଗ ବିଦ୍ରୂପ, କେତେ ଅବିଶ୍ୱାସ, ତାଚ୍ଛଲ୍ୟପୂର୍ଣ୍ଣ ଦୃଷ୍ଟିପାତ, କେତେ ନାକଟେକା ମୁହଁମୋଡ଼ା ଅପମାନ ! ଆତ୍ମୀୟସ୍ୱଜନ ବନ୍ଧୁବାନ୍ଧବଙ୍କ ଅବଜ୍ଞା, ସରକାରୀ ଲୋକଙ୍କ ତିରସ୍କାର, ଉଚ୍ଚଶିକ୍ଷିତଙ୍କ ସଂଶୟବୋଳା ଅଭିମତ ସବୁ କଥା ହୃଦୟରେ ଗାର ହୋଇ ରହିଥିଲା । ଦେଶ ଲୋକଙ୍କଠାରୁ ଯେତିକି ଉତ୍ସାହ, ଶ୍ରଦ୍ଧା, ସମ୍ମାନ, ସ୍ନେହସହାନୁଭୂତି ଆନ୍ଦୋଳନକାରୀଙ୍କୁ ମିଳୁଥିଲା, ଅବଜ୍ଞା, ଅସମ୍ମାନ ଅବିଶ୍ୱାସ ତାହା ତୁଳନାରେ ବିଶେଷ ଊଣା ମିଳୁ ନ ଥିଲା । ଏଇ ଗାନ୍ଧୀ ଆରଉଇନ୍ ସନ୍ଧି ସେ ସବୁକୁ ଧୋଇ ପୋଛି ଦେଲା । ପ୍ରବଳ ପରାକ୍ରମ ବ୍ରିଟିଶ୍ କେଶରୀ, ଯାହାର ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତମିତ ହୁଅନ୍ତି ନାହିଁ – "Rule, Brittania, rule the waves" – ଯାହାଙ୍କର ଶିଶୁ ଖେଳ ଗୀତ ସେ ଆଜି ଭାରତର ସ୍ୱାଧୀନତାକାଂକ୍ଷା ଆଗରେ ମଥା ନୁଆଁଇଛି ।

ସତ୍ୟାଗ୍ରହୀଙ୍କୁ ପାଛୋଟି ଆଣିବାକୁ ଆମେ କେତେଜଣ ବାଲେଶ୍ୱର ଗଲୁ । ଷ୍ଟେସନ ପାଖରେ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସଙ୍କ ଘରେ ରହିଲୁ । ପ୍ରତ୍ୟେକ ଥର ହାଓଡ଼ା ଆଡୁ ରେଳଗାଡ଼ି ଆସିବା ବେଳ ହେବା ମାତ୍ରେ ଆମେ ଫୁଲମାଳ ଧରି ଷ୍ଟେସନକୁ ଧାଉଁ । ଯୁଦ୍ଧବିଜେତା ବୀରମାନଙ୍କ ବେକରେ ଫୁଲମାଳ ଦେଇ ଜୟଧ୍ୱନୀ ସହ ଜାତୀୟ

ସଙ୍ଗୀତ ବୋଲି ବୋଲି ସେମାନଙ୍କୁ ମୋତିଗଞ୍ଜ ବଜାର ରହଣୀ ସ୍ଥାନରେ ପହଞ୍ଚାଉ । କିନ୍ତୁ ବାନରଯୂଥ, ପଣ୍ଡିତ ପଢ଼ିହାରୀ ଓ ଶ୍ରୀ ହରେକୃଷ୍ଣ ମହତାବଙ୍କୁ ସରକାର ବିଳମ୍ବରେ ମୁକୁଳାଇଲେ ।

ବାଲେଶ୍ୱରରେ କର୍ମୀବୈଠକ, ସାଧାରଣ ସଭା ଆଦି ସରିଲାରୁ ସମସ୍ତେ ଦିନ ପ୍ୟାସେଞ୍ଜରରେ କଟକ ଯାତ୍ରା କଲେ । କେତୋଟି ଷ୍ଟେସନ ପାରି ହେବା ପରେ ସମୁଦାୟ ଟ୍ରେନ୍‌ର ଏ ମୁଣ୍ଡରୁ ସେ ମୁଣ୍ଡ ଫୁଲମାଳରେ ସଜ୍ଜିତ ହୋଇଗଲା । ପ୍ରତ୍ୟେକ ଷ୍ଟେସନରେ ଗାଡ଼ି ଛିଡ଼ା ହେବା ମାତ୍ରେ ସ୍ଥାନୀୟ ଲୋକେ ଫୁଲମାଳ, ମାନପତ୍ର ଓ ମିଷ୍ଟାନ୍ନ ପାଛିଆ ଧରି ଗାଡ଼ିରେ ଚଢ଼ି ଫୁଲମାଳ ପିନ୍ଧାଇ, ମାନପତ୍ର ଶୁଣାଇ, ମିଠାଇ ଖୁଆଇ ଆନନ୍ଦରେ ଉନ୍ମତ୍ତ ହୋଇ ଯାଉଥାନ୍ତି । ଗାଡ଼ି ଛାଡ଼ିବାଟା ଆଉ ରେଳ କର୍ତ୍ତୃପକ୍ଷଙ୍କ ଆୟତରେ ନ ଥାଏ । ସେ ଯୁଗରେ ସବୁ ଟ୍ରେନ୍‌ରେ ଗୋରା ଗାର୍ଡ଼ ନିଯୁକ୍ତ ହେଉଥିଲେ । ଗାର୍ଡ଼ ବିସ୍ମୟବିମୂଢ଼ ଦୃଷ୍ଟିରେ ଏ ଦୃଶ୍ୟ ଦେଖି ଲାଗିଥା'ନ୍ତି । ଠାଏ ଠାଏ ଅଭ୍ୟର୍ଥନା ସଙ୍ଗୀତ ମଧ ଲୋକେ ବୋଲନ୍ତି । ଯଥା–

ବୀରେ ଫେରୁଛନ୍ତି ରଣ ଭୂଇଁରୁ
କର ବନ୍ଦନ ଫୁଲ ଚନ୍ଦନ କରି ମଣ୍ଡନ
ଭାରତର ନେତ୍ର ସମ୍ପତ୍ତି ସୈନିକ ଗଣ ଜୀବନ ଧନ
କଲେଟି ପଣ .... ଇତ୍ୟାଦି ।

କଟକ ଷ୍ଟେସନରେ ତ ଅଭ୍ୟର୍ଥନାର ପରାକାଷ୍ଠା ହୋଇଗଲା । ଜାଣି ଭକ୍ତିକବି ମଧୁସୂଦନଙ୍କ ରାମାଭିଷେକ ଆୟୋଜନର ଦୃଶ୍ୟ ପ୍ରତ୍ୟକ୍ଷ ଦେଖିବାକୁ ମିଳିଲା । ଷ୍ଟେସନରୁ କଲେଜ ଛକ ଯାଏ ରଥଯାତ୍ରା ଭିଡ଼ । କୋଠାମାନଙ୍କ ଉପରେ ଗୁଣ୍ଡ ହୋଇ ମହିଳାମାନେ ଅତର, ଫୁଲ ଓ ଗୋଲାପଜଳ ସିଞ୍ଚୁଥାନ୍ତି । ମହାତ୍ମା ଗାନ୍ଧୀ, ଭାରତମାତା ଓ ଅନ୍ୟ ନେତାମାନଙ୍କ ଜୟଘୋଷରେ ସମୁଦ୍ର ଗର୍ଜନବତ୍ ଶବ୍ଦ ହେଉଥାଏ । ଫୁଲମାଳରେ ସତ୍ୟାଗ୍ରହୀମାନଙ୍କୁ ଲୋକେ ପୋତି ପକାଉଥାନ୍ତି । ଯାହା ଭକ୍ତକବି ବର୍ଣ୍ଣିଛନ୍ତି–

ବାଳବୃଦ୍ଧ ଯୁବା ଗୁଣ୍ଡ ଦାଣ୍ଡରେ
ଜୟ ଜୟ ରାମ ଧ୍ୱନି ତୁଣ୍ଡରେ
ସିନ୍ଧୁନାଦ ପ୍ରାୟେ ଶୁଭେ ଚହଳ

ଲହରୀ ପରାଏ ଲୋକ ଗହଳ
 ପ୍ରାସାଦ ଶିଖରେ ଠୁଳ
ଘନ ନୀଳକେଶୀ ବିଦ୍ୟୁତ ନୟନା
 ଅଯୋଧ୍ୟା ରମଣୀକୁଳ
ପ୍ରତ୍ୟକ୍ଷୀଭୂତ ହେଲା ।

ସନ୍ଧ୍ୟାକୁ ସେହି କାଠଯୋଡ଼ି ବାଲିରେ ସଭା ହେଲା । ଏ କଥା ଜାଣି କଟକ ସହର ନଈବାଲିକୁ ଉଠି ଆସିଥାଏ । ଡାକବାଜୀ ଯନ୍ତ୍ର ତ ନ ଥାଏ । ନେତାମାନେ ଖଣ୍ଡେ ତକ୍ତପୋଷ ଉପରେ ଛିଡ଼ା ହୋଇ ବକ୍ତୃତା ଦେଲେ । ସଭାରେ ସୂଚୀଭେଦ୍ୟ ନୀରବତା । ସଭା ଏ ମୁଣ୍ଡରୁ ସେ ମୁଣ୍ଡଯାଏ ସେ ଭାଷଣ ଶୁଭୁଥାଏ । ବେଦ କହିଛନ୍ତି ପରା

ଚାତସ୍ୟ ଶ୍ଳୋକୋ ବଧୀରା ତତ୍‌ରଙ୍ଗ
କର୍ଣ୍ଣା ବୁଧାନ୍ ଶୁଚମାନ ଆୟୋଃ

(ଭଗବାନ୍ ଶୁଚିବାନ୍ ଭକ୍ତ ମୁହଁରେ ଯେଉଁ ବାଣୀ ଶୁଣେଇବାକୁ ଚାହାନ୍ତି ବଧୀର ସୁଦ୍ଧା ତାହା ଶୁଣିପାରେ ।)

କରାଚୀ କଂଗ୍ରେସ ଅଧିବେଶନ ।

ଗାନ୍ଧୀ ଆରଉଇନ୍ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା ୧୯୩୧ ମାର୍ଚ୍ଚ ମାସରେ । ସେହି ମାର୍ଚ୍ଚରେ କରାଚୀରେ କଂଗ୍ରେସର ବାର୍ଷିକ ଅଧିବେଶନ ବସିବା ସ୍ଥିର ହେଲା । ପ୍ରତିନିଧିମାନଙ୍କ ସାଙ୍ଗରେ ଆମେ ଅନେକ ଅପ୍ରାପ୍ତବୟସ୍କ ମଧ୍ୟ କରାଚୀ ଗଲୁ । କୁଲି କରିବା ପ୍ରଶ୍ନ ନାହିଁ । ତେଣୁ ସମସ୍ତଙ୍କର ଛୋଟ ଛୋଟ ବିଛଣା ଓ ଜଳଖିଆ ବାସନ ନିଜେ ନିଜେ ଧରିଥାଉଁ । ହାଓଡ଼ା ଷ୍ଟେସନରେ ବଡ଼ି ସକାଳେ ଗାଡ଼ି ପହଞ୍ଚିବା ବେଳକୁ ଖବରକାଗଜ ବିକ୍ରେତାଙ୍କ ପାଟି ଶୁଭିଲା– ଭଗତସିଂ ଶୁକଦେଓ ଓ ରାଜଗୁରୁଙ୍କୁ ଫାଶୀ ଦିଆ ହୋଇଛି । ଲାଲା ଲାଜପତ୍ ରାୟ ସାଇମନ୍ କମିଶନ୍‌କୁ ବର୍ଜନ କରିବା ବେଳେ ଯେଉଁ ସାଣ୍ଡାର୍ଷ୍ଟ ସାହେବଙ୍କ ଲାଠି ପ୍ରହାରରେ ଆହତ ହୋଇ ଅକାଳ ମୃତ୍ୟୁ ବରଣ କରିଥିଲେ, ଭଗତ ସିଂ ସେହି ସାହେବଙ୍କୁ ହତ୍ୟା କରିଥିଲେ । ପୁଣି ଦିଲ୍ଲୀ ଆସେମ୍ବ୍ଲୀ ହଲ୍‌ରେ ବୋମା ପକାଇଥିଲେ ଏହି ତିନିଜଣ । ଗାନ୍ଧୀ-ଆରଉଇନ୍ ସନ୍ଧି ହେବା ପରେ ପରେ ଏ ତିନିଜଣଙ୍କୁ ଫାଶୀ ଦେବାର ସରକାରୀ ଉଦ୍ଦେଶ୍ୟ ଥିଲା ଗାନ୍ଧିଜୀ ଓ କଂଗ୍ରେସ

ପ୍ରତି ଲୋକଙ୍କ ପ୍ରତି ବୀତଶ୍ରଦ୍ଧ କରାଇବା । ଭଗତ୍ ସିଂ ସନ୍ତ୍ରାସବାଦୀ ଥିଲେ ହେଁ ତାଙ୍କର ଦେଶପ୍ରୀତି ସମସ୍ତଙ୍କର ଆଦର୍ଶ ଥିଲା । ଏ ଖବରଟା କରାଚୀ ଯିବା ଆନନ୍ଦଟାକୁ ପାଣି ଫଟେଇ ଦେଲା । ବ୍ରିଟିଶ୍ ସରକାରଙ୍କ କୂଟନୀତି ଦେଶଭକ୍ତର ଜୀବନକୁ ଜଳାଞ୍ଜଳି ଦେଇପାରେ ।

ହାଓଡ଼ାରୁ ତୁଫାନ୍ ମେଲ୍‌ରେ ଦିଲ୍ଲୀ ଯାଇ ସେଠାରେ ଆସେମ୍ବ୍ଲୀ ସଦସ୍ୟ ପୂଜ୍ୟପାଦ ଭୁବନାନନ୍ଦ ଦାସଙ୍କ ବସାରେ ରହି ଆମେ ଦିଲ୍ଲୀରେ ଡାକ୍ତରୀ ପଢୁଥିବା ପ୍ରଥମ ଓଡ଼ିଆ ହିନ୍ଦୁ ଝିଅ ବୀଣା ଦେଇ, ଜ୍ୟୋତ୍ସ୍ନା ଦେଇଙ୍କୁ ଭେଟିଲୁ । ସେଠୁ ଲାହୋର ମେଲ୍‌ରେ ଲାହୋର ଗଲୁ । ବାଟରେ ଦୁଇପଟେ ବିଲରେ ଯେ ଚାଷୀ ହଳ କରୁଥାନ୍ତି ସେମାନଙ୍କ ଦେହରେ କୁର୍ତ୍ତା, ଗୋଡ଼ରେ ଜୋତା ଓ ମୁଣ୍ଡରେ ପଗଡ଼ି ଦେଖି ମୋତେ ଆଚମ୍ବିତ ଲାଗୁଥାଏ । ଆମ ଓଡ଼ିଶା ଚାଷୀଙ୍କ ବେଶଭୂଷା ସହିତ ତୁଳନା କରି ଆକାଶ ପାତାଳ ପ୍ରଭେଦ ଦେଖୁଥାଏ ।

ଲାହୋର ମେଲ୍‌ରେ ପ୍ରଥମ କରି ଭିଡ଼ର ସୁଆଦ ଚାଖିବାକୁ ମିଳିଲା । ସେ ଯୁଗରେ ତୃତୀୟ ଶ୍ରେଣୀଙ୍କ ପାଇଁ ବସିବା ଶୋଇବା ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ନ ଥିଲା । ଲୋକଗୁଡ଼ିକ ମୋ ଆଖିରେ ବହୁତ ଲମ୍ବା ଲମ୍ବା ଦିଶୁଥାନ୍ତି । ଲାଲ ପଗଡ଼ି ପିନ୍ଧା ଜଣେ ଜଣେ କୁଲି ଓଡ଼ିଶାର ପାଞ୍ଚଜଣ କୁଲିଙ୍କ ବୋଝ ଅବଲୀଳାକ୍ରମେ ଟେକି ନେଉଥାନ୍ତି । ସେ ଭିଡ଼ ଠେଲି କୌଣସି ପ୍ରକାରେ ଗାଡ଼ି ଚଢ଼ିଲୁ । କିନ୍ତୁ ଲାହୋରରେ ପହଞ୍ଚି କରାଚୀ ମେଲ୍‌ରେ ଡବାକୁ ଦ୍ୱାରବାଟେ ପଶିବା ଅସମ୍ଭବ ହୋଇ ପଡ଼ିଲା । ସେହି ଭୟଙ୍କର ଭିଡ଼ରେ ଠେଲାପେଲା ହୋଇ ଝରକାବାଟେ ଡେଇଁ କୌଣସି ପ୍ରକାରେ ଡବା ଭିତରେ ପଶିଲୁ । ଗାଡ଼ି ଚାଲିଲା ପରେ କଥାବାର୍ତ୍ତାରୁ ଜଣାଗଲା ଯେ ଡବାର ଶତକଡ଼ା ନବେ ଯାତ୍ରୀ ହେଉଛନ୍ତି ସେହି କରାଚୀ କଂଗ୍ରେସର ପ୍ରତିନିଧି ଓ ଦର୍ଶକ । ସଙ୍ଗେ ସଙ୍ଗେ ଭାବଦୋସ୍ତି ହୋଇଗଲା । ସମସ୍ତେ ଏକା ପରିବାରର ହୋଇଗଲୁ । ଖାଦ୍ୟସାମଗ୍ରୀ ଦିଆନିଆ ଆରମ୍ଭ ହୋଇଗଲା । ତାଙ୍କ ଆଳୁ ମଟର ତରକାରୀ ଆମେ ଖାଇଲୁ । ଆମ ଆରିଷା ପିଠା ସେ ଚାଖିଲେ । ରେଳ ଚଢ଼ା ବେଳର ତିକ୍ତତା କୁଆଡ଼େ ଉଭେଇଗଲା ।

ସେହି କରାଚୀ ମେଲ୍‌ରେ କରାଚୀ ଯାଉଥାନ୍ତି ସର୍ଦ୍ଦାର ଭଗତ୍ ସିଂଙ୍କ ବାପା ସର୍ଦ୍ଦାର କିଷନ ସିଂ ଓ ରାଜଗୁରୁଙ୍କ ମାଆ । ପ୍ରତ୍ୟେକ ଷ୍ଟେସନରେ ହଜାର ହଜାର ଦର୍ଶନାର୍ଥୀଙ୍କର "ଭଗତ ସିଂ ଜିନ୍ଦାବାଦ, ଶେର୍ ଶୁକଦେଓ ଜିନ୍ଦାବାଦ୍, ବୀର ରାଜଗୁରୁ

ଜିନ୍ଦାବାଦ୍ । ଫାଁଶୀ ପାକର ହୁଏ ଆଜାଦ୍ ।” ଧ୍ୱନିରେ ପ୍ଲାଟଫର୍ମ ପ୍ରତିଧ୍ୱନିତ ହେଉଥାଏ । ପ୍ରତ୍ୟେକ ଷ୍ଟେସନରେ ଶୁଭ୍ରବେଶ ଶୁଭ୍ରଶ୍ମଶ୍ରୁ ସେହି ଦୀର୍ଘଦେହା ବୀର ଜନକ କିଷନ ସିଂ ରେଳଡ଼ବା ଦ୍ୱାରକୁ ଆସି ଲୋକଙ୍କୁ ନମସ୍କାର କରୁଥାନ୍ତି । ପୁତ୍ରଶୋକାତୁରା ରାଜଗୁରୁ ଜନନୀ ରେଳ ଝରକା ବାଟେ ହାତ ବାହାର କରି ହାତ ଯୋଡୁଥାନ୍ତି । ସେ ଦୁହିଁଙ୍କୁ ଦେଖିବାମାତ୍ରେ ଲୋକେ ଆହୁରି ଉନ୍ମତ୍ତ ହୋଇ ଗର୍ଜନ କରୁଥାନ୍ତି । ସେହି ଗର୍ଜନରେ କିଷନ ସିଂଙ୍କ କଥା କିଛି ଶୁଭୁ ନ ଥାଏ ।

ଦେଖ ଭାଗ୍ୟ ! ସୀମାନ୍ତ ଗାନ୍ଧୀ ଖାନ୍ ଅବଦୁଲ୍ ଗଫର ଖାନ୍‌ଙ୍କ ଖୁଦାଇ ଖୀଦ୍‌ମତଗାରମାନେ ମଧ ସେହି ମେଲ୍‌ରେ କରାଚୀ ଯାଉଥାନ୍ତି । ତାଙ୍କର ସେହି ଛଅଫୁଟରୁ ଦୀର୍ଘ ସୁଗଠିତ ଦେହ, ଗୋଲାପଜିଣା ଦେହବର୍ଣ୍ଣ ସାଙ୍ଗକୁ ନାଲି ପାଇଜାମା, କୁର୍ତ୍ତା ଓ ନାଲି ପଗଡ଼ି । କି ଶୋଭା ! ସେମାନଙ୍କ ସାଙ୍ଗରେ ବ୍ୟାଣ୍ଡ୍ ଥାଏ । ମେଲ୍ ଷ୍ଟେସନ୍‌ରେ ଅଟକିବା ମାତ୍ରେ ସେମାନେ ବିଭିନ୍ନ ଡବାରୁ ଫକ୍ ଫକ୍ ଡେଇଁପଡ଼ି ଧାଡ଼ି ବାନ୍ଧିଦେଇ ପ୍ଲାଟ୍‌ଫର୍ମରେ ଏ ମୁଣ୍ଡରୁ ସେମୁଣ୍ଡ ବ୍ୟାଣ୍ଡ ବଜାଇ ମାର୍ଚ୍ଚ କରନ୍ତି । ପୁଣି ଗାର୍ଡ଼ ହୁଇସିଲ୍ ଦେବା ମାତ୍ରେ ଭିନ୍ନ ଭିନ୍ନ ଡବାକୁ ଟପାଟପ୍ ଡେଇଁ ଚଢ଼ି ଯାଉଥାନ୍ତି । ଆହା କି ବଢ଼ିଆ ସେ ଯୁଦ୍ଧ ବାଜଣା ! ବ୍ରିଟିଶ୍ ଅମଳରେ ପୁଣି ଲାହୋର କରାଚୀ ମଧ୍ୟସ୍ଥିତ ବ୍ରିଟିଶ ସୈନ୍ୟବହୁଳ କ୍ୟାଣ୍ଟନମେଣ୍ଟ ଷ୍ଟେସନ୍‌ରେ ରାଷ୍ଟ୍ରୀୟ ପତାକା ଉଡ଼ାଇ ବ୍ୟାଣ୍ଡ୍ ବଜାଇ ଛାତି ଫୁଲା ମାର୍ଚ୍ଚିଂ ! କିନ୍ତୁ ଆମେ ଜିତିଥାଉ ଯେ । ବ୍ରିଟିଶ୍ ଆମ ସହିତ ଚୁକ୍ତିବଦ୍ଧ ।

ବାଲେଶ୍ୱରରୁ କଟକ ଆସିବା ବେଳେ ସତ୍ୟାଗ୍ରହୀଙ୍କୁ ଯେପରି ପ୍ରତି ଷ୍ଟେସନ୍‌ରେ ମିଷ୍ଟାନ୍ନ ଦିଆଯାଇଥିଲା ସେହିପରି କରାଚୀ କଂଗ୍ରେସକୁ ଯାଉଥିବା ପ୍ରତିନିଧିମାନଙ୍କୁ ପ୍ରତି ଷ୍ଟେସନରେ ସ୍ଥାନୀୟ ଲୋକେ ଖାଦ୍ୟ ପାନୀୟ ଦେଇ ଯାଉଥାନ୍ତି । ତାହା ନ ହୋଇଥିଲେ ଗାଡ଼ିରେ ଯେଉଁ ଭିଡ଼ ହୋଇଥାଏ ପାଣି ମୁନ୍ଦିଏ ପିଇବାକୁ ମିଳିଥାନ୍ତା କି ନାହିଁ ସନ୍ଦେହ । ସିନ୍ଧୀ ଭାଇମାନେ ବାଲଟି ବାଲଟି ଦୁଧ ଓ ପୁରି ତରକାରୀ ଖାଇବାକୁ ଦେଉଥାନ୍ତି । ଜଣେ କେହି ହିନ୍ଦୀ କହି ପାରୁଥିବା ଓଡ଼ିଆ ପଚାରିଲେ – ଏ କି ଦୁଧ ? ଅର୍ଥାତ୍ ଗାଈ କି ମଇଁଷି କ୍ଷୀର । ସାଙ୍ଗେ ସାଙ୍ଗେ ଜବାବ ମିଳିଲା ଓଟ ଦୁଧ । ଜବାବ ଶୁଣି ଅନେକଙ୍କ୍ ନାକ ଶିକା ଉପରକୁ ଉଠିଗଲା । କେହି କେହି ଛିଛାକର ଆରମ୍ଭ କରିଦେଲେ । ଆଉ ଅନେକେ ପ୍ରତ୍ୟୁତ୍ପନ୍ନମତିତ୍ୱ ସହକାରେ ସେମାନଙ୍କୁ ଧନ୍ୟବାଦ ଦେଇ ଗିଲାସକ ସ୍ଥଳେ ଦୁଇଗ୍ଲାସ୍ ଦୁଧ ମାଗିକରି ପିଇ “ବାଃ ବାଃ ବହୁତ ବଢ଼ିଆ,

ମେହରବାନୀ, ସୁକ୍ରିୟା" ଆଦି କହି ରାଷ୍ଟ୍ରୀୟ ସଂହତି ରକ୍ଷା କଲେ । ହିନ୍ଦୀ କହିବା କଥାଟା ଉପରେ ଜୋର୍ ଦେଇ ଲେଖିବାର କାରଣ ହେଲା ୧୯୩୧ରେ ଓଡ଼ିଶାରେ ଏବଭଳି ହିନ୍ଦୀଭାଷାର ବହୁଳ ପ୍ରଚାର ହୋଇ ନ ଥିଲା । ଗାଁ ଗହଳରେ ଯେଉଁ ଉର୍ଦ୍ଦୁ ଭାଷା ଚଳୁଥିଲା ତାହାର ନମୁନା ଥିଲା, "ଆରେ ଆୟୁବ୍ ! ଆଜ୍ ହାଟମେଁ ବୋଇତାଲୁ ଖାଲି ପୁଞ୍ଜା ପୁଞ୍ଜା ।" ପଡ଼ିହାରୀ ମହାଶୟଙ୍କ ଭଳି ନେତୃସ୍ଥାନୀୟ ବ୍ୟକ୍ତିଙ୍କ ହିନ୍ଦୀବୋଲିର ନମୁନା ହେଉଛି, "ଜନାବ ! ଆଉର ଏକ ବାତ ହଇ । ଏକଠୋ ଅଲଗୁଣି ଦରକାର ହଇ ।" ୧୯୩୧ ମସିହାରେ ପୁରୀରେ କଂଗ୍ରେସ ଅଧିବେଶନ ପାଇଁ ଆୟୋଜନ ହେଲାବେଳେ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକା ତାଲିମ୍ ଦେବାବେଳେ ବାଧ୍ୟତାମୂଳକ ରାଷ୍ଟ୍ରଭାଷା ଶିକ୍ଷା ଓଡ଼ିଶାରେ ବିଧିବଦ୍ଧ ଭାବରେ ଆରମ୍ଭ ହେଲା ।

କରାଚୀ ମେଲ୍ କରାଚୀରେ ପହଞ୍ଚିଲା । ସେହି ସମୁଦ୍ରକୂଳିଆ ପରିଷ୍କାର ପରିଚ୍ଛନ୍ନ ସହରଟି ତତ୍‌କ୍ଷଣାତ୍ ଆମ ମନ ମୋହି ନେଲା । ତଦୁପରି ସେବାପରାୟଣ କର୍ତ୍ତବ୍ୟସାଧନତତ୍ପର ସୁଦର୍ଶନ ସିନ୍ଧୀ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକାମାନଙ୍କର ଆତିଥେୟତା ଓ ମଧୁର ବ୍ୟବହାରରେ ଆମେ କିଣି ହୋଇଗଲୁ । ଅଧିବେଶନ ପାଇଁ ତିଆରି ହୋଇଥିବା କଂଗ୍ରେସ ନଗରରେ ଆମେ ଡେରା ପକାଇଲୁ ।

ସଭାପତି ନିର୍ବାଚିତ ହୋଇଥାନ୍ତି ସର୍ଦ୍ଦାର ବଲ୍ଲଭଭାଇ ପଟେଲ । ବିରାଟ ମହାସଭା ମଣ୍ଡପ କିନ୍ତୁ ସେ ମଣ୍ଡପ ଶାମିଆନା ବା ଚନ୍ଦ୍ରାତପାଚ୍ଛାଦିତ ନୁହେଁ । ପଶ୍ଚିମ ଦିଗରୁ ଆରବ ସାଗରରୁ ଭାସି ଆସୁଥିବା ସିନ୍ଧୁ ଶୀକର ଶୀତଳ ବାୟୁ, ମୁକ୍ତ ନୀଳ ଆକାଶ ତଳେ ଯୁଦ୍ଧକ୍ଷେତ୍ରରୁ ଫେରିଥିବା ସହସ୍ର ସହସ୍ର ସତ୍ୟାଗ୍ରହୀ, ଉଚ୍ଚ ମଣ୍ଡପ ଉପରେ ତପସ୍ୟାକ୍ଲିଷ୍ଟ ମହାନ୍ ନେତୃବର୍ଗଙ୍କ ଦୁର୍ଲଭ ସମାବେଶ ଏକ ଅନିର୍ବଚନୀୟ ପରିସ୍ଥିତି ସୃଷ୍ଟି କରିଥାଏ । ଏହି ଅଭିନବ ଅଧିବେଶନର ବର୍ଣ୍ଣନା ଶ୍ରୀ ମହାଦେବ ଦେଶାଇ Under the Canopy of Heaven ଶିରୋନାମାରେ 'ୟଙ୍ଗ ଇଣ୍ଡିଆ' ପତ୍ରିକାରେ ବର୍ଣ୍ଣନା କରିଥିଲେ ।

ଅଧିବେଶନରେ ଅଧିକାଂଶ ଆଲୋଚନା ରାଷ୍ଟ୍ରଭାଷାରେ ହେଲା । ଆମ ପାଟଣା କ୍ୟାମ୍ପ ଜେଲ୍ ଫେରନ୍ତା ସାଥୀମାନଙ୍କ ମଧ୍ୟରେ ଏକ ଆତ୍ମବିଶ୍ୱାସ ଦେଖା ଦେଇଥାଏ ଯେ ସେମାନେ ହିନ୍ଦୀ ଭାଷାରେ ଧୁରନ୍ଧର ହୋଇ ଆସିଛନ୍ତି । ସେମାନେ ଆମ ଆଗରେ ଫୁଟାଣି ଦେଖାଇଲା ବେଳେ ଆମେ କାଇଲି ମାକୁଲି ହେଲାପରି ମୁହଁ କରୁ । ଆକୁଳାନନ୍ଦ ବେହେରା ଜଣେ ପାଟ୍‌ନା କ୍ୟାମ୍ପ ଜେଲ୍ ପ୍ରତ୍ୟାଗତ ହିନ୍ଦୀ ବିଶାରଦ । ସେ ସେହି

ସିନ୍ଧୁଶିକରସିକ୍ତ ସୁଲୁସୁଲିଆ ପବନର ପରଶ ପାଇ ଝୁଲାଉଥାନ୍ତି । ପଣ୍ଡିତ ନେହେରୁ ଯେତେବେଳେ କହିଲେ ଯେ "ପୁରି ତରହସେ ଆଜାଦୀ ହାସଲ ନ ହୋନେତକ"– ହଠାତ୍ ଆକୁଳିଙ୍କର ନିଦ ଭାଙ୍ଗିଗଲା । ନେହେରୁଙ୍କ ବାକ୍ୟ ସମାପ୍ତ ହେବା ଆଗରୁ ସେ ଆମଙ୍କୁ ବୁଝାଇ ଦେଲେ "ହେଇ ଦେଖ ! ନେହେରୁ କହିଲେଣି ପୁରୀରେ ସ୍ୱରାଜ୍ୟ ହେବ ।" ତାଙ୍କର ଅଗାଧ ହିନ୍ଦୀ ଜ୍ଞାନ ପ୍ରତି ଆମ ଶ୍ରଦ୍ଧାଟା ଦଦରା ହୋଇଗଲା ।

ହିନ୍ଦୀ ଜଣା ନ ଥିଲେ ହେଁ କାର୍ଯ୍ୟ କାରଣ ସହିତ ପ୍ରତ୍ୟକ୍ଷ ସମ୍ପର୍କ ଥିବା ହେତୁ ବକ୍ତୃତାଗୁଡ଼ିକର ସାରମର୍ମ ଗ୍ରହଣ କରି ହେଉଥାଏ । ସବୁଠାରୁ ଆନନ୍ଦ ହେଉଥାଏ ସତ୍ୟାଗ୍ରହ ଲଢ଼େଇର ଅଗ୍ରଣୀମାନଙ୍କୁ ଦେଖି । ଏହି ସେହି ପଠାନ୍ ସୀମାନ୍ତ ଗାନ୍ଧୀ ଖାନ୍ ଅବ୍ଦୁଲ୍ ଗଫର୍ ଖାନ୍ ଯାହାଙ୍କ ପ୍ରଭାବରେ କଥା କଥାକେ ବନ୍ଧୁକ ଫୁଟାଇବାବାଲା ବନ୍ଧୁକ ଫିଙ୍ଗି ଦେଇ ଫିରିଙ୍ଗୀର ଗୁଳି ଆଗରେ ଛାତି ପତେଇ ଦେଇ ମରିଥିଲେ– ଜଣକର ସୁଦ୍ଧା ପିଠିରେ ଗୁଳି ବାଜି ନ ଥିଲା । ଦେଖ ଦେଖ ସେ ଅର୍ଦ୍ଧନଗ୍ନ ବୀର ଫକୀରଙ୍କୁ । ଦାଣ୍ଡୀ ସମୁଦ୍ରରେ ମୋ ଶବ ଭାସିବ କହି ଯେ ଦାଣ୍ଡୀ ଯାତ୍ରା କରି ସତ୍ୟାଗ୍ରହ ଯୁଦ୍ଧ ଅନୁକୂଳ କରିଥିଲା । ଦେଖ ସଭାପତି ଆସନରେ ସର୍ଦ୍ଦାର ବଲ୍ଲଭ ଭାଇଙ୍କୁ । ତାଙ୍କରି ନେତୃତ୍ୱରେ ବୀର ବରଦୋଲି ଚାଷୀ ଗୁଳି ବାରୁଦକୁ ପାଣି କରି ଦେଇଥିଲେ ପରା ! ପୁଣି ଯେତେବେଳେ ସର୍ଦ୍ଦାର ଭଗତ ସିଂଙ୍କ ବାପା ଓ ଶହୀଦ ରାଜଗୁରୁଙ୍କ ମାଆ ମଣ୍ଡପ ଉପରକୁ ଚଢ଼ିଲେ ଛାତିରୁ ଖାଲି କୋହ ଉଠୁଥାଏ । ଧଳା ସାଲ୍‌ୱାର କମିଜ୍ ଧଳା ଓଢ଼ଣାବୃତା ସେହି ରାଜଗୁରୁ ଜନନୀ ନୀରବରେ ଚାରିଆଡକୁ ଚାହିଁ କେବଳ ନମସ୍କାର କଲେ । ଏହି ବାପ ମାଆଙ୍କ ପୁଅ ଶହୀଦ । ଏହି ଭାବନାରେ ଭକ୍ତିରେ ମଥା ନଇଁ ପଡୁଥାଏ ।

ସ୍ୱାଧୀନ ଭାରତର ଶାସନ ବ୍ୟବସ୍ଥା ବିଷୟରେ ଯେତେବେଳେ ଆଲୋଚନା ଆରମ୍ଭ ହେଲା ନେତାମାନଙ୍କ ଗୁରୁଗମ୍ଭୀର ଠାଣି ଓ ମନ୍ତବ୍ୟ ଦେଖି ଶୁଣି ମନେ ହେଉଥାଏ ରାତି ପାହିଲେ ସ୍ୱରାଜ୍ୟ ଆସିଯିବ ପରା ! ସେ ଆଲୋଚନାରୁ ମୋର କେବଳ ଗୋଟିଏ କଥା ମନେ ଅଛି ଯେ ସ୍ୱରାଜ୍ୟରେ କାହାରିକୁ ପାଞ୍ଚଶହ ଟଙ୍କାରୁ ଅଧିକ ବେତନ ଦିଆଯିବ ନାହିଁ ।

ପରବର୍ତ୍ତୀ କଂଗ୍ରେସ ଅଧିବେଶନ ଓଡ଼ିଶାରେ ହେବା ପାଇଁ ଶ୍ରୀମତୀ ସରଳା ଦେବୀ ପ୍ରସ୍ତାବ ଆଗତ କଲେ । ଜାତୀୟ ମହାସଭାରେ ପ୍ରଥମ ସେହି ଓଡ଼ିଆ ଝିଅ ମଣ୍ଡପରେ ଛିଡ଼ା ହୋଇ ଭାଷଣ ଦେଲେ । ଗୋପବନ୍ଧୁ ଚୌଧୁରୀ ତାଙ୍କ କଥାକୁ ସମର୍ଥନ କଲେ । ଆମନ୍ତ୍ରଣ ଗୃହୀତ ହେଲା ।

ଆମେ ଯେଉଁ କଂଗ୍ରେସ ନଗର ବା ପ୍ରତିନିଧି ନିବାସରେ ଥାଉଁ ସେଠାରେ ପ୍ରତିନିଧିମାନଙ୍କର ପ୍ରତି ସକାଳେ ଭିନ୍ନ ଭିନ୍ନ ପ୍ରଦେଶର ପ୍ରଭାତଫେରୀ ବାହାରେ । ପ୍ରତ୍ୟେକ ଦଳ ନିଜ ପ୍ରାଦେଶିକ ଭାଷାରେ ଜାତୀୟ ସଂଗୀତ ବୋଲନ୍ତି । ଆମ ପ୍ରଭାତଫେରୀରେ ଆମେ ବୋଲୁ "ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନ ହେ" । ଗୀତଟିର ଭାଷା ସଂସ୍କୃତ, ତେଣୁ ସମଗ୍ର ଭାରତ ସେ ଗୀତଟିର ମର୍ମ ବୁଝି ପାରିଲା । ପ୍ରଭାତଫେରୀ ସରିବା ପରେ ଅନେକ ପ୍ରଦେଶର ପ୍ରତିନିଧି ଗୁଣୁଗୁଣୁ ହୋଇ ସ୍ୱାଧୀନ ଭାରତ ଗୀତଟି ବୋଲିବାର ଆମେ ଶୁଣି ଉତ୍ଫୁଲ୍ଲ ହେଲୁ । ପୁଣି କେହି କେହି ଆମକୁ ଦେଖିବା ମାତ୍ରେ ହସି ହସି କହୁଥିଲେ 'ଗାଅ ସ୍ୱାଧୀନ ଭାରତ' । ଆମ ଓଡ଼ିଆ ଜାତୀୟ ସଙ୍ଗୀତର ଆଦର ଦେଖି ଆମ ଛାତି କୁଣ୍ଢେ ମୋଟ ହୋଇ ଯାଉଥାଏ ।

କରାଚୀରେ କରାଚୀ ବନ୍ଦର ଓ ଗାନ୍ଧୀ ଗାର୍ଡେନ ଦେଖି ସାରିବା ପରେ ଆମ ପ୍ରସ୍ଥାନ ପର୍ବ ଆରମ୍ଭ ହେଲା । ଦିଲ୍ଲୀ ଫେରି ଉତ୍କଳଭାରତୀ କୁନ୍ତଳାକୁମାରୀଙ୍କର ଲାଲକିଲ୍ଲା ନିକଟସ୍ଥ ବସାରେ ଦିନେ ରହି ଶ୍ରୀ ଭୁବନାନନ୍ଦ ଦାସଙ୍କର ଜଣେ ଓକିଲ ବନ୍ଧୁଙ୍କ ଘରେ ରହି ଦିଲ୍ଲୀ ବୁଲି ଦେଖିଲୁ । ସେଠାରୁ ଆଗ୍ରା ଯାଇ ତାଜମହଲ ଓ କିଲା ଦେଖିଲୁ । କିଲାର ଗାଇଡ଼୍‌ମାନଙ୍କ କଲ୍ୟାଣରୁ ମୋଗଲ ଅମଳର ସମୁଦାୟ ଇତିହାସ କଣ୍ଠସ୍ଥ ହୋଇଗଲା । କୁନ୍ତଳାକୁମାରୀ ଦେବୀ ସେତେବେଳେ ଆର୍ଯ୍ୟ ସମାଜରେ ଯୋଗ ଦେଇଥାନ୍ତି । ତାଙ୍କର 'ଆହ୍ୱାନ' ବହି ଯୋଗୁଁ ତାଙ୍କୁ ଆମେ ଭକ୍ତି କରୁଥାଉଁ । ତାଙ୍କର କଥାବାର୍ତ୍ତାରେ ଦେଶଭକ୍ତିର ଆବେଗ ଦେଖି ସେହି ବ୍ୟକ୍ତିତ୍ୱସମ୍ପନ୍ନା ସୁଦର୍ଶନା ମହିଳାଙ୍କର ମୁଁ ସ୍ତାବକ ପାଲଟି ଗଲି । ଓଡ଼ିଶାରେ ଗୋଟିଏ ମହିଳା ସମ୍ମିଳନୀରେ ଅଧ୍ୟକ୍ଷତା କରିବା ପାଇଁ ତାଙ୍କୁ ଅନୁରୋଧ କରାଯିବାରୁ ସେ ସେଥିରେ ସମ୍ମତ ହେଲେ । ଏହି ସମ୍ମିଳନୀଟି ବାଲେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ଶ୍ରୀମତୀ ଜାହ୍ନବୀ ଦେବୀ ଏହାର ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷା ହୋଇଥିଲେ । ଶହ ଶହ ମହିଳା ଦୂରଦୂରାନ୍ତରୁ ଆସି ସମ୍ମିଳନୀରେ ଯୋଗଦେଲେ । ଏତେ ମହିଳା ବିଶେଷରେ ଗାଉଁଲୀ ମହିଳା ସମ୍ମିଳନୀରେ ଯୋଗ ଦେବାଟା ଗୋଟାଏ ଆଶ୍ଚର୍ଯ୍ୟଜନକ ବ୍ୟାପାର ପରି ମନେ ହେଉଥାଏ । ବାଗ୍ ବୃନ୍ଦାବନ ପଡ଼ିଆରେ ଯେଉଁ ମହିଳା ସଭା ହେଲା ତାହା ଅବିସ୍ମରଣୀୟ । ଉତ୍କଳଭାରତୀଙ୍କୁ ପାଛୋଟି ଆଣିବା ପାଇଁ ଯେଉଁ ମହିଳା ଶୋଭାଯାତ୍ରା ଯାଇଥିଲା ସେହି ପ୍ରଦୀର୍ଘ ସୁବ୍ୟବସ୍ଥିତ ଶୋଭାଯାତ୍ରା ଦେଖି ନାରୀଜାଗରଣର ଚିତ୍ର ପ୍ରତ୍ୟକ୍ଷୀଭୂତ ହେଉଥାଏ । ଉତ୍କଳ ଭାରତୀ

କଟକକୁ ଆସି ଏକ ମହିଳା ସଭାରେ ଭାଷଣ ଦେଇଥିଲେ । ସେ ହସ୍ତରେଖା ଗଣନା ଜାଣିଥିଲେ । ନିଜ ହାତ ଦେଖି ଓ ଆଉ କେତେକ ବ୍ୟକ୍ତିଙ୍କ ହାତ ଦେଖି ଯାହା ଯାହା କହିଥିଲେ ତାହା ଯଥାଯଥ ଭାବରେ ଫଳିଲା । ତାଙ୍କ ସହିତ ସେହି ଶେଷ ସାକ୍ଷାତ ।

ଦିଲ୍ଲୀରେ ଗୋଟିଏ ବିଚିତ୍ର କଥା ଦେଖିଲୁ । ପ୍ରାସାଦୋପମ ଘର, କିନ୍ତୁ ପାଇଖାନା ନାହିଁ । ଆମ ମଧ୍ୟରେ ରମାଦେବୀ ଓ ମାଳତୀ ଦେବୀ ପିଲାଦିନେ ବିହାର ପ୍ରଦେଶରେ ରହିଥିବାରୁ ହିନ୍ଦୀ ଜାଣିଥିଲେ । ସେମାନେ ଚାକରକୁ ଗୋଶଲଖାନା ଦେଖାଇ ଦେବାକୁ କହିବାରୁ ସେମାନେ ତେତାଲା ଛାତକୁ ଦେଖାଇ ଦେଲେ । ବୋଧହୁଏ ସ୍ୱଳ୍ପ ବାରିପାତ ହେତୁ ଦିଲ୍ଲୀରେ ଏହି ଅଘଟନ ଘଟି ପାରୁଥିଲା । ଆମେ ତ ଏ ବ୍ୟବସ୍ଥା ଦେଖି ହସି ହସି ନୟାନ୍ତ ହେଲୁ ।

ଓଡ଼ିଶା ଫେରି କଂଗ୍ରେସ ଅଧିବେଶନ ପାଇଁ ନାନାବିଧ ଆୟୋଜନ ଚାଲିଲା । ପ୍ରଚାର, ଅର୍ଥ-ସଂଗ୍ରହ, ସ୍ୱେଚ୍ଛାସେବକ ତାଲିମ ଆଦି କାମ ତୁରନ୍ତ ଆରମ୍ଭ ହୋଇଗଲା । ବୀରବାବୁ ଗୀତ ଲେଖିଦେଲେ–

ଆସ କିଏ ଭାଇ ଜାତି ମହାସଭା ଜାତୀୟ ମଣ୍ଡପ ତୋଳିବ
ମୁକତି ଯଜ୍ଞର ଉପବୀତ ପିନ୍ଧି ଭକତି ଚନ୍ଦନ ଗୋଳିବ ।
ଆସିବେ ବଙ୍ଗାଳୀ ଆସିବେ ଅକାଳୀ
ଆସିବେ ତେଲଙ୍ଗା ବଜାଇ କାହାଳୀ
ଆସିବେ ସେ ବୀର ବରଦୋଳି ଚାଷୀ
କେତେ ଅରଦୋଳି ଲାଗିବ ।
ନାଲି ଜାମା ପିନ୍ଧି ସୀମାନ୍ତର ଗାନ୍ଧୀ
ଆସିବେ ତାଙ୍କର ଦଳବଳ ବାନ୍ଧି
ଭାରତର ନେତ୍ର ସଂପଦ ଆସିବେ
ପୁରୀ ଇନ୍ଦ୍ରପୁରୀ ହୋଇବ । .... ଇତ୍ୟାଦି

ଅଭ୍ୟର୍ଥନା ସମିତିର ସଦସ୍ୟ ସଂଗ୍ରହ ପାଇଁ ଧାଁ ଧପଡ଼, ସମିତି ଗଠନ, ସେଥିରେ ମନାନ୍ତର ମତାନ୍ତର ଆଦି ସାଙ୍ଗକୁ ଟାଣୁଆ ସ୍ୱେଚ୍ଛାସେବକ ବାହିନୀ ସଂଗଠନ କାମ ମଧ୍ୟ ଆରମ୍ଭ ହେଲା । ଆମେ ଶେଷୋକ୍ତ କାମରେ ମନପ୍ରାଣ ଢାଳି ଦେଲୁ । ଅଭ୍ୟର୍ଥନା ସମିତି ପକ୍ଷରୁ ଶ୍ରୀ ହରେକୃଷ୍ଣ ମହତାବ ହେଲେ ଜି.ଓ.ସି. । ଆମେ ଯେତକ

ଆନ୍ଦୋଳନରେ ଯୋଗ ଦେଇଥିଲୁ, ସମସ୍ତଙ୍କୁ ବିଧିବଦ୍ଧ ଭାବରେ ତାଲିମ ଦେବା ଯୋଜନା କାର୍ଯ୍ୟକାରୀ ହେଲା । ଆମକୁ ହିନ୍ଦୀ ଶିଖାଇବା ପାଇଁ ପ୍ରଥମେ ବିହାରରୁ ପଣ୍ଡିତ ରାମାନନ୍ଦ ଶର୍ମା ଓ ପରେ ଯୁକ୍ତ ପ୍ରଦେଶରୁ ପଣ୍ଡିତ ଅନସୂୟା ପ୍ରସାଦ ପାଠକ ଓ କୈଳାସବତୀ ଦେବୀ ଆସିଲେ । କଟକ ସହରରେ ହିନ୍ଦୀ ପଢ଼ା ଆରମ୍ଭ ହେଲା । ଅଂଶୁ, ଅମିୟା, ଖୁସି ହାସି, ଲାଲ ନୀଲ, ସତୀ, ନକ୍ଷତ୍ରମାଳୀ ଆଦି ଝିଅଙ୍କୁ ହିନ୍ଦୀ ପଢ଼ିବା ପାଇଁ ଘର ଘର ବୁଲି ଡାକି ଆଣିବା ହେଲା ଶୋଭାରାଣୀ ପଣ୍ଡା ଓ ମୋର କାମ । ସେମାନଙ୍କୁ ମାଳତୀ ଦେବୀ ଡ୍ରିଲ୍ ମଧ୍ୟ ଶିଖାଇଲେ ।

ସେତେବେଳେ ଜାତୀୟ କଂଗ୍ରେସର ସ୍ୱେଚ୍ଛାସେବକ ସଙ୍ଗଠନର ନାମ ଥିଲା 'ହିନ୍ଦୁସ୍ଥାନୀ ସେବାଦଳ' । କର୍ଣ୍ଣାଟକର ବିପ୍ଳବୀ ଡକ୍ଟର ହାର୍ଦ୍ଦିକର ଏହି ସଂଗଠନର ପ୍ରତିଷ୍ଠାତା । ବେଲଗାଓଁ କଂଗ୍ରେସ ଅଧିବେଶନରେ ଏହି ସଂଗଠନର ସ୍ୱେଚ୍ଛାସେବକମାନେ ପାଇଖାନା ସଫାଠାରୁ ଆରମ୍ଭ କରି ଯାନବାହାନ ନିୟନ୍ତ୍ରଣ ଯାଏ ସର୍ବପ୍ରକାର କାର୍ଯ୍ୟ ସୁଚାରୁ ରୂପେ ସମ୍ପନ୍ନ କରି ମହାତ୍ମା ଗାନ୍ଧୀଙ୍କର ପ୍ରଶଂସାଭାଜନ ହୋଇଥିଲେ । ଏହି ସଂଗଠନ ପକ୍ଷରୁ ଜଣେ ଇଞ୍ଜିନିୟର ଶ୍ରୀ ମୁକୁନ୍ଦ ରାଓ ବଲ୍‌ସୱାର ଓ ତାଙ୍କ ସ୍ତ୍ରୀ ଶ୍ରୀମତୀ ସୁଶୀଲା ବାଈ ବଲ୍‌ସୱାର ଓଡ଼ିଶାକୁ ତାଲିମ ଶିବିର ଚଳାଇବାକୁ ଆସିଲେ । ସ୍ୱରାଜ୍ୟ ଆଶ୍ରମ ନିକଟରେ ଘର ଭଡ଼ା ନିଆଯାଇ ତାଲିମ ଶିବିର ଆରମ୍ଭ ହେଲା । ସର୍ବଶ୍ରୀ ନବକୃଷ୍ଣ ଚୌଧୁରୀ, ଗତିକୃଷ୍ଣ ସ୍ୱାଇଁ, ଗୋକୁଳ ରାୟ ଚୂଡ଼ାମଣି, ଶରତ ସାମନ୍ତରାୟ, ନରସିଂହ ସାମନ୍ତସିଂହାର, ନରସିଂହ ସାହୁ, ସୁରେନ୍ଦ୍ର ପଟ୍ଟନାୟକ, ବିନୋଦ କାନୁନ୍‌ଗୋ, ସୁରେନ୍ଦ୍ର ଦ୍ୱିବେଦୀ, ମନମୋହନ ଚୌଧୁରୀ, ମାଳତୀ ଚୌଧୁରୀ, ଗୁଣନିଧି ସାହୁ ଆଦି କୋଡ଼ିଏ ଜଣ ବଛା ବଛା ଶିକ୍ଷାର୍ଥୀ ସେଥିରେ ଯୋଗ ଦେଲେ । ସେମାନେ ତାଲିମ ନେଇସାରି ସ୍ୱେଚ୍ଛାସେବକ ତାଲିମ ଶିବିର ସଞ୍ଚାଳନା କରିବେ ବୋଲି ଠିକ୍ ହୋଇଥାଏ । ତେଣୁ ସେଇଟା ହେଲା ଇନ୍‌ଷ୍ଟ୍ରକ୍ଟର୍‌ସ୍ କ୍ୟାମ୍ପ ।

ସାମରିକ ଅନୁଶାସନରେ ସେ ଶିବିର ଚାଲିଥାଏ । ଡ୍ରିଲ୍, ଲାଠି ଚାଳନା, ଆସନ ନମସ୍କାର, ପତାକା ଉତ୍ତୋଳନ, ପତାକା ଅବତରଣ, ଜାତୀୟସଙ୍ଗୀତ ଗାନ, ପାଇଖାନା ସଫେଇ, ଯାନବାହାନ ଓ ଭିଡ଼ ନିୟନ୍ତ୍ରଣ, ପହରା ଦେବା, ପ୍ରାର୍ଥନା, ପ୍ରଥମୋପଚାର, ଶିବିର ପରିଚାଳନା ଆଦି ବ୍ୟବହାରିକ ତାଲିମ ସାଙ୍ଗକୁ କଂଗ୍ରେସ ଇତିହାସ, ସେବାଦଳ ଇତିହାସ, କଂଗ୍ରେସର ସମ୍ବିଧାନ, ଓଡ଼ିଶାର ଇତିହାସ, ରାଷ୍ଟ୍ରଭାଷା, ଶରୀର ବିଜ୍ଞାନ ଓ ସ୍ୱାସ୍ଥ୍ୟରକ୍ଷା ଆଦି ବୌଦ୍ଧିକ ଜ୍ଞାନ ମଧ୍ୟ ଦିଆଯାଉଥିଲା । ଶିକ୍ଷା କାଳ

ଦେଢ଼ ମାସ । ଶିବିରର ଅନୁଶାସନ ବା ଶୃଙ୍ଖଳାରକ୍ଷାରେ ତିଳେମାତ୍ର ଏପାଖ ସେପାଖ ହେଲେ ତାହା କ୍ଷମଣୀୟ ହୁଏ ନାହିଁ । ତାଲିମ ଶେଷରେ ତାହା ହୁଏ ଯୋଗ୍ୟତାର ମାପକାଠି । ଏପରିକି ପାଇଖାନା ଆଗରେ ନମ୍ବର ଦିଆଯାଇ ଖଣ୍ଡେ ଖଣ୍ଡେ ଛୋଟ ତାସ୍ ମାପର ଟିଣ ଝୁଲୁଥାଏ । ଯେଉଁ ନମ୍ବର ପାଇଖାନାକୁ ଯେ ଯିବେ ସେ ସେହି ନମ୍ବର ଟିଣ ନେଇ ପାଇଖାନା ଭିତରକୁ ଯିବେ । ଯଦି କେହି ସେହି ଟିଣ ଟିକେଟ ନେବାକୁ ଭୁଲିଯିବେ ତେବେ ତାଙ୍କର ପରୀକ୍ଷାରେ ନମ୍ବର କଟିଲା । ମାଳତୀ ଦେବୀଙ୍କର ଫୁଲରେ ଶରଧା । ଦିନେ ଦୁଇଟ ଗଙ୍ଗଶିଉଳି ଫୁଲ ସାଉଁଟି ଆଣି ସେ ନିଜ ରହିବା ସ୍ଥାନଟି ସଜାଇ ଥିଲେ । ତାଙ୍କର ନମ୍ବର କଟିଲା । କମାଣ୍ଡର ବଲସଓ୍ୱାରଙ୍କ ସଙ୍ଗେ ଦିନରେ ଯେତେ ଥର କଥା କହିବ, ପ୍ରତ୍ୟେକ ଥର କଥା କହିବା ପୂର୍ବରୁ ଓ କଥା କହି ସାରିବା ପରେ ନମସ୍ତେ କରିବା ହେଲା ନିୟମ । ନବବାବୁ ଓ ମୁକୁନ୍ଦରାଓଜୀ ସମବୟସ୍କ । ନବବାବୁ ନମସ୍ତେ କରିବାକୁ ଭୁଲିଗଲେ । ନମ୍ବର କଟିଗଲା । ବିଶିଷ୍ଟ ସତ୍ୟାଗ୍ରହୀଙ୍କର ଏ ଦଶାଟାକୁ ଆମେ ବାନରମାନେ ଖୁବ୍ ଉପଭୋଗ କରୁଥାଉ । ତାଲିମ ଶିବିର ସରିବା ପରେ ଟାଉନ୍‌ହଲ୍ ପଡ଼ିଆରେ ଶିବିରାର୍ଥୀମାନେ ଯେଉଁଦିନ ଡ୍ରିଲ୍, ଲାଠିଖେଳ, ଆଦି ନାନାପ୍ରକାର କରାମତି ଦେଖାଇଲେ, ଦର୍ଶକମାନେ ଚମକୃତ ହୋଇଗଲେ ।

ସୁଶୀଳା ବଲ୍‌ସଓ୍ୱାରଙ୍କ ତତ୍ତ୍ୱାବଧାନରେ ପୁରୀ ମୋଚିସାହିରେ ମହିଳା ତାଲିମ ଶିବିର ଆରମ୍ଭ ହେଲା । ଆମେ ତେତ୍ରିଶ ଜଣ ଶିକ୍ଷାର୍ଥିନୀ ଶିବିରରେ ଯୋଗ ଦେଲୁ । ୧୯୩୧ ମସିହାରେ ମହିଳାମାନେ ଏ ପ୍ରକାର ଶିବିରରେ ଯୋଗ ଦେବାଟା ଅଭାବନୀୟ ବ୍ୟାପାର ଥିଲା । ସେଥିପାଇଁ ସତ୍ୟାଗ୍ରହୀମାନଙ୍କ ଆତ୍ମୀୟମାନଙ୍କ ସଂଖ୍ୟା ହିଁ ଶିବିରରେ ଅଧିକ ହେଲା । ଭଗୀରଥ ଦାସଙ୍କ ସ୍ତ୍ରୀ ପ୍ରିୟମ୍ବଦା ଦେବୀ, ହଳଧର ସାହାଣୀଙ୍କ ଭଉଣୀ ଛାୟା ଓ ଶଶୀ, ରବୀନ୍ଦ୍ରମୋହନ ଦାସଙ୍କ ଭଉଣୀ ପଦ୍ମା ଓ ସାବିତ୍ରୀ, ଲାଲବିହାରୀ ପଟ୍ଟନାୟକଙ୍କ ସ୍ତ୍ରୀ ବିଷ୍ଣୁପ୍ରିୟା ଦେବୀ, ନରସିଂହ ଚଉପଟ୍ଟନାୟକଙ୍କ ସ୍ତ୍ରୀ ସୁନ୍ଦରମଣି ଦେବୀ, ଶଚୀ ଜେନାଙ୍କ ସ୍ତ୍ରୀ ନିରୁପମା ଦେବୀ ଓ ଆତ୍ମୀୟା ସାରମୟୀ, ହିରଣ୍ମୟୀ, ଅନ୍ତର୍ଯ୍ୟାମୀ ପଣ୍ଡାଙ୍କ ସ୍ତ୍ରୀ ଶେଭାରାଣୀ, ସତ୍ୟନାରାୟଣ ସେନଗୁପ୍ତଙ୍କ ଝିଅ କମଳା ଓ ଝିଆରୀ ମଙ୍ଗଳା, କୃପାସିନ୍ଧୁ ପଣ୍ଡାଙ୍କ ସ୍ତ୍ରୀ ମାଳତୀ ଦେବୀ, ଗୋପବନ୍ଧୁ ଚୌଧୁରୀଙ୍କ ସ୍ତ୍ରୀ ରମାଦେବୀ ଓ ଝିଅ ଅନ୍ନପୂର୍ଣ୍ଣା, ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ଭାଇବୋହୂ ସୁନାମଣି ଦେବୀ, ଡା. ଅଟଳ ବିହାରୀ ଆଚାର୍ଯ୍ୟଙ୍କ ସ୍ତ୍ରୀ ଆଶାଲତା ଦେବୀ, ଲାଲବିହାରୀ ଦାସଙ୍କ

ସ୍ତ୍ରୀ ଗୁଣମଞ୍ଜରୀ, କୃଷ୍ଣ ସେନାପତିଙ୍କ ସ୍ତ୍ରୀ କୌଶଲ୍ୟା, ଆଚାର୍ଯ୍ୟ ମହାଶୟଙ୍କ ଭାଇବୋହୂ ତାରାମଣି ଆଦିଙ୍କ ସହିତ ଅନୁପମା ଘୋଷ, ସୁଶୀଳା ଘୋଷ, କନ୍ଧମାଳୀ, ହାରାମଣି, ହରପ୍ରିୟା, ହେମଲତା, ପଦ୍ମା ଦେବୀ ପ୍ରଭୃତି ଥିଲେ ଶିକ୍ଷାର୍ଥିନୀ । ରମାଦେବୀ ଛୁରା ଖେଳ ଆଦି ଶିଖିବା ସଙ୍ଗେ ସଙ୍ଗେ କ୍ୟାମ୍ପ କମାଣ୍ଡରଙ୍କୁ ପରିଚାଳନାରେ ମଧ୍ୟ ସାହାଯ୍ୟ କରୁଥିଲେ । ଶିବିର ପାଇଁ ଶିକ୍ଷାର୍ଥିନୀ ସଂଗ୍ରହ କାମ ମୁଖ୍ୟତଃ ସେହି ହିଁ କରିଥିଲେ । ସେ ଓ ସୁନାମଣି ଦେବୀ ଶ୍ରୀରାମଚନ୍ଦ୍ରପୁର ଶାସନକୁ ଯାଇ ତାରାମଣିଙ୍କୁ ଶିବିରକୁ ଆଣିଲେ । ଏହି ଶିବିର ପରିଚାଳନାରେ ଆଚାର୍ଯ୍ୟ ମହାଶୟ ଥିଲେ ମୁଖ୍ୟ ପୃଷ୍ଠପୋଷକ । ସେ ଶିବିରକୁ ଆସିବା ବେଳେ ରମାଦେବୀ ତାରାମଣିଙ୍କୁ ନେଇ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମରେଇ ପଚାରିଲେ – ଆଚାର୍ଯ୍ୟ ମହାଶୟ ! ଏ ଝିଅଟି କିଏ କହିଲେ । ଆଚାର୍ଯ୍ୟ ମହାଶୟ ଚିହ୍ନି ନ ପାରି ନିରୁତ୍ତର ରହିଲେ । ଆମେ ତ ହସି ହସି ନେଞ୍ଜରାକୋତରା ହୋଇଗଲୁ । ଦେଖ ହୋ ! ଆଚାର୍ଯ୍ୟ ମହାଶୟ ନିଜ ଘର ବୋହୂକୁ ଚିହ୍ନି ନାହାନ୍ତି । ଆଚାର୍ଯ୍ୟ ମହାଶୟ ହସି ହସି କହିଲେ, "ଆଲୋ ଓଲି ! ସେଇଥିପାଇଁ ତ ମୁଁ ପର୍ଦ୍ଦାପ୍ରଥା ବିରୁଦ୍ଧରେ ଏତେ ବୁଝାଉଛି" ।

ଏହି ମହିଳା ଶିବିରରେ ଆମେ ଆଚାର୍ଯ୍ୟ ମହାଶୟଙ୍କର ଯଥାର୍ଥ ସାନ୍ନିଧ ଲାଭ କଲୁ । ସେ ଆମକୁ ସ୍ୱାସ୍ଥ୍ୟରକ୍ଷା, କଂଗ୍ରେସ ସମ୍ବିଧାନ, ସାଧାରଣଜ୍ଞାନ ଶିକ୍ଷା ଦେଲେ । ଖାଇବାବେଳେ, ଭାତ, ଡାଲି, ତରକାରୀ ନ କହି ଶ୍ୱେତସାର, ପ୍ରୋଟିନ୍ ଆଦି କହିବାକୁ ସେହି ଏକା ପ୍ରବର୍ତ୍ତନା ଦେଉଥିଲେ । ଓଡ଼ିଶାର ଇତିହାସ ପଢ଼ାଇଲେ ଶ୍ରୀ ଜଗବନ୍ଧୁ ସିଂହ, କଂଗ୍ରେସ ଇତିହାସ ଶ୍ରୀ ଜଗନ୍ନାଥ ମିଶ୍ର, ସତ୍ୟାଗ୍ରହର ଇତିହାସ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶରୀରବିଭାଗ ଓ ପ୍ରଥମୋପଚାର ଡକ୍ଟର ଶଙ୍କର ଦାସ ଶିକ୍ଷା ଦେଲେ । ଡ୍ରିଲ୍, ପତାକା ଉତ୍ତୋଳନ, ପହରା ଦେବା ଆଦି ବ୍ୟାବହାରିକ ଶିକ୍ଷା ପୁରୁଷଙ୍କ ଅନୁରୂପ ଥିଲା । କେବଳ ଛୁରା ଖେଳ ଶିଖାଇବାକୁ ପୁରୁଲିଆରୁ ବାସନ୍ତୀ ଦାସଗୁପ୍ତ ଓ ଉର୍ମିଳା ଘୋଷ ଆସିଥିଲେ ।

ଜେଲ୍‌ର ପଗଲୀ ଘଣ୍ଟି ପରି ଶିବିରରେ ତତ୍ପରତା ପରୀକ୍ଷା କରିବା ପାଇଁ ବିପଦସୂଚକ ହୁଇସ୍ଲ ବଜାଇ ଦିଆ ଯାଉଥିଲା । ଆମ ତାଲିମର ଏଇଟା ଗୋଟାଏ ଅଂଗ ଥିଲା । ବିଭିନ୍ନ କାମ ପାଇଁ ବିଭିନ୍ନ ପ୍ରକାର ହୁଇସ୍ଲ ବଜାଇ ଡାକିବା ଥିଲା ନିୟମ । ଆମକୁ ରାତିରେ ଲାଠି, ଲଣ୍ଠନ, ହୁଇସ୍ଲ ଧରି ପହରା ଦେବାକୁ ପଡୁଥିଲା । ସାହାଯ୍ୟ ଆବଶ୍ୟକ ବୋଧକଲେ ବା ହଠାତ୍ ବିପଦ ପଡ଼ିଲେ ସେଥିପାଇଁ ନିର୍ଦ୍ଦିଷ୍ଟ

ପ୍ରକାର ହୁଇସ୍ଲ ବଜାଇ ସୂଚାଇବାକୁ ପଡୁଥିଲା । ବିପଦସୂଚକ ହୁଇସ୍ଲ ବାଜିଲେ ତିନିମିନିଟ୍ ମଧରେ ବିଛଣାପତ୍ର ବାନ୍ଧି ସମସ୍ତ ଜିନିଷ ଧରି ଆସି ଧାଡ଼ିରେ ଠିଆହେବା ଥିଲା ନିୟମ । ଏହାର ଟିକିଏ ବ୍ୟତିକ୍ରମ ହେଲେ ଶିକ୍ଷାର୍ଥିନୀ ଅଯୋଗ୍ୟ ପ୍ରମାଣିତ ହେଉଥିଲେ ।

ଶିକ୍ଷାକ୍ରମ ଶେଷ ହେବା ପରେ ମହୋଦଧି କୂଳରେ ଆମର ଶିବିର ଉଦ୍‌ଯାପନ ଉତ୍ସବ ହେଲା । ଓଡ଼ିଆ ଘର ଝିଅ ବୋହୂଙ୍କ ଡ୍ରିଲ୍, ଛୁରାଖେଳ ଆଦି ଦେଖି ପୁରୀରେ ଚହଳ ପଡ଼ିଗଲା । ଓଡ଼ିଶାରେ ମହିଳା ଜାଗରଣ ଏଇଟା ଗୋଟାଏ ସ୍ମରଣୀୟ ଅଧ୍ୟାୟ ।

ଦ୍ୱିତୀୟ ମହିଳା ଶିବିର ହେଲା ପୁରୀ ବଳିଆପଣ୍ଡାରେ । ଏଥର ତଲେଇ ଘେର ଦିଆ ତଲେଇ ଛପରର ଘର ସବୁ ବାଲି ଉପରେ ତିଆରି ହୋଇଥିଲା । ଆମେ ପୁରୁଣା ଶିକ୍ଷାର୍ଥିନୀ ଏ ଶିବିରରେ ଅଫିସର ପାଲଟି ଗଲୁ । ସୁନାମଣି ଦେବୀ ହେଲେ କ୍ୱାଟର ମାଷ୍ଟର, ବାସନ୍ତୀ ଦାସଗୁପ୍ତ ସେକେଣ୍ଡ ଇନ୍ କମାଣ୍ଡ, ଶୋଭା ଦେବୀ ସାନିଟେସନ୍ ଅଫିସର୍, ମୁଁ ନେଲି ଡ୍ରିଲ୍ ଇନ୍‌ଷ୍ଟ୍ରକ୍ଟର ଓ ପ୍ରେୟାର ଅଫିସରର ଦାୟିତ୍ୱ । ଏହି ଶିବିରକୁ ଆମର ଅନେକ ଗୁରୁଜନ ଶିକ୍ଷାର୍ଥିନୀ ହୋଇ ଆସିଥାନ୍ତି । କୋକିଳ ଦେବୀଙ୍କୁ ଦେଖି ଆନନ୍ଦରେ ଉଲ୍ଲସିତ ହୋଇ ମୁଁ "କକ ମାଉସୀ" ଡାକି ପ୍ରଣାମ କରି ଉଠି ଠିଆହେଲା ବେଳକୁ ଦେଖିଲି ସୁପ୍ରିମ କମାଣ୍ଡର ମୁକୁନ୍ଦରାଓଜୀ ମୋତେ ଅଗ୍ନିବର୍ଷୀ ଦୃଷ୍ଟିରେ ଚାହିଁଛନ୍ତି । ତାଙ୍କ ଚାହାଣୀ ଦେଖି ମୋ ଛାତିରୁ ଅତଡ଼ା ଖସି ପଡ଼ିଲା । ସେ ମୋତେ ତାଙ୍କ ଅଫିସ୍‌କୁ ଡାକିନେଇ କହିଲେ, "ଶିବିରରେ ପିଲାଳିଆ ଢଙ୍ଗ ଚଳେ ନାହିଁ । ତୁମକୁ ସବୁବେଳେ ମନ ରଖିବାକୁ ହେବ ଯେ ତୁମେ ଶିବିର ଦାୟିତ୍ୱରେ ଥିବା ଜଣେ ଅଫିସର । ମା' ମାଉସୀ ଯେ ହୁଅନ୍ତୁ, ସେମାନେ ଏଣିକି ତୁମକୁ ନମସ୍ତେ କରିବେ ।" ସାବଧାନ ହୋଇ ଛିଡ଼ା ହୋଇ ତାଙ୍କ କଥାକୁ ଗଳାଧଃକରଣ କଲି । ମୋର ବୟସ ସେତେବେଳେ ଚଉଦ ବର୍ଷ ଏକମାସ । ଏଣେ ଚଉଦବର୍ଷ ନ ପୂରୁଣୁ ମୁଁ ତାଲିମ ନେଇଥିବା ହେତୁ ମୋର ଇଉନିଫର୍ମ କେଶରୀ ଶାଢ଼ୀ ଓ ଶାଗୁଆ ବ୍ଲାଉଜ୍ ମୋତେ ମିଳୁ ନ ଥାଏ । ତେଣେ ମୋତେ ଅଫିସର କରି ଦିଆଯାଇ ବାନରଙ୍କ ସଙ୍ଗେ ହୁମଦୁମ ହେବା ବାଟ ମଧ ବନ୍ଦ କରି ଦିଆଗଲା । ଅଫିସରିଆ ଗୁରୁଗମ୍ଭୀର ଠାଣି ବଜାୟ ରଖିବାକୁ ମୋ ଅବସ୍ଥା ବାରଗଣ୍ଡା ଦୁଇକଡ଼ା ହୋଇ ଯାଉଥାଏ । ମହିଳା ଶିବିରକୁ ଲାଗି ବାନର ସେନା ତାଲିମ ଶିବିର ଚାଲିଥାଏ । ମନମୋହନ ଚୌଧୁରୀ ତାଙ୍କ କ୍ୟାମ୍ପ କମାଣ୍ଡର ହୋଇଥାନ୍ତି । ମୋ ସାଙ୍ଗଗୁଡ଼ାକ ପାଖରେ ଥାଇ ସୁଦ୍ଧା ଅଫିସରର ପଦମର୍ଯ୍ୟାଦା ରକ୍ଷା କରିବା ଦୃଷ୍ଟିରୁ ସେମାନଙ୍କ ସଙ୍ଗେ ସାଧାରଣ ଭାବରେ କଥାବାର୍ତ୍ତା କରିବା ମଧ ଏକପ୍ରକାର ଅସମ୍ଭବ ହୋଇ ପଡ଼ିଥାଏ ।

୧୯୩୨ ମସିହା ଜାନୁୟାରୀ ପ୍ରଥମ ସପ୍ତାହରେ ଦ୍ୱିତୀୟ ମହିଳା ଶିବିର ଉଦ୍‌ଯାପିତ ହେଲା । ଆମେ ଶିକ୍ଷାର୍ଥିନୀ ଶିକ୍ଷୟିତ୍ରୀ ଭେଦ ଭୁଲି ସମସ୍ତେ ମିଶି ସମୁଦ୍ର ସ୍ନାନ କଲୁ । ସେଦିନ ସମୁଦ୍ର ଶାନ୍ତ ଥାଏ । ଆମେ ମନଇଚ୍ଛା ଲହଡ଼ି ଭାଙ୍ଗୁଥାଉ । ଭାବିଥାଉଁ ମନମୋହନ ଚୌଧୁରୀ ଯେତେବେଳେ ବିଉଗୁଲ୍‌ରେ Come to the kitchen door boys, Come to the kitchen door ବଜାଇବେ ଅର୍ଥାତ୍ ଖାଇବା ସମୟ ସୂଚେଇବେ, ସେତିକିବେଳେ ଆମେ ପାଣିରୁ ଉଠିବୁ ।

ହଠାତ୍ ଶୋଭାଦେବୀଙ୍କର ପାଟି ଶୁଭିଲା । ଗାଧୁଆ ସେତିକିରେ ସରୁ । ଗାନ୍ଧିଜୀ ଗିରଫ ହୋଇଗଲେଣି । କଂଗ୍ରେସ ବେଆଇନ୍ ଘୋଷିତ ହୋଇ ସାରିଲାଣି । ତମର ଏଣେ ନାଣ୍ଡି ବାହାଘର ଲାଗିଛି । ଧଡ଼ପଡ଼ ହୋଇ କୂଳକୁ ଉଠି ଲୁଗା ବଦଳି ଛାଉଣୀକୁ ଆସିବା ବେଳକୁ ବାତାବରଣ ସମ୍ପୂର୍ଣ୍ଣ ବଦଳି ଗଲାଣି । ସମସ୍ତେ ଗମ୍ଭୀର, ସମସ୍ତେ ଚୁପ୍ ଚାପ୍ । ମାଳତୀ ଦେବୀ ଶିଶୁପୁତ୍ରଟି ସହ ବଳିଆପଣ୍ଡାରେ ରହିଥାନ୍ତି । ସେ ଆମ ସମସ୍ତଙ୍କୁ ଏକାଠି ବସାଇ ବୁଝାଇଲେ – ଏଥର ଲଢ଼େଇ ଭାରି କଠିନ ହେବ । ନୂଆ ବଡ଼ଲାଟ ଲର୍ଡ଼ ଉଇଲିଂଡନ୍ ଜାଠଦଳ ଲୋକ । ସେ ବଡ଼ କଠୋର । ଏଥର ସେ ଆଖିବୁଜା ଦମନଲୀଳା ଚଳାଇ ଆନ୍ଦୋଳନକୁ ଦବେଇ ଦେବାକୁ ପାରୁପର୍ଯ୍ୟନ୍ତ ଉଦ୍ୟମ କରିବେ । ଜାଠଦଳର ଏହା ହିଁ ମସୁଧା । ସେଥିପାଇଁ ଉଇଲିଂଡନ୍ ଗାନ୍ଧିଜୀଙ୍କ ସହିତ ଦେଖା କରିବାକୁ ମଧ୍ୟ ମନା କରିଦେଲେ । ଇରୱଇନ୍ ଗାନ୍ଧିଜୀଙ୍କ ସଙ୍ଗେ ସନ୍ଧି କରି ଇଂଲଣ୍ଡର ମୁଣ୍ଡ ତଳକୁ କରି ଦେଇଛନ୍ତି ବୋଲି ତାଙ୍କର ଧାରଣା । ଏଥର ସେ ତାର ପ୍ରତିଶୋଧ ନେବେ । ଏ କଥା ଜାଣି ଏ ପରୀକ୍ଷା ଦେବାକୁ ଯେଉଁମାନେ ତିଆର ଅଛ, ଅତ୍ୟାଚାର ସହିବାକୁ ଯାହାଙ୍କର ମନୋବଳ ଅଛି, ସେମାନେ ଆଜି ଏଇଠି ସତ୍ୟାଗ୍ରହୀ ତାଲିକାରେ ନାମ ଲେଖାନ୍ତୁ । ବାକି ସମସ୍ତେ ଘଣ୍ଟାକ ମଧ୍ୟରେ ଏ ସ୍ଥାନ ଛାଡ଼ି ନିରାପଦ ସ୍ଥାନକୁ ଚାଲି ଯାଆନ୍ତୁ ।

ଘଣ୍ଟାକ ମଧ୍ୟରେ ବଳିଆପଣ୍ଡା ଛାଉଣୀର ଚେହେରା ବଦଳି ଗଲା । ଯେଉଁମାନେ ଘରକୁ ଫେରିବା କଥା ସେମାନେ ବାକ୍‌ସ ବିଛଣା ଧରି ତୁରନ୍ତ ରେଳ ଷ୍ଟେସନ ଆଡ଼କୁ ମୁହାଁଇଲେ । ରହିଲୁ କେବଳ ଚାରି ଦଉଡ଼ି କଟା ବାନର ଦଳ । ତାଙ୍କ ସାଙ୍ଗରେ ରହିଲେ କେନ୍ଦ୍ରାପଡ଼ାର ସରସ୍ୱତୀ ଦେବୀ, ଯାଜପୁରର କୃଷ୍ଣକାମିନୀ ଦେବୀ, ଭଦ୍ରଖର କୋକିଳ ଦେବୀ, ପୁରୀର ସୁନାମଣି ଦେବୀ ଓ ପଦ୍ମା ଦେବୀ, ଗଞ୍ଜାମର ଶୋଭାରାଣୀ ଦେବୀ, କଲ୍ୟାଣପୁରର ଗୋଦାବରୀ ଦେବୀ ଆଦି ପଞ୍ଚାଏ

ସ୍ୱେଚ୍ଛାସେବିକା । ରାତି ଗଭୀର ହେଲା । ଆମେ ପୁରୀ ସହର ଭିତରେ ବଡ଼ଦାଣ୍ଡରେ ଥିବା ଅଭ୍ୟର୍ଥନା ସମିତି କାର୍ଯ୍ୟାଳୟକୁ ନିଃଶବ୍ଦରେ ଚାଲିଲୁ । କାହିଁ ସେ ମାର୍ଚ୍ଚିଂ ସଙ୍ଗ୍ ! କାହିଁ ସେ ଜୟଘୋଷ ! ଅନ୍ଧାର ରାତି, ମ୍ୟୁନିସିପାଲିଟି ଆଲୁଅ ବଳିଆପଣ୍ଡା ପଟେ ନ ଥାଏ । ଗୋଟାଏ ବିରାଟ ଅଜଗର ସାପ ଅଙ୍କେଇ ବଙ୍କେଇ ଚାଲିଲା ପରି ଦେଖା ଯାଉଥାଏ । ବମ୍ବେରେ କଂଗ୍ରେସର କାର୍ଯ୍ୟକାରୀ ସମିତିର ବୈଠକରେ ଯୋଗ ଦେଇ ଗୋପବନ୍ଧୁ ଚୌଧୁରୀ ପୁରୀ ଫେରି ଆସିଥାନ୍ତି । ତାଙ୍କରି ମୁହଁରୁ ତାଜା ଖବର ଶୁଣିବାକୁ ଆମେ ଆସିଥାଉଁ । ସେ ହୋଇଥିଲେ ଅଭ୍ୟର୍ଥନା ସମିତିର ସାଧାରଣ ସମ୍ପାଦକ । ଗାନ୍ଧିଜୀ କିପରି ଗୋଲ୍‌ଟେବୁଲ ବୈଠକରୁ ଫେରି କହିଲେ, "ମୁଁ ଶୂନ୍ୟ ହସ୍ତରେ ଫେରିଛି", ପଣ୍ଡିତ ନେହେରୁ କିପରି ଗାନ୍ଧିଜୀଙ୍କୁ ଭେଟିବା ପାଇଁ ଆସିବାବେଳେ ବାଟରେ ରେଲଗାଡ଼ି ଭିତରେ ଗିରଫ ହେଲେ ବମ୍ବେର ଆଜାଦ୍ ମୈଦାନରେ ଲକ୍ଷାଧିକ ଜନସାମବେଶରେ ଗାନ୍ଧିଜୀ କିପରି ଭାଷଣ ଦେଲେ, ଆଜି ଆଖି ଦେଖା ଘଟଣା ସେ ବର୍ଣ୍ଣନା କଲାବେଳକୁ ଆମେ ତାକୁ ପିଇ ଯାଉଥାଉ । କାର୍ଯ୍ୟକାରୀ କମିଟି ବସିବାର ନିର୍ଦ୍ଦିଷ୍ଟ ସମୟରେ ଦଶମିନିଟ୍ ପୂର୍ବରୁ ଶ୍ରାନ୍ତ ଶିଶୁ ମାଆ କୋଳରେ ଶୋଇ ପଡ଼ିଲା ପରି ଗାନ୍ଧିଜୀ ଧରିତ୍ରୀ କୋଳରେ ନିଘୋଡ଼ ନିଦରେ ଶୋଇ ପଡ଼ିଲେ । ଠିକ୍ ଦଶମିନିଟ୍ ପରେ ନିଦରୁ ଉଠି ବସି ସେ କାର୍ଯ୍ୟକାରୀ ସମିତିରେ ଯୋଗ ଦେଲେ । ଏ ସବୁ ବର୍ଣ୍ଣନା ଶୁଣି ଦେହ ଶିହରି ଉଠୁଥାଏ । ଏହାକୁ ଇଂରାଜୀରେ thrill କହୁଥିବେ ବୋଧହୁଏ ।

ପୁରୀର ବାନର ଗୋପୀ, ପ୍ରଫୁଲ୍ଲ ପ୍ରଭୃତି ପୁରୀରେ ରହିଲେ । ବାଲେଶ୍ୱର ବାନର ବାଲେଶ୍ୱର ଗଲେ । ଆମେ କଟକ ଆସିଲୁ । ଶିବିର ଜୀବନ ସରିଲା । ଛବିଶ ଜାନୁଆରୀର ମହୋତ୍ସବରେ ମାତିବା ଆୟୋଜନ ଆରମ୍ଭ ହେଲା । କିନ୍ତୁ ଏଥରକ ଆୟୋଜନ ଚାଲିଥାଏ ସନ୍ତର୍ପଣରେ । କାରଣ ୧୯୩୦ରେ ଯୁଦ୍ଧ ଘୋଷଣା ହୋଇଥିଲା ଆମପଟୁ । ଏଥର ପ୍ରତିପକ୍ଷ ସନ୍ଧି ଭାଙ୍ଗି ଅତର୍କିତ ଭାବରେ ଯୁଦ୍ଧ ଘୋଷଣା କରିଛି । ଗାନ୍ଧୀ, ନେହେରୁ ପ୍ରଭୃତି ନେତାଙ୍କୁ ହଠାତ୍ ଗିରଫ କରି କଂଗ୍ରେସ ମୂଳରୁ ବେଆଇନ୍ ଘୋଷିତ ହୋଇଛି । ଆନ୍ଦୋଳନକାରୀକୁ କୌଣସି ପ୍ରକାରେ ସାହାଯ୍ୟ କଲେ ତାହା ଦଣ୍ଡନୀୟ ହେବ ବୋଲି ଅଡ଼ିନାନ୍‌ସ ଜାରି ହୋଇ ସାରିଛି । ତେଣୁ ପରିସ୍ଥିତି ସମ୍ପୂର୍ଣ୍ଣ ଭିନ୍ନରୂପ ଧରିଛି ।

ଏଥରକ (୧୯୩୨) କଟକ ସହରରେ ତିନି ଯାଗାରେ ଛବିଶ ଜାନୁଆରୀର ସଂକଳ୍ପପତ୍ର ପାଠ କରିବା ପାଇଁ ସ୍ଥିର ହେଲା । ଚୌଧୁରୀ ବଜାରରୁ ମାରୁଆଡ଼ି ପଟିକୁ

ବାଜିଲାବେଳେ ଗୋଟାଏ ଅଶ୍ୱତ୍ଥ ଗଛମୂଳ ଚାନ୍ଦିନୀ ଉପରେ ଧାଡ଼ି ଧାଡ଼ି ହୋଇ ବେତ ପେଟରା ବିକ୍ରୀ ହେବା ପାଇଁ ଥୁଆ ହେଉଥିଲା । ସେଇଠି ରମାଦେବୀ ଶପଥପାଠ ଆରମ୍ଭ କରିବାମାତ୍ରେ ତାଙ୍କ ହାତରୁ ତାଙ୍କ ପୁଅ ଶପଥ-ପତ୍ର ନେଇ ଶପଥ ପାଠ କଲେ । ସେ ଗିରଫ ହେବା ପରେ ସମବେତ ଜନତା ମଧ୍ୟରୁ ଜଣକ ପରେ ଜଣେ ଶପଥପାଠ କରି ଗିରଫ ହେଲେ । ଆଜି ଯେଉଁଠି ହାଇକୋର୍ଟ ସେଠାରେ ଥିଲା ଅଦାଲତ । ନାଲି କୋଠା ଆଗରେ ଗଣ୍ଡାଏ ଛଅଟା ବରଗଛ । ହତା ଚାରିପଟେ ପାଚେରୀ ବେଢ଼ ସୁଦ୍ଧା ନ ଥିଲା । ଅଦାଲତ ଆଗରେ ଶପଥ ପାଠ କଲେ ଜାହ୍ନବୀ ଦେବୀ । ସେ ଗିରଫ ହେବା ମାତ୍ରେ ତାଙ୍କ ପୁଅ ଗୌରଗୋପାଳ ଦାସ ତାଙ୍କ ହାତରୁ ଶପଥ ପତ୍ର ନେଇ ପଢ଼ିବା ଆରମ୍ଭ କରିବା ମାତ୍ରେ ଗିରଫ ହେଲେ । ତାପରେ ସଭାରେ ଉପସ୍ଥିତ ଥିବା ଲୋକେ ଶପଥପାଠ କରିବାକୁ ଯାଇ ଜଣକ ପରେ ଜଣେ ଗିରଫ ହେଲେ । ବାଲୁବଜାର ଛକରେ ଶପଥ ପାଠ କଲେ କିରଣବାଳା ସେନ୍ । ସେ ଗିରଫ ହେଲାରୁ ତାଙ୍କ ପୁଅ ଦୀପେନ୍ଦ୍ର ନାରାୟଣ ସେନ୍ ଶପଥ ପାଠ କଲେ । ସେ ଗିରଫ ହେଲାରୁ ସହରର ସାଧାରଣ ଲୋକେ ଜଣକ ପରେ ଜଣେ ଶପଥ ପାଠ କରି ଗିରଫ ହେଲେ । ଷାଠିଏରୁ ଊର୍ଦ୍ଧ୍ୱଲୋକ ସେଦିନ ଶପଥ ପାଠ କରି ଗିରଫ ହେଲେ । ରାତିଟି ଲାଲବାଗ ଥାନା ହାଜତରେ କଟାଇ ପରଦିନ ଏହି ବନ୍ଦୀଦଳଙ୍କୁ ପୁଲିଶ ଘେରରେ କଟକ ଜେଲ୍‌କୁ ଅଣାଗଲା ବେଳେ ମନମୋହନ ଚୌଧୁରୀ ମାର୍ଚ୍ଚିଂ ଗୀତ ଆରମ୍ଭ କଲେ । ସାଥୀମାନେ ପାଳି ଧରିଲେ–

ହୋଶିଆର୍ ହୋଶିଆର୍
ନବଜବାନୋଁ ହୋଶିଆର୍
ଇନ୍‌କିଲାବୀ ନାରେମାର୍
ବଦ୍‌ଲାଲେନା ହୋଶିଆର
ଲାଲାଜୀକା ବଦ୍‌ଲାଲେନା
ଲାଠିରାଜ୍‌କା ବଦ୍‌ଲାଲେନା
ସୋଲାପୁରକା ବଦ୍‌ଲାଲେନା
ପେଶାୱାରକା ବଦ୍‌ଲାଲେନା
ହୋଶିୟାର ହୋଶିୟାର

ଶହୀଦୋଁକୋ ଯାଦ୍ କରକେ ଦୁଶମନୋଁସେ ବଦଲାଲେନେୱାଲେ
(ପାଳି) ହମ୍‌ସବ ଦୁଶମନୋଁକା ବଦଲାଲେନେବାଲେ ।
ହୋଶିୟାର୍ ହୋଶିୟାର୍
ହମ୍ ଲଢ଼େଙ୍ଗେ ହୋଶିୟାର୍
ଅନ୍ତିମ ଯୁଦ୍ଧ ହୋଶିୟାର
ଶାନ୍ତ ରହକର୍ ହମ୍ ଲଢ଼େଙ୍ଗେ
କ୍ରାନ୍ତି ମଚାକର ହମ୍ ଲଢ଼େଙ୍ଗେ
ମର୍‌ତେ ଦମ୍‌ତକ୍ ହମ୍ ଲଢ଼େଙ୍ଗେ
ହୋଶିୟାର ହୋଶିୟାର୍
ଖୁନ୍ ଖରାବି ସେ ନହିଁ ପର
ଆତ୍ମବଳ ସେ ଲଢ଼ନେ ବାଲେ
(ପାଳି) ବେଶକ୍ ଆତ୍ମବଲସେ ହମ ଲଢ଼ନେବାଲେ
ନହିଁ ଡରେଙ୍ଗେ ହୋଶିୟାର
ଅଧିକାରୋଁ ସେ ନହିଁ ଡରେଙ୍ଗେ
ଅତ୍ୟାଚାର ସେ ନହିଁ ଡରେଙ୍ଗେ
ଜେଲ୍‌ଖାନୋଁ ସେ ନହିଁ ଡରେଙ୍ଗେ
ଗଲ୍‌ଫାଁଶୀ ସେ ନହିଁ ଡରେଙ୍ଗେ
ଯବକୀ ସବ୍‌କେ ଦମ୍‌ମେ ଦମ୍ ହୈ
ଜାଲୀମୋଁସେ ନହିଁ ଡରନେବାଲେ
(ପାଳି) ହମ୍ ସବ ଜାଲୀମୋସେ ନହିଁ ଡରନେବାଲେ
ଜୟଜୟ କରନା ହୋଶିୟାର
ସତ୍ୟାଗ୍ରହକୀ ଜୟ ଜୟ କର୍‌ନା
ସେବାଦଲ୍‌କୀ ଜୟ ଜୟ କର୍‌ନା
କଂଗ୍ରେସକୀ ଜୟ ଜୟ କରନା

ଗାନ୍ଧିଜୀକୀ ଜୟ ଜୟ କରନା
ଦେଶକୋ ଆଜାଦ୍ କରକେ ଗାନ୍ଧିଜୀକୀ ଜୟ ଜୟ କରନେବାଲେ
(ପାଳି) ହମସବ୍ ଗାନ୍ଧିଜୀକୀ ଜୟ ଜୟ କରନେବାଲେ ।
ଭାରତ ଭରମେ ଗୁଞ୍ଜେନାଦ ଇନ୍‌କିଲାବ୍ ଜିନ୍ଦାବାଦ୍
ସହୀଦୋଁକା ଅମର ନାଦ ଇନ୍‌କିଲାବ୍ ଜିନ୍ଦାବାଦ୍
ସୈନିକୋଁକା ବିଜୟ ନାଦ ଇନ୍‌କିଲାବ ଜିନ୍ଦାବାଦ୍
ଜବାହରଲାଲକା ମୁକ୍ତି ନାଦ ଇନ୍‌କିଲାବ ଜିନ୍ଦାବାଦ୍
ଗାନ୍ଧିଜୀକି ଶାନ୍ତି ନାଦ ଇନ୍‌କିଲାବ ଜିନ୍ଦାବାଦ

ସମବେତ କଣ୍ଠରେ ଇନ୍‌କିଲାବ ଜିନ୍ଦାବଦ ଧ୍ୱନିରେ ଚୌଧୁରୀ ବଜାରର କୋଠା ଦୋହଲିଗଲା ପରି ଲାଗୁଥାଏ ।

ସଭା, ଶୋଭାଯାତ୍ରା, ପିକେଟିଂ, ବୁଲେଟିନ୍ ଛପା ଓ ବଣ୍ଟା, ଲୁଣମରା ଆଦି ଯଥାରୀତି ଚାଲିଲା । ସତ୍ୟାଗ୍ରହୀମାନେ ଖେଳେଇ ହୋଇଯାଇ ସତ୍ୟାଗ୍ରହୀ ସଂଗ୍ରହ, ଅର୍ଥ ସଂଗ୍ରହରେ ଲାଗିଗଲେ । ରମାଦେବୀଙ୍କୁ ଜାନୁଆରୀ ଛବିଶ ତାରିଖରେ ଗିରଫ କରାଯାଇ ଦୁଇଶହ ଟଙ୍କା ଜୋରିମାନା କରି ଖଲାସ କରି ଦିଆହେଲା । ପୋଲିଶ୍ ଇନ୍‌ସପେକ୍ଟର ଶ୍ରୀ ଶ୍ରୀପତି ନନ୍ଦ ଜୋରିମାନା ଆଦାୟ କରିବାକୁ ତାଙ୍କ ଘରକୁ ଆସି ତାଙ୍କର ସ୍ତ୍ରୀଧନ ଅଳଙ୍କାର ଆଦି କ'ଣ ଅଛି ଜାଣିବାକୁ ଚାହିଁଲେ । ରମାଦେବୀଙ୍କ ଦିଅର ନବକୃଷ୍ଣ ଚୌଧୁରୀ କହିଲେ ଗହଣା ବହୁତ ଅଛି । ମାତ୍ର ଅନ୍ୟମାନଙ୍କ ଗହଣା ସହ ମିଶିକରି ଅଛି । ଆମେ ତାହା ଚିହ୍ନଟ କରିବୁ ନାହିଁ । ନନ୍ଦ ମହାଶୟ କହିଲେ – ତାହା ହେଲେ କିଛି ସ୍ତ୍ରୀଧନ ନାହିଁ ବୋଲି ଲେଖିବି ତ ? ନବବାବୁ କହିଲେ – ସେଇଟା ଆମକୁ ଅପମାନ ହେବ । ନନ୍ଦ ମହାଶୟ ହସି ହସି ଫେରିଗଲେ ।

ରମାଦେବୀ ଏରସମା, ବାଲିକୁଦା ଗସ୍ତରେ ବାହାରିଗଲେ । ଗୋଡ଼ା, ଚଟୁଆ ଆଦି ଅଞ୍ଚଳରେ ପୁଣି ଲୁଣ ମରା ଆରମ୍ଭ ହେଲା । ଗିରଫଦାରୀ ଚାଲିଲା । ନୂଆ ନୂଆ ସତ୍ୟାଗ୍ରହୀ ମଧ ବାହାରିଲେ । ମାଳତୀ ଦେବୀ କଟକରେ ରହି ସତ୍ୟାଗ୍ରହ ପରିଚାଳନା କରୁଥାନ୍ତି । ସତ୍ୟାଗ୍ରହର ଏହି ଦ୍ୱିଦୀୟ ପର୍ଯ୍ୟାୟରେ ମହିଳାମାନେ ବହୁ ସଂଖ୍ୟାରେ ଆସି ଆନ୍ଦୋଳନରେ ଯୋଗ ଦେଲେ । ସେମାନଙ୍କ ମଧ୍ୟରୁ ଅନେକ ସ୍ୱାମୀ ବା ଆତ୍ମୀୟ ସ୍ୱଜନଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଆସୁଥିଲେ । ଆଉ ଅନେକ କେବଳ ଆନ୍ଦୋଳନର

ବର୍ଣ୍ଣନା ଶୁଣି ଲୁଚିଛପି ଆତ୍ମୀୟଙ୍କର ବିରୋଧ କରି ଘରୁ ପଳେଇ ଆସୁଥିଲେ । ମୀରାବାଈ ଗିରିଧରଲାଲାଙ୍କ ପ୍ରେମରେ ପାଗଳ ହୋଇ ଯେତେ ଦୁଃଖ ନିନ୍ଦା ଅପଖ୍ୟାତି ସହିଥିଲେ ଏହି ଦେଶପ୍ରେମରେ ପାଗଳ ଭଉଣୀମାନେ ତାହାଠାରୁ ଊଣା ଦୁଃଖ, ନିନ୍ଦା, ଅପଖ୍ୟାତି ସହି ନାହାନ୍ତି । ନାରୀଜାତିର ମଧ୍ୟ ଦେଶପାଇଁ ଜୀବନ ଉତ୍ସର୍ଗ କରିବାର ଅଧିକାର ଅଛି – ଏହି ଅଧିକାର ସାବ୍ୟସ୍ତ କରିବା ପାଇଁ ସେମାନେ ଯେତେ ଦୁଃଖ କଷ୍ଟ ଅପମାନ ସହିଲେ ତାହା ବର୍ଣ୍ଣନା କଲେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ହେବ । ମୀରାବାଈଙ୍କ ଭାଷାରେ ସେମାନେ ଦେଶପ୍ରେମର ଲତାଟି ହୃଦୟରେ ବଢ଼ାଇବା ପାଇଁ ଆଖିରୁ କେତେ ଯେ ପାଣି ଢାଳିଛନ୍ତି ତାହା କଳନା କରି ହେବ ନାହିଁ ।

ରମାଦେବୀ ବା ମାଳତୀ ଦେବୀ ବଡ଼ି ଭୋରରୁ ଦାଣ୍ଡ କବାଟ ଫିଟାଇ ଦେଖିବେ– ଦାଣ୍ଡ ବାରଣ୍ଡାରେ ଗୋଟିଏ ବୋହୂ ବା ଝିଅ ବସିଛି । ପଚାରିଲେ ଜାଣିବେ ଯେ ଆନ୍ଦୋଳନ କଥା ଶୁଣି ଘରୁ କାହାକୁ ନ କହି ପଳେଇ ଆସିଛନ୍ତି । କେହି କହିବେ ଘର ଲୋକଙ୍କୁ କଂଗ୍ରେସକୁ ଆସିବା କଥା କହିବାରୁ ସେମାନେ ବିରକ୍ତ ହୋଇ ମୋତେ ଘରେ ବନ୍ଦ କରି ରଖିଥିଲେ । ମୁଁ ଲୁଚିକରି ଆସିଛି । ସେମାନଙ୍କୁ କାହାରି ଘରେ ଲୁଚାଇ ରଖିବା ବଡ଼ ଧନ୍ଦା ଥିଲା । କାରଣ କଂଗ୍ରେସ ବେଆଇନ୍ ଘୋଷିତ ହୋଇଥିବାରୁ ଏବଂ ସତ୍ୟାଗ୍ରହୀକୁ ଘରେ ଆଶ୍ରୟ ନ ଦେବାକୁ ସରକାରୀ ଅର୍ଡ଼ିନାନ୍‌ସ ଜାରି ହୋଇଥିବାରୁ ସତ୍ୟାଗ୍ରହୀକୁ ବିଶେଷରେ ମହିଳା ସତ୍ୟାଗ୍ରହୀକୁ ସନ୍ତର୍ପଣରେ ଲୁଚାଇ ରଖିବାକୁ ପଡୁଥିଲା । କାରଣ ପୁଲିସ ଜାଣିପାରି ସଙ୍ଗେ ସଙ୍ଗେ ଗିରଫ କରିନେଲେ ପିକେଟିଂ ଆଦି ଚାଲିବ କିପରି ? ତେଲେଙ୍ଗା ବଜାରର ରାଧୁବାବୁ, କୃଷ୍ଣଚନ୍ଦ୍ର ପ୍ରଧାନ, ବ୍ରଜବନ୍ଧୁ ଦାସ ପ୍ରମୁଖ ଏ କାମରେ ସହାୟକ ଥିଲେ । ଦୁଇ ଚାରିଦିନ ବିଲେଇଛୁଆ ପରି ଏଘର ସେଘର ହୋଇ ଆନ୍ଦୋଳନ ବିଷୟରେ ଗୋଟାଏ ସାଧାରଣ ଧାରଣା ଅର୍ଜିବା ପରେ ସେମାନେ ବୁଲେଟିନ୍ ବାଣ୍ଟିବାକୁ ବା ପିକେଟିଂ କରିବାକୁ ଯାଆନ୍ତି । ଜାତୀୟ ପତାକା ଧରି ଶୋଭାଯାତ୍ରାରେ ବାହାରିବା ମଧ୍ୟ ଗୋଟାଏ ଅସୀମ ସାହସିକ କାମ ଥିଲା । ଏସବୁ କାର୍ଯ୍ୟକ୍ରମରେ ଯୋଗ ଦେବା ପରେ ପରେ ସେମାନେ ଗିରଫ ହୋଇ ଯାଆନ୍ତି । ଜେଲ୍ ଭିତରେ କିରଣବାଳା ସେନ୍, ପ୍ରିୟମ୍ବଦା ଦେବୀ ପ୍ରଭୃତି ମୁରବୀସ୍ଥାନୀୟା ମହିଳାମାନେ ସେମାନଙ୍କୁ ନାନା ପ୍ରକାରେ ତାଲିମ ଦିଅନ୍ତି ।

ଦିନେ କାଠଯୋଡ଼ି କୂଳ ଘରେ ମାଳତୀ ଦେବୀ ଦାଣ୍ଡ କବାଟ ଫିଟେଇ ଦେଇ ଫେରିପଡ଼ି ଆମକୁ ଡାକିଲେ – ଦେଖିବ ଆସ । ଆମେ ବାରଣ୍ଡାକୁ ଆସି

ଦେଖିଲୁ ଅଷ୍ଟାଦଶୀ ଅଧରମଣି ଅପା ଆମ ବାରଣ୍ଡା ଉଜ୍ଜ୍ୱଳ କରି ଦୁର୍ଗାପ୍ରତିମା ପରି ଶୋଭା ପାଉଛି । ତାହା ସଙ୍ଗରେ ଅଛନ୍ତି ହାରାମଣି ଦେବୀ । ସେ ଦୁହେଁ ବିଂଝାରପୁର ଥାନାର ଅଟିରା ଗାଁରୁ ଲୁଚିକରି ଚାଲି ଆସିଛନ୍ତି ଆନ୍ଦୋଳନରେ ଯୋଗ ଦେବାକୁ । ଦୁହିଁଙ୍କୁ କିଛି ଦିନ ଲୁଚାଇ ରଖି ଶିଖାଇ ବୁଝାଇ ବୁଲେଟିନ୍ ବାଣ୍ଟିବାକୁ ପଠାହେଲା । ଦୁହେଁ ଗିରଫ ହେଲେ । ସରକାର ସତ୍ୟାଗ୍ରହୀମାନଙ୍କୁ ନାନାପ୍ରକାରେ ପ୍ରବର୍ତ୍ତାଇ ଭୁଲ୍ ସ୍ୱୀକାର କରାଇବାକୁ ବା କ୍ଷମା ମଗାଇବାକୁ ସତତ ଚେଷ୍ଟିତ ଥାଆନ୍ତି । ତଦ୍ୱାରା ଆନ୍ଦୋଳନର ନୈତିକ ବଳ ଭୁଷୁଡ଼ି ପଡ଼ିବ ବୋଲି ସେମାନେ ଭାବୁଥିଲେ । ପୁଲିସ କେମିତି କେଜାଣି ଜାଣିପାରିଲେ ଯେ ଅଧରମଣି ଅପା ଜଣେ ପୁଲିସ ସବ୍‌ଇନ୍‌ସପେକ୍ଟରଙ୍କ ଭଉଣୀ । ସେ ସବ୍‌ଇନ୍‌ସପେକ୍ଟରଙ୍କୁ ଆଦେଶ ହେଲା – ତୁମ ଭଉଣୀକୁ କ୍ଷମା ମାଗିବାକୁ ପ୍ରବର୍ତ୍ତାଅ । ପୁଲିସ ଭାଇ ଜେଲ୍‌କୁ ମୁଲାକାତ କରିବା ବାହାନାରେ ଯାଇ ଅଧରମଣି ଅପାକୁ କ୍ଷମା ମାଗିବାକୁ କହିଲେ । ସେ ରାଜି ନ ହେବାରୁ ଟଣା ଘୋଷରା ମଧ କଲେ । ବାପାମାଆଙ୍କ ନାଆଁ ପକେଇଲୁ ବୋଲି କହି ଅପମାନ କଲେ । ଅଧରମଣି ଅଟଳ ରିହବାରୁ ସେ ନିରାଶ ହୋଇ ଫେରିଲେ । ମୀରାବାଈ କହିଥିଲେ ପରା–

"ବାପ କହେ ମୀରା ବାବରୀ ଭଇ
ଶାଶ କହେ କୁଳନାଶୀ ରେ ।"

ସେହିପରି ରାମପୁର ଗାଁରୁ ବ୍ରାହ୍ମଣୀ ନଈ ପାରି ହୋଇ ଏକା ଚାଲି ଆସିଥିଲେ ସୁଶୀଳା ଦେବୀ । ସ୍ୱାମୀଙ୍କ ମୃତ୍ୟୁ ପରେ କେଶପ୍ରସାଧନ ଛାଡ଼ିଦେଇ ଥିବାରୁ ତାଙ୍କ ମୁଣ୍ଡରେ ଜଟା ଓହଳି ଥାଏ । ସେଥିପାଇଁ ତାଙ୍କ ନାଆଁ ହେଲା ଜଟାଧାରୀ ସୁଶୀଳା । ଆନ୍ଦୋଳନରେ ଯୋଗ ଦେଇ ସେ ଜେଲ୍‌ରେ ପଶିଲେ ବୋଲି ବାପଘରେ ତାଙ୍କୁ ହାଣ୍ଡିଶାଳରେ ପୂରେଇଲେ ନାହିଁ, ଶାଶୁଘର ଲୋକେ ଛୁଇଁଲେ ନାହିଁ । ସେହି ସୁଶୀଳା ଦେବୀ ପରବର୍ତ୍ତୀ କାଳରେ ଶାଶୁଘର ଗାଁ ଓ ବାପଘର ଗାଁରେ ସୂତାକଟା ଶିଖାଇ ନିରନ୍ନଙ୍କ ମୁହଁରେ ଅନ୍ନ ହେଲେ । ନିରକ୍ଷରଙ୍କୁ ସାକ୍ଷର କଲେ । ସ୍ୱରାଜ୍ୟ ହାସଲ ହେବା ଯାଏ ସୁଶୀଳା ଦେବୀ ନିରବଚ୍ଛିନ୍ନ ଭାବରେ ସ୍ୱରାଜ୍ୟ ସାଧନା କରି ଯାଇଥିଲେ ।

ମୋହିନୀ ଦେବୀ ଅହିଆସର ବୋହୂ । ସକାଳେ କବାଟ ଫିଟେଇ ଦେଲା ବେଳକୁ ଅଷ୍ଟଅଳଙ୍କାର ମଣ୍ଡିହୋଇ ଓଢ଼ଣା ପକେଇ ବୋହୂଟିଏ ଦାଣ୍ଡ ପିଣ୍ଡାରେ ବସିଛନ୍ତି ।

ତୁମେ କିଏ ? ମୁଁ ମୋହିନୀ । କେଉଁଠୁ ଆସିଲ ? ଅହିଆସରୁ । କାହା ସାଙ୍ଗରେ ଆସିଲ ? ଏକା । ପଚାରିବାରୁ ଜାଣିଲୁ ଯେ ରମାଦେବୀ ସତ୍ୟାଗ୍ରହୀ ସଂଗ୍ରହ ଉଦ୍ଦେଶ୍ୟରେ କୋରେଇ, କଣ୍ଟାପାଡ଼ି, ଅହିଆସ ଗସ୍ତରେ ଯାଇଥିବା ବେଳେ ମୋହିନୀଙ୍କ ସ୍ୱାମୀ ରମାଦେବୀଙ୍କୁ କଟୁବଚନ କହି ଝିଙ୍କାସି ଥିଲେ । ମୋହିନୀ ଘର ଭିତରେ ଥାଇ ରମାଦେବୀଙ୍କ ପ୍ରତି ଏ ଅପମାନ ସହି ନ ପାରି ତାଙ୍କ ପଛେ ପଛେ ଘରୁ ଲୁଚିକରି ପଳେଇ ଆସିଛନ୍ତି ।

ସେଥରକ କୋରେଇ ଗସ୍ତରେ ମୁଁ ରମାଦେବୀଙ୍କ ସାଙ୍ଗରେ ବୁଲିଥିଲି । ଆମେ କୋରେଇ ଗାଁରେ ପହଞ୍ଚି ଗାଁ ବାହାରେ ଥିବା ପୋଖରୀରେ ଗାଧୋଇ ଜଣଙ୍କ ପିଣ୍ଡାରେ ବସିଲୁ । ଖିଆପିଆର ପ୍ରଶ୍ନ ନାହିଁ । ରମାଦେବୀ ସେହି ପିଣ୍ଡାରେ ବସି ଆନ୍ଦୋଳନ କଥା, ସ୍ତ୍ରୀଲୋକମାନେ ଆନ୍ଦୋଳନରେ ଯୋଗ ଦେବା କଥା ବର୍ଣ୍ଣନା କରୁଥାନ୍ତି । କିଛି ଲୋକ ପାଖକୁ ଆସି କଥା ଶୁଣୁଥାନ୍ତି । ଅନ୍ୟମାନେ ନିଜ ନିଜ ପିଣ୍ଡାରେ ବା ଘରେ ବସି କାନ ଡେରିଥାନ୍ତି । ନିଶାମଣି ଓ କାଦମ୍ବିନୀ ନାମରେ ଦୁଇଟି ଅବିବାହିତା ଝିଅ ରମାଦେବୀଙ୍କ ସାଙ୍ଗରେ ଆସିବା ପାଇଁ ବାହାରିଲେ ! ସେମାନଙ୍କ ଅଭିଭାବକମାନେ ଆପତ୍ତି କଲେ । ମାତ୍ର ସେ ଦୁହେଁ ତାଙ୍କ କଥା ଶୁଣିଲେ ନାହିଁ । କଟକକୁ ଆସି ସେ ଦୁହେଁ ବୁଲେଟିନ୍ ବାଣ୍ଟି ଗିରଫ ହେଲେ । କୋରେଇରୁ ଆମେ ଅହିଆସ ଗଲୁ । ବ୍ୟାସକବି ଫକୀର ମୋହନଙ୍କ ଝିଅ ଶ୍ରୀମତୀ ସରୋଜିନି ଚୌଧୁରୀ ମଧ୍ୟ ଆମ ସଙ୍ଗେ ଅହିଆସ ଗଲେ । ଅହିଆସରେ ରମାଦେବୀଙ୍କ ବକ୍ତୃତା ଶୁଣିବାପରେ ଦୁଇଜଣ ମହିଳା ଆମ ସାଙ୍ଗରେ ଆସିବାକୁ ବାହାରିଲେ । ମୋହିନୀ ଦେବୀଙ୍କ ସ୍ୱାମୀ ଓ ଆଉ କେତେ ଜଣ ଗ୍ରାମବାସୀ ଭାରି ପାଟିତୁଣ୍ଡ କରି ସେ ମହିଳା ଦୁହିଁଙ୍କୁ ଭିଡ଼ି ଘୋଷାରି ଘରକୁ ନେଇଗଲେ । ସରୋଜିନୀ ଦେବୀ ଏପରି ଭାବରେ ସେମାନଙ୍କୁ ଆକଟ କଲେ ଯେ ସେମାନେ ଆଉ କିଛି ନ କହି ଘରେ ପଶି କବାଟ କିଳିଦେଲେ । ମୋହିନୀ ଦେବୀ ଘର ଭିତରେ ଥାଇ ଏ ସବୁ ଘଟଣା ଦେଖି ମର୍ମାହତ ହୋଇ ଆମେ ଅହିଆସରୁ ଆସିବା ପରେ ଏକାକୀ ଘରୁ କଟକକୁ ଚାଲି ଆସିଲେ ଏବଂ ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଗଲେ ।

ରମାଦେବୀ କଟକ ଫେରିବା ପରେ କୋରେଇରେ ନିଶାମଣି ଓ କାଦମ୍ବିନୀଙ୍କୁ kidnap କରିବା ଅପରାଧରେ ତାଙ୍କୁ ଗିରଫ କରାଗଲା । ବିଚାରବେଳେ ନିଶାମଣିଙ୍କ ବାପା ସାକ୍ଷ୍ୟ ଦେଲେ ଯେ ସେ ଘରେ ନ ଥିବା ବେଳେ ରାତି ଅଧରେ ରମାଦେବୀ ତାଙ୍କ ଘରେ ପଶି ତାଙ୍କ ନାବାଳିକା ଝିଅକୁ କୁଶିକ୍ଷା ଦେଇ ଘରୁ କାଢ଼ି ଆଣିଛନ୍ତି ।

ରମାଦେବୀ ତାଙ୍କୁ ପଚାରିଲେ– ନିଶାମଣିଙ୍କୁ ଆଣିବାବେଳେ ଆପଣ ଭାତଥାଳି ପାଖରେ ବସିଥିଲେ । ମୁଁ ଆପଣଙ୍କୁ ନମସ୍କାର କଲି ଟି ? ନିଶାମଣିଙ୍କ ବାପା ବଲବଲ କରି ପୁଲିସକୁ ଚାହିଁ ରହିଲେ ଅର୍ଥାତ୍ କ'ଣ କହିବି ଶିଖାଇ ଦିଅ ।

କଟକ ଜେଲ୍‌ରେ ୧୨ ନମ୍ବର ଓ୍ୱାର୍ଡ଼ଟାରେ ମହିଳା ସତ୍ୟାଗ୍ରହୀମାନଙ୍କୁ ରଖାଗଲା । ସେ ଓ୍ୱାର୍ଡ଼ ଭରତି ହୋଇଗଲାରୁ ହଜାରିବାଗ ଓ ଭାଗଲପୁର ସେଣ୍ଟ୍ରାଲ୍ ଜେଲ୍‌କୁ ମହିଳା ବନ୍ଦୀଙ୍କୁ ଚାଲାଣ କରାଗଲା । ଜାହ୍ନବୀ ଦେବୀ, ମଙ୍ଗଳା ଦେବୀ, କୋକିଳ ଦେବୀ, ପିୟମ୍ବଦା ଦେବୀ ପ୍ରମୁଖ ବହୁ ମହିଳା ବନ୍ଦୀ ଭାଗଲପୁର ଗଲେ । ରମାଦେବୀ, ସୁଭଦ୍ରା ବିବି, ମାଳତୀ ଦେବୀ ଗଲେ ହଜାରିବାଗ ଜେଲ୍‌କୁ ।

ଚାହୁଁ ଚାହୁଁ ମାର୍ଚ୍ଚ ୧୨ ତାରିଖ ଆସିଗଲା । ଜାନୁଆରୀ ୨୬, ମାର୍ଚ୍ଚ ୧୨, ଏପ୍ରିଲ୍ ୧୩, ଅଗଷ୍ଟ ପହିଲା, ନେତ୍ରୋତ୍ସବ ଆଦି ତ ଆମର ଦଶରା ଦିଆଲି । ସେହି ଦିନଗୁଡ଼ିକରେ କିଛି ଗୋଟାଏ ଚମକପ୍ରଦ କାର୍ଯ୍ୟକ୍ରମ ପାଳନ କରି ଆମେ ଯେତେ ବେଶୀ ସଂଖ୍ୟାରେ ଜେଲ୍ ଯାଇ ପାରିଲୁ ବା ଲାଠିମାଡ଼ ଖାଇ ପାରିଲୁ ଆମ ପର୍ବ ସେତେ ଆଡ଼ମ୍ବରରେ ପାଳିଲୁ ବୋଲି ମନେକରୁ । ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖ ଦିନ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ କରିବା ପାଇଁ ଦାଣ୍ଡିଯାତ୍ରା ଆରମ୍ଭ କରିଥିଲେ । ସେଦିନର ଘଟଣା ଲୋକଙ୍କୁ ସ୍ମରଣ କରାଇ ଦେବା ପାଇଁ କିଛି କାର୍ଯ୍ୟକ୍ରମ ରଖିବା କଥା । ଏରସମାର ଗୋଡ଼ା, ଚଟୁଆ ଓ ବାଲିକୁଦାର ହରିସପୁର, ମରିଚପୁର ନିକଟରେ ଲବଣ-ସତ୍ୟାଗ୍ରହ ଚାଲିଥାଏ । ରମାଦେବୀ ସେହି ପାଖରେ ଥାଆନ୍ତି । ମାଳତୀ ଦେବୀ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ ପ୍ରଭୃତି ଜେଲ୍‌ରେ ଥାନ୍ତି । କଂଗ୍ରେସ-କମିଟି ଅର୍ଥାତ୍ ନୀଳମଣି ପ୍ରଧାନ ସ୍ଥିର କଲେ ଯେ ଲବଣ-ସତ୍ୟାଗ୍ରହ କରାଯାଇ ଯେଉଁ ଲୁଣ ଆମଦାନୀ ହେଉଛି ତାହା ବେଆଇନ୍ ଲୁଣ (Contraband Salt) ହୋଇଥିବାରୁ ସେହି ଲୁଣ ଦାଣ୍ଡି ଦିବସ ଦିନ କଟକ ସହରରେ ବିକ୍ରୀ କରାଯିବ । ଯେ ସେ ଲୁଣ ବିକ୍ରୀ କରିବେ ସେ ଗିରଫ ହେବା ସୁନିଶ୍ଚିତ । ମୁଁ ସେହି ଲୁଣ ବିକ୍ରୀ କରିବା ପାଇଁ ଚାହିଁବାରୁ ଘରେ ରମାଦେବୀ ନାହାନ୍ତି କହି କେହି କେହି କ୍ଷୀଣ ଆପତ୍ତି ଉଠାଇଲେ । ମାତ୍ର ୧୯୩୧ ମସିହା ମାର୍ଚ୍ଚ ମାସର ଗୋଟିଏ ଘଟଣା ମନେ ପକାଇ ମୁଁ ସେ ମନା ମାନିଲି ନାହିଁ । ଘଟଣାଟି ହେଉଛି ଗାନ୍ଧୀ ଇର୍‌ଉଇନ୍ ସନ୍ଧି ସ୍ୱାକ୍ଷରିତ ହେବା ବେଳକୁ ଯେଉଁ ରାଜବନ୍ଦୀମାନେ ଜେଲ୍‌ରୁ ମୁକୁଳିଲେ ସେମାନଙ୍କୁ ଜୈନ ମନ୍ଦିରରେ ସମ୍ବର୍ଦ୍ଧନା ଜଣାଇବାକୁ ଜୈନ ମନ୍ଦିରରେ ଗୋଟିଏ ସମାବେଶ ହେଲା ।

ଆମେ ଜେଲ୍ ଯାଇଥିବା ଓ ଜେଲ୍ ନ ଯାଇଥିବା ଆନ୍ଦୋଳନକାରୀ ଏକାଠି ବସି ଗପସପ ହେଉଥିଲୁ । ସମ୍ମିଳନୀ ଆରମ୍ଭ ହେବା ପୂର୍ବରୁ ଉଦ୍ୟୋକ୍ତାମାନେ ଘୋଷଣା କଲେ ଯେ ଯେଉଁମାନେ ଜେଲ୍ ଯାଇ ନାହାନ୍ତି, ସେମାନେ ଗୋଟାଏ ପଟକୁ ଆଡ଼େଇ ହୋଇ ଯାଆନ୍ତୁ । କଥାଟା ଭାରି ବାଧିଥିଲା । ଆମେ ମଧ ତ ଶୋଭାଯାତ୍ରାରେ ଯୋଗ ଦେଇ ଗୀତ ବୋଲିଲୁ, ବୁଲେଟିନ୍ ଛାପିଲୁ ଓ ବାଣ୍ଟିଲୁ, ଜାତୀୟ ସଙ୍ଗୀତ ବୋଲି ବୋଲି ରାସ୍ତାରେ ଚାନ୍ଦା ସଂଗ୍ରହରେ ସାହାଯ୍ୟ କଲୁ । ବୟସ ଅଳ୍ପ ବୋଲି ପୁଲିସ ଯଦି ଆମକୁ ଗିରଫ ନ କଲା, ସେଇଟା କ'ଣ ଆମର ଅପରାଧ ! କାଳେ ଭବିଷ୍ୟତରେ ପୁଣି ସେହି ଅପମାନ ସହିବାକୁ ହେବ ସେଥିପାଇଁ ମୁଁ ତଥାକଥିତ ବେଆଇନ୍ ଲୁଣ ବିକ୍ରୀ କରିବା ପାଇଁ ଜିଦ୍ ଧରିଲି ।

ବ୍ୟାସକବି ଫକୀର ମୋହନଙ୍କ ଦୌହିତ୍ରୀ କରୁଣା ଓ ମୁଁ ଏହି ଲୁଣକୁ ପୁରୀ ମହାପ୍ରସାଦ ପରି ଛୋଟ ଛୋଟ ପୁଡ଼ିଆ କରି ସ୍ୱରାଜ୍ୟ ଆଶ୍ରମରୁ ଲୁଣ ବିକି ବାହାରିଲୁ । ସାହେବଜାଦା ବଜାର, ନିମଚଉଡ଼ି, ବାଲୁବଜାରର ଦୋକାନମାନଙ୍କରେ ଲୁଣ ବିକି ବିକି ମାରୁଆଡ଼ିପଟିରେ ଡକ୍ଟର ଅଟଳବିହାରୀ ଆଚାର୍ଯ୍ୟଙ୍କ ସ୍ୱରାଜ୍ୟ ମେଡ଼ିକାଲ ହଲ୍ ପାଖରେ ପହଞ୍ଚିଲା ବେଳକୁ ପୁଲିସ ଆମକୁ ଗିରଫ କରି ଯଥାରୀତି ଲାଲବାଗ ଥାନାକୁ ନେଇ କଟକ ଜେଲ୍ ହାଜତକୁ ଚାଲାଣ କଲେ । କିନ୍ତୁ ଭାଗ୍ୟର କି ବିଡ଼ମ୍ବନା ! କରୁଣାକୁ ଦୁଇମାସ କାରାଦଣ୍ଡ ମିଳିବା ସ୍ଥଳେ ମୋତେ ଏକଶହ ଟଙ୍କା ଜୋରିମାନା କରି ଜେଲ୍‌ରୁ ବିଦା କରିଦେଲେ । ଯାହାହେଉ କୋଠାମରେଣୀ ହୋଇ କୁମ୍ଭାର ଘର ବୋହୂ, ଝାଟିକି ନ ଗଲେ ମାଟିକି ଯାଉ ନୀତିରେ ପୁଣି ସେହି ବୁଲେଟିନ୍ ଛାପିବା, ବାଣ୍ଟିବା, ଚାନ୍ଦା ଆଦାୟ କରିବା ଆଦି କାମରେ ଲାଗିଲି ।

ମୁଁ ଖଲାସ ହେବାର ଅଳ୍ପଦିନ ପରେ ରମାଦେବୀ ଗିରଫ ହେଲେ ଏବଂ ମଙ୍ଗଳା ସେନ୍ ତିନିମାସ କାରାଦଣ୍ଡ ଭୋଗ କରି ଭାଗଲପୁର ଜେଲ୍‌ରୁ ଖଲାସ ହେଲେ । ଦିନେ ଗୁଣନିଧି ବାବୁ (ମହାନ୍ତି) ଆସି କହିଲେ ଗୀତ ବୋଲି ବୁଲି ବୁଲି ଚାନ୍ଦା ମାଗିବା ତ ହୋଇପାରୁ ନାହିଁ, କାରଣ ପୁଲିସ୍ ସଙ୍ଗେ ସଙ୍ଗେ ସେମାନଙ୍କୁ ଗିରଫ କରୁଛନ୍ତି; ମୋ ନାମରେ ମଧ ୱାରଣ୍ଟ (warrant) ବାହାରି ଯାଇଥିବାରୁ ମୋତେ ଖୋଜା ଚାଲିଛି । ନୀଳମଣି (ପ୍ରଧାନ) ଯଦି ଚାନ୍ଦା ମାଗିବାକୁ ବାହାରିବ, ନିଶ୍ଚୟ ତୁରନ୍ତ ଗିରଫ ହେବ । ତାହାହେଲେ 'ବିଦ୍ରୋହୀ' (ବୁଲେଟିନ୍‌ର ନାମ) ବାହାରିବା ବନ୍ଦ ହୋଇଯିବ । ଜୈନ ମନ୍ଦିର ଖରଚ ଚଳିବା ପାଇଁ ତୁ ଓ ମଙ୍ଗଳା କିଛି କିଛି ଚାନ୍ଦା କର । (ସ୍ୱରାଜ୍ୟ

ଆଶ୍ରମରେ ସରକାର ତାଲା ପକାଇ ଦେଇଥିବାରୁ ୧୯୩୨ରେ ସତ୍ୟାଗ୍ରହୀମାନେ ଜୈନ ମନ୍ଦିରରେ ରହୁଥିଲେ) । ଖାଇବା ଖରଚ ଦୁଇଅଣା, ଛଅ ପଇସା ହେଲେ ଚଳିଯାଉଛି । ବୁଲେଟିନ୍ ଛାପିବା ପାଇଁ କାଗଜ ଖରିଦ୍, ଯାତାୟାତ ଖରଚ ମଧ ଅଛି । ଦୈନିକ ଅନ୍ତତଃ ପାଞ୍ଚୋଟି ଟଙ୍କା ଚାନ୍ଦା କଲେ ଏ କାମଗୁଡ଼ିକ ଯେନତେନ ପ୍ରକାରେଣ ଚଳିଯିବ ବୋଲି ହିସାବ ହେଲା । ଆମେ ନିତି ଚାନ୍ଦା ସଂଗ୍ରହ କରି ଆଣି ରଖିବୁ । ସୁରେନ୍ଦ୍ର ପଟ୍ଟନାୟକ ବେଳ ଉଣ୍ଡି ଆସି ଆମ ପାଖରୁ ସେହି ଟଙ୍କା ରସିଦ ଦେଇ ନେଇଯିବେ । କାଳେ ବୁଲୁଥିବା ବେଳେ କିଛି ଅପ୍ରତ୍ୟାଶିତ ଘଟଣା ଘଟିବ, ସେଥିପାଇଁ ମୁରଲୀ କାନୁନ୍‌ଗୋ ଆମଠାରୁ ଟିକିଏ ଦୂରେଇ ରହି ଆମ ସାଙ୍ଗରେ ଚାନ୍ଦା କାମରେ ବୁଲିବେ ।

୧୯୩୦ରେ ଚାନ୍ଦା ମାଗିଥିଲି ରମାଦେବୀଙ୍କ ବାଲିକୁଦା ଗସ୍ତବେଳେ । ତାହା ଛଡ଼ା ସଡ଼କରେ ଗୀତ ବୋଲି ଚାନ୍ଦା ମାଗିବା ଥିଲା ଆମର ଧନ୍ଦା । ଗିରୀଶ ହାରମୋନିୟମ୍ ବଜାଇବ, ଆମେ ତାର ସ୍ୱରରେ ଚିତ୍‌କାର କରି ବୋଲିବୁ–

ମାଗୋ ! ସବୁରି ବନ୍ଧନ ତୁଟାଇ ଆସିଛି ତୁମରି ବଦନ ଚାହିଁକି<br>
ଭାଇ ଭଉଣୀଙ୍କ ସ୍ନେହ ଏଡ଼ାଇଛି ତୁମ ସ୍ନେହେ ହୋଇ ବାଇକି ।<br>
ତୁଟାଇ ଆସିଛି ମାଗୋ ଯୁବତୀ ଯୌବନ<br>
ତୁଟାଇ ଆସଛି ମାଗୋ ଶିଶୁର କ୍ରନ୍ଦନ<br>
ପର୍ଶୁରାମ ପରି ମାଆକୁ ତ୍ୟଜିଛି (ତୋର) ଗଉରବ ରକ୍ଷା ପାଇଁକି ।<br>
ପ୍ରହଲାଦ ପରି ମାଗୋ ପିତାଙ୍କର ବୋଲ<br>
ଶୁଣିବା ସକାଶେ ମୁଁ ଯେ ସାଜିଅଛି କାଲ<br>
......... (ଆଉ ମନେ ନାହିଁ ।)

ଦୁଇଜଣ ବାନର ଗୋଟାଏ ଚାଦର ଦୁଇମୁଣ୍ଡ ଧରି ମେଲେଇ ଚାଲିଥିବେ । ଦୋକାନୀ ବା ପଥଚାରୀ ଯାହାଙ୍କର ଯାହା ଇଚ୍ଛା ହେବ, ସେହି ଚାଦରରେ ପକେଇଦେବେ । ଏ ଚାନ୍ଦା ବନ୍ଦ ହେଲା । ମଙ୍ଗଳା ଦେବୀ ଓ ମୁଁ ଚରଣ ଗାଡ଼ିକୁ ଆଶ୍ରା କରି କଟକ ସହରରେ ବୁଲିବା ଆରମ୍ଭ କରିଦେଲୁ । କଟକରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ କୌଣସି ଗଳିକନ୍ଦି ସୁଦ୍ଧା ଆମେ ବାକି ରଖିଲୁ ନାହିଁ । କିଏ ଦୁଇ ଅଣା, କିଏ ଚାରି ଅଣା, କିଏ ଟଙ୍କାଟିଏ ଦେବେ । କେହି କେହି ମୁହଁ ଉପରେ ଦ୍ୱାର ବନ୍ଦ

କରିଦେବେ । ଆଉ କେହି କେହି ମରମକୁ ବାଧିଲା ପରି କଟୂକ୍ତି କରିବେ, ଗାନ୍ଧିଜୀ ଓ କଂଗ୍ରେସିଆଙ୍କୁ ମନ ଇଚ୍ଛା ଶୋଧନ ଦେବେ । କେହି ତିନି ଥର ଫେରାଇ ଫେରାଇ ଆଠଅଣା ଦେବେ । ଗୁଣନିଧି ବାବୁ ଅନ୍ଧାର ରାତିରେ ମଝେ ମଝେ ଆସି ଖବର ଦେବେ – ଜେ.ଏନ୍. ବୋଷ୍ ତୁଳସୀପୁର ଆସିଛନ୍ତି । ତାଙ୍କ ପାଖକୁ ତୁଳସୀପୁର ଯାଅ । ଧପାଲିବୁ ତୁଳସୀପୁର । କେଉଁଦିନ କହିବେ ଚକ୍ରଧର ମିଶ୍ର କଟକ ଆସିଛନ୍ତି, ତାଙ୍କ ପାଖକୁ ଯାଅ । ଚାଲିବୁ ତାଙ୍କ ରୋଭର୍ସ ଷ୍ଟ୍ରିଟ୍ ବସାକୁ । ଯେଉଁଦିନ କିଛି ମିଳେ ନାହିଁ ସେଦିନ ଆମର ଡଗରପଡ଼ା ଯାତ୍ରା । ସ୍ୱାମୀ ବିଚିତ୍ରାନନ୍ଦ ଦାସ ମୁଣ୍ଡରେ ହାତ ମାରି ଆଶୀର୍ବାଦ କରି ନିଶ୍ଚୟ ଚାନ୍ଦା ଦେବେ । 'ଦାନଂ ପ୍ରିୟ ବାକ୍ ସହିତଂ'ର ସେ ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କଠାରୁ ଚାନ୍ଦା ନେଇ ତାଙ୍କ ଝିଆରୀ ନାରୀ କବି ଦେବହୂତି ଦେବୀଙ୍କ ପାଖରେ ବସି ଥକ୍କା ମାରି ଜଳଖିଆ ଖାଇ ଫେରିବୁ । ଏହିପରି ସ୍ନେହ ସହାନୁଭୂତି ସମର୍ଥନର ଆଧାର ଥିଲେ ସାରସ୍ୱତ ପ୍ରେସ୍‌ର ସର୍ବଶ୍ରୀ ବାଳକୃଷ୍ଣ କର, କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ, ସତ୍ୟନାରାୟଣ ସେନ, ରାଧାରମଣ ପୁସ୍ତକାଳୟ, ରାଧାରମଣ ଔଷଧାଳୟ, ରବୀନ୍ଦ୍ରନାଥ ସିଂହ (ଓକିଲ), କଟକ ବ୍ୟାଙ୍କର ଜ୍ଞାନବାବୁ, ଗ୍ରାଜୁଏଟ୍ ଫ୍ରେଣ୍ଡସ୍ ଷ୍ଟୋର, ପଣ୍ଡିତ ଆକୁଳି ମିଶ୍ର, ବ୍ରଜବନ୍ଧୁ ଦାସ, ଭୂତନାଥ ହାଜରା, ରାଧାନାଥ ଶତପଥୀ, ବାଲୁବଜାରର କବିରାଜ ଶ୍ୟାମବାବୁ– ସେମାନେ ଥିଲେ ଆମର ଅଗତିର ଗତି ଅର୍ଥାତ୍ ନିଜର ମାସିକ ଦେୟ ଦେଇ ସାରିବା ପରେ ମଧ୍ୟ ଦୈନିକ ପାଞ୍ଚଟଙ୍କା ଯେଉଁଦିନ ପୂରଣ ହୁଏ ନାହିଁ ସେଦିନ ସେମାନଙ୍କ ପାଖକୁ ନିଃସଙ୍କୋଚରେ ଚାଲିଯାଉ । ସେମାନେ ବିନା ବାକ୍ୟବ୍ୟୟରେ ଆମର ମନୋବାଞ୍ଛା ପୂରଣ କରନ୍ତି । ଅଳ୍ପବୟସ୍କା ଝିଅ ଦୁଇଟି ବଜାରରେ ପାଦରେ ଚାଲି ଚାଲି ବୁଲି ମାଗୁଛନ୍ତି ବୋଲି ସେମାନେ ଦୟାପରବଶ ହୋଇ ଦିଅନ୍ତି କି ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଦିଅନ୍ତି ତାହା ଆମେ ଭାବିବାକୁ କେବେହେଁ ଚେଷ୍ଟା କରିନାହୁଁ । ଯେଉଁମାନଙ୍କ ଆଖିରେ ଟିକିଏ ସହାନୁଭୂତିର ଝଲକ ଦେଖୁ ସେହିମାନଙ୍କ ପାଖକୁ ବାରମ୍ବାର ଯିବାକୁ ଭରସୁ । ସେମାନଙ୍କ ବ୍ୟତୀତ ଆଉ ଯେ ଶହ ଶହ ଚାନ୍ଦାଦାତା ଆମକୁ ଦୁଇଅଣା ଚାରିଅଣା ସୁଦ୍ଧା ଦେଇ ଆନ୍ଦୋଳନ ଚଳାଇବାରେ ଅଂଶୀଦାର ହୋଇଥିଲେ ସେମାନଙ୍କର ମାହାତ୍ମ୍ୟ କିଛି ଊଣା ନୁହେଁ । ସେହିମାନଙ୍କ ବଳରେ ଏବଂ ସେହିମାନଙ୍କ ଯୋଗୁ ଏ ଗଣ-ଆନ୍ଦୋଳନ ଚାଲିବା ସମ୍ଭବ ହୋଇଥିଲା ।

ଚାନ୍ଦା ମାଗିଲାବେଳେ ଅନେକ ଅଶିଷ୍ଟ ଇଙ୍ଗିତ ମଧ୍ୟ ବରଦାସ୍ତ କରିବାକୁ ପଡ଼ିଛି । ଅନେକ ବିପଦରେ ପଡ଼ିବାକୁ ଯାଇ ହଠାତ୍ ଉଧୁରି ଯାଇଛୁ । ସର୍ବନିୟନ୍ତା

ପରମେଶ୍ୱରଙ୍କ ଶକ୍ତି ଯେ ସେତେବେଳେ ଆମ ଦୁହିଁଙ୍କୁ ରକ୍ଷା କରୁଥିଲା, ପରିଣତ ବୟସରେ ତାହା କଳି ପାରିଲୁ ।

ଚାନ୍ଦା ଆଦାୟ କାମ ସାଙ୍ଗରେ ଆମର ଆଉ ଗୋଟିଏ କାମ ଥାଏ ବୁଲେଟିନ୍ ଛାପିବା ଓ ବାଣ୍ଟିବା । ବୁଲେଟିନ୍‌ରେ ସାରା ଭାରତର ଆନ୍ଦୋଳନର ଖବର, ଆନ୍ଦୋଳନ ଫଳରେ ସରକାର କିପରି କ୍ଷତିଗ୍ରସ୍ତ ହେଉଛନ୍ତି ସେ ଖବର ବାହାରେ । ନିଖିଳ ଭାରତୀୟ ସ୍ତରର କୌଣସି ବୁଲେଟିନ୍ ଲୁଚାଛପାରେ ପହଞ୍ଚିଯାଇ ପାରିଲେ ତାହାର ଅନୁବାଦ କରାଯାଇ ଛପା ହୁଏ । ଏହି ବୁଲେଟିନ୍‌ଗୁଡ଼ିକ ସରକାରଙ୍କ ଦ୍ୱାରା ବେଆଇନ୍ ଘୋଷିତ ହୋଇ ପ୍ରେସ୍ ଅର୍ଡ଼ିନାନ୍‌ସ ଜାରି ହୋଇଥିବାରୁ କୌଣସି ପ୍ରେସ୍ ଏହାକୁ ଛାପନ୍ତି ନାହିଁ । ତେଣୁ ସାଇକ୍ଲୋଷ୍ଟାଇଲ୍ କରି ଏହା ବାହାର କରାଯାଉଥିଲା । ଶ୍ରୀ ନୀଳମଣି ପ୍ରଧାନ ଗିରଫ ହେବା ପର୍ଯ୍ୟନ୍ତ ବୁଲେଟିନ୍‌ର ବିଷୟବସ୍ତୁ ଲେଖି ଦେଉଥିଲେ । ଶ୍ରୀ ରାଧାନାଥ ରଥ ମଧ ମଧ୍ୟେ ମଧ୍ୟେ ଲେଖୁଥିଲେ । ଘନଶ୍ୟାମ ସାହୁ, ଭ୍ରମର ରାଉତ, ଶଶୀଭୂଷଣ ଦାସ ଓ ଭଜନାନନ୍ଦଙ୍କ ହସ୍ତାକ୍ଷର ସୁନ୍ଦର ଥିବାରୁ ସେହିମାନେ ଷ୍ଟେନ୍‌ସିଲ୍ ପେପର ଉପରେ ଲେଖୁଥିଲେ । ରୋଲର୍ ଗଡ଼େଇ କାଗଜ ଖଞ୍ଜି ତାକୁ ଛାପିବା ଆମର କାମ ଥିଲା । ପୋଲିସ ଏହି ସାଇକ୍ଲୋଷ୍ଟାଇଲ ମେସିନ୍‌କୁ ଖୋଜି ବାଜ୍ୟାପ୍ତ କରି ନେବାକୁ ଆପ୍ରାଣ ଚେଷ୍ଟା କରୁଥିଲେ । ବୁଲେଟିନ୍ ଗୋପବନ୍ଧୁ ଚୌଧୁରୀଙ୍କ ଘରେ ଛପା ହେଉଥିଲା । ତାଙ୍କ ଘରଟା ଏତେ ବଡ଼ ଯେ ସେଠାରେ ସାଇକ୍ଲୋଷ୍ଟାଇଲ୍ ମେସିନ୍‌ଟିକୁ ଲୁଚାଇ ରଖିବା ସହଜ ହେଉଥିଲା । ପୁଲିସ ବାରମ୍ବାର ତାଙ୍କ ଘର ଖାନତଲାସ କରୁଥିଲେ କିନ୍ତୁ ମେସିନ୍‌ଟି ପାଉ ନ ଥିଲେ । ଆନ୍ଦୋଳନକାରୀଙ୍କ ପକ୍ଷରେ ବାରମ୍ବାର ଏହି ମେସିନ୍‌ଟି କିଣିବା ସାଧ୍ୟାତୀତ ହୋଇଥିବାରୁ ମେସିନ୍ ଲୁଚାଇବାକୁ ନାନା କୌଶଳ ଉଦ୍‌ଭାବନ କରିବାକୁ ପଡୁଥିଲା । ଗୋପବାବୁଙ୍କ ମାଆ ପଦ୍ମାବତୀ ଦେବୀ ଏହି କାମଟିରେ ଆମକୁ ବହୁତ ସାହାଯ୍ୟ କରୁଥିଲେ । କିଛିଦିନ ଯୋବ୍ରାର ଗୋଟାଏ ପରିତ୍ୟକ୍ତ କୋଠା, ବାଙ୍କାବଜାରର ଗୋଟାଏ ଅନ୍ଧାରୁଆ ଗଳିରେ ବୁଲେଟିନ୍ ଛାପା ହୋଇଥିଲା ।

ଏହି ବୁଲେଟିନ୍‌ଗୁଡ଼ିକର ଭାଷା ଖୁବ୍ ପ୍ରାଣସ୍ପର୍ଶୀ ଓ ପ୍ରଭାବଶାଳୀ ହେଉଥିଲା । ସେଥିପାଇଁ ଥରେ ଭାରତର ବଡ଼ଲାଟ୍ ଏହାକୁ 'ବୁଲେଟିନ୍ ନୁହେଁ ବୁଲେଟ୍' ବୋଲି ମନ୍ତବ୍ୟ ପ୍ରକାଶ କରିଥିଲେ । ବିଶ୍ୱନାଥ ଲେନ୍‌ର ରାଧାମଣି ଦେବୀ ଦହି ଦୁଧର ପସରା ଭିତରେ ଏହି ବୁଲେଟିନ୍ ରଖି ବାଣ୍ଟୁଥିଲେ । କଟକରେ ଘୋଡ଼ାଗାଡ଼ି ସଂଖ୍ୟା ବହୁତ

ଥିବାରୁ ସହର ବାହାରୁ ଘାସବିକାଳୀମାନେ ଘାସ ବିକିବାକୁ ଆସୁଥିଲେ । ସେମାନଙ୍କ ଦ୍ୱାରା ବାହାରକୁ ବୁଲେଟିନ୍ ପଠା ହେଉଥିଲା । ଆମେମାନେ ସହରର ସହାନୁଭୂତି-ସଂପନ୍ନ ବ୍ୟକ୍ତିଙ୍କୁ ବୁଲେଟିନ୍ ଯୋଗାଇ ଦେଉଥିଲୁ । କେବଳ ଯେଉଁମାନେ ଗିରଫ ହେବା ପାଇଁ ପ୍ରସ୍ତୁତ ହୁଅନ୍ତି, ସେମାନେ ଅଦାଲତ ପାଖରେ ଖୋଲାଖୋଲି ବୁଲେଟିନ୍ ବାଣ୍ଟି ଗରିଫ ହୁଅନ୍ତି ।

ଗୋଇନ୍ଦାମାନେ ଥାନାରେ ଦେବା ପାଇଁ ବୁଲେଟିନ୍ ପାଇବାକୁ ବାନରମାନଙ୍କ ଶରଣାପନ୍ନ ହୁଅନ୍ତି । ଏହା ସାଧାରଣତଃ ବିନା ମୂଲ୍ୟରେ ବିତରିତ ହେଉଥିଲେ ହେଁ ମୂଲ୍ୟ ଏକ ପଇସା ଲେଖା ହୋଇଥାଏ । ଗୋଇନ୍ଦା ମାନେ ବାନରମାନଙ୍କୁ ଏକ ପଇସା ଦେଇ ଖଣ୍ଡେ ଖଣ୍ଡେ 'ବିଦ୍ରୋହୀ' କିଣି ନିଅନ୍ତି । ଦିନେ କାଠଯୋଡ଼ି କୂଳରେ କୋଦା ବୈକୁଣ୍ଠର ପାଟି ଶୁଣି ଆମେ ନଇ କୂଳକୁ ଯାଇ ଦେଖିଲୁ କୋଦା ବୈକୁଣ୍ଠ ସଲିମ୍ ନାମକ ପୁଲିସ୍ ଗୁପ୍ତଚରଙ୍କ ସଙ୍ଗେ ବଡ଼ ପାଟିରେ କଳି କରୁଛି । ଘଟଣା ବୁଝିବା ବେଳକୁ କୋଦା ବୈକୁଣ୍ଠ ଠାରୁ ସଲିମ୍ ପାଞ୍ଚ ଛଅ ଖଣ୍ଡ 'ବିଦ୍ରୋହୀ' କାଲିରେ ନେଇ ପଇସା ଦେଉ ନାହାନ୍ତି; ଖାଲି ମୁରୁକି ହସା ଦେଉଛନ୍ତି । ସେଥିପାଇଁ କୋଦା ବୈକୁଣ୍ଠ ତାଙ୍କୁ ନଈବନ୍ଧରୁ ତଳକୁ ପେଲି ଦେବାକୁ ଧମକଉଛି । ସଲିମ୍ ପଞ୍ଝୁହତା ମର୍ଦ୍ଦ, କୋଦା ବୈକୁଣ୍ଠ ତେର ଚଉଦ ବର୍ଷର ପିଲା । ସେଥିପାଇଁ ସଲିମ୍ ମୁରୁକି ହସା ଦେଉଥାନ୍ତି । ଯାହାହେଉ, ଆମେ ଯିବାରୁ ପଇସା ହିସାବ ତୁଟିଗଲା ।

ଜେଲ୍ ଭିତରକୁ ମଧ ନାନା ଉପାୟରେ ବୁଲେଟିନ୍ ପଠାହୁଏ ଏବଂ ବୁଲେଟିନ୍‌ରେ କି ବିଷୟବସ୍ତୁ ଛପା ହେବ, ସେ ବିଷୟରେ ମଧ ଜେଲ୍‌ରୁ ନିର୍ଦ୍ଦେଶ ଆସିଯାଏ । ବାଲେଶ୍ୱର ଜିଲ୍ଲାର ଫ୍ରେଞ୍ଚ ଅଧିକୃତ ସ୍ଥାନ ଫରାସୀଡିଙ୍ଗା ଥିଲା ବୁଲେଟିନ୍ ଛାପିବାର ମୁଖ୍ୟ ସ୍ଥାନ । କାରଣ ସେଠାରେ ବ୍ରିଟିଶ ପୁଲିସଙ୍କ କର୍ତ୍ତୃତ୍ୱ ଖଟୁ ନ ଥିଲା । କଟକ କଲେକ୍ଟରେଟ୍ ହତା ପାଚେରିକୁ ଲାଗି ଗୋଟାଏ ଦୋତାଲା ଘର ଫ୍ରେଞ୍ଚ ଅଧିକୃତ ଥିଲା । ଥରେ ସେ ଘରେ ସାଇକ୍ଲୋଷ୍ଟାଇଲ୍ ମେସିନ୍ ରଖିବା ମସୁଧା ହୋଇଥିଲା । ମାତ୍ର ତାହା କାର୍ଯ୍ୟକାରୀ ହେଲା ନାହିଁ । ସମଗ୍ର ପ୍ରଦେଶରେ କଂଗ୍ରେସର ସଂଗଠନ ଏପରି ମଜବୁତ୍ ଥିଲା ଯେ ଗ୍ରାମେ ଗ୍ରାମେ ବୁଲେଟିନ୍ ପହଞ୍ଚାଇ ଦେବା କାମଟାକୁ ଟିକିଏ ସତର୍କତାର ସହିତ କରିବାକୁ ପଡୁଥିଲେ ହେଁ ଶେଷ ପର୍ଯ୍ୟନ୍ତ ତାହା ସଫଳ ହେଉଥିଲା । ୧୯୩୦-୩୨ରେ ଓଡ଼ିଶାରେ ଖବର କାଗଜ ସଂଖ୍ୟା ବହୁତ କମ୍ ଥିବାରୁ ଲୋକେ ମଧ ଆଗ୍ରହରେ ମନଯୋଗ ସହକାରେ 'ବିଦ୍ରୋହୀ' ପଢୁଥିଲେ ।

ଏହିପରି ନିତ୍ୟ କାର୍ଯ୍ୟ ଚାଲିଥିବା ବେଳେ ନୀଳମଣି ବାବୁ ପ୍ରମୁଖ ମସୁଧା କଲେ ଯେ ସ୍ୱରାଜ୍ୟ ଆଶ୍ରମରେ ଯେ ସରକାର ଚାବି ପକାଇଛନ୍ତି, ତାହା ପୁନର୍ଦଖଲ କରିବାକୁ ହେବ । ସ୍ୱରାଜ୍ୟ ଆଶ୍ରମ ଦଖଲ ଅଭିଯାନରେ ବାଙ୍କୀର ଗୋଲକ ମହାରାଣାଙ୍କୁ ଅଗ୍ରଣୀ କରାଗଲା । ସେଥିପାଇଁ ମୁଁ ତାଙ୍କୁ ଡାକିଲି ଚମୂପତି । ଆଜି ସେ ଇହଧାମରେ ନାହାନ୍ତି । ଜୀବିତ ଥିବାଯାଏ ମୋ ଦ୍ୱାରା ପ୍ରଦତ୍ତ ଚମୂପତି ଉପାଧିଟିକୁ ଚିଠିପତ୍ରରେ ସେ ବରାବର ବ୍ୟବହାର କରୁଥିଲେ ଏବଂ ଦେଖା ସାକ୍ଷାତ୍ ହେଲେ ଆଶ୍ରମ ଦଖଲ ଘଟଣାର ସ୍ମୃତି ଚାରଣ ଦୁହେଁ ବସି କରୁଥିଲୁ ।

ମୁଁ ଆଶ୍ରମ ଦଖଲ ଅଭିଯାନ ଦେଖିବାକୁ ଉଛନ୍ନ ହେବାରୁ ମୋ ସା'ନମା' ବାଧହୋଇ ମୋ ସାଙ୍ଗରେ ଯାଇ ସ୍ୱରାଜ୍ୟ ଆଶ୍ରମ ହତାକୁ ଲାଗିଥିବା ଉମେଶବାବୁଙ୍କ କୋଠା ଛାତରେ ମୋ ସାଙ୍ଗରେ ବସିଲା । ଝପର ଝପର ମେଘ ବରଷୁ ଥାଏ । ଶହେ ଖଣ୍ଡେ ଦେଖଣାହାରୀ ଆଶ୍ରମ ଫାଟକ ପାଖ ସଡ଼କରେ ଛିଡ଼ା ହୋଇଥାନ୍ତି । ଗୋଲକବାବୁଙ୍କ ନେତୃତ୍ୱରେ ଦଳେ ସତ୍ୟାଗ୍ରହୀ ହତା ଭିତରେ ପଶିଲେ । ଠିକ୍ ସେତିକିବେଳେ ଗୋରା ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଲେନ୍ ସାହେବ ସଦଳବଳେ ପହଞ୍ଚିଗଲେ । ସମସ୍ତଙ୍କ ହାତରେ ଲାଠି କେବଳ ଲେନ୍‌ଙ୍କ ହାତରେ ହଣ୍ଟର । ଲେନ୍ ଆସିବା ବେଳକୁ ଗୋଲକବାବୁ ପ୍ରଭୃତି ସ୍ୱରାଜ୍ୟ ଆଶ୍ରମ ଭିତର ଦ୍ୱାର ପର୍ଯ୍ୟନ୍ତ ଚାଲି ଗଲେଣି । ଆରମ୍ଭ ହେଲା ମାଡ଼ । ଦୂରରୁ ଦିଶୁଥାଏ ଲେନ୍ ଖାଲି ହାତ ହଲାଉଛି, ଗୋଲକବାବୁ ପ୍ରଭୃତି ଗଛ କାଟିଲା ପରି ତଳେ ପଡ଼ି ଯାଇଛନ୍ତି । ହଣ୍ଟରଟା ଲେନ୍ ହାତରେ କେମିତି ଯୋଖା ହୋଇଥାଏ ତାହା ଆମକୁ ଦିଶୁ ନ ଥାଏ । ଚାହୁଁ ଚାହୁଁ କୋଡ଼ିଏ ଜଣ ଯାକ ସତ୍ୟାଗ୍ରହୀ ଧରାଶାୟୀ ହୋଇଗଲେ । ଦେଖଣାହାରୀଙ୍କ ଆଡ଼କୁ ଲାଠିଧାରୀ ପୁଲିସ ମାଡ଼ି ଆସିଲାରୁ ସେମାନେ ଖେଳେଇ ହୋଇଗଲେ । ଗୋଲକବାବୁ ପ୍ରଭୃତି ଅଚେତ ହୋଇ ପଡ଼ିଥାନ୍ତି । ଲେନ୍ ଗୋଟାଏ ଦି'ଟା ପୁଲିସ ଜଗେଇ ଦେଇ ବୀର ଦର୍ପରେ ଚାଲିଗଲା । ଅଚେତ ହୋଇ ପଡ଼ିଥିବା ସତ୍ୟାଗ୍ରହୀଙ୍କ ଆଡ଼କୁ ଥରେ ସୁଦ୍ଧା ଚାହିଁଲା ନାହିଁ । ସେ ଦୃଶ୍ୟ ଦେଖି ପଥର ସୁଦ୍ଧା ତରଳି ଯିବ । ପ୍ରାୟ ପାଞ୍ଚ ମିନିଟ୍ ମଧ୍ୟରେ ପୁଲିସ ଗାଡ଼ି ଆସିଲା । ଆହତ ସତ୍ୟାଗ୍ରହୀଙ୍କୁ ପୁଲିସ୍ ଟେକି ନେଇ ଗାଡ଼ିରେ ଭରତି କରି ଡାକ୍ତରଖାନାକୁ ନେଇଗଲେ । ସେଦିନ ଡକ୍ଟର କାଶୀନାଥ ମିଶ୍ର ଚାକିରୀ ମାୟା ଛାଡ଼ି ସତ୍ୟାଗ୍ରହୀମାନଙ୍କର ବିଶେଷ ଯତ୍ନ ନେଇଥିଲେ ।

ସଙ୍ଗେ ସଙ୍ଗେ 'ବିଦ୍ରୋହୀ'ରେ ଆଶ୍ରମ ଦଖଲର ପରିଣତି ଛାପା ହୋଇ ବଣ୍ଟା ହେଲା । ସହରବାସୀଙ୍କ ମଧ୍ୟରୁ ଅନେକେ କହିଲେ ଲେନ୍ ସାହେବର ଆଦୌ କାଣ୍ଡଜ୍ଞାନ ନାହିଁ । ସେ ମଣିଷକୁ ଜୀବନରେ ମାରି ଦେବାକୁ ପଛେଇବ ନାହିଁ । ଏ ଆଶ୍ରମ ଦଖଲ କାର୍ଯ୍ୟକ୍ରମ ବନ୍ଦ ହେଉ । ରାଧାନାଥ ବାବୁ (ସମାଜ) ମଧ୍ୟ ଏହାକୁ ସମର୍ଥନ କଲେ । ମାତ୍ର ପରଦିନ ଡେଙ୍ଗା ମହାଦେବ ଆଶ୍ରମ ଦଖଲ ଅଭିଯାନରେ ଯିବା ସ୍ଥିର ହୋଇ ସାରିଥିଲା । ମହାଦେବ ତା ଅନୁକୂଳ ଭାଙ୍ଗିବାକୁ ଆଦୌ ରାଜି ହେଲା ନାହିଁ । ସେଦିନ ମଧ୍ୟ ଘୋର ବର୍ଷା । ମହାଦେବ ସଦଳବଳେ ତାର ପ୍ରିୟ ଗୀତ 'ରଜା ନୁହନ୍ତି ଏ ବେପାରୀ ଅଟନ୍ତି, କୋଇଲି ନୁହନ୍ତି କାଠହଣା, ଏତେଦିନେ ସିନା ଗଲା ଜଣା' ବୋଲି ବୋଲୁଥାଏ । ସାଥୀମାନେ ତାକୁ ଦୋହରାଉଥାନ୍ତି । ଗୀତ ବୋଲି ବୋଲି ସେମାନେ ଆଶ୍ରମର ଦୋତାଲା ବାରଣ୍ଡାରେ ପହଞ୍ଚିଗଲେ । ଏତିକିବେଳେ ଲମ୍ବା ଲମ୍ବା (ୱାଟର ପ୍ରୁଫ୍) ବର୍ଷାତି ପିନ୍ଧି ଲେନ୍ ସଦଳବଳେ ପହଞ୍ଚିଗଲା । ଆଜି ଲେନ୍ ହାତରେ ହଣ୍ଟର ନାହିଁ । ବୋଧହୁଏ ହଣ୍ଟରମାଡ଼ ହେତୁ ଗୋଲକବାବୁ ପ୍ରଭୃତିଙ୍କ ଅବସ୍ଥା ସାଂଘାତିକ ହୋଇଥିବାରୁ କର୍ତ୍ତାଙ୍କ ପାଖରୁ ସେ ଧମକ ଖାଇଥିବ । ଲେନ୍ ସଦଳବଳେ ଦୋତାଲା ଉପରକୁ ଚଢ଼ିଯାଇ ଲାଠି ଚାଳନା ଆରମ୍ଭ କରିଦେଲା । ପୁଲିସ୍‌ଙ୍କ ଲାଠି କୋଠା ଛାତରେ ବାଜି ଯେ ଠକ୍ ଠକ୍ ଶବ୍ଦ ହେଉଥାଏ, ତାହା ଉମେଶବାବୁଙ୍କ ଘରକୁ ଶୁଭୁଥାଏ । ମହାଦେବ ପ୍ରଭୃତିଙ୍କୁ ଗୋରୁ ଅଡ଼େଇଲା ପରି ଠେଙ୍ଗାରେ ଭୁଷି ଭୁଷି ସିଡ଼ି ଆଡ଼କୁ ଠେଲି ନେଇ ଖୋଲା ଛାତ ଉପରକୁ ଆଣି ମୁଣ୍ଡରେ ଠେଙ୍ଗାରେ ପାହାର ଦେଲେ । ସେମାନଙ୍କୁ ସେହିପରି ପିଟି ପିଟି ଆଶ୍ରମ ହତା ପର୍ଯ୍ୟନ୍ତ ଅଣାଗଲା । ମହାଦେବର ମୁଣ୍ଡ ଫାଟି ଧାର ଧାର ରକ୍ତ ବୋହି ଯାଉଥାଏ ।

ସେ ସବୁଠାରୁ ଡେଙ୍ଗା, ତେଣୁ ବେଶୀ ପାହାର ତା ମୁଣ୍ଡରେ ପଡୁଥାଏ । ଅନ୍ୟମାନଙ୍କର ମଧ୍ୟ ମୁଣ୍ଡ ଫାଟି ରକ୍ତ ବୋହି ଯାଉଥାଏ । ତଳକୁ ସମସ୍ତେ କାଦୁଅରେ କଚାଡ଼ି ହୋଇ ପଡ଼ିଲେ । ନିରସ୍ତ୍ର ସତ୍ୟାଗ୍ରହୀଙ୍କ ମୁଣ୍ଡ ଫଟାଇ ଲେନ୍ ଚାଲିଗଲା । ମହାଦେବ ପ୍ରଭୃତି ଅଚେତ ହୋଇ ପଡ଼ି ରହିଲେ । ସଙ୍ଗେ ସଙ୍ଗେ ପୁଲିସ ଭ୍ୟାନ୍‌ରେ ଆସି ସେମାନଙ୍କୁ ଟେକି ନେଇ ଗାଡ଼ିରେ ପୂରେଇ ଡାକ୍ତରଖାନାକୁ ନେଇଗଲେ ।

ଏଠାରେ ଆଉ ଗୋଟିଏ କଥା ଲେଖିଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ଲେନ୍‌ର ଏହି ନିଷ୍ଠୁର ଅତ୍ୟାଚାର ସ୍ୱଚକ୍ଷୁରେ ଦେଖିବା ପରେ ତାହା ପ୍ରତି

ମନରେ ଘୃଣା ଓ କ୍ରୋଧ ଜନ୍ମିଲା ମାତ୍ର ତାର ଏହି ଅମାନୁଷିକ ଅତ୍ୟାଚାରର ପ୍ରତିଶୋଧ ନେବା ଇଚ୍ଛା କାହିଁକି କେଜାଣି ଦେଖାଦେଲା ନାହିଁ ।

ତାକୁ ମାରିଦେବା କଥା ଆମେ କେବେହେଲେ ଆଲୋଚନା କରିଥିବା କଥା ମୋର ମନେ ପଡୁନାହିଁ । ଏହାର କାରଣ ବୋଧହୁଏ ଏହାହିଁ ଥିଲା ଯେ ଲେନ୍‌ର ଅତ୍ୟାଚାରକୁ ତା'ର ସାମ୍ରାଜ୍ୟ ପ୍ରୀତି ଏବଂ ସତ୍ୟାଗ୍ରହୀ ମାଡ଼ ଖାଇ ମୁଣ୍ଡ ଫଟାଇବାଟା ଆମର ସ୍ୱରାଜ୍ୟ ପ୍ରୀତିର ପରିଚାୟକ ବୋଲି ଆମେ ମନେ କରୁଥିଲୁ ।

ଥରେ ଗୋପବନ୍ଧୁ ଚୌଧୁରୀ ଆଦର୍ଶ ସତ୍ୟାଗ୍ରହ ବିଷୟରେ ଆମକୁ ବୁଝାଇବା ବେଳେ କୁଆଁସର ଗୋକୁଳାନନ୍ଦ ମହାନ୍ତିଙ୍କ ଦୃଷ୍ଟାନ୍ତ ଦେଇଥିଲେ । ଗୋକୁଳିବାବୁ ଆନ୍ଦୋଳନକୁ ଚଳାଇ ରଖିବା ଉଦ୍ଦେଶ୍ୟରେ ହଠାତ୍ ଗିରଫ ହେବାକୁ ଚାହୁଁ ନ ଥିଲେ । ତାଙ୍କ ନାମରେ ୱାରେଣ୍ଟ ବାହାରିବାରୁ ସେ ଫରାସୀ ଅଧିକୃତ ଅଞ୍ଚଳରେ ରହି ଆନ୍ଦୋଳନ ଚଳାଇଲେ । ଫଳରେ ବ୍ରିଟିଶ ପୋଲିସ ତାଙ୍କୁ ଗିରଫ ନ କରି ପାରିବାରୁ ତାଙ୍କ ଉପରେ ପୋଲିସଙ୍କ ରାଗ ବଢ଼ିଲା । ତାଙ୍କୁ ଧରିବା ପାଇଁ ସେମାନେ ସବୁବେଳେ ବାଟଘାଟ ଜଗିଲେ । ଦିନେ କୌଣସି ଜରୁରୀ କାମରେ ଗୋକୁଳିବାବୁ ବ୍ରିଟିଶ ଅଧିକୃତ ଅଞ୍ଚଳକୁ ଆସିଥିଲେ । ସେ ପୋଖରୀ ପାଖରେ ପୋଲିସ ହାବୁଡ଼ରେ ପଡ଼ିଗଲେ । କନେଷ୍ଟବଳ ଜଣକ ଧାଇଁ ଆସି ତାଙ୍କୁ ତଳେ ଗଡ଼େଇ ପକେଇ ଆଗ ପରସ୍ତେ ବିଧା, ଚାପୁଡ଼ା, ଗୋଇଠା ଛେଚି ଦେଇଗଲେ । ପ୍ରହାର ସହିତ ପୁଲସିଜନୋଚିତ ଭର୍ତ୍ସନା ମଧ ଚାଲିଥାଏ । କନେଷ୍ଟବଳ ମାରି ମାରି ପାଟି କରି କରି ଥକି ଗଲାରୁ ଗୋକୁଳିବାବୁ କୌଣସି ପ୍ରକାରେ ଗୁରୁଣ୍ଡି ଆଣ୍ଠୁ ଭରା ଦେଇ ଉଠି କନେଷ୍ଟବଳକୁ ହସି ହସି କହିଲେ, "ଭାଇ ! ତୁମ ଅଣ୍ଟାରେ ପାନ ନାହିଁ ? ଖଣ୍ଡେ ଦିଅନ୍ତ କି ଖାଆନ୍ତି ।" ଉପସ୍ଥିତ ଲୋକେ ଗୋକୁଳିବାବୁଙ୍କ ଆଚରଣ ଦେଖି ଆଚମ୍ଭିତ ହେଲେ । ଗୋକୁଳିବାବୁଙ୍କର ସେ ହସ ବଡ଼ ସୁନ୍ଦର । ସେ ହସିଦେଲେ ମନେ ପଡ଼ିଯାଏ, "ରଙ୍ଗ ଅଧରେ ମନ୍ଦ ହସି । କହିଲେ ପ୍ରଭୁ ବ୍ରହ୍ମରାଶି ।" କନେଷ୍ଟବଳ ସେ ହସରେ କାବୁ ହୋଇଗଲା ।

ଗୋପବାବୁଙ୍କର ବକ୍ତବ୍ୟ ଥିଲା ଗୋକୁଳିବାବୁଙ୍କ ପାନ ଖାଇବାଟା ଆମର ଅନୁକରଣୀୟ ନୁହେଁ ସିନା, ମାତ୍ର ଏତେ ମାଡ଼ ଗାଳି ଅପମାନ ଯାହାଠାରୁ ପାଇଲେ ମୁଣ୍ଡ ଥଣ୍ଡା ରଖି ତାକୁ ହିଁ ପାନ ଖଣ୍ଡେ ମାଗି ଯେଉଁ ଶାନ୍ତ ଆଚରଣ ପ୍ରଦର୍ଶନ କଲେ ଓ ପୁଲିସ ତା'ର କର୍ତ୍ତବ୍ୟ କରିଛି ବିଚାରି ତା' ଉପରେ ରାଗ ରଖିଲେ ନାହିଁ, ଏଇଟା ହେଉଛି ସତ୍ୟାଗ୍ରହୀର ଲକ୍ଷଣ ।

ଏହି ରୀତିରେ ଆନ୍ଦୋଳନ ଚାଲୁଥାଏ । ମାତ୍ର ଆମେ ଅନୁଭବ କରୁଥାଉ ଯେ ଆନ୍ଦୋଳନ ଧୀରେ ଧୀରେ ଶିଥିଳ ହୋଇଯାଉଛି । ବଡ଼ ବଡ଼ ନେତାଙ୍କ ମଧ୍ୟରୁ ଅଧିକାଂଶ ଜେଲ୍‌ରେ ଥା'ନ୍ତି । ଯେଉଁମାନେ ଖଲାସ ହୋଇ ଆସୁଥା'ନ୍ତି ସେମାନଙ୍କୁ ଅଳ୍ପକାଳ ପରେ ପୁଣି ଗିରଫ କରା ଯାଉଥାଏ । ଯେତକ ସତ୍ୟାଗ୍ରହୀ ଜେଲ୍ ବାହାରେ ଥାଆନ୍ତି, ସେମାନେ ରହିବା ଖାଇବାରେ ଅଶେଷ ଅସୁବିଧା ଭୋଗୁଥାନ୍ତି । ସତ୍ୟାଗ୍ରହୀଙ୍କୁ ଘରେ ସ୍ଥାନ ନ ଦେବାକୁ, ଚାନ୍ଦା ନ ଦେବାକୁ, ଖାଇବାକୁ ସୁଦ୍ଧା ନ ଦେବାକୁ ଅର୍ଡ଼ିନାନ୍‌ସ ଜାରି ହୋଇଥାଏ । ସାଧାରଣ ଲୋକେ ପିକେଟିଂ ଆଦି କାର୍ଯ୍ୟକ୍ରମ ପ୍ରତି ଆଉ ବିଶେଷ ଆକୃଷ୍ଟ ହେଉ ନ ଥା'ନ୍ତି । ସୁରେନ୍ଦ୍ର ପଟ୍ଟନାୟକ ପ୍ରମୁଖ କେତେଜଣ ଜଙ୍ଗଲ ଆଇନ୍ ଅମାନ୍ୟ କରିବା ପାଇଁ ବାଙ୍କୀ ଆଡ଼େ ଗଲେ । ସେ ଆନ୍ଦୋଳନ ମଧ୍ୟ ଗଣ-ଆନ୍ଦୋଳନ ରୂପ ଧରିଲା ନାହିଁ । କାଠଯୋଡ଼ି ବାଲିରେ ରାତି କଟାଇ ସେମାନେ ବହୁତ କଷ୍ଟ ସହିଲେ । ମହିଳା ସତ୍ୟାଗ୍ରହୀ ଯେଉଁମାନେ ଜେଲ୍‌ରୁ ଖଲାସ ହେଲେ ସେମାନେ ପିକେଟିଂ କରିବା ସତ୍ତ୍ୱେ ସେମାନଙ୍କୁ ଆଉ ଗିରଫ କରାଗଲା ନାହିଁ । ଏଣେ ଏକାଥରେ ଏତେ ସଂଖ୍ୟକ ମହିଳାଙ୍କୁ କାହା ଘରେ ଲୁଚେଇ ରଖିବା ବ୍ୟବସ୍ଥା କରିବା ମଧ୍ୟ ମୁସ୍କିଲ । ଶେଷରେ ମାଳତୀ ଦେବୀଙ୍କ ବ୍ୟବସ୍ଥାରେ ସେମାନେ ବକ୍‌ସିବଜାରରେ ରହି ସହରରେ ଖଦୀ ବିକିବା ଆରମ୍ଭ କଲେ ।

ସେତେବେଳକୁ ସେପ୍ଟେମ୍ବର ମାସ ହେଲାଣି । ଖବର ବାହାରିଲା ବ୍ରିଟିଶ ସରକାର ତଥାକଥିତ ଅସ୍ପୃଶ୍ୟ ଓ ସବର୍ଣ୍ଣ ହିନ୍ଦୁମାନଙ୍କ ପ୍ରତିନିଧି ନିର୍ବାଚନ ସମ୍ପର୍କରେ ଯେଉଁ କମ୍ୟୁନାଲ୍ ଆୱାର୍ଡ଼ ଦେବାକୁ ଘୋଷଣା କରିଛନ୍ତି, ତାହାର ବିରୋଧ କରି ଗାନ୍ଧିଜୀ ଆମରଣ ଅନଶନ କରିବେ ବୋଲି ସରକାରଙ୍କୁ ଜଣାଇ ଦେଲେଣି । ଗାନ୍ଧିଜୀ ଗୋଲ ଟେବୁଲ ବୈଠକରେ ବ୍ରିଟିଶ ସରକାରଙ୍କୁ ଚେତାବନୀ ଦେଇଥିଲେ ଯେ ହିନ୍ଦୁ ସମାଜକୁ ଦୁର୍ବଳ କରିଦେବା ପାଇଁ ସରକାର ଯଦି ଏ ପ୍ରକାର ଭେଦନୀତି ପ୍ରୟୋଗ କରିବେ ତେବେ ସେ ଜୀବନ ପଣ କରି ତାହାର ବିରୋଧ କରିବେ । ସେହି ବେଳ ଆସି ଯାଇଥିଲା । ଗାନ୍ଧିଜୀଙ୍କର ଆମରଣ ଅନଶନ ସଂକଳ୍ପ ସାରା ଭାରତରେ ଚହଳ ପକାଇ ଦେଲା । ସାହୁ ଜୟକାରଙ୍କ ଦଉଡ଼ା ଧାପଡ଼ା ଆରମ୍ଭ ହୋଇଗଲା । ମାଳବୀୟଜୀ, ଆମ୍ବେଦକରଜୀଙ୍କ ଭଳି ନେତାଙ୍କ ମଧ୍ୟରେ ମିଳାମିଶା କରାଇ ଏ ସମସ୍ୟାର ସମାଧାନ କରାଇବାକୁ ସେମାନେ ତତ୍ପର ହୋଇ ଉଠିଲେ । ଚାରିଆଡ଼େ ଶୋଭାଯାତ୍ରା, ସଭା ଆଦି କରାଯାଇ ସରକାରଙ୍କ ଭେଦନୀତିର ତୀବ୍ର ବିରୋଧ

କରାଗଲା । ଅସ୍ପୃଶ୍ୟତା ନିବାରଣ କଂଗ୍ରେସର ଅନ୍ୟତମ ମୁଖ୍ୟ କାର୍ଯ୍ୟକ୍ରମ ଥିଲା । ଗାନ୍ଧିଜୀ ଅସ୍ପୃଶ୍ୟତାର ତୀବ୍ର ବିରୋଧ କରୁଥିଲେ । ଏହି ଘଟଣା ଅସ୍ପୃଶ୍ୟତାର ଭୟଙ୍କର ପରିଣତି ପ୍ରତ୍ୟକ୍ଷ ଦେଖାଇ ଦେଲା । ୧୯୩୨ ମସିହା ସେପ୍ଟେମ୍ବର କୋଡ଼ିଏ ତାରିଖରେ ଗାନ୍ଧିଜୀ ୟେରୱାଦା ଜେଲ୍‌ରେ ଅନଶନ ଆରମ୍ଭ କରିଦେଲେ । ସମଗ୍ର ଭାରତରେ ବିଦ୍ୱାନ ଲୋକେ ଅସ୍ପୃଶ୍ୟତା ଯେ ହିନ୍ଦୁଶାସ୍ତ୍ରାନୁମୋଦିତ ନୁହେଁ, ତାହା ସଭାକରି ଲୋକଙ୍କୁ ବୁଝାଇଲେ । ସନାତନୀ ବୋଲାଉଥିବା ହିନ୍ଦୁମାନେ ଏହାର ବିରୋଧ କଲେ ।

ଓଡ଼ିଶାରେ ଯୋଗକୁ ମାଳତୀ ଦେବୀ ଓ ଗୋପବନ୍ଧୁ ଚୌଧୁରୀ ଜେଲ୍‌ରୁ ମୁକୁଳି ଥିଲେ । ସେମାନଙ୍କ ତତ୍ତ୍ୱାବଧାନରେ ଆମେ କଟକ ସହରର ବିଭିନ୍ନ ସାହିରେ ବୁଲି ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱାକ୍ଷର ସଂଗ୍ରହ କାମରେ ଲାଗିଲୁ । ସାହିମାନଙ୍କରେ ସଭା ଆୟୋଜନ କରିଲୁ । ବିଶିଷ୍ଟ ଲୋକେ ସେହି ସଭାମାନଙ୍କରେ ଅସ୍ପୃଶ୍ୟତା ବିରୁଦ୍ଧରେ ଭାଷଣ ଦେଲେ । ଏହିପରି ଅଶ୍ୱସ୍ତିକର ପରିସ୍ଥିତିରେ ଛଅ ଦିନ କଟିବା ପରେ ପୁନାରେ ଆମ୍ବେଦକର, ମାଲବୀୟ, ସାପ୍ରୁ, ଜୟକାର ଆଦି ବସି ଗୋଟାଏ ରାଜିନାମା ପ୍ରସ୍ତୁତ କରି ବିଲାତ ପଠାଇଲେ । ବ୍ରିଟିଶ୍ ସରକାର ତାହା ଗ୍ରହଣ କରିଛନ୍ତି ବୋଲି ବିଲାତରୁ ତାରବାର୍ତ୍ତା ଆସିବାରୁ ଗାନ୍ଧିଜୀ ଅନଶନ ଭାଙ୍ଗିଲେ । ବିରାଟ ସାଧାରଣ ସଭା ହେଲା । ପଣ୍ଡିତ ବାସୁଦେବ ମହାପାତ୍ର ଶ୍ଳୋକ ରଚନା କରି ଆମ ଦ୍ୱାରା ତାହା ଆବୃତ୍ତି କରାଇଲେ–

ସଦା ସତ୍ୟେ ସ୍ପର୍ଦ୍ଧା ବିତତି ମହତି ଯସ୍ୟ ଭୁବନେ
ପରଂ ପ୍ରୀତୌ ଶ୍ରଦ୍ଧା ପ୍ରଭବତି ବସୁଧାଧିବ ସତୌ
ଦୟା ଦାକ୍ଷିଣ୍ୟାଦୈଃ ଶମଗୁଣଶତୈଃ ସଂଜୀତ ଭୁବୋଃ
ମହାରାନୋ ଗାନ୍ଧୋର୍ଭବତୁ କୁଶଳଂ ଶୈଳ ତନୟେ । (ଇତ୍ୟାଦି)

ଗାନ୍ଧିଜୀ ଅନଶନ ଭାଙ୍ଗିବା ପରେ ମଧ ଆମେ ବିଶେଷରେ ମହିଳା ସତ୍ୟାଗ୍ରହୀମାନେ ଅସ୍ପୃଶ୍ୟତା ନିବାରଣ କାମରେ ଲାଗି ରହିଲୁ । ନିଖିଳ ଭାରତୀୟ ସ୍ତରରେ ଅସ୍ପୃଶ୍ୟତା ନିବାରିଣୀ ସମିତି ଗଢ଼ା ହେଲାରୁ ଓଡ଼ିଶାରେ ତାହାର ଶାଖା ଗଠିତ ହେଲା । ପରେ ସେହି ଅନୁଷ୍ଠାନ ହରିଜନ ସେବକ ସଂଘ ନାମରେ ନାମିତ ହେଲା । ଓଡ଼ିଶାରେ କବିରାଜ ବାଲୁକେଶ୍ୱର ଆଚାର୍ଯ୍ୟ ଏହି ସଂଘର ସଭାପତି ହେଲେ । ତାଙ୍କର ପ୍ରବର୍ତ୍ତନାରେ ହିନ୍ଦୋଳ ରାଜା ହିନ୍ଦୋଳର ମନ୍ଦିର ଦ୍ୱାର ହରିଜନମାନଙ୍କ ପାଇଁ ଉନ୍ମୁକ୍ତ କରିଦେଲେ । ସତ୍ୟନାରାୟଣ ସେନଗୁପ୍ତ ଓ ରମାଦେବୀ ଏହି ସଂଘର ଯୁଗ୍ମ ସଂପାଦକ

ହେଲେ । ସେମାନଙ୍କ ନିର୍ଦ୍ଦେଶରେ ଆମେ ଝାଞ୍ଜିରୀ ମଙ୍ଗଳା, ରାଜା ବଗିଚା, ମଠସାହି, ହାଡ଼ିଗାଡ଼ିଆ ଓ ଓଡ଼ିଆ ବଜାର ଯାଇ ମେହେନ୍ତର ବସ୍ତିର ପିଲାଙ୍କୁ ପାଠ ପଢ଼ାଇବା, ସଫାସୁତୁରା କରିବା, ଝିଅମାନଙ୍କୁ ସିଲେଇ ଶିଖାଇବା, ରୋଗୀଙ୍କୁ ମ୍ୟୁନିସିପାଲିଟି ଡାକ୍ତରଖାନାରୁ ଔଷଧ ଆଣି ଦେବା, ବସ୍ତିର ସ୍ତ୍ରୀଲୋକମାନଙ୍କୁ ପୁରାଣ ଶୁଣାଇବା, ବସ୍ତି ସଫାଇ କରିବା, ମଦ୍ୟ ଓ ଗୋମାଂସ ନ ଖାଇବା ପାଇଁ ସେମାନଙ୍କୁ ବୁଝାଇବା ଆଦି କାମ କଲୁ । ବସ୍ତିରେ ସାଂସ୍କୃତିକ କାର୍ଯ୍ୟକ୍ରମର ଆୟୋଜନ କରି ସବର୍ଣ୍ଣ ହିନ୍ଦୁଙ୍କୁ ସେହି ଉତ୍ସବକୁ ନିମନ୍ତ୍ରଣ କରି ଆଣିବା ମଧ୍ୟ ସେ ଯୁଗରେ ଗୋଟାଏ ବୈପ୍ଳବିକ ପଦକ୍ଷେପ ଥିଲା । ବୀରବାବୁ ହଜାରିବାଗ ଜେଲ୍‌ରେ ଥାଇ "ସବୁଜ ସାଥୀ" ବହି ଲେଖିଲେ । ଉପେନ୍ଦ୍ର କିଶୋର ଦାସ ('ମଲାଜହ୍ନ'ର ଲେଖକ) ଆମ ମେହେନ୍ତର ବସ୍ତି ଚାହାଳୀ ପିଲାଙ୍କ ପାଇଁ କବିତା ଲେଖିଦେଲେ–

ତୁମପରି ଆମେ ପରା ମଣିଷର ପିଲା
ଆଖିକାନ ହାତଗୋଡ଼ ସବୁ ତୁମପରି
ଆମକୁ ଛୁଇଁଲେ ତୁମେ ହୋଇଯାଅ ଛୁଆଁ
ଖରା ପବନ ତ କାହିଁ ଛୁଆଁ ହୁଏ ନାହିଁ । ଇତ୍ୟାଦି

ମେହେନ୍ତର ବସ୍ତିରେ ଏସବୁ କାମ କରିବା ସଙ୍ଗେ ସଙ୍ଗେ ଆମେ ଇଂରାଜୀ, ବଙ୍ଗଳା ଓ ଓଡ଼ିଆ 'ହରିଜନ' ପତ୍ରିକା ବିକ୍ରୟ, ହରିଜନ ସେବକ ସଂଘ ପାଇଁ ଅର୍ଥ ସଂଗ୍ରହ କାମ ମଧ୍ୟ କରୁଥାଉ । ହରିଜନ ପିଲାଏ ସର୍ବସାଧାରଣ ଚାଟଶାଳୀରେ ପଢ଼ିଲେ ଅବଧାନେ ସେମାନଙ୍କୁ ଛୁଇଁବେ ନାହିଁ ବୋଲି ବେତ ଫୋପାଡ଼ି ମାରୁଥିଲେ । ସେମାନଙ୍କୁ ସରକାରୀ ସ୍କୁଲରେ ଭରତି କରାଇବା, ଦେବ ମନ୍ଦିରରେ ସେମାନଙ୍କୁ ପ୍ରବେଶ କରିବା ପାଇଁ ଦେବା ନିମନ୍ତେ ଲୋକଙ୍କୁ ପ୍ରବର୍ତ୍ତାଇବା, ସର୍ବସାଧାରଣ କୂଅରୁ ହରିଜନ କିପରି ପାଣି ନେବେ ସେ ବିଷୟରେ ଲୋକଙ୍କୁ ବୁଝାଇବା, ହରିଜନ ସାହିରେ କୂଅ ଖୋଳାଇବା, ହରିଜନ ପିଲାଙ୍କୁ ବଢ଼େଇ କାମ, ଦରଜୀ କାମ ଆଦି ଅର୍ଥକାରୀ ଧନ୍ଦା ଶିଖାଇବା କାମ ଚାଲିଲା । ଶ୍ରୀକୃଷ୍ଣ ପ୍ରଧାନ ଓ ପରେ ଶ୍ରୀ ଅଲେଖ ପ୍ରସାଦ ଦାସ ସଂଘର ଅଫିସ୍ ସେକ୍ରେଟାରୀ ହେଲେ । କଟକରେ 'କୈବଲ୍ୟ କୁଟୀର' ନାମରେ ଗୋଟିଏ ଛାତ୍ରାବାସ ସ୍ଥାପିତ ହେଲା । ପୁଣି ସବର୍ଣ୍ଣ ହିନ୍ଦୁ ଯଥା ଜୀବରାମଜୀ କଲ୍ୟାଣଜୀ କୋଠାରୀ, ରମା ଦେବୀ ପ୍ରଭୃତି ନିଜ ହାତରେ ପାଇଖାନା ସଫା କରିବାକୁ ଲାଗିଲେ । ବର୍ତ୍ତମାନ ଏସବୁ

କାର୍ଯ୍ୟର ଗୁରୁତ୍ୱ ବୁଝିବା କାହାରି କାହାରି ପକ୍ଷରେ କଠିନ ହୋଇପାରେ । ୧୯୩୨-୩୩ରେ ହରିଜନଙ୍କ ପ୍ରତି କି ପ୍ରକାର ବ୍ୟବହାର କରାଯାଉଥିଲା ତାହାର କିଞ୍ଚିତ୍ ପରିଚୟ ମିଳିବ ଜାତୀୟ କବି ବୀରକିଶୋର ଦାସଙ୍କ 'ସବୁଜ ସାଥୀ' ବହିରୁ ଏବଂ ହରିଜନ ପତ୍ରିକାରୁ । ହରିଜନଙ୍କ ମଧ୍ୟରୁ ଅନେକଙ୍କ ଘରେ ପଖାଳ ଖାଇବାକୁ ଖଣ୍ଡେ ବେଲା ନ ଥିଲା । ପଲା ଆଗରେ ଗୋଟିଏ ଛୋଟିଆ ଗାତ କରି ତାକୁ ଲିପିପୋଛି ସେଥିରେ ପତର ପାରି ପଖାଳ ଖାଇ ହାମୁଡ଼େଇ ପଡ଼ି ସେମାନେ ତୋରାଣୀ ପିଉଥିଲେ । ଯେଉଁ ଭୀମରାଓ ଆମ୍ବେଦକର ଭାରତର ସମ୍ବିଧାନ ପ୍ରଣେତା ବୋଲାଇଲେ ଦିନେ ତାଙ୍କୁ ବମ୍ବେ ସହରରେ ରାତ୍ରି ଯାପନ କରିବା ପାଇଁ ସ୍ଥାନ ମିଳି ନ ଥିଲା । ବନ୍ଦରର ମେଲା ଛପର ତଳେ ସେ ରାତି କଟାଇଥିଲେ । ହରିଜନମାନଙ୍କର ଘର ଡିହରେ ସ୍ୱତ୍ୱ ନ ଥିଲା । ମିନା ପ୍ରଜା ଭାବରେ ଜମିଦାର ସେମାନଙ୍କୁ ନିଜ ଇଚ୍ଛାମତେ ବାସଚ୍ୟୁତ କରି ପାରୁଥିଲେ । ବେଠିବେଗାରୀ ଦୁଃଖ କଥା ତ କହିଲେ ସରିବ ନାହିଁ । ଖଣ୍ଡେ ଲମ୍ବ ଓସାର ଶାଢ଼ୀ ପିନ୍ଧି ପଦାକୁ ବାହାରିବା ମଧ୍ୟ ହରିଜନ ସ୍ତ୍ରୀ ଲୋକଙ୍କ ପାଇଁ ଦଣ୍ଡନୀୟ ଥିଲା । ହରିଜନ ଝିଅ ବୋହୂଙ୍କ ପକ୍ଷରେ ନିଜ ନିଜ ଇଜ୍ଜତ ରକ୍ଷା କରିବା କିପରି କଠିନ ବ୍ୟାପାର ଥିଲା ତାହା ନ ବର୍ଣ୍ଣିବା ହିଁ ଶ୍ରେୟସ୍କର । ଯେଉଁ ଭାରତବର୍ଷ ଶଙ୍କରାଚାର୍ଯ୍ୟଙ୍କ ଅଦ୍ୱୈତ ବିଚାର, ଗୀତାର ସାମ୍ୟଯୋଗ ପାଇଁ ଗର୍ବିତ, ସେହି ଭାରତବର୍ଷରେ ମଣିଷ ପ୍ରତି ମଣିଷ ଏପ୍ରକାର ଆଚରଣ କରୁଥିଲା ।

ଗାନ୍ଧିଜୀ ୧୯୩୩ ମସିହା ମଇ ମାସ ଆଠ ତାରିଖରେ ନିଜ ସହକର୍ମୀମାନଙ୍କର ଓ ନିଜର ଚିତ୍ତଶୁଦ୍ଧି ନିମନ୍ତେ ୟେରବାଦା ଜେଲ୍‌ରେ ପୁଣି ଏକୋଇଶ ଦିନ ଉପବାସ ଆରମ୍ଭ କଲେ । ହିନ୍ଦୁ ମୁସଲମାନ ଏକତା ପାଇଁ ଅତୀତରେ ସେ ଯେଉଁ ଏକୋଇଶ ଦିନିଆ ଉପବାସ କରିଥିଲେ, ସେତେବେଳେ ଉପବାସର ଗୁରୁତ୍ୱ ବୁଝିବା ବୟସ ମୋର ହୋଇ ନ ଥିଲା । ଏଥରକ ଗାନ୍ଧିଜୀଙ୍କ ସଂସ୍ପର୍ଶରେ ଆସି ନ ଥିଲେ ହେଁ ତାଙ୍କ ପ୍ରତି ଯେଉଁ ଭକ୍ତି ମନରେ ଜନ୍ମି ସାରିଥିଲା ସେହି ଭକ୍ତି ଯୋଗୁ ମନଟା ଭାରି ବ୍ୟାକୁଳ ହେଲା । ଅସ୍ପୃଶ୍ୟତା ନିବାରଣ କାମରେ ମନପ୍ରାଣ ଢାଳି ଦେବା ହିଁ ଥିଲା ମନକୁ ବୁଝାଇବାର ଏକମାତ୍ର ଉପାୟ ।

ଏହି ଏକୋଇଶ ଦିନ ଯାକ କଟକର ବିଭିନ୍ନ ଅଞ୍ଚଳରେ ପ୍ରଭାତଫେରି କରିବା ଆମର ପ୍ରଧାନ କାର୍ଯ୍ୟକ୍ରମ ଥିଲା । ଉପେନ୍ଦ୍ର କିଶୋର ଦାସ ଆମକୁ ପ୍ରଭାତୀ ଲେଖିଦେଲେ–

ଜାଗ ଜନପଦବାସୀ
ପତିତର ବନ୍ଧୁ ତବଦ୍ୱାରେ ତବ ପାପଲାଗି ଉପବାସୀ
ଅଳସ ବିଳାସେ ବିସୋରି ଜୀବନ
ଏ ଜାତି ଯେ ଆଜି ଜଡ଼ ଅଚେତନ
ଅଭିମାନ ରଚି ଭେଦର ପ୍ରାଚୀର ନିଜ ଦେଶେ ପରବାସୀ
ମୃତ ଜାତି ପାପେ ସେ ମହାମାନବ
ଆଚରିଲେ ଆତ୍ମଦାନ ମହୋତ୍ସବ
ନୀଳକଣ୍ଠ ରୂପେ ନିଜ ଶିରେ ବହି ନିଖିଳର ପାପରାଶି
ଭାରତର ଯଦି ମନାସ କଲ୍ୟାଣ
ଉଠ ଜାଗ କୋଟି ଭାରତ ସନ୍ତାନ
ପତିତପାବନ ମହାବ୍ରତ ଯେନ ଅକ୍ଷୟ ଅବିନାଶୀ ।

ପୁଣି ସାହି ସାହିରେ ସଭା ଆୟୋଜନ ଚାଲିଲା । ବେଣ୍ଟକାରର ଶ୍ରୀକୃଷ୍ଣ ମହାନ୍ତି ଗୀତ ଲେଖିଲେ, ଓସ୍ତାଦ୍ ଖାନୁ ମିଆଁ ଗୀତ ଶିଖାଇଲେ –

ଅଛୁଆଁ ଅନ୍ଧାରକୁ ତା ପ୍ରେମ ରବିକରେ ତୁଟାଅ ଆଜି ହେ

ପୁଣି ଅଲେଖ ପ୍ରସାଦ ଦାସ ଗୀତ ଲେଖିଲେ–

ଏ ପୁଣ୍ୟ ଭୂଇଁରେ ଅଛୁଆଁ ଶବଦ ଶୁଣା ନାହିଁ ଆଉ ଭାଇ ହେ"

ରବୀନ୍ଦ୍ରନାଥଙ୍କ କବିତା ଆହୁରି ଚାଲିଲା–

ହେ ମୋର ଦୁର୍ଭାଗା ଦେଶ ଯାଦେର କରେଛ ଅପମାନ
ଅପମାନ ହତେ ହବେ ତାହାଦେର ସବାର ସମାନ । xxx
ବିଧାତାର ରୁଦ୍ରରୋଷେ ଦୁର୍ଭିକ୍ଷେର ଦ୍ୱାରେ ବସେ
ଏକ ସାଥେ ଖେତେ ହବେ ଅନ୍ନ ପାନ .....

ଚୈତନ୍ୟ, ନାନକ, କବୀର, ରାମାନନ୍ଦ ଆଦି ଭାରତର ସନ୍ଥମାନେ ଅସ୍ପୃଶ୍ୟତାର ବିରୋଧ କରିଛନ୍ତି । ସେମାନଙ୍କର ବାଣୀ ଓ ଜୀବନ କଥା 'ହରିଜନ'ରେ ବାହାରିବାକୁ ଲାଗିଲା । ଏଣେ ନିଜକୁ ସନାତନୀ କହୁଥିବା ପଣ୍ଡିତମାନେ ଅସ୍ପୃଶ୍ୟତାକୁ ସମର୍ଥନ କରି ପତ୍ରପତ୍ରିକା ବାହାର କଲେ ଏବଂ ସଭା ସମିତିରେ ବକ୍ତୃତା ଦେଲେ । ଗାନ୍ଧିଜୀ

ସେତେବେଳେ ଗୋଟିଏ କଥା କହିଥିଲେ ଯେଉଁଟା ଭାରି ଭଲ ଲାଗିଥିଲା । ଗାନ୍ଧିଜୀ କହିଲେ ହିନ୍ଦୁଧର୍ମ ଶାସ୍ତ୍ରରେ ଅସ୍ପୃଶ୍ୟତାର ଉଲ୍ଲେଖ ନାହିଁ । ଯଦି ଥାଏ, ମାନବିକତା ଦୃଷ୍ଟିରୁ ମୁଁ ସେ ଶାସ୍ତ୍ରକୁ ମାନିବି ନାହିଁ । କିନ୍ତୁ ମୁଁ ହିନ୍ଦୁ । ଏ ଯୁକ୍ତିରେ ତର୍କଜାଲ ନ ଥିଲା ।

ଏକୋଇଶ ଦିନ ଅନଶନ ପରେ ଗାନ୍ଧିଜୀ ପୁନାର ପର୍ଣ୍ଣକୁଟୀରେ ଥାଆନ୍ତି । ନିଖିଳ ଭାରତ ହରିଜନ ସେବକ ସଂଘର ବୈଠକରେ ଯୋଗ ଦେବାକୁ ଉତ୍କଳ ପ୍ରାଦେଶିକ ହରିଜନ ସେବକ ସଂଘର ଯୁଗ୍ମ ସମ୍ପାଦକ ସତ୍ୟନାରାୟଣ ସେନଗୁପ୍ତ ଓ ରମାଦେବୀ ପୁନା ଗଲେ । ମନମୋହନ ଚୌଧୁରୀ ସେତେବେଳେ ସଦ୍ୟ ଜେଲ୍‌ରୁ ମୁକୁଳି ଥା'ନ୍ତି । ସେ ଦୁହେଁ ମଧ ପୁନା ଗଲେ, ତାଙ୍କ ସାଙ୍ଗରେ ମୁଁ ଗଲି । ଆମେ ପୁନାରେ ଭାରତ ସେବକରେ ରହିଲୁ । ନିଜେ ଠକ୍‌କରବାପା ସମସ୍ତଙ୍କ ଖବର ବୁଝୁଥାନ୍ତି । ଆମେ ପ୍ରଥମ ଥର ପୁନା ଆସିଛୁ ଜାଣି ପୁନାର ଶିକ୍ଷାନୁଷ୍ଠାନ ଦେଖିବା ପାଇଁ ସେ ବାହନ ଠିକ୍ କରିଦେଲେ । ପ୍ରଥମେ ମହିଳା ବିଶ୍ୱବିଦ୍ୟାଳୟ ଦେଖିବାକୁ ଗଲୁ । ନିଜେ କାର୍ଭେ ଆମକୁ ସାଙ୍ଗରେ ନେଇ ସମୁଦାୟ ବିଶ୍ୱବିଦ୍ୟାଳୟ ବୁଲେଇ ଦେଖେଇଲେ । ସର୍ବପ୍ରଥମେ ଆମକୁ ନେଇଗଲେ ଗୋଟିଏ ଛୋଟିଆ ପଥର ତିଆରି ଘର ପାଖକୁ । ପ୍ରଥମେ ସେହି ଘରେ ଯେ ସେ ସାତୋଟି ବିଧବାକୁ ନେଇ ବିଧବାଶ୍ରମ (widow home) ସ୍ଥାପନ କରିଥିଲେ, ସେଇ କଥା କହିଲାବେଳକୁ ତାଙ୍କ ମୁହଁ ଉଜ୍ଜ୍ୱଳି ଉଠୁଥାଏ । ଗୋଟାଏ ଛୋଟିଆ ଘରରୁ ଆରମ୍ଭ ହୋଇ ସେ ଅନୁଷ୍ଠାନ ଏକ ବିଶ୍ୱବିଦ୍ୟାଳୟରେ ପୁଣି ମହିଳା ବିଶ୍ୱବିଦ୍ୟାଳୟର ପରିଣତ ହୋଇ ସମଗ୍ର ମହାରାଷ୍ଟ୍ରର ସାଂସ୍କୃତିକ ବିକାଶର ମୂଳପିଣ୍ଡ ହୋଇଛି ଏ କଥା ଭାବିବା ବେଳକୁ ମହର୍ଷି କାର୍ଭେଙ୍କ ପ୍ରତି ଭକ୍ତିରେ ମଥା ନଇଁ ଯାଉଥାଏ । ମହାରାଷ୍ଟ୍ରୀୟ ମହିଳାମାନଙ୍କର ତେଜସ୍ୱିତା ଓ ସ୍ୱଚ୍ଛନ୍ଦ ଗତିବିଧି ମୋତେ ନୂଆ ଲାଗୁଥାଏ । ଆମ ପ୍ରଦେଶରେ ସେତେବେଳଯାଏ ପର୍ଦ୍ଦା ବା ଆଡ଼ ହେବାଟା ଆଭିଜାତ୍ୟର ଲକ୍ଷଣ ବୋଲି ମନେକରାଯାଉଥାଏ । ଆମ ପ୍ରଦେଶରେ ଲୁଚି କରି ରହିବାଟା ନାରୀର ଗୋଟାଏ ଗୁଣ ମନେ କରାଯାଉଥିବା ସ୍ଥଳେ ମହାରାଷ୍ଟ୍ରରେ କେବଳ ମହିଳାଙ୍କ ପାଇଁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇସାରିଥାଏ । ମହାରାଷ୍ଟ୍ରର ଏହି ନାରୀ ପ୍ରଗତି ସାଙ୍ଗରେ ଆମେ ଯେ ମୁଷ୍ଟିମେୟ ଝିଅ ବୋହୂ ପରଦା ଛାଡ଼ି ଆନ୍ଦୋଳନରେ ଯୋଗ ଦେଇଛୁ ତାହା ଆମ ସମାଜପତିମାନଙ୍କୁ କିପରି ବିଷଦୃଶ ବୋଧ ହେଉଛି ସେ କଥା ମୁଁ ମନେ ମନେ ତୁଳନା କରୁଥାଏ ।

ବୁଲାବୁଲି ସାରି ନିର୍ଦ୍ଧାରିତ ସମୟରେ ଗାନ୍ଧିଜୀଙ୍କୁ ଭେଟିବା ପାଇଁ ସମଗ୍ର ଭାରତର ହରିଜନ ସେବକ ପର୍ଣ୍ଣକୁଟୀକୁ ଗଲେ । ସେ ସମୟରେ ପୁନାରେ ଦୁଇଟି ପ୍ରାସାଦ ସର୍ବୋତ୍କୃଷ୍ଟ ଥିଲା । ଗୋଟିଏ ହେଉଛି ଆଗା ଖାଁ ମହଲ, ଅନ୍ୟଟି ପର୍ଣ୍ଣକୁଟୀ । ପର୍ଣ୍ଣକୁଟୀ ହେଉଛି ଗୋଟିଏ ଛୋଟିଆ ପାହାଡ଼କୁ କାଟି କାଟି ଶ୍ୱେତମର୍ମର ପଥରରେ ତିଆରି ଅତି ସୁନ୍ଦର ପ୍ରାସାଦ । ଗୃହସ୍ୱାମିନୀ ଲେଡ଼ି ପ୍ରେମଲୀଳା ଥାକରସେଙ୍କ ଜୀବନ କଥା ଅତି କରୁଣ । ଏହି ବିରାଟ ସୌଧର ନିର୍ମାଣ କାର୍ଯ୍ୟ ଶେଷ ହେବା ପରେ କୋଟିପତି ଥାକରସେ ଗୃହପ୍ରବେଶ ସମାରୋହରେ ଯୋଗ ଦେବାକୁ ଆସୁଥିବା ବେଳେ ମୋଟର ଦୁର୍ଘଟଣାରେ ପ୍ରାଣ ହରାଇଲେ । ସାଧ୍ୱୀ ପ୍ରେମଲୀଳା ଏହି ବିରାଟ ପ୍ରାସାଦ ଓ ଅମାପ ଧନଦୌଲତର ଅଧିକାରିଣୀ ହୋଇଥିଲେ ହେଁ ସନ୍ନ୍ୟାସିନୀ ପରି ଜୀବନ କଟାଇଲେ । ବିଶ୍ୱବିଦ୍ୟାଳୟ ଓ ବିଭିନ୍ନ ଜନହିତକର ଅନୁଷ୍ଠାନକୁ ସେ ଲକ୍ଷ ଲକ୍ଷ ଟଙ୍କା ଦାନ କଲେ । ଏହାଛଡ଼ା ବିଶ୍ୱବିଦ୍ୟାଳୟର କୁଳପତି, କସ୍ତୁରବା ସ୍ମାରକ ଟ୍ରଷ୍ଟର ଅଧ୍ୟକ୍ଷ ଭାବରେ ବହୁ ଜନସେବାମୂଳକ କାର୍ଯ୍ୟର ଦାୟିତ୍ୱ ମଧ୍ୟ ମୁଣ୍ଡାଇଲେ । ନିରାଭରଣା, ଶ୍ୱେତବସ୍ତ୍ରାବୃତା, ପର୍ଣ୍ଣକୁଟୀର ଶ୍ୱେତମର୍ମର ପ୍ରସ୍ତର ପରି ଶୁଭ୍ରକାୟା ଏହି ସାଧ୍ୱୀ ରମଣୀ ଅତିଥିମାନଙ୍କୁ ପାଛୋଟି ନେଇ ଗାନ୍ଧିଜୀଙ୍କ ପାଖରେ ପହଞ୍ଚାଇ ଦେଲେ । ଏକୋଇଶ ଦିନ ଉପବାସ ପରେ ଗାନ୍ଧିଜୀ ବଡ଼ ଦୁର୍ବଳ ଦିଶୁଥାନ୍ତି । ତଥାପି ସେ ହରିଜନ ସେବକ ସଂଘର କାର୍ଯ୍ୟ ବିବରଣୀ ଶୁଣିଲେ ଏବଂ ଅତି କ୍ଷୀଣ ସ୍ୱରରେ କର୍ମୀମାନଙ୍କୁ ନିଜର ବକ୍ତବ୍ୟ ଶୁଣାଇଲେ ।

ପୁନାରେ ଆମେ କାକାସାହେବ କାଲେକରଙ୍କୁ ଭେଟିଲୁ । ସେ ଜେଲ୍‌ରୁ ମୁକୁଳି ଗୋଟିଏ ନର୍ସିଂହୋମ୍‌ରେ ରହୁଥିଲେ । ଶ୍ରୀ ହରେକୃଷ୍ଣ ମହତାବ ତାଙ୍କ ସହିତ 'ସତ୍ୟାଗ୍ରହ ଆନ୍ଦୋଳନରେ ଗୋପନୀୟତା' ସମ୍ବନ୍ଧରେ କଥାବାର୍ତ୍ତା ହେଲେ । କୌଣସି କାମ ଲୁଚେଇ ଛପେଇ ନ କରିବା ହେଉଛି ସତ୍ୟାଗ୍ରହର ନୀତି । ଲୁଚିଛପି ରହି ଆନ୍ଦୋଳନ ଚଳାଇବାଟା ମଧ୍ୟ ସତ୍ୟାଗ୍ରହର ନୀତିବିରୁଦ୍ଧ । ମାତ୍ର ଆନ୍ଦୋଳନକୁ ଚଳେଇ ରଖିବା ଲୋଭର ବଶବର୍ତ୍ତୀ ହୋଇ ଅନେକ ସତ୍ୟାଗ୍ରହୀ ଲୁଚି ଛପି ରହି ଆନ୍ଦୋଳନ ଚଳାଇଥିଲେ । ଯେଉଁ ସାଇକ୍ଲୋଷ୍ଟାଇଲ୍ ମେସିନ୍‌ରେ ବୁଲେଟିନ୍ ଛପା ହେଉଥିଲା ତାକୁ ପୁଲିସ ନେଇଗଲେ ବୁଲେଟିନ୍ ଛାପିବା ବନ୍ଦ ହୋଇଯିବ ବୋଲି ସେହି ମେସିନ୍‌ଟିକୁ ପାରୁ ପର୍ଯ୍ୟନ୍ତ କୌଶଳ ପ୍ରୟୋଗ କରି ଲୁଚାଇ ରଖା ହେଉଥିଲା । ବୁଲେଟିନ୍ ମଧ୍ୟ ଲୁଚାଇ କରି ଛପା ହେଉଥିଲା । ଗାନ୍ଧିଜୀ ଜେଲ୍‌ରୁ ବାହାରି ଏ ଲୁଚାଛପା କାରବାରକୁ

ନାପସନ୍ଦ କଲେ । ବଙ୍ଗଳାରେ ସତୀଶଚନ୍ଦ୍ର ଦାସଗୁପ୍ତ ଓ ଓଡ଼ିଶାରେ ଗୋପବନ୍ଧୁ ଚୌଧୁରୀ ଏହି ଲୁଚାଛପା କାରବାର (secrecy) ର ବିରୋଧ କଲେ । ମହତାବ ବାବୁ ଏହି ବିଷୟରେ କାକାସାହେବଙ୍କ ସହିତ ଆଲୋଚନା କରିଥିଲେ । ଗୋପବାବୁଙ୍କୁ ହଜାରିବାଗ ଜେଲ୍‌ରେ ଦେଖା କରିବା ପାଇଁ ଆମେ ଆଲାହାବାଦ ବାଟେ ଆସୁଥିବା ବମ୍ବେ ମେଲ୍‌ରେ ଫେରିଲୁ । ଓଡ଼ିଶାକୁ ଫେରିବା ପରେ ବନ୍ୟାରେ ଖଣ୍ଡେଇତା ଘାଇ ଭାଙ୍ଗି ଝାରପଡ଼ା, ଅଡ଼ସପୁର ଗାଁ ଗୁଡ଼ିକ ଅସ୍ତବିଧ୍ୱସ୍ତ ହୋଇଗଲା । ସର୍ବଶ୍ରୀ ରାଜକୃଷ୍ଣ ବୋଷ, ସୁଧୀର ଘୋଷ, ମନମୋହନ ଚଉଧୁରୀ, ନୀପେନ୍ଦ୍ର ନାରାୟଣ ସେନ ଆଦି ବହୁ ସ୍ୱେଚ୍ଛାସେବକ ଏହି ଗ୍ରାମମାନଙ୍କରେ ସାହାଯ୍ୟ ପହଞ୍ଚାଇବା କାମରେ ଲାଗି ପଡ଼ିଲେ । ଆମେ ମଧ୍ୟ ବନ୍ୟା ପୀଡ଼ିତଙ୍କ ପାଇଁ ଚୂଡ଼ା, ଚାଉଳ, ପୁରୁଣା ଲୁଗା, ଔଷଧ ସଂଗ୍ରହ କାମରେ ଲାଗିଲୁ । ରମାଦେବୀଙ୍କ ସଙ୍ଗେ ଝାରପଡ଼ା ଓ ସେଠାରୁ ଅଡ଼ସପୁର ଆଦି ଗାଁକୁ ଯାଇ ବନ୍ୟାପ୍ରପୀଡ଼ିତ ଲୋକଙ୍କ ଅବସ୍ଥା ନିଜ ଆଖିରେ ଦେଖିଲୁ । ଗାଁ ଭିତରେ ବୁଲି ପ୍ରକୃତ ଅଭାବଗ୍ରସ୍ତ ଲୋକଙ୍କୁ ରିଲିଫ୍ ଚାଉଳ ପାଇବା ପାଇଁ ଟିକେଟ୍ ଦେବା, ଚାଉଳ ବାଣ୍ଟିବା ଆଦି କାମର ପ୍ରତ୍ୟକ୍ଷ ଅଭିଜ୍ଞତା ଏହିଠାରେ ହେଲା । ଲୋକଙ୍କ ପ୍ରକୃତ ଅବସ୍ଥା ଦେଖି ଓଡ଼ିଶା ରିଲିଫ କମିଟି ପାଇଁ ରିପୋର୍ଟ ପ୍ରସ୍ତୁତ କରିବା କାମ ମଧ୍ୟ ଶିଖିଲୁ । ବ୍ରିଟିଶ ଅମଳରେ ଏହି ବେସରକାରୀ ରିଲିଫ ହିଁ ଲୋକଙ୍କର ପ୍ରକୃତ ସମ୍ବଳ ହୋଇଥାଏ । ଓଡ଼ିଶା ରିଲିଫ କମିଟି ପକ୍ଷରୁ ଏ ସବୁ କାମ ସ୍ୱେଚ୍ଛାସେବକମାନେ କରୁଥାନ୍ତି । ସ୍ୱାମୀ ବିଚିତ୍ରାନନ୍ଦ ଦାସ, ସତ୍ୟନାରାୟଣ ସେନଗୁପ୍ତ, ରମାଦେବୀ ପ୍ରଭୃତି ଏହି କମିଟିର ସଦସ୍ୟ ଥା'ନ୍ତି । ଓଡ଼ିଶା ବାହାରୁ ଅର୍ଥ ସାହାଯ୍ୟ ଆସୁଥାଏ । ଶ୍ରୀ ହରଖଚାନ୍ଦ ମୋତିଚାନ୍ଦ ଭାଇ ରହି ଏ କାମର ତତ୍ତ୍ୱାବଧାନ କରୁଥାନ୍ତି । ମାରୁଆଡ଼ି ପଟିରେ ଏହାର କାର୍ଯ୍ୟାଳୟ ଥାଏ । ଆମେମାନେ ଯାହା ଦାନ ସଂଗ୍ରହ କରୁ ଏହି କାର୍ଯ୍ୟାଳୟରେ ଜମା ଦେଉ । ଅରିଲୋ, ଅଡ଼ସପୁର, ଝାରପଡ଼ା ପ୍ରଭୃତି ବିଭିନ୍ନ ରିଲିଫ କେନ୍ଦ୍ରକୁ କମିଟି ଏହି ସାହାଯ୍ୟ ପଠାନ୍ତି ।

ପୁନାରୁ ଫେରିବା ପରେ ଅନେକ ଦିନ ପର୍ଯ୍ୟନ୍ତ ଶୀର୍ଣ୍ଣକାୟ ବୃଦ୍ଧ ଆଖି ଆଗରେ ନାଚିଲେ । ଗୋଟିଏ ଛୋଟିଆ ଘର ଆଗରେ ଆମ ମୋଟର୍ କାର୍ ଛିଡ଼ା ହେଲାରୁ ସେହି ଶୀର୍ଣ୍ଣକାୟ ବୃଦ୍ଧ ଆସି ଆମ ଗାଡ଼ି ପାଖରେ ଛିଡ଼ା ହେଲେ । ମହତାବ ବାବୁ ତାଙ୍କୁ ପଚାରିଲେ ଅଧ୍ୟାପକ କାର୍ଭେ ଅଛନ୍ତି କି ? ସେ କହିଲେ "I am Prof. Karve" । ଆଖିକୁ ବିଶ୍ୱାସ କରି ହେଲା ନାହିଁ । ଏହି ସେହି ଦେଶବନ୍ଦ୍ୟ ମହର୍ଷି

କାର୍ଯ୍ୟେ ! ସେ ନିଜେ କେମିତି ତାଙ୍କର ବିଧବାଶ୍ରମ ପାଖକୁ ନେଇଯାଇ ଜୀବନର କେତୋଟି କଥା – ନିଜେ କେମିତି ବିଧବା ବିବାହ କରି ଜାତିଚ୍ୟୁତ ହେଲେ, ଗାଁ ଦେବ ମନ୍ଦିରର ପ୍ରସାଦ ହରିଜନଙ୍କ ସାଙ୍ଗରେ ବସି ଖାଇଲେ – ସେହି ସବୁ କଥା କହିଲେ । ତାହା ବାରମ୍ବାର ମନେପଡ଼ି ଏକ ଅକାରଣ ଉଲ୍ଲାସରେ ହୃଦୟ ପୂରି ଉଠିଲା ।

ଗାନ୍ଧିଜୀ ପୁଣି ଗିରଫ ହୋଇ ଜେଲ୍ ଗଲେ । ତାଙ୍କୁ ଏକବର୍ଷ କାରାଦଣ୍ଡ ମିଳିଲା । ଜେଲରେ ଥିବା ବେଳେ ହରିଜନ ସେବା କାର୍ଯ୍ୟ ସଂକ୍ରାନ୍ତରେ ପତ୍ର ବ୍ୟବହାର କରିବାକୁ ସେ ସରକାରଙ୍କୁ ଅନୁମତି ମାଗିଲେ । ସରକାର ତାହା ନ ଦେବାରୁ ଗାନ୍ଧିଜୀ ପୁଣି ଅନଶନ କଲେ । ଏଥର ତାଙ୍କର ଜୀବନ ସଂକଟାପନ୍ନ ହେବାରୁ ସରକାର ତାଙ୍କୁ ଖଲାସ କରିଦେଲେ । ତାଙ୍କୁ ବର୍ଷେ କାରାଦଣ୍ଡ ହୋଇଥିବାରୁ ସେ ଜେଲ୍‌ରୁ ବାହାରିବା ପରେ ବର୍ଷଟିଏ କେବଳ ହରିଜନ-ସେବା କାମ କରିବାକୁ ସ୍ଥିର କରି ସମଗ୍ର ଭାରତରେ ଗସ୍ତ କଲେ ।

ସେହି ହରିଜନ-ଗସ୍ତ ବେଳେ ୧୯୩୪ ମସିହାରେ ଗାନ୍ଧିଜୀ ସାତଦିନ ଓଡ଼ିଶାରେ ଗସ୍ତ କରିବା ସ୍ଥିର ହେଲା । କଟକରେ ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସଭାପତିତ୍ୱରେ ଗୋଟିଏ ଅଭ୍ୟର୍ଥନା ସମିତି ଗଢ଼ା ହେଲା । ସଦସ୍ୟ ଚାନ୍ଦା ଥିଲା ତିନି ଟଙ୍କା । ଏହି ସଦସ୍ୟ ସଂଗ୍ରହ କାମକୁ ତ୍ୱରାନ୍ୱିତ କରିବା ପାଇଁ ଆମେ ସାଇକଲରେ ଚଢ଼ି ବୁଲି ବୁଲି ସଦସ୍ୟ ସଂଗ୍ରହ କଲୁ । ଆମେ ବୋଇଲେ ଶୋଭାରାଣୀ ପଣ୍ଡା, ମଙ୍ଗଳା ସେନ୍ ଓ ମୁଁ । ଏହି ଚାନ୍ଦା ଦେବାକୁ ଅନେକେ ଡରୁଥାନ୍ତି । କାରଣ ଗାନ୍ଧୀ ଏବେ ସରକାରଙ୍କ ଶତ୍ରୁ, ତହିଁକୁ ପୁଣି ଛୁଆଁଛୁଇଁ ଉଠେଇ ଦେବାକୁ ଚାହିଁଲାଣି । ଏ କାମ ସାଙ୍ଗକୁ ନିତ୍ୟ-ସେବା କାର୍ଯ୍ୟ ତ ଚାଲିଥାଏ । ପୁଣି ଆତ୍ମୋନ୍ନତି ପାଇଁ ପଣ୍ଡିତ ଅନସୂୟା ପ୍ରସାଦ ପାଠକଙ୍କ ପାଖରେ ରାଷ୍ଟ୍ରଭାଷା ପଢୁଥାଉ । ପଣ୍ଡିତଜୀ ୧୯୩୧ରେ ଓଡ଼ିଶାକୁ ଆସି ଏହିଠାରେ ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଯାଇ ଜେଲ୍‌ରୁ ମୁକୁଳି ପୁଣି ଓଡ଼ିଶାରେ ରାଷ୍ଟ୍ରଭାଷା ପ୍ରଚାର କାମରେ ଲାଗିଥାନ୍ତି । ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ସଭାପତିତ୍ୱରେ ରାଷ୍ଟ୍ରଭାଷା ପ୍ରଚାର ସଭା ଗଢ଼ା ହୋଇଥାଏ । ରମାଦେବୀ ଥା'ନ୍ତି ଏହାର ପ୍ରଧାନ ଉଦ୍ୟୋକ୍ତା ଅର୍ଥାତ୍ ଅର୍ଥ ସଂଗ୍ରହ ଓ ଛାତ୍ରଛାତ୍ରୀ ସଂଗ୍ରହ ଥାଏ ତାଙ୍କର କାମ । ପଣ୍ଡିତଜୀ ଆମକୁ ବରାବର କହି ଲାଗିଥାନ୍ତି ହସ୍ତାକ୍ଷର ସୁନ୍ଦର ହେଲେ ଗାନ୍ଧିଜୀ ସେ ଚିଠି ନିଜେ ପଢ଼ନ୍ତି । ତେଣୁ ତୁମେମାନେ ସୁନ୍ଦର ଅକ୍ଷର ଲେଖ । ତେଣୁ ଆମେ

ଲାଗିପଡ଼ି ନାଗରୀ ଅକ୍ଷରକୁ ସୁନ୍ଦର କରିବାକୁ ଚେଷ୍ଟା କରୁଥାଉ । ଭଜନ ଆଦି ବୋଲିବା ପାଇଁ ଶ୍ରୀ ଗୋକୁଳ ଶ୍ରୀଚନ୍ଦନ ଆମକୁ କଣ୍ଠ ସଙ୍ଗୀତ ଓ ଗୋପାଳ ଘୋଷ ସୀତାର ଶିଖାଉଥାନ୍ତି । ଅବଶ୍ୟ ସଙ୍ଗୀତ ଶିଖିବାରେ ମୋର ଆଦ୍ୟ ଗୁରୁ ହେଉଛନ୍ତି ଓସ୍ତାଦ ଖାନୁମିଆଁ । ସହରର ଅନେକ ଝିଅ ଆମ ସାଙ୍ଗରେ ଗୀତ ବାଦ୍ୟ ଶିଖିବାକୁ ଆସୁଥାନ୍ତି । ବର୍ତ୍ତମାନ ଗ୍ରାମସେବକ ପ୍ରେସ୍ ହୋଇଥିବା କୋଠାର ଗୋଟିଏ କୋଠରୀରେ ଏହି ସଙ୍ଗୀତ ଚର୍ଚ୍ଚା ଚାଲିଥାଏ ।

ଗାନ୍ଧିଜୀ ଅନୁଗୁଳ ଗସ୍ତ ସାରି ପୁରୀରେ ପହଞ୍ଚିଲା ବେଳକୁ ରେଳ ଷ୍ଟେସନରେ ପୁଲିସ ହାଉଯାଉ ହେଉଥିବାର ଦେଖିଲେ । ସହର ଭିତରକୁ ଯାଇ ଦେଖିଲେ ସେ କାଳେ ଶ୍ରୀମନ୍ଦିରରେ ହରିଜନ ପୂରାଇ ଦେବେ ସେହି ଭୟରେ ସଂଚାଳକମାନେ ଶ୍ରୀମନ୍ଦିର ଦ୍ୱାର କିଳି ଦେଇଛନ୍ତି । ଉଭୟ ପକ୍ଷରେ ଭୟର ବାତାବରଣ ଦେଖି ସେ କହିଲେ ଏ ପ୍ରକାର ଭୟପୂର୍ଣ୍ଣ ବାୟୁମଣ୍ଡଳରେ ହୃଦୟ ପରିବର୍ତ୍ତନ କାର୍ଯ୍ୟ ସାଧିତ ହୋଇ ପାରେ ନାହିଁ । ମୁଁ ଶଙ୍କର, ଚୈତନ୍ୟଙ୍କ ପରି ପାଦରେ ଚାଲି ଚାଲି ଉତ୍କଳ ପରିକ୍ରମା କରିବି । ତାଙ୍କର ତ ଯଦ୍ରୂପ ସଂକଳ୍ପ ତଦ୍ରୂପ କାର୍ଯ୍ୟ । ସେହି ଐତିହାସିକ ପଦଯାତ୍ରା ପାଇଁ ପୁରୀରେ ଆୟୋଜନ ଆରମ୍ଭ ହୋଇଗଲା ।

ଏ ଖବର କଟକରେ ପହଞ୍ଚିବା ମାତ୍ରେ ଆମର ପିଳେହି ପାଣି ହୋଇଗଲା । ସେତେବେଳକୁ ଅରିଲୋ, ଖଣ୍ଡାଇତା ଆଡୁ ଲୋକ ସୁଅ ଛୁଟି ସନ୍‌ସାଇନ୍ ଫିଲ୍ଡ଼ ଉଛୁଳିଲାଣି । ଆମେ ଯେ ଅଭ୍ୟର୍ଥନା ସମିତି ସଦସ୍ୟ ଚାନ୍ଦା ଏବଂ ଗାନ୍ଧିଜୀଙ୍କୁ ହରିଜନ କାମ ପାଇଁ ଭେଟି ଦେବାକୁ 'ଥଳିଭେଟି' ଚାନ୍ଦା ଯାହାଙ୍କଠାରୁ ସଂଗ୍ରହ କରୁଛୁ, ଗାନ୍ଧିଜୀ କଟକ ନ ଆସିଲେ ସେମାନଙ୍କୁ ମୁହଁ ଦେଖାଇବୁ କେମିତି ? ଶେଷ ମୁହୂର୍ତ୍ତରେ କାର୍ଯ୍ୟକ୍ରମ ବଦଳାଇ ଦେଇଥିବାରୁ ମନେ ମନେ ଗାନ୍ଧିଜୀଙ୍କ ଉପରେ ଓ ସଂଚାଳକମାନଙ୍କ ଉପରେ ରାଗୁଥାଉ । କିନ୍ତୁ କହିବୁ କାହାକୁ ? କହିଲେ କୁଳ କୁଟୁମ୍ବକୁ ଲାଜ !

ରମାଦେବୀ ପୁରୀରୁ ଚିଠି ଦେଲେ – ତୁମେ ସମସ୍ତେ ଗାନ୍ଧିଜୀଙ୍କର ବାଳକାଟି ରହଣୀକୁ ଚାଲିଆସ, ସେଠାରୁ ଗାନ୍ଧିଜୀଙ୍କ ପଦଯାତ୍ରାରେ ଯୋଗ ଦେବ । ଆମର ସବୁ ରାଗ ପାଣି ହୋଇଗଲା । ହରିଜନ ବସ୍ତିରେ କାମ କରୁଥିବା ଆମେ ସାତ ଭଉଣୀ, ସୁଶୀଳା, ମଙ୍ଗଳା, ଶୋଭା, ଗୋଦାବରୀ, ମାଣିକ, ତୁଳସୀ, ଅନ୍ନପୂର୍ଣ୍ଣା ତୁରନ୍ତ ବିଛଣା ବାନ୍ଧି ଭୁବନେଶ୍ୱର ବାଟେ ବାଳକାଟି ବାହାରିଲୁ । ପଚାଶ ବର୍ଷ ପୂର୍ବେ ନଦୀରେ ପୋଲ ନ ଥିବାରୁ ଏବ ପରି ଭୁବନେଶ୍ୱରକୁ ବସ୍ ଚାଲୁ ନ ଥିଲା । ରେଳଗାଡ଼ିରେ

ଭୁବନେଶ୍ୱର ଯାଇ ପୁରୁଣା ଜଗନ୍ନାଥ ସଡ଼କରେ ବାଳକାଟିରେ ପହଞ୍ଚିବା ବେଳକୁ ସନ୍ଧ୍ୟା ସଭା ସାରି ପଦଯାତ୍ରୀ ରହଣୀ ସ୍ଥାନକୁ ଚାଲି ଗଲେଣି । ରହଣୀସ୍ଥାନ ଅର୍ଥ ଡାକବଙ୍ଗଳା ବା ସ୍କୁଲ ଘର ନୁହେଁ– ଗଛ ମୂଳ । ବ୍ରିଟିଶ ସରକାରର ଶତ୍ରୁ ଗାନ୍ଧୀଙ୍କୁ କିଏ ଡାକବଙ୍ଗଳା ବା ସ୍କୁଲ ଘରେ ରହିବାକୁ ସ୍ଥାନ ଦେବ ? ଲଣ୍ଠନ ଆଲୁଅରେ ପଦଯାତ୍ରୀମାନେ ରାତ୍ରିଯାପନ ବ୍ୟବସ୍ଥା କାମରେ ଲାଗି ପଡ଼ିଥା'ନ୍ତି । ଯେଉଁ ଦୂରଦୂରାନ୍ତର ଲୋକେ ଗାନ୍ଧୀ ଭାଷଣ ଶ୍ରବଣ, ମନ ପୂରେଇ ଗାନ୍ଧୀ ଦର୍ଶନ ଆଶାରେ ଧାଇଁ ଧାଇଁ ଆସି ସୁଦ୍ଧା ସଭାବେଳକୁ ପହଞ୍ଚି ପାରି ନ ଥା'ନ୍ତି, ସେମାନେ ଖାଲି ଟିକେ ଆଖି ଦେଖା ଦେଖି ଯିବାକୁ ରହଣୀ ଚାରିପଟ ଘେରିଯାଇ ଧସେଇ ପଶିବାକୁ ଚେଷ୍ଟା କରୁଥାନ୍ତି । ସ୍ୱେଚ୍ଛାସେବକମାନେ ସେମାନଙ୍କୁ ବୁଝାଇ ସୁଝାଇ ଅଟକାଇ ରଖିବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାନ୍ତି । ଏହି ପାଲା ଚାଲୁଥିବା ବେଳେ ଆମ ଦଳ ସେଠାରେ ପହଞ୍ଚିଗଲା । ଆମକୁ ଦେଖିବାମାତ୍ରେ ରମାଦେବୀ ଆଦେଶ ଦେଲେ ଭିଡ଼ ସମ୍ଭାଳିବାକୁ ଚାଲିଯାଅ । ଆମେ ହେଉଛୁ ହିନ୍ଦୁସ୍ତାନୀ ସେବାଦଳ ଦ୍ୱାରା ତାଲିମ ପାଇଥିବା ସ୍ୱେଚ୍ଛାସେବିକା !! ବୀର ଦର୍ପରେ ଦୁମୁଦୁମୁ ହୋଇ ଭିଡ଼ ସମ୍ଭାଳିବାକୁ ଧାଇଁଲା ବେଳକୁ ପଛଆଡୁ ଗୋଟିଏ ବୃଦ୍ଧର ସ୍ନେହବୋଳା କଣ୍ଠସ୍ୱର ଶୁଭିଲା – "ଏ ଝିଅ ! କୁଆଡ଼େ ଧାଇଁଛ ?" (ଏ ଲଡ଼କୀ ! କାହାଁ ଭାଗ ରହି ହୋ ?) ଆମକୁ ତ ରାଷ୍ଟ୍ରଭାଷା ଜଣା !! ହିନ୍ଦୀ ଭାଷା ଶୁଣି ପଛକୁ ଚାହିଁଦେଇ ଦେଖିଲି– ଗାନ୍ଧିଜୀ ଗୋଟିଏ ଗଛମୂଳେ ଶୋଇଛନ୍ତି । ଗୋଟିଏ ଲଣ୍ଠନ ଆଲୁଅ ଧିକିଧିକି ହୋଇ ଜଳୁଛି । ଜଣେ ଖଦୀପିନ୍ଧା ଇଂରେଜ ମହିଳା ଓ ଆଉ ଜଣେ ସେଠାରେ କ'ଣ କରୁଛନ୍ତି । ନିଜର ଯୋଗ୍ୟତା ସୂଚେଇବାକୁ ବଡ଼ ତେଜରେ ଜବାବ ଦେଲି – "ଭିଡ଼ ସମ୍ଭାଳିବାକୁ ଯାଉଛୁ ।" ସେ ଭଙ୍ଗାଦାନ୍ତ ଦେଖାଇ ହସି ହସି କହିଲେ, "ହଉ ଯାଅ ।" Love at first sight ବୋଲି ଇଂରାଜୀରେ କ'ଣ ଗୋଟାଏ କଥା ଅଛି ପରା ? ସେଇ କଥାଟା ଘଟିଗଲା । ଦୁଇପଦ କଥା ଟିକିଏ ହସ– ଯେମିତି ଜନ୍ମଜନ୍ମାନ୍ତରର ପରିଚୟ । ଅତି ଆପଣାର, ଅତି ପରିଚିତ, ଠିକ୍ ଆମ ମନୋନୀତ ସାଙ୍ଗ ହୋଇଗଲେ ସେ ଗାନ୍ଧିଜୀ ।

ପଦଯାତ୍ରା ଦୁଇଓଳି ଚାଲିଥାଏ । ପାହାନ୍ତା ପହରରେ ନିଜ କଂସା ଗିଲାସ ଭିତରେ ଚାମୁଚ ହଲେଇ ହଲେଇ ଗାନ୍ଧିଜୀ ଉଠିବା ଘଣ୍ଟା ବଜାନ୍ତି । ତାଙ୍କ ମୁଣ୍ଡ ପାଖରେ ରାତିରୁ ନିର୍ଦ୍ଦିଷ୍ଟ ଦୂରତ୍ୱରେ ତାଙ୍କ ଫାଇଲପତ୍ର, ଛେଚା ଦାନ୍ତକାଠି, ସିଝାପାଣି ବୋତଲ, ପାଣି ଗିଲାସ ରଖା ହୋଇଥାଏ । ଯେପରି ସେ ସବୁ ଖୋଜିବାରେ ବୃଥା ସମୟ ନଷ୍ଟ,

ଶକ୍ତି ନଷ୍ଟ ନ ହେବ, ହାତ ବଢ଼ାଇବା ମାତ୍ରେ ଯଥାସ୍ଥାନରେ ଜିନିଷ ମିଳିଯିବ । ତାଙ୍କ ଗିଲାସଟିର ନାମ ସୁଶୀଳା ପାଇ ଦେଇଥିଲେ ମଲ୍‌ଟି ପର୍‌ପସ୍ । ଦାନ୍ତ ଘଷିବା, ପାଇଖାନାକୁ ଯିବା, ଗାଧୋଇବା, ଛେଳିଦୁଧ ପିଇବା ଆଦି ସର୍ବପ୍ରକାର କାର୍ଯ୍ୟ ସମ୍ପାଦନ କରିବାର ପାତ୍ର ହେଉଛି ସେହି କଂସା ଗିଲାସଟି । ସେଥିପାଇଁ କୁମାରୀ ସୁଶୀଳା ପାଇ କହିଥିଲେ ଯେ ବାପୁଙ୍କ ଅନ୍ତେ ଏହି ଗିଲାସଟିକୁ ସଂଗ୍ରହାଳୟରେ ରଖି ଏହାର ଉପଯୋଗିତା ଲିପିବଦ୍ଧ କରିବାକୁ ହେବ ।

ଘଣ୍ଟା ଶୁଣି ପଦଯାତ୍ରୀ ଦଳ ଯେତେ଼ ଚଞ୍ଚଳ ସମ୍ଭବ ନିତ୍ୟକର୍ମ ସାରି ପ୍ରାତଃ ପ୍ରାର୍ଥନା ପାଇଁ ପ୍ରସ୍ତୁତ ହୋଇଯାଉ । ପଦଯାତ୍ରାରେ ପ୍ରାର୍ଥନା ପରିଚାଳନା କରୁଥିଲେ ବାଲ୍ କାଲେକର୍ । ପ୍ରାର୍ଥନାର କ୍ରମ ଥିଲା– ‘ପ୍ରାତଃ ସ୍ମରାମି’ ଆଦି ଶ୍ଳୋକ ପରେ ଭଜନ, ଭଜନ ପରେ ‘ନାରାୟଣ ନାରାୟଣ ଜୟ ଗୋବିନ୍ଦ ହରେ’ ଧୂନ୍ । ଏକାଦଶ ବ୍ରତ ଓ ଈଶାବାସ୍ୟ ଉପନିଷଦର ପ୍ରଥମ ଶ୍ଳୋକ ସେତେବେଳେ ପ୍ରାର୍ଥନାର ଅନ୍ତର୍ଭୁକ୍ତ ହୋଇ ନ ଥିଲା । ସର୍ବଶେଷରେ ‘ବିପଦୋ ନୈବ ବିପଦୋ’ ବୋଲା ହେବା ପରେ ଗୀତା ପାଠ ହେଉଥିଲା । ପ୍ରାର୍ଥନା ପରେ ପଦଯାତ୍ରୀଦଳ ଗ୍ରାମବାସୀଙ୍କ ଦ୍ୱାରା ପ୍ରଦତ୍ତ ଜଳଖିଆ ଖାଇ ନିଜର ଭାରି ଜିନିଷଗୁଡ଼ିକ ନିର୍ଦ୍ଦିଷ୍ଟ ସ୍ଥାନରେ ଥୋଇ ହାଲୁକା ଜିନିଷଗୁଡ଼ିକ ଧରି ଯାତ୍ରା ପାଇଁ ପ୍ରସ୍ତୁତ ହୋଇ ରହୁ । ଜଳଖିଆରେ ସାଧାରଣତଃ ଚୂଡ଼ା, ଗୁଡ଼, ଦହି ବା ଚୂଡ଼ା, ଗୁଡ଼, ନଡ଼ିଆ କିମ୍ବା ଆମ୍ବ, ଚୂଡ଼ା ଦିଆ ଯାଉଥିଲା । ସ୍ଥାନୀୟ ଯାତ୍ରୀଙ୍କର ଗୋଟିଏ ଅଧିକା କାମ ଥିଲା– ଅଇଁଠାପତ୍ର ପକାଇବା ଖାତ ଓ ପାଇଖାନା ପାଇଁ ଖୋଳା ହୋଇଥିବା ଗାତ ପୋତିବା ଏବଂ ରୋଷେଇ ବାସନ ଆଦି ଯଥା ସ୍ଥାନକୁ ଗଲା କି ନାହିଁ ତାହାର ତଦ୍‌ବିର୍ କରିବା । ଯାତ୍ରା ଆରମ୍ଭ ହେବା ପୂର୍ବ ପର୍ଯ୍ୟନ୍ତ ଗାନ୍ଧିଜୀ ନିବିଷ୍ଟ ଚିତ୍ତରେ ଚିଠି ଲେଖାପଢ଼ା ବା ସେହିପରି କିଛି କାମ କରୁଥାନ୍ତି କିମ୍ବା କାହାରି ସାଙ୍ଗରେ କଥାବାର୍ତ୍ତା ହେଉଥାନ୍ତି, ହଠାତ୍ ନିଜ ଅଣ୍ଟାରୁ ଘଣ୍ଟାଟି କାଢ଼ି ଦେଖି ନିଜର ଝୁଲାମୁଣି ଓ ଫାଷ୍ଟଏଡ୍ ଥଳି ଠିକ୍ ଅଛି କି ନାହିଁ ଅଣାଳି ଦେଖି କାହାରିକୁ ଡକାହକା ନ କରି ଯାତ୍ରା ଆରମ୍ଭ କରି ଦିଅନ୍ତି । ସମୟ କଳିବା ବାବଦରେ ତାଙ୍କର ଗୋଟିଏ ଷଷ୍ଠ ଇନ୍ଦ୍ରିୟ ଥିଲା ପରି ମନେହୁଏ । ଯେତେଟାବେଳେ ତାଙ୍କର ଖାଇବା କଥା, ସେ ଅଣ୍ଟାରୁ ଘଣ୍ଟା କାଢ଼ିବା ବେଳକୁ ଠିକ୍ ସେତିକି ବାଜିଥାଏ । ଯେତିକିବେଳେ ଯାହା ସହିତ କଥାବାର୍ତ୍ତା କରିବାକୁ ସେ କହିଥିବେ, ଅଣ୍ଟାଘଣ୍ଟା କାଢ଼ିଲା ବେଳକୁ ଠିକ୍ ସେତିକିଟା ବାଜିଥାଏ । ଯାହାହେଉ ଗାନ୍ଧିଜୀ ଚାଲିବା ଆରମ୍ଭ କରିବା ମାତ୍ରେ ସମସ୍ତେ ତାଙ୍କ ପଛେ ପଛେ ଚାଲିବା ଆରମ୍ଭ କରୁ । ଯଦି କେହି

ଅନ୍ୟମନସ୍କ ହୋଇ ବା ଅନ୍ୟ କାମ ହେତୁ ଟିକିଏ ପଛରେ ରହିଯାଆନ୍ତି ସେଦିନ ତାଙ୍କ ଭାଗ୍ୟରେ ଅଣନିଃଶ୍ୱାସିଆ ଦଉଡ଼ା ଲେଖାଥାଏ ବୋଲି ବୁଝିବାକୁ ହେବ । କାରଣ ଗାନ୍ଧିଜୀ ଖୁବ୍ ଦ୍ରୁତଗତିରେ ଚାଲନ୍ତି, ଆବଶ୍ୟକ ବୋଧ କଲେ ଦଉଡ଼ନ୍ତି ମଧ୍ୟ । ସାଧାରଣତଃ ଦୁଇଜଣଙ୍କ ଦୁଇ କାନ୍ଧରେ ହାତ ପକାଇ ଆଲୋଚନା କରି କରି ବା ଚିହ୍ନାପରିଚୟ ହେବା କାମଟା ସେ ଏହି ବାଟଚଲା ବେଳେ ସାରନ୍ତି । ଗାନ୍ଧିଜୀ ଦଉଡ଼ିବା ଆରମ୍ଭ କରିଦେଲେ ତାଙ୍କର ଜୀବନ୍ତ ଯଷ୍ଟିଙ୍କ ଅବସ୍ଥା ଶୋଚନୀୟ ହୋଇଯାଏ ।

ଯାତ୍ରୀଙ୍କ ବିଛଣାପତ୍ର, ହରିଜନ ସେବକ ସଂଘର ଭ୍ରାମ୍ୟମାଣ ଦଫ୍‌ତରର କାଗଜପତ୍ର, ଟାଇପ୍ ରାଇଟର୍ ଆଦି ବଳଦଗାଡ଼ିରେ ବୋଝେଇ ହୋଇ ପରବର୍ତ୍ତୀ ରହଣୀକୁ ନିଆଯାଏ । ଥରେ ବମ୍ବେରୁ ଆସିଥିବା ଜଣେ ପଦଯାତ୍ରୀ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ଗାନ୍ଧିଜୀ ତୁରନ୍ତ ନିର୍ଦ୍ଦେଶ ଦେଲେ ଯେ ସେହି ଅସୁସ୍ଥ ଭାଇ ଜଣକ ବଳଦ ଗାଡ଼ିରେ ଯିବେ । ବାକି ସମସ୍ତେ ନିଜ ନିଜ ବିଛଣା ନିଜେ ନିଜେ ବୋହିବେ । ଆମେ ତ ସେବାଦଳ ତାଲିମ ପ୍ରାପ୍ତ ! ! ରୁଟ୍ ମାର୍ଚ୍ଚରେ ଗଲାଭଳି ବିଛଣା ବାନ୍ଧି କାନ୍ଧରେ ପକାଇ ବାଟ ଚାଲି ଗାନ୍ଧିଜୀଙ୍କ ବାହାବାହା ହାସଲ କରିନେଲୁ ।

ମାଧ୍ୟାକର୍ଷଣ ଶକ୍ତି ଭଳି ପ୍ରେମର କି ଅପୂର୍ବ ଅଦୃଶ୍ୟ-ଶକ୍ତି ! ସେ ପ୍ରେମ-ଶକ୍ତି ଦୂରଦୂରାନ୍ତରୁ ଲୋକଙ୍କୁ ଗାନ୍ଧିଜୀଙ୍କ ପାଖକୁ ଟାଣି ଆଣୁଥାଏ । ବାଟଯାକ ଲୋକେ ଠାଆକୁ ଠାଆ ଜମା ହୋଇଥାନ୍ତି । ଗାନ୍ଧିଜୀଙ୍କୁ ଦେଖିବା ମାତ୍ରେ ହରିବୋଲ ହୁଳହୁଳି ଶବ୍ଦରେ କାନରେ ଅତଡ଼ା ପଡ଼େ । ବାଟ ଗାଁର ଲୋକେ କୀର୍ତ୍ତନ କରିକରି ଗାନ୍ଧିଜୀଙ୍କ ପଛରେ ଚାଲନ୍ତି । ସେମାନଙ୍କ ପଦଧୂଳିରେ କିପରି ଗାନ୍ଧିଜୀ ଆଚ୍ଛାଦିତ ନ ହେବେ ସେ ଦିଗରେ ସମସ୍ତେ ଦୃଷ୍ଟି ରଖନ୍ତି ।

ରହଣୀରେ ପହଞ୍ଚିବା ବେଳକୁ ଦୂରଦୂରାନ୍ତରୁ ଆସିଥିବା ଲୋକେ ରୁଣ୍ଡ ହୋଇ ସାରିଥାନ୍ତି । ତେଣୁ ଗାନ୍ଧିଜୀ ପହଞ୍ଚିବା ମାତ୍ରେ ସଭାରେ ଭାଷଣ ଦିଅନ୍ତି । ଅସ୍ପୃଶ୍ୟତାରୂପୀ ପାପରୁ ମୁକ୍ତ ହେବାକୁ, ଆଳସ୍ୟ ଛାଡ଼ିବାକୁ, ନିଶାଦ୍ରବ୍ୟ ବର୍ଜନ କରିବାକୁ, ପରିଷ୍କାର ପରିଚ୍ଛନ୍ନ ରହିବାକୁ ସେ ଲୋକଙ୍କୁ ବୁଝାନ୍ତି । ସ୍ତ୍ରୀ ଲୋକଙ୍କୁ ଗହଣା ଓ ପର୍ଦ୍ଦା ଛାଡ଼ିବା ପାଇଁ କହନ୍ତି । ଦେହ ମିହନତ ନ କରି ଖାଉଥିବା ମଣିଷ ଚୋର– ଏହି କଥାଟି ସେ ପ୍ରାୟ ପ୍ରତି ସଭାରେ କହୁଥାନ୍ତି । ଗାନ୍ଧିଜୀ ରାଷ୍ଟ୍ରଭାଷାରେ ବକ୍ତୃତା ଦେଉଥିବାରୁ ରାଜକୃଷ୍ଣ ବୋଷ ତାଙ୍କ ବକ୍ତୃତା ଅନୁବାଦ କରନ୍ତି । ସେ ନ ଥିଲେ ଗୋପବନ୍ଧୁ ଚୌଧୁରୀ ତାହା କରନ୍ତି । ବକ୍ତୃତା ସରିବା ମାତ୍ରେ ହରିଜନ କାମ ପାଇଁ ଗାନ୍ଧିଜୀ ନିଜେ ଲୋକଙ୍କ

ପାଖରେ ହାତ ପତେଇ ଚାନ୍ଦା ମାଗନ୍ତି । ତାଙ୍କୁ ବାଉଁଶ ତିଆରି ଡାଲା ବାଉଁଶିଆଠାରୁ ଆରମ୍ଭ କରି ସୁନାହାର ସୁନାଚୁଡ଼ି ଯାଏ ବିଭିନ୍ନ ପ୍ରକାର ଭେଟି ମିଳେ । ଏ ଭେଟିଗୁଡ଼ିକୁ ଗାନ୍ଧିଜୀ ନିଜେ ନିଲାମ କରନ୍ତି । ଆମେ ମଧ୍ୟ ଲୋକଙ୍କ ଭିତରେ ବୁଲି ବୁଲି ପଣତ ପତରେ ଚାନ୍ଦା ମାଗୁ । ଅଧଲାଏ ପାହୁଲାଏ ସୁଦ୍ଧା ଲୋକେ ଦେଉଥିବାର ଦେଖା ଯାଇଛି । ମୁଖମୁଦ୍ରାରେ ଗଭୀର ଶ୍ରଦ୍ଧାର ରେଖା ଦାତା ମୁହଁରେ ଫୁଟି ଉଠିଥାଏ । ପରିମାଣ ବଡ଼ ନୁହେଁ । ବଡ଼ "ଶ୍ରଦ୍ଧୟା ଦେୟମ୍ ।"

ସଭା ସରିଲେ ଆମେ ପରିବା ପତ୍ର କାଟିବା, ଗୁଟି ତିଆରି ଆଦି କାମରେ ସାହାଯ୍ୟ କରି ରହଣୀ ନିକଟସ୍ଥ ହରିଜନ ବସ୍ତିକୁ ତଥ୍ୟ ସଂଗ୍ରହ କରିବାକୁ ଯାଉ । ହରିଜନ ବସ୍ତି ସଫାଇ କରିବା, ହରିଜନ ପିଲାଙ୍କୁ ଡାକିଆଣି ଗାଧୁଆଇ ଦେଇ ଧାଡ଼ିରେ ବସାଇ ଖୁଆଇ ରାମଧୂନ୍ ଶିଖାଇବା ମଧ୍ୟ ଆମର ଗୋଟାଏ କାମ ଥିଲା । ପ୍ରଫେସର ମାଲକାନୀ, ଲାଲା ଅଚିନ୍ତରାଇ, କୃଷ୍ଣ ମେନନ୍, ବାଲ୍ କାଲେଲକର୍ ଆଦି ବହିରାଗତ ଅତିଥି ମଧ୍ୟ ଆମ ସାଙ୍ଗରେ ହରିଜନ ବସ୍ତିକୁ ଯାଉଥିଲେ । ଦାମୋଦର ଦାସ ମୁଁଦଡ଼ା, ଦେବରାଜ ଓ ପୃଥ୍ୱୀରାଜ ସଂଘର ଦଫ୍ତର ସମ୍ଭାଳିବା, ଟାଇପ୍ କରିବା, ହିସାବପତ୍ର ରଖିବା, ଚିଠିପତ୍ରର ଜବାବ ଦେବା କାମରେ ଠକ୍କର ବାପାଙ୍କୁ ସାହାଯ୍ୟ କରୁଥିଲେ । ମୀରାବେନ୍ ଓ ସୁଶୀଳା ପାଇ ଗାନ୍ଧିଜୀଙ୍କୁ ଚିଠି ପତ୍ର ଲେଖା କାମରେ ସାହାଯ୍ୟ କରୁଥାନ୍ତି । ଜୟ ପ୍ରକାଶ ନାରାୟଣଙ୍କ ସ୍ତ୍ରୀ ପ୍ରଭାବତୀ ଦେବୀ ଗାନ୍ଧିଜୀଙ୍କ ପାଇଁ ଅଲଗା ଲାଉ ସିଝା ରାନ୍ଧିବା, ଛେଳିଦୁଧ ଆଉଟିବା, ଜିନିଷପତ୍ରର ଯତ୍ନ ନେବା କାମ, ବାଲ୍‌ଜୀ ଗୋବିନ୍ଦଜୀ ଦେଶାଇ ସାପ୍ତାହିକ ହରିଜନ ପତ୍ରିକା ପାଇଁ ଲେଖାଲେଖି କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ସାଂସ୍କୃତିକ ଇତିହାସ ଅଧ୍ୟୟନ କରିବା ମାନସରେ ଆମଠାରୁ ଓଡ଼ିଆ ଶିଖି 'ନୀଳାଦ୍ରୀ ମହୋଦୟ' ପଢ଼ି ଲାଗିଥାନ୍ତି । ସେ ଏତେ ଅଧ୍ୟୟନଶୀଳ ଯେ ବାଟରେ ଚାଲିବା ବେଳେ ସୁଦ୍ଧା ବହି ପଢୁଥିଲେ । ଜମନାଲାଲ୍ ବାଜାଜ୍‌ଙ୍କ ଝିଅ ଉମା ଥିଲା ସବ୍‌ସେ ଛୋଟୀ, ସବ୍‌ସେ ଖୋଟୀ, ସବ୍‌ସେ ମୋଟୀ । କୋଟିପତି କନ୍ୟା ହୋଇ ସୁଦ୍ଧା ସେ ପଦଯାତ୍ରାର ସମସ୍ତ ଅସୁବିଧା ଅମ୍ଳାନ ବଦନରେ ସହି ଯାଉଥାନ୍ତି – ବରଂ ଉପଭୋଗ କରୁଥାନ୍ତି କହିଲେ ଠିକ୍ ହେବ । ପଣ୍ଡିତ ନୀଳକଣ୍ଠ ଦାସ, ଗୋପବନ୍ଧୁ ଚୌଧୁରୀ ଆଦି ଓଡ଼ିଶାର ବନ୍ୟା ଆଦି ବିଭିନ୍ନ ସମସ୍ୟା ଉପରେ ବହିରାଗତ ପଦଯାତ୍ରୀଙ୍କ ଆଗରେ ଭାଷଣ ଦିଅନ୍ତି । ଉମା ବାଜାଜ୍ ସେ ସବୁର ନୋଟ୍ ପ୍ରସ୍ତୁତ କରି ଗାନ୍ଧିଜୀଙ୍କୁ ଦିଅନ୍ତି । ଏ ସବୁ ନୋଟ୍ ଓ ଆମେ ହରିଜନ ବସ୍ତିରୁ ସଂଗ୍ରହ କରି ଆଣିଥିବା ତଥ୍ୟକୁ ଉଲ୍ଲେଖ

କରି ଦିନେ ଦିନେ ଗାନ୍ଧିଜୀ ସଭାରେ ବକ୍ତୃତା ଦିଅନ୍ତି । ତାହା ଶୁଣି ଆମ ମନ କୁଣ୍ଢେ ମୋଟ ହୋଇଯାଏ । "ଅମାନିନଂ ମାନଦେନ" ହେଲା ଗାନ୍ଧିଜୀଙ୍କର ସହଜାତ ପ୍ରବୃତ୍ତି । ଆଉ ଜଣେ ପଦଯାତ୍ରୀ ଥିଲେ ଜର୍ମାନୀର ବ୍ୟୁଟୋ ସାହେବ । ସେ ଜଣେ ନାଜି । ସେଥିପାଇଁ ରାଜକୃଷ୍ଣ ବାବୁ ତାଙ୍କ ସଙ୍ଗେ ପରିହାସ ଖେଳନ୍ତି 'ନାଜିସ୍ ଆର୍ ପାଜିସ୍' ।

ଆମ ପ୍ରଦେଶର କର୍ମୀଙ୍କୁ ମଧ୍ୟ ନାନା ଦାୟିତ୍ୱ ବଣ୍ଟା ହୋଇଥାଏ । ସର୍ବଶ୍ରୀ ଗୁଣନିଧି ମହାନ୍ତି ଓ ସୁରେନ୍ଦ୍ର ପଟ୍ଟନାୟକ ଥିଲେ ଅଗ୍ରଗାମୀ ଦଳ ବା ଆଡ୍‌ଭାନ୍‌ସ ପାର୍ଟି । ସେମାନେ ଆଗରୁ ରହଣୀ ସ୍ଥାନକୁ ଯାଇ ସର୍ବପ୍ରକାର ବ୍ୟବସ୍ଥା ତଦାରଖ କରୁଥିଲେ । ରମାଦେବୀ ପ୍ରାଦେଶିକ ହରିଜନ ସେବକ ସଂଘର ସମ୍ପାଦକ ଭାବରେ ପଦଯାତ୍ରାର ତତ୍ତ୍ୱାବଧାନ କରୁଥିଲେ । ରାଜକୃଷ୍ଣ ବାବୁ ଥିଲେ His Master's Voice ଅର୍ଥାତ୍ ଅନୁବାଦକ । ଗୋପବନ୍ଧୁ ଚୌଧୁରୀ ବହିରାଗତ ଅତିଥିଙ୍କୁ ସେମାନେ ଓଡ଼ିଶା ବିଷୟରେ ଜାଣିବାକୁ ଚାହୁଁଥିବା ବିଷୟ ଜଣାଇବା ଓ ଯୋଗସୂତ୍ର ରକ୍ଷା କରିବା ଆଦି କାମ କରୁଥିଲେ । ମନମୋହନ ଚଉଧୁରୀ ଓ ବିନୋଦ କାନୁନ୍‌ଗୋ ଥିଲେ ସମ୍ବାଦଦାତା । ଫଟୋଗ୍ରାଫରର ଦାୟିତ୍ୱ ମଧ୍ୟ ମନମୋହନ ଚଉଧୁରୀ ତୁଲାଉଥିଲେ । କୁଜଙ୍ଗର ଜଗନ୍ନାଥ ଶତପଥୀ ରୋଷେଇ ବ୍ୟବସ୍ଥା ଓ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ରୋଷେଇ ସାରିବା ଦାୟିତ୍ୱରେ ଥିଲେ । ଈଶ୍ୱରଲାଲ ବ୍ୟାସ ଥିଲେ ସମୟରକ୍ଷକ । କଂସା ଥାଳି ହୋଇଥାଏ ତାଙ୍କର ଘଣ୍ଟା ଓ କରଚୁଲୀ ହୋଇଥାଏ ପିଟଣା । ମଝିରେ ମଝିରେ ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ମାଳତୀ ଚୌଧୁରୀ, ରାଧାନାଥ ରଥ, ସତ୍ୟନାରାୟଣ ସେନଗୁପ୍ତ ପ୍ରମୁଖ ଗାନ୍ଧିଜୀଙ୍କୁ ଭେଟିବାକୁ ଆସୁଥିଲେ । ବହିରାଗତ ଅତିଥିଙ୍କ ମଧ୍ୟରେ ଥିଲେ ଆଗାଥା ହ୍ୟାରିସନ୍ (ଇଂଲଣ୍ଡ) ପିୟେର୍ ସେରିସୋଲ୍ (ସ୍ୱିଜରଲ୍ୟାଣ୍ଡ), ମିନୁ ମାଶାନି, ବିୟୋଗୀ ହରି, ସତୀଶଚନ୍ଦ୍ର ଦାସଗୁପ୍ତ ପ୍ରଭୃତି ।

ମଧ୍ୟାହ୍ନ ଭୋଜନ ପରେ କିଛି ସମୟ ବିଶ୍ରାମ କରି ସାରି ବହିରାଗତ ବିଦ୍ୱାନ୍ ଅତିଥିମାନେ ଆମମାନଙ୍କୁ ଭାଷଣ ଶୁଣାନ୍ତି । ଯଥା – ବିୟୋଗୀ ହରି ହିନ୍ଦୀ ସାହିତ୍ୟର ଇତିହାସ ଉପରେ ଭାଷଣ ଦେବା ସ୍ଥଳେ ସତୀଶ ଚନ୍ଦ୍ର ଦାସଗୁପ୍ତ ହରିଜନ ସମସ୍ୟା ଉପରେ କହନ୍ତି । ତାହାପରେ ପରବର୍ତ୍ତୀ ରହଣୀକୁ ଯିବା ପାଇଁ ବନ୍ଧାବନ୍ଧି ସଜଡ଼ା ସଜଡ଼ି ଆରମ୍ଭ ହୁଏ । ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ ପର୍ବ ସାରିଦେଇ ଯାତ୍ରା ଆରମ୍ଭ ହୁଏ । ବାଟରେ ସେହି ଜନସମାବେଶ, ଶଙ୍ଖ ହୁଳହୁଳି ନାଦ, ହରିନାମ ସଂକୀର୍ତ୍ତନ ଚାଲେ । ରହଣୀରେ ପହଞ୍ଚି ସନ୍ଧ୍ୟା ପ୍ରାର୍ଥନା ପରେ ସଭା ହୁଏ । ପ୍ରାର୍ଥନାରେ ପ୍ରଥମେ

'ୟଂ ବ୍ରହ୍ମା ବରୁଣେନ୍ଦ୍ର' ତାହାପରେ ସ୍ଥିତପ୍ରଜ୍ଞ ଲକ୍ଷଣ, ଭଜନ ଓ ଧୂନ୍ ବୋଲାହୁଏ । ପ୍ରାର୍ଥନା ପରେ ସଭା ସରିଲେ ପଣତ ପତେଇ ଚାନ୍ଦା ମାଗିବା ପର୍ବ । ସଭା ମଉଳିଲେ ଯାତ୍ରୀଦଳ ରାତ୍ରି କଟାଇବା ଆୟୋଜନରେ ଲାଗନ୍ତି । ଅଧିକାଂଶ ଦିନ ଗଛମୂଳ, ନଦୀକୂଳ, ଗାଁମୁଣ୍ଡ ଖୋଲା ପଡ଼ିଆରେ ରାତି କଟେ । ଦିନେ ଦିନେ ବ୍ୟକ୍ତିଗତ ଘର ମିଳିଯାଏ, ତାହା କ୍ୱଚିତ୍ ।

ଏହିପରି ଭାବରେ ବାଟ ସାରି ସାରି ଯାତ୍ରୀଦଳ ଆସି ପହଞ୍ଚିଲେ କଟକର ଉପକଣ୍ଠ କାଜିପାଟଣାରେ । ମେ'ମାସ ଖରାରେ ଚରଣଗାଡ଼ିରେ ଆମେ କଟକ ସହରରେ ବୁଲି ବୁଲି କାଠଯୋଡ଼ି ବାଲିରେ ସାଧାରଣସଭା ହେବା କଥା ପ୍ରଚାର କଲୁ । ସଭାରେ ଜନ ସମାଗମ ଦେଖି ଖରାରେ ବୁଲିବା କଷ୍ଟ ପାଶୋର ଗଲା । ଏହି ସଭାରେ ସ୍ୱାମୀ ଲାଲନାଥ, ପଣ୍ଡିତ ପରୀକ୍ଷିତ ଦାଶ ଶର୍ମା ପ୍ରମୁଖ ଗାନ୍ଧିଜୀଙ୍କୁ କଳାପତାକା ଦେଖାଇବାକୁ ଶୋଭାଯାତ୍ରା କରି ଆସିଲେ । ଲୋକେ କଳାପତାକାଧାରୀଙ୍କୁ ଦେଖି ଉତ୍ତେଜିତ ହୋଇ ପାଟିତୁଣ୍ଡ ଆରମ୍ଭ କରିଦେଲେ । ଗାନ୍ଧିଜୀ ଅତ୍ୟନ୍ତ ଧୀର ଶାନ୍ତ ସ୍ୱରରେ କଳାପତାକାଧାରୀଙ୍କୁ ସଭା ଭିତରକୁ ଆସିବାପାଇଁ ବାଟ ଛାଡ଼ି ଦେବାକୁ ଲୋକଙ୍କୁ ଅନୁରୋଧ କଲେ । ହଜରତ ମୂସାଙ୍କୁ ବାଟ କରିଦେବା ପାଇଁ ସମୁଦ୍ର ଦୁଇଭାଗ ହୋଇଗଲା ପରି ସେ ଜନସମୁଦ୍ର ନୀରବରେ ସେମାନଙ୍କୁ ବାଟ ଛାଡ଼ିଦେଲା । ଗାନ୍ଧିଜୀ ସ୍ୱାମୀ ଲାଲନାଥଙ୍କୁ ପ୍ରଥମେ ତାଙ୍କ ଭାଷଣ ଶୁଣାଇବାକୁ ଅନୁରୋଧ କଲେ । ଗୈରିକବସନଧାରୀ ମୁଣ୍ଡିତମସ୍ତକ ତପ୍ତକାଞ୍ଚନବତ୍ ତେଜସ୍ୱୀ ସେହି ସନ୍ନ୍ୟାସୀ ଅତ୍ୟନ୍ତ ଓଜସ୍ୱିନୀ ଭାଷାରେ ଶାସ୍ତ୍ରପୁରାଣ ଉଦ୍ଧୃତି କରି ଅସ୍ପୃଶ୍ୟତା ଧର୍ମସମ୍ମତ ବୋଲି ପ୍ରତିପାଦନ କଲେ । ତାଙ୍କ ଭାଷଣ ପରେ ତପଃରତ, କ୍ଷୀଣଦେହା, ଆଜାନୁଲମ୍ବିତ ଭୁଜ, ଦୀର୍ଘନାସା ମହାତ୍ମା ଗାନ୍ଧୀଙ୍କର ଅତ୍ୟନ୍ତ ଧୀର ଶାନ୍ତ ଶୈଳୀ ବକ୍ତୃତା ଫିକା ହୋଇଯିବାଟା ହିଁ ସ୍ୱାଭାବିକ । ମାତ୍ର "ସତ୍ୟମେବ ଜୟତେ ନାନୃତଂ" ଗାନ୍ଧିଜୀ ଅତ୍ୟନ୍ତ ଧୀର ଅଥଚ ଦୃଢ଼ ସ୍ୱରରେ ସଂକ୍ଷେପରେ କହିଲେ– ଅସ୍ପୃଶ୍ୟତା ମାନବର ଧର୍ମ ହୋଇ ନ ପାରେ । ଏହା ହିନ୍ଦୁଶାସ୍ତ୍ରସମ୍ମତ ଆଚରଣ ନୁହେଁ । ଯଦି ହିନ୍ଦୁ ଧର୍ମଶାସ୍ତ୍ର ଏହି ପାପକୁ ଅନୁମୋଦନ କରୁଥାଏ ତେବେ ମାନବିକତା ଦୃଷ୍ଟିରୁ ହିନ୍ଦୁ ଧର୍ମର ସେ ଶାସ୍ତ୍ରବଚନ ମୁଁ ମାନିବି ନାହିଁ । ତାଙ୍କ ଭାଷଣ ପରେ ମହାତ୍ମାଗାନ୍ଧୀଙ୍କ ଜୟଧ୍ୱନୀରେ ସେ ସ୍ଥାନ ପ୍ରକମ୍ପିତ ହେଲା ।

ସନ୍ଧ୍ୟାବେଳେ ରାମଚନ୍ଦ୍ରଭବନରେ ମହିଳା ସଭାରେ ଭାଷଣ ଦେଇ ସେମାନଙ୍କଠାରୁ କିଛି ଅଳଙ୍କାର ସଂଗ୍ରହ କରି ଗାନ୍ଧିଜୀ ଶ୍ରୀ ଭିକାରୀ ଚରଣ ପଟ୍ଟନାୟକଙ୍କ କୁଟୀରଶିଳ୍ପ

ଅନୁଷ୍ଠାନ ଦେଖିବାକୁ ଗଲେ ଏବଂ ଭିଡ଼ରୁ ରକ୍ଷା ପାଇବା ପାଇଁ ତାଙ୍କରି ଘର ପଛପଟ ଦ୍ୱାର ବାଟେ ବାହାରି ମଠସାହି ବାଟେ ଷ୍ଟେସନକୁ ଚାଲିକରି ଗଲେ । ସେଠାରୁ ଟ୍ରେନ୍‌ରେ ପାଟନା ଯାଇ ସେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକରେ ଯୋଗଦେବା ସ୍ଥିର ହୋଇଥାଏ । ଗଲାବେଳେ ଆମ ମୁଣ୍ଡ ଥାପୁଡ଼େଇ ଆଶ୍ୱାସନା ଦେଇଗଲେ — ମୁଁ ଆସିବି ।

ସେ ଆସିଲେ । ବୈରୀ ଷ୍ଟେସନରେ ସେଦିନ ଡାକଗାଡ଼ି ଅଟକିଲା । ଗାଡ଼ିରୁ ଓହ୍ଲାଇ ସେ ଚମ୍ପାପୁର ହାଟ ଆଶ୍ରମକୁ ଗଲେ । ସେଠାରୁ ପୁଣି ପଦଯାତ୍ରା ଆରମ୍ଭ ହେଲା । ଚମ୍ପାପୁର ହାଟ ଆଶ୍ରମରେ ଶ୍ରୀ ଗୋବିନ୍ଦ ମିଶ୍ର ଗୋଟିଏ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ କରିଥିଲେ । ତାହାକୁ ଲକ୍ଷ୍ୟ କରି ସେ ସୂଚାଇଲେ ଯେ ଦେଶ-ସେବକ ବା ଗ୍ରାମସେବକର ଡାକ୍ତରଖାନା କରାଇ ବା କୋଠାଘର ତୋଳାଇ ହଜାର ହଜାର ରୋଗୀଙ୍କୁ ଔଷଧ ଦେବାଟା ଲକ୍ଷ୍ୟ ହେବା ଉଚିତ ନୁହେଁ । ନିଜେ କୋଠାଘର ଛାଡ଼ି ଚାଳଘରେ ରହି ଗାଁଲୋକଙ୍କୁ ସଫାସୁତୁରା ରହିବା ଶିକ୍ଷା ଦେବା ଉଚିତ୍ ଏବଂ ରୋଗ କିପରି ଆଦୌ ନ ହେବ ସେହି ଶିକ୍ଷା ଲୋକଙ୍କୁ ଦେବା ଉଚିତ । ସେହିପରି ବହୁଗ୍ରାମ ଯିବା ବାଟରେ ସଡ଼କ କଡ଼ରେ କେହି ମଳତ୍ୟାଗ କରିଥିବାର ଦେଖି ସେ କହିଲେ — "ଏହା ହେଉଛି ସାକ୍ଷାତ୍ ପାପ । ଏ ପାପକୁ ଏ ଦେଶରୁ ଦୂର କରିବାକୁ ହେବ ।" ଏହିପରି ଭାବରେ ଅସ୍ପୃଶ୍ୟତା, ଆଳସ୍ୟ, କର୍ମବିମୁଖତା, ଅପରିଚ୍ଛନ୍ନତା, ବ୍ୟସନ, ଅଳଙ୍କାର ଓ ପର୍ଦାପ୍ରଥା ଆଦି ସଂସ୍କାରହୀନତା ଉପରେ ସେ ପ୍ରହାର ଦେଇ ଦେଇ ଚମ୍ପାପୁରହାଟ, ଭେଡ଼ା, ଲେଖନପୁର, ସତ୍ୟଭାମାପୁର, ବହୁଗ୍ରାମ, ଶିଶୁଆ, ଝିଗିନିପାଟପୁର, ନିଶ୍ଚିନ୍ତକୋଇଲି, କାକଟିଆ, ସଲାର, ବାଲିଆଭାଗବତପୁର, ତାରପୁର, ବାରିମୂଳ, ଇନ୍ଦୁପୁର, ଅନ୍ନ୍ୟାସୀପୁର, ବରୀ, ସାହସଗୋବିନ୍ଦପୁର, ପୁରୁଷୋତ୍ତମପୁର ଦେଇ ବୁଢ଼ାଘାଟରେ ପହଞ୍ଚିଲେ ।

ପଦଯାତ୍ରାରେ କେଉଁଠି ଆମ୍ବ ଚୋପା ପଡ଼ିଛି, କାହା ଗୋଡ଼ରେ କଣ୍ଟା ପଶିଛି, କାହାକୁ ଜ୍ୱର ହେଲାଣି, ଭାତ, ରୁଟି ଯଦି ବଳିଲା ତା'ର ଯଥାର୍ଥ ଉପଯୋଗ ହେଲା କି ନାହିଁ, ପାଇଖାନା ପାଇଁ ଖୋଳା ହୋଇଥିବା ଗାତ ରହଣୀ ଛାଡ଼ିବା ପୂର୍ବରୁ ପୋତା ହେଲାକି ନାହିଁ ଆଦି ଛୋଟ ଛୋଟ କଥା ସେ ତଦାରଖ କରନ୍ତି, ପରାମର୍ଶ ଦିଅନ୍ତି । ତାହା ସଙ୍ଗେ ସଙ୍ଗେ ସମଗ୍ର ଭାରତବର୍ଷ ମଧ୍ୟ ତାଙ୍କ ଆଖିରେ ନାଚୁଥାଏ । ବିହାରରେ ପ୍ରବଳ ଭୂମିକମ୍ପ ହୋଇ ତାହା ଧ୍ୱଂସ ସ୍ତୂପରେ ପରିଣତ ହୋଇଥାଏ । ବଞ୍ଚିଥିବା ଲୋକଙ୍କର ପୁନର୍ବସତି ଓ ଗାଁଗୁଡ଼ିକର ପୁନର୍ଗଠନା ବିଷୟରେ ସେ ଆଲୋଚନା କରୁଥାନ୍ତି ସ୍ୱିଜରଲ୍ୟାଣ୍ଡର ଇଞ୍ଜିନିୟର ପିୟେର ସେରିସୋଲଙ୍କ ସାଙ୍ଗରେ । ସେରିସୋଲ ନିଜେ ବିହାର ଯାଇ ବାସ୍ତବ ସ୍ଥିତି ଦେଖି ଆସି ପୁଣି ସେଠାକୁ ଯାଇ ପୁନର୍ଗଠନା କାମ କରିବା

କଥା ଥାଏ । ସେ ଗାନ୍ଧିଜୀଙ୍କ ପରାମର୍ଶ ଲୋଡୁଥାନ୍ତି । ମିନୁ ମାଶାନୀ ଆସିଥାନ୍ତି ନବଗଠିତ କଂଗ୍ରେସ ସୋସାଲିଷ୍ଟ ପାର୍ଟିର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଜଣାଇବାକୁ । ଦେଶର ନାନା ସମସ୍ୟା ଘେନି ଯେଉଁ ଚିଠି ପ୍ରତିଦିନ ଆସି ଗଦା ହେଉଥାଏ 'ହରିଜନ' ପତ୍ରିକାରେ ତା'ର ସମାଧାନ ଲେଖିବାକୁ ସେ କାଗଜ କଲମ ଧରି ବସନ୍ତି । ଡାହାଣ ହାତରେ ଲେଖି ଲେଖି ହାତ ନ ଚଳିଲେ ବାଆଁ ହାତରେ ଲେଖା ଆରମ୍ଭ ହୁଏ । ଏହିପରି ଭାବରେ ସେହି ବିଚିତ୍ରକର୍ମା ପୁରୁଷ ଲୋକ ଅମଡ଼ା ମାଡ଼ି ଆଗେଇ ଚାଲିଥା'ନ୍ତି ଚରୈବେତି ଚରୈବେତି ମନ୍ତ୍ରକୁ ସାର୍ଥକ କରି ।

ଯେଉଁଦିନ ବୁଢ଼ାଘାଟରେ ଯାତ୍ରୀଦଳ ପହଞ୍ଚିଲେ ସେଦିନ ସନ୍ଧ୍ୟା ସଭା ପରେ ଉପର ଓଳିଆ ବର୍ଷା ଆରମ୍ଭ ହେଲା । ପାଖରେ ତ ଗାଁ ଗଣ୍ଡା କିଛି ନ ଥାଏ । ଗୋଟିଏ ଛୋଟିଆ କିରାସିନି ତେଲ, ଚାଉଳ, ଡାଲି ଦୋକାନରେ ଗାନ୍ଧିଜୀ ଓ ଯାତ୍ରୀଦଳର ଭଉଣୀମାନେ ଖୁନ୍ଦି ହୋଇ ବସି ବସି ରାତି କଟାଇଲେ । ପୁରୁଷମାନେ ଆଶ୍ରୟ ନେଲେ ଘାଟିଆର ତାଟିଘରେ । ରାତିସାରା ବସି ବସି ଗୀତ ବୋଲି କବିତା ଆବୃତ୍ତି କରୁ କରୁ ସେମାନେ ହଠାତ୍ ଉପଲବ୍ଧି କଲେ ଯେ ସମଗ୍ର ଭାରତର ସବୁ ପ୍ରଦେଶର ଅଧିବାସୀ ସେହି ତାଟି ଘରେ ଏକତ୍ର ହୋଇଛନ୍ତି ।

ବୁଢ଼ାଘାଟରୁ ପ୍ରତ୍ୟେକ ଦିନ ଉପରଓଳିଆ ବର୍ଷା ଆରମ୍ଭ ହୋଇ ଗଲାରୁ ଗାନ୍ଧିଜୀ ତୋଡାଙ୍ଗ ରହଣୀରୁ ସିଧା ଭଦ୍ରଖ ବାଳାଶ୍ରମକୁ ଯାଇ ସେଠାରୁ ଉଆର୍ଦ୍ଧା ଫେରିଗଲେ । ଭଦ୍ରଖ ଛାଡ଼ିବା ଆଗରୁ ଗୋଟିଏ କର୍ମୀସମ୍ମିଳନୀରେ ଭାଷଣ ଦେଇ ସେ କହିଲେ ଯେ ବର୍ତ୍ତମାନ ସବୁ କର୍ମୀ ଗାଁ ଗହଳକୁ ଚାଲିଯିବା ଦରକାର । କେହି ଜଣେ ପଚାରିଲେ– ଗାଁକୁ ଯାଇ ଆମେ କ'ଣ କରିବୁ ? ଜବାବରେ ଗାନ୍ଧିଜୀ ଗୋଟିଏ କାହାଣୀ କହିଲେ– ଗୋଟିଏ ଗର୍ଭବତୀ ସିଂହୀ ମେଣ୍ଢା ଶୀକାର କରିବା ପାଇଁ ମେଣ୍ଢାପଲ ଉପରକୁ କୁଦା ମାରିଲାବେଳେ ଗୋଟିଏ ଛୁଆ ପ୍ରସବ କରି ପକାଇଲା । ସେ ସିଂହଛୁଆଟି ପିଲାଦିନୁ ମେଣ୍ଢାପଲରେ ବଢ଼ି ମେଣ୍ଢାଙ୍କ ପରି ବାଘ ସିଂହ ଦେଖିଲେ ଡରିକରି ପଳାଏ । ଦିନେ ଗୋଟିଏ ସିଂହ ସେହି ମେଣ୍ଢାପଲକୁ ଆକ୍ରମଣ କଲାବେଳେ ଦେଖିଲା ଯେ ଗୋଟାଏ ସିଂହଛୁଆ ତାକୁ ଦେଖି ମେଣ୍ଢାଙ୍କ ସାଙ୍ଗରେ ଡରି ପଳାଉଛି । ସିଂହ ଆଶ୍ଚର୍ଯ୍ୟ ହୋଇ ସେହି ସିଂହ ଛୁଆର କାନ ଧରି ତାକୁ ଗୋଟାଏ ଝରଣା ପାଖକୁ ନେଇ ଯାଇ କହିଲା– ପାଣିରେ ଯେଉଁ ପ୍ରତିବିମ୍ବ ତୋର ଓ ମୋର ପଡ଼ିଛି ତାକୁ ଦେଖ୍ । ତୁ ମଧ୍ୟ ମୋ ପରି ସିଂହ । ତୁ ମୋତେ ଡରୁଛୁ କାହିଁକି ? ସିଂହଛୁଆ ନିଜକୁ ଚିହ୍ନିପାରି ସିଂହ ସାଙ୍ଗରେ ଚାଲିଗଲା । ତୁମେମାନେ ଗାଁକୁ ଯାଇ ଗାଁ ଲୋକଙ୍କ ମଧ୍ୟରେ ଯେଉଁ ସିଂହ

ଶୋଇ ରହିଛି ସେହି ସୁପ୍ତ ସିଂହକୁ ଜାଗ୍ରତ କରିବା କାମ କରିବ । ଫଳରେ ଗ୍ରାମବାସୀ ନିର୍ଭୟ ହେବେ, ଜାଗ୍ରତ ହେବେ ।

ଭଦ୍ରଖ ଷ୍ଟେସନରେ ରେଳଗାଡ଼ିରେ ବସି ଗାନ୍ଧିଜୀ ଆମଠାରୁ ବିଦାୟ ନେଲେ । ଏଡ଼େ ବଡ଼ ମହାପୁରୁଷ, ବିଶ୍ୱ ଯାହାକୁ ଯୁଗସ୍ରଷ୍ଟା କହୁଛି– ସେହି ଲୋକଟି ସାଙ୍ଗରେ ଆମ ପରି ତୁଚ୍ଛ ଜନ ଯେ ବାଟ ଚାଲିଥିଲୁ, କଥା କହିଥିଲୁ, ହସିଥିଲୁ, ବସିଥିଲୁ, ତା' ପାଖରେ ମନ କଥା କହିବାରୁ ସୁଯୋଗ ପାଇଥିଲୁ, ଅବୋଧ ଶିଶୁ ପରି ତା'ର ସେବାଯତ୍ନ ମଧ ଗ୍ରହଣ କରିଥିଲୁ, ଆଜି ଜୀବନର ସାୟାହ୍ନରେ ସେ କଥା ମନେ ପକେଇଲା ବେଳକୁ ମନରେ ଯେଉଁ ଉଚ୍ଚାଭିଳାଷ ଦେଖା ଦେଉଛି ତାହାକୁ ରବୀନ୍ଦ୍ରନାଥଙ୍କ ଭାଷାରେ ହିଁ ଆବୃତ୍ତି କରିବାକୁ ମନ ଡାକେ

ଓହେ ସୁନ୍ଦର !
ଏକଦା କି ଜାନି କୋନ୍ ପୁନ୍ୟେର ଫଲେ
ଆମି ବନଫୁଲ୍ ତୋମାର୍ ମାଲାୟ
ଛିଲେମ୍ ତୋମାର୍ ଗଲେ
ତଖନ ପ୍ରଭାତେ ପ୍ରଥମ୍ ତରୁନ୍ ଆଲୋ
ଘୁମ୍ ଭାଁଗା ଚୋଖେ ଧରାର ଲେଗେଛେ ଭାଲୋ
ବିଭାସେ ଲଲିତେ ନବୀନେର୍ ବୀନା
ବେଜେଛେ ଜଲେସ୍ଥଲେ ।
ଆଜି ଏ କ୍ଲାନ୍ତ ଦିବସେର ଅବସାନେ
ଲୁପ୍ତ ଆଲୋୟ ପାଖୀର ସୁପ୍ତଗାନେ
ଶ୍ରାନ୍ତ ଆବେଶେ ଯଦି ଅବଶେଷେ
ଝରେ ଫୁଲ ଧରା ତଲେ
ସନ୍ଧ୍ୟା ବାତାସେ ଅନ୍ଧକାରେର୍ ପାରେ
ପିଛେ ପିଛେ ତା'ର୍ ଉପଯେ ଚଲୁକ୍ ତାରେ
ଧୂଳାୟ ଧୂଳାୟ ଦୀର୍ଣ୍ଣ ଜୀର୍ଣ୍ଣ
ନା ହୋକ୍ ସେ ପଲେ ପଲେ ।

ମାତ୍ର ଚିତ୍ତଶୁଦ୍ଧିର ସାଧନା, ସମାଜ ପରିବର୍ତ୍ତନ ପାଇଁ ଆପ୍ରାଣ ଉଦ୍ୟମ ସର୍ବୋପରି ହରି କୃପା ବିନା ଏ ଉଚ୍ଚାଭିଳାଷ ପୂରଣ ହେବା ସମ୍ଭବ କି ?

# କୁସୁମ ପରଶେ

୧୯୩୪ ରେ ପୁରୀରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା ସାରି ଗାନ୍ଧିଜୀ ବିଦାୟ ନେବା ପୂର୍ବରୁ ଗାନ୍ଧିଜୀଙ୍କ ଉପସ୍ଥିତିରେ କଂଗ୍ରେସ କର୍ମୀଙ୍କର ଗୋଟିଏ ସଭା ହେଲା । ସେତେବେଳକୁ ସତ୍ୟାଗ୍ରହ ଆନ୍ଦୋଳନ ମାନ୍ଦା ପଡ଼ିଯାଇ ଥିବାରୁ ଜେଲ ବାହାରେ ଥିବା ଅଧିକାଂଶ ସତ୍ୟାଗ୍ରହୀ ଆଗକୁ କ'ଣ କରିବାକୁ ହେବ, ସେ ବିଷୟରେ ଦ୍ୱନ୍ଦ୍ୱରେ ପଡ଼ିଥାନ୍ତି । ସେଥିପାଇଁ ଗାନ୍ଧିଜୀ ଏ ପ୍ରକାର ପରିସ୍ଥିତିରେ କ'ଣ କରିବାକୁ କହିବେ, ତାହା ଜାଣିବାକୁ ଓଡ଼ିଶାର ଚାରିଆଡୁ ବହୁ କର୍ମୀ ଏକତ୍ର ହୋଇଥାନ୍ତି ।

ସଭାରେ ଗାନ୍ଧିଜୀ କର୍ମୀମାନଙ୍କୁ ଗାଁ-ଗଣ୍ଡାକୁ ଫେରିଯାଇ କାମ କରିବାକୁ କହିଲାରୁ କେହି ଜଣେ ପଚାରିଲେ - ''ଗାଁକୁ ଯାଇ ଆମେ କ'ଣ କରିବୁ ?'' ଏହାର ଉତ୍ତରରେ ଗାନ୍ଧିଜୀ ଆମକୁ ଗୋଟିଏ କାହାଣୀ ଶୁଣେଇଲେ - ଥରେ ଗୋଟିଏ ଗର୍ଭବତୀ ସିଂହୀ ମେଣ୍ଢା ଶିକାର କରିବା ପାଇଁ ଗୋଟିଏ ମେଣ୍ଢାପଲ ଉପରକୁ କୁଦା ମାରିଲା । ଏହି କୁଦା ମାରିବା ବେଳେ ସେ ଗୋଟିଏ ଛୁଆ ପ୍ରସବ କରି ପକାଇଲା । ସିଂହୀ ମେଣ୍ଢାଟିଏ ଧରି ପଳେଇଲା । ତା' ଛୁଆଟି ମେଣ୍ଢାପଲରେ ରହି ବଢ଼ିଲା । ମେଣ୍ଢାଛୁଆଙ୍କ ସାଙ୍ଗରେ ରହିବା ଫଳରେ ସେ ମେଣ୍ଢାଙ୍କ ଚଳଣି ଶିଖିଲା । ବାଘ, ସିଂହ ଦେଖିଲେ ମେଣ୍ଢାଛୁଆଙ୍କ ସାଙ୍ଗରେ ପଳେଇ ଯାଇ ଲୁଚିଲା । ଦିନେ ଗୋଟିଏ ସିଂହ ସେହି ମେଣ୍ଢାପଲକୁ ଆକ୍ରମଣ କଲା । ମେଣ୍ଢାପଲକ ଛାନିଆରେ ଦୌଡ଼ି ପଳାଇଲା ବେଳେ ସିଂହ ଦେଖିଲା ସେହି ପଲରେ ଗୋଟିଏ ସିଂହଛୁଆ ରହିଛି ଏବଂ ସେ ମଧ୍ୟ ସିଂହକୁ ଦେଖି ଡ଼ରି ପଳାଉଛି । ସିଂହ ଏହା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ମେଣ୍ଢା ଶିକାର ଛାଡ଼ି ସେହି ସିଂହ ଛୁଆଟିକୁ ଗୋଡ଼େଇ ଗୋଡ଼େଇ ଧରିଲା । ତା'ପରେ ସେ ସିଂହଛୁଆର କାନକୁ କାମୁଡ଼ି ଧରି ସିଂହ ତାକୁ ଗୋଟାଏ ଝରଣା ପାଖକୁ ନେଇ ଯାଇ ପାଣିରେ ପଡ଼ିଥିବା ପ୍ରତିବିମ୍ବକୁ ଦେଖାଇ କହିଲା -''ଦେଖ୍, ତୁ ଓ ମୁଁ ଏକା ଜାତିର ଜୀବ । ତୁ କାହିଁକି ମୋତେ ଡ଼ରି ପଳାଉଛୁ ?'' ପ୍ରତିବିମ୍ବ ଦେଖି ସିଂହଛୁଆ ଯେତେବେଳେ ଜାଣି ପାରିଲା ଯେ ସେ ସିଂହ କୁଳରେ ଜାତ,

ସେତେବେଳେ ସେ ମେଣ୍ଢାପଲକୁ ଫେରି ନ ଯାଇ ସିଂହ ସାଙ୍ଗରେ ରହିଲା । ଏହି କାହାଣୀଟି ଶୁଣାଇ ସାରି ଗାନ୍ଧିଜୀ କହିଲେ ଗାଁଲୋକଙ୍କ ଭିତରେ ଯେଉଁ ସିଂହ ଶୋଇ ରହିଛି ତାକୁ ନିଦରୁ ଉଠେଇବା ହେବ ତମର କାମ ।

ଗାନ୍ଧିଜୀ ଓଡ଼ିଶାରୁ ମେଲାଣି ନେବା ପରେ ପରେ ଗାଁଗହଳକୁ ଯାଇ କାମରେ ଲାଗିଯିବା ପାଇଁ ମସୁଧା ଚାଲିଲା । ସର୍ବଶ୍ରୀ କୃପାସିନ୍ଧୁ ହୋତା, ଗୁଣନିଧି ମହାନ୍ତି, ଆଚାର୍ଯ୍ୟ ମହାଶୟ, ଗୋପବନ୍ଧୁ ଚୌଧୁରୀ, ରମାଦେବୀ ପ୍ରଭୃତି କିଏ କେଉଁ ଅଞ୍ଚଳରେ କାମ ଆରମ୍ଭ କରିବେ ସେ ବିଷୟରେ ନାନା ପ୍ରକାରର ପ୍ରାରମ୍ଭିକ ଆୟୋଜନ ଆରମ୍ଭ ହୋଇଗଲା ।

ହୋତା ମହାଶୟ ଡ଼େଲାଙ୍ଗ ରେଲଷ୍ଟେସନ ନିକଟସ୍ଥ ବେରବୋଇ ଗାଁରେ ରହିବାକୁ ସ୍ଥିର କଲେ । ତାଙ୍କ ସାଙ୍ଗରେ ସୁନାମଣି ଦେବୀ ମଧ୍ୟ ବେରବୋଇ ଗଲେ । ସ୍ଥାନୀୟ ଲୋକଙ୍କ ଠାରୁ ଅରାଏ ଜମି ଦେଇ ସେମାନେ ସେଠାରେ ସୂତାକଟା, ପୌଢ଼ଶିକ୍ଷା ଆଦି କାମ ଆରମ୍ଭ କଲେ । ଗୁଣନିଧି ବାବୁ  ଗଲେ ବାରଙ୍ଗ ରେଲଷ୍ଟେସନ ନିକଟସ୍ଥ ଦାଢ଼ା ଗାଁକୁ । ସେଠାରେ ଚମଡ଼ା କରିଗରଙ୍କର ବସତି ଥିବାରୁ ସେ ଜୋତା ତିଆରି କରାଇବା ମାଧ୍ୟମରେ ଲୋକସମ୍ପର୍କ ସ୍ଥାପନ ଆରମ୍ଭ କଲେ । ଗୋପବାବୁ ଓ ରମାଦେବୀ ବରୀ ଯିବାକୁ ସ୍ଥିର କଲେ । ଗୋପବାବୁ ଡ଼େପୁଟୀ ମାଜିଷ୍ଟ୍ରେଟ୍ ଥିବାବେଳେ ବନ୍ୟାପୀଡ଼ିତ ବରୀ ଅଞ୍ଚଳକୁ ସରକାରୀ ସାହାଯ୍ୟ ବାଣ୍ଟିବାକୁ ଯାଇଥିଲେ । ସେଠା ପରିସ୍ଥିତିର ଯେଉଁ ବିବରଣୀ ଦେବାକୁ ତାଙ୍କର ଉପରିସ୍ଥ ହାକିମ ତାଙ୍କୁ ଉପଦେଶ ଦେଲେ  ମିଛ ଲେଖିବାକୁ ତାଙ୍କ ବିବେକ ଡ଼ାକିଲା ନାହିଁ । ତେଣୁ ସେ ଏହାର ପ୍ରତିବାଦ କଲେ । ଟୋକା ହାକିମ ଭାବପ୍ରବଣ ହୋଇ ଏପରି ଆଚରଣ କରୁଛି ବିଚାରି ଜିଲ୍ଲାପାଳ ବିସ୍ପୋ ସାହେବ ଗୋପବାବୁଙ୍କୁ ବରଗଡ଼ ବଦଳି କରିଦେଲେ । ବରଗଡ଼ରେ ମଧ୍ୟ ଗୋପବାବୁଙ୍କର ମନୋମନ୍ଥନ ଚାଲିଲା । ଅବଶେଷରେ ''ସରକାରୀ ଚାକିରୀରେ ମାନବ-ସେବାର ଅବକାଶ ନାହିଁ'' ଏହି କୈଫୟତ ଦେଇ ସରକାରୀ ଚାକିରୀରୁ ଇସ୍ତଫା ଦେଇଥିଲେ । ତେଣୁ ବରୀ ବାବଦରେ ତାଙ୍କ ମନରେ ଟିକିଏ ଅଧିକ ମହତ୍ୱବୋଧ ଥିଲା ।

ରମାଦେବୀ ଓ ଗୋପବାବୁଙ୍କ ସାଙ୍ଗରେ ଆମେ କଟକରେ ହରିଜନ ବସ୍ତିରେ କାମ କରୁଥିବା ସାତଭଉଣୀ ସୁଶୀଳା, ମଙ୍ଗଳା, ଶୋଭା, ଗୋଦାବରୀ, ମାଣିକ, ତୁଳସୀ ଓ ଅନ୍ନପୂର୍ଣ୍ଣା ମଧ୍ୟ ବରୀ ଗଲୁ । ପରବର୍ତ୍ତୀ କାଳରେ ଓଡ଼ିଶାର ରାଜସ୍ୱମନ୍ତ୍ରୀ ହୋଇଥିବା ସୁରେନ୍ଦ୍ର ପଟ୍ଟନାୟକ ମଧ୍ୟ ଏହି ଯାତ୍ରାରେ ଯୋଗ ହେଲେ । ଆମକୁ ବାଟେଇ ଦେବାକୁ

ଯାଉ ଯାଉ ବରୀଯାଏ ଚାଲିଗଲେ ପରମସ୍ନେହୀ ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ । କିଛିଦିନ ପରେ ଶ୍ରୀ ବିନୋଦ କାନୁନଗୋ (ଜ୍ଞାନ ମଣ୍ଡଳ) ମଧ୍ୟ ଏହି ଗୋଠରେ ମିଶିଲେ । 'ସମାଜ'ରେ ସଂପାଦକୀୟ ଲେଖା ହେଲା ''ବରୀ କେନ୍ଦ୍ରରୁ ଆଲୋକ ରେଖା ।''

କଟକରୁ ବାହାରି ହରିଦାସପୁର ରେଳଷ୍ଟେସନରେ କଦଳା ମଠରେ ଅଧିକାରୀ ଚକ୍ରଧର ଦାସଙ୍କ ଆତିଥ୍ୟ ଗ୍ରହଣ କରି ଦଳଟି ସେହି ମଠରେ ରାତି କଟାଇଲୁ । ପରଦିନ ଧର୍ମଶାଳାରେ ନାହାରେ ବସି ଆରମ୍ଭ ହେଲା ଜଳଯାତ୍ରା । ଅଗଷ୍ଟ ମାସ । ବର୍ଷାକାଳ । ବ୍ରାହ୍ମଣୀ ଦୁଇକୂଳ ଖାଉଥାଏ । ବରୀ ଅଞ୍ଚଳର ମହନ ନାଉରୀ ତାଙ୍କ ଭଣଜା ତଉଲୀ ଓ ପୁଅ ରତନ ସାଙ୍ଗରେ ଛପର ନାହାରେ ଆସିଥାନ୍ତି । ସେ ରାତିଟି ନାହାରେ କଟିଲା । ସକାଳେ ନୂଆଣିଆ ଛପର ଉପରକୁ ଚଢ଼ି ଦେଖିଲୁ ବଢ଼ି ପାଣି ଦିଗ୍‌ବଳୟ ଛୁଇଁଛି । ପୂର୍ବବଙ୍ଗର ପଦ୍ମା, ମେଘ୍ନା କୋଳରେ ବଢ଼ିଥିବା ମଙ୍ଗଳା ଦେବୀ ଆନନ୍ଦରେ ଉଲ୍ଲସିତ ହୋଇ ଚିତ୍କାର କରି ଉଠିଲେ, ''ଦେଖ ଦେଖ, କେଡ଼େ ନଈ, କେତେ ପାନି !'' ନାହା ସେତେବେଳେ ପାଟରେ ।

ବରୀ ଗୋଦାମ ଡ଼ିହ ଓରଫ ମାଉଣ୍ଡ ପଡ଼ିଆ ପାଖରେ ନାହା ଲାଗିଲା । ମେଘ ଗାଳୁଥାଏ । ଆମେ ନେଉଳା ହରିଶବାବୁଙ୍କ ଦୋକାନ ପିଣ୍ଡାରେ ବସିଲୁ । ଖରସ୍ରୋତା ଓ ବ୍ରାହ୍ମଣୀ ମଧ୍ୟବର୍ତ୍ତୀ ବରୀ ଅଞ୍ଚଳର ଏକମାତ୍ର ଅପର ପ୍ରାଇମେରୀ ସ୍କୁଲର ଶିକ୍ଷକ ଉପେନ୍ଦ୍ର ବାବୁ ଆସି ଗୋପବାବୁଙ୍କୁ ଆଦର ସମ୍ମାନ ଜଣାଇଲେ । ବାରାଦାର ଶ୍ରୀ ବାମନ ଚରଣ ଦାସଙ୍କ ଚଉପାଢ଼ୀରେ ଅସ୍ଥାୟୀ ଭାବରେ ଆମ ରହିବା ବ୍ୟବସ୍ଥା ହୋଇଥିଲା । ଗାନ୍ଧିଜୀ ଓଡ଼ିଶାରେ ପଦଯାତ୍ରା କରୁଥିବା ବେଳେ ୧୯୩୪ ମସିହା ମଇମାସ ଏକତ୍ରିଶ ତାରିଖ ଦିନ ସେହି ଚଉପାଢ଼ୀରେ ରହିଥିଲେ । ଗୋଦାବରୀ ଦେବୀଙ୍କ ପାଖରେ ତାଙ୍କର ଓଡ଼ିଆ ବର୍ଣ୍ଣ ପରିଚୟ ସେଇ ଚଉପାଢ଼ୀରେ ଆରମ୍ଭ ହୋଇଥିଲା । ସେଇଠି ଆମର ତୀର୍ଥବାସ ହେଲା ।

ଆମ ଥଇଥାନର ସର୍ବପ୍ରଥମ କାମ ହେଲା ପାଇଖାନା ତିଆରି । ବାମନ ବାବୁଙ୍କର ଅନେକ ଡ଼ିହବାଡ଼ି ଅବ୍ୟବହାର୍ଯ୍ୟ, ଅଗମ୍ୟ ହୋଇ ପଡ଼ିଥାଏ । ସେଇଥିରୁ ଗୋଟିଏ ବାଡ଼ିରେ ଟ୍ରେଞ୍ଚ୍ ପାଇଖାନା ତିଆରି ହୋଇ ବରଡ଼ା ତାଟି ଘେରେଇ ଦିଆହେଲା । ପରଦିନ ପାଇଖାନାକୁ ଗଲାବେଳକୁ ବାଲିଜନ୍ଦା ଧାଡ଼ି ଛୁଟିଛନ୍ତି । ପିଇବା ପାଣି ଆଣିଲୁ ବାରାଦା ଚୌଧୁରୀ ଘର ଠାକୁର ଖଞ୍ଜା କୂଅରୁ । କାରଣ ଗାଁ ଯାକରେ କେବଳ ସେଇ କୂଅର ଚାନ୍ଦିନୀ ପକ୍‌କା ଥିବାରୁ କୂଅମୂଳେ ବର୍ଷାପାଣି ଜମୁ ନ ଥିଲା । ତାହାଛଡ଼ା ପକ୍‌କା

କୂଅରେ ଛୁଆଁ ଅଛୁଆଁ ବାରଣ ରହେ ନାହିଁ । ମାଟି ଘୋଡ଼ାନନ୍ଦ କୂଅରେ ସେ କଥା ପଟିବ ନାହିଁ ।

ଅଣବଘରା, ଅଣହଳଦିଆ ପରିବା ସିଝା, ଖାଡ଼ିମରା ଅରୁଆ ଭାତ ସାଙ୍ଗକୁ କିଛି ପୋଇ ପାଣୁଦାସଙ୍କ ବସା ଦହି ହେଲା ଆମର ନିତିଦିନର ମଧ୍ୟାହ୍ନ ଭୋଜନ ।

ସୂତାକଟା, ତୁଳାଭିଣାରେ ଆମେ ବରୀ ଆସିବା ପୂର୍ବରୁ ଅଭ୍ୟସ୍ତ ଥିଲୁ । ସମାଜ ସେବାର ପ୍ରଥମ ପଦାର୍ଥ ପାଠ ହେଲା ହୋମିଓପାଥି ଔଷଧ ବିତରଣ । ଗୋପବାବୁ ଅଳକାଶ୍ରମରୁ ହୋମିଓପାଥି ଔଷଧ ଦେବାରେ ଅଭ୍ୟସ୍ତ ଥିଲେ । ଆମେମାନେ ମହେଶ ଭଟ୍ଟାଚାର୍ଯ୍ୟଙ୍କ 'ପାରିବାରିକ ଚିକିତ୍ସା' ଓ ଭେଷଜତତ୍ତ୍ୱ ପଢ଼ିବା ସଙ୍ଗେ ସଙ୍ଗେ ବାଲି ଉପରେ ପାଣି ଟୋପା ପକାଇବା ଅଭ୍ୟାସ କରି ହୋମିଓପାଥି ଔଷଧ ଦେବା ଆରମ୍ଭ କରିଦେଲୁ । ବରୀରେ ସରକାରୀ ଡ଼ାକ୍ତରଖାନା ନ ଥିଲା । ସେ ଅଞ୍ଚଳରେ ଡ଼ାକ୍ତର ମଧ୍ୟ ଜଣେ ସୁଦ୍ଧା ନ ଥିଲେ । ବାମନବାବୁ ନିଜେ ନିଜେ ପଢ଼ାଶୁଣା କରି ହୋମିଓପାଥି ଔଷଧ ଦେଉଥିଲେ । ବରୀରୁ ପାଞ୍ଚ ମାଇଲ ପାଟବାଟରେ ଚାଲି କରି ଗଲେ ବିଂଝାରପୁର ଡ଼ାକ୍ତରଖାନାରେ ଔଷଧ ମିଳୁଥିଲା । ବଢ଼ିବେଳେ ଡ଼ଙ୍ଗା ପାରି ପାଣି ଛାଡ଼ିଲେ କାଦୁଅ ଓ ପଣାପାଣି । ବିଂଝାରପୁରରୁ ଔଷଧ ଆଣି ସାଂଘାତିକ ରୋଗୀକୁ ବଞ୍ଚାଇବା କଠିନ ବ୍ୟାପାର ଥିଲା । ତେଣୁ ଔଷଧ ଦେବା କାମଟି ଅତିଶୀଘ୍ର ଲୋକପ୍ରିୟ ହୋଇଗଲା । ଏହି ବିଦ୍ୟାଟି ଆମକୁ ସବୁଠାରୁ ବେଶୀ ସାହାଯ୍ୟ କଲା ଯେତେବେଳେ ପର୍ଘଡ଼ାରୁ ମଲିଆଘାଇଯାଏ ହଇଜା ମହାମାରି ରୂପ ଧରିଲା । ହୋମିଓପାଥି ଔଷଧ ବାକସ, ଆଉଟା ବାର୍ଲି ବୋତଲ, ପୋଟାସିଅମ୍ ପରମାଙ୍ଗାନେଟ ଧରି ଆମେ ମହାମାରି ବେଳେ ଗାଏଁ ଗାଏଁ ବୁଲିଲୁ । ହଇଜାକୁ ଲୋକଙ୍କର ମହା ଭୟ । ଠାକୁରାଣୀ ବିଜେ କରି ଥିବାରୁ ଗାଁରେ ଘରେ ଘରେ ଭୟରେ ଟାଟିକବାଟ ପଡ଼ିଯାଏ । ଗାଏଁ ଗାଏଁ ବୁଲି ଡ଼ର ଭଙ୍ଗେଇବା, ରାତି ଅଧରେ ପେଟ୍ରୋମାକ୍‌ସ ଧରି ହଇଜା ଲାଗିଥିବା ଗାଁ ଭିତରେ ଯିବା ଆସିବା ହେବା, ଲୋକକୁ ହେମତ ଦେବା ମଧ୍ୟ ରୋଗୀ-ସେବା ସାଙ୍ଗକୁ ଆମର ଆନୁସଙ୍ଗିକ କାମ ହୋଇଥାଏ । ବର୍ଷାଦିନେ ବଢ଼ିପାଣି ଦ୍ୱାରା ହଇଜା ଚଞ୍ଚଳ ସଂକ୍ରମିତ ହୁଏ । ତେଣୁ ଯେଉଁ ଗାଁରେ ହଇଜା ଲାଗେ ସେ ଗାଁରେ ରୋଗୀକୁ ଔଷଧ ଦେବା ସଙ୍ଗେ ସଙ୍ଗେ ବଡ଼ କାମ ହୁଏ ପାଣିକୁ ଜଗିବା । ସେ ଗାଁରେ ଯଦି କୂଅ ଥାଏ ସାଧାରଣତଃ ଗାଁ ଲୋକେ ନିଜ ନିଜ ଦଉଡ଼ି ଓ ମାଠିଆ ନେଇ କୂଅରୁ ପାଣି କାଢ଼ନ୍ତି । ଗାଁରେ ହଇଜା ଲାଗିବା ଆରମ୍ଭ ହେବା ମାତ୍ରେ ଆମେ ପାଣି ନେବାକୁ ଆସୁଥିବା ଲୋକଙ୍କ ମାଠିଆଗୁଡ଼ିକ କୂଅଠାରୁ

ଦୂରରେ ରଖାଉ । ଗାଁ ସ୍ୱେଚ୍ଛାସେବକ ନୂଆ ମାଠିଆରେ କୂଅରୁ ପାଣି କାଢ଼ି ଅନ୍ୟ ମାଠିଆରେ ଢ଼ାଳି ଦିଅନ୍ତି । ଫଳରେ କୂଅ ପାଣି ସଂକ୍ରମିତ ହୁଏ ନାହିଁ । ଦ୍ୱିତୀୟ କାମ ହୁଏ ରୋଗୀ ଘରେ ରୋଷେଇ ବନ୍ଦ କରିବା । ଗାଁରେ ହଇଜା ରୋଗୀ ସଂଖ୍ୟା ଅଧିକ ହେଲେ ସମସ୍ତଙ୍କ ଘର ରୋଷେଇ ବନ୍ଦ କରି ଦେଇ ପଖାଳକୁ ଗୋରୁ ହାଣ୍ଡିରେ ଢ଼ାଳି ଦେଉ । ଠାଏ ସମସ୍ତଙ୍କ ପାଇଁ ଭାତ ଡ଼ାଲମା ରନ୍ଧା ହୁଏ । କାମରୁ ଆସି ସମସ୍ତେ ଗରମ ଗରମ ଡ଼ାଲମା ଭାତ ଖାଆନ୍ତି । ମାଛି ବସିବା ଭୟ ରହେନାହିଁ । ତୃତୀୟ କାର୍ଯ୍ୟ ହେଲା ଜଣକ ପିଛା ସାତଟା ଅମରପୋଇ ପତ୍ର ଓ ଏକୋଇଶଟା ଗୋଲମରିଚ ହିସାବରେ ପୂଳାଏ ପତ୍ର ଓ ଗୋଲମରିଚ ବାଟି ସୁସ୍ଥ ଲୋକଙ୍କୁ ପିଆଇବା । ଲୋକଙ୍କୁ ନିଜ ହାତରେ ଏହାକୁ ପିଆଇବାକୁ ପଡ଼େ କାରଣ ଠାକୁରାଣୀଙ୍କ ପ୍ରତି ଅଚଳା ଭକ୍ତି ହେତୁ ଆମ ଔଷଧ ଓ ପ୍ରତିଷେଧକରେ ସେମାନଙ୍କର ବିଶ୍ୱାସ ନ ଥାଏ । ହୋମିଓପାଥି ଔଷଧର ହଇଜା ମଲୁ ଉପରେ ପ୍ରତ୍ୟକ୍ଷ ପ୍ରଭାବ ଦେଖି ଆମର ସେ ଔଷଧ ପ୍ରତି ଶ୍ରଦ୍ଧା ମଧ୍ୟ ବଢ଼ିଲା । ରୋଗୀ ସେବା ପାଇଁ ଯିବାବେଳେ ବାଟଯାକ ଘୋଷି ଘୋଷି ଯାଉ "ଚାଉଳଧୁଆ ପାଣି ପରି ଝାଡ଼ାକୁ ଭେରେଟ୍ରମ୍ ଆଲ୍‌ବ୍, କୂଅ ଭିତରୁ କଥା କହିଲା ପରି ସ୍ୱର ହୋଇଥିଲେ କାର୍ବୋଭେଜ, ହାତଗୋଡ଼ ଖିଲି ମାରୁଥିଲେ ସିକେଲ୍‌କର ଓ କ୍ୟୁପ୍ରମ୍‌ମେଟ୍, ପ୍ରସ୍ରାବ ବନ୍ଦ ହୋଇ ଯାଉଥିଲେ କାନ୍ଥାରିସ୍ ବା ଟେରେବିନ୍ଥୁ ଇତ୍ୟାଦି ଇତ୍ୟାଦି । ଯାହାହେଉ, ଆମେ ଦେଖିଲୁ ଯେ ଧୀରେ ଧୀରେ ଲୋକଙ୍କର ଆମ ପ୍ରତିଷେଧକ ବ୍ୟବସ୍ଥା ଓ ଔଷଧ ପ୍ରତି ବିଶ୍ୱାସ ଜନ୍ମିଲା । ପରିଣାମ ସ୍ୱରୂପ ହାଟସାହି ଆଦି ଯେଉଁ ନଇକୂଳିଆ ଗାଁଗୁଡ଼ିକ ହଇଜାର ପୀଠସ୍ଥଳି ଥିଲା ସେ ଗାଁମାନଙ୍କରେ ସୁଦ୍ଧା ହଇଜା ଲାଗିଲା ନାହିଁ । ବରୀ ଯିବା ଆରମ୍ଭରୁ ୧୯୪୨ରେ ସେବାଘର ମାଟିରେ ମିଶିବା ଯାଏ ଏ ଔଷଧ ଦେବା କାମଟି ଚାଲିଥିଲା । ସତୀଶଚନ୍ଦ୍ର ଦାସଗୁପ୍ତଙ୍କ ଚିପ୍ ରେମିଡ଼ି ଔଷଧ ଓ Home and Village Doctor ବହି ବାହାରିବା ପରେ ଆମେ ତା ଆଶ୍ରା ମଧ୍ୟ ନେଲୁ ।

ସେହି ୧୯୩୪ ମସିହାରେ ସୁନିଆଁ ଦିନ ଆଚାର୍ଯ୍ୟ ମହାଶୟ ବାମନବାବୁଙ୍କ ଦ୍ୱାରା ପ୍ରଦତ୍ତ ଖଣ୍ଡେ ପଡ଼ିଆ ଜାଗାରେ ମାଟି ପକେଇ ଆମ ଆସ୍ଥାନ ପାଇଁ ଶୁଭ ଦେଲେ । ବଢ଼ି ଅଞ୍ଚଳ ହୋଇଥିବାରୁ ବଢ଼ି ପାଣିର ସ୍ତରଠାରୁ ଉଚ୍ଚ ଡ଼ିହ ବାନ୍ଧି ସେ ଅଞ୍ଚଳରେ ଘର କରାଯାଏ । ତାହା ନ ହେଲେ ବଢ଼ିପାଣି ଘରେ ପଶି ଘର ଭାଙ୍ଗିଯାଏ । ତେଣୁ ଗୋପବାବୁ, ରମାଦେବୀଙ୍କ ସମେତ ଆମେ ସମସ୍ତେ ଡ଼ିହ ବାନ୍ଧିବା ପାଇଁ ଦୁଇଘଣ୍ଟା ଲେଖା ମାଟି ବୋହିଲୁ । ଅଖାରେ ଦୁଇପଟେ ଦୁଇଟା ବାଉଁଶ ପୁରେଇ (ଷ୍ଟ୍ରେଚର ପରି) ସେଥିରେ

ମାଟି ପୁରେଇ ଦୁଇଜଣ ବୋହି ଆଣୁ । ହାତରେ ପ୍ରଥମେ ପ୍ରଥମେ ଫୋଟକା ହେଲା । କିଛି ଦିନ ପରେ ବିଣ୍ଡି ହୋଇଗଲା । ପୁଣି ବିଚାର ଚାଲିଲା ବଗିଚା ଖଣ୍ଡେ କରିବା ଦରକାର । ବାମନବାବୁ ଏ ବାବଦରେ ଆମଠାରୁ ବଳି ଉତ୍ସାହୀ । ତାଙ୍କ ଠାକୁରବାଡ଼ି ପାଖରେ ଖଣ୍ଡେ ଜମି ବଗିଚା କରିବା ପାଇଁ ଆମକୁ ଦେଖେଇ ଦେଲେ । ଏଣେ ଗାନ୍ଧିଜୀ ଆମ ଗାଁ ବାହୁଡ଼ା ଖବର ପାଇ ଚିଠି ଲେଖିଲେ -

୨୧ ଡ଼ିସେମ୍ବର, ୧୯୩୪

ଚି. ଅନ୍ନପୂର୍ଣ୍ଣା,

ତୁମ ଚିଠି ପାଇଲି । ଗାଁ ଲୋକଙ୍କ ସୂତାର ନମ୍ବର, ସମାନତା, ମଜବୁତୀ ବାହାର କର । ଶୀଘ୍ର ଲୁଗା ବୁଣେଇ ନିଅ । ଗାଁ ଲୋକଙ୍କର ଅନ୍ୟ ଧନ୍ଦା ପ୍ରତି ଦୃଷ୍ଟି ରଖ । ଚାଉଳ କେଉଁ ପ୍ରକାରର ଖାଉଛ ? ଘର ଅଗଣାରେ କିଛି କପା ଓ ପନିପରିବା ମଞ୍ଜି ଲଗାଇ ଦିଅ । ଯଥାସମ୍ଭବ ସବୁ ମୂଲ ମଜୁରୀ ନିଜ ହାତରେ କରିବା ଭଲ । ସମସ୍ତେ ମଜାରେ ଥିବ ।

ବାପୁର ଆଶୀର୍ବାଦ

ଏ ଚିଠି ପାଇ ଆମର ବଗିଚା କରିବା ବାସନା ଆହୁରି ବଳବତୀ ହେଲା । ଆମେ ଯେତକ, ସମସ୍ତଙ୍କ ଘରେ ବାଡ଼ିବଗିଚା କିନ୍ତୁ ନିଜ ହାତରେ ମାଟି ହାଣି କିଆରୀ କରି ବଗିଚା କରିବା କେହି ଜାଣି ନ ଥାନ୍ତି । ଆମେ ପୁଳାଏ ବଣୁଆ ତଳି ଖୋଜି ଖୋଜି ଆଣି ରୋଇ ବାମନବାବୁଙ୍କ ଠାକୁର ପୋଖରୀରୁ ସ୍କାଉଟ୍‌ଙ୍କ ପରି ଧାଡ଼ିବାନ୍ଧି ପାଣି ବୋହି ସେ କିଆରୀରେ ଢ଼ାଳିଲୁ । ତାହାପରେ ମୂଳାଚାଷ ପାଇଁ ପ୍ରସ୍ତୁତି ଚାଲିଲା । ଗୋପବାବୁଙ୍କ ତତ୍ତ୍ୱାବଧାନରେ କିଆରୀ ହାଣି କିଆରୀର ମାଟିକୁ କୋବାରେ ବାଡ଼େଇ ବାଡ଼େଇ ପାଟ ପରି ଗୁଣ୍ଡ କରିଦେଲୁ । ତହିଁରେ ମୂଳାମଞ୍ଜି ବୁଣି ଢ଼ାଳିଲୁ ମନଇଚ୍ଛା ପାଣି । ଗଛ ଉଠିଲା, କିନ୍ତୁ ମାଟି ଧୂଳିପରି ଗୁଣ୍ଡ ହୋଇଥିବାରୁ ପାଣି ଦେବା ପରେ ମାଟି ଭିଡ଼ି ହୋଇଗଲା । ଫଳରେ ଶିଶୁ ମୂଳାଗଛଗୁଡ଼ିକର କଣ୍ଠରୋଧ ହୋଇ ମୃତ୍ୟୁ ଘଟିଲା ।

ଏହା ମଧ୍ୟରେ ଡ଼ିହବନ୍ଧା କାମ ସରିଗଲା । ଅନୁଭବୀ ଲୋକେ କହିଲେ - ଡ଼ିହଟା ବର୍ଷେ ଖରା ବର୍ଷା ଖାଇବା ପରେ ଘର କଲେ ଘର ତଳି ଫାଟିବ ନାହିଁ । ମାତ୍ର ଯଥାଶୀଘ୍ର ସମ୍ଭବ ସେ ଡ଼ିହରେ ଆସ୍ଥାନ ଜମାଇବାକୁ ଚାହୁଁଥିବାରୁ ବର୍ଷେ ଅପେକ୍ଷା କରିବାକୁ ତର ସହିଲା ନାହିଁ । ବାଉଁଶ ପେଲା ଦିଆ ନୁଆଁଣିଆ ଚାଳଘର ଦୁଇଟି ତିଆରି

ହୋଇଗଲା । ସେ ଘରର ବିଶେଷତ୍ୱ ହେଉଛି ସେଥିରେ ଆଦୌ ଲୁହା ଓ କାଠ ଲାଗି ନ ଥିଲା । କବାଟ ସୁଦ୍ଧା ବାଉଁଶରେ ତିଆରି ହେଲା, ସେଥିରେ ଶିକୁଳି ଲାଗିଲା ନାହିଁ । କେତେକ ଶୁଭାକାଂକ୍ଷୀ ଗ୍ରାମବାସୀ ଆମ ଘରତୋଳା ଦେଖିବା ପାଇଁ ଆସି ଗୋପବାବୁଙ୍କୁ ସୁଚେଇଲେ ଯେ ଏ ଘର ଦୁଇ ମୁଣ୍ଡରେ ଦୁଇଟି କାଠ ଖୁଣ୍ଟ ପୂରେଇ ଦେଲେ ଘର ମଜବୁତ ହେବ । ଗୋପବାବୁ ଆମ ଆଡ଼କୁ ଚାହିଁ କହିଲେ –" ଯେଉଁମାନଙ୍କର ସେବା କରିବା ପାଇଁ ଆସିଛୁ, ସେମାନଙ୍କ ଘରଠାରୁ ଭଲ ଘରେ ରହିବା ସେବକ ପକ୍ଷରେ ଉଚିତ୍ ନୁହେଁ ।

ଘର ହେଲା କିନ୍ତୁ କୂଅ ଖୋଳା ହୋଇ ନ ଥାଏ । ଆମେ କନ୍ତକାରରେ ଗାଧୋଉ, ଲୁଗା କାଚୁ, ବାଗଦା ହରିଜନ ବସ୍ତି କୂଅରୁ ରୋଷେଇ ଓ ପିଇବା ପାଣି ବୋହି ଆଣୁ ।

ଆମେ ନୂଆ ଘରକୁ ଆସିବା ଖବର ପାଇ ଗାନ୍ଧିଜୀ ଚିଠି ଲେଖି ପଚାରିଲେ – ଆଶ୍ରମର ନାମ କ'ଣ ଦେଲ ? ରମାଦେବୀ ତାଙ୍କୁ ଲେଖିଲେ ଆମେ ସମସ୍ତେ ଗୋଟିଏ ପରିବାର ଭଳି ରହି କିଛି ସେବାକାମ କରିବା ପାଇଁ ବିଚାରିଛୁ । ଗାନ୍ଧିଜୀ ଆମ ନୂଆ ଘରର ନାଆଁ ଲେଖି ପଠାଇଲେ 'ସେବାଘର' । ସେବାଘରକୁ ଆସିବା ପରେ ଗାଁ ସଫେଇ ହେଲା ପ୍ରାତ୍ୟହିକ କାର୍ଯ୍ୟ । ଗାଁମାନଙ୍କରେ ସଡ଼କ ଦୁଇପାଖରେ ମଳତ୍ୟାଗ କରିବାର ପ୍ରାଚୀନ ପରମ୍ପରାକୁ ଆମେ କଦାପି ନ ଛାଡ଼ିବାକୁ ଦୃଢ଼ପରିକର । ସେଥିପାଇଁ ଅମାବାସ୍ୟା ରାତିରେ ସୁଦ୍ଧା ବାଟଚଲା ଲୋକ ପାଖରେ ଗାଁ ଅଛି ବୋଲି ଜାଣିପାରିବାର ପ୍ରଧାନ ଲକ୍ଷଣ ହେଉଛି ମଣିଷ ମଳର ଦୁର୍ଗନ୍ଧରେ ନାକରେ ଲୁଗା ଦେବାକୁ ପ୍ରାଣ ଛଟପଟ ହେବ । ଗାନ୍ଧିଜୀ ଆମର ଏ ପରମ୍ପରାକୁ ଭାଙ୍ଗିବା ପାଇଁ ଅଣ୍ଟା ଭିଡ଼ିଥାନ୍ତି । ସେଥିପାଇଁ ଆମେ ପ୍ରତିଦିନ ସକାଳେ ଗୋଟାଏ ତାର ଓହଳା ହୋଇଥିବା କିରାସିନୀ ଟିଣ, କୋଦାଳ ଓ କରଣୀ ଧରି ବାଗ୍‌ଦାରୁ ବଣିଆସାହି ବାଟେ ଅରଙ୍ଗାବାଦକୁ ଲମ୍ବିଥିବା ସଡ଼କର ଦୁଇପଟ ସଫା କରିବାକୁ ଲାଗିଲୁ । ସେହି ମଳକୁ ଟିଣରେ ଆଣି ସେବାଘର ପାଖ ନୟନଜୋରିରେ ପୋତି ଦେଉଁ । ଏହିପରି କିଛି ଦିନ ସଫେଇ କଲା ପରେ କେତେକ ଆଗ୍ରହୀ ଗ୍ରାମବାସୀଙ୍କ ଅନୁମତି ନେଇ ତାଙ୍କ ଜମିରେ ଧାଡ଼ି ଧାଡ଼ି ଟ୍ରେଞ୍ଚ୍ ମଧ୍ୟ ଖୋଳିଦେଲୁ । ଲୋକେ ସେ ଟ୍ରେଞ୍ଚ୍‌କୁ ପାଇଖାନା ପରି ବ୍ୟବହାର କରିବା ଆରମ୍ଭ କଲେ କିନ୍ତୁ ମଳତ୍ୟାଗ କରି ସାରିବା ପରେ ମଳ ଉପରେ ମାଟି ପକେଇ ଘୋଡ଼ାଇବାଟାକୁ ପସନ୍ଦ କଲେ ନାହିଁ । ଆମେ ସକାଳେ ଯାଇ ସେଥିରେ ମାଟି ଘୋଡ଼ାଇ ଦେଉଁ । ଏ କାମ ବ୍ୟବସ୍ଥିତ ଭାବରେ ଚାଲିବାରୁ ସପ୍ତାହରେ ଦିନେ ହରିଜନ ଓ ଅଣହରିଜନ ସାହିରେ ଗାଁ

ସଫେଇ କାମ କରିବା ସ୍ଥିର ହେଲା । ବରୀ ଅଞ୍ଚଳରେ ଘରଡ଼ିହକୁ ଉତ୍ତରୋତ୍ତର ଉଚ୍ଚ କରିବା ପାଇଁ ଓ ଡ଼ିହକୁ ମୃତ୍ତିକାକ୍ଷୟରୁ ରକ୍ଷା କରିବାକୁ ଅଳିଆ ଆବର୍ଜନା ଡିହ କଡ଼ରେ ଗଦେଇ ଦିଆଯାଏ । ଆମେ ସେ ତତ୍ତ୍ୱ ଜାଣି ନ ଥିବାରୁ ବାଗଦା ହରିଜନ ବସ୍ତିରୁ ଆବର୍ଜନା ସଫା କରିବାକୁ ଗଲୁ । ସାହିର ସ୍ତ୍ରୀଲୋକେ ଆମକୁ ସେ ତତ୍ତ୍ୱ ବୁଝାଇ କହିଲେ ।

ଆମ 'ସେବାଘର' ପାଖରେ ବଗିଚା କରିବାକୁ ଜମି ନ ଥିବାରୁ ଲୋକାଲ୍ ବୋର୍ଡ଼ଠାରୁ ଅନୁମତି ନେଇ ସଡ଼କ କଡ଼ ନୟନଜୋରିରେ ଆମ ବଗିଚା ଆରମ୍ଭ ହେଲା । ବାଇଗଣ, ଶିମ, ଝୁଡ଼ଙ୍ଗ ଆଦି ଲଗାଇ ଆମେ ସେଥିରେ ମଣିଷ ମଳରୁ ତିଆରି ସାର ଦେଲୁ । ସେଥିରେ ନାଇଟ୍ରୋଜେନ୍ ଅଧିକ ଥିବାରୁ ଗଛ ଖୁବ୍ ବଢ଼ିଲା । ବାଇଗଣ ଗଛ ପ୍ରାୟ ପାଞ୍ଚଫୁଟ ଉଚ୍ଚ ହୋଇଗଲା କିନ୍ତୁ ଫଳ ଫଳିଲା ନାହିଁ । ଏହିପରି ପ୍ରଥମ ଛଅମାସ ଆମେ ପନିଆରୀ ଫସଲ ଉତାରିବାରେ ଅସଫଳ ହେଲୁ । ତା'ପରେ ଆସିଲା ହର୍ଟିକଲଚର ସଂକ୍ରାନ୍ତୀୟ ବହି ଓ ସଟନ୍ କମ୍ପାନୀ ମଞ୍ଜି । ତାର ଜାଲି ଚାଲୁଣିରେ ଛଣଗୁଣ୍ଡ ଖତ, ଗୋବର ଖତ ଓ ମଣିଷ ମଳ ଖତକୁ ଚଲେଇ ପରିତ୍ୟକ୍ତ ଗୁଡ଼ ମାଠିଆକୁ ଦୁଇଗଡ଼ କରି ଭାଙ୍ଗି ସେଥିରେ ଉପଯୁକ୍ତ ମାତ୍ରାରେ ଉପରୋକ୍ତ ଖତ ଓ ମାଟି ମିଶାଇ ଗୋପବାବୁ ଓ ରମାଦେବୀଙ୍କ ମିଳିତ ଉଦ୍ୟମ ଏବଂ ଆମମାନଙ୍କ ସହଯୋଗିତାରେ କୋବି ତାଡ଼ ପକାଯାଇ ଯେତେବେଳେ ଶତକଡ଼ା ଶହେ ଚାରା ଉଠୁରିଲା, ଆମ ଆନନ୍ଦ ଦେଖେ କିଏ ! ବଡ଼ି ସକାଳେ ଶୀତଦିନ କାକର ଉପରେ କଅଁଳ ଖରା ପଡ଼ି ସ୍ନୋବଲ୍, ପ୍ରାଇଡ୍ ଅଫ୍ ଇଣ୍ଡିଆ, ଡ୍ରମ୍‌ହେଡ଼ ଆଦି ଜାତିଜାତିକା କୋବିପତ୍ର ଝିଲିମିଲି ଦିଶିଲେ । ବର୍ଷକ ମଧ୍ୟରେ ଗୋପବାବୁ ପରିବା ଚାଷରେ ଫେରନ୍‌ଫାର୍ ହୋଇଗଲେ । ବରୀ ଅଞ୍ଚଳର ପ୍ରତି ଚାଷୀ ଘରେ କୋବି, ବିଲାତିବାଇଗଣ ଆଦି ଚାଷର ପ୍ରବର୍ତ୍ତନ କରି ଗୋପବାବୁ ଦମ୍ ମାରିଲେ । ତତ୍‌ପୂର୍ବରୁ ବରୀକୁ ନଈ ସେପାରିରୁ ଭାରରେ କୋବି ଆଣି ବୁଲାବିକା ଅଦରଦରରେ ବିକୁଥିଲେ । ବିଲାତୀବାଇଗଣ ତ ଏପରି ଉତ୍କୃଷ୍ଟଧରଣର ଉଠୁରିଲା ଯେ ଗୋରା ଚିଫ୍ ସେକ୍ରେଟାରୀ ମାନ୍‌ସଫିଲଡ୍ ସାହେବ 'ବେଷ୍ଟ ଅଫ୍ ଅଲ୍', 'ପେଣ୍ଡାରୋଜା' ଟୋମାଟୋ ଖାଇ କହିଲେ – ବିଲାତ ଛାଡ଼ିଲା ଦିନୁଁ ଏପ୍ରକାର ଟୋମାଟୋ ଖାଇ ନ ଥିଲି । ଆଖର୍ ବିଲାତୀ ସଟନ୍ କମ୍ପାନୀ ମଞ୍ଜି ତ ! ଗୁଣ ଚିହ୍ନେ ଗୁଣିଆ ।

ଯେଉଁ ମୂଳାଚାଷରେ ଆମେ ଶତକଡ଼ା ଶହେ ହାରିଥିଲୁ, ସେହି ମୂଳା–'ମିକାଡ଼ୋ', 'ହ୍ୱାଇଟ୍ ଶର୍ଟ', 'ରାକ୍ଷୁସେ' ଆଦି ଖାଇ ଖାଇ ମୂଳା ପ୍ରତି ଅନାସକ୍ତି ଦେଖାଦେଲା । 'ମୁକ୍ତକେଶୀ' ବାଇଗଣଠାରୁ ଆରମ୍ଭ କରି 'ଚାଁ ପାନଟେ' ଯାଏ ନାନାପ୍ରକାର ପରିବା

ଚାଷର ଗବେଷଣାଗାର ହେଲା ସେବାଘରେ । ଗବେଷଣାଗାରରେ ଯାହା ସଫଳ ହେଉଥିଲା, ତାହା ଗାଁ ଚାଷୀଙ୍କ ବାଡ଼ିବଗିଚା ଓ ପାଳ, ପାଟ ଯାଏ ପ୍ରସରି ଯାଉଥିଲା ।

ଏହା ପରେ ଆରମ୍ଭ ହେଲା ଫଳଚାଷର ପ୍ରୟୋଗ । ଦକ୍ଷିଣ-ଭାରତରୁ ଆସିଲା 'ବାଇଗଣପଲ୍ଲୀ', 'ଲାଟସୁନ୍ଦରୀ', 'ବେଗମ୍ ପସନ୍ଦ', 'ଜାହାଙ୍ଗୀର' ଆଦି ଆମ୍ବର କଲମୀ ଡାଡ଼; ପଶ୍ଚିମବଙ୍ଗରୁ ଆସିଲା କ୍ଷୀରସାଗର, ଲ୍ୟାଣ୍ଡା, ଗୋପାଳଭୋଗ ଆଦି ମାଲଦା ଜିଲ୍ଲାର ନାଁ ଡ଼ାକ ଆମ୍ବ ଡାଡ଼ । ହଳଦିଅଣ୍ଡା ମାୟାଧର ମଲ୍ଲିକ ପୁଅ ନବୀନ ଆମ୍ବ କଲମ୍ ଶିଖିବାକୁ ଦକ୍ଷିଣ ଭାରତ ଗଲା । ବରୀ ଅଞ୍ଚଳର ଘରେ ଘରେ କେମିତି ଏଇ ଜାତୀୟ ଆମ୍ବଗଛ ଉତୁରିବ, ସେହି ଚିନ୍ତାରେ ଗୋପବାବୁ ସ୍ୱରାଜ୍ୟ କଥା ପାଶୋରି ପକେଇଥିବା ପରି ମନେ ହେଲା । କେବଳ ଆମ୍ବ ନୁହେଁ ସିଙ୍ଗାପୁର ଓ ସିଲୋନ୍‌ର ଅମୃତଭଣ୍ଡା, ସପେଟା, ମର୍ତ୍ତମାନ୍, ଭୁଷାଓଲୀ କଦଳୀ ଆଦି ବିଭିନ୍ନ ପ୍ରକାର ଫଳଚାଷର ପ୍ରୟୋଗକ୍ଷେତ୍ର ହେଲା ସେବାଘର ।

ଗାଁ ଭିତରେ ବଢ଼ିପାଣି ପଶିଲେ ପାଣି ତୋଡ଼ ଗାଁ ରାସ୍ତାରେ କୋଉଠି ମାଟି ତାଡ଼ି ନେଇଯାଏ ତ କୋଉଠି ପଟୁମାଟି କୁଢ଼େଇ ଦେଇ ଯାଏ । ବଢ଼ି ଛାଡ଼ିଲେ ଚଳପ୍ରଚଳ ହେବାକୁ ଲୋକେ ବିଶେଷତଃ ଛୋଟପିଲା ଅସୁବିଧା ଭୋଗନ୍ତି । ଉଦାହରଣ ସ୍ୱରୂପ ରମ୍ପା କରଣସାହିରୁ ଚମାରସାହିକୁ ଯିବା ରାସ୍ତାଟି । ସେଠାକାର ଗାଁ ସଡ଼କରେ ସପ୍ତାହରେ ଦିନେ ଆମେ ମାଟି ପକାଇବାକୁ ସ୍ଥିର କଲୁ । ଗଣେଶବାବୁ, ଗୋବର୍ଦ୍ଧନ ବାବୁ, ପ୍ରିୟମ୍ବଦା ଦେବୀ, ବୀରବର ବାବୁ ଆଦି ଏ କାମରେ ଆମ ସଙ୍ଗେ ଯୋଗ ଦେଲେ । ଗାଁ ପିଲା ମଧ୍ୟ ଥରେ ଥରେ ଆସି ମାଟି ବୋହିଲେ । ମାତ୍ର ଖଦୀ, ମୌଳିକ ଶିକ୍ଷା ଆଦି ଅନ୍ୟ କାମର ଚାପ ବଢ଼ିବାରୁ ଏକ କାର୍ଯ୍ୟକ୍ରମ ଦୁଇ ତିନିବର୍ଷ ପରେ ବନ୍ଦ ହୋଇଗଲା ।

ପ୍ରଥମେ ଗୋଟିଏ ପାଠଶାଳା ଆରମ୍ଭ ହେଲା ବାଗ୍‌ଦା ହରିଜନ ବସ୍ତିରେ । ଗୋଦାବରୀ ଦେବୀ ସକାଳ ଓଳି ସାନ ପିଲାଙ୍କୁ ପଢ଼ାନ୍ତି । ରାତିରେ ନୈଶ ବିଦ୍ୟାଳୟ ଚଳାନ୍ତି ସୁରେନ୍ଦ୍ର ପଟ୍ଟନାୟକ । ଦିନରେ ମୂଲ ଲାଗୁଥିବା ପିଲାଏ ରାତିରେ ତାଙ୍କ ପାଖରେ ପାଠ ପଢ଼ନ୍ତି । ବିନୋଦ କାନୁନଗୋ ଆସିବାରୁ ସେ ଆନନ୍ଦପୁର ହରିଜନ ବସ୍ତିରେ ସକାଳେ ପିଲାଙ୍କ ପାଠଶାଳା ଓ ରାତିରେ ପ୍ରାପ୍ତବୟସ୍କଙ୍କ ପାଇଁ ପ୍ରୌଢ଼ଶିକ୍ଷା ଆରମ୍ଭ କଲେ । ରମ୍ପା ଓ ପଘିଡ଼ାରେ ପ୍ରଥମେ ଦୁଇଟି ମହିଳା କ୍ଲବ୍ ଆରମ୍ଭ ହେଲା । ରମାଦେବୀ ଓ ଶୋଭାଦେବୀ ଖରାବେଳେ ପଘିଡ଼ା କ୍ଲବ୍‌କୁ ଯା'ନ୍ତି । ଅନ୍ନପୂର୍ଣ୍ଣା ଜିମା

ରମ୍ପା କ୍ଲବ୍ । କ୍ଲବ୍‌ରେ ସୂତାକଟା, ତୁଳାଭିଣା ସାଙ୍ଗରେ ୰ ଜଗବନ୍ଧୁ ସିଂହଙ୍କ 'ଗୃହଲକ୍ଷ୍ମୀ', ଦାସେ ଆପଣେଙ୍କ 'ଧର୍ମପଦ', ଗାନ୍ଧିଜୀଙ୍କ 'ଗାଁ କଥା' ଆଦି ବହି ପଠନ ଶ୍ରବଣ ମଧ୍ୟ ଚାଲେ । ଛୁଆଁ ଛୁଇଁ, ପାଇଖାନା ତିଆରି, ସଫେଇ, ଶିଶୁପାଳନ ବାବଦରେ ତ ପ୍ରତିଦିନ ନିଷ୍ଠିତରୂପେ ଆଲୋଚନା ଚାଲେ । ଆମେ ଗାଁର ମହିଳାମାନଙ୍କ ସାଙ୍ଗରେ ମିଶିବା ଦ୍ୱାରା ବହୁ ବ୍ୟାବହାରିକ ଜ୍ଞାନ ମଧ୍ୟ ହାସଲ କଲୁ । ଭାଷାଜ୍ଞାନ ମଧ୍ୟ ସମୃଦ୍ଧ ହେଲା । ଖଦୀ କାମ, ଚାଟଶାଳୀ ଓ ପ୍ରୌଢ଼ଶିକ୍ଷା କାମକୁ ଏକାଠି ମିଶାଇ ଦିଆ ହେଇଥାଏ । ସୁଶୀଳା ଦେବୀ ବ୍ରାହ୍ମଣୀ ନଦୀ ସେପାରି ରାମପୁରରେ ଖଦୀ ଓ ପ୍ରୌଢ଼ଶିକ୍ଷା ଆରମ୍ଭ କଲେ । ଅରଙ୍ଗାବାଦକୁ ଆଦରିଲେ ମଙ୍ଗଳା ଦେବୀ । ରମ୍ପା ଓ ପଘିଡ଼ାର ପ୍ରାୟ ପ୍ରତ୍ୟେକ ପରିବାରର ଝିଅ ବୋହୂ ସୂତାକଟା ତୁଳାଭିଣାରେ ପାରଙ୍ଗମ ହୋଇଗଲାରୁ ସେମାନଙ୍କ ମଧ୍ୟରୁ କେତେଜଣ ଅନ୍ୟ ଗାଁରେ ରହି କାମ କଲେ । ରମ୍ପାରୁ ହାରାମଣି ଦେବୀ ଧାରପୁର ହଳଦୀବସନ୍ତରେ, ଶରତ୍‌କୁମାରୀ ଦେବୀ ଅଗୁଆଳରେ, ଛାୟା ଅଟିରାରେ ସୂତାକଟା ଶିଖାଇଲେ । କ୍ରମେ ମଲିଆଘାଇ, ବରୀ ମୁସଲମାନ ସାହି, ଚନ୍ଦନପୁର, ହାଟସାହି ଆଦି ଗାଁରେ ଖଦୀ କାମ ବ୍ୟାପିଲା ।

ଅରଟ ଓ ସୂତାକଟା ସରଞ୍ଜାମର ଦାମ୍ କେମିତି ଶସ୍ତା ହେବ ଅଥଚ ଉତ୍ପାଦନ କମିବ ନାହିଁ, ସେ ଦିଗରେ ପରଖ ଚାଲିଥାଏ । ବାଉଁଶ ଅରଟ ତିଆରି କରାଯାଇ ଆମକୁ ଆଗ ସେଥିରେ ସୂତା କାଟିବାକୁ ଦିଆଗଲା । ଘଣ୍ଟାରେ ୫୦୦ଗଜ ସୂତା ଯେପରି କାଟି ହେବ - ସେଥିପାଇଁ ତା'ର ପଖୀ ମାପ ବାରମ୍ବାର ବଦଳା ହେଲା । ବାଉଁଶ ଅରଟର ମୂଲ୍ୟ ଧାର୍ଯ୍ୟ ହେଲା ବାରଣା । ସେ ସମୟରେ ପୁରୁଷଙ୍କର ଦୈନିକ ମଜୁରୀ ଦୁଇଅଣା ଓ ସ୍ତ୍ରୀଲୋକଙ୍କର ଛଅପଇସା ହୋଇଥାଏ । ବାରଣା ପଇସା ଦେଇ ବାଉଁଶ ଅରଟ କିଣିବା ମଧ୍ୟ ମୂଲିଆଙ୍କ ପାଇଁ ସାଧ୍ୟାତୀତ ବ୍ୟାପାର । ସେଥିପାଇଁ ବିନୋଦ କାନୁନଗୋ ଯୋଜନା କଲେ ସ୍ୱଚ୍ଛଳ ଲୋକେ ନିଜ ବୁଦାରୁ ବାଉଁଶ କାଟିବା ବେଳେ ମୂଳେଇ କରି ନ କାଟି ମୂଳରୁ ଦୁଇହାତ ଛାଡ଼ି ବାଉଁଶ କାଟିବେ । ଏହି ଉପାୟରେ ବାଉଁଶ ସଂଗ୍ରହ କରି କେବଳ ବଢ଼େଇ ମଜୁରୀ ନେଇ ମୂଲିଆ ଶ୍ରେଣୀର ଲୋକଙ୍କୁ ବାଉଁଶ ଅରଟ ଯୋଗେଇ ଦିଆଗଲା । ବିଚ୍ଛନ୍ଦ ଓଝା ବାଉଁଶ ଅରଟ, ଭିଣା ଆଦି ତିଆରି ଶିଖିଗଲେ ସହଜରେ । କାରଣ ସେଇଟା ତାଙ୍କର କୌଳିକ ବୃତ୍ତି । କାଳିନ୍ଦୀ ସାମଲ ଖଣ୍ଡେଇତ – ସେ ବଢ଼େଇ କାମ ଶିଖିଲେ । ଦୁର୍ଗା ସାମଲ ଓ ଗୋରାଚାନ୍ଦ ସାମଲ ମଧ୍ୟ ଖଣ୍ଡେଇତ । ସେ ଦୁହେଁ ମଲା ଗୋରୁ ଅନ୍ତକୁ ବଳି ଭିଣା ତନ୍ତ ତିଆରି ଶିଖି ସେହି କାମ କରି ଜୀବିକା ଅର୍ଜନ କଲେ ।

ବ୍ରାହ୍ମଣ ବୈଦ୍ୟନାଥ ଜୋତା ତିଆରି କଲେ । ବଂଶୀଧର ନାୟକ ପରମ ବୈଷ୍ଣବ, ସେ ସତୀଶ ବାବୁଙ୍କ ପାଖରୁ ତାଲିମ ପାଇ ଆସି ମନମୋହନ ଚଉଧୁରୀଙ୍କ ସଙ୍ଗେ ମିଶି ଚମଡ଼ା କଷ କାମ କଲେ । ହରିଜନ ଅକ୍ରୁର ଜେନା (କରିଲୋ ପାଟଣା) କାଠ କାମ ଶିଖି ଖଦୀ ସରଞ୍ଜାମ ତିଆରି କଲେ । ପୂର୍ବବଙ୍ଗରୁ ନାସିରୁଦ୍ଦିନ୍ ଓ ଗବୁମିଆଁ ଆସି ଆନନ୍ଦପୁରର ଅକ୍ରୁର, ବଂଶୀ ପ୍ରଭୃତି ହରିଜନ ଓ ରାମଚନ୍ଦ୍ର, ବଟକୃଷ୍ଣ ଆଦି ସବର୍ଣ୍ଣଙ୍କୁ ଖଜୁରୀ ଗୁଡ଼ ରନ୍ଧା ଶିଖାଇଲେ । Classless casteless society ସ୍ଥାପନର ଏସବୁ ହେଲା ପୂର୍ବ ପ୍ରସ୍ତୁତି । ସର୍ବଧର୍ମ ସମଭାବ ସାଙ୍ଗକୁ ସର୍ବଶ୍ରମ ସମଭାବ ସାଧନା ଚାଲିଲା ।

କନ୍ତକାର ଦୀଘି କୂଳରେ ମାଟି ପଡ଼ି ନୂଆ ଡ଼ିହ ହେଲା । ଚାଟୁବାବୁ (କିଶୋର ନଗର) ଖଦୀ କର୍ମୀ ତାଲିମ ଶିବିର ଆରମ୍ଭ କଲେ । ବିଶ୍ୱନାଥ ପଟ୍ଟନାୟକ, ଶ୍ୟାମସୁନ୍ଦର ଦାସ, ବିଦ୍ୟାଧର ମହାନ୍ତି, ରାମଚନ୍ଦ୍ର ପୁରୀ, ରାମମୋହନ ନାୟକ, ବାସୁଦେବ ସାମଲ ପ୍ରମୁଖ ବହୁ ଯୁବକ ତାଲିମ ପାଇ କାମରେ ଲାଗିଲେ । ଏହି ସମୟରେ ଡ଼କ୍ଟର ଆଇଜାକ୍ ସାନ୍ତ୍ରା ବରୀ ଆସିଲେ । ତାଙ୍କ ସଙ୍ଗେ ପରାମର୍ଶ କରି ଖଦୀ କର୍ମୀଙ୍କୁ କୁଷ୍ଠରୋଗ ଚିକିତ୍ସା ତାଲିମ ମଧ୍ୟ ଦିଆଗଲା । ସମଲାଇପଦରରେ ରାମଚନ୍ଦ୍ରପୁରୀ, ଝାଡ଼ପିପ୍‌ପଳରେ ଗଙ୍ଗାନାରାୟଣ ଦାସ, ରହଣିଆରେ ଧନେଶ୍ୱରବାବୁ, ଷେଣ୍ଟିରାରେ ମାୟାଧର ଖୁଣ୍ଟିଆ, କୁମ୍ଭାରିଆରେ ଗୋକୁଳାନନ୍ଦ ମହାନ୍ତି, ରାଇପୁରରେ ପରମାନନ୍ଦ ପଟ୍ଟନାୟକ, ଯାଜ୍ରାରେ ରାମମୋହନ ନାୟକ, ଗଣେଶ୍ୱରପୁରରେ ହରେକୃଷ୍ଣ ବିଶ୍ୱାଳ, କୁଜେନ୍ଦ୍ରୀରେ ବିଶ୍ୱନାଥ ପଟ୍ଟନାୟକ, ଚିକଣାରେ ବୈଦ୍ୟନାଥ ଦାସ ଓ ଗୋପୀନାଥ ସାହୁ ଆଦି କର୍ମକେନ୍ଦ୍ର ସ୍ଥାପନ କରି ଗ୍ରାମ ସଂଗଠନ କାମ ଆରମ୍ଭ କଲେ ।

ଆଚାର୍ଯ୍ୟ ମହାଶୟ ପ୍ରତି ମାସରେ ଥରେ ବରୀ ନ ଆସିଲେ ଆମେ ରୁଷ୍ଟୁ । ପଣ୍ଡିତ ନୀଳକଣ୍ଠ ଦାସ, ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ସୁଭଦ୍ରା ବିବି, ଶ୍ରୀ ଶଙ୍କରଲାଲ ବ୍ୟାଙ୍କର, ଶ୍ରୀ ରଘୁନାଥ ଶ୍ରୀଧର ଧୋତ୍ରେ, ଠକ୍‌କର ବାପା, କିଶୋରଲାଲ ମଶରୁଆଲା, କାକାସାହେବ କାଲେକର, ଗାନ୍ଧିଜୀଙ୍କ ସଚିବ ପ୍ୟାରେଲାଲଜୀ, ଶ୍ରୀ ସତୀଶଚନ୍ଦ୍ର ଦାସଗୁପ୍ତ ପ୍ରମୁଖ ମଝିରେ ମଝିରେ ଆସି ଆମ କାମ ଦେଖନ୍ତି ଏବଂ ଆମକୁ ସତ୍ ପରାମର୍ଶ ଦିଅନ୍ତି । ଈଶ୍ୱରଲାଲ ବ୍ୟାସ ଆଳିରେ କର୍ମକେନ୍ଦ୍ର କରିଥାନ୍ତି ମାତ୍ର ମଧ୍ୟେ ମଧ୍ୟେ ବିଚାର ବିନିମୟ କରିବା ପାଇଁ ବରୀ ଆସନ୍ତି । ପଢ଼ିହାରୀ ମହାଶୟ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ କଂଗ୍ରେସର ସଂଗଠନାତ୍ମକ କାମରେ ଆସି ଆମ ସାଙ୍ଗରେ ରହନ୍ତି । ଥରେ ଆସିଲେ ଶ୍ରୀ ଜୀବରାମଜୀ କଲ୍ୟାଣଜୀ କୋଠାରୀ । ଗାନ୍ଧୀଜୀଙ୍କ ଆଦେଶରେ ସେ ସୁଦୂର

ଗୁଜରାତରୁ ଆସି ଭଦ୍ରଖରେ ଆଶ୍ରମ ସ୍ଥାପନ କରି ସୂତାକଟା ଓ ଅନ୍ୟାନ୍ୟ ଗଠନମୂଳକ କାମ କରୁଥାନ୍ତି । ସେ ସେବାଘରର ଭିତର ବାହାର ବୁଲି ଦେଖି ରମାଦେବୀଙ୍କୁ କହିଲେ – ଆଶ୍ରମରେ ଗାଈ ନ ଥିବାରୁ ନାଣ୍ଡିଆ ଦିଶୁଛି । ମୁଁ ଆପଣଙ୍କୁ ସବତ୍ସା ଧେନୁ ଦେବି । ଆପଣ ଗୁହାଳ ତିଆରି କରନ୍ତୁ । ନୂଆ ଡ଼ିହ ବନ୍ଧା ହୋଇ ଗୁହାଳ ତିଆରି ହେବା ପରେ ଚାରୋଟି ପୁତ୍ରକନ୍ୟା ପରିବେଷ୍ଟିତ ହୋଇ ଗୋଟିଏ ଗର୍ଭବତୀ ନାଲି ଗାଈ ଢ଼ୁଲି ଢ଼ୁଲି ସେବାଘରର ପ୍ରାଙ୍ଗଣରେ ପ୍ରବେଶ କଲା । ଗାଈଟିର ନାମ ଦିଆଗଲା ପାଟ । ଅନ୍ୟମାନଙ୍କ ନାମ ଦିଆହେଲା, ବାସୁଦେବ, ଗୋପାଳ, ଚମ୍ପା ଓ ବୈଦ୍ୟନାଥ । ପାଟ ଯଥାର୍ଥରେ ଆମର ପାଟ ମହାଦେଈ । ଶିଙ୍ଗ ହଲେଇବା, ଗୋଡ଼ ଉଠେଇବା କ'ଣ ତାହା ତାକୁ ଜଣା ନାହିଁ । ପାଟ ଆମର ବାତ୍ସଲ୍ୟର ପ୍ରତିମୂର୍ତ୍ତି । ଅନ୍ୟ ଗାଈର ବାଛୁରୀ ଏପରିକି ଅନ୍ୟ ଗାଈ ସୁଦ୍ଧା ତା' ପହ୍ନାରୁ କ୍ଷୀର ପିଇଗଲେ ସେ ନାତ ଉଠାଏ ନାହିଁ, ଓଲଟି ତାକୁ ଚାଟେ । ମୋଟରେ ଏଗାରଟି ସନ୍ତାନ ଜନ୍ମ କରି ଆମେ ଜେଲ୍‌ଗଲାରୁ ସେ ଗୋରକ୍ଷଣୀକୁ ଗଲା ।

ଘରେ ଘରେ ଯେପରି ପନିପରିବା ଚାଷ, ଫଳଚାଷ ଆଦିର ପ୍ରବର୍ତ୍ତନ ହେଲା, ସେହିପରି ସେବାଘରେ ଗୋଠେ ଗାଈ ରହିଲାରୁ ଗୋପବାବୁ, ରମାଦେବୀଙ୍କର ବିଚାର ଚାଲିଲା କିପରି ବରୀ ଅଞ୍ଚଳର ଗୋରୁ ଗାଈଙ୍କର ଉନ୍ନତି ହେବ । ଓଡ଼ିଶାରେ ତ ବିଂଝାରପୁରିଆ ଗାଈଗୋରୁଙ୍କର ନାମଡ଼ାକ ଅଛି । ସେ ଗାଈଗୋରୁ କିପରି ଆହୁରି ଉନ୍ନତ ହେବେ ସେହି ମସୂଧା ଚାଲିଲା । ଟ୍ୱିଡ୍ (Tweed) ସାହେବଙ୍କର Cow in India ବହି ଆସିଲା । ହରିଆନା, ଜର୍‌ସୀ, ହଂସୀ, ରେଡ଼୍ ସିନ୍ଧୀ, ବୃନ୍ଦାବନୀ, ମଣ୍ଡଗୁମାରୀ ଆଦି ନାନା ଜାତିର ଗାଈ ବାଛୁରୀ ଦାନସୂତ୍ରରେ ସଂଗ୍ରହ କରାଯାଇ ଚାଲିଲା ଗୋ-ସେବା ପାଳା । ଧୋୟା ଅଞ୍ଚଳରେ କେଉଁ ଜାତି ଭଲ ଉତୁରିବେ, ତାହାରି ପରଖ ଚାଲିଲା ରାତି ଦିନ । ସେ ଗାଈ ବାଛୁରୀଙ୍କ ଯତ୍ନ ନେବା, ଖୋଇବା ପେଇବା ଆଦି କାମ ଆମର । ସେମାନଙ୍କୁ ଆମେ ଦାନା ଖୋଇବୁ, ପ୍ରତ୍ୟେକଙ୍କୁ ପ୍ରତିଦିନ ଗାଧୋଇ ଦେଇ ଖରଡ଼ା ବୁରୁଶ କରିବୁ । ଗୁହାଳ ପୋଛିବୁ ଦିନରେ ତିନିଥର । ଗାଈଗୁଡ଼ାକ ଜାଣ ପଶୁ । ସେମାନେ ମଧ୍ୟ ମଣିଷ ଛୁଆ ପରି ମଣିଷକୁ ଆଦରନ୍ତି । ମନମୁତାବକ ମର୍ଦ୍ଦନ, ଖରଡ଼ା ବୁରୁଶ ନ ହେଲେ ଖାଲି ଢ଼ିମା ଢ଼ିମା ଆଖି କାଢ଼ି ଅନେଇବେ । ପୁଣି ସମସ୍ତଙ୍କ ଖାଇବା ଶୈଳୀ ମଧ୍ୟ ନିଆରା ନିଆରା । ଯମୁନା ଦାନା ଖାଇବା ବେଳେ ବାଲଟିରେ ଦାନା ଓ ପାଣି ହଲିଲେ ସେ ରୁଷିବ । ତା' ପାଖରେ ଧୀର କରି ବାଲଟି ଥୋଇଦେଲେ ସେ ମୁହଁ ନ ବୁଡ଼େଇ ସୋସାଇଟି ଲେଡ଼ି ସୁପ୍ ପିଇଲା ପରି କୌଣସି ଶବ୍ଦ ନ କରି ଆଗ ପାଣିତକ

ପିଇଦବ । ତା'ପରେ ସେ ଦାନା ଖାଇବ । ନର୍ମଦା ଖାଇବା ବେଳେ ବାଲଟିରେ ହାତ ପୁରାଇ ଦାନାକୁ ଘାଣ୍ଟିବାକୁ ହେବ । ଘାଣ୍ଟିବା ବନ୍ଦ ହେଲେ ସେ ମୁଣ୍ଡ ଟେକି ଆଖି ତରାଟି ଧମକେଇବ । ଗୌରୀ ପାଖରେ ଦାନା ବାଲଟି ରଖିବା ମାତ୍ରେ ସେ ବାଲଟିରେ ମୁହଁ ଭରତି କରି କିଛି ପାଣି ଚହଲେଇ ଦେଇ ଦାନା ଖାଇବ । ଗୋପବାବୁ ଶାସ୍ତ୍ର ପଢ଼େଇ ଥାନ୍ତି ଦୁହାଁଳିଆ ଗାଈକୁ ବେଶୀ ପାଣି ତେଣ୍ଟେଇବା ଦରକାର, ଗୌରୀ ସେ ତତ୍ତ୍ୱ ବୁଝିଲେ ତ ? ନନ୍ଦିନୀ ଇଂଲିଶ ଗାଈର ବାଛୁରୀ । ଜାହ୍ନବୀ ଦେବୀ ବାଛୁରୀଟିକୁ ପଠାଇବା ବେଳେ ରମାଦେବୀଙ୍କୁ ଲେଖିଥିଲେ – ସେ ଘୋଳ ପିଇବାକୁ ସୁଖ ପାଏ । ସେଥିପାଇଁ ତା'ପାଇଁ ଘୋଳ ବ୍ୟବସ୍ଥା ହୋଇଥାଏ । ଅନ୍ତର୍ଯ୍ୟାମୀବାବୁ (ପଣ୍ଡା) ଏସବୁ କାରବାର ଦେଖି ବରାବର ଥଟ୍ଟା ଖେଳନ୍ତି-''ମୁଁ ଆରଜନ୍ମକୁ ସେବାଘରେ ଗାଈ ହୋଇ ଜନ୍ମ ହେବି ।''

ଏହିପରି ପରଖ ଚାଲିଥିଲା ବେଳେ ଆବିର୍ଭୂତ ହେଲେ ହରିୟାନାର ବୃଷଭରାଜ । ନାମକରଣ ହେଲା ବିଶ୍ୱନାଥ । ପ୍ରକୃତରେ ବିଶ୍ୱନାଥଙ୍କ ପରି ତା'ର କର୍ପୂରବିନିନ୍ଦି କାନ୍ତି, ଅନାସକ୍ତ ଉଦାସ ଦୃଷ୍ଟି । ସାକ୍ଷାତ୍ ନନ୍ଦୀଙ୍କ ବଂଶଧର ପରି ସେ ଦିଶୁଥାଏ । ପ୍ରଥମ ଦର୍ଶନରେ ଆମେ ତା' ସହିତ ସ୍ନେହଡ଼ୋରରେ ବାନ୍ଧି ହୋଇଗଲୁ । ବିଶ୍ୱନାଥ ପାଇଁ ସର୍ବପ୍ରକାର ଭି.ଆଇ.ପି. ବ୍ୟବସ୍ଥା ହେଲା । ତା'ର ଅଲଗା ଡ଼ିହ, ଅଲଗା ଗୁହାଳ, ଅଲଗା ଦାନା । ତା' ଛଣଗଦା ମଧ୍ୟ ଅଲଗା । ସେ ଗାଈ ଗୋଠରେ ଚରେ ନାହିଁ । ଭାଗବତରେ ଯେପରି ବର୍ଣ୍ଣନା ଅଛି, ତା' ନାକରେ ସେହିପରି ଗୋଟାଏ ତମ୍ବା ନୋଥ ଝଲୁଥାଏ । ସେହି ନୋଥରେ ଦଉଡ଼ି ବାନ୍ଧି ତା'ର ଖାସ୍ ପରିଚାରକ କଛତରୁ ତାକୁ ବୁଲେଇ ନିଅନ୍ତି । ବୁଲି ଫେରିବା ବେଳକୁ ସେ ଦୁଆର ମଝିରେ ଖୁଣ୍ଟପରି ଛିଡ଼ାହୁଏ । ଗୋପବାବୁ ବା ମନମୋହନ ଚୌଧୁରୀଙ୍କ ଠାରୁ ମନବୋଧିଆ ମର୍ଦ୍ଦନ ଖାଇ ସେ ଗୁହାଳକୁ ଯାଏ । ବିଶ୍ୱନାଥକୁ ଏତେ ଗେହ୍ଲା କରିବାର କାରଣ ହେଲା ଗୋପବାବୁ ହରିୟାନା ଓ ବିଂଝାରପୁର ଗୋ-ଜାତିର ଗୋଟାଏ ମିଶ୍ରିତ ଗୋ-ବଂଶ ସୃଷ୍ଟି କରିବା ମତଲବରେ ଥାନ୍ତି । ଶୁଖିଲା ପାଚିଲା ହରିୟାନା ରାଜ୍ୟର ବିଶ୍ୱନାଥ ଧୋୟା ମୂଳକର ପଚର ପଚର ପାଣି କାଦୁଅରେ ଚକ୍ରିଯିବାର ଦେଖି ଗୋପବାବୁ ସୁକୁମାର ସୁକୁମାରୀ ନାମରେ ହରିୟାନା ଗାଈ ବାଛୁରୀ ଅଣାଇଲେ । ତା'ପରେ ଆସିଲେ ଧୃଷ୍ଟକେତୁ, ଚେକିତାନ, କାଶୀରାଜ, ପୁରୁଜିତ୍ ଓ କୁନ୍ତିଭୋଜ । ସେମାନେ କୁରୁକ୍ଷେତ୍ରରୁ ଆସିଥିବାରୁ ଆମେ ଏ ନାମ ଦେଲୁ । ସେମାନଙ୍କୁ ପାଞ୍ଚଖଣ୍ଡ ଗାଁରେ ରଖାଗଲା । ପ୍ରତିଦିନ ଉପରଓଳି ଏ ଷଣ୍ଢର ରଖୁଆଳମାନେ ସେମାନଙ୍କୁ

ସେବାଘରକୁ ବୁଲେଇ ଆଣନ୍ତି । ପ୍ରତିଦିନ ଗୋପବାବୁ ବା ରମାଦେବୀ ସେମାନଙ୍କ ଖବରାଖବର ବୁଝନ୍ତି । ଶୀତଦିନ ଓ ଖରାଦିନ ତ ଭଲରେ କଟିଲା । ବର୍ଷା ଆରମ୍ଭ ହେବାମାତ୍ରେ ଷଣ୍ଢମାନେ ଗିଲେଇଲେ । ଆଜି ଯଦି କାହାର ଗୋଡ଼ ଫୁଲିଲାଣି, କାଲି ଆଉ ଗୋଟିକର ଫଡ଼ିଆ ଦରଜ । ଅଳକାଶ୍ରମର ପ୍ରାକ୍ତନ ଛାତ୍ର ଲକ୍ଷ୍ମୀଧର ବାବୁ ଯାଜପୁରରେ ପଶୁଚିକିତ୍ସକ ହୋଇ ରହିଥାନ୍ତି । ତାଙ୍କୁ ଡ଼କରା ହେଲା । ଚାଲିଲା ଆକ୍ଷରିକ ଅର୍ଥରେ ଗୋ-ସେବା । ପ୍ରତି ଛଅଘଣ୍ଟାରେ ସୋଡ଼ିସାଲିସିଲେଟ୍ ମିକସଚର ପିଆଅ, ଗରମ ପାଣି ସେକ ଦିଅ, ଅଖା ଘୋଡ଼େଇ ରଖ, ଗୁହାଳ ଶୁଖିଲା ରଖ ଆଦି ନାନା ପ୍ରକାର ବରାଦ ଚାଲିଲା । କୌଣସି ପ୍ରକାରେ ଓଡ଼ିଶାର ବିଶେଷରେ ବରୀ ଅଞ୍ଚଳର ଜଳବାୟୁରେ ସେମାନଙ୍କୁ ଚଳେଇବା ପାଇଁ ଏ ପ୍ରୟାସ ଚାଲିଥାଏ । ପରିଶେଷରେ ସେ ପରଖ ଯେ ସଫଳ ହେଲା ତାହାର ସାକ୍ଷୀ ହେଉଛନ୍ତି ବରୀ ଅଞ୍ଚଳର ବିଂଝାରପୁର ହରିୟାନା ମିଶ୍ରିତ ଗୋ-ଜାତିର ଗାଇ, ବଳଦ, ଛଡ଼ା ଓ ଦାମୁଡ଼ି ।

ବନ୍ୟା ସହିତ ତ ପ୍ରତିବର୍ଷ ଦେଖା ସାକ୍ଷାତ ହୁଏ କିନ୍ତୁ ସବୁଠାରୁ ରୋମାଞ୍ଚକର ସାକ୍ଷାତ ହୋଇଥିଲା ସେବାଘରେ ପ୍ରଥମ ବର୍ଷ ରହଣି ବେଳେ । ନୂଆ ଡ଼ିହ । ବଢ଼ିପାଣି ଡ଼ିହ ପହଣ୍ଡରେ ଲାଗିବା ମାତ୍ରେ ନୂଆ ମାଟି ବସିଯାଇ ଡ଼ିହ ଫାଟି ଆଁ କଲା । ଘର ଭିତରେ ସୁଦ୍ଧା ଅହିଆ ଖୋଳା ହେଲା ପରି ଲମ୍ବା ଲମ୍ବା ଗାତ । ସେଥିରେ ପୁଣି ବଢ଼ି ପାଣିରେ ଭାସି ଆସୁଥିବା ବିଛା, ସାପ ସେ ଗାତରେ ପଶି ଯାଉଥାନ୍ତି । ରଙ୍ଗା ପିମ୍ପୁଡ଼ିଗୁଡ଼ାକ ମଳା ବାନ୍ଧି ବଢ଼ି ପାଣିରେ ଭାସିଗଲା ବେଳେ ଦେଖିବାକୁ ସିନା ଖୁସି ଲାଗେ, କିନ୍ତୁ ସେମାନେ ଡ଼ିହ ବାରି ଗଛପତ୍ର ଆଶ୍ରା ପାଇବା ମାତ୍ରେ ଯେପରି ଚଢ଼ିଆସି ଆକ୍ରମଣ କରନ୍ତି, ସେଥିରେ ଖୁସିର ଗନ୍ଧ ବାସନା ନ ଥାଏ । ଏସବୁ ବର୍ଣ୍ଣନା କରି ଆଚାର୍ଯ୍ୟ ମହାଶୟଙ୍କୁ ଚିଠି ଲେଖିଲୁ ଯେ ଆମକୁ ବଢ଼ି ପାଣିକୁ ପେଲି ଦେଇ ଆପଣ କେମିତି ମନ ଟାଣ କରି ନୀଳାଚଳରେ ରହିଛନ୍ତି । ଆଚାର୍ଯ୍ୟ ମହାଶୟ ଲେଖିଲେ -

ପୁରୀ
୧୧.୮.୩୫

ଚୁନୀ,

ତୋ ପତ୍ର ମଧ୍ୟ ପୁରୀକୁ ଫେରି ପାଇଲି । ତୋ ବଢ଼ି ଓ ଆଶ୍ରମ ବର୍ଣ୍ଣନା ପଢ଼ି ଦୁଃଖ ଲାଗିଲା । ତୁମେମାନେ ଯେପରି ପ୍ରଶସ୍ତ ଦିଗନ୍ତବିସ୍ତାରୀ ଜଳରାଶି ମଧ୍ୟରେ ଲହରି

ଆଘାତରେ ପ୍ରତି ମୁହୂର୍ତ୍ତରେ ପତନୋନ୍ମୁଖ ବାରଣ୍ଡାଯୁକ୍ତ ଘରେ ଅଛ, ଖାଲି ସେତିକି ନୁହେଁ ସେ ଘର ସଛିଦ୍ର କାନ୍ଥ ସବୁ ବିଛା ପ୍ରଭୃତି ଜୀବମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଏବଂ ଘର ତଳ ସାପ, ବେଙ୍ଗ, ଜନ୍ଦା, ପିମ୍ପୁଡ଼ିମାନଙ୍କ ଦ୍ୱାରା ସମାକୀର୍ଣ୍ଣ ଓ ସାମୟିକ ମୁଖରିତ ଏବଂ ସେମାନେ ଯେ ଖାଲି ଆଶ୍ରୟ ନେଇଛନ୍ତି ତାହା ନୁହେଁ ସମୟ ସମୟରେ ବିଶେଷତଃ ରାତିରେ ତୁମମାନଙ୍କ ଭିତରୁ କାହାରି କାହାରିକୁ ସଙ୍ଖୋଳିବା ଛାଡୁ ନାହାନ୍ତି । ଏ ସବୁକୁ ଆଖି ଆଗରେ ଆଣି ରଖିଦେଲା ବେଳେ ଦୁଃଖ ହେଉଛି । କିନ୍ତୁ ସୁନା ଅଗ୍ନିରେ ପୋଡ଼ିହୋଇ ଶୋଭାପାଏ । ସେଥିରେ ସେ ଦୁଃଖରେ ତା'ର ଉନ୍ନତି । ଦୁଃଖ ମନୁଷ୍ୟର ସତ୍‌ସାହସ, ସଦ୍‌ଗୁଣ, ଆତ୍ମନିର୍ଭରତା ଓ ଆତ୍ମଶକ୍ତିର ବିକାଶସ୍ଥଳ । ସେଥିପାଇଁ ସବୁ ବଡ଼ ଲୋକମାନେ ସର୍ବଦା ଦୁଃଖର ସମ୍ମୁଖୀନ ହେବାକୁ ଲୋଡ଼ନ୍ତି । କେହି କେହି ଭକ୍ତ ଭଗବାନଙ୍କଠାରେ ଏହି ବର ମଧ୍ୟ ପ୍ରାର୍ଥନା କରିଛନ୍ତି ଏବଂ କରିଥାନ୍ତି । ଏ ସବୁର ଉଦାହରଣ ଆମମାନଙ୍କ ପୁରାଣରେ ବହୁତ ବେଶି ଅଛି । ବର୍ତ୍ତମାନ ପରୀକ୍ଷାରେ ପଡ଼ିଛ । ବହି ପାଠ ପ୍ରକୃତ ପାଠ ନୁହେଁ । ଏହି ସବୁ ପାଠ ପ୍ରକୃତ ଅଙ୍ଗେ ଲିଭେଇବା ପାଠ । ତୁମେମାନେ ସେଥିରେ ଉତ୍ତୀର୍ଣ୍ଣ ହେବା ପାଇଁ ତିଆର ହେଉଛ । ଭଗବାନ ତୁମମାନଙ୍କୁ କୃତବିଦ୍ୟ କରନ୍ତୁ ଏହାହିଁ ମୋର ଏକାନ୍ତ ପ୍ରାର୍ଥନା ।

ଆଉ ଗୋଟିଏ ମୋର ଅଭିଯୋଗ ଯେ ସେଠାକୁ ଗଲେ କହେ, 'ପିଲାଏ ମୁଁ ତୁମକୁ ସବୁବେଳେ ମନେକରେ । କିନ୍ତୁ Out of sight out of mind ଭଳିଆ ଏ ଆଡ଼କୁ ଆସିଲେ ଭୁଲିଯାଏ । ଏହା କଦାପି ନୁହେଁ । ବର୍ଷା ସମୟରେ ବରୀ ଯିବି ବୋଲି କହିଥିଲି । କାହିଁ, ସେ ସୁବିଧା ହେଲା ନାହିଁ । ......

ସ୍ନେହାଶୀଷ ଗ୍ରହଣ କରିବୁ ଏବଂ ବାକି ସମସ୍ତଙ୍କୁ ଜଣ ଜଣ କରି ଜଣାଇ ଦେବୁ ।

ଇତି

ତୋର ଶୁଭାକାଂକ୍ଷୀ

ଆଚାର୍ଯ୍ୟ

ଆଉ କହିବାକୁ କିଛି ରହିଲା ନାହିଁ । ସେହି ବଢ଼ି ବଦଳ ପାଣି କାଦୁଅରୁ ଆନନ୍ଦ ଖୋଜି କାଢ଼ିବା କଳା ଆୟତ୍ତ କରିବା ଚେଷ୍ଟାରେ ରହିଲୁ । କିନ୍ତୁ ସେଇଟା କ'ଣ ସହଜ ବ୍ୟାପାର ? ବଡ଼ ବଢ଼ି ଆସେ ସାଧାରଣତଃ ଗମ୍ହାପୂନେଇ ବେଳକୁ । ଧୋୟାରେ

କିମ୍ବଦନ୍ତୀ ଅଛି ଗଙ୍ଗକୁ ଆସେ ହାଡ଼ିଆଣୀ । ସେ ସବୁ ମଇଳା ଆବର୍ଜନା ଧୋଇଧାଇ ନେଇଯାଏ । ଚିତଉ ଅମେଇସାକୁ ଆସେ ଚିତ୍ରା । ସେ ନୂଆବୋହୁ, ଅନ୍ଧାର ରାତିରେ ନାକଚଣା ହଜେଇ ଦେଇ ସେ ଫେରିଯାଏ । ସେ ନାକଚଣା ଖୋଜିବାକୁ ଗର୍ଜନ କରି ଗମ୍ହାକୁ ଆସେ ନଣନ୍ଦ ରମ୍ହା । ଏହି ଗମ୍ହା ପୁନେଇ ବଢ଼ି ବେଳକୁ ଯଦି ତଳ ପାଣି ଉପର ପାଣି ଏକା ସାଙ୍ଗରେ ଆସିଲା ପୁଣି ବଢ଼ି, ଝଡ଼ି, ବୁଢ଼ୀ ଅର୍ଥାତ୍ ହଇଜାର ତ୍ରହ୍ୟସ୍ପର୍ଶ ହେଲା ତେବେ ପାଇଟି ଛିଡ଼ିଲା । ନଦୀ ଶଯ୍ୟା ଉତ୍ତରୋତ୍ତର ଉଚ୍ଚ ହୋଇ ଲାଗିଥିବାରୁ ଚାରି ପାଞ୍ଚ ବର୍ଷ ବ୍ୟବଧାନରେ ଥରେ ଘରଭଙ୍ଗା ବଢ଼ି ନିଶ୍ଚୟ ହେବ । ଘରେ ପାଣି ପଶିବ, ଘର ଭାଙ୍ଗିବ, ଗାଈ ବାଛୁରୀ ଭାସିଯିବେ, ଚାଳ ଉପରେ ବା ଗଛ ଉପରେ ଆଶ୍ରୟ ନେଇଥିବା ବେଳେ ଥରେ ଥରେ ପିଲାଛୁଆ ମଧ୍ୟ ହାତରୁ ଖସି ଯାଇ ବଢ଼ି ପାଣିରେ ଭାସିଯିବେ । ସେଥିପାଇଁ ଗାଈଗୋରୁ ଓ ପିଲାଛୁଆଙ୍କୁ ଘର ଚାଳ ଗୁଅରେ ବାନ୍ଧି ପକାଇବା ହେଲା ନିରାପଦ ପନ୍ଥା । ଗୋରୁ ଗୁଅରେ ବନ୍ଧା ହୋଇ ପହଁରୁ ଥିବେ, ଗୃହସ୍ଥ ଚାଳ ଉପରେ ବସି ଚାଳରୁ କେରାଏ କେରାଏ ଛଣ ଓଲାରି ତାଙ୍କ ମୁହଁ ଆଗରେ ଦେଖଉଥିବ । ଛୋଟ ପିଲାଙ୍କ ଅଣ୍ଟାରେ ଦଉଡ଼ି ବାନ୍ଧି ସେ ଦଉଡ଼ିର ଆର ମୁଣ୍ଡ ଗୁଅରେ ବନ୍ଧା ହୋଇଥିବ । ଏ ଦୃଶ୍ୟ ଦେଖିବାକୁ ଇଚ୍ଛା କଲେ ଅନ୍ତତଃ କଣ୍ଡୁପୋଇ ଗାଁଯାଏ ଯିବାକୁ ପଡ଼ିବ । ବଢ଼ି ପାଣି ମାଡ଼ି ଆସିବା ବେଳେ ବୁଦ୍ଧି ସ୍ଥିର ରଖି ଏ ସବୁ ଯୋଜନାବଦ୍ଧ କାମ କରନ୍ତି ପାଟୁଆଳୀ ଗାଁମାନଙ୍କରେ ରହୁଥିବା ଧୋୟାବାସୀ । କେହି କେହି ପୁଣି ମାଟି ଉମହେଇକୁ ଗଛ ଉପରକୁ ଟେକି ନେଇ ଦୁଇଡାଳ ସନ୍ଧିରେ ଥୋଇ ଘସି ନିଆଁରେ ଚାଉଳ ଫୁଟାଇ ପିଲାଙ୍କୁ ଢ଼ୋକ ଦେଇ ଦୁଇ ତିନିଦିନ ବଞ୍ଚାଇ ରଖନ୍ତି । କିନ୍ତୁ ବଢ଼ିପାଣି ଖସିବା ପରେ ଚାଳ ଉପରୁ ଓହ୍ଲେଇ ଖାଇବ କ'ଣ ?ଚାରିଆଡ଼େ ତ ଜଳାର୍ଣ୍ଣବ । କୋକୀ ପରି ନିଜ ଡ଼ିହରେ ବସି ରହିଥିବେ । ଥରେ ଥରେ ପାଞ୍ଚ ସାତ ଦିନ ଅନାହାରରେ କଟିଯାଏ । ମାଛଧରାଳୀ ଗୋରୋଙ୍କ ଡ଼ଙ୍ଗା ପାଇଲେ ଡ଼ଙ୍ଗାରେ ଚଢ଼ି ଗୋଦାମ ଡ଼ିହ ବା ଅନ୍ୟତ୍ର କିଛି ପାଇବା ଆଶାରେ ଯିବେ । କିନ୍ତୁ ମିଳିବାର କି ଠିକଣା । ଅନାହାର, ଅଖାଦ୍ୟ ଭୋଜନ ଫଳରେ ହଇଜା ଆରମ୍ଭ ହୋଇଯିବ । ହଇଜା ରୋଗୀର ଶବକୁ ପାଣିରେ ଭସାଇ ଦେବା ଛଡ଼ା ଗତ୍ୟନ୍ତର ନାହିଁ । ନଈ କୂଳେ କୂଳେ ଗାଁମାନଙ୍କରେ ଚାହୁଁ ଚାହୁଁ ହଇଜା ବ୍ୟାପିଯିବ ।

୧୯୬୦ ବଢ଼ିରେ କ'ଣ ହେଲା ! ଅଗଷ୍ଟ ଷୋଳ ତାରିଖ ରାତି ନଅଟାରେ ବଢ଼ିପାଣି ଦେଖିବାକୁ ଯାଇ ଆମେ ଦେଖିଲୁ 'ବାଣୀଶ୍ରୀ' (ମୌଳିକ ବିଦ୍ୟାଳୟ) ଫାଟକ

ପାଖରେ ବ୍ରାହ୍ମଣୀ ଓ ଖରସ୍ରୋତା ଭେଟାଭେଟି ହେଲେଣି । ଦାଶେ ଆପଣଙ୍କ ବନ୍ଦୀର ଆତ୍ମକଥାରୁ-

'ଖରସ୍ରୋତା ସଙ୍ଗେ କରି ତୁ ମନ୍ତ୍ରଣା
ତଟବାସୀ ଜନେ ନ ଦିଅ ଯନ୍ତ୍ରଣା ।'

ଆବୃତ୍ତି କରି କରି ଫେରିଲୁ । ରାତି ଏଗାରଟାରେ ପାଣି ଆସି ଆମ ରହିବା ଘର ଦୁଆର ମୁହଁରେ ପହଞ୍ଚିଗଲା । ପିଇବା ପାଣି ମିଳିବ ନାହିଁ ବୋଲି ତରତର ହୋଇ କୂଅରୁ ପାଣି କାଢ଼ି ଘରର ଉଚ୍ଚତମ ସ୍ଥାନରେ ପାଣି ପାତ୍ର ରଖିବା ହେଲା ପ୍ରଥମ କାମ । ଜିନିଷପତ୍ର ଉପରକୁ ଟେକୁ ଟେକୁ କଅଁଳା ବାଛୁରୀ ପରି ଫକ୍ ଫକ୍ ଡ଼େଇଁ ଘରେ ପଶିଗଲା । ସେପାରି ଶ୍ରୀମତୀ ନାୟକ ଆମ ପାଖରେ ଥାଏ ବ୍ରାହ୍ମଣୀ ଏପାରିରେ ପାଞ୍ଚବର୍ଷ ଦିନୁ ବାପଛେଉଣ୍ଡ ତା'ର ଏକମାତ୍ର ପୁତ୍ର କୃଷ୍ଣ ଥାଏ ସେପାରି ରାମପୁରେ । ଶ୍ରୀମତୀର ପ୍ରାଣ କାଲୁବାଲୁ ହେଉଥାଏ । କିନ୍ତୁ ଉପାୟ ବା କ'ଣ ଅଛି ? କୋଉ ନାଉରୀ ସେ ବ୍ରାହ୍ମଣୀରେ ନାହା ଫିଟେଇବ ! 'ପୀନ ପୟୋଧାରୀ' ବ୍ରାହ୍ମଣୀ ଆଜି ପ୍ରଳୟଙ୍କରୀ ଶଙ୍କରୀ ରୂପ ଧରିଛି । ରାମପୁର ଉଚ୍ଚ ଗାଁ । ବଢ଼ିପାଣି ଏଥିପୂର୍ବରୁ କେବେ ଘରେ ପଶି ନ ଥିଲା । ଖଣ୍ଡେଇତ ସାହିରେ ଅଧିକାଂଶ ଘରର ମାଟିଦୁଆ ଦିଆ କାନ୍ଥ । ତିହାଡ଼ୀ ମରା ମରା ଝାଟିନିଆ ମାଟିଛଟା କାନ୍ଥ ସିନା ଭାଙ୍ଗିବ ନାହିଁ, ମାଟି ଧୋଇଯିବ, ବାଡ଼ ତିହାଡ଼ି ଝୁଲୁଥିବ । ମାଟିଦିଆ କାନ୍ଥରେ ତ ପାଣି ଲାଗିବା ମାତ୍ରେ ଦୁମ୍ ପଟାସ୍ । ରାମପୁରେ ଗୋଟିଏ ଗୋଟିଏ କାନ୍ଥ ପଡ଼ିବା ଶବ୍ଦ ଏପାରିକି ଶୁଭେ - ତା'ପରେ ଶୁଭେ ହରିବୋଲ ହୁଳହୁଳି । ବାହାଘରେ ବି ହୁଳହୁଳି, ଘରଭଙ୍ଗାରେ ବି ହୁଳହୁଳି ! ଏଣେ ବନ୍ଧ ଉପରେ ଛିଡ଼ା ହୋଇ ଶ୍ରୀମତୀ ଡ଼ାକ ମାରୁଥାଏ ପାଣି କୋଉଯାକେ ମାଡ଼ିଲା ! ନଈରେ ପାଣି, ତେଣୁ ଏପାରି ସେପାରି କଥାବାର୍ତ୍ତା ସ୍ପଷ୍ଟ ଶୁଭୁଥାଏ । ଘର କାନ୍ଥ ପଡ଼ିଲା, ଘରେ ପାଣି ପଶିଲା, ଶ୍ରୀମତୀର ପୁଅକୁ କାନ୍ଧରେ ବସେଇ ସମସ୍ତେ ପାଣିରେ ପଶି ଯାଇ ବୈଷ୍ଣବ ସାମଲଙ୍କ ଉଚ୍ଚ ଡ଼ିହରେ ଆଶ୍ରୟ ନେବା ଜାଣି ଶ୍ରୀମତୀ ଥୟ ହେଲା । କାନ୍ଥ ପଡୁଛି, ହରିବୋଲ, ହୁଳହୁଳି, କାନ୍ଦବୋବାଳି ଶୁଭୁଛି, ନଈ ମଝିରେ ଘର ଭାସି ଯାଉଛି । ଚାଳ ଘର ଉପରେ ମଣିଷ ବସି ଆର୍ତ୍ତସ୍ୱରରେ ସାହାଯ୍ୟଭିକ୍ଷା କରୁଛି । ରାତିସାରା ଏଇ ଲୀଳା । ନଈ ବଢ଼ି ବଢ଼ି ବାଣୀଶ୍ରୀର ସ୍କୁଲଘର, ଲେବରେଟରୀ, ଲାଇବ୍ରେରୀରେ ପାଣି ପଶିଲା । କେବଳ ଆଚାର୍ଯ୍ୟ ଭବନ ଓ ବିନୋବା ଭବନ ଭିତରେ ପାଣି ପଶି ନ ଥାଏ ।

ଏ ବନ୍ୟାକୁ ତ ଲକ୍ଷ୍ମୀଠାକୁରାଣୀଙ୍କ ଶୁଭାଶୀର୍ବାଦ ବୋଲି ଲୋକେ ଭାବୁଥିଲେ । ପଟୁମିଶା ପାଣି ହେଲା ଧାନର ଓ୍ୱାଟେରବରିଜ୍ କମ୍ପାଉଣ୍ଡ ସଦୃଶ ସଞ୍ଜିବନୀ ସୁଧା । ବଢ଼ିପାଣି ପଶି ଯଦି ଚବିଶ ଘଣ୍ଟା ବା ଅଠଚାଳିଶ ଘଣ୍ଟା ଭିତରେ ବିଲରୁ ପାଣି ଛାଡ଼ିଯାଇ ବର୍ଷା ମୁନ୍ଦିଏ ହୋଇଗଲା ତେବେ ଜାଣିବେ ଧୋୟା ଚାଷୀ ଠିଆ ଲାଙ୍ଗୁଡ଼ରେ ନାଚିଲେ । କିନ୍ତୁ ଆଜି ରିଙ୍ଗ୍ ବନ୍ଧ ହେଲାଦିନୁ ବ୍ରାହ୍ମଣୀପାଣି ବାଟ ରିଙ୍ଗ୍ ବନ୍ଧ ପାଖରେ ସଂକୀର୍ଣ୍ଣ ବୋତଲ ବେକ ପରି ହୋଇଗଲା । ସେଥିପାଇଁ ବରୀ ଅଞ୍ଚଳରୁ ବ୍ରାହ୍ମଣୀ ପାଣି ସମୁଦ୍ରକୁ ଶୀଘ୍ର ଖଲାସ ହେଲା ନାହିଁ । ପୁଣ୍ଡିଆ ଧାନଗଛ ସାତଦିନ ପାଣିରେ ବୁଡ଼ି ରହିଲେ ବି ପୁଣି ଘାଗରା ମେଲେଇ ଦିଏ । ଅନ୍ୟ ଧାନଗଛ ଏତେଦିନ ପାଣି ତଳେ ତିଷ୍ଠି ପାରନ୍ତି ନାହିଁ । କିନ୍ତୁ ପାଟ ପାଣି ତ ଛାଡୁ ଛାଡୁ ବର୍ଷେ ବର୍ଷେ ପନ୍ଦର ଦିନ ବିତିଯାଏ । ଯାହାହେଉ, ଅଗଷ୍ଟ ସତର ତାରିଖ ଦିନ ଦିନ ବାରଟା ବେଳକୁ ପାଣି ଦମ୍ ମାରିଲା । ଧୀରେ ଧୀରେ ପାଣି ଘର ଭିତରୁ ଖସୁ ଖସୁ ଅଠର ତାରିଖ ସକାଳ ହେଲା । ରମାଦେବୀ ଆଜ୍ଞା ପତ୍ରିକା ଜାରି କଲେ ଯାହା ଘରେ ଚାଉଳ, ମୁଗ,ବିରି, ମାଣ୍ଡିଆ ଯାହା ଖାଦ୍ୟଶସ୍ୟ ଅଛି ସବୁ ଆଣି ବନ୍ଧ ଉପରେ ରାନ୍ଧି ଗାଁ ପିଲାଙ୍କୁ ଖୁଆଇ ବଞ୍ଚାଅ । କ୍ଷେତ୍ରବାସୀ ପତି ମୁଣ୍ଡରେ ଠେକା ଭିଡ଼ି ରନ୍ଧନ ଦାୟିତ୍ୱ ନେଲେ । ଷଷ୍ଠୀ ଠାକୁରାଣୀଙ୍କ କୃପାରୁ ଗାଁରେ ଶହଶହ ପିଲା । ଆମ ସଞ୍ଚିତ ଖାଦ୍ୟଶସ୍ୟ ସମୁଦ୍ରକୁ ଶଙ୍ଖେ ପଣା ସଦୃଶ ହେଲା । ଢ଼ିଙ୍କିଶାଳରେ ପାଣି । ତେଣୁ ଚକିରେ ଧାନ ରଗଡ଼ି ଚାଉଳ କାଢ଼ି ଜାଉ ରନ୍ଧା ଚାଲିଲା । ସେତିକିବେଳେ ଚନ୍ଦନପୁର ହରିଜନ ସାହିର ମଙ୍ଗୁଲୀ, ବଳରାମ ଓଗେର ଯେତେ ମର୍ଦ୍ଦ ପହଁରି ନଈ ପାରି ହୋଇ ଏ ପାରିରେ ପହଞ୍ଚିଲେ ସାହାଯ୍ୟ ଆଶାରେ । ଚକିରୁ ଚାଉଳ ଗଳି ପଡୁଥିବାର ଦେଖି ବିଚରା କହିଲେ –'ତିନିଦିନ ହେଲା ଉପାସରେ ଅଛୁ ଅପା ! ସେଇ ଚାଉଳରୁ ମୁଠିଏ ମୁଠିଏ ଦିଅ ଚୋବେଇବୁ ।' ଠିକ୍ ସେଇ ବେଳକୁ ଯାଜପୁରରୁ ସେକେଣ୍ଡ ଅଫିସର ଆସି 'ଆଚାର୍ଯ୍ୟ ଭବନ'ରେ କିଂକର୍ତ୍ତବ୍ୟବିମୂଢ଼ ହୋଇ ବସିଥାନ୍ତି । ତାଙ୍କୁ ଏ ଦୃଶ୍ୟ ଦେଖାଇ ଦେଲାରୁ ନିଜ ଚାକିରୀକୁ ବିପନ୍ନ କରି ସେ ସରକାରୀ ଧାନ ଗୋଲାରୁ ଦଶ ବସ୍ତା ଧାନ ବାହାର କରିଦେଲେ ।

ବଢ଼ିପାଣି ସବୁ ଫସଲକୁ ରୁଣ୍ଡେଇ ସାଉଣ୍ଟି ନେଇ ସମୁଦ୍ରକୁ ଯାଏ । ସେଥିପାଇଁ ଦାଶେ ଆପଣେ ଲେଖିଛନ୍ତି –

'ଦୁର୍ଭିକ୍ଷ ବନ୍ୟାର ଚିର ସହଚର<br>
ଏକ ପରେ ଆନ ଆସେ ନିରନ୍ତର ।''

ଧାନ ଧୋଇରେ ଯିବ । ଚାଷୀ ବିରି ସୋରିଷ ଛାଟିବ । ଆଦ୍ୟ କାର୍ତ୍ତିକରେ ଯଦି ନୁହୁଁକ କଲା ତେବେ ସେ ବର୍ଷା ମାଡ଼ରେ ରକ୍ତପକ୍ଷରେ ବୁଣା ହୋଇଥିବା ବିରି ବିହନ ଜାଇ ହୋଇଯିବ । ସବୁ ଜମିରେ ଗହମ ହୁଏ ନାହିଁ । ତେଣୁ ମାଣ୍ଡିଆ ଏକମେବ ଭରସା । ସେଥିପାଇଁ ଧୋୟା ଅଞ୍ଚଳ ନିମନ୍ତେ ଗୋପବାବୁ ଯୋଜନା କଲେ ଉଠା ଜଳସେଚନ ଓ କୁଟୀର ଶିଳ୍ପ । ଶୀତ ଓ ଖରାଦିନେ ଲୋକେ ପାଣି ମଡ଼େଇ ଚାଷ କରିବେ, ବଢ଼ି ବେଳେ ଘରେ ବସି ସୂତା କାଟିବେ । ରଳୋଙ୍ଗ ପାଟରେ ଆରମ୍ଭ ହେଲା ଗଭୀର ନଳକୂପ ଖନନ କାର୍ଯ୍ୟ । ପାଞ୍ଚକୋଶ ବାଟରୁ ଲୋକେ ସେ ଅଭିନବ ଦୃଶ୍ୟ ଦେଖିବା ପାଇଁ ଗହଳି ଲଗେଇଲେ । କିନ୍ତୁ 'ଗୋରୁ ଛାଡ଼' ବନ୍ଦ ନ ହେଲେ ଏ ଯୋଜନା ଅକାରଣ ।

ଯାହାହେଉ, ପାଣି କମିଲାରୁ ଶରତ ବାବୁ (ମହାରଣା) ପରିସ୍ଥିତି କଳିବାକୁ ଖଣ୍ଡେ ହୁଲିରେ ବାହାରିଲେ । ଆମେ କେତେଜଣ ମଧ୍ୟ ସାଙ୍ଗରେ ଥାଉ । ପାଣି ଖସିଲା ବେଳେ ବେଶୀ ତୋଡ଼ । ବାଲିବିଲ ଗଲାରୁ ସୁରେନ୍ଦ୍ର ବାବୁ (ପତି)ଆମ ହୁଲିରେ ବସି ତାଙ୍କ ମୂଲିଆ ଘର ଡ଼ିହକୁ ଆସିଲେ । ଗୋଟିକିଆ ଡ଼ିହ । ବାଉଁଶ ପେଲା ଦିଆ ଘର । ଝାଟିମାଟି କାନ୍ଥ ଧୋଇ ଯାଇଛି । ପାଣି ଘର ଭିତରୁ ଖସି ଆସିଛି । ପିଲା ଦିଓଟି ସାନ ସାନ । ପାଣିରେ ଖେଳୁଥାନ୍ତି । ମୂଲିଆଟି ପାଣିକୁ ଚାହିଁ ଥକ୍‌କା ହୋଇ ବସିଥାଏ । ପାଖରେ ସ୍ତ୍ରୀ । ପତିଙ୍କ ମୂଲିଆ ପତିଙ୍କୁ ବିଭ୍ରାନ୍ତ ଦୃଷ୍ଟିରେ ଚାହିଁ ରହିଲା, ଉଠିଲା ନାହିଁ କି ଅବଧାନ କଲା ନାହିଁ । ଡ଼ିହ ପାଖରେ ଡ଼ଙ୍ଗା ଲାଗିବାରୁ ସାନ ପୁଅଟି ଡ଼ଙ୍ଗା ପାଖକୁ ପଶି ଆସିଲା । ସୁରେନ୍ଦ୍ର ବାବୁ ଅଣ୍ଟିରେ ମୁଠିଏ ଖଇ ଉଖୁଡ଼ା ନେଇଥିଲେ । ପୁଅ ଆଞ୍ଜୁଳାରେ ଖଇ ଉଖୁଡ଼ା ଦେଲାରୁ ମୂଲିଆ ଆଖିରୁ ଧାର ଧାର ଲୁହ ବହିଗଲା । କିନ୍ତୁ ତିନିଦିନ ଉପାସ ପରେ ସୁଦ୍ଧା ପିଲା ଦିଓଟିଙ୍କ ମୁହଁରୁ ଶିଶୁ ସୁଲଭ ପ୍ରସନ୍ନତା ମଉଳି ନ ଥାଏ ବରୀ କୁମ୍ଭାର ସାହି ପାଖ ପାଟ ବାଟେ ହୁଲି ଗଲାବେଳେ ଆମ ଡ଼ାକଘର ଧାଉଡ଼ିଆ ଘର ପଡ଼ିଲା । ଡ଼ାକ ମାରି ପଚାରିଲି - ତମର ସବୁ କୁଶଳ ତ ? ଜବାବ ମିଳିଲା - ସମସ୍ତେ ଚାଳ ଉପରେ ବସିଛୁ । ଗୋଟିଏ ପିଲାକୁ ଚାଳକୁ ଟେକି ଦେଉ ଦେଉ ହାତରୁ ଖସି ପଡ଼ି ପାଣିରେ ଭାସିଗଲା ।

ସେହି ହୁଲିରେ ଗୋଦାମ ଡ଼ିହ ଗଲୁ ଭୁବନେଶ୍ୱରକୁ ବେତାରରେ ବନ୍ୟା ପରିସ୍ଥିତି ଜଣାଇବାକୁ । ବାଗ୍‌ଦା ବାରମାଣିଆରେ ପାଣି ତୋଡ଼ରେ ନାଗମୁଣ୍ଡ କଟିଯିବା ଅବସ୍ଥା ହେଇଥାଏ । ସେଥିରୁ କୌଣସିମତେ ଉଧୁରି ଗୋଦାମ ଡ଼ିହରେ ପହଞ୍ଚି ଜାଣିଲୁ ବେତାର

(Wireless) ଯନ୍ତ୍ରରେ ପାଣି ପଶି ଅଚଳ ହୋଇ ଯାଇଛି । ନିରୂପାୟ ହୋଇ ଶରତବାବୁ ରାମଚନ୍ଦ୍ରପୁର ଫେରି ଆସି ବ୍ରାହ୍ମଣୀ ପାରି ହୋଇ ସତ୍ୟଭାମାପୁର ବାଟେ କଟକ ଆସି ଖବର ଦେଲାରୁ ବରଦା ପ୍ରସାଦ ରାୟ ଚାଉଳ ଡ଼ଙ୍ଗା ନେଇ ପହଞ୍ଚିଲେ ।

ଏ ଭୈରବୀ ଏତେ ଦୁଃଖ ଦିଏ ତଥାପି ଧୋୟାବାସୀ ତାକୁ ସୁଖ ପା'ନ୍ତି । 'ଧୋୟାରେ କଣେ ଠେଙ୍ଗରେ ମାଣେ' ପରା !

ନିତ୍ୟାନନ୍ଦ କାନୁନଗୋ ରମାଦେବୀଙ୍କୁ ଚିଠି ଲେଖିଲେ ଯେ ତାଙ୍କ ବନ୍ଧୁ ଜୟକରନ୍ କୋୟମ୍ବାଟୁର୍‌ରେ ମହୁଚାଷ କରୁଛନ୍ତି । ରମାଦେବୀ ତାଙ୍କୁ ସେଠୁ ମହୁଚାଷ ଶିଖି ଆସିବାକୁ ବରାଦ କରି ସଙ୍ଗେ ସଙ୍ଗେ ଚିଠି ଲେଖିଲେ । କେତେଦିନ ପରେ ଫେବୃଆରୀ ଶେଷ ସପ୍ତାହକୁ କାନୁନଗୋ ବରୀ ଆସିଲେ । ସେଇଟା ୧୯୩୭ ମସିହା । ପୂର୍ବରୁ ନିତ୍ୟାନନ୍ଦବାବୁଙ୍କ ବରାଦ ଅନୁସାରେ ନୂଆ ମାଠିଆ କିଣାହୋଇ ବିଭିନ୍ନ ଗଛରେ ଖଞ୍ଜା ହୋଇଥିଲା । ମହୁମାଛି ସେ ମାଠିଆ ଭିତରେ ଫେଣା କରି ରହିଥାନ୍ତି । ସେବାଘର ବାଡ଼ିପଟ ଗଛରୁ ମହୁମାଛି ଧରିବା ପାଇଁ ନିତ୍ୟାନନ୍ଦବାବୁ ସଜବେଶ ହୋଇ ବାହାରିଲେ । ଆମେ ହେଲୁ ଦେଖଣାହାରୀ । ମହୁମାଛି ଧରାହୋଇ ଗାଈଗୋରୁ ଗୁହାଳରେ ରହିଲା ପରି ବାକ୍‌ସରେ ରହି ପୋଷା ହେବେ, ଏ କଥା ଶୁଣି ଗାଁଲୋକେ ତାଜୁବ୍ ହେଇଗଲେ । ବାଗ୍‌ଦା ମୁରଲୀ ଜେନା ଅଣ୍ଟାରେ ହାତ ଦେଇ ଅରଙ୍ଗାବାଦ ବାୟାକୁ କହିଲା –"ଚାଲରେ ବାୟା ଦେଖିବା ! ତାଙ୍କ ବଅଁଶ କାଳେ ମହୁପୋକ ଧରିଆଣି ପାଳିବେ ।" ଧଳା ଖଦଡ଼ ଧୋତି, କୁର୍ତ୍ତା, ଚପଲ ହେଲା ନିତ୍ୟାନନ୍ଦବାବୁଙ୍କ ପରିଚ୍ଛଦ । ସେଦିନ ସେ ଜୋତା ମୋଜା ମଡ଼େଇ, ମୁଣ୍ଡରେ ଟୋପି ହାତରେ ଦସ୍ତାନା ଚଢ଼େଇ, ପୁଣି ସେ ଟୋପିରେ ବୁର୍‌ଖା ପରି ଗୋଟାଏ ଜାଲି କନା ଓହଳାଇ ଏକ ବିଚିତ୍ର ବେଶ ଧରିଲେ । ମହୁମାଛି ଧରିବା ବାକ୍‌ସ, ଧୂଆଁ ଦେବାକୁ ନଡ଼ିଆକତା ସହ ସ୍ମୋକର୍, ଶାଗୁଣା ପର, ଫେଣା ଫ୍ରେମ୍‌ରେ ବାନ୍ଧିବାକୁ କଦଳୀ ପଟୁଙ୍ଗା ଆଦି ସରଞ୍ଜାମ ଧରି ସେ ପାନିପଥ୍ ଲଢ଼େଇକୁ ଗଲା ଭଳି ବୀରଦର୍ପରେ ଚାଲି ମହୁବସା ପାଖରେ ପହଞ୍ଚିଲେ । ଗାଁଲୋକେ ସେତେବେଳକୁ ସେ ଅଭିନବ କାଣ୍ଡକାରଖାନା ଦେଖିବା ପାଇଁ ସେଠାରେ ଜମା ହୋଇ ଠେଲାପେଲା ଲଗେଇଲେଣି । କିନ୍ତୁ କାଳେ ମହୁମାଛି ଗୋଡ଼େଇବେ ଏହି ଭୟରେ ପାଖକୁ ଆସିବାକୁ କେହି ଭରଷୁ ନ ଥାନ୍ତି । କାନୁନଗୋ ଯଥାରୀତି ଶିକାରେ ଗଛରୁ ମାଠିଆ ଓହ୍ଲେଇ ଆଣି ଧୂଆଁ ଦେଇ ମହୁମାଛିକୁ ବାଉଳା କରି ମାଠିଆ ଭାଙ୍ଗି ଫେଣା କାଢ଼ି ଫ୍ରେମ୍‌ରେ ବାନ୍ଧି ମାଛିକୁ ଶାଗୁଣା ପରରେ ଝାଡ଼ି ମହୁମାଛି ଧରିଲେ । ଗୋପବାବୁ ଚୁପ୍‌ଚାପ୍ ଠିଆହୋଇ

ସବୁ ଦେଖୁଥାନ୍ତି । ପରଦିନ ସକାଳୁ ଗୋପବାବୁ କହିଲେ-ଆଜି ମୁଁ ମହୁମାଛି ଧରିବି । କୋଟ ମୋଜା ଟୋପି ଦସ୍ତାନା ଦୂରର କଥା ସେ ଖାଲି ଧୋତି ଖଣ୍ଡେ ପିନ୍ଧି ବିନା ଉପକରଣରେ ମାଠିଆରେ ଧୂଆଁ ଦେଇ ମାଠିଆ ଭାଙ୍ଗି ଅତି ନିପୁଣ ଭାବରେ ମାଛିକୁ ବାକ୍‌ସରେ ଭରତି କଲେ । ଆମେ ସବୁ ପ୍ରଶ୍ନବାଚକ ଦୃଷ୍ଟିରେ କାନୁନଗୋଙ୍କୁ ଚାହିଁଲାରୁ ସେ ଗମ୍ଭୀର ମୁଦ୍ରାରେ କହିଲେ 'ଶିଷ୍ୟାତ୍ ଇଚ୍ଛେତ୍ ପରାଜୟମ୍ ।''

ଚାଲିଲା ମହୁଚାଷ ପାଳା । ସେବାଘରେ ଅଣତ୍ରିଶଟି ମହୁବାକ୍‌ସ ରହିଲା । ମକ୍ଷୀରାଣୀଙ୍କ ବୟସ ଆଦିର ରେକର୍ଡ଼ ରଖିବା ପାଇଁ ବାକ୍‌ସଗୁଡ଼ିକର ନାମ କଳିଙ୍ଗ, ବିଦର୍ଭ, କୋଶଳ, ଉତ୍କଳ ଆଦି ରଖାଗଲା । ଏହି ଅଣତ୍ରିଶଟି ବାକ୍‌ସରୁ ତ ମହଣ ମହଣ ମହୁ ଆମଦାନୀ ହେଲା, ବରୀ ଅଞ୍ଚଳରେ ମହୁଚାଷର ଏତେ ଦ୍ରୁତ ପ୍ରସାର ହେଲା ଯେ ବଣୁଆ ମହୁମାଛି ଆଦୌ ରହିଲେ ନାହିଁ । ଧୋୟା ପାଟରେ ସୋରିଷ, ଧନିଆ ଚାଷ ହେଉଥିବାରୁ ମହୁମାଛିକୁ ଅପର୍ଯ୍ୟାପ୍ତ ମହୁ ମିଳେ । ତାହାଛଡ଼ା କରଞ୍ଜ, ଜାମୁ, ଆମ୍ବ ଆଦି ଗଛର ଫୁଲରୁ ମଧ୍ୟ ମହୁ ମିଳେ । ବିଭିନ୍ନ ଫୁଲର ମହୁ ଅଲଗା ଅଲଗା କରି ରଖିବା ପାଇଁ ପାଟରେ ସୋରିଷ କିଆରୀ, ଧନିଆ କିଆରୀରେ ଚାଳିଆ ତିଆରି ହୋଇ ଜଗୁଆଳୀ ରହି ମହୁବାକ୍ସ ରଖାଗଲା । ରାମଗଡ଼ କଂଗ୍ରେସ ଅଧିବେଶନ ବେଳେ ନିଖିଳ ଭାରତ ଖଦୀ ଗ୍ରାମୋଦ୍ୟୋଗ ପ୍ରଦର୍ଶନୀରେ ବରୀର 'ବିମଳ ମଧୁ' ଥିଲା ଏକ ଆକର୍ଷଣୀୟ ବସ୍ତୁ । ମନମୋହନ ଚୌଧୁରୀ କାଚର ମହୁବାକ୍ସ ତିଆରି କରି ମହୁମାଛି ଜୀବନ ପର୍ଯ୍ୟବେକ୍ଷଣ କରି 'ମହୁଚାଷ' ବହି ଲେଖିଲେ, ମାଇକ୍ରୋସ୍କୋପ୍ ସାହାଯ୍ୟରେ ଫଟୋ ଉଠାଇ ଫିଲ୍ମ ଓ ସ୍ଲାଇଡ଼୍ ତିଆରି କଲେ । ମଧୁକାର ସମବାୟ ସମିତି ଗଢ଼ା ହେଲା । ଆମେ ମଧୁଚକ୍ରର ମକ୍ଷୀରାଣୀର ପରିବାର ନିୟନ୍ତ୍ରଣ ଯୋଜନା ଦେଖି ଚମତ୍କୃତ ହେଲୁ । ମହୁଚାଷ ଶିଖିବା ପାଇଁ ସାରା ଓଡ଼ିଶାରୁ, ଓଡ଼ିଶା ବାହାରୁ ଶିକ୍ଷାର୍ଥୀ ଆସିଲେ । ଡ଼କ୍ଟର ବିଶ୍ୱନାଥ ସାହୁ ତନ୍ମଧ୍ୟରୁ ଅନ୍ୟତମ ।

ଆମେ ବରୀ ଗଲାବେଳକୁ ତାଡ଼ି ଖାଇବାର ଚଳଣି ଗରିବ ହରିଜନଙ୍କ ମଧ୍ୟରେ ଘରେ ଘରେ ଥିଲା । ସେତେବେଳେ ବେଠୀ ପ୍ରଥା ମଧ୍ୟ ଚଳୁଥିଲା । ମଜୁରୀ ଥିଲା ଦିନକୁ ଦୁଇ ଅଣା । କିନ୍ତୁ ଜମିଦାରମାନେ ଆହୁରି ଅଳ୍ପ ପଇସା ମୂଲ ଦେଉଥିଲେ । ବେଠୀ ଖଟି ଆସି କିମ୍ବା ଜମିଦାର ଘରେ ମୂଲ ଲାଗି ଆସି ପଇସାକର ତାଡ଼ି ପିଇଦେଲେ ପିଲା ଭାରିଜାଙ୍କୁ ପିଟାପିଟି କରି ନିଶ୍ଚିନ୍ତ ନିଦ୍ରା-ସୁଖ ଭୋଗ କରି ହୁଏ । ଏହା ଫଳରେ ଅଧିକାଂଶ ମୂଲିଆ ପେଟମରା ରୋଗ ଭୋଗନ୍ତି । ସେ ସମୟରେ ଚାଉଳ ଦର ଥିଲା

ଟଙ୍କାକୁ ବାରସେର, କୋଳଥ ବାଇଶି ସେର । ମହାଜନୀ ମାପ ଅର୍ଥାତ୍ ବାଲେଶ୍ୱରୀ ଦୁଇସେର କ୍ଷୀର ଦାମ ଥିଲା ଛଅ ପଇସା । ତଥାପି ମୂଲିଆ ଶ୍ରେଣୀର ଲୋକେ ୧ ୨ ମାସ ପେଟ ପୁରେଇ ଖାଇବାକୁ ପାଉ ନ ଥିଲେ ।

ସେବାଘର ତିନିପଟେ ବାଗ୍‌ଦା, ଆନନ୍ଦପୁର ଓ ହଳଦୀଅଣ୍ଡା ହରିଜନ ବସ୍ତି । ଏହି ଗାଁର ହରିଜନମାନଙ୍କ ସଙ୍ଗେ ଘନିଷ୍ଠ ପରିଚୟ ହେବା ପରେ ତାଡ଼ି ପିଇବା ବନ୍ଦ କରିବା କାମ ଆରମ୍ଭ ହେଲା । ବାଗ୍‌ଦାର ଶମ୍ଭୁ, ଏକାଦଶୀ, ପୁରୁଷୋତ୍ତମ ତାଡ଼ିପିଆରେ ବୁଲ୍‌ଗାନିନ୍‌କୁ ହରେଇ ଦେବେ । ତାଡ଼ି ପିଇଲା ବେଳେ ସେମାନେ ନିଜ ନିଜ ଛୋଟ ପିଲାଙ୍କୁ ମଧ୍ୟ ତାଡ଼ି ପିଇବା ତାଲିମ ଦିଅନ୍ତି । ଆନନ୍ଦପୁର ଚମାର ସାହିର ନିତ୍ୟାନନ୍ଦ ବେହେରା ଓରଫ୍ ନିତିଆ ଚମାର ଅଣ୍ଟାରେ କେରଟ ଦଉଡ଼ି ଗୁଡ଼େଇ ହାତରେ ତାଡ଼ି ମାଠିଆ ଧରି ଢୁଲୁଢୁଲୁ ନେତ୍ରରେ ବାଗ୍‌ଦା ହରିଜନ ସାହିକୁ ଦିନ ପ୍ରାୟ ଗୋଟାଏ ବେଳକୁ ବିଜେ କଲାବେଳକୁ ସେବାଘରୁ ରମାଦେବୀ ଜଣେ ଦୁଇଜଣ ସହକର୍ମୀଙ୍କ ସାଙ୍ଗରେ ବାଗ୍‌ଦା ଆଡ଼କୁ ମୁହାଁନ୍ତି । ତାଡ଼ି ସପକ୍ଷରେ ସବୁଠାରୁ ସାରଗର୍ଭକ ଭାଷଣ ଦିଅନ୍ତି ପୁରୁଷୋତ୍ତମ ଜେନା ଓରଫ ପୁରିଆ ଚୌକିଦାର । କାରଣ ସେ ଅଞ୍ଚଳରେ ସେ ଥିଲେ ଗୋଲକ ଦଫାଦାରଙ୍କ ତଳକୁ ମହାପ୍ରତାପୀ ବ୍ରିଟିଶ ସରକାରଙ୍କ ପ୍ରତିନିଧି । କିନ୍ତୁ ନୈଶବିଦ୍ୟାଳୟ ଓ ତାଡ଼ି ବିରୋଧୀ ଅଭିଯାନ ଫଳରେ ଦୁଇବର୍ଷ ପରେ ଏହିମାନଙ୍କ ଆତ୍ମଜ ଭୀମ, ଶ୍ରୀରାମ, କାଙ୍ଗାଳୀ, ବଙ୍ଗାଳୀ, ଯଦୁ, ଫକୀର ଆଦି ସୁରେନ୍ଦ୍ର ପଟ୍ଟନାୟକଙ୍କ ଚେଲାମାନେ ଯହୁଁ ତାଡ଼ି ପିଇବା ଛାଡ଼ି ତାଡ଼ି ବିରୁଦ୍ଧରେ ପ୍ରଚାର ଆରମ୍ଭ କଲେ, ନିତ୍ୟାନନ୍ଦଙ୍କ ବାଗ୍‌ଦା-ବିଜୟ ବନ୍ଦ ହୋଇଗଲା । କେତେଦିନ ପରେ ଆନନ୍ଦପୁରରେ ବିନୋଦ କାନୁନଗୋଙ୍କ ଚେଲା କାଶୀ, ଅକ୍ରୂର, ବଇଁଶି, ବୋଧି, ଆନନ୍ଦ, ରାଧୁ ପ୍ରଭୃତି ମଧ୍ୟ ଆନନ୍ଦପୁର, କଣ୍ଢପୋଇ ଆଦି ଗାଁରେ ତାଡ଼ି ବନ୍ଦ ଅଭିଯାନ ଚଳାଇଲେ । ବାଗ୍‌ଦା, ହଳଦୀଅଣ୍ଡା, ଆନନ୍ଦପୁରର ଯୁବକମାନେ ତାଡ଼ି ଛାଡ଼ିଦେବା ପରେ କେବଳ ଚନ୍ଦ୍ର, ମୁକୁତା, ମହନ, ହୁରିଆ ଆଦି ପୁରୁଣା ପୋଖତ ପିଆଳି ନିତ୍ୟାନନ୍ଦଙ୍କ ସ୍ଥାୟୀ ଗରାଖ ହୋଇ ରହିଲେ ।

ନିଶା ନିବାରଣ କାମରେ ସବୁଠାରୁ ତତ୍ପର ହେଲେ ନୈଶବିଦ୍ୟାଳୟର ଛାତ୍ରମାନେ । ସେମାନେ ଦିନରେ ଗାଈ ଜଗନ୍ତି, ମୂଲ ଲାଗନ୍ତି, ନିଜର ବିଲବାଡ଼ି ଥିଲେ ବିଲବାଡ଼ି କାମ କରନ୍ତି । ସେବାଘରେ ସୂର୍ଯ୍ୟାସ୍ତ ପୂର୍ବରୁ ଖାଇବା କାମ ବଢ଼ିଯାଏ । ବିନୋଦବାବୁ ଓ ସୁରେନ୍ଦ୍ରବାବୁ ଖାଇସାରି ହରିଜନବସ୍ତିକୁ ଚାଲିଯାଆନ୍ତି । ଗାଈଜଗା

ପିଲା ତ ପାଠ ପଢ଼ନ୍ତି । କ୍ଷେତ୍ରବାସୀ, ଚକ୍ରଧରଙ୍କ ପରି ଗୃହସ୍ଥମାନେ ମଧ୍ୟ କେନ୍ଦ୍ରକୁ ଆସନ୍ତି । ସେମାନଙ୍କ ସାଙ୍ଗରେ ଚାଷବାସଠାରୁ ଆରମ୍ଭ କରି ସ୍ୱାଧୀନତା ଆନ୍ଦୋଳନ ଯାଏ ବିଭିନ୍ନ ପ୍ରକାର ଆଲୋଚନା ହୁଏ । ଫଳରେ ସେମାନଙ୍କ ଜୀବନରେ ନୂଆ ଚିନ୍ତାଧାରାର ଅନୁପ୍ରବେଶ ହୁଏ । ଧୀରେ ଧୀରେ କଂଗ୍ରେସ ସଦସ୍ୟ ହେବା, ପ୍ରାଥମିକ କଂଗ୍ରେସ କମିଟି ଗଠନ କରିବା ଆଦି କାମ ଆଗେଇ ଚାଲେ ।

ଖଜୁରୀ ରସର ତାଡ଼ି କାରବାର କମିଯିବାର ରସର ବିନିଯୋଗ କିପରି ହେବ, ସେ ବିଚାର ପଡ଼ିଲା । ଗୁଣନିଧିବାବୁ (ମହାନ୍ତି) ଗ୍ରାମୋଦ୍ୟୋଗ କାମରେ ମୁଖ୍ୟ ଉଦ୍ୟୋକ୍ତା ଥାଆନ୍ତି । ସେ ଦାଢ଼ାରେ ହାତ ତିଆରି ଜୋତା, କଟକ ଥୋରିଆସାହିରେ ହାତ ତିଆରି କାଗଜ ଆଦି ତିଆରି କରିବା କାମ ଆରମ୍ଭ କରିଥାନ୍ତି । ବରୀରେ ଖଜୁରୀଗୁଡ଼ ତିଆରି ଶିଖାଇବା ପାଇଁ ସେ ପୂର୍ବବଙ୍ଗରୁ ନାସିରୁଦ୍ଦିନ୍ ମିଆଁ ଓ ଗବୁ ମିଆଁକୁ ଅଣାଇଲେ । ସେମାନେ ଖଜୁରୀଗଛରୁ ରସ କାଢ଼ିବାର ଓ ଗୁଡ଼ରନ୍ଧାର ନୂଆ ପଦ୍ଧତି ଶିଖାଇଲେ । ବାଗ୍‌ଦା ବିଲ ମଝିରେ ମାଳ ମାଳ ଚୂଲି ହେଲା । ଅକ୍ରୁର ଜେନା, ବଂଶୀ ଜେନା ପ୍ରଭୃତି ହେଲେ ପ୍ରଥମ ଶିକ୍ଷାର୍ଥୀ । କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଗଠନ ହେବାରୁ ସରକାରୀ ବୃତ୍ତି ପାଇ ନାନା ଆଡୁ ଶିକ୍ଷାର୍ଥୀମାନେ ଆସିଲେ । ଯେଉଁ ପିଲାମାନେ ବରୀରେ ଖଜୁରୀ ଗୁଡ଼ ତିଆରି କରୁଥିଲେ ସେମାନେ ସମସ୍ତେ ୧୯୪୨ର ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଗଲେ । ଫଳରେ ପୁଣି ଖଜୁରୀ ରସରେ ତାଡ଼ି ତିଆରି କରିବା ଲୋକେ ଲାଇସେନ୍‌ସ ନେଲେ ଏବଂ ଗୁଡ଼ ରନ୍ଧା ନାମରେ ତାଡ଼ି କାରବାର ଚଳାଇଲେ । ସେଥିପାଇଁ ଗୋପବାବୁ ୧୯୪୫ରେ ଜେଲ୍‌ରୁ ମୁକୁଳିବା ପରେ ଖଜୁରୀ ଗୁଡ଼ ରନ୍ଧା ବନ୍ଦ କରିଦେଲେ । ୧୯୫୫ର ଘରଭଙ୍ଗା ବନ୍ୟା ପରେ ଲୋକଙ୍କୁ କାମ ଯୋଗାଇବା ଦୃଷ୍ଟିରୁ ସେବାଘରର ତଦାନୀନ୍ତନ ସଂଚାଳିକା ପ. ତୁଙ୍ଗବିଦ୍ୟା ଦେବୀ ଖଜୁରୀ ଗୁଡ଼ ତିଆରି ଯୋଜନା ଦେବାରୁ ଗୋପବାବୁ କୋରାପୁଟରୁ ତାଙ୍କୁ ଲେଖିଲେ ଯେ ମଦ ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି ନ କରି ଯେଉଁ ଲୋକେ ତାଡ଼ି ବସାଇ ଜାଣନ୍ତି ଓ ତାଡ଼ି ପିଅନ୍ତି ସେମାନଙ୍କ ଦ୍ୱାରା ଖଜୁରୀ ଗୁଡ଼ ତିଆରି କରାଇବାର ପରିଣାମ ହେବ ସେମାନେ ଲୁଚେଇ ଛପେଇ ତାଡ଼ି କରି ପିଇବେ ଓ ବିକିବେ ।

ସେବାଘରର କାର୍ଯ୍ୟସୂଚୀ ମଧ୍ୟ କ୍ରମେ ବଦଳୁଥାଏ । ପ୍ରଥମେ ଆମର ଧ୍ୟେୟ ଥିଲା ପ୍ରତ୍ୟେକ ବ୍ୟକ୍ତିଗତ ଭାବରେ ବସ୍ତ୍ରସ୍ୱାବଲମ୍ବୀ ହେବା ସଙ୍ଗେ ସଙ୍ଗେ ଗାଁରେ ଖଦୀ, ନିରକ୍ଷରତା ଦୂରୀକରଣ, ଗାଁ ସଫେଇ, ଔଷଧ ବିତରଣ, ନିଶାନିବାରଣ ଆଦି କାମ

କରିବେ । ଗାଁରେ ସୂତାକଟା ଆଦି ଖଦୀ କାମ ଚାଲିବାର କିଛିଦିନ ପରେ ସେବାଘରେ ବାଡ଼ିବଗିଚା ଆରମ୍ଭ ହେଲା ଏବଂ ଗାଁଗୁଡ଼ିକରେ ମଧ୍ୟ ନୂଆ ନୂଆ ପନିପରିବା ଉତ୍ପାଦନ ଆରମ୍ଭ ହେଲା । ତା'ପରେ ଗୋ-ସେବା କାମ ଆଗ ସେବାଘରେ ଆରମ୍ଭ ହୋଇ ବିଭିନ୍ନ ଗାଁରେ ହରିଆନା ଷଣ୍ଢ ରଖାଯାଇ ମିଶ୍ରିତ ଗୋ ଜାତି ସୃଷ୍ଟି କରିବା କାମ ଚାଲିଲା । ତାହାପରେ ଠିକ୍ ହେଲା ଛୋଟ ଛୋଟ ଝିଅଙ୍କୁ ସେବାଘରେ ରଖି ସେମାନଙ୍କୁ ଭଲ ସଂସ୍କାର ଦେବାକୁ ହେବ । କାରଣ ଗାନ୍ଧିଜୀ ହରିଜନ ପଦଯାତ୍ରାବେଳେ ରମାଦେବୀଙ୍କୁ କହି ଯାଇ ଥିଲେ ତୁମେ ଝିଅମାନଙ୍କୁ ସଣ୍ଢୁଣା ଶିଖାଇବ । ଏହି ନିଷ୍ପତ୍ତି ନିଆଯିବାରୁ ବରୀ ଅଞ୍ଚଳରୁ ଓ ଅନ୍ୟ ଆଡୁ ନୂଆ ନୂଆ ଝିଅମାନେ ସେବା ଘରକୁ ଆସିଲେ । ସମ୍ବଲପୁରରୁ ଆସିଲେ ବିଷାଦିନୀ, ପାର୍ବତୀ (ଗିରି) । ଗଞ୍ଜାମରୁ ଗାୟତ୍ରୀ, କଟକରୁ ଶୀତଳା, ବାସନ୍ତୀ ଓ ମିନତୀ, ରଲୋଙ୍ଗରୁ କିରଣଲେଖା, ଅଟିରାରୁ ଶକୁନ୍ତଳା, ଆଙ୍କୋଇରୁ ଉମା, ଜଗତ୍‌ସିଂହପୁରରୁ ବିଷ୍ଣୁପ୍ରିୟା, ରମ୍ଭାରୁ ହେମ ଓ ଉମା ସେବାଘରର ବାସିନ୍ଦା ହେଲେ । ସେମାନଙ୍କୁ ପାଠ ପଢ଼ାଇବାକୁ ପୁରୀରୁ ଆସିଲେ ନାରାୟଣ ମହାପାତ୍ର । ହିନ୍ଦୀ ଶିଖାଇଲେ ରଘୁନାଥ ପୁରୋହିତ ଓ ହୃଷିକେଶ ବାବୁ । ଲଛମନ ଖାଡ଼ଙ୍ଗା ହେଲେ ସଙ୍ଗୀତ ଶିକ୍ଷକ । ଝିଅମାନଙ୍କ ମଧ୍ୟରୁ ଶୀତଳା, ଗାୟତ୍ରୀ ଆଦି ଛୋଟ ଛୋଟ ଝିଅଙ୍କୁ ଗାଧୋଇ ଦେବାଠାରୁ ସେମାନଙ୍କର କୁର୍ତ୍ତା ସିଲେଇ କରିବା ଯାଏ ନାନାପ୍ରକାର କାମ ଆମେ ମୁଣ୍ଡେଇଲୁ । ଭୋର ପ୍ରାର୍ଥନା ଚାରିଟାରେ ହୁଏ । ସାବରମତୀ ଆଶ୍ରମରେ ପ୍ରଚଳିତ 'ପ୍ରାତଃ ସ୍ମରାମି' ଶ୍ଳୋକ, ଭଜନ, ଧୂନ ଓ ବିପଦୌ ନୈବ ବିପଦଃ ଥିଲା ପ୍ରାର୍ଥନାର କ୍ରମ । ପ୍ରାର୍ଥନା ପରେ ପିଲାଙ୍କୁ ତେଲ ଲଗେଇ ଦେଇ ଟିଉବ୍‌ଓ୍ୱେଲ୍ ପାଖରେ ଗାଧୁଆଇ ଦେବା କାମ ସରିଲେ ସେମାନେ ସୀତାର ବା ଏସ୍ରାଜ ରେୟାଜ୍ କରନ୍ତି, ଆମେ ବଡ଼ମାନେ ସୂତାକାଟୁ । ରାତି ପାହିଲେ ପିଲାଏ ଯିବେ ପ୍ରାତଃଭ୍ରମଣରେ, ଆମେ ସଫାଇ କାମରେ ଲାଗିବୁ । ଜଳଖିଆ ପରେ ସେମାନଙ୍କ ପାଠପଢ଼ା ଆରମ୍ଭ ହୁଏ । ଏହିପରି ଭାବରେ ସେମାନଙ୍କ କଳକାକଳିରେ ସେବାଘର ଗୁଞ୍ଜରି ଉଠିଲା । ସେମାନଙ୍କ ସୂତାକଟା, ତୁଳାବଛା, ତୁଳାଭିଣା ଦେଖିବା, ହସ୍ତାକ୍ଷର ଖାତାରେ ଉପର ଧାଡ଼ି ଲେଖିଦେବା, ଶୋଇବା ଆଗରୁ ଗୋଡ଼ ଧୋଇ ଶୋଇବାରେ ଅଭ୍ୟସ୍ତ କରାଇବା ଆଦି ନାନାପ୍ରକାର 'ପିଲା ଜଞ୍ଜାଳ' ଆମକୁ ଲାଗିଲା । ଏହି ପିଲାଙ୍କ ମଧ୍ୟରୁ ଅନେକେ ୧୯୪୨ ଆନ୍ଦୋଳନରେ ନିଜ ନିଜର କରାମତି ଦେଖେଇଥିଲେ । ଖଦୀଯାତ୍ରା ସଭା ସମ୍ମିଳନୀରେ ଯୋଗଦେବା ତ ସେମାନଙ୍କର ନିତ୍ୟକର୍ମ ଥିଲା ।

ପୁଣି ଗୋଟାଏ ବିଚାର ଚାଲିଲା କର୍ମୀମାନଙ୍କ ସ୍ତ୍ରୀମାନେ ସହଧର୍ମଚାରିଣୀ ହେଲେ ସିନା କର୍ମୀମାନେ ପୂର୍ଣ୍ଣପ୍ରାଣରେ କାମ କରି ପାରିବେ । ସ୍ତ୍ରୀମାନଙ୍କର ବିଚାର ଯଦି ଭିନ୍ନ ହେବ ସେମାନେ କର୍ମୀମାନଙ୍କୁ ସବୁବେଳେ ପଛକୁ ଟାଣିବେ । ଆରମ୍ଭ ହେଲା କର୍ମୀପତ୍ନୀମାନଙ୍କର ଶୁଭାଗମନ । ବଂଶୀଧର ନାୟକ କଟେଜ୍ ଟ୍ୟାନେରୀ ଚଳାନ୍ତି । ତାଙ୍କ ସ୍ତ୍ରୀ ଉତ୍ତମା ଦେବୀ ଶିଶୁ କନ୍ୟାଟିଏ କୋଳରେ ଧରି ସୁଆରିରେ ବସି ଆସିଲେ । ପିଲାଟି ଗୋଡ଼ ଛନ୍ଦୁଥାଏ । ଯାହାକୁ କହନ୍ତି ରିକେଟି ଓ ପ୍ରିମ୍ୟାଚିଓର୍ ବେବୀ । ରମାଦେବୀ ସ୍ୱୟଂ ଶିଶୁଟିର ଦାୟିତ୍ୱ ନେଲେ । ଷୋଡ଼ଶୀ ଉତ୍ତମା ଏତେ ଦୁର୍ବଳ ଶିଶୁକୁ ଧରି ଜାଣନ୍ତି ନାହିଁ । ରମାଦେବୀ ପିଲା ଧରିବା ଶିଖାଇବାକୁ ବସିଲେ ସେ କହନ୍ତି ''ବେଙ୍ଗାୟ ଚେଙ୍ଗେରା ଲାଗୁଛି ।'' ତେଣୁ ରମାଦେବୀଙ୍କ ଶିଶୁପାଳନ ଓ ରାତ୍ରିଜାଗରଣ ପୂରା ଦମ୍‌ରେ ଆରମ୍ଭ ହୋଇଗଲା । ବାମନବାବୁ ପ୍ରଭୃତି ସଫା କହିଦେଲେ ଏ ପିଲା ବଞ୍ଚିବ ନାହିଁ । ରମାଦେବୀ ଜଂଘ ହଳଦିଆ କରିବାକୁ ତା'ପିଛା ଲାଗିଛନ୍ତି । ରମାଦେବୀ ନିରୁତ୍ତର ରହି ଆଚରଣରେ ସୁଚେଇଲେ - ପିଲା ଅବଶ୍ୟ ବଞ୍ଚିବ । କଳାପାତି ପରି ବକଟେ କଲ୍ୟାଣୀକୁ ହଳଦୀ ଲଗାଇ ଦେବାଠାରୁ ଆରମ୍ଭ କରି ତା' କନାପଟା ଧୋଇବା କାମ ସେ ନିଜେ କଲେ । ଭଗବାନ ତାଙ୍କ ମାନ ରଖିଲେ । ଗ୍ରାଜୁଏଟ୍ କଲ୍ୟାଣୀ ନିଜେ ବର୍ତ୍ତମାନ ପାଞ୍ଚୋଟି ପିଲାର ଜନନୀ । ସମଲାଇପଦରରୁ ଆସିଲେ ରାମଚନ୍ଦ୍ରପୁରୀଙ୍କ ସ୍ତ୍ରୀ ଅମୃତା ଦେବୀ । ସମ୍ବଲପୁରର ସରୁ ଚାଉଳ ଖାଇବାରେ ଅଭ୍ୟସ୍ତ ଅମୃତ ଅପା ଧୋୟା ଅଞ୍ଚଳର ପୁଟିଆ ଧାନର ନାଲି ଚାଉଳର ମୋଟ ଭାତ ଅତି କଷ୍ଟରେ ଗିଳନ୍ତି । ଗୌନ୍ତିଆ ଘର ଝିଅ ସେ । ପାଇଖାନା ସଫା ତାଙ୍କୁ ସୁହେଇବ ? ସେହି ଅମୃତ ଅପା ୧୯୪୪ରେ ରାମଚନ୍ଦ୍ରପୁରୀ ଜେଲ୍‌ରେ ଥିବାବେଳେ ସମଲାଇପଦରର ଗରିବ ଦୁଃଖୀଙ୍କୁ ସୁତାକଟେଇ ସେ ସୂତା ସମ୍ବଲପୁରକୁ ଆଣି ବିକି ସେମାନଙ୍କୁ ଢ଼ୋକ ଦେଲେ । ଏହିପରି ଭାବରେ ଅକ୍ରୁର ଜେନାଙ୍କ ସ୍ତ୍ରୀ ବସନ୍ତ, ପରମାନନ୍ଦଙ୍କ ସ୍ତ୍ରୀ ଗଂଗା, କ୍ଷେତ୍ରବାସୀ ବରାଳଙ୍କ ସ୍ତ୍ରୀ ଇଚ୍ଛା, ଗୋକୁଳ ବାବୁଙ୍କ ସ୍ତ୍ରୀ କନକ ଦେବୀ, ମଥୁରୀନାଥଙ୍କ ସ୍ତ୍ରୀ ସୁଭଦ୍ରା ଆଦି ସେବାଘରେ ଆସି ଭରପୂର ହେଇ ଗଲେ । ପୁଣି ଅନେକ ଆଉ ଅନେକ ପ୍ରାପ୍ତବୟସ୍କା ମହିଳା ଆସିବାକୁ ଚାହିଁବାରୁ ସେମାନଙ୍କ ପାଇଁ ମଧ୍ୟ ତାଲିମ ବ୍ୟବସ୍ଥା ହେଲା । ବରଗଡ଼ରୁ ପ୍ରଭାଦେବୀ, ତେନ୍ତୁଳିପଦାରୁ କ୍ଷେତ୍ରମଣି ଦେବୀ, କାକଟପୁରରୁ ବିମଳା ଦେବୀ, ଏରସମାରୁ ବେଲ ଦେବୀ, କେନ୍ଦ୍ରାପଡ଼ାରୁ ସୁଧାନିଧି, କଲିକତାରୁ ବୀଣା, ଢ଼ାକାରୁ ଉଷା, ବ୍ରହ୍ମଗିରିରୁ ଦୁର୍ଗା ଆଦି ଆସି ପହଞ୍ଚିଯିବାରୁ ବିଧିବଦ୍ଧ ଭାବରେ ତାଲିମ ଶିବିର ଚାଲିଲା । ଗୋପବାବୁ ସେବାଘରେ ଥିବାବେଳେ

ନିଜେ ସେମାନଙ୍କୁ ପାଠ ପଢ଼େଇଲେ । ସିଲେଇ, ସୂତାକଟା, ହିନ୍ଦୀଶିକ୍ଷା ଆଦି ପାଇଁ ମଧ୍ୟ ଶିକ୍ଷକ ନିଯୁକ୍ତ ହେଲେ । ସେବାଘରେ ତାଲିମ ନେବା ପରେ ଏହି ଭଉଣୀମାନେ ବିଭିନ୍ନ ଗାଁରେ କେନ୍ଦ୍ର ସ୍ଥାପନ କରି ଗଠନମୂଳକ କାମରେ ଲାଗିଲେ ।

ଆମର ଗୋଟାଏ କାର୍ଯ୍ୟକ୍ରମ ଥିଲା ''ଖଦୀ ଯାତ୍ରା'' । ସୂତାକଟାଳୀ ଥିବା ଅଞ୍ଚଳମାନଙ୍କରେ ଏହି ଖଦୀଯାତ୍ରା ହୁଏ । ଆମେ ସେଠାକୁ ପଦଯାତ୍ରା କରି ଯାଉ । ବିଭିନ୍ନଆଡୁ କଟାଳୀମାନେ ପଦଯାତ୍ରା କରି ଆସି ଖଦୀଯାତ୍ରାରେ ଯୋଗ ଦିଅନ୍ତି । ଆମ ହାତରେ ବାକ୍ସ ଅରଟ ଦେଖି ଲୋକେ ପଚାରନ୍ତି ଆଜି କେଉଁଠି ଯାତ୍ରା ହେବ ? ଆମେ ଆମ ରହଣୀ ସ୍ଥାନରେ ଯେଉଁଠି ସାଧାରଣ ସଭା ହେବାର ଥାଏ ସେହି ସ୍ଥାନର ନାମ କହିଦେଉ । ପ୍ରକୃତରେ ତ ଆମର ସେଇଟା ଥିଲା ସ୍ୱରାଜ୍ୟଯାତ୍ରା । ଖଦୀଯାତ୍ରାରେ ଯୋଗ ଦେଇଥିବା ପ୍ରତ୍ୟେକ ଦଳପାଇଁ ଅଲଗା ଅଲଗା ଚୂଲି, ହାଣ୍ଡି ଓ ସିଧାର ବ୍ୟବସ୍ଥା ହୁଏ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ସବୁ ଦଳ ରୋଷେଇ ଶେଷ କରି ନିର୍ଦ୍ଦିଷ୍ଟ ସମୟରେ ଖାଇ ବସନ୍ତି । ବିଭିନ୍ନ ଦଳର ଭୋଜନ ମନ୍ତ୍ରଧ୍ୱନି 'ଓଁ ସହନା ବବତୁ, ସହନୌ ଭୁନକ୍ତ, ସହବୀର୍ଯ୍ୟଂ କରଇ ବହେ ମା ବିଦ୍ୱିଷାବହୈ' ଏକ ଅଦ୍ଭୁତ ପ୍ରେରଣା ଆଣି ଦିଏ । ବିଶ୍ରାମ ପରେ ସମୂହ ସୂତ୍ରଯଜ୍ଞରେ ସମସ୍ତେ ଯୋଗ ଦିଅନ୍ତି । ସୂତ୍ର ଯଜ୍ଞ ସାଙ୍ଗରେ ଜାତୀୟ ସଙ୍ଗୀତ ଓ ଭଜନ ମଧ୍ୟ ବୋଲାହୁଏ । ତା'ପରେ ଆରମ୍ଭ ହୁଏ ବୌଦ୍ଧିକ ଆଲୋଚନା । ଏହି ବ୍ୟବସ୍ଥା ଏତେ ଭଲ ଭାବରେ ଚାଲୁଥିଲା ଯେ ମନେ ହେଉଥିଲା ନୂଆ ସମାଜ ରଚନାର ବାସ୍ତବ ରୂପ ଏହି ଖଦୀଯାତ୍ରାର ଅଭିଜ୍ଞତାରୁ ଜନ୍ମଲାଭ କରିବ । ଏହି ଆଲୋଚନା ସଭାରେ ଖଦୀ କାମ ବାବଦରେ ଯେଉଁମାନଙ୍କର କିଛି ସନ୍ଦେହ ଥିଲା, ସେମାନେ ତାହା ବ୍ୟକ୍ତ କରୁଥିଲେ ଓ ଖଦୀଦର୍ଶନର ସମର୍ଥକମାନେ ନିଜ ବିଚାର ବ୍ୟକ୍ତ କରୁଥିଲେ । ଥରେ ପଣ୍ଡିତ ନେହେରୁ ସୂତାକଟାଟାକୁ 'ବୁଢ଼ୀ ମାଇପଙ୍କ କାମ' କହିଥିଲେ । ସେହି ପରିପ୍ରେକ୍ଷୀରେ ଯାଜପୁର ଖଦୀଯାତ୍ରାରେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ଶ୍ରୀ କୃପାସିନ୍ଧୁ ପଣ୍ଡା ଖଦୀ ବୁଢ଼ୀ ମାଇପଙ୍କ କାମ ବନାମ ଖଦୀ ଶୋଷଣହୀନ ସମାଜର ସଂସ୍ଥାପକ ଉପରେ ଆଲୋଚନା କଲେ ।

ଏ ଖଦୀଯାତ୍ରା ଛଡ଼ା ରଚନାତ୍ମକ କର୍ମୀସମ୍ମିଳନୀରେ ଯୋଗ ଦେବାକୁ ବା କୌଣସି ବିଶେଷ କର୍ମକେନ୍ଦ୍ର ଦେଖିବା ପାଇଁ ଆମେ ଦଳବଦ୍ଧ ହୋଇ ପଦଯାତ୍ରା କରି ଯାଇଥିଲୁ । ଗଣେଶ୍ୱରପୁର, ଆଗରପଡ଼ା ଆଦି ଗଲାବେଳେ ବାଟରେ ଗୋପବାବୁ ଭଟି, ରଘୁବଂଶ ଆଦିରୁ ଶ୍ଲୋକ ଆବୃତ୍ତି କରି ବୁଝାନ୍ତି । ଆଚାର୍ଯ୍ୟ ମହାଶୟ ରାତିରେ ତାରା ଚିହ୍ନାଇ ଦିଅନ୍ତି । ଏହାଛଡ଼ା ଜନସମ୍ପର୍କ ଓ ସାଧାରଣ ସଭା କାର୍ଯ୍ୟକ୍ରମ ତ ଅବଶ୍ୟମ୍ଭାବୀ ଥିଲା ।

ଆମର ଗୋଟିଏ ଉତ୍ସବ ଦିନ ଥିଲା ମଇ ଏକତ୍ରିଶ ତାରିଖ । ଅବଶ୍ୟ ଜାତୀୟ ସପ୍ତାହ (ଏପ୍ରିଲ୍ ଛଅରୁ ତେର ତାରିଖ), ସ୍ୱାଧୀନତା ଦିବସ (ଜାନୁଆରୀ ଛବିଶ), ଗାନ୍ଧୀ ଜୟନ୍ତୀରେ ଆମେ ସଭା ଶୋଭାଯାତ୍ରା ଖଦୀ ବିକ୍ରୀ ଆଦି କାର୍ଯ୍ୟକ୍ରମ ପାଳନ କରୁ କିନ୍ତୁ ମଇ ଏକତ୍ରିଶ ତାରିଖଟି ଆମର ଗୋଟାଏ ଖାସ୍ ଉତ୍ସବ । କାରଣ ୧୯୩୪ରେ ସେଦିନ ଗାନ୍ଧିଜୀ ବରୀ ଆସିଥିଲେ । ଓଡ଼ିଶା ବାହାରୁ ଜଣେ ନେତାଙ୍କୁ ନିମନ୍ତ୍ରଣ କରି ଆଣି ସମ୍ମିଳନୀ, ଗ୍ରାମୋଦ୍ୟୋଗ ପ୍ରଦର୍ଶନୀ ଆଦି ଆୟୋଜିତ ହୁଏ । ବର୍ଷେ ଆସିଥିଲେ ସତୀଶଚନ୍ଦ୍ର ଦାସଗୁପ୍ତ । ସମ୍ମିଳନୀ ସରିଲା । ସେବାଘରକୁ ଫେରି ଆସି ସେ ହଠାତ୍ କହିଲେ- ମୁଁ ତମ ହାତ ଦେଖିବି । ଆମେ ଭାବିଲୁ ଆମ ଭାଗ୍ୟ ଦେଖିବେ ନା କ'ଣ ? କିନ୍ତୁ ସେ ହାତ ପାପୁଲିଟି ଧରି ହାତପତ୍ରକୁ ଚିପି ଚିପି ବିଣ୍ଡି ଅଛି କି ନାହିଁ ଦେଖିଲେ ଏବଂ ବିଣ୍ଡି ଦେଖି ଖୁସି ହୋଇ ଟଲଷ୍ଟୟଙ୍କ Ivan the fool ଗପର ମାର୍ଥା କିପରି ଶଇତାନ ହାତରେ ବିଣ୍ଡି ନ ଥିବାର ଦେଖି ସେ କାମ ନ କରି ଖାଏ ବୋଲି ଜାଣିପାରି ତାକୁ ଅବଜ୍ଞା କଲା ସେହି କଥାଟି ଶୁଣେଇ କୁମାରସମ୍ଭବର 'ଶିରୀଷ ପୁଷ୍ପାଧିକ ସୁକୁମାର୍ଯ୍ୟୌ ବାହୁ ତ୍ୱଦିୟୌ'ର ଆଦର୍ଶକୁ ସେ ମଳିନ କରିଦେଲେ । ଆଉ ବର୍ଷେ ବାବୁ ରାଜେନ୍ଦ୍ରପ୍ରସାଦ ଆସିବା ସ୍ଥିର ହେଲା । ତାଙ୍କ ପାଇଁ ଆମ ମଧ୍ୟରେ ସବୁଠାରୁ ଭଲ କଟାଳୀର ହାତକଟା ସୂତାର ଜୋଡ଼ ବୁଣା ହେଲା । ପଣ୍ଡିତ ବାସୁଦେବ ମହାପାତ୍ର ପ୍ରଶସ୍ତି ଲେଖିବେଲେ 'ରାଜେନ୍ଦ୍ରନାମା ଶୀଳପୁଣ୍ୟକର୍ମା ପ୍ରସାଦ ସଙ୍ଗୋଽତ୍ର ଶୁଭାଗତ ଯଃ । ସ୍ୱରାଜ୍ୟ ସଂଗ୍ରାମ ଜୟାଭିଳାଷୀ ସୋଽୟଂ ଚିରାୟୁ ଲଭତାଂ ମନସ୍ୱୀ' । ହଠାତ୍ ତାଙ୍କ ଗସ୍ତକ୍ରମ ରଦ୍ଦ ହେଲା । କିନ୍ତୁ ଆମ ସମ୍ମିଳନୀ ଓ ପ୍ରଦର୍ଶନୀ ରଦ୍ଦ ହେଲା ନାହିଁ ।

କଂଗ୍ରେସ ସଦସ୍ୟ ସଂଗ୍ରହ, ପ୍ରାଇମେରୀ କଂଗ୍ରେସ କମିଟି ଗଠନ, କଂଗ୍ରେସର ନିର୍ଦ୍ଦେଶ ଅନୁସାରେ ବିଭିନ୍ନ କାର୍ଯ୍ୟକ୍ରମ ପାଳନ ବିଧିବଦ୍ଧ ଭାବରେ ଚାଲିଥାଏ । ଅମଟପୁରର ରଙ୍ଗାଧର ଦାସ, ଧାରପୁରର ବୀରବର ରଥ, ଅରଙ୍ଗାବାଦର ଗୋବର୍ଦ୍ଧନ ପୁହାଣ, ଆନନ୍ଦପୁରର ଭଗୀରଥ ଦାସ, ପଘିଡ଼ାର ହଳଧର ଶାହାଣୀ, ରତ୍ନଗିରିର ଜଗବନ୍ଧୁ ଜେନା ପ୍ରମୁଖ ଏ ସଂଗଠନ କାମରେ ଅଧିକ ସମୟ ଦେଉଥାନ୍ତି । କଂଗ୍ରେସର ନିର୍ଦ୍ଦେଶାବଳୀ ଛାପି ବାଣ୍ଟିବା ମଧ୍ୟ ଏହି କାମର ଅଙ୍ଗ ହୋଇଥାଏ । ଗୋପବାବୁଙ୍କ ଦ୍ୱାରା ସଂପାଦିତ ସତ୍ୟାଗ୍ରହୀ ପତ୍ରିକାରେ ଏ ବିଷୟରେ ବରାବର ଟିପ୍‌ପଣୀ ବାହାରେ । ଗୋପବାବୁ ନିଜେ ସ୍ୱତନ୍ତ୍ର ପରିପତ୍ର ଛାପି ବାଣ୍ଟି ଲୋକଙ୍କୁ କଂଗ୍ରେସ ସଂଗଠନର ମୂଳ ଉଦ୍ଦେଶ୍ୟ ବୁଝାଇବାକୁ ଚେଷ୍ଟା କରନ୍ତି । ସେ ସବୁ ପରିପତ୍ରର ଗୋଟିଏ ନମୁନା -

# ନିବେଦନ

ବନ୍ଧୁ,

ଆପଣ କଂଗ୍ରେସର ଜଣେ ସଭ୍ୟ ହୋଇଛନ୍ତି । ଖଣ୍ଡିଏ କାଗଜରେ ଦସ୍ତଖତ କରି ଚାରିଅଣା ଚାନ୍ଦା ଦେଇଛନ୍ତି । ଲୋକେ ତ ଟଙ୍କା କଉଡ଼ି ଧାର ଦେଲାବେଳେ ଦଲିଲ ଦସ୍ତାବେଜ୍‌ରେ ଦସ୍ତଖତ କରିଥାନ୍ତି । ଏଠି ବି ଦଲିଲରେ ଦସ୍ତଖତ କରିଛନ୍ତି, ଓଲଟି ପୁଣି ହାତରୁ ଚାରିଅଣା ପଇସା ଦେଇଛନ୍ତି । ଦଲିଲ ରେଜେଷ୍ଟ୍ରୀ ଫିସ୍ ଦେଲାଭଳି ଏ କଂଗ୍ରେସ ଚାନ୍ଦା ଦେଇଛନ୍ତି । କଥାଟି ହେଉଛି ଆପଣ ଗୋଟିଏ ପ୍ରକାରର ଚୁକ୍ତି ପତ୍ରରେ ଦସ୍ତଖତ କରିଛନ୍ତି । ଏ ଚୁକ୍ତି କାହା ସାଙ୍ଗରେ କରିଛନ୍ତି ? ଏ ସଂକଳ୍ପ କ'ଣ ପାଇଁ କରିଛନ୍ତି ? ଆପଣ ଏ ଚୁକ୍ତି ଆପଣା ଦେଶ ସାଙ୍ଗରେ କରିଛନ୍ତି । ଦେଶର ଦଶର ମଙ୍ଗଳ ପାଇଁ ସ୍ୱରାଜ୍ୟ ଲୋଡ଼ା । ସେହି ସ୍ୱରାଜ୍ୟ ପାଇଁ ଆପଣ ଦସ୍ତଖତ୍ କରି ଦେଇଛନ୍ତି । ସେଥିପାଇଁ ଆପଣ କିଛି ନା କିଛି କରିବେ ବୋଲି ଚୁକ୍ତି କରିଛନ୍ତି । ମନରେ ସଂକଳ୍ପ କରିଛନ୍ତି ଆପଣଙ୍କ ବଳକୁ ଅନେଇ ଆପଣ ଯଥାଶକ୍ତି ସ୍ୱରାଜ୍ୟ ପାଇଁ ଚେଷ୍ଟା କରିବେ । ଏଥିରେ ନଗଦ ଲାଭ ନାହିଁ । ଏଥିରେ ଯେ ଲାଭ ତାହା ଭବିଷ୍ୟତକୁ ମିଳିବ । ସେ ଲାଭ ଆମର ଇଷ୍ଟ ଲାଭ । ସେ କେବେ ମିଳିବ ତାହା ସମସ୍ତଙ୍କ ଚେଷ୍ଟା ଉପରେ ନିର୍ଭର କରେ । ଚେଷ୍ଟା କଲେ ତ ଦିନକରେ ମିଳି ପାରେ । ଏ ଚୁକ୍ତିରେ ସଂକଳ୍ପରେ ଗୋଟିଏ ବିଶେଷ କଥା ଅଛି । ଯେମିତି ପାରେ ସେମିତି ସ୍ୱରାଜ୍ୟ ହେବ ନାହିଁ । କଂଗ୍ରେସର ଉଦ୍ଦେଶ୍ୟ ଫାରମ୍‌ରେ ଲେଖା ଅଛି 'ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଙ୍ଗତ ଉପାୟରେ ସ୍ୱରାଜ୍ୟ ପ୍ରାପ୍ତି'–ନ୍ୟାୟରେ ଚଳିବାକୁ ହେବ– ତେବେ ଯାଇ ସ୍ୱରାଜ୍ୟ ପାଇବା । ସତ୍ୟଛଡ଼ା ନ୍ୟାୟ ନାହିଁ । ଅହିଂସାକୁ ଛାଡ଼ି ଶାନ୍ତି ନାହିଁ । ସେଥିପାଇଁ କଂଗ୍ରେସର ମୂଳମନ୍ତ୍ର ହେଉଛି ସତ୍ୟ ଓ ଅହିଂସା । ସେହି ସତ୍ୟ ଓ ଅହିଂସା ବାଟ ଧରି ଆପଣଙ୍କୁ ଚୁକ୍ତି ରକ୍ଷା କରିବାକୁ ହେବ । ସଂକଳ୍ପ ସାଧନ କରିବାକୁ ହେବ ।

ଏ ବ୍ରତର ସାଧନ ପାଇଁ ତପସ୍ୟା ଦରକାର । ଖାଲି ମୁନିଋଷି ବଣରେ ବସି ତପସ୍ୟା କରନ୍ତି ନାହିଁ । ପ୍ରତ୍ୟେକ ମଣିଷ ଆପଣା ଉଦ୍ଦେଶ୍ୟ ସାଧନ ପାଇଁ ନିଜର ସଂକଳ୍ପ ସିଦ୍ଧି ପାଇଁ ଯେ କଷ୍ଟ ସ୍ୱୀକାର କରେ ତାକୁ ହିଁ ତପଶ୍ଚର୍ଯ୍ୟା କହନ୍ତି । ଏ ତପଶ୍ଚର୍ଯ୍ୟାରେ ସତ୍ୟ ଓ ଅହିଂସା ମୂଳମନ୍ତ୍ର – ସେଥିଯୋଗୁ ମନ ଶୁଦ୍ଧ ହେବା ଆବଶ୍ୟକ । କଷ୍ଟ ସ୍ୱୀକାର ଅର୍ଥ ସ୍ୱାର୍ଥତ୍ୟାଗ । ସେଥିପାଇଁ ଆପଣଙ୍କୁ ସ୍ୱରାଜ୍ୟ ପାଇଁ କିଛି ସ୍ୱାର୍ଥ ତ୍ୟାଗ କରିବାକୁ

ହେବ । ସବୁବେଳେ ଆପଣା ଚିନ୍ତା କରି କରି ମଣିଷର ମନ ବିଷର୍ଣ୍ଣ ମଳିନ ହୋଇଯାଏ । ବେଳେବେଳେ ସ୍ୱାର୍ଥ-ଚିନ୍ତା ଛାଡ଼ି ଦେଶ-ଚିନ୍ତା ଆବଶ୍ୟକ ।

ଏ ତପଶ୍ଚର୍ଯ୍ୟାରେ ଆପଣ ଏକା ନୁହଁନ୍ତି, ଆଉ ଅନେକ କଂଗ୍ରେସ ସଭ୍ୟ ହୋଇଛନ୍ତି । ସେଥିପାଇଁ ଏ କାମରେ ସାଧନା ପାଇଁ ସଂଘ ଲୋଡ଼ା । ସଂଘବଦ୍ଧ ହୋଇ କାମ କଲେ ଫଳ ଶୀଘ୍ର ମିଳେ । ଆଜି କଂଗ୍ରେସ ସେଥିପାଇଁ ମହାସଂଘ । ଆପଣମାନଙ୍କୁ ପ୍ରାଇମେରୀ କମିଟୀ ଜରିଆରେ ଦେଶ ପାଇଁ ଦଶଙ୍କ ପାଇଁ କିଛି କରିବାକୁ ହେବ ।

ଆପଣ କମିଟୀରେ ବସି ଗାଁର ଭଲ ମନ୍ଦ ଯେଉଁଥିରେ ହେଉଛି ବା ହେବ, ସେ କଥା ଆଲୋଚନା କରନ୍ତୁ । - (୧) ନିଜେ ଗାଁର ସ୍ୱାସ୍ଥ୍ୟ ପାଇଁ ସାହି ପଡ଼ିଶାର ଭଲ ପାଇଁ ଆପଣା ଗାଁ ପରିଷ୍କାର ରଖନ୍ତୁ; ଆପଣ କୁ-ଅଭ୍ୟାସମାନ ଛାଡ଼ି ଗାଁ ଆଖପାଖ ମଇଳା କରନ୍ତୁ ନାହିଁ । (୨) ଗାଁର ପଇସା ଗାଁରେ ରଖନ୍ତୁ - ବିଦେଶୀ ଜିନିଷର ଚକମକରେ ଭୁଲନ୍ତୁ ନାହିଁ -ଟିକିଏ କଷ୍ଟ ସ୍ୱୀକାର କରି ଆପଣା ଦେଶର ମୋଟାରୋଟାରେ ସନ୍ତୁଷ୍ଟ ହୁଅନ୍ତୁ । ଗାଁରେ ବିଦେଶୀ ଚିଜ କିପରି ତିଆରି ହେବ, ତା'ର ଯତ୍ନ ନିଅନ୍ତୁ । (୩) ବାହା ଶ୍ରାଦ୍ଧ, ପୁଣ୍ୟପର୍ବରେ ବାଜେ ଖରଚ କରି ଋଣଗ୍ରସ୍ତ ହୁଅନ୍ତୁ ନାହିଁ । ବୃଥା ଆଡ଼ମ୍ବରରେ ଲାଭ ନାହିଁ । (୪) ଆପଣା ପଇସା ପରକୁ ଦିଅନ୍ତୁ ନାହିଁ । ଗାଁର ଇଜ୍ଜତ ପଦାରେ ପକାନ୍ତୁ ନାହିଁ, ଗାଁ କଳି ଗାଁରେ ତୁଟାନ୍ତୁ । ତେବେ ଆମର ଯେ ସତ୍ୟ ଅହିଂସା ଆଶ୍ରୟ ଏ କଥା ଭୁଲିବା ନାହିଁ । ପଞ୍ଚାୟତ ନିରପେକ୍ଷ ହେବା ଆବଶ୍ୟକ । ପଞ୍ଚାୟତି ନିଷ୍ପତ୍ତିରେ ଜୋର ଜୁଲମ ରଖିବେ ନାହିଁ । ଜୋରିମାନା, ବାସନ୍ଦ ଏ ସବୁ କରିବାର ନୁହଁ । (୫)ଅନ୍ୟାୟ ଜୁଲମକୁ ଡ଼ରିବେ ନାହିଁ । ଆପଣ ଡ଼ରିଲେ ଆପଣଙ୍କ ଦେଖାଦେଖି ଅନ୍ୟ ସାହିପଡ଼ିଶା ଡ଼ରିବେ । ଯେ ଡ଼ରାଉଛି ସେ ବେଶି ଡ଼ରାଇବ । ଦେଶର ଜଣଙ୍କର କ୍ଷତି ବେଶି ହେବ । ସେଥିପାଇଁ ମନରୁ ଭୟ ଦୂର କରି ସତ୍ୟ, ଅହିଂସା ପଥରେ ରହି ଅସତ୍ୟ ଅନ୍ୟାୟର ବିରୋଧ କରନ୍ତୁ । (୬) ଅଳସୁଆ ହୋଇ ବସନ୍ତୁ ନାହିଁ - ସମସ୍ତେ ଅଳସୁଆ ହେବେ । ଅଳସୁଆ ହେଲେ ହିଂସା ବଢ଼େ । ଯେ ନିଜେ ପରିଶ୍ରମ ନକରି ଖାଏ ଅନ୍ୟର ପରିଶ୍ରମରୁ ଉତ୍ପନ୍ନ ଖାଇ ଚଳେ ସେ ହିଂସା କରେ । ସେଥିରେ ଅସମତା ବଢ଼େ, ଅଶାନ୍ତି ବଢ଼େ । (୭) ନିଶାଦ୍ରବ୍ୟ ବ୍ୟବହାର କରନ୍ତୁ ନାହିଁ । ସେଥିରେ ବୁଦ୍ଧି ମଳିନ ହୁଏ, ଧନ ସମ୍ପତ୍ତି ଉଡ଼ିଯାଏ । ସର୍ବନାଶ ହୁଏ । ଗାଁରୁ ନିଶାଖିଆ ବନ୍ଦ କରାନ୍ତୁ । (୮) 'ନର ଦେହେ ନରାୟଣ' ଅଛନ୍ତି । ମନୁଷ୍ୟକୁ ଅଛୁଆଁ କରି ନାରାୟଣଙ୍କର ଅବମାନନା କରନ୍ତୁ ନାହିଁ । ହିନ୍ଦୁ ଧର୍ମର ରକ୍ଷା ପାଇଁ ଅସ୍ପୃଶ୍ୟତା ଭୂତକୁ ତଡ଼ନ୍ତୁ । ଦେଶ ଭାଇଙ୍କୁ ଆଜି ଅସ୍ପୃଶ୍ୟ କରିଥାଉଁ

ବୋଲି ଆମ କଳା ଲୋକେ ଆଜି ଦେଶ ବିଦେଶରେ ଅନ୍ୟଙ୍କ ପାଖରେ ଅସ୍ପୃଶ୍ୟ । ନିଜେ ଅନ୍ୟାୟ ଜୁଲମ ବନ୍ଦ ନ କଲେ ଆମ ଉପରେ ଅନ୍ୟାୟ ଜୁଲମ ବନ୍ଦ ହେବେ ନାହିଁ ।

ବରୀ, କଟକ — ଆପଣଙ୍କର

୧୧.୧୦.୩୮ — ଗୋପବନ୍ଧୁ ଚୌଧୁରୀ

(ବିଶେଷ ଦ୍ରଷ୍ଟବ୍ୟ : ପ୍ରାଥମିକ କଂଗ୍ରେସ କମିଟି ଗଢ଼ିବାକୁ ହେଲେ ଗୋଟିଏ ଗାଁରେ ବା ଗୋଟିଏ ୟୁନିୟନ୍‌ରେ କେତୋଟି ଗାଁରେ ମିଶି ପଚାଶ ଜଣରୁ ବେଶି ସଭ୍ୟ ଥିବେ ଏବଂ ସେମାନଙ୍କର କାମ ଚଳେଇବାକୁ ସବୁବେଳେ ଖଦଡ଼ ପିନ୍ଧୁଥିବା ଦୁଇଜଣ କାର୍ଯ୍ୟକର୍ତ୍ତା ଥିବେ । ସଭ୍ୟ ହେବାର ତିନିମାସ ପରେ କଂଗ୍ରେସ କମିଟି ସବୁ ତଦାରଖ କରି ପ୍ରାଥମିକ କମିଟିକୁ ମଞ୍ଜୁରୀ ଦେଲେ ଚାନ୍ଦା ପଇସାରୁ ତାଙ୍କ ଅଂଶ ତାଙ୍କୁ ମିଳିବ ।)

ପ୍ରାଥମିକ କମିଟି ଗଠନଠାରୁ ଆରମ୍ଭ କରି ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି କାମ, ପ୍ରାଦେଶିକ ଟ୍ରାଇବୁନାଲ ଦାୟିତ୍ୱ ଏପରିକି ଡ଼ିଷ୍ଟ୍ରିକ୍ଟ ବୋର୍ଡ଼ ସଭ୍ୟ ପଦ ପାଇଁ ପ୍ରାର୍ଥୀଙ୍କ ନିମନ୍ତେ ପ୍ରଚାର କାର୍ଯ୍ୟ ମଧ୍ୟ ଗୋପବାବୁ ବିଭିନ୍ନ ସମୟରେ ତୁଲାଇଲେ । ଆମେମାନେ ତ ସେ କାମରେ ଲାଗୁଥିଲୁ, ସ୍ଥାନୀୟ କର୍ମୀ ବାହାର କରି ସେମାନଙ୍କୁ ବିଚାର ବୁଝାଇ ସଂଗଠନ କାମରେ ଲଗାଇବାକୁ ସବୁବେଳେ ଉଦ୍ୟମ ଚାଲିଥିଲା । ଥରେ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ ଜଣେ ଅଭିଯୋଗକାରୀ ଭାବରେ ବରୀ ଯାଇ ସେବାଘରେ ବାଉଁଶ ପେଲାଦିଆ ଝାଟିମାଟି କାନ୍ଥ ଘରେ ପ୍ରାଦେଶିକ ଟ୍ରାଇବୁନାଲ ବସୁଥିବାର ଦେଖି ତାଙ୍କର ଆୟତ ଚକ୍ଷୁ ବିସ୍ଫାରିତ ହୋଇଗଲା । ଟ୍ରାଇବୁନାଲର ଅନ୍ୟତମ ସଭ୍ୟ ଥିଲେ ଆଚାର୍ଯ୍ୟ ମହାଶୟ । ଭଗବତୀବାବୁଙ୍କ ଭାଷାରେ ମୁଁ ଥିଲି ଟ୍ରାଇବୁନାଲ୍‌ର ଶିରସ୍ତାଦାର ।

ଗୋପବାବୁଙ୍କ ନିର୍ବାଚନ ପ୍ରଚାର ଓ ପରବର୍ତ୍ତୀ ପ୍ରତିକ୍ରିୟା ମଧ୍ୟ ନିଆରା ଥିଲା । ଶ୍ରୀ ଭଗୀରଥ ଦାସ ଥିଲେ କଂଗ୍ରେସ ପକ୍ଷରୁ ଜିଲ୍ଲାବୋର୍ଡ଼ର ସଦସ୍ୟପଦ ପ୍ରାର୍ଥୀ । ଗୋପବାବୁ ଭଗୀରଥ ବାବୁଙ୍କ ପାଇଁ ପ୍ରଚାର କରି ଉଆର୍ଦ୍ଧା ଚାଲିଗଲେ । ଯିବା ପୂର୍ବରୁ ଗୋବର୍ଦ୍ଧନ ପ୍ରଧାଣ, ଗଣେଶ ମହାନ୍ତି ପ୍ରଭୃତିଙ୍କୁ ଡ଼କାଇ କହିଗଲେ – ଭଗୀରଥ ବାବୁ ନିଶ୍ଚୟ ଜିତିବେ କିନ୍ତୁ ସାବଧାନ ! ସେ ଜିତିବା ଖବର ପାଇବା ପରେ ତମେମାନେ ଶୋଭାଯାତ୍ରା ଆଦି କରି ଉଲ୍ଲାସ ପ୍ରକାଶ କରିବ ନାହିଁ । ଭଗୀରଥବାବୁ ଜିତିବା ଖବର ପାଇ ଗଣେଶ ବାବୁ ପ୍ରଭୃତି ଏତେ ଉଲ୍ଲସିତ ହେଲେ ଯେ ଗୋପବାବୁଙ୍କ ସତର୍କବାଣୀ ପାଶୋରି

ପକେଇଲେ । ଶୋଭାଯାତ୍ରା କରି ବାଣ ଫୁଟେଇ ପ୍ରତିପକ୍ଷ ଘର ଆଗରେ ବାଜା ବଜେଇ 'ଉଛନ ଦଶା' ହେଲେ । ଗୋପବାବୁ ଉଆର୍ଦ୍ଧାରୁ ଫେରି ଏ ସବୁ ବ୍ୟାପାର ଜାଣି ଗଣେଶ ବାବୁଙ୍କୁ ଡ଼କାଇ ଏ ପ୍ରକାର ଆନନ୍ଦ ଉଲ୍ଲାସ ଯେ ଅହିଂସା ବିଚାର ବିରୋଧୀ ଏବଂ ଏହାର ପ୍ରତିକ୍ରିୟା ବିଷମ ଏ କଥା ଅତି ବିରକ୍ତ ହୋଇ ବୁଝାଇଲେ । ଗଣେଶ ବାବୁ ଗୋପବାବୁଙ୍କ ତତ୍ତ୍ୱବ୍ୟାଖ୍ୟା ଓ ରାଗ ଦେଖି କଳାକାଠ ପଡ଼ିଗଲେ । ସେ ଅତି ବିରସ ବଦନରେ ସେବାଘର ଡ଼ିହରୁ ଓହ୍ଲେଇବା ବେଳେ ଆମେ ପଚାରିଲୁ, ଗଣେଶ ବାବୁ ! କ'ଣ ହେଲା କି ? ଗଣେଶ ବାବୁ ଆମ ଆଡ଼କୁ କଟମଟ କରି ଚାହିଁ କହିଲେ, 'ବେଉଷଣ' । ମୋଟ ଉପରେ ଗୋପବାବୁଙ୍କ କ୍ରୋଧକୁ କର୍ମୀମାନେ 'ବେଉଷଣ' ଭାବୁଥିଲେ ।

କିନ୍ତୁ ଗୋପବାବୁ, ରମାଦେବୀ ପରବର୍ତ୍ତୀ ସମୟରେ କଂଗ୍ରେସ କାମରୁ ଓହରି ଗଲେ । କୌଣସି ଦାୟିତ୍ୱରେ ରହିବା ତ ଦୂରର କଥା, ୧୯୪୦ ମସିହାରୁ କଂଗ୍ରେସର ଚାରିଅଣିଆ ସଦସ୍ୟ ସୁଦ୍ଧା ହେଲେ ନାହିଁ । ସେଥିପାଇଁ ରମାଦେବୀଙ୍କୁ ପଢ଼ିଆରୀ ମହାଶୟ କହିଥିଲେ - ଗୋପବାବୁ କଂଗ୍ରେସରୁ ଅଲଗା ହୋଇଗଲେ ବୋଲି ତୁମେମାନେ କଦାପି ଭାବ ନାହିଁ ଯେ ବ୍ରିଟିଶ ସରକାର ତୁମ ଉପରେ ସତର୍କ ଦୃଷ୍ଟି ରଖିନାହିଁ । ତୁମମାନଙ୍କର ପ୍ରତ୍ୟେକ ଗତିବିଧି ପ୍ରତି ସେ ଲକ୍ଷ୍ୟ ରଖିଛି ।

ପଢ଼ିହାରୀ ମହାଶୟ ତ ଏତିକି କହିଲେ । ଆମେ ଗାଈଗୋରୁ, ବାରିବଗିଚା କାମରେ ସମୟ ଦେଉଥାଉ ବୋଲି ଅନେକ ଆମକୁ ମଠ ମହନ୍ତ କହୁଥିଲେ । ପୁଣି ପ୍ରାର୍ଥନା, ପାଇଖାନା ସଫା, ମସଲା ଦିଆ ହୋଇ ନ ଥିବା ତରକାରୀ ଖିଆ ଆଦି ଯୋଗୁ 'କର୍ତ୍ତାଭଜା' ଗାନ୍ଧୀଙ୍କ 'ହନୁକରଣକାରୀ' ମଧ୍ୟ କହୁଥିଲେ । ଆମ ଭିତରୁ କେହି ଅସୁସ୍ଥ ହେଲେ ତ ଏ ପ୍ରକାର ପ୍ରେମାକ୍ରମଣର ସୀମା ରହୁ ନ ଥିଲା । ସତେ ଯେପରି କଟକ ବଡ଼ ଡ଼ାକ୍ତରଖାନାର ସବୁ ରୋଗୀ ସେବାଘରର ଗଠନମୂଳକ କର୍ମୀ !

ମୁସଲମାନ ଗୋଷ୍ଠୀଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ବିଶେଷ ଭାବରେ ମଙ୍ଗଳା ଦେବୀ ଓ ମୁଁ ବଛା ହେଲୁ । ଅରଙ୍ଗାବାଦ ଓ ବରୀ ମୁସଲମାନ ବସ୍ତିରେ ସୂତାକଟା ପ୍ରୌଢ଼ଶିକ୍ଷା କାମ ଆମେ ଆରମ୍ଭ କଲୁ । ଆଶୁଙ୍କିଙ୍କ ପୁଅ ଆୟୁବ୍ ଆସି ଆମ ସାଙ୍ଗରେ ରହିଲେ । ବରୀ ମିଆଁଙ୍କ ନାତୁଣୀଙ୍କର ବରମ୍ବରଦାରେ ଶ୍ୱଶୁର ଘର । ବରମବରଦାରୁ ବରୀ ଆସିବା ବେଳେ ତାଙ୍କ ବଳଦ ଗାଡ଼ି ନିଶ୍ଚୟ ସେବାଘର ଆଗରେ ଅଟକିବ । ଯେତେ ରାତି ହୋଇଥାଉ ପଛକେ ସେ ସେବାଘରକୁ ଆସି ସମସ୍ତଙ୍କୁ ଉଠେଇବେ । ଗୋପବାବୁ ମଧ୍ୟ ସେଥିରୁ ବାଦ ପଡ଼ିବେ ନାହିଁ । ମୁସଲମାନୀ ରୀତିରେ

ସେ ଖୁବ୍ ପର୍ଦ୍ଦା ମାନୁଥିଲେ । କିନ୍ତୁ ଗୋପବାବୁଙ୍କୁ ସେ ଆଡ଼ ତ ହୁଅନ୍ତି ନାହିଁ; କାନ୍ଧରେ ହାତ ପକେଇ ସାଙ୍ଗ ହୁଅନ୍ତି । ଗୋପବାବୁ ବରାବର କହୁଥିଲେ – ମୁଁ ପିଲାଦିନେ ମୁସଲମାନ ମା'ର କ୍ଷୀର ଖାଇଛି । ତେଣୁ ମୋ ଶିରା ଉପଶିରାରେ ମୁସଲମାନ ରକ୍ତ ପ୍ରବାହିତ ।

ମିଆଁଙ୍କ ନାତୁଣୀ ଏ କଥା କେମିତି ଜାଣିଲେ କେଜାଣି ସେ ଗୋପବାବୁଙ୍କୁ 'ମୋ ମିଆଁ' କହି ସମ୍ବୋଧନ କରନ୍ତି । ଜୋବା ବିବି, ହାଜୁବିବି ପ୍ରଭୃତି ଅନେକ ଭଉଣୀ ଆମର କଟାଳୀ ହୋଇଗଲେ । କଟାଳୀ ହେବା ଯେଡ଼େ ବଡ଼ କଥା ନୁହେଁ ସେମାନଙ୍କ ସହିତ ଯେଉଁ ଏକପ୍ରକାର ପାରିବାରିକ ସମ୍ପର୍କ ହୋଇଗଲା, ତାକୁ ଦେଖି ଆଶାଦେବୀ ପ୍ରମୁଖ ବହିରାଗତ ଅତିଥି ବିସ୍ମିତ ହେଲେ ।

ଠିକ୍ ସେହିପରି ମୂଲିଆ ଶ୍ରେଣୀ ସହିତ ଏକରୂପ ହେବା ପାଇଁ ଗୋଖଣୀ, ଶ୍ରୀରାମ ପ୍ରଭୃତିଙ୍କ ସଙ୍ଗେ ଆମେ ଧାନ କାଟିଲୁ । ପର ବିଲରେ ଧାନ କାଟି ମୂଲ ମୁଣ୍ଡେଇ ଆସିବାର ଅନୁଭୂତି ବାସ୍ତବିକ ରୋମାଞ୍ଚକର । ଆମର ଅନେକ ପରମାତ୍ମୀୟ ଓ ଗୋପବାବୁଙ୍କର ସହରୀ ଘନିଷ୍ଠ ବନ୍ଧୁ ଏହାର ବିରୋଧ କରି ଚିଠି ଲେଖିଲେ । କିନ୍ତୁ ଆମର  ତ ଅବସ୍ଥା ହୋଇଥାଏ –

'ଏହା ରାମଧୂନ ଲାଗି । ସ୍ୱରାଜ୍ୟ ଧୂନ ଲାଗି ।'

ସେଥିପାଇଁ ସେନାପତି ଗାନ୍ଧୀ ଯାହା କହିବ ତାହାହିଁ ବେଦ ।

ଗାନ୍ଧୀ-ସେବା ସଂଘ ସ୍ଥାପିତ ହେଲା ୧୯୨୩ ମସିହାରେ । ଗାନ୍ଧୀବାଟରେ ଚାଲୁଥିବା ବ୍ୟକ୍ତିଙ୍କ ମଧ୍ୟରେ ପରସ୍ପର ବିଚାର ବିନିମୟ ଥିଲା ଏହାର ଉଦ୍ଦେଶ୍ୟ । ଶେଠ୍ ଯମୁନାଲାଲ ବଜାଜଙ୍କ ଉଦ୍ୟମରେ ଏହି ଅନୁଷ୍ଠାନ ଗଠିତ ହୋଇଥିଲା । ୧୯୩୪ ପରଠାରୁ ପ୍ରତିବର୍ଷ ଏହି ସଂଘର ସଦସ୍ୟମାନଙ୍କର ବାର୍ଷିକ ବୈଠକ ନିୟମିତ ରୂପେ ବସୁଥିଲା । ଗୋପବାବୁ ଏହି ସଂଘର ଟ୍ରଷ୍ଟୀ ଥିଲେ । ସଂଘର ପ୍ରଥମ ସଭାପତି ହୋଇଥିଲେ ଶେଠ୍ ଜମୁନାଲାଲ ବଜାଜ । ଦ୍ୱିତୀୟ ସଭାପତି ହେଲେ ପ୍ରଖ୍ୟାତ ଗାନ୍ଧୀ ବିଚାର ବିଶାରଦ କିଶୋରଲାଲ ମଶିୱାଲା । ସଂପାଦକ ଥିଲେ ରଘୁନାଥ ଶ୍ରୀଧର ଧୋତ୍ରେ । ରାଜନୈତିକ, ସାମାଜିକ, ଆର୍ଥିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ଗାନ୍ଧୀ ବିଚାର ଅନୁସାରେ ପ୍ରୟୋଗ କାର୍ଯ୍ୟ କରୁଥିବା କର୍ମୀମାନଙ୍କର ସମ୍ମିଳନୀରେ ଗାନ୍ଧିଜୀ ମଧ୍ୟ ଯୋଗ ଦେଉଥିଲେ । ଏହି ବାର୍ଷିକ ସମ୍ମିଳନୀର ୩ୟ ଅଧିବେଶନ କର୍ଣ୍ଣାଟକର ହୁବ୍ଲୀଠାରେ ଅନୁଷ୍ଠିତ ହେଲା । ସାଧାରଣ ସଦସ୍ୟ ଭାବରେ ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ଓ ରମାଦେବୀ ସେହି

ସମ୍ମିଳନୀକୁ ଯାଇଥିଲେ । ବିନୋଦ କାନୁନଗୋ ମଧ୍ୟ ସେମାନଙ୍କ ସାଙ୍ଗରେ ସମ୍ମିଳନୀରେ ଯୋଗ ଦେଇଥିଲେ । ସେଠାରେ ହୋତା ମହାଶୟ ଆସନ୍ତା ବର୍ଷକୁ ଏହି ସମ୍ମିଳନୀ ଓଡ଼ିଶାରେ କରିବା ପାଇଁ ଆଗ୍ରହ ପ୍ରକାଶ କଲେ । ଆପଣା ମଧ୍ୟରେ ପରାମର୍ଶ କରି ପରବର୍ତ୍ତୀ ସମ୍ମିଳନୀ ଓଡ଼ିଶାରେ କରିବା ପାଇଁ ପ୍ରସ୍ତାବ ଦିଆଗଲା । ଏହା ଶୁଣିବାମାତ୍ରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ରମାଦେବୀଙ୍କୁ କହିଲେ – ନିଖିଳ ଭାରତୀୟ ସ୍ତରର ସମ୍ମିଳନୀ କରିବା ପାଇଁ ତମେମାନେ କ'ଣ ସମର୍ଥ ? ଅର୍ଥାତ୍ ସେ ଏ ପ୍ରସ୍ତାବର ବିରୋଧ କଲେ । ମାତ୍ର ଗାନ୍ଧିଜୀ ଅତି ଆଗ୍ରହରେ ଓଡ଼ିଶା ପ୍ରସ୍ତାବକୁ ଅନୁମୋଦନ କରିବାରୁ ସର୍ଦ୍ଦାର ନୀରବ ରହିଲେ ।

ଗୋପବାବୁ ପ୍ରଭୃତି ହୁବ୍ଲିରୁ ଫେରିବା ପରେ ସମ୍ମିଳନୀ ପାଇଁ ପୂର୍ବପ୍ରସ୍ତୁତି ଚାଲିଲା । ଏହି ସମ୍ମିଳନୀର ବ୍ୟବସ୍ଥା ବାବଦରେ କେତେଗୁଡ଼ିଏ ନିୟମ ମାନିବାକୁ ପଡୁଥିଲା । ପ୍ରଥମତଃ ଏ ସମ୍ମିଳନୀ ଗାଁରେ ହିଁ ହେବ-ଅଥଚ ପାଖରେ ରେଳ ଷ୍ଟେସନ ଥିବ । ସେଥିପାଇଁ ଡ଼େଲାଙ୍ଗ ଷ୍ଟେସନ ନିକଟସ୍ଥ ବେରବୋଇରେ ଏ ସମ୍ମିଳନୀ ହେବା ସ୍ଥିର ହେଲା । ଦ୍ୱିତୀୟତଃ ସମ୍ମିଳନୀ ସ୍ଥାନର ଦଶମାଇଲ ବ୍ୟାସାର୍ଦ୍ଧ ମଧ୍ୟରୁ ସମ୍ମିଳନୀ ପାଇଁ ଆବଶ୍ୟକ ଖାଦ୍ୟ ପଦାର୍ଥ ସଂଗ୍ରହ କରିବାକୁ ହେବ । ସେଥିପାଇଁ ହୋତା ମହାଶୟ ଦୈନିକ ଅନ୍ତତଃ ହଜାରେ ଲୋକଙ୍କ ପାଇଁ ଆବଶ୍ୟକ ପନିପରିବାର ପରିମାଣ ସାତଦିନ ନିମନ୍ତେ ହିସାବ କରି ପନିପରିବା ଚାଷ କରାଇବା ପାଇଁ ଗାଁ ଗାଁ ବୁଲିଲେ । ବିଶ୍ୱନାଥ ପରିଡ଼ାଙ୍କର କାମ ହେଲା ସମ୍ମିଳନୀ ବେଳକୁ ଗାଁମାନଙ୍କରେ କେତେ ଦୁହାଁଳିଆ ଗାଈ ଥିବେ ତା'ର ତଥ୍ୟ ସଂଗ୍ରହ କରିବା ଏବଂ ଲୋକଙ୍କୁ ଅନ୍ୟ ଗାଁରୁ ସେହି ସମୟକୁ ଦୁହାଁଳିଆ ଗାଈ କାଟ ଆଣିବାକୁ ପ୍ରବର୍ତ୍ତାଇବା । ସମ୍ମିଳନୀରେ କେବଳ ଗାଈ କ୍ଷୀର ଓ ଗୁଆ ଘିଅ ବ୍ୟବହୃତ ହେବ । ସେଥିପାଇଁ ନିର୍ଦ୍ଦିଷ୍ଟ ସୀମା ମଧ୍ୟରୁ ଗୁଆ ଘିଅ କିଣି ଝୋବାରେ ପୁରାଇ ମାଟିରେ ପୋତା ହେବା କାମ ମଧ୍ୟ ବିଶ୍ୱନାଥ ବାବୁ କଲେ । ବୈଦ୍ୟନାଥ ଦାସ ଖଦୀ ପ୍ରତିଷ୍ଠାନରୁ କନ୍‌ଡ଼େନ୍‌ସଡ୍ ମିଲ୍କ ତିଆରି ଓ ସଂରକ୍ଷଣ କାମ ଶିଖି ଆସି ବେରବୋଇରେ ରହି କଣ୍ଡେନ୍‌ସଡ୍ ମିଲ୍କ ତିଆରି କଲେ । ମାତ୍ର ତାହା ସଫଳ ହେଲା ନାହିଁ । ଅତିଥିଙ୍କୁ କେବଳ ପଇଡ଼ ପାନୀୟ ହିସାବରେ ଯୋଗାଇବାକୁ ଆଗ୍ରହୀ ହୋଇ ଆଚାର୍ଯ୍ୟ ମହାଶୟ ଷୋଳ ଶାସନରୁ ହଜାର ହଜାର ପଇଡ଼ ଓ ପ୍ରତିନିଧି ନିବାସ ପାଇଁ ନଡ଼ିଆ ଚାଞ୍ଚ ଯୋଗାଡ଼ରେ ଲାଗିଲେ । ଓଡ଼ିଶାର ବଡ଼ି ଓ ପିଠାପଣା ଅତିଥିଙ୍କୁ ଖୁଆଇବା ପାଇଁ ଚଣାହାଟା, ନାରାଣପୁର ଆଦିରୁ ସୁଦକ୍ଷା ମହିଳାଙ୍କୁ ସ୍ୱେଚ୍ଛାସେବିକା

ଭାବରେ ସଂଗ୍ରହ କରିବା ଦାୟିତ୍ୱ ନେଲେ ରମାଦେବୀ । ସମ୍ମିଳନୀର ଆଉ ଗୋଟିଏ ନିୟମ ଥିଲା ଖାଇବା ଖରଚ ଚାରିଅଣାରୁ ଅଧିକ ହେବ ନାହିଁ । ଏହି ନିୟମ ମାନି ଅତିଥିଙ୍କୁ କିପରି ସୁଷମ ସୁସ୍ୱାଦୁ ଓଡ଼ିଶୀ ଖାଦ୍ୟ ଓ ପର୍ଯ୍ୟାପ୍ତ ଦୁଧ ଦହି ଦିଆଯିବ ସେ ସବୁ ହିସାବ କରି ଆହାର ପ୍ରକାର ସ୍ଥିର ହେଲା ।

ପୁଣି ଆମଆଡୁ କେତେଗୁଡ଼ିଏ ନିୟମ ଜାରି କରାଗଲା - ପ୍ରଥମ କଥା ସମୂହ ସୂତ୍ରଯଜ୍ଞରେ ଯେଉଁ ସୂତା କଟା ହେବ, ସେ ବଳଣା ଆମର ଭଲ ଭିଣାଳୀମାନେ ତିଆରି କରିବେ । ଦ୍ୱିତୀୟ କଥା ହେଲା ଯେ ଯେଡ଼େ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଉ ଥାନ୍ତୁ ନା କାହିଁକି, ସମୂହ ସୂତ୍ରଯଜ୍ଞରେ ଗାନ୍ଧିଜୀଙ୍କ ସହ ସମସ୍ତେ ସୂତା କାଟିବେ । ତେଣୁ ସମ୍ମିଳନୀ ବେଳେ ସୂତ୍ରଯଜ୍ଞ ଘଣ୍ଟା ପଡ଼ିଲେ ସବୁ କର୍ମୀ ଓ ସ୍ୱେଚ୍ଛାସେବକ ସାମରିକ ଅନୁଶାସନ ରକ୍ଷା କଲାପରି ସୂତ୍ରଯଜ୍ଞ ସ୍ଥାନରେ ଏକତ୍ର ହେଉଥାନ୍ତି । ଭାରତର ଶ୍ରେଷ୍ଠ ସତ୍‌ପୁରୁଷ ଆମ ହାତ ତିଆରି ବଳଣାରେ ସୂତା କାଟୁଛନ୍ତି ଏବଂ ଆମେ ମଧ୍ୟ ତାଙ୍କ ସାଙ୍ଗରେ ସୂତା କାଟୁଛୁ ବିଚାରି ମନରେ ଏକ ଅପୂର୍ବ ପୁଲକ ଅନୁଭବ କରୁଥାଉ ।

ସମ୍ମିଳନୀ ୧୯୩୮ ମସିହା ମାର୍ଚ୍ଚ ମାସରେ ଅନୁଷ୍ଠିତ ହେଲା । ସମ୍ମିଳନୀ ସହିତ ଓଡ଼ିଶାର ସର୍ବପ୍ରକାର ଚାରୁକଳା ଓ ଗ୍ରାମୋଦ୍ୟୋଗର ନମୁନା ଭାରତ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଗୋଟିଏ ପ୍ରଦର୍ଶନୀ କରିବା ସ୍ଥିର ହେଲା । ସତ୍ୟବାଦୀ ନନ୍ଦ ଓ ବ୍ରଜମୋହନ ସିଂହ ଏ ସବୁ ସାମଗ୍ରୀ ଓ ତା ସହିତ ଏ ସବୁ ତିଆରି କରୁଥିବା କାରିଗର ଯେପରି ପ୍ରଦର୍ଶନୀରେ ତିଆରି ପ୍ରଣାଳୀ ଦେଖାଇ ପାରିବେ ସେପରି ଦକ୍ଷ କାରିଗର ସଂଗ୍ରହ କରିବାକୁ ସାରା ଓଡ଼ିଶା ଚଷିଲେ । ସମ୍ମିଳନୀ ଓ ପ୍ରଦର୍ଶନୀ ସାଜସଜ୍ଜା, ପ୍ରବେଶଦ୍ୱାର ତିଆରି ଦାୟିତ୍ୱରେ ରହିଲେ ଉପେନ୍ଦ୍ର କିଶୋର ଦାସ (ମଲାଜହ୍ନ), ବିପିନ ବିହାରୀ ଚୌଧୁରୀ ଓ ମନମୋହନ ଚୌଧୁରୀ । ସଫେଇ - ବିଶେଷରେ ପାଇଖାନା ସଫେଇ ଦାୟିତ୍ୱରେ ରହିଲେ ସର୍ବଶ୍ରୀ ଲାଲବିହାରୀ ପଟ୍ଟନାୟକ, ନିତ୍ୟାନନ୍ଦ କାନୁନଗୋ ଓ ବିନୋଦ କାନୁନଗୋ । ନିତ୍ୟାନନ୍ଦ କାନୁନଗୋ ସେତେବେଳେ ଓଡ଼ିଶାରେ କଂଗ୍ରେସୀ ମନ୍ତ୍ରୀ ମଣ୍ଡଳରେ ଜଣେ ମନ୍ତ୍ରୀ ଥିଲେ । ସୁରେନ୍ଦ୍ର ପଟ୍ଟନାୟକ କାର୍ଯ୍ୟାଳୟ, ଗୋକୁଳାନନ୍ଦ ମହାନ୍ତି ଟଙ୍କା ପଇସା, ଅନ୍ତର୍ଯ୍ୟାମୀ ପଣ୍ଡା ହିସାବ, ରମାଦେବୀ ଭୋଜନ ବ୍ୟବସ୍ଥା ଏବଂ ସ୍ୱୟଂ ଆଚାର୍ଯ୍ୟ ମହାଶୟ ଅତିଥି ଚର୍ଚ୍ଚା ଦାୟିତ୍ୱରେ ରହିଲେ । ସେବାଘରର ସାନ ସାନ ଝିଅମାନଙ୍କର ଗୋଟାଏ Pick-up party ଗଢ଼ା ହୋଇଥାଏ । ସେମାନେ ଚାରିଆଡ଼େ ବୁଲୁଥାନ୍ତି । କେଉଁଠି ଟିକିଏ ଛିଣ୍ଡା କାଗଜ ବା ଆବର୍ଜନା ପଡ଼ି ଥିବାର ଦେଖିବା ମାତ୍ରେ

ଗୋଟେଇ କରି ଯଥାସ୍ଥାନରେ ଫିଙ୍ଗି ଆସନ୍ତି । ସମ୍ମିଳନୀ ଶେଷ ଦିନରେ ଅଧିବେଶନରେ ସମ୍ମିଳନୀ ସଂକ୍ରାନ୍ତୀୟ ଆୟବ୍ୟୟ ହିସାବ ନିକାଶ ହୋଇ ପେଶ୍ ହୁଏ । ଗୋପବାବୁ ହିସାବ ପଢ଼ି ଶୁଣାଇବା ବେଳେ ଚାରିଅଣାରୁ ଅଧିକ ଖାଇବା ଖରଚ ପଡ଼ିଛି କି ନାହିଁ, ସେହି କଥାକୁ ଯମୁନାଲାଲଜୀ ପ୍ରଭୃତି ଲକ୍ଷ୍ୟ ରଖି ଥାଆନ୍ତି । ଯାହାହେଉ, ସମ୍ମିଳନୀ ସୁରୁଖୁରୁରେ ସରିଲା । ସର୍ଦ୍ଦାର ପଟେଲ ତାଙ୍କ ଉଦ୍‌ଯାପନ ଭାଷଣରେ କହିଲେ, ''... ଓଡ଼ିଶା ଗୋଟିଏ ଦୂରବର୍ତ୍ତୀ ପ୍ରଦେଶ । ଗୋପବାବୁ ଏଠାକୁ ଆମକୁ ନିମନ୍ତ୍ରଣ କଲେ । ଆମ ସୁବିଧା ଓ ଆରାମ ପାଇଁ ଏତେ ସାମଗ୍ରୀ ଏକତ୍ର କଲେ । ସପରିବାରେ ଆମ ସେବାରେ ଭୋଜନାଳୟରେ ଭଉଣୀମାନେ କେଡ଼େ ଆଦରରେ ଆମର ଆତିଥ୍ୟ ତତ୍ପରତାର ସହିତ କଲେ । ପରିଚ୍ଛନ୍ନତା ରକ୍ଷା କରିବା ପାଇଁ ସ୍ୱେଚ୍ଛାସେବକ କେତେ ତତ୍ପର ରହିଲେ । ମୁଁ ସମସ୍ତଙ୍କ ଉପକାର ସ୍ୱୀକାର କରୁଛି । ମୋ ମତରେ ଏହାହିଁ ହେଉଛି ପ୍ରତ୍ୟକ୍ଷ ସ୍ୱରାଜ୍ୟର ବ୍ୟାବହାରିକ ତାଲିମ ...।'' ଯେଉଁ ସର୍ଦ୍ଦାର ପଟେଲ ଓଡ଼ିଶାରେ ସମ୍ମିଳନୀ ସଫଳ ହେବା ବାବଦରେ ସନ୍ଦେହ ପ୍ରକାଶ କରିଥିଲେ ତାଙ୍କରି ମୁହଁରୁ ଏ ପ୍ରଶସ୍ତି ଶୁଣି ଆମ ହୃଦୟଜ୍ୱାଳା ପ୍ରଶମିତ ହେଲା ।

ସମ୍ମିଳନୀର ବ୍ୟବସ୍ଥା କାମରେ ଏତେ ବ୍ୟସ୍ତ ରହିବାକୁ ପଡୁଥାଏ ଯେ ସମ୍ମିଳନୀର ଆଲୋଚନା ଶୁଣିବାକୁ ଆମମାନଙ୍କୁ ଆଦୌ ବେଳ ମିଳୁ ନ ଥାଏ । ଆମ ଭିତରୁ କେବଳ ବିନୋଦ କାନୁନ୍‌ଗୋ ବେଳ ଉଣ୍ଡି ଯାଇ ମୁଖ୍ୟ ଆଲୋଚନା ଶୁଣି ଆସୁଥିଲେ । ଆମେମାନେ ବେଳେ ବେଳେ ସମ୍ମିଳନୀ ମଣ୍ଡପ ବାଟେ ଗଲା ଆଇଲା ବେଳେ ଟିକିଏ ଛିଡ଼ା ହୋଇ ଯାଇ ନେତାମାନଙ୍କ କଥା ଶୁଣି ଦେଉ । ପଣ୍ଡିତ ନେହେରୁଙ୍କ ଛଡ଼ା କଂଗ୍ରେସର ପ୍ରାୟ ସବୁ ବଡ଼ ବଡ଼ ନେତା ଏପରିକି ମୌଲାନା ଆଜାଦ ସୁଦ୍ଧା ଏହି ସମ୍ମିଳନୀରେ ଉପସ୍ଥିତ ଥିଲେ । ସର୍ଦ୍ଦାର ପଟେଲ, ବାବୁ ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ କୃପାଳିନୀଙ୍କ ଭଳି ପୋଖତ ରାଜନୀତିଜ୍ଞ, କାକାସାହେବ କାଲେଲ୍‌କର, ଦାଦା ଧର୍ମାଧିକାରୀ, ମହାଦେବ ଦେଶାଇ, କିଶୋରଲାଲ ମଶ୍ରିୱାଲା, ଶ୍ରୀକୃଷ୍ଣଦାସ ଜାଜୁ ପ୍ରମୁଖଙ୍କ ଭଳି ପଣ୍ଡିତ, ଶିକ୍ଷାବିତ୍, ସଂଗଠକ ପୁଣି ସ୍ୱାମୀ ଅଭୟ ଦେବ, ଜେଠାଲାଲଭାଇ ଆଦିଙ୍କ ପରି ସେବାନିପୁଣ ସତ୍‌ପୁରୁଷଙ୍କ ସାନ୍ନିଧ୍ୟ ଆମକୁ କୋଟିନିଧି ପରି ଲାଗୁଥାଏ । ସମ୍ମିଳନୀରେ ଗୋଟାଏ ମୁଖ୍ୟ ଆଲୋଚନା ବିଷୟ ଥିଲା କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଓ ସାଂପ୍ରଦାୟିକ ଗଣ୍ଡଗୋଳ । ଗାନ୍ଧିଜୀ ଦୃଢଭାବରେ କହୁଥାନ୍ତି ଯେ ଦଙ୍ଗାହଙ୍ଗାମାରେ ଯଦି ଗୁଳି ଚଳାଇ ପରିସ୍ଥିତି ଆୟତ୍ତାଧିନ କରାଗଲା ତେବେ ସେ ମନ୍ତ୍ରୀମଣ୍ଡଳ ଅନୁପଯୁକ୍ତ ବୋଲି ପ୍ରମାଣିତ ହେଲା । ଦଙ୍ଗାହଙ୍ଗାମା ଲାଗିଲେ

କଂଗ୍ରେସ ଲୋକ ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କ ପରି ଦଙ୍ଗା ଲାଗିଥିବା ସ୍ଥାନରେ ପହଞ୍ଚି ଆବଶ୍ୟକ ପଡ଼ିଲେ ଶହୀଦ ହୋଇଯିବା ଉଚିତ୍ । ଶାନ୍ତି-ସେନାର ଗୁରୁତ୍ୱ ସେ ନେତୃବୃନ୍ଦଙ୍କୁ ବୁଝାଉଥାନ୍ତି ।

ସମ୍ମିଳନୀରେ ଆଉ ଗୋଟିଏ ଆଲୋଚ୍ୟ ବିଷୟ ଥିଲା - ଦେଶରେ ଯେଉଁ ପ୍ରାଦେଶିକତା ଦେଖା ଦେଇଛି, ବିହାରି ବଙ୍ଗାଳୀଙ୍କୁ ବିଦେଶୀ ମଣୁଛନ୍ତି, ସେ ବିପଦ କିପରି ଦୂର ହେବ ।

ଦେଶରୁ ଜଳାଭାବ ଦୂର କରିବା, ଫାଶୀଦଣ୍ଡ ଉଠେଇ ଦେବା, ମୌଳିକ ଶିକ୍ଷାର ପ୍ରୟୋଗ ଚଳାଇବା ଆଦି ଉପରେ ଆଲୋଚନା ଓ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ଗୋଟିଏ ଛୋଟିଆ ଘଟଣା ସମ୍ମିଳନୀରେ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ତାହା ହେଉଛି କସ୍ତୁରବା ଓ ମହାଦେବ ଦେଶାଇଙ୍କ ସହଧର୍ମିଣୀଙ୍କର ଜଗନ୍ନାଥ ଦର୍ଶନ । ପୂରୀ ଜଗନ୍ନାଥ ମନ୍ଦିର ଭିତରକୁ ହରିଜନମାନେ ଯାଇ ପାରୁ ନ ଥିବାରୁ ଗାନ୍ଧିଜୀ ଓ ଭାରତର ଆଉ ଅନେକ କର୍ମୀ ସେ ମନ୍ଦିର ଭିତରକୁ ସ୍ୱେଚ୍ଛାରେ ଯାଉ ନ ଥିଲେ । କସ୍ତୁରବା ମଧ୍ୟ ହରିଜନ ଯାଇ ପାରୁ ନ ଥିବା ମନ୍ଦିରମାନଙ୍କୁ ଦେବଦର୍ଶନ ପାଇଁ ଯିବା ଛାଡ଼ି ଦେଉଥିଲେ । ପୁରୀର ପଣ୍ଡାମାନେ କସ୍ତୁରବାଙ୍କୁ ବୁଝାଇ ଦେଲେ ଯେ ଏହି ମନ୍ଦିରରେ ହରିଜନମାନେ ମଧ ଦେବଦର୍ଶନ କରନ୍ତି । ପଣ୍ଡାଙ୍କ କଥାରେ ବିଶ୍ୱାସ କରି ସେ ଦୁର୍ଗାବା ମନ୍ଦିର ଭିତରକୁ ଚାଲିଗଲେ । ଗାନ୍ଧିଜୀ ଏହା ଯେତେବେଳେ ଜାଣିଲେ ତାଙ୍କର ରକ୍ତଚାପ ସଙ୍ଗେ ସଙ୍ଗେ ବଢ଼ିଗଲା । ପଚାଶବର୍ଷ କାଳ ଗାନ୍ଧିଜୀଙ୍କ ସଙ୍ଗେ ଘରକରଣା କରିବା ପରେ ଯେ କସ୍ତୁରବା ଏହି ଭୁଲ କଲେ ସେଥିପାଇଁ ଗାନ୍ଧିଜୀ ସମସ୍ତଙ୍କ ସମକ୍ଷରେ ଦୁଃଖ ପ୍ରକାଶ କଲେ ।

ଓଡ଼ିଶାରେ କଂଗ୍ରେସ ଭିତରେ ଫଟାଫଟି ହୋଇ ସେ ବର୍ଷ ଦୁଇଟି ସମାନ୍ତରାଳ ପ୍ରାଦେଶିକ କଂଗ୍ରେସ କମିଟି ଗଢ଼ା ହୋଇଥିଲା । କଂଗ୍ରେସ ହାଇକମାଣ୍ଡ-ସର୍ଦ୍ଦାର ପଟେଲ, ବାବୁ ରାଜେନ୍ଦ୍ର ପ୍ରସାଦ ଓ ମୌଲାନା ଆଜାଦଙ୍କର ଏକ ବୈଠକ ବେରବୋଇରେ ବସିଲା । ଗୋପବାବୁଙ୍କୁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ବାଛି ଏହି ଜଟିଳ ପରିସ୍ଥିତିର ସମାଧାନ କରାଗଲା ।

ଗାନ୍ଧୀ ସେବା ସଂଘ ପକ୍ଷରୁ ଓଡ଼ିଶାରେ କେତେଗୁଡ଼ିଏ ଖଦୀକେନ୍ଦ୍ର ଚାଲୁଥିଲା । ଜୀବରାମଜୀ କଲ୍ୟାଣଜୀ କୋଠାରୀଙ୍କ ଦ୍ୱାରା ପ୍ରଦତ୍ତ ନାମାଙ୍କିତ ଦାନ ଏକଲକ୍ଷ ଟଙ୍କା ଏହି ଖଦୀ କେନ୍ଦ୍ରମାନଙ୍କରେ ବ୍ୟୟିତ ହେଉଥିଲା । ଜୀବରାମଜୀ ନିଜର ବ୍ୟବସାୟ

ଛାଡ଼ି ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ୧୯୨୩ରେ ଓଡ଼ିଶା ଆସି ଓ ପରେ ଗରଦପୁରରେ ଆଶ୍ରମ ସ୍ଥାପନ କରିଥିଲେ । କ୍ରମେ ସୋରୋ ପୁରପାଇ ଆଶ୍ରମ, ଆଗରପଡ଼ା କର୍ମମନ୍ଦିର, ଆଳି ଖଦୀକେନ୍ଦ୍ର, ଝାଡ଼ପିଞ୍ଚଳ କେନ୍ଦ୍ର, ରାଇପୁର ଖଦୀ କେନ୍ଦ୍ର ଆଦି ଏଗାରଟି କେନ୍ଦ୍ରରେ ଗାନ୍ଧୀ ସେବାସଂଘ ପକ୍ଷରୁ ଗଠନମୂଳକ କାମ ଚାଲିଥିଲା । ଏହି କେନ୍ଦ୍ରର କର୍ମୀମାନଙ୍କୁ ତାଲିମ ଦେବା ପାଇଁ ବରୀରେ ଚାଟୁବାବୁଙ୍କ ସଞ୍ଚାଳନାରେ କର୍ମୀ ତାଲିମ ଶିବିର ମଧ୍ୟ ଗାନ୍ଧୀ ସେବା ସଂଘ ପକ୍ଷରୁ ଚାଲିଥିଲା । ଏ ତାଲିମ ଶିବିରର ବହୁ ଛାତ୍ର ଏବେ ସୁଦ୍ଧା ଗ୍ରାମୋତ୍‌ଥାନ କାମରେ ଲାଗିଛନ୍ତି । ସ୍ୱନାମଧନ୍ୟ ବିଶ୍ୱନାଥ ପଟ୍ଟନାୟକ ତନ୍ମଧ୍ୟରୁ ଜଣେ ।

ପ୍ରଭିନ୍‌ସିଆଲ୍ ଅଟୋନମୀ ବା ପ୍ରାଦେଶିକ ସ୍ୱାୟତ୍ତ ଶାସନ ଜାରି ହେବା ପରେ ଓଡ଼ିଶାରେ ଓ ଭାରତର ଆଉ ଛଅଟି ପ୍ରଦେଶରେ କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଗାନ୍ଧୀ ଏହି କଂଗ୍ରେସୀ ମନ୍ତ୍ରୀମାନଙ୍କୁ ମଦ୍ୟ ନିଷେଧ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ସୁଝେଇବାରୁ ସେମାନେ ଯୁକ୍ତି କଲେ ଯେ ଅବକାରୀ ବିଭାଗର ଆୟରେ ଶିକ୍ଷା ବିଭାଗର ଖରଚ ଭରଣା ହେଉଥିବାରୁ ମଦ୍ୟ ନିଷେଧ ଦ୍ୱାରା ଶାସନ କ୍ଷେତ୍ରରେ ଜଟିଳତା ଦେଖାଦେବ । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଥିବା ବେଳୁ ଶିକ୍ଷାର ପରିବର୍ତ୍ତନ ଘଟାଇବା କଥା ଚିନ୍ତା କରୁଥିଲେ । ଉଚ୍ଚଶିକ୍ଷା କଥା ତେଣିକି ଥାଉ ଗୁଜରାଟୀରେ ପ୍ରଚଳିତ ବର୍ଣ୍ଣ ପରିଚୟ ତାଙ୍କର ପସନ୍ଦ ନ ହେବାରୁ ସେ ନିଜେ 'ବାଳପୋଥୀ' ରଚନା କରି ପିଲାଙ୍କୁ ପଢ଼େଇଥିଲେ । କଂଗ୍ରେସୀ ମନ୍ତ୍ରୀମାନଙ୍କର ଉପଯୁକ୍ତ ଯୁକ୍ତି ଶୁଣି ସେ ହରିଜନ ପତ୍ରିକାରେ ଶିକ୍ଷା ବିଷୟରେ ଆଲୋଚନା ଆରମ୍ଭ କରିଦେଲେ । ଗାନ୍ଧିଜୀଙ୍କର ଶିକ୍ଷା ସମ୍ବନ୍ଧୀୟ ବିଚାରକୁ ଭାରତର ବିଶିଷ୍ଟ ଶିକ୍ଷାବିତ୍‌ଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଶ୍ରୀ ଶ୍ରୀମନ୍ନାରାୟଣ ଅଗ୍ରୱାଲ ଉଆର୍ଦ୍ଧାରେ ଗୋଟିଏ ରାଷ୍ଟ୍ରୀୟ ଶିକ୍ଷା ସମ୍ମିଳନୀ କରିବାର ଯୋଜନା ପ୍ରସ୍ତୁତ କଲେ । ଡ଼କ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ଅଧ୍ୟକ୍ଷତାରେ ଏହି ସମ୍ମିଳନୀ ଅନୁଷ୍ଠିତ ହେଲା । ଗୋପବାବୁ ଏହି ସମ୍ମିଳନୀକୁ ଆହୂତ ହୋଇଥିଲେ । ଡ଼କ୍ଟର ଜାକିର ହୁସେନ, ମେଘନାଦ ସାହା, ଇ. ଡବ୍ଲ୍ୟୁ ଆର୍ଯ୍ୟନାୟକମ୍, କାକା ସାହେବ କାଲେଲକର, ଆଶା ଦେବୀ, ବିନୋବାଜୀ, ସୈୟଦ୍ ଅହମ୍ମଦ୍ ଆଦି ଶିକ୍ଷାବିତ୍‌ମାନେ ଏହି ସମ୍ମିଳନୀରେ ଯୋଗ ଦେଇ ଶିକ୍ଷା ବିଷୟରେ ଗାନ୍ଧିଜୀଙ୍କ ବିଚାର ଶୁଣିଲେ ଏବଂ ରାଷ୍ଟ୍ରୀୟ ଶିକ୍ଷାର ରୂପରେଖ ବିଷୟରେ ବିଚାର ବିନିମୟ କଲେ । ବହି ପାଠ ସହିତ ଉତ୍‌ପାଦକ ଉଦ୍‌ଯୋଗ ଯୋଗ କରାଯିବା ଉଚିତ ବୋଲି କହି ଉତ୍କଳ ଗୌରବ ମଧୁସୂଦନ ଦାସ ହସ୍ତ ଉଦ୍ୟୋଗ ସହିତ

କଂଗ୍ରେସ ଲୋକ ଗଣେଶ ଶଙ୍କର ବିଦ୍ୟାର୍ଥୀଙ୍କ ପରି ଦଙ୍ଗା ଲାଗିଥିବା ସ୍ଥାନରେ ପହଞ୍ଚି ଆବଶ୍ୟକ ପଡ଼ିଲେ ଶହୀଦ ହୋଇଯିବା ଉଚିତ୍ । ଶାନ୍ତି-ସେନାର ଗୁରୁତ୍ୱ ସେ ନେତୃବୃନ୍ଦଙ୍କୁ ବୁଝାଉଥାନ୍ତି ।

ସମ୍ମିଳନୀରେ ଆଉ ଗୋଟିଏ ଆଲୋଚ୍ୟ ବିଷୟ ଥିଲା – ଦେଶରେ ଯେଉଁ ପ୍ରାଦେଶିକତା ଦେଖା ଦେଇଛି, ବିହାରି ବଙ୍ଗାଳୀଙ୍କୁ ବିଦେଶୀ ମଣୁଛନ୍ତି, ସେ ବିପଦ କିପରି ଦୂର ହେବ ।

ଦେଶରୁ ଜଳାଭାବ ଦୂର କରିବା, ଫାଶୀଦଣ୍ଡ ଉଠେଇ ଦେବା, ମୌଳିକ ଶିକ୍ଷାର ପ୍ରୟୋଗ ଚଳାଇବା ଆଦି ଉପରେ ଆଲୋଚନା ଓ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ଗୋଟିଏ ଛୋଟିଆ ଘଟଣା ସମ୍ମିଳନୀରେ ଖୁବ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ତାହା ହେଉଛି କସ୍ତୁରବା ଓ ମହାଦେବ ଦେଶାଇଙ୍କ ସହଧର୍ମିଣୀଙ୍କର ଜଗନ୍ନାଥ ଦର୍ଶନ । ପୁରୀ ଜଗନ୍ନାଥ ମନ୍ଦିର ଭିତରକୁ ହରିଜନମାନେ ଯାଇ ପାରୁ ନ ଥିବାରୁ ଗାନ୍ଧିଜୀ ଓ ଭାରତର ଆଉ ଅନେକ କର୍ମୀ ସେ ମନ୍ଦିର ଭିତରକୁ ସ୍ୱେଚ୍ଛାରେ ଯାଉ ନ ଥିଲେ । କସ୍ତୁରବା ମଧ୍ୟ ହରିଜନ ଯାଇ ପାରୁ ନ ଥିବା ମନ୍ଦିରମାନଙ୍କୁ ଦେବଦର୍ଶନ ପାଇଁ ଯିବା ଛାଡ଼ି ଦେଉଥିଲେ । ପୁରୀର ପଣ୍ଡାମାନେ କସ୍ତୁରବାଙ୍କୁ ବୁଝାଇ ଦେଲେ ଯେ ଏହି ମନ୍ଦିରରେ ହରିଜନମାନେ ମଧ ଦେବଦର୍ଶନ କରନ୍ତି । ପଣ୍ଡାଙ୍କ କଥାରେ ବିଶ୍ୱାସ କରି ସେ ଦୁର୍ଗାବା ମନ୍ଦିର ଭିତରକୁ ଚାଲିଗଲେ । ଗାନ୍ଧିଜୀ ଏହା ଯେତେବେଳେ ଜାଣିଲେ ତାଙ୍କର ରକ୍ତଚାପ ସଙ୍ଗେ ସଙ୍ଗେ ବଢ଼ିଗଲା । ପଚାଶବର୍ଷ କାଳ ଗାନ୍ଧିଜୀଙ୍କ ସଙ୍ଗେ ଘରକରଣା କରିବା ପରେ ଯେ କସ୍ତୁରବା ଏହି ଭୁଲ କଲେ ସେଥିପାଇଁ ଗାନ୍ଧିଜୀ ସମସ୍ତଙ୍କ ସମକ୍ଷରେ ଦୁଃଖ ପ୍ରକାଶ କଲେ ।

ଓଡ଼ିଶାରେ କଂଗ୍ରେସ ଭିତରେ ଫଟାଫଟି ହୋଇ ସେ ବର୍ଷ ଦୁଇଟି ସମାନ୍ତରାଳ ପ୍ରାଦେଶିକ କଂଗ୍ରେସ କମିଟି ଗଢ଼ା ହୋଇଥିଲା । କଂଗ୍ରେସ ହାଇକମାଣ୍ଡ-ସର୍ଦ୍ଦାର ପଟେଲ, ବାବୁ ରାଜେନ୍ଦ୍ର ପ୍ରସାଦ ଓ ମୌଲାନା ଆଜାଦଙ୍କର ଏକ ବୈଠକ ବେରବୋଇରେ ବସିଲା । ଗୋପବାବୁଙ୍କୁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ବାଛି ଏହି ଜଟିଳ ପରିସ୍ଥିତିର ସମାଧାନ କରାଗଲା ।

ଗାନ୍ଧୀ ସେବା ସଂଘ ପକ୍ଷରୁ ଓଡ଼ିଶାରେ କେତେଗୁଡ଼ିଏ ଖଦୀକେନ୍ଦ୍ର ଚାଲୁଥିଲା । ଜୀବରାମଜୀ କଲ୍ୟାଣଜୀ କୋଠାରୀଙ୍କ ଦ୍ୱାରା ପ୍ରଦତ୍ତ ନାମାଙ୍କିତ ଦାନ ଏକଲକ୍ଷ ଟଙ୍କା ଏହି ଖଦୀ କେନ୍ଦ୍ରମାନଙ୍କରେ ବ୍ୟୟିତ ହେଉଥିଲା । ଜୀବରାମଜୀ ନିଜର ବ୍ୟବସାୟ

ଛାଡ଼ି ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ୧୯୨୩ରେ ଓଡ଼ିଶା ଆସି ଓ ପରେ ଗରଦପୁରରେ ଆଶ୍ରମ ସ୍ଥାପନ କରିଥିଲେ । କ୍ରମେ ସୋରୋ ପୁରପାଇ ଆଶ୍ରମ, ଆଗରପଡ଼ା କର୍ମମନ୍ଦିର, ଆଳି ଖଦୀକେନ୍ଦ୍ର, ଝାଡ଼ପିଞ୍ଚାଳ କେନ୍ଦ୍ର, ରାଇପୁର ଖଦୀ କେନ୍ଦ୍ର ଆଦି ଏଗାରଟି କେନ୍ଦ୍ରରେ ଗାନ୍ଧୀ ସେବାସଂଘ ପକ୍ଷରୁ ଗଠନମୂଳକ କାମ ଚାଲିଥିଲା । ଏହି କେନ୍ଦ୍ରର କର୍ମୀମାନଙ୍କୁ ତାଲିମ ଦେବା ପାଇଁ ବରୀରେ ଚାଟୁବାବୁଙ୍କ ସଞ୍ଚାଳନାରେ କର୍ମୀ ତାଲିମ ଶିବିର ମଧ୍ୟ ଗାନ୍ଧୀ ସେବା ସଂଘ ପକ୍ଷରୁ ଚାଲିଥିଲା । ଏ ତାଲିମ ଶିବିରର ବହୁ ଛାତ୍ର ଏବେ ସୁଦ୍ଧା ଗ୍ରାମୋତ୍‌ଥାନ କାମରେ ଲାଗିଛନ୍ତି । ସ୍ୱନାମଧନ୍ୟ ବିଶ୍ୱନାଥ ପଟ୍ଟନାୟକ ତନ୍ମଧ୍ୟରୁ ଜଣେ ।

ପ୍ରଭିନ୍‌ସିଆଲ୍ ଅଟୋନମୀ ବା ପ୍ରାଦେଶିକ ସ୍ୱାୟତ୍ତ ଶାସନ ଜାରି ହେବା ପରେ ଓଡ଼ିଶାରେ ଓ ଭାରତର ଆଉ ଛଅଟି ପ୍ରଦେଶରେ କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଗାନ୍ଧୀ ଏହି କଂଗ୍ରେସୀ ମନ୍ତ୍ରୀମାନଙ୍କୁ ମଦ୍ୟ ନିଷେଧ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ସୁଚେଇବାରୁ ସେମାନେ ଯୁକ୍ତି କଲେ ଯେ ଅବକାରୀ ବିଭାଗର ଆୟରେ ଶିକ୍ଷା ବିଭାଗର ଖରଚ ଭରଣା ହେଉଥିବାରୁ ମଦ୍ୟ ନିଷେଧ ଦ୍ୱାରା ଶାସନ କ୍ଷେତ୍ରରେ ଜଟିଳତା ଦେଖାଦେବ । ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରେ ଥିବା ବେଳୁ ଶିକ୍ଷାର ପରିବର୍ତ୍ତନ ଘଟାଇବା କଥା ଚିନ୍ତା କରୁଥିଲେ । ଉଚ୍ଚଶିକ୍ଷା କଥା ତେଣିକି ଥାଉ ଗୁଜରାତୀରେ ପ୍ରଚଳିତ ବର୍ଣ୍ଣ ପରିଚୟ ତାଙ୍କର ପସନ୍ଦ ନ ହେବାରୁ ସେ ନିଜେ 'ବାଳପୋଥୀ' ରଚନା କରି ପିଲାଙ୍କୁ ପଢ଼େଇଥିଲେ । କଂଗ୍ରେସୀ ମନ୍ତ୍ରୀମାନଙ୍କର ଉପଯୁକ୍ତ ଯୁକ୍ତି ଶୁଣି ସେ ହରିଜନ ପତ୍ରିକାରେ ଶିକ୍ଷା ବିଷୟରେ ଆଲୋଚନା ଆରମ୍ଭ କରିଦେଲେ । ଗାନ୍ଧିଜୀଙ୍କର ଶିକ୍ଷା ସମ୍ବନ୍ଧୀୟ ବିଚାରକୁ ଭାରତର ବିଶିଷ୍ଟ ଶିକ୍ଷାବିତ୍‌ଙ୍କ ଆଗରେ ଉପସ୍ଥାପିତ କରିବା ଉଦ୍ଦେଶ୍ୟରେ ଶ୍ରୀ ଶ୍ରୀମନ୍ନାରାୟଣ ଅଗ୍ରୱାଲ ଉଆର୍ଦ୍ଧାରେ ଗୋଟିଏ ରାଷ୍ଟ୍ରୀୟ ଶିକ୍ଷା ସମ୍ମିଳନୀ କରିବାର ଯୋଜନା ପ୍ରସ୍ତୁତ କଲେ । ଡ଼କ୍ଟର ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ଅଧ୍ୟକ୍ଷତାରେ ଏହି ସମ୍ମିଳନୀ ଅନୁଷ୍ଠିତ ହେଲା । ଗୋପବାବୁ ଏହି ସମ୍ମିଳନୀକୁ ଆହୂତ ହୋଇଥିଲେ । ଡ଼କ୍ଟର ଜାକିର ହୁସେନ, ମେଘନାଦ ସାହା, ଇ. ଠବଲରୁ ଆର୍ଯ୍ୟନାୟକମ୍, କାକା ସାହେବ କାଲେଲକର, ଆଶା ଦେବୀ, ବିନୋବାଜୀ, ସୈୟଜନ୍ ଅହମ୍ମଦ୍ ଆଦି ଶିକ୍ଷାବିତ୍‌ମାନେ ଏହି ସମ୍ମିଳନୀରେ ଯୋଗ ଦେଇ ଶିକ୍ଷା ବିଷୟରେ ଗାନ୍ଧିଜୀଙ୍କ ବିଚାର ଶୁଣିଲେ ଏବଂ ରାଷ୍ଟ୍ରୀୟ ଶିକ୍ଷାର ରୂପରେଖ ବିଷୟରେ ବିଚାର ବିନିମୟ କଲେ । ବହି ପାଠ ସହିତ ଉତ୍‌ପାଦକ ଉଦ୍‌ଯୋଗ ଯୋଗ କରାଯିବା ଉଚିତ ବୋଲି କହି ଉତ୍କଳ ଗୌରବ ମଧୁସୂଦନ ଦାସ ହସ୍ତ ଉଦ୍ୟୋଗ ସହିତ

ମସ୍ତିଷ୍କର ବିକାଶର ସମ୍ବନ୍ଧ ସଂକ୍ରାନ୍ତରେ ଗାନ୍ଧିଜୀଙ୍କୁ ଯାହା କହିଥିଲେ ସେ କଥା ସେ ଏହି ସମ୍ମିଳନୀରେ ଉଲ୍ଲେଖ କରିଥିଲେ । ଶିକ୍ଷାକୁ ସ୍ୱାବଲମ୍ବୀ କରିବା ସିଦ୍ଧାନ୍ତ ମଧ୍ୟ ସେ ସମ୍ମିଳନୀରେ ଉପସ୍ଥାପିତ କଲେ । ବହୁ ଆଲୋଚନା ପରେ ଡ଼କ୍ଟର ଜାକିର ହୁସୈନଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ରାଷ୍ଟ୍ରୀୟ ଶିକ୍ଷା ଯୋଜନା ପ୍ରସ୍ତୁତ କରିବା ପାଇଁ ଗଢ଼ା ହେଲା । ଏହି କମିଟି ଯେଉଁ ରିପୋର୍ଟ ଦେଲେ ତାହା ଜାକିର ହୁସୈନ କମିଟି ନାମରେ ଖ୍ୟାତ ଏବଂ ଏହି କମିଟି ଦ୍ୱାରା ପ୍ରସ୍ତୁତ ହୋଇଥିବା ଶିକ୍ଷା ଯୋଜନାକୁ ପ୍ରଥମେ ଉଆର୍ଦ୍ଧା ଶିକ୍ଷା ପଦ୍ଧତି, ପରେ ମୌଳିକ ଶିକ୍ଷା ପଦ୍ଧତି କୁହାଗଲା । ଗାନ୍ଧିଜୀ ଏହି ପଦ୍ଧତିକୁ 'ନୟୀ ତାଲିମ' କହିଲେ ଏବଂ ଏହାର ସୂତ୍ର ପ୍ରସ୍ତୁତ କଲେ, 'ଜୀବନ ପାଇଁ ଜୀବନ ମାଧ୍ୟମରେ ଜୀବନବ୍ୟାପୀ ଶିକ୍ଷା ।'' କଂଗ୍ରେସୀ ମନ୍ତ୍ରୀମଣ୍ଡଳ ନିଜ ନିଜ ପ୍ରଦେଶରେ ଏହି ଶିକ୍ଷାର ପରଖ ଚଳାଇବାକୁ ସ୍ଥିର କଲେ ଏବଂ ଏହି ଶିକ୍ଷା ବିଷୟରେ ସମ୍ୟକ୍ ଧାରଣା ଜନ୍ମାଇବା ପାଇଁ ନିଜ ନିଜ ପ୍ରଦେଶରୁ ଶିକ୍ଷା ବିଭାଗୀୟ କର୍ମକର୍ତ୍ତାଙ୍କୁ ଉଆର୍ଦ୍ଧା ପଠାଇଲେ । ଓଡ଼ିଶାରୁ ସର୍ବଶ୍ରୀ ମହେଶଚନ୍ଦ୍ର ପ୍ରଧାନ, ଶରତଚନ୍ଦ୍ର ମହାରଣା ଓ ରଘୁନାଥ ମହାନ୍ତି ସରକାରଙ୍କ ପକ୍ଷରୁ ଉଆର୍ଦ୍ଧା ଗଲେ । ଓଡ଼ିଶାରେ ଏହି ପରଖ ଚଳାଇବା ସ୍ଥିର ହେଲାରୁ ସରକାର ଗୋପବାବୁଙ୍କ ଅଧ୍ୟକ୍ଷତାରେ ବୋର୍ଡ଼ ଅଫ୍ ବେସିକ୍ ଏଡୁକେସନ୍ ଗଠନ କରି ପୁଣି ସର୍ବଶ୍ରୀ କିଶୋରଚନ୍ଦ୍ର ପଣ୍ଡା, ଶ୍ରୀନିବାସ ମିଶ୍ର, କାହ୍ନୁଚରଣ ମହାନ୍ତି, ଲାଲବିହାରୀ ପଟ୍ଟନାୟକ, ଗୋବିନ୍ଦଚନ୍ଦ୍ର ଦାସ, ଶରତଚନ୍ଦ୍ର ମହାରଣା ଓ ଡ଼ାକ୍ତର ରାମକୃଷ୍ଣ ପଟ୍ଟନାୟକଙ୍କୁ ଉଆର୍ଦ୍ଧା ତାଲିମ ପାଇଁ ପଠାଇଲେ । ଗାନ୍ଧୀ ସେବା ସଂଘ ପକ୍ଷରୁ ଏହି ପରଖ ପାଇଁ ସେବାଘରୁ ମୋତେ ଉଆର୍ଦ୍ଧା ପଠାହେଲା । ଉଆର୍ଦ୍ଧାରେ ଡ଼କ୍ଟର ଜାକିର ହୁସୈନ୍, ଆଶା ଦେବୀ, ଇ. ଡ଼ବଲ୍ୟୁ ଆର୍ଯ୍ୟନାୟକମ୍, ଯେ.ସି., କୁମାରପ୍ପା, ଜେ.ବି. କୃପାଲିନୀ, ବିନୋବାଜୀ, ବଲ୍ଲଭ ସ୍ୱାମୀ, କାକା କାଲେଲକର, ଶ୍ରୀ କୃଷ୍ଣଦାସ ଜାଜୁ ଆମକୁ ମୌଳିକ ଶିକ୍ଷାର ମୂଳତତ୍ତ୍ୱ ବୁଝାଇଲେ । ଗାନ୍ଧିଜୀ ମଧ୍ୟ ତାଙ୍କ ଆଶା ଆକାଂକ୍ଷା ଶୁଣାଇଲେ । ପଣ୍ଡିତ ନେହେରୁ ଓ ନେତାଜୀ ସୁଭାଷ ବୋଷଙ୍କୁ ମୁଁ ଏହି ସମୟରେ ଭେଟିବା ସୁଯୋଗ ପାଇଲି । ମୁଁ ଉଆର୍ଦ୍ଧା ମହିଳାଶ୍ରମରେ ରହି ବିଦ୍ୟା ମନ୍ଦିର, ଗଗନୱାଡ଼ି, ନାଲବାଡ଼ି, ପଓନାର, ସେବାଗ୍ରାମ ଯାଇ ଭାଷଣ ଶୁଣେ । ବିଦ୍ୟାମନ୍ଦିର ଓ ସେବାଗ୍ରାମରେ ପ୍ରାକ୍ଟିସିଂ ସ୍କୁଲ ମଧ୍ୟ ଆରମ୍ଭ ହୋଇଥାଏ । ଶନିବାର ସକାଳେ ବିନୋବାଜୀଙ୍କ ଭାଷଣ ପରେ ଆଉ କିଛି ପାଠ୍ୟ ନ ଥାଏ । ତେଣୁ ବିନୋବାଜୀଙ୍କ ଭାଷଣ ପରେ ମୁଁ ସେବାଗ୍ରାମକୁ ଯାଇ ଆଶା ଦେବୀଙ୍କ ଘରେ ରହେ । ସୋମବାର ପାହାନ୍ତାକୁ ଫେରିଆସେ ।

ଗାନ୍ଧିଜୀଙ୍କ ସନ୍ନିଧ୍ୟଲାଭ କରିବାର ଏଇଟା ହେଲା ମୋର ତୃତୀୟ ସୁଯୋଗ । ହରିଜନ-ପଦଯାତ୍ରା ବେଳେ ଆମେ ତାଙ୍କର ନିକଟ ସମ୍ପର୍କକୁ ଆସିଥିଲୁ । ଆମ ସଙ୍ଗେ କଥାବାର୍ତ୍ତା କରି ଆମର ଶକ୍ତି ସାମର୍ଥ୍ୟକୁ ଜଳି ଆମର ବିକାଶ ଘଟାଇବା ପ୍ରତି ସେ ଦୃଷ୍ଟି ଦେଇଥିଲେ । ପୁଣି ବେରବୋଇ ସମ୍ମିଳନୀ ବେଳେ ସାତଦିନ ପାଇଁ ତାଙ୍କର ସାନ୍ନିଧ୍ୟ ମିଳିଥିଲା । ସମ୍ମିଳନୀର ଝଂଝଟିଆ କାମ ଭିତରେ ଥାଇ ସୁଦ୍ଧା ଗାନ୍ଧିଜୀଙ୍କ ଶୋଇବା ବେଳ ହେଲେ ମୁଁ ତାଙ୍କ ପାଖକୁ ଯାଇ ତାଙ୍କ ଗୋଡ଼ ଘଷି ଦେଉ ଦେଉ ସେ ମହାଦେବ ଦେସାଇ, ପ୍ୟାରେଲାଲଜୀ ଆଦିଙ୍କ ସଙ୍ଗେ ଯାହା ଆଲୋଚନା କରୁଥିଲେ ତାହା ଶୁଣୁଥିଲି । ଏଠାରେ ଗୋଟିଏ ଘଟଣା ଉଲ୍ଲେଖ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ଯେ ୧୯୩୪ରେ ଗାନ୍ଧିଜୀ ଓଡ଼ିଶାରେ ପଦଯାତ୍ରା କଲାବେଳେ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ତାଙ୍କ ପିଲାକୁ କୌଣସି ଅନୁଷ୍ଠାନକୁ ପାଠ ପଢ଼ିବା ପାଇଁ ପଠାଇବା ସଂକ୍ରାନ୍ତରେ ପଢ଼ିହାରୀ ମହାଶୟ ଓ ରମାଦେବୀ ଗାନ୍ଧିଜୀଙ୍କ ସହିତ କଥାବାର୍ତ୍ତା କରିଥିଲେ । ସେତେବେଳେ ଗାନ୍ଧିଜୀ ଯାହା କହିଥିଲେ, ତା'ର ସାରମର୍ମ ହେଉଛି ବାପ ମାଆଙ୍କ ପାଖରେ ପିଲା ରହିବା ଭଲ । ତଦ୍ୱାରା ପିଲାକୁ ଶିକ୍ଷା ଦେବା ଦୃଷ୍ଟିରୁ ବାପ ମାଆ ସଂଯତ ହୋଇ ଆଚରଣ କରନ୍ତି ଏବଂ ସନ୍ତାନ ମଧ୍ୟ ବାପ ମାଆଙ୍କଠାରୁ ଯେଉଁ ସଂସ୍କାର ପାଏ ତାହା ଅନ୍ୟତ୍ର ମିଳିବା ସହଜ ନୁହେଁ । ବୋଧହୁଏ ଏହି ବିଚାର ଦୃଷ୍ଟିରୁ ମୁଁ ବାପମାଆଙ୍କୁ ଛାଡ଼ି ଅନ୍ୟ କେଉଁଆଡ଼େ ଶିକ୍ଷା ପାଇବାକୁ ଯାଇ ନ ଥିଲି । ବେରବୋଇରେ ଗାନ୍ଧିଜୀ ଗୋପବାବୁଙ୍କୁ କହିଲେ ଯେ ତୁମେ ଏଣିକି ଅନ୍ନପୂର୍ଣ୍ଣାକୁ ତୁମ ସାଙ୍ଗରେ ଉଆର୍ଦ୍ଧା ଆଣିବ । ସେଥିପାଇଁ ବେରବୋଇ ସମ୍ମିଳନୀ ପରେ ମୁଁ ପ୍ରଥମେ ଉଆର୍ଦ୍ଧା ଗଲି ଏବଂ ଆଶା ଦେବୀଙ୍କ ସୁପାରିଶରେ ପୁଣି ୧୯୩୮ ଅକ୍ଟୋବର ମାସରେ ମୌଳିକ ଶିକ୍ଷା କାମରେ ଉଆର୍ଦ୍ଧା ଗଲି । ପ୍ରଥମ ଯେଉଁଦିନ ଉଆର୍ଦ୍ଧାରୁ ସେବାଗ୍ରାମ ଗଲି, କସ୍ତୁରବା ପଚାରିଲେ କାହା ସାଙ୍ଗରେ ଆସିଛ ? ମୁଁ କହିଲି ''ଏକା ।'' ଗାନ୍ଧିଜୀ ଖୁସି ହୋଇ କହିଲେ - ମୁଁ ଚାହେଁ ଯେ ଝିଅମାନେ ଏହିପରି ଏକା ଯିବା ଆସିବା କରିବାର ସାହସ ଅର୍ଜନ କରନ୍ତୁ । ମୋତେ ଆଉ ପାଏ କିଏ । ମୁଁ ପ୍ରତି ଶନିବାର ଓ ସୋମବାରରେ ଏକାଟିଆ ଉଆର୍ଦ୍ଧା - ସେବାଗ୍ରାମ ଯିବା ଆସିବା କଲି । ସେତେବେଳେ ସେବାଗ୍ରାମକୁ ପକ୍‌କା ସଡ଼କ ହୋଇ ନ ଥିଲା । ଠାଏ ଠାଏ ଅନ୍ୟ ଗାଁକୁ ଯିବାକୁ ପାଦଚଲା ବାଟ ଭାଙ୍ଗି ଯାଇଥିବାରୁ ବାଟବଣା ହେବାର ସମ୍ଭାବନା ଥିଲା ଏବଂ ଅସାମାଜିକ ଲୋକେ ଏହାର ସୁଯୋଗ ନେଉଥିଲେ । ମୋତେ ଏତେ କଥା ଜଣା ନ ଥିଲା । ଏକା ଯିବା ଆସିବା କରିବାଟା ଗାନ୍ଧିଜୀ ପସନ୍ଦ କରନ୍ତି-

ଏହି କଥା ଭାବି ମୁଁ ଏକା ଚାଲିଥାଏ । ମୁଁ ସେବାଗ୍ରାମକୁ ଏକା ଯାଉଥିବା ବେଳେ ଉଆର୍ଦ୍ଧାରେ ମୋର ପରିଚିତ ଶିକ୍ଷା ବିଭାଗୀୟ କର୍ମକର୍ତ୍ତା ବା ବିଶିଷ୍ଟ ଲୋକେ ତାଙ୍କ ମୋଟର କାର୍‌ରେ ଯାଉ ଯାଉ ମୁଁ ଏକା ଯାଉଥିବାର ଦେଖି ବିସ୍ମୟ ପ୍ରକାଶ କରନ୍ତି । ଏପରି ବିସ୍ମିତ ହେବାର କାରଣ ମୁଁ ବୁଝି ପାରୁ ନ ଥାଏ । ସେମାନେ ଜୋର୍ କରି ସେମାନଙ୍କ କାର୍‌ରେ ମୋତେ ସେବାଗ୍ରାମ ନେଇ ଯାଆନ୍ତି ଏବଂ ଆଶା ଦେବୀଙ୍କ ପାଖରେ ମୁଁ ଏକା ଆସୁଥିବା ବ୍ୟାପାର ଘେନି ଅଭିଯୋଗ କରନ୍ତି । ଆଶାଦେବୀ ହସି ହସି ଗୋଟିଏ ଉତ୍ତର ଦିଅନ୍ତି – ‘‘ଅନ୍ନପୂର୍ଣ୍ଣା ଗୋଟିଏ ବ୍ୟତିକ୍ରମ ।’’

ଥରେ ସୋମ ପାହାନ୍ତାରେ ସେବାଗ୍ରାମରୁ ଉଆର୍ଦ୍ଧା ଆସିବା ବେଳେ ମୁଁ ବାଟବଣା ହୋଇ ବାଜରା ବିଲରେ ଛିଡ଼ାହୋଇ ବାଟଠାବ କରିବାକୁ ଚାରିଆଡ଼କୁ ଚାହୁଁଛି ଏହି ସମୟରେ ସୁଶୀଲା ନାୟର ଓ ଶାରଦା ବେନ୍‌ଙ୍କ କାନ୍ଧରେ ହାତ ପକାଇ ଗାନ୍ଧିଜୀ ସେଠାରେ ପହଞ୍ଚିଗଲେ । ସେଇଟା ତାଙ୍କର ପ୍ରାତଃଭ୍ରମଣ ସମୟ । ସୋମବାର ଗାନ୍ଧିଜୀଙ୍କ ମୌନଦିବସ । ମୋତେ ଆଖିଠାରରେ ପଚାରିଲେ – ବ୍ୟାପାରଟା କ’ଣ ? ମୁଁ କହିଲି ଉଆର୍ଦ୍ଧା ଯାଉ ଯାଉ ବାଟବଣା ହୋଇ ଯାଇଛି । ଗାନ୍ଧିଜୀ ଆଗ ବୁହେ ହସିଲେ । ତା’ପରେ ମୋ କାନଧରି ମୋତେ ଟାଣି ଟାଣି ନେଇ ବାଟରେ ପହଞ୍ଚାଇ ଦେଇ ଜୋରରେ ଆଗକୁ ପେଲିଦେଲେ । ଭାବୁଥାଏ ଆଃ, ଚିର ଜୀବନ ଯଦି ଏଇ କାନଧରି ବାଟ ଦେଖାଇ ଦେବା ସୁଯୋଗଟା ପାଆନ୍ତି । ପୁଣି ଭାବିଲି ଯେତିକି ପାଇଲି ସେତିକି ପାଇବାକୁ ମୁଁ ଭାଜନ କି ?

ଗାନ୍ଧିଜୀ ସେବାଗ୍ରାମ ଆଶ୍ରମରେ ଥିବାବେଳେ ମୁଁ ଆଶ୍ରମକୁ ଗଲେ ତାଙ୍କ କୁଡ଼ିଆ ପିଣ୍ଡାରେ ଚୁପ୍‌ଚାପ୍ ବସିରହି ଅନ୍ୟମାନଙ୍କ ସାଙ୍ଗରେ ତାଙ୍କର କଥାବାର୍ତ୍ତା ଶୁଣିବାକୁ ସୁଖ ପାଏ । ସେ ସାନ୍ଧ୍ୟଭ୍ରମଣରେ ଗଲାବେଳେ ତାଙ୍କ ପଛେ ପଛେ ଚାଲେ । ସର୍ଦ୍ଦାର ପଟେଲ, ବାବୁ ରାଜେନ୍ଦ୍ରପ୍ରସାଦ ଆଦିଙ୍କ ସଙ୍ଗେ ସେ ଯାହା କଥାବାର୍ତ୍ତା ହୁଅନ୍ତି, ତାକୁ ଶୁଣିବାକୁ ଚେଷ୍ଟା କରେ । ସେଠି ତ ଗୋପନୀୟ କିଛି ନ ଥାଏ ! ଉଆର୍ଦ୍ଧାରେ ଶୀତ ପ୍ରବଳ । ଆଶ୍ରମରେ ଭୋର ଚାରିଟାରେ ପ୍ରାର୍ଥନା ହୁଏ । ପ୍ରାର୍ଥନା ଘଣ୍ଟା ବାଜିଲେ ଆଶାଦେବୀଙ୍କ ଘରୁ ଆଶ୍ରମକୁ ଯାଇ ପ୍ରାର୍ଥନା ସରିଲା ପରେ ଗାନ୍ଧିଜୀଙ୍କ ଗୋଡ଼ ଘଷିଦିଏ । ‘ଓଡ଼ିଆ ମାଲିଶ’ ତାଙ୍କର ଭାରି ପସନ୍ଦ । ସେ ସମୟରେ ମୋର ଦେହରେ ପକାଇବାକୁ ଗରମ ଚାଦର ବା ଗରମ କପଡ଼ାର କୁର୍ତ୍ତା ନ ଥିଲା । କେବଳ ସେମିଜ୍ ବ୍ଲାଉଜ ଓ ଶାଢ଼ୀ ପିନ୍ଧି ମୁଁ ସେଠି ଚାଲିଯାଉଥିଲି । ଗାନ୍ଧିଜୀ ମୋତେ ସେପରି ଦେଖିବା ମାତ୍ରେ ଲୀଳାବତୀ

ବହନ୍‌ଙ୍କ ସାଲ୍ ଆଣି ଘୋଡ଼େଇ ଦିଅନ୍ତି । ସେ ମୁହଁ ତେଣିକି ବୁଲାଇବା ମାତ୍ରେ ମୁଁ ସାଲଟି ଥୋଇଦେଇ ଆସେ ।

ଦିନେ ସେ ତାଙ୍କ କୁଡ଼ିଆ ପିଣ୍ଡାରେ ଖାଉଥାନ୍ତି, ମୁଁ ଚୁପ୍‌ଚାପ୍ ବସିଥାଏ । ସେ ହଠାତ୍ କହିଲେ, ''ତୁ ତ ଚୁପ୍‌ଚାପ୍ ବସୁ । କାରଣ ତୁ ମୋ ଅବସ୍ଥାଟା ବୁଝୁଛୁ । ମୁଁ ଏତେ କାମରେ ବ୍ୟସ୍ତ ଯେ କାହା ଆଡ଼କୁ ମୁଣ୍ଡ ଟେକି ଚାହିଁବାକୁ ମଧ୍ୟ ମୋତେ କଷ୍ଟ । କିନ୍ତୁ ସମସ୍ତେ ଏତକ ବୁଝନ୍ତି ନାହିଁ ।'' ମୋପରି ନଗଣ୍ୟ ମଣିଷକୁ ନିକଟତର ଅନ୍ତରତର କରିବାର କି ଅଦ୍‌ଭୁତ ପ୍ରକ୍ରିୟା ! ଭାରତର ଲକ୍ଷ ଲକ୍ଷ ଲୋକଙ୍କୁ ସେ କେତେପ୍ରକାର ସ୍ନେହ ଡ଼ୋରିରେ ବାନ୍ଧି ରଖିଥିଲେ !

ମଦାଲସାଙ୍କର ପ୍ରଥମ ସନ୍ତାନ ନଷ୍ଟ ହୋଇଗଲା । ଡ଼ାକ୍ତର କହିଲେ ଜୀବିତ ସନ୍ତାନ ଲାଭ କରିବା ତାଙ୍କ ପକ୍ଷରେ ଆଉ ସମ୍ଭବ ନୁହେଁ । ଗାନ୍ଧିଜୀ ଏହା ଶୁଣିଥାନ୍ତି । ମଦାଲସାଙ୍କର ପୁଣି ସନ୍ତାନ ସମ୍ଭାବନା ହେବାମାତ୍ରେ ଗାନ୍ଧିଜୀ ତାଙ୍କୁ ସେବାଗ୍ରାମ ଆଶ୍ରମକୁ ନେଇଗଲେ । ତୃତୀୟ ମାସ ପର୍ଯ୍ୟନ୍ତ ଆଉନ୍‌ସ ଗ୍ଲାସରେ ମାପ କରି କେବଳ କମଳାରସ ଓ ମହୁ ଖାଇବାକୁ ଦେଲେ । ଲୋକେ ପଚାରିବାରୁ ଜବାବ ମିଳିଲା ତାର ସମସ୍ତ ପ୍ରାଣଶକ୍ତି ସନ୍ତାନ ପୋଷଣ କରିବାରେ ନିୟୋଜିତ ହେବା ଦରକାର । ସାଧାରଣ ଖାଦ୍ୟ ଖାଇଲେ ସେ ଖାଦ୍ୟକୁ ହଜମ କରିବାରେ ତାର ପ୍ରାଣଶକ୍ତି ଖରଚ ହେବ । ମଦାଳସା ନଖାଇ ନଖାଇ ଅତି ଦୁର୍ବଳ ହୋଇଗଲେ । ଗାନ୍ଧିଜୀ ନିଜେ ତାଙ୍କୁ ଟେକିଆଣି ଖରାରେ ଶୁଆନ୍ତି, ନିଜେ ତେଲ ମାଲିଶ କରି ଦିଅନ୍ତି । ଗର୍ଭପାତର ସମୟ ଉତ୍ତୀର୍ଣ୍ଣ ହୋଇ ଯିବାରୁ ଚତୁର୍ଥ ମାସରେ ଗାନ୍ଧିଜୀ ମଦାଳସାଙ୍କୁ ଗାଈଦୁଧରେ ଜଡ଼ାତେଲ ମିଶାଇ ପିଇବାକୁ ଦେଲେ । ଦୁଧରଙ୍କୁଣୀ ମଦାଳସାଙ୍କୁ ସେଇ ଦୁଧ ଅମୃତପରି ଲାଗିଲା । ସାତମାସ ପୂରି ଗଲାରୁ ମଦାଳସା ସାଧାରଣ ଖାଦ୍ୟ ଖାଇଲେ । ଆଠମାସ ପୂରିବା ଯାଏ ଆଶ୍ରମରେ ରହି ନଅମାସ ଚାଲିଲାରୁ ମଦାଳସା ଘରକୁ ଯାଇ ଯଥା ସମୟରେ ସନ୍ତାନ ପ୍ରସବ କଲେ । ବ୍ରିଟୀଶ ସରକାର ସଙ୍ଗେ ତାଳ ପକେଇବା ଲୋକ ପ୍ରସୂତି ପରିଚର୍ଯ୍ୟାରେ ଏପରି ମନପ୍ରାଣ ଢ଼ାଳେ ବୋଲି କେହି ପରତେ ଯିବ ?

ବିନୋବାଜୀଙ୍କ ସାନଭାଇ ବାଳକୃଷ୍ଣଙ୍କୁ ଗାନ୍ଧିଜୀ ଶରଧାରେ ଡ଼ାକନ୍ତି ବାଲ୍‌କୋବା । ଚମତ୍କାର ଭଜନ ବୋଲନ୍ତି, ସେତାର ବଜାନ୍ତି, ସଂସ୍କୃତ ଉଚ୍ଚାରଣର ପଟ୍ଟାନ୍ତର ନାହିଁ । ତାଙ୍କୁ ଯକ୍ଷ୍ମାରୋଗ ହେଲା । ଏବଭଳି ସେତେବେଳେ ଯକ୍ଷ୍ମାର ଚିକିତ୍ସା ନ ଥିଲା । ଡ଼ିଆଁ ରୋଗ ବୋଲି ଯକ୍ଷ୍ମା ରୋଗୀକୁ ସମସ୍ତଙ୍କ ସାଙ୍ଗରେ ରଖାଯାଉ ନ ଥିଲା । ତାଙ୍କ ପାଇଁ

ଆଶ୍ରମ ଠାରୁ ଦୂରରେ କୁଡ଼ିଆ ତିଆରି ହେଲା । ଆଶ୍ରମରୁ ଖାଦ୍ୟ ତିଆରି ହୋଇଯାଏ । ନିତି ସନ୍ଧ୍ୟାରେ ଗାନ୍ଧିଜୀ ତାଙ୍କୁ ଦେଖିବାକୁ ଯାଆନ୍ତି । ପ୍ରାକୃତିକ ଚିକିତ୍ସା ବତାନ୍ତି । ସେଥିରେ ବାଲକୋବାଜୀ ସଂପୂର୍ଣ୍ଣ ସୁସ୍ଥ ହେଲେ । ଉରଲୀ କାଞ୍ଚନରେ ପ୍ରାକୃତିକ ଚିକିତ୍ସାଳୟ ସ୍ଥାପନ କଲେ ।

ଈଶିତ୍ୱ ବଶିତ୍ୱ ଆଦି ଯେଉଁ ସବୁ ଐଶ୍ୱର୍ଯ୍ୟ କଥା ଶୁଣାଯାଏ, ତାହାର ସତ୍ୟତା ସଂବନ୍ଧରେ କାହାରି ସନ୍ଦେହ ରହିବ ନାହିଁ ଯଦି କେହି ଗାନ୍ଧିଜୀଙ୍କୁ ଭଲଭାବରେ ପର୍ଯ୍ୟବେକ୍ଷଣ କରିବ । ହଜାର କାହିଁକି ଲକ୍ଷ ଲକ୍ଷ କହିଲେ ଅତ୍ୟୁକ୍ତି ହେବନାହିଁ, ଏତେ ଲୋକଙ୍କୁ ମନେ ରଖିବା, ସେମାନଙ୍କ ମଧ୍ୟରୁ କାହାକୁ କେଉଁ କାମରେ ଲଗାଇଲେ ତାର ଶକ୍ତିର ବିକାଶ ଓ ଦେଶର କଲ୍ୟାଣ ହେବ ତାହା କଳିବା, କିଏ କଣ ଭଲପାଏ ତାହା ମନେରଖି ଯୋଗାଇବା କଣ ସାଧାରଣ ମଣିଷର କର୍ମ !

ଥରେ ଉଆର୍ଦ୍ଧାରେ ଜମୁନାଲାଲ ବାଜାଜଙ୍କ କୋଠିରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକରେ ଯୋଗ ଦେବାକୁ ସବୁ ସଦସ୍ୟ ଠୁଳ ହୋଇଥାନ୍ତି । ନିତ୍ୟାନନ୍ଦ କାନୁନଗୋ ମଧ୍ୟ କୌଣସି କାର୍ଯ୍ୟୋପଲକ୍ଷ୍ୟେ ସେଠାରେ ଥାଆନ୍ତି । ଆଖୁରସକଢ଼ା କଳ ନେଇ ଆଖୁରସ ବିକାଳୀ ଆସିବାରୁ ନେତାମାନେ ତାଙ୍କୁ ଘେରିଗଲେ । ଆଖୁବାଲା ରସ କାଢ଼ି ଗିଲାସ ବଢ଼ାଇବାମାତ୍ରେ ନିତ୍ୟାନନ୍ଦ ବାବୁ ସେ ଗିଲାସ ଧରି ତାଙ୍କର ପିଇଦେଲେ । ପୁଣି ରସ ଦେଲାରୁ ସେ ପୁଣି ପିଇଗଲେ । ଏହିପରି ବାରମ୍ବାର ସେ ପିଉଥାନ୍ତି, ସମସ୍ତେ ହୋ ହୋ ହୋଇ ହସୁଥାନ୍ତି । ଗାନ୍ଧିଜୀ ବୈଠକରେ ଯୋଗ ଦେବାକୁ ସେବାଗ୍ରାମରୁ ଆସିଲେ । ହସଶୁଣି ହସର କାରଣ ପଚାରିଲେ ନିତ୍ୟାନନ୍ଦ ସବୁ ଆଖୁରସ ପିଇଯାଉଛନ୍ତି ଶୁଣି ''ଆଚ୍ଛା ନିତ୍ୟାନନ୍ଦର ଆଖୁରସ ପସନ୍ଦ'' କହି ବୈଠକକୁ ଚାଲିଗଲେ । ଏ ଘଟଣା ପ୍ରାୟ ବର୍ଷେ ପରେ ନିତ୍ୟାନନ୍ଦ ବାବୁ ଗାନ୍ଧିଜୀଙ୍କୁ ଭେଟିବାକୁ ବାରଦୋଲୀ ଯାତ୍ରା କଲେ । ବାଟରେ ଲୋଡ଼ରେ ଗାଧୁଆପାଧୁଆ ସାରିବାକୁ ଅଟକିଲେ । ଗାଧୋଇସାରି ଗାଧୁଆଘରୁ ବାହାରି ଦେଖିଲେ ଜଣେ ମହିଳା ଆଖୁରସ ଗିଲାସରେ ଧରି ଛିଡ଼ା ହୋଇଛନ୍ତି । ନିତ୍ୟାନନ୍ଦ ବାବୁ ପ୍ରଶ୍ନବାଚକ ଦୃଷ୍ଟିରେ ଚାହିଁବାରୁ ଜବାବ ମିଳିଲା ବାପୁ ଖବର ପଠାଇଛନ୍ତି – ନିତ୍ୟାନନ୍ଦ ଭାଇ ଆଖୁରସ ପସନ୍ଦ କରନ୍ତି । ତାଙ୍କୁ ଆଖୁରସ ପିଆଇବ । ଏହିପରି ଅଗଣିତ ଲୋକଙ୍କୁ ସେ ସ୍ନେହସୁଧା ଦାନ କରୁଥିଲେ ।

ମୁଁ ଉଆର୍ଦ୍ଧାରେ ଥିବାବେଳେ ଗାନ୍ଧିଜୀ ମଗନ ସଂଗ୍ରହାଳୟ ଉଦ୍‌ଘାଟନ କଲେ । ସେହି ଉଦ୍‌ଘାଟନ ଭାଷଣରେ ଗାନ୍ଧିଜୀ କହିଲେ ଏ ମଗନ ସଂଗ୍ରହାଳୟ ଖଦୀ ଓ

ଗ୍ରାମୋଦ୍ୟୋଗ ପାଇଁ ଉଦ୍ଦିଷ୍ଟ । ମାତ୍ର ଏହାର ଯେଉଁ ବିଶେଷତ୍ୱ ରହିଛି, ତାହା ଉପଲବ୍ଧି କରିବା ଦରକାର । ମୋଗଲ ରାଜତ୍ୱ ସମୟରେ ଭାରତରେ ଖଦୀ ଥିଲା । ଇଷ୍ଟ-ଇଣ୍ଡିଆ କୋମ୍ପାନୀ ଅମଳରେ ମଧ୍ୟ ଖଦୀ ଓ ସୂତାକଟା ଥିଲା । ତଥାପି ଭାରତ ଗୋଲାମ ହେଲା । ମୁଁ ଯେଉଁ ଖଦୀ ଓ ଗ୍ରାମୋଦ୍ୟଗ ଚାହୁଁଛି ତାହାଦ୍ୱାରା ଏ ଦେଶ ଅହିଂସା ଉପାୟରେ ସ୍ୱାଧୀନ ହେବ ଏବଂ ସେହି ସ୍ୱାଧୀନତା ମଧ୍ୟ ଅହିଂସା ଉପାୟରେ ରକ୍ଷା କରିବ । ଖଦୀ ପଛରେ ରହିଥିବା ବିଚାରକୁ ବୁଝିବା ଦରକାର ।

ଉଆର୍ଦ୍ଧାରେ ରହିବା ଫଳରେ ମୌଳିକ ଶିକ୍ଷା, ମହିଳାଶ୍ରମର ବ୍ୟବସ୍ଥା, କାଲୱାଡ଼ିର ଖଦୀକାମ, ଖଦୀ ଯାତ୍ରା, ସେହି ସମୟରେ କଂଗ୍ରେସୀ ମହଲରେ ଚାଲିଥିବା ରାଜନୈତିକ ଚିନ୍ତାଧାରା, ଗ୍ରାମ ସଂଗଠନ ଆଦି ବାବଦରେ ବହୁ ମୂଲ୍ୟବାନ ଅଭିଜ୍ଞତା ହାସଲ ହେଲା । ଆଶାଦେବୀଙ୍କ ପରି ମହିୟସୀ ମହିଳା ଓ ବିନୋବାଜୀ, ଆର୍ଯ୍ୟନାୟକମ୍‌ଜୀ, କାକାସାହେବ କାଲେଲକରଙ୍କ ପରି ସତ୍‌ପୁରୁଷଙ୍କ ସାନ୍ନିଧ୍ୟ ଲାଭ କରିବା ସେମାନଙ୍କର ଜୀବନ ସହିତ ପରିଚିତ ହେବା ଫଳରେ ନୂଆ ପଥରେ ପଥିକ ଭାବରେ ମୋତେ ଯେଉଁ ପାଥେୟ ମିଳିଲା, ତାହା ଅଦ୍ୟାପି ବଳ ଦେଉଛି, ସାନ୍ତ୍ୱନା ଦେଉଛି । ଉଆର୍ଦ୍ଧାରୁ ହିନ୍ଦୁସ୍ତାନୀ ତାଲିମି ସଂଘର ସ୍ୱେଚ୍ଛାସେବିକା ଭାବରେ ମୁଁ ତ୍ରିପୁରା କଂଗ୍ରେସ ଅଧିବେଶନରେ ଯୋଗ ଦେଲି ଓ ପ୍ରଦର୍ଶନୀରେ ତାଲିମି ସଂଘର ଷ୍ଟଲ୍‌ରେ କାମ କଲି । ତ୍ରିପୁରାର କଂଗ୍ରେସ ଅଧିବେଶନ, ସୁଭାଷବାବୁଙ୍କ ଅସୁସ୍ଥତା, ପନ୍ଥ ରେଜଲ୍ୟୁସନ୍ ଆଦି ଯେଉଁ ଘଟଣାଗୁଡ଼ିକ ସ୍ୱାଧୀନତା ଆନ୍ଦୋଳନରେ ଗୁରୁତ୍ୱପୂର୍ଣ୍ଣ ବୋଲାଉଛି, ସେ ସବୁ ପ୍ରତ୍ୟକ୍ଷ ଦେଖିବା ଓ ଶୁଣିବା କେତେ ଆନନ୍ଦଦାୟକ ଓ ରୋମାଞ୍ଚକର ତାହା ବର୍ଣ୍ଣି ହେବ ନାହିଁ ।

ତ୍ରିପୁରା କଂଗ୍ରେସ ଅଧିବେଶନରୁ ଫେରି ପୁଣି ଗାନ୍ଧୀ ସେବାସଂଘ ସମ୍ମିଳନୀରେ ଯୋଗ ଦେବାକୁ ମୁଁ ବିହାର ଗଲି । ସେଠାରେ ସଂଘର ସଦସ୍ୟମାନେ ଯେପରି ଆପଣାର ଲୋକପରି ବ୍ୟବହାର କଲେ ତାହା ପାଶୋରି ହେବନାହିଁ । ବରୀ ଅଞ୍ଚଳର ପ୍ରୟୋଗ କାର୍ଯ୍ୟ ସହିତ ମୋର ଉପଯୁକ୍ତ ଅଭିଜ୍ଞତାଗୁଡ଼ିକର କୌଣସି ପ୍ରତ୍ୟକ୍ଷ ସଂପର୍କ ନାହିଁ । ମାତ୍ର ଗାଁରେ ରହି ଗଠନମୂଳକ କାମ କରୁଥିବା ଜଣେ ସାଧାରଣ ସ୍ତରର କର୍ମୀ ନିଖିଳ ଭାରତୀୟ ସ୍ତରର କର୍ମୀ ଓ ନେତାଙ୍କ ଠାରୁ କିପରି ସ୍ନେହ ଶ୍ରଦ୍ଧା ଗାନ୍ଧୀ ଅମଳରେ ପାଉଥିଲେ ଏବଂ ନିଜକୁ ଗୋଟାଏ ବିରାଟ ସଂଗଠନର ଅଙ୍ଗ ମଣି ଆତ୍ମବିଶ୍ୱାସ ଲାଭ କରୁଥିଲେ ସେତିକି ସୂଚେଇବା ପାଇଁ ଏ ଘଟଣାଗୁଡ଼ିକ ଉଲ୍ଲେଖ କରିବାକୁ ମନ ଡ଼ାକିଲା ।

ଉଆର୍ଦ୍ଧା-ତ୍ରିପୁରା-ବିହାରରୁ ଓଡ଼ିଶା ଫେରିବା ବେଳକୁ ରାମଚନ୍ଦ୍ରପୁରରେ ମୌଳିକ ଶିକ୍ଷାର ପରଖ ଚାଲିବା ସ୍ଥିର ହୋଇ ସାରିଲାଣି । ଗୁଣନିଧିବାବୁ ବ୍ରାହ୍ମଣୀ କୂଳରେ

ଉଇହୁଙ୍କା ଓ ଗୋଖରସାପ ସମନ୍ୱିତ ପଣସ ମଠରେ ପଲାମାରି ରହି ମୁଣ୍ଡରେ ଠେକା ଭିଡ଼ି ଘର ତିଆରି କାମରେ ଲାଗିଗଲେଣି । ଟ୍ରେନିଂ ସ୍କୁଲର ପରିଚାଳକବୃନ୍ଦ ଓ ଗୁରୁଛାତ୍ରମାନେ ନିର୍ଦ୍ଦିଷ୍ଟ ସମୟରେ ଆସିଯିବାରୁ ଟ୍ରେନିଂ ସ୍କୁଲ ଓ ପ୍ରାକ୍‌ଟିସିଂ ସ୍କୁଲ କାମ ଆରମ୍ଭ ହେଲା । ହୋତା ମହାଶୟ ଉଦ୍‌ଘାଟନ ଉତ୍ସବରେ ଭାଷଣ ଦେଇ କହିଲେ - "ଏହା ହେଉଛି କୋଡ଼ିକାଙ୍କ ବିଶ୍ୱବିଦ୍ୟାଳୟ" । ପରଖ କାମ କେତେମାସ ଚାଲିବା ପରେ ଶିକ୍ଷା ବିଭାଗ ଡ଼ିରେକ୍‌ଟର ତ୍ରିପାଠୀ ସାହେବ, ଲିଙ୍ଗରାଜବାବୁ ମିଶ୍ର ଓ ଆର୍ଯ୍ୟ ନାୟକମ୍‌ଜୀ ରାମଚନ୍ଦ୍ରପୁର ଆସିଲେ ବୋର୍ଡ଼ ଅଫ୍ ବେସିକ୍ ଏଡୁକେସନର ବୈଠକରେ ଯୋଗ ଦେବା ସଙ୍ଗେ ସଙ୍ଗେ ମୌଳିକ ଶିକ୍ଷାର ସରଜମୀନ ପରିଚୟ ହାସଲ କରିବା ପାଇଁ ପ୍ରଥମଦଳ ଗୁରୁଛାତ୍ରଙ୍କ ତାଲିମୀ ଶେଷ ହେବାମାତ୍ରେ ଅରଂଗାବାଜ, ରଲେଂ, ବାଲବିଲ, ଅନ୍ୟାସପୁର, ହାଟସାହି ମନ୍ଧାରୀ, ବେଗରାପୁର, ରାମପୁର, ଚନ୍ଦନପୁର, ପଟଣା, ଶମ୍ଭୁ, ରାମଚନ୍ଦ୍ରପୁର, ହଳଦିବସନ୍ତ ଓ ଧାରପୁରର ମୌଳିକ ବିଦ୍ୟାଳୟରେ କାମ ଆରମ୍ଭ ହେଲା । ପୂର୍ବରୁ କହିଛି ବ୍ରାହ୍ମଣୀ ଖରସୁଆ ମଧ୍ୟବର୍ତ୍ତୀ ବରୀ ଅଞ୍ଚଳରେ ଗୋଟିଏ ମାତ୍ର ଅପର ପ୍ରାଇମେରୀ ସ୍କୁଲ ଥିଲା ଓ ପରେ ମାଇନର ସ୍କୁଲ ଆରମ୍ଭ ହେଲା । ଏତେଗୁଡ଼ିଏ ଗାଁରେ ତାଲିମୀ ପ୍ରାପ୍ତ ଶିକ୍ଷକଙ୍କ ଦ୍ୱାରା ବ୍ୟବସ୍ଥିତ ଭାବରେ ବିଦ୍ୟାଳୟ ଚାଲିବା ଫଳରେ ବରୀ ଅଂଚଳରେ ଶିକ୍ଷା କ୍ଷେତ୍ରରେ ଏକ ବିପୁଳ ପରିବର୍ତ୍ତନ ଘଟିଲା ଏବଂ ଗ୍ରାମବାସୀଙ୍କ ମନରେ ଗୋଟିଏ ନୂଆ ଆଶା ସଂଚରିତ ହେଲା । ହାଟ ସାହିର ଇନ୍ଦ୍ରମଲ୍ଲ କହିଲେ ଘାସକଟା ଠାରୁ ଘୋଡ଼ାଚଢ଼ା ଯାଏ ଏହି ପାଠ ଆମକୁ ପୋଷେଇବ । ଏ ଶିକ୍ଷା ପଦ୍ଧତିର ବିରୋଧ ମଧ୍ୟ ହେଲା । ଛୋଟ ଛୋଟ ପିଲାଗୁଡ଼ାଙ୍କ ହାତରେ କାମ କରେଇ ସେମାନଙ୍କ ବୁଦ୍ଧି ମୋଟ କରିଦେଇ ଗାନ୍ଧିବାଲାମାନେ ଦେଶଟାକୁ ବଳଦଗାଡ଼ି ଯୁଗକୁ ନେଇଯିବେ, ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା କ୍ଷେତ୍ରରେ ଦେଶ ପଛରେ ପଡ଼ିଯିବ, ଏଇଟା ଥିଲା ସେମାନଙ୍କର ଚିନ୍ତା ଓ ଉଦ୍‌ବେଗ । ହାତରେ କାମ କଲେ ମସ୍ତିଷ୍କର ବିକାଶ ହୁଏ ନାହିଁ - ଏ ଧାରଣା ସେ ଯୁଗର ପାଠୁଆ ଲୋକଙ୍କର ମଧ୍ୟ ଥିଲା । ଏବେ ପୁଣି Job-oriented education ଉପରେ କେତେ ସେମିନାର କେତେ ସିମ୍ପୋସିଅମ୍ ହୋଇ ଲାଗିଛି ।

ଏଣେ ସେବାଘରେ ଆମକାମକୁ ଆହୁରି ବ୍ୟାପକ କରିବା ପାଇଁ ସେବାଘରର ମହିଳା କର୍ମୀମାନେ ବିଭିନ୍ନ ଅଂଚଳରେ ଖେଳେଇ ହେଇଯିବାକୁ ଲାଗିଲେ । ଗୋଦାବରୀ ଦେବୀ ଗଲେ ରତ୍ନଗିରି, ଶୋଭାଦେବୀ କିଛିଦିନ ଏରଡ଼ା ଓ ଗହାଳୀରେ ରହି ଗଲେ

ସୁବର୍ଣ୍ଣପୁର (ଗଞ୍ଜାମ) ସୁଶୀଳା ଦେବୀ ନୀଳାପଦା ମଙ୍ଗଳାଦେବୀ ପୁରୀ ଜିଲ୍ଲାର ବ୍ରହ୍ମଗିରିକୁ ଗଲେ । ମୋତେ ପଠାହେଲା ବୀରନରସିଂହପୁର ବ୍ରାହ୍ମଣ ଶାସନକୁ । ବେଲଦେବୀ ଗଣେଶ୍ୱରପୁରରେ କ୍ଷେତ୍ରମଣି ଦେବୀ ବାଗଲପୁରରେ କର୍ମକେନ୍ଦ୍ର କଲେ । ଏହି କେନ୍ଦ୍ରମାନଙ୍କରେ ଆମେ ସୂତାକଟା, ତୂଳାଭିଣା ସହ, ନିରକ୍ଷରତା ଦୂରୀକରଣ, ହୋମିଓପାଥି ଔଷଧ ଦେବା, ଛୋଟ ପିଲାଙ୍କୁ ବ୍ୟାୟାମ ଓ ଡ୍ରିଲ୍ ଶିଖାଇବା, ଗାଁ ସ୍ତ୍ରୀଲୋକଙ୍କୁ ନୂଆ ବିଚାର ସହିତ ପରିଚିତ କରିବା ପାଇଁ ସଦ୍‌ଗ୍ରନ୍ଥ ଶୁଣାଇବା, ଅକ୍ଷର ଜ୍ଞାନଦେବା, ନିଶାନିବାରଣ, ଅସ୍ପୃଶ୍ୟତା ଦୂରୀକରଣ ଆଦି କାମ କରୁଥିଲୁ । ଯାହାଙ୍କ ଘରେ ରହୁଥିଲୁ ସେ ଆମକୁ ଖାଇବାକୁ ଦେଉଥିଲେ । ଆମେ ସୂତାକାଟି ନିଜଲୁଗା, ଲୁଗାବୁଣା ମଜୁରୀ ତୂଳାକାମ, ରଙ୍ଗସୂତା ଦାମ ଦେଉଥିଲୁ । ସେଥିପାଇଁ ହିସାବ କରି ପ୍ରତିଦିନ ନିର୍ଦ୍ଦିଷ୍ଟ ପରିମାଣର ସୂତା ଆମେ କାଟୁଥିଲୁ । ଏହାଛଡ଼ା ଗାନ୍ଧିଜୀଙ୍କ ଜନ୍ମଦିନରେ ଲକ୍ଷେଗଜ ସୂତା କାଟି ତାଙ୍କୁ ଭେଟି ଦେଉଥିଲୁ । ଓଡ଼ିଶାର ଚାରିଆଡୁ ଏ ସୂତାଭେଟି ସଂଗୃହୀତ ହୋଇ ଅକ୍‌ଟୋବର ୨ ତାରିଖ ଦିନ ଗାନ୍ଧିଜୀଙ୍କ ନିକଟକୁ ତାରବାର୍ତ୍ତା ଯାଉଥିଲା - କୋଟିଏ ଗଜ ସୂତା ସହ ଓଡ଼ିଶା ଆପଣଙ୍କୁ ପ୍ରଣାମ କରିଛି'' (Orissa pranams with a crore yard of hand spun yarn.)। ଧରାବନ୍ଧା ପାରିଶ୍ରମିକ ଆମକୁ ମିଳୁ ନ ଥିଲା । ତେଲ, ସାବୁନ ଆଦି ପାଇଁ ଖର୍ଚ୍ଚ ମୁରବୀମାନେ ଯୋଗାଡ଼ କରି ଦେଉଥିଲେ ।

୧୯୩୪ ରୁ ଗାଁରେ ଏ ପ୍ରକାର କାମ କଲାବେଳେ ସେବାଘରେ ରହି ପ୍ରତିଦିନ ବିଭିନ୍ନ ଗାଁକୁ ଯାଇ ପୁଣି ଅନୁଷ୍ଠାନକୁ ଫେରି ଆସି ପାରୁଥିଲୁ । ଏବେ ଆମକୁ ଏକାଟିଆ କୌଣସି ଗାଁରେ କୌଣସି ପରିବାର ଭିତରେ ରହି କାମ କରିବାପାଇଁ ପଠାହେଲା । ଅନୁଷ୍ଠାନରେ ଗୋଟିଏ ଆଦର୍ଶ ବା ଲକ୍ଷ୍ୟକୁ ସମସ୍ତେ ଗ୍ରହଣ କରିବା ହେତୁ ଆଦର୍ଶ ଅନୁସାରେ ଚଳିବା ସହଜ । ଗାଁରେ ଏକାଟିଆ ପରିବାର ଭିତରେ ରହିଲେ ସେମାନଙ୍କ ସଂସ୍କାର ସଙ୍ଗେ ସାଲିଶ କରିବାର ସମ୍ଭାବନା ଥାଏ । ସେ ଆମ ମାଳୀ ପିନ୍ଧିବେ କି ଆମକୁ ତାଙ୍କ ମାଳୀ ପିନ୍ଧେଇବେ - ଏ ଆଶଙ୍କା ମଧ୍ୟ ଆମ ମନରେ ଥାଏ । ଅବଶ୍ୟ ଏ ନୂଆ ପରଖ- ଜନ ସମ୍ପର୍କ ବଢ଼େଇବାର ଏ ନୂଆ ପଦ୍ଧତିରେ କାମକଲାବେଳେ ଯେଉଁ ସଂଗ୍ରାମର ମୁକାବିଲା କରିବାକୁ ପଡ଼େ, ସେଇଟା ମଧ୍ୟ ସ୍ୱରାଜ୍ୟ ସଂଗ୍ରାମର ଗୋଟାଏ ଅଂଶ ବିଚାରି ଆମେ ସେଥିରୁ ଆନନ୍ଦ ପାଉ । ପ୍ରାୟ ପଚାଶ ବର୍ଷ ପୂର୍ବେ ଅବିବାହିତା ଯୁବତୀ ଝିଅ ଗାଁ ଦାଣ୍ଡରେ ଚାଲି ଘରେ ଘରେ ବୁଲିବାଟା ଲୋକଙ୍କର ଦୃଷ୍ଟି-କଟୁ ହେଉଥାଏ । ସେଥିପାଇଁ ସମାଲୋଚନା ଶୁଣିବାକୁ ପଡ଼େ, ଅପବାଦ ମୁଣ୍ଡେଇବାକୁ ପଡ଼େ । ଅନୁଷ୍ଠାନରେ ଥିଲାବେଳେ

ଅନୁଷ୍ଠାନର ସଂଚାଳକ ଆମର ଢ଼ାଲ ହୁଅନ୍ତି । ଗାଁରେ ଏକାଟିଆ କାମ କଲାବେଳେ ସୁରକ୍ଷିତ ହେବା ବୃତ୍ତି-ନିଜକୁ ନିଜେ ରକ୍ଷା କରିବା ବୃତ୍ତିର ବିକାଶ ଘଟେ ।

୧୯୪୦ରେ ମୁଁ ବୀର ନରସିଂହପୁର ଶାସନକୁ ଗଠନମୂଳକ କାମ କରିବାକୁ ଗଲି । ସେତେବେଳେ ଶାସନରେ ଝିଅବୋହୂ ଦାଣ୍ଡରେ ଦେଖାଦେବା ଅଭାବନୀୟ ବ୍ୟାପାର ଥିଲା । ଗାଁ ମୁଣ୍ଡରେ ଥିବା ପୋଖରୀରୁ ଝିଅ ବୋହୂ ବାଡ଼ିପଟେ ଯାଇ ପାଣି ଆଣୁଥିଲେ । ସେତିକିବେଳେ ଗାଁ ବୋହୂଝିଅ ପରସ୍ପରକୁ ଭେଟୁଥିଲେ । ସେଥିପାଇଁ ନାରୀମହଲରେ କୁହାଯାଉଥିଲା – 'ରାନ୍ଧଣା ବଡ଼ ଗଞ୍ଜଣା ଧାନକୁଟା ବଡ଼ ଦୁଃଖ; ଯାଉଣୁ ଆସୁଣୁ ମୁରୁକି ହସା ପାଣିଅଣା ବଡ଼ ସୁଖ ।' ବୋହୂମାନେ ଗୁରୁଜନମାନଙ୍କୁ କଥା କହୁ ନ ଥିଲେ ! ହାତରେ କାଚମୁଠାକୁ ଦେଖେଇ ଦେଲେ ଶାଶୁ, କପାଳରେ ଚିତା ଦେଲାପରି ହାତ ଦେଲେ ଶଶୁର ବୁଝାଉ ଥିଲା । ଏହିପରି ଭାବରେ ଡ଼ାଲି, ଚାଉଳ, ତେଲ ଲୁଣ ଠାରୁ ଆରମ୍ଭ କରି ସ୍ୱପ୍ନ ବୃତ୍ତାନ୍ତ ସୁଦ୍ଧା ବୋହୂମାନେ ଅତି ସୁନ୍ଦର ଭାବରେ ଠାରରେ ବ୍ୟକ୍ତ କରିବାରେ ନିପୁଣା ଥିଲେ । ବୀରନରସିଂହପୁରରେ ହାରାମଣି ଗୋଟିଏ ଝିଅ, ମାଇନର ସ୍କୁଲକୁ ପାଠପଢ଼ିବାକୁ ଯାଉଥିଲେ । ହାରାମଣି ସ୍ୱନାମଧନ୍ୟ ଅର୍ଥନୀତିଜ୍ଞ ଶ୍ରୀ ସଦାଶିବ ମିଶ୍ରଙ୍କ ଭାଣିଜୀ । ନାରୀ ସମାଜରେ ଘୃତତଣ୍ଡୁଳ ତୈଳ ଲବଣ ବସ୍ତ୍ର ଇନ୍ଧନ ସାଙ୍ଗକୁ ମୁଖ୍ୟ ଆଲୋଚନା ଓଷାବାର ବିଭାବ୍ରତର ସ୍ଥୁଳ ବିଧିବିଧାନ ହିଁ ଥିଲା । ଏପରି ସ୍ଥଳେ ଅରଟ ଓ ଭିଣା ସାଙ୍ଗକୁ ନୀରସ ସଦ୍‌ଗ୍ରନ୍ଥ ଦ୍ୱାରା ମୁଁ ସେମାନଙ୍କୁ ଆମ ବିଚାର ଆଡ଼କୁ ଆକୃଷ୍ଟ କରିପାରିବି କି ନାହିଁ ସେ ବିଷୟରେ ମୋ ମନରେ ଦ୍ୱିଧା ଥିଲା । ମାତ୍ର ଅଳପ ଦିନେ ଆମେ ପରସ୍ପର ସ୍ନେହ ପାଶରେ ଆବଦ୍ଧ ହେଲୁ । ମୋର କଟାଳୀ ସଂଖ୍ୟା ଓ ଛାତ୍ରୀ ସଂଖ୍ୟା ମାସକ ମଧ୍ୟରେ ଷାଠିଏ ହୋଇଗଲା । ସକାଳେ ଆସନ ନମସ୍କାର କରିବା ପିଲାଙ୍କ ସଂଖ୍ୟା ମଧ୍ୟ ବଢ଼ିଚାଲିଲା । ଏସବୁ କାମ ସାଙ୍ଗକୁ ହୋମିଓପାଥି ଔଷଧ ମଧ୍ୟ ଦେଉଥାଏ । ଶ୍ରୀ ଦୟାନିଧି ମିଶ୍ରଙ୍କ ଘରେ ମୁଁ ଥାଏ । ଉଜ୍ଜଳନାନୀ ହୋଇଥାନ୍ତି ମୋର ମୁରବୀ । ବୀରନରସିଂହପୁରରେ ସେ ବେଳରେ ଦୟାନିଧିବାବୁଙ୍କ ଏକମାତ୍ର କୋଠାଘର ହୋଇଥାଏ ମୋର ଡ଼ିସପେନ୍‌ସାରୀ । ଉଜ୍ଜଳନାନୀଙ୍କର ଦ୍ୱିତୀୟ ପୁତ୍ରର ମୃତ୍ୟୁହେତୁ ସେ ସବୁବେଳେ ଶୋକାଭିଭୂତା ହୋଇ ରହୁଥାନ୍ତି । ସାନ ଭଉଣୀ ଭାବରେ ତାଙ୍କ ମନ ବହଲେଇବା ପାଇଁ ମଧ୍ୟ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାଏ । ମାତ୍ର ମୋର ସେ ପ୍ରକାର ଚେଷ୍ଟା ଯେ କେତେଦୂର ନିରର୍ଥକ ଥିଲା, ତାହା ପରିଣତ ବୟସରେ ବୁଝିପାରିଲି । ଉଜ୍ଜଳନାନୀଙ୍କର ଯେଉଁ ପୁଅଟି ବାହୁଡ଼ି ଯାଇଥିଲା, ସେ ଦିନେ ହଳଦୀ ଲଗେଇ ହାତ ପଛକୁ କରି ତାଙ୍କ ବାଡ଼ି ଦୁଆରେ ଛିଡ଼ା ହୋଇଥିଲା ।

ସେହି ହଳଦିଆ ହାତଛାପ ବାଡ଼ି ଦୁଆରେ ରହିଯାଇ ଥାଏ । ଉଜ୍ଜଳନାନୀ ଯେପରି ଭାବରେ ବାଡ଼ି ଦୁଆରେ ବସି ସେହି ହାତ ଛାପକୁ ଦେଖି ଲୋତକ ଢ଼ାଳନ୍ତି, ତାକୁ ଦେଖିଲେ-ଏପରିକି ଆଜି ମନେ ପଡ଼ିଲେ ସୁଦ୍ଧା ହୃଦ କରତି ହୋଇଯାଏ ।

ଯାହାହେଉ, ଯାହାସବୁ ଗଠନମୂଳକ କାମ ଆମେ କରୁଥାଉ ତାର ମୂଳ ଉଦ୍ଦେଶ୍ୟ ଥାଏ ଲୋକଙ୍କୁ ସ୍ୱରାଜ୍ୟ ସଂଗ୍ରାମ, ସମାଜ ପରିବର୍ତ୍ତନ ଆଡ଼କୁ ମୁହାଇଁ ଦେବା । ବୀରନରସିଂହପୁରରେ ଛୁଆଁ ଛୁଇଁ ଛାଡ଼ିବା ଆଦି କ୍ଷେତ୍ରରେ କୌଣସି ପରିବର୍ତ୍ତନ ଘଟୁ ନଥିବାରୁ ଆଚାର୍ଯ୍ୟ ମହାଶୟ ବୀରନରସିଂହପୁର ଆସିଲେ ମୁଁ ତାଙ୍କ ପାଖରେ ମନ ଉଣା କରେ । ସେ ମୋତେ ଧୈର୍ଯ୍ୟ ଧରିବା ପାଇଁ ନାନା ଉଦାହରଣ ଦେଇ ଉପଦେଶ ଦିଅନ୍ତି । ଦିନେ ଆଚାର୍ଯ୍ୟ ମହାଶୟଙ୍କ ସାଙ୍ଗରେ ପଣ୍ଡିତ ହୋତା ମହାଶୟ, ବୀରନରସିଂହପୁରରେ ମହାଶୟା ଲକ୍ଷ୍ମୀ ନାନୀ ଓ ସୁନାମଣୀ ଦେବୀ ପହଞ୍ଚି ଗଲେ । ଉଜ୍ଜଳନାନୀ ତ ସେମାନଙ୍କୁ ଆଡ଼ହେବେ, କଦାପି ପରଷିବେ ନାହିଁ । ଅଗତ୍ୟା ମୁଁ ଠାଆକରି ଆଚାର୍ଯ୍ୟ ମହାଶୟ ପ୍ରମୁଖଙ୍କୁ ଖାଇବାକୁ ଡ଼ାକିବାକୁ ଦାଣ୍ଡକୁ ଗଲି । ତାଙ୍କ ସଙ୍ଗେ ଗାଁର ସାଆନ୍ତ ବ୍ରାହ୍ମଣ ଶ୍ରୀ ହରି ରଥ ବସି କଥାଭାଷା ହେଉଥାନ୍ତି । ରଥ ଆପଣେଙ୍କ ସାଙ୍ଗରେ ତାଙ୍କର ଦୁଇ ବିଧବା ମାଇଁଙ୍କୁ ସୂତାକଟା ଶିଖାଇବାକୁ ବୀରଭଦ୍ରପୁର ଯାଉଥିବାରୁ ମୁଁ ତାଙ୍କ ସହିତ ନିଃସଂକୋଚରେ କଥାବାର୍ତ୍ତା କରୁଥିଲି । ତେଣୁ ତାଙ୍କୁ ମଧ୍ୟ ଖାଇବାକୁ ଡ଼ାକିବାଟା ଶିଷ୍ଟାଚାର ହେବ ବିଚାରି ତାଙ୍କୁ ଖାଇବାକୁ ଡ଼ାକିଲି । ସେ ଉଠିଆସି ହାତଧୋଇ ଠାଆରେ ବସିଲେ ଏବଂ ମୋ ପରଷା ଭାତ ତିଅଣ ଖାଇଲେ । ଉଜ୍ଜଳନାନୀ ପଛପଟ ବାରଣ୍ଡାରେ ଖିଡ଼ିକୀ ଉହାଡ଼ରେ ଥାଇ ସବୁ ତଦାରଖ କରୁଥିଲେ । ରଥେ ଆପଣେ ତାଙ୍କ ଘରେ ମୋ ପରଷା ଭାତ ତିଅଣ ଖାଇବାର ଦେଖି ତାଟକା ହୋଇଗଲେ । ଯେଉଁ ସାଆନ୍ତମାନେ ସାଧାରଣ ବ୍ରାହ୍ମଣଙ୍କ ଘରେ ସଙ୍ଖୁଡ଼ି ଛୁଅନ୍ତି ନାହିଁ ଏବଂ ସାଧାରଣ ବ୍ରାହ୍ମଣ ତାଙ୍କ ଘରକୁ ଖାଇବାକୁ ଗଲେ ପିଢ଼ାପାଣି ଧରି ଯିବା ଚଳଣି ଯେଉଁଠାରେ ଚଳୁଛି ସେଠାରେ ଜଣେ ବ୍ରାହ୍ମଣେତର ଝିଅହାତରୁ ଭାତ ଖାଇବାଟା ରାହାଙ୍ଗରେ ପ୍ରକୃତରେ ଅଷ୍ଟମ ଆଶ୍ଚର୍ଯ୍ୟ । ଖିଆପିଆ ସରିଲାରୁ ପଣ୍ଡିତ ମହାଶୟ ମୋ ପିଠିରେ ଗୋଟିଏ ବାଇଣି ପଳିଆ ବିଧା ବସେଇ ଦେଇ କହିଲେ – 'ତୁ ତ ରାହାଙ୍ଗରେ ଗୋଟିଏ ବିପ୍ଳବ କରିଦେଲୁ !''

ସାକ୍ଷୀଗୋପାଳରେ ସେହିବର୍ଷ ରଚନାତ୍ମକ କର୍ମୀ ସମ୍ମିଳନୀ ହେଲା । ବୀରନରସିଂହପୁରରୁ ସର୍ବଶ୍ରୀ ହରି ରଥ, କାଶୀନାଥ ମିଶ୍ର ପ୍ରମୁଖ ସମ୍ମିଳନୀରେ ଯୋଗ

ଦେବାକୁ ଯାଇ ହରିଜନମାନଙ୍କ ସହିତ ଏକା ପଙ୍‌କ୍ତିରେ ବସି ମଧ୍ୟାହ୍ନ ଭୋଜନ କଲେ । ଆଚାର୍ଯ୍ୟ ମହାଶୟ ମୋ ମୁହଁକୁ ଚାହିଁ ଖାଲି ହସୁଥାନ୍ତି ।

ବୀରନରସିଂହପୁରର ଝୋଟି ଲେଖାଠାରୁ ଆରମ୍ଭ କରି ଗ୍ରାମବାସୀଙ୍କର ଏ ଅକିଞ୍ଚନ ପ୍ରତି ଅହେତୁକ ସ୍ନେହ ମୋ ଜୀବନରେ ମଧୁରତମ ସ୍ମୃତିମାନଙ୍କ ମଧ୍ୟରୁ ଅନ୍ୟତମ ।

ଜର୍ମାନୀ ପୋଲାଣ୍ଡ୍ ଆକ୍ରମଣ କରିବା ପରେ ୩.୯.୪୯ରେ ଇଂଲଣ୍ଡ୍ ସହିତ ଯୁଦ୍ଧ ଲାଗିଯିବାରୁ ବ୍ରିଟିଶ ସରକାର ଭାରତବର୍ଷକୁ ଏହି ଯୁଦ୍ଧ ସହିତ ଜଡ଼ିତ କରିବାର ପ୍ରତିବାଦ ସ୍ୱରୂପ କଂଗ୍ରେସୀ ମନ୍ତ୍ରୀ ଇସ୍ତଫା ଦେଲେ । ତାହା ପରେ ଓଡ଼ିଶା ସରକାର ରାମଚନ୍ଦ୍ରପୁର ଠାରେ ଚାଲିଥିବା ସରକାରୀ ମୌଳିକ ଶିକ୍ଷା-ପ୍ରୟୋଗକୁ ବନ୍ଦ କରିଦେବା ପାଇଁ ନିଷ୍ପତ୍ତି କରି ତଦନୁସାରେ କାର୍ଯ୍ୟାନୁଷ୍ଠାନ କଲେ । ମାତ୍ର ଏହି ମୌଳିକ ବଦ୍ୟାଳୟମାନଙ୍କରେ କାମ କରୁଥିବା ଶିକ୍ଷକମାନେ ସ୍ୱେଚ୍ଛାପ୍ରଣୋଦିତ ହୋଇ ଏହି ମୌଳିକ ଶିକ୍ଷାର ପରଖକୁ ଚାଲୁ ରଖିବାପାଇଁ ଆଗ୍ରହ ପ୍ରକାଶ କଲେ । ଏହି ପରଖ ସକାଶେ ସେମାନେ ସରକାରୀ ଚାକିରୀର ଲୋଭ ଛାଡ଼ିଲେ । ତେଣୁ ଆଚାର୍ଯ୍ୟ ମହାଶୟଙ୍କ ଅଧ୍ୟକ୍ଷତାରେ ଉତ୍କଳ ମୌଳିକ ଶିକ୍ଷାପରିଷଦ ଗଠିତ ହୋଇ ବେସରକାରୀ ଭାବରେ ଏହି ସ୍କୁଲଗୁଡ଼ିକ ମଧ୍ୟରୁ ସାତୋଟି ସ୍କୁଲ ଚଳାଇବା ସ୍ଥିର ହେଲା । ସର୍ବଶ୍ରୀ କୃଷ୍ଣଚନ୍ଦ୍ର ସାହୁ, ଶ୍ୟାମସୁନ୍ଦର ପାଣିଗ୍ରାହୀ, ଋଷି ବେହେରା, ଗୋଲକ ଚନ୍ଦ୍ର ନାୟକ, ଗୋପୀନାଥ ଦାଶ, ଘନଶ୍ୟାମ ଖଣ୍ଡୁଆଳ, ନାରାୟଣ ମିଶ୍ର, ମଧୁସୂଦନ ସାହୁ, ଶରତଚନ୍ଦ୍ର ମହାରଣା ସନ୍ନ୍ୟାସୀପୁର, ବାଲିବିଲ, ରଳୋଙ୍ଗ, ଅରଙ୍ଗାବାଦ, ରାମଚନ୍ଦ୍ରପୁର, ହାଟସାହି ଓ ହଳଦୀବସନ୍ତରେ ଅସରକାରୀ ମୌଳିକ ବିଦ୍ୟାଳୟ ଚଳାଇବାକୁ ଅଣ୍ଟା ଭିଡ଼ିଲେ । ଏ କାମ ପାଇଁ ଆରମ୍ଭରେ କୌଣସି ଆର୍ଥିକ ବ୍ୟବସ୍ଥା ଆଦୌ ନ ଥିଲା । ଗ୍ରାମବାସୀଙ୍କ ସହଯୋଗ, ଗାନ୍ଧିଜୀଙ୍କର ଆଶୀର୍ବାଦ ଓ ସାମୟିକ ଅର୍ଥ ବ୍ୟବସ୍ଥା, ହିନ୍ଦୁସ୍ଥାନୀ ତାଲିମୀ ସଂଘର ତତ୍ତ୍ୱାବଧାନ ହେଲା ମୂଳ ପାଣ୍ଠି । ରାଜକୃଷ୍ଣ ବୋଷ ରମାଦେବୀଙ୍କୁ ଲେଖିଲେ, କୌଣସି ଆନ୍ଦୋଳନ ଚାଲିଥିବା ବେଳେ ଉତ୍ତେଜନାର ବଶବର୍ତ୍ତୀ ହୋଇ ତ୍ୟାଗ କରିବା, ଚାକିରୀ ଛାଡ଼ିବା ସହଜ ହୁଏ । ମାତ୍ର ଏ କ୍ଷେତ୍ରରେ ଶିକ୍ଷକମାନେ ଯେ ସରକାରୀ ନୀତିର ପ୍ରତିବାଦ କରି ସ୍ଥିରମନରେ ଚାକିରୀ ଛାଡ଼ିଲେ ସେଥିପାଇଁ ମୁଁ ସେମାନଙ୍କୁ ଅଭିନନ୍ଦନ ଜଣାଉଛି ।

ଏହି ମୌଳିକ ଶିକ୍ଷା ପରିଷଦ କାମରେ ସାହାଯ୍ୟ କରିବା ପାଇଁ ମୁଁ ବୀରନରସିଂହପୁରରୁ ବରୀ ଫେରିଆସିଲି ଏବଂ ଅରଙ୍ଗାବାଦ ମୌଳିକ ବିଦ୍ୟାଳୟର

ଶିକ୍ଷୟିତ୍ରୀ ଭାବରେ କାମରେ ଯୋଗ ଦେଲି । ସେ ବର୍ଷ ମୌଳିକ ଶିକ୍ଷା ସମ୍ମିଳନୀ ଦିଲ୍ଲୀରେ ହେଲା ଏବଂ ଓଡ଼ିଶାର ଶିକ୍ଷକମାନେ ସାହସିକ ପଦକ୍ଷେପ ନେଇଥିବା ହେତୁ ସମ୍ମିଳନୀରେ ଓଡ଼ିଶାର ସୁଖ୍ୟାତି ଶୁଣିବାକୁ ମିଳିଲା । ଦିଲ୍ଲୀରେ ଜାମିଆ ମିଲିଆ ଇସ୍‌ଲାମିଆ ନାମକ ଜାତୀୟ ଅନୁଷ୍ଠାନର ଅଧ୍ୟାପକମାନଙ୍କର ବିଦ୍‌ବତ୍ତା ଓ ତ୍ୟାଗ ମୋ ଉପରେ ଗଭୀର ପ୍ରଭାବ ପକାଇଥିଲା । ପରବର୍ତ୍ତୀ କାଳର ରାଷ୍ଟ୍ରପତି ଡ଼କ୍ଟର ଜାକୀର ହୁସେନ ଏହି ଅନୁଷ୍ଠାନର କର୍ମକର୍ତ୍ତା ଥିଲେ । ସେ ଓ ତାଙ୍କର ସୁଯୋଗ୍ୟ ସହକର୍ମୀମାନେ ଜାତୀୟବାଦୀ ହୋଇଥିବାରୁ ସରକାର ସେମାନଙ୍କୁ ସୁନଜରରେ ଦେଖୁ ନଥିଲେ । ତେଣୁ ଅନୁଷ୍ଠାନକୁ ସରକାରୀ ସାହାଯ୍ୟ ମିଳୁ ନ ଥିଲା । ଅଧ୍ୟାପକମାନେ ସମସ୍ତେ ଉଚ୍ଚଶିକ୍ଷିତ ହୋଇଥିଲେ ହେଁ ମାତ୍ର ପଚସ୍ତରି ଟଙ୍କା ମାସିକ ବେତନ ନେଉଥିଲେ ଏବଂ ସେହି ବେତନରୁ ଅର୍ଥ ସଞ୍ଚୟ କରି ନିଜ ନିଜର ଜ୍ଞାନ ବଢ଼େଇବା ପାଇଁ ଅଧିକାଂଶ ଅଧ୍ୟାପକ କେମ୍ବ୍ରିଜ, ଅକ୍‌ସଫୋର୍ଡ଼ ଓ ଜର୍ମାନୀରେ ପାଠ ପଢ଼ି ଡ଼କ୍ଟରେଟ୍ ହାସଲ କରିଥିଲେ । ମାତ୍ର ସେମାନଙ୍କ ଚାଲି ଚଳନ ବେଶଭୂଷାରୁ ଏହା କଳି ହେଉ ନ ଥିଲା । ଜାକୀର ସାହେବ ଓ ତାଙ୍କର ସହକର୍ମୀମାନଙ୍କ ଆଚରଣରେ ବିଦ୍ୟା ଦଦାତି ବିନୟଂ ଚରିତାର୍ଥ ହୋଇଥିଲା । ଇସ୍‌ଲାମ ସଂସ୍କୃତିର ପ୍ରତ୍ୟକ୍ଷ ପରିଚୟ ସେହିମାନଙ୍କ ଠାରୁ ମୁଁ ପାଇଲି ।

ସମ୍ମିଳନୀ ପରେ ପରେ ଦିଲ୍ଲୀରୁ ହରଦ୍ୱାର-ହୃଷିକେଶ-ଲଛମନଝୋଲା ଯିବା ଫଳରେ ସେଠାରେ ଗଛ ଉପରେ ଭାଡ଼ି ବାନ୍ଧି ରହି ତପସ୍ୟା କରିବା, ନିର୍ଜନ ସ୍ଥାନରେ ଗଛମୂଳେ ବସି ଆଗ୍ରହୀ ଶ୍ରୋତାକୁ ଆଧ୍ୟାତ୍ମିକ ବାଣୀ ଶୁଣାଉଥିବା ସାଧୁ ସନ୍ଥମାନଙ୍କୁ ଦେଖି ହଜାର ହଜାର ବର୍ଷ ପୂର୍ବର ପରି ମୋତେ ଲାଗିଲା । ଭାରତୀୟ ସଂସ୍କୃତିର ପ୍ରତ୍ୟକ୍ଷ ଦର୍ଶନ ମିଳିଲା । ଡ଼େରାଡୁନ୍‌ର କନ୍ୟାଗୁରୁକୁଳ ଓ ହରିଦ୍ୱାରର ଗୁରୁକୁଳର ଶିକ୍ଷା ବ୍ୟବସ୍ଥା ଦେଖିବା ମାନସରେ ସେ ଅନୁଷ୍ଠାନକୁ ଗଲୁ ଏବଂ ସେବାଘର-କନ୍ୟା ଗାୟତ୍ରୀ ଡ଼େରାଡୁନ କନ୍ୟା ଗୁରୁକୂଳରେ ପଢୁଥିବାରୁ ତାକୁ ମଧ୍ୟ ଦେଖିଲୁ । ଏ ସବୁ ଶିକ୍ଷା ଅନୁଷ୍ଠାନ ଦେଖିବା ଫଳରେ ଆମର ଯେଉଁ ଅଭିଜ୍ଞତା ହେଲା ତାହା ମୌଳିକ-ଶିକ୍ଷାର ପରଖରେ ସହାୟ ହେଲା ।

ସେତେବେଳକୁ ବିଶ୍ୱ-ଯୁଦ୍ଧ ଘମାଘୋଟ ଲାଗିଗଲାଣି । ଯୁଦ୍ଧ-ନୀତି ଦୃଷ୍ଟିରୁ ଏହି ସମୟରେ ଭାରତ ସରକାର ଗୋଟିଏ ଅର୍ଡ଼ିନାନ୍‌ସ ଜାରି କଲେ ଯେ ଯୁଦ୍ଧ ସଂକ୍ରାନ୍ତରେ ସରକାରଙ୍କ ମଞ୍ଜୁରୀ ପାଇଥିବା କୌଣସି ସମ୍ବାଦ ବା ମତାମତ କେହି ପ୍ରକାଶ କଲେ, ତାହା ଦଣ୍ଡନୀୟ ହେବ । ଏହାର ପ୍ରତିବାଦରେ ଗାନ୍ଧିଜୀ 'ବାଣୀ ସ୍ୱାଧୀନତା ସତ୍ୟାଗ୍ରହ'

ଆରମ୍ଭ କଲେ । ଏହା ଥିଲା ବ୍ୟକ୍ତିଗତ ସତ୍ୟାଗ୍ରହ । ଯେଉଁମାନେ ସତ୍ୟାଗ୍ରହ କରିବେ ସେମାନଙ୍କର ଜୀବନବୃତ୍ତାନ୍ତ ଗାନ୍ଧିଜୀଙ୍କ ପାଖକୁ ପ୍ରଥମେ ପଠାଯାଇଥିଲା । ସେ ଯାହାକୁ ସତ୍ୟାଗ୍ରହ କରିବାକୁ ଅନୁମତି ଦେଉଥିଲେ ସେ ହିଁ କେବଳ ସତ୍ୟାଗ୍ରହ କରି ପାରୁଥିଲେ । ୧୧ ଅକ୍ଟୋବର ୧୯୪୦ରେ ଏହି ବାଣୀ ସତ୍ୟାଗ୍ରହ ଆରମ୍ଭ ହେଲା । ବିନୋବାଜୀଙ୍କୁ ଗାନ୍ଧିଜୀ ଏଥିରେ ପ୍ରଥମ ସତ୍ୟାଗ୍ରହୀ ରୂପେ ବାଛିଲେ । ବିନୋବାଜୀ, ପଣ୍ଡିତ ନେହୁରୁ, ଓଡ଼ିଶାରେ ମନମୋହନ ଚୌଧୁରୀ ପ୍ରମୁଖ କେତେଜଣଙ୍କୁ ଛାଡ଼ିଦେଲେ ଗାନ୍ଧିଜୀ ଆଉ କାହାରିକୁ ସଭାରେ ବକ୍ତୃତା ଦେବାକୁ ଅନୁମତି ଦେଉ ନ ଥିଲେ । 'ସରକାରଙ୍କୁ ଏହି ଯୁଦ୍ଧରେ ସାହାଯ୍ୟ କରିବା ପାପ ବା ହରାମ'' ସଭାରେ ସତ୍ୟାଗ୍ରହୀ କେବଳ ଏତିକି କହିବା ପରେ ଗିରଫ ହେଉଥିଲେ । ପ୍ରତିପକ୍ଷ ଯୁଦ୍ଧରେ ବିବ୍ରତ ଥିବାବେଳେ କେବଳ ରାଷ୍ଟ୍ରର ଆତ୍ମସମ୍ମାନ ରକ୍ଷାପାଇଁ ଏହି ସମୟରେ ବ୍ୟକ୍ତିଗତ ସତ୍ୟାଗ୍ରହ ଗାନ୍ଧିଜୀ ଆରମ୍ଭ କରିଥିଲେ । ବରୀ ଅଞ୍ଚଳରେ ମନମୋହନ ଚୌଧୁରୀ ଏହି ସତ୍ୟାଗ୍ରହ ପରିଚାଳନା ଦାୟିତ୍ୱରେ ଥିଲେ । ଅଲିଆବାଦର ମଧୁସୂଦନ ଜେନା, ଆନନ୍ଦପୁରର ଅକ୍ରୁର ଜେନା, ବାଗଦାର ରତ୍ନାକର ଜେନା, ପ୍ରିୟମ୍ବଦା ଦେବୀ, ମନମୋହନ ଚୌଧୁରୀ ପ୍ରଭୃତି ଏହି ସତ୍ୟାଗ୍ରହରେ ଯୋଗ ଦେଇ ଜେଲ୍ ଯାଇଥିଲେ । ଆମେମାନେ ସେତେବେଳେ ମୌଳିକ ଶିକ୍ଷାରେ ଲାଗିଥାଉ । ସତ୍ୟାଗ୍ରହରେ ଯୋଗ ଦେବାକୁ ମନ ହୁକୁହୁକୁ ହେଉଥାଏ । ଗାନ୍ଧିଜୀ ସେତେବେଳେ ସତ୍ୟାଗ୍ରହ ଅପେକ୍ଷା ମୌଳିକ-ଶିକ୍ଷା-ପରଖ ଉପରେ ଅଧିକ ଗୁରୁତ୍ୱ ଆରୋପ କରୁଥିବାରୁ ସତ୍ୟାଗ୍ରହ କରିବା କଥା ନୋହିଲା ।

ମନମୋହନ ଚୌଧୁରୀଙ୍କ ଗିରଫ ଓ ବିଚାର ବ୍ୟାପାରଟା ଆମୋଦ ଦାୟକ ହୋଇଥିଲା । ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଥିଲା ଯେ ସତ୍ୟାଗ୍ରହୀମାନେ ବୁଲି ବୁଲି ଯୁଦ୍ଧକୁ ସାହାଯ୍ୟ ନ କରିବା କଥା ସଭା କରି କହିବେ ଏବଂ ଗୋଟିଏ ଗାଁରେ ଦିନକରୁ ଅଧିକ କାଳ ରହିପାରିବେ ନାହିଁ । ସାଧାରଣତଃ ଏହି ସତ୍ୟାଗ୍ରହୀମାନେ ଦ୍ୱିତୀୟ ସଭାରେ ଗିରଫ ହୋଇ ଯାଉଥାନ୍ତି । ମାତ୍ର ବିଂଝାରପୁର ପୋଲିସ ସବ୍‌ଇନସପେକ୍ଟର ମନମୋହନ ଚୌଧୁରୀଙ୍କ ପ୍ରତି ବିଶେଷ ମମତା ହେତୁ ତାଙ୍କୁ ଗିରଫ କରିବାକୁ କରଛଡ଼ା ଦେଲେ । ଫଳରେ ମନମୋହନ ବାବୁ ଗାଁକୁ ଗାଁ ବୁଲି ସଭା କରି କରି ଧର୍ମଶାଳାରେ ପଶିବାରୁ ସେ ଥାନାର ସବଇନ୍‌ସପେକ୍‌ଟର ତାଙ୍କ ଅଣ୍ଟାରେ ଦଉଡ଼ିବାନ୍ଧି ତାଙ୍କୁ ଯାଜପୁର ନେଲେ । ଯାଜପୁରରେ ତାଙ୍କର ବିଚାର ହୋଇ ତାଙ୍କୁ ଗ ଶ୍ରେଣୀୟ ଓ ସଶ୍ରମ କାରାଦଣ୍ଡ ମିଳିଲା । ଗଦାଧର ବାବୁ (ଦତ୍ତ) କଥା ପ୍ରସଙ୍ଗରେ ମ୍ୟାଜିଷ୍ଟ୍ରେଟଙ୍କୁ ପଚାରିଲେ – ମନମୋହନଙ୍କୁ

ଆପଣ ଗ ଶ୍ରେଣୀଭୁକ୍ତ କଲେ କହିଁକି ? ମ୍ୟାଜିଷ୍ଟ୍ରେଟ କହିଲେ କୋର୍ଟର ନିୟମ ଅନୁସାରେ ମୁଁ ତାଙ୍କୁ ଜାତି ପଚାରିବାରୁ ସେ 'ମୋଚି' କହିଲେ । ମୁଁ ପୁଣି ପଚାରିବାରୁ ସେ କହିଲେ 'ଚମଡ଼ାକାମ କରୁଥିବା ମୋଚି' ଆଇନ୍ ଅନୁସାରେ ମୋଚି ଚମାର ଆଦିଙ୍କୁ ଗ ଶ୍ରେଣୀ ସଜ୍ଞା ଦେବା କଥା । ବୋଲିବା ବାହୁଲ୍ୟ ମନମୋହନ ଭାଇ କଟେଜ୍ ଟ୍ୟାନେରୀରେ ଚମଡ଼ା ଟ୍ୟାନିଙ୍ଗ୍ କାମ କରୁଥିବାରୁ ନିଜକୁ ମୋଚି କହିଥିଲେ । ଆମେ ସେତେବେଳେ ମୌଳିକ ଶିକ୍ଷା ପରଖରେ ମଶଗୁଲ ଥାଉ । ସେଥିପାଇଁ ପଢ଼ିଆରୀ ମହାଶୟ ମୋତେ ବ୍ୟଙ୍ଗ କରି କହିଲେ-ତେଣେ ଲଢ଼େଇ ଲାଗିଛି, ଏଣେ ତୁ ଚାଟଶାଳୀ ଅବଧାନ ହୋଇ ବସି ଥାଆ । ମାତ୍ର ଆମ ମୌଳିକ-ଶିକ୍ଷା ପରଖକୁ ହିନ୍ଦୁସ୍ଥାନୀ ତାଲିମୀ ସଂଘ କି ଦୃଷ୍ଟିରେ ଦେଖୁଥିଲେ ଏବଂ ତାହା ଉପରେ କେତେ ଗୁରୁତ୍ୱ ଦେଉଥିଲେ ତାହାର ଆଭାସ ସଂଘର ସଂପାଦିକା ଶ୍ରୀମତୀ ଆଶା ଦେବୀ ଆର୍ଯ୍ୟନାୟକମ୍ଙ୍କର ଖଣ୍ଡିଏ ଚିଠିରୁ ମିଳିବ ।

କଲ୍ୟାଣୀୟାସୁ — ଯାଜପୁର ରୋଡ୍

ସ୍ନେହର ମା ଅନ୍ନପୂର୍ଣ୍ଣା, — ୧୨.୯.୪୧

ନିରାପଦରେ ଆସି ଏଇକ୍ଷଣି ଯାଜପୁର ରୋଡ୍ ଷ୍ଟେସନ୍‌ରେ ପହଞ୍ଚିଲି । ଟ୍ରେନ୍ ଆସିବାକୁ ଟିକିଏ ବିଳମ୍ବ ଅଛି । ସେଥିପାଇଁ ତୁମକୁ ଏ ଚିଠି ଲେଖିବା ପାଇଁ ଭାବିଲି ।

xxxxx xxxxx xxxxx xxxxx

ମୁଁ ଫେରିଯାଇ ଓଡ଼ିଶାର ମୌଳିକ ଶିକ୍ଷା ସମ୍ବନ୍ଧରେ 'ନଇ ତାଲିମ୍'(ପତ୍ରିକା) ପାଇଁ ଗୋଟାଏ ଲେଖା ପ୍ରସ୍ତୁତ କରିବି । ସେଇଟା ପରେ ଆମ ବାର୍ଷିକ ବିବରଣୀରେ ଯୋଗ କରିଦେବି । ଦୁଇଟି ଜିନିଷ ମୁଁ ଆଣିବାକୁ ଭୁଲିଗଲି । ତୁମେ ଯେତେ ଶୀଘ୍ର ସମ୍ଭବ ସେବାଗ୍ରାମ ଠିକଣାରେ ହିନ୍ଦୀ ଭାଷାରେ ତାହା ପଠାଇ ଦେବ ।

୧. ଛୋଟ ପିଲାଙ୍କ ପାଇଁ ଯେଉଁ ସାହିତ୍ୟ ତିଆରି ହେଉଛି, ତାର ନମୁନା ସ୍ୱରୂପ ତୁମେ ଲେଖିଥିବା ଗୋଟିଏ ବା ଦୁଇଟି ଗଳ୍ପ ପଠେଇବ । ସେହି ଦୁଷ୍ଟ ଝିଅଟିର ଗଳ୍ପଟି ଯେ ଲେଖିଛ, ଯେ ଯାତ୍ରାକୁ ଯାଇ ପାରିଲା ନାହିଁ, ତାହାର ନାଆଁଟା ମୁଁ ପାଶୋରି ପକେଇଛି । ସେହି ଗଳ୍ପଟି ପଠାଇବ ଏବଂ ତାର ସାତଦିନର କାମ କଥା ଲେଖିବ । ଆଉ ଦ୍ୱିତୀୟ ଶ୍ରେଣୀ ଉପଯୋଗୀ କୌଣସି craft centred ଲେଖା ତୁମ ପାଖରେ ଥିଲେ ତାହା ମଧ୍ୟ ପଠାଇବ ।

୨. ଶିକ୍ଷକମାନଙ୍କ ଡ଼ାଏରୀର ନମୁନା । ପ୍ରଥମ ସୋପାନ ପାଇଁ ତୁମର ଦିନକର ଡ଼ାଏରୀ ପଠାଇବ । ତୁମେ ଯେପରି ଜାଣିଶୁଣି ପିଲାଙ୍କୁ ଖରାପ ତକଲୀ ଦିଅ, ତକଲୀ ବାଣ୍ଟିବାବେଳେ ଗଣିବା ଅଭ୍ୟାସ କରାଅ, ସୂତା କାଟୁକାଟୁ ପିଲାଏ ତୁମକୁ ସୂତା କଲି ଦେଖାନ୍ତି, ସୂତା ଗୁଡ଼ାଇବାବେଳେ ଯେଉଁ ଯେଉଁ ପ୍ରକ୍ରିୟା କର, ସବୁ ବିଶଦଭାବରେ ଦେବ ଏବଂ ସେକେଣ୍ଡ ଗ୍ରେଡ୍ ପାଇଁ ମଧୁ (ମଧୁସୂଦନ ମିଶ୍ର)ଙ୍କର ଡ଼ାଏରୀରୁ ଗୋଟାଏ ଦିନ ବାଛିକରି ଦେବ । ଏପରି ଦିନ ଦେବ ଯେଉଁ ଦିନ ପିଲାଏ craft work ସମ୍ବନ୍ଧରେ ପ୍ରଶ୍ନ ପଚାରିଥିବେ । ତାହା ସାଙ୍ଗରେ ରାତିରେ ତାରା ଚିହ୍ନିବା ପ୍ରୋଗ୍ରାମ୍‌ଟା ଯୋଡ଼ିଦେବ ।

ତୁମ ବାପାଙ୍କୁ ମୁଁ ଗୋଟାଏ କଥା ପଚାରିବାକୁ ଭୁଲିଗଲି । ସେପ୍‌ଟେମ୍ବର ମାସର ଖରଚ ଚଳାଇବା ପାଇଁ ହାତରେ ଟଙ୍କା ଅଛି ନା ତାଲିମୀ ସଂଘର କିଛି advance ପଠାଇବି ? ସେପ୍‌ଟେମ୍ବର ମାସଟା ସେ ଓ ଦିଦି ଗାନ୍ଧୀ ଜୟନ୍ତୀ କାମରେ ବ୍ୟସ୍ତ ରହିବେ । ମୌଳିକ ଶିକ୍ଷା ପାଇଁ ଟଙ୍କା ସଂଗ୍ରହ କରିବା ସେମାନଙ୍କ ପକ୍ଷରେ ସୁବିଧାଜନକ ହେବନାହିଁ । ତାଙ୍କୁ ପଚାରି ମୋତେ ଜଣାଇବ । ଶିକ୍ଷକମାନଙ୍କୁ ବେତନ ଦେବା ବିଳମ୍ବ ହେଲେ ସେମାନେ ଅଧୀର ହୋଇ ପାରନ୍ତି । ଦୁଇ ବର୍ଷର ଯୋଜନା ଓ ବଜେଟ୍ ଯେତେ ଶୀଘ୍ର ପାରିବ ପଠାଇ ଦେବ । ସେହି ବଜେଟ୍‌କୁ ଧରି ମୁଁ ବାପୁଜୀଙ୍କୁ ଆକ୍ରମଣ କରିବି । ଅବଶ୍ୟ ଅହିଂସାତ୍ମକ ଆକ୍ରମଣ । ମାର୍ଚ୍ଚ ଏକତ୍ରିଶ ତାରିଖ ପର୍ଯ୍ୟନ୍ତ ଗୋଟାଏ ସ୍ୱତନ୍ତ୍ର ବଜେଟ କରି ଦେବାକୁ ମୁଁ ଶରତ୍ (ମହାରଣା) ଙ୍କୁ କହିଛି ।

ଆଉ ଗୋଟାଏ ଜିନିଷ ବଜେଟରେ ରଖା ହୋଇନାହିଁ । Basic Education Week ର ଖରଚ । ବାପାଙ୍କୁ ପଚାରିବ ସେଇଟା ମୌଳିକ ଶିକ୍ଷା ବଜେଟର ଅନ୍ତର୍ଭୁକ୍ତ ହେବ ନା locally ମିଳିଯିବ । ଗୋଟାଏ ଭଲ ପ୍ରଦର୍ଶନୀ କଲେ ଟିକିଏ ଖରଚ ହେବ ।

ତୁମେ, ମଙ୍ଗଳା, ପ୍ରଭା ସମସ୍ତେ ମୋର ସ୍ନେହାଶୀର୍ବାଦ ନେବ । ମା ବାପାଙ୍କୁ ପ୍ରଣାମ ଦେବ । ଏ କେତେଦିନ ତମକୁ ବହୁତ ଖଟଣି ପଡ଼ିଲା । ଟିକିଏ ବିଶ୍ରାମ କରିବ । ମୋ ଅକ୍ଷର ପଢ଼ି ନ ପାରିଲେ ମଙ୍ଗଳାକୁ ପଢ଼ି ଦେବାକୁ କହିବ ।

ଇତି

ତମର

ମାସୀମା

ମୌଳିକ ଶିକ୍ଷା ପରଖରେ ଲାଗିଥିବା ବେଳେ ଯୁଦ୍ଧ ପରିସ୍ଥିତି ଦ୍ରୁତ ବଦଳୁଥାଏ । ଜାପାନ ଜର୍ମାନୀ ସାଙ୍ଗରେ ସାଙ୍ଗ ହେବା ପରେ ପୂର୍ବପଟେ ସିଙ୍ଗାପୁର ବର୍ମା ଆଦି ଜାପାନ୍ ଦଖଲ କରି ଯାଉଥାଏ । କଟକ ଜିଲ୍ଲାର ବେଣାହାର ବାଲିକୁଦା ନିକଟବର୍ତ୍ତୀ ସମୁଦ୍ର ଉପକୂଳରେ ଜାପାନ୍ ମିତ୍ରପକ୍ଷର ଜାହାଜ ବୁଡ଼ାଇ ଦେଲା । ଆହତ ନୌସେନା କଟକ ବଡ଼ ଡ଼ାକ୍ତରଖାନାକୁ ବୁହାହୋଇ ଆସିଲେ । ସେଦିନ ସକାଳ ଓଲି ସେ କମାଣ ଗର୍ଜ୍ଜନ ବନ୍ଧ ଡ଼ିହ, ବାଲିଆକୁ ଶୁଭିଲା, ଏସବୁ ଘଟଣାରୁ ଯୁଦ୍ଧ କ୍ଷେତ୍ର ଆମ ପାଖକୁ ପାଖେଇ ଆସୁଥିବା ପରି ଲାଗୁଥାଏ । ସରକାର ବାଲିକୁଦା ଅଞ୍ଚଳରେ ସାମରିକ ଘାଟି ସ୍ଥାପନ ଆରମ୍ଭ କଲାରୁ ଗାନ୍ଧିଜୀ ମୀରାବେନ୍‌କୁ ଓଡ଼ିଶା ପଠେଇଲେ । ସୈନ୍ୟ ଛାଉଣୀର ଆଖପାଖ ଗାଁର ସ୍ତ୍ରୀ ଲୋକମାନଙ୍କ ପ୍ରତି ସୈନ୍ୟମାନେ ଅଶିଷ୍ଟ ବ୍ୟବହାର ନ କରିବା ପାଇଁ ନିର୍ଦ୍ଦେଶ ଦେବାକୁ ବଡ଼ଲାଟଙ୍କୁ ଗାନ୍ଧିଜୀ ଜଣାଇବାରୁ ବଡ଼ଲାଟ ସ୍ତ୍ରୀଲୋକମାନଙ୍କୁ ଗାଁରୁ ଅପସରଣ କରିବାକୁ କହିଲେ । ଜାପାନର କ୍ରମାଗତ ବିଜୟ ଫଳରେ ଭାରତର ଧନଜୀବନ ଆଉ ବ୍ରିଟଶ୍ ଅଧୀନରେ ନିରାପଦ ନୁହେଁ ବୋଲି ଗୋଟାଏ ଧାରଣା ସାଧାରଣ ଲୋକଙ୍କ ମନରେ ଜନ୍ମିଲା । ଗାନ୍ଧିଜୀ ତ ହରିଜନ ପତ୍ରିକାରେ ଏ ବିଷୟରେ ନିୟମିତ ଲେଖୁଥାନ୍ତି । ପରିସ୍ଥିତି ଗୋଟାଏ ଆସନ୍ନ ଝଡ଼ର ସୂଚନା ଦେଉଥାଏ । ୧୯୪୨ ମାର୍ଚ୍ଚ ମାସରେ କ୍ରିପ୍‌ସ ପ୍ରପୋଜାଲକୁ ଗାନ୍ଧିଜୀ ତମାଦି ଦଲିଲ କହି ପ୍ରତ୍ୟାଖାନ କଲେ ଏବଂ ବରାବର କହିଲେ ଯେ ବ୍ରିଟିଶ ସରକାର ଗଣତନ୍ତ୍ରର ସୁରକ୍ଷା ପାଇଁ ଲଢୁଥିବାରୁ ଭାରତକୁ ସ୍ୱରାଜ୍ୟ ଦେଇ, ନିଜର ନୈତିକ ବଳ ବଢ଼ାଉ ଏବଂ ସିଙ୍ଗାପୁର, ମାଲୟ ଓ ବର୍ମାର ପରିସ୍ଥିତି ଏ ଦେଶରେ ସୃଷ୍ଟି ନ କରୁ ।

ଏହିପରି ପରିସ୍ଥିତିରେ ୧୯୪୨ ମସିହା ଜୁଲାଇ ମାସରେ ଗୋପବାବୁ ସେବାଗ୍ରାମ ଗଲେ । ସେଠାରୁ ଫେରି ବରୀ ଅଞ୍ଚଳର କର୍ମୀମାନଙ୍କର ଗୋଟିଏ ବୈଠକ ସେବାଘରକୁ ଡ଼ାକିଲେ । ସେହି ବୈଠକରେ ସେ କହିଲେ ଯେ ଗାନ୍ଧିଜୀ ଗୋଟିଏ ଆନ୍ଦୋଳନ ଆରମ୍ଭ କରିବା ପାଇଁ ଦେଶବାସୀଙ୍କୁ ଡ଼ାକରା ଦେବା କଥା ଭାବୁଛନ୍ତି । ଆନ୍ଦୋଳନର ରୂପରେଖ କଅଣ ହେବ, ତାହା ସେ ଏ ପର୍ଯ୍ୟନ୍ତ କଳ୍ପନା କରି ନାହାନ୍ତି । ମାତ୍ର ଏଥରର ଆନ୍ଦୋଳନ ଅନ୍ୟ ସବୁ ଆନ୍ଦୋଳନ ଅପେକ୍ଷା ଅଧିକ ତୀବ୍ର ହେବ । ଏହି ଅହିଂସା ଆନ୍ଦୋଳନରେ ଯଦି ଅକସ୍ମାତ ଚୌରୀଚୌରା ପରି କୌଣସି ହିଂସାକାଣ୍ଡ ଘଟିବ, ସେଥିପାଇଁ ସେ ଆନ୍ଦୋଳନ ଯେ ପ୍ରତ୍ୟାହାର କରିବେ ନାହିଁ ତାହାର ଆଭାସ ମଧ୍ୟ ତାଙ୍କ କଥାବାର୍ତ୍ତାରୁ ମିଳିଲା । ଏହି ଆଲୋଚନା ପରେ ଆମେ ମନେ ମନେ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହୋଇଗଲୁ ।

ଧାରା ଶ୍ରାବଣ । ଅଗଷ୍ଟ ଦଶ ତାରିଖ ସକାଳ । ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟ ପରିସରର ଦିନଚର୍ଯ୍ୟା ଯଥାରୀତି ଆରମ୍ଭ ହୋଇଥାଏ । ଛାତ୍ରାବାସ ପିଲାଏ ଜଳଖିଆ ଖାଇ ସ୍କୁଲକୁ ଯାଇ ସାରିଥାନ୍ତି । ବାଗ୍‌ଦାର ମୁରଲୀ ଜେନା ଆସି ମୋ ହାତକୁ ଖଣ୍ଡେ ଚିଠି ବଢ଼ାଇ ଦେଲା । ମଙ୍ଗଳା ଦେବୀ ଚୁମ୍ବକରେ ଲେଖିଛନ୍ତି । ଗୋପବାବୁ ପ୍ରଭୃତି କଟକରେ ଗିରଫ ହୋଇ ଗଲେଣି । ଗୁଣନିଧି ବାବୁ ଆସିଛନ୍ତି । ତୁ ଓ ଶରତ୍‌ବାବୁ ଶୀଘ୍ର ସେବାଘରକୁ ଆସ । ରାମଚନ୍ଦ୍ରପୁରରୁ ସେବା ଘରର ଦୂରତ୍ୱ ଅଢ଼େଇ ମାଇଲ ବା ଚାରି କିଲୋମିଟର । ଆମେ ଦୁହେଁ ତତ୍‌କ୍ଷଣାତ୍ ପଦବ୍ରଜରେ ସେବାଘର ଆଡ଼କୁ ଚାଲିଲୁ । ସେବାଘରେ ପହଞ୍ଚି ଗୁଣନିଧି ବାବୁଙ୍କ ଠାରୁ ଶୁଣିଲୁ ଯେ ଗୋପବାବୁ, ନବବାବୁ, ରମାଦେବୀ, ମନମୋହନ ବାବୁ, ପଢ଼ିହାରୀ ମହାଶୟ ଆଦି ମୁଖ୍ୟ ମୁଖ୍ୟ କର୍ମୀ ସମସ୍ତେ ଏକାଦିନେ ଗିରଫ ହୋଇ ଯାଇଛନ୍ତି । ସେମାନଙ୍କ ସହିତ କୌଣସି ପ୍ରକାର ପରାମର୍ଶ କରିବାକୁ ସୁଦ୍ଧା କେହି ସମୟ ପାଇଲେ ନାହିଁ । କେବଳ ମାଳତୀ ଚୌଧୁରୀ ବମ୍ବେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରୁ ଫେରି ନାହାନ୍ତି । ସେବାଘର ଦଖଲ କରିନେବାକୁ ବିଂଝାରପୁର ଥାନାକୁ ନିର୍ଦ୍ଦେଶ ଆସିଗଲାଣି । ତେଣୁ ଗୁଣନିଧିବାବୁ ସେବା ଘର ଦଖଲ କରେଇ ନ ଦେବାକୁ ଏଠାକୁ ଆସିଛନ୍ତି । ଏହାର ଅର୍ଥ ହେଲା ସେବାଘରେ ଗିରଫ ହେବା ପାଇଁ ସ୍ଥିର କରିଛନ୍ତି । ମେଘ ଦେଖିଲେ ମୟୁର ଯେପରି ନାଚିବା ଆରମ୍ଭ କରେ, ଆନ୍ଦୋଳନ ଆରମ୍ଭ ହେବା ଖବର ପାଇ ଆମ ମନମୟୁର ସେହିପରି ନୃତ୍ୟ ଆରମ୍ଭ କରିଦେଲା । ସଙ୍ଗେ ସଙ୍ଗେ ଗୋବର୍ଦ୍ଧନ ବାବୁ (ପ୍ରଧାଣ) ଓ ଭଗୀରଥ ବାବୁ (ଦାସ) ମଧ୍ୟ ଖବର ପାଇ ସେବାଘରେ ଆସି ପହଞ୍ଚିଲେ । ସ୍ଥିର ହେଲା ଗୁଣନିଧିବାବୁ ଓ ମଙ୍ଗଳାଦେବୀ ସେବାଘରେ ରହିବେ । ଶରତ୍ ବାବୁ ଓ ଚୂନୀ କଟକ ଯାଇ ଗୋପବାବୁ ବା ରମାଦେବୀଙ୍କୁ ସାକ୍ଷାତ୍ କରିବା ପାଇଁ ଚେଷ୍ଟା କରିବେ । ନିଖିଳ ଭାରତ କଂଗ୍ରେସ କମିଟିର ସଭ୍ୟମାନଙ୍କ ମଧ୍ୟରୁ କେହି ଯଦି ଓଡ଼ିଶା ଫେରି ପାରିଥିବେ ସେମାନଙ୍କ ସହିତ ଯୋଗସୂତ୍ର ରକ୍ଷା କରି ଆନ୍ଦୋଳନ ଆରମ୍ଭ ହେବ । ଏହି ଆଲୋଚନା ନ ସରୁଣୁ ବିଂଝାରପୁରରୁ ପୁଲିସ ସବଇନ୍‌ସପେକ୍ଟର ନବାବ ଖାଁ ସେବାଘର ଦଖଲ ପରୁଆନା ଧରି ପହଞ୍ଚିଗଲେ । ମଙ୍ଗଳାଦେବୀ ଓ ଗୁଣନିଧିବାବୁ ତାଙ୍କୁ ଜଣାଇ ଦେଲେ ଯେ ସେ ଦୁହେଁ ସେବାଘର ଦଖଲ ଛାଡ଼ିବେ ନାହିଁ । ଏ ପ୍ରକାର ପରିସ୍ଥିତି ଉପୁଜିଲେ କି ପଦକ୍ଷେପ ନେବାକୁ ହେବ, ସେ ଆଦେଶ ସବ୍‌ଇନ୍‌ସପେକ୍ଟରଙ୍କୁ ମିଳି ନ ଥିଲା । ସେଥିପାଇଁ ସେ ଯାଜପୁରକୁ ଏ ବିଷୟରେ ଆଦେଶ ମାଗି ଧାଉଡ଼ିଆ ପଠାଇଲେ । ବରୀରୁ ଯାଜପୁର ପ୍ରାୟ ବାର

ମାଇଲ । ବର୍ଷା ଦିନ, ନଈ ପାରି । ଲେଉଟ ଖବର ଆସୁ ଆସୁ ଏଗାର ତାରିଖ ହେଲା । ପୁଲିସ୍ ଦୁହିଁଙ୍କୁ ଗିରଫ କଲେ । କିନ୍ତୁ ଘରେ ଚାବି ପକାଇବା ଉପାୟ ନାହିଁ, କାରଣ ପଲାଘର ବାଉଁଶ କବାଟରେ ଶିକୁଳି ନାହିଁ । ସବ୍‌ଇନ୍‌ସପେକ୍ଟର ଜଗୁଆଳି ରଖିଦେଇ ଗଲେ ।

ଆମେ ଦୁହେଁ ରାମଚନ୍ଦ୍ରପୁର ଫେରି ଆସିଲୁ । ସେତେବେଳେ ଯେଉଁ ସାତଟି ବେସରକାରୀ ମୌଳିକ ସ୍କୁଲ ଚାଲିଥିଲା, ତା'ର ଶିକ୍ଷକମାନଙ୍କର ଗୋଟାଏ ଜରୁରୀ ବୈଠକ ଡ଼କା ହେଲା । ବୈଠକରେ ସ୍ଥିର ହେଲା ଆମେ କଟକରୁ ଆନ୍ଦୋଳନ ସମ୍ପର୍କରେ ବୁଝାସୁଝା କରି ଆସିଲେ କାମ ଆରମ୍ଭ ହେବ । ମୌଳିକ ଶିକ୍ଷା ପରିଷଦର ଶିକ୍ଷକଙ୍କ ମଧ୍ୟରୁ ଜଣେ ଶିକ୍ଷକଙ୍କ ଛଡ଼ା ଆଉ ସମସ୍ତେ ଆନ୍ଦୋଳନରେ ଯୋଗ ଦେବାକୁ ନିଷ୍ପତ୍ତି କଲେ ।

ଦୁହେଁ କଟକ ଅଭିମୁଖେ ବାହାରିଲୁ । ରାମଚନ୍ଦ୍ରପୁରରୁ ଯାଜପୁର ପ୍ରାୟ ପନ୍ଦର ମାଇଲ । ତହିଁକୁ ବର୍ଷାଦିନ । ବାଜିରୀ ବରଗଛ ପାଖରେ ବେଳ ବୁଡ଼ିଗଲା । ପାଟ ପାରି ହୋଇ ଖରସୁଆଁ କୂଳରେ ପହଞ୍ଚିଲା ବେଳକୁ ରାତି । ମେଘ ଘୋଟି ତାରାଟିଏ ସୁଦ୍ଧା ଦିଶୁ ନ ଥାଏ । ଭଜକୃଷ୍ଣନାଥ ଲଣ୍ଠନଟିଏ ଧରି ଆମକୁ ବାଟେଇ ଦେବାକୁ ଯାଇଥାନ୍ତି । ଘାଟ ନାହା ଆରପାରିରେ ଥାଏ । କାର୍ତ୍ତିକ ରାଡ଼ୀଙ୍କୁ ବହୁତ ଡ଼ାକ ମାରିବାରୁ ସେ ଏପାରିକି ନାହା ଆଣି ଲଣ୍ଠନ ଆଲୁଅରେ ଆମ ମୁହଁ ଦେଖି ଘୋଷଣା କଲେ ଯେ ନଈରେ ମଉଜା ଉଠେଇଛି । ତମକୁ ନାହାରେ ପାରି କରିବାକୁ ମୋ ଛାତି ପତଉ ନାହିଁ । ଆମେ ବହୁତ ବଳେଇଲାରୁ ହୁଲିରେ ପାରି କରିଦେବାକୁ ରାଜି ହେଲେ । ଗୁହାଳୀରେ ପହଞ୍ଚି ରେବା ରାୟଙ୍କ ଦେବୀମେଲାରେ ରାତି କଟେଇଲୁ । ଜାଗୁଲୁ ଜାଗୁଲୁ ରାତି ପାହି ଆସୁଥାଏ, ଯାଜପୁର ମୁହାଁଇଲୁ ।

କଟକରେ ପହଞ୍ଚି ଜାଣିଲୁ ଜଣେ ସୁଦ୍ଧା ନିଖିଳ ଭାରତ କଂଗ୍ରେସ କମିଟି ସଦସ୍ୟ ବମ୍ବେରୁ ଫେରି ନାହାନ୍ତି । ହଠାତ୍ ଗିରଫଦାରୀ ଫଳରେ କଟକରେ ଗୋଟାଏ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା ସୃଷ୍ଟି ହୋଇଥାଏ । ସଭାଟିଏ ସୁଦ୍ଧା ହୋଇ ପାରି ନ ଥାଏ । ଗୋପବାବୁ ପ୍ରଭୃତିଙ୍କ ସଙ୍ଗେ ଦେଖା କରିବା ଉଦ୍ଦେଶ୍ୟରେ ଜେଲ୍ ଫାଟକକୁ ଯାଇ ଜାଣିଲୁ ଯେ ଭାରତ ସରକାରଙ୍କ ଆଦେଶ ନ ଆସିବା ଯାଏ ସିକ୍ୟୁରିଟି ପ୍ରିଜନରଙ୍କୁ କୌଣସି ମୁଲାକାତୀ ଦିଆଯିବ ନାହିଁ । ସବୁ ଆଶା ପାଣି ଫାଟିଲା । ରାତି ହେଲାରୁ ଆମେ ଦୁହେଁ ଓ ନବବାବୁଙ୍କ ଝିଅ ଉତ୍ତରା ତେଲେଙ୍ଗା ବଜାର ହେମନ୍ତ ବାବୁ ଓକିଲଙ୍କ ବସାକୁ

ଗଲୁ । ଅନିଲ ବାବୁ(ଘୋଷ) ଓ ଦାଶରଥି ବାବୁ(ବେହେରା) ସେଠାକୁ ଆସିଲେ । ବହୁ ଆଲୋଚନା ପରେ କଟକରେ ଗୋଟାଏ ସାଧାରଣ ସଭା କରିବା ସ୍ଥିର ହେଲା । ସମସ୍ତେ ତ ଗିରଫ ହେବା ପାଇଁ ଉତ୍ସୁକ ହୋଇ ରହିଥାଉ । ଏଣେ ଆନ୍ଦୋଳନ ଚଳାଇବା ମୋହ ମଧ୍ୟ ଥାଏ । ଗୌରୀଶଙ୍କର ପାର୍କ ପାଖରେ ପରଦିନ (୧୨.୮.୪୨) ସଂଧ୍ୟାକୁ ସଭା ହେବ ଏବଂ ଦାଶରଥୀବାବୁ ସେ ସଭାରେ ଭାଷଣ ଦେବେ ବୋଲି ସ୍ଥିର ହେଲା ।

ତେଲେଙ୍ଗା ବଜାରରୁ ଫେରି ଖବର ପାଇଲୁ ଯେ ମାଳତୀ ଦେବୀ ବମ୍ବେରୁ ମାନ୍ଦ୍ରାଜ ବାଟେ ଆସି ଭୁବନେଶ୍ୱରରେ ଭୁବନାନନ୍ଦ ଦାସଙ୍କ ଘରେ ପହଞ୍ଚିଛନ୍ତି । ଆମ ପାଇଁ ସେ ଖଣ୍ଡିଏ ଛୋଟିଆ ହାତଲେଖା କାଗଜ ପଠାଇଥାଆନ୍ତି । ତାହାର ଶିରୋନାମା ଥାଏ 'କର ବା ମର' । ସରକାରୀ ବ୍ୟବସ୍ଥାକୁ ଅଚଳ କରିଦେଇ ସମାନ୍ତରାଳ ସ୍ୱାଧୀନ ସରକାର ଗଢ଼ିବା, ସରକାରୀ କର୍ମଚାରୀଙ୍କୁ ଚାକିରୀ ଛାଡ଼ିବା ପାଇଁ ପ୍ରବର୍ତ୍ତାଇବା, ଗ୍ରାମେ ଗ୍ରାମେ ମରଣସେନା ସଂଗଠନ କରିବା, ରେଳ ଡ଼ାକ ଆଦି ଯୋଗାଯୋଗ ନଷ୍ଟ କରି ଦେବାକୁ ସେଥିରେ ନିର୍ଦ୍ଦେଶ ଦିଆ ହୋଇଥାଏ । ପୂର୍ବ ଆନ୍ଦୋଳନମାନଙ୍କରେ ଏ ଧରଣର କାର୍ଯ୍ୟକ୍ରମ ନ ଥିଲା । ଗାନ୍ଧୀ-ବିଚାର ଅନୁସାରେ ଏ କାର୍ଯ୍ୟକ୍ରମ ଅହିଂସ କି ନାହିଁ ଏହା ବୁଝାଇବାକୁ କେହି ନେତା ଜେଲ୍ ବାହାରେ ନ ଥିଲେ । ବୁଡ଼ିଗଲା ଲୋକକୁ କୁଟାଖିଅ ଆଶ୍ରା ପରି ଆମେ ଏ କାର୍ଯ୍ୟକ୍ରମକୁ ପାଇ ବର୍ତ୍ତିଗଲୁ । ପରଦିନ ସଭାରେ ଜନସାଧାରଣଙ୍କୁ ଏହି କାର୍ଯ୍ୟକ୍ରମ ଶୁଣାଇ ଦେବା ସ୍ଥିର ହେଲା । ତା' ପରଦିନ ଗୌରୀଶଙ୍କର ପାର୍କରେ ସଭା ହେଲା । ବହୁତ ଲୋକ ଜମିଲେ । ଦାଶରଥୀ ବାବୁ ବକ୍ତୃତା ଦେବାକୁ ଠିଆ ହେଲାରୁ ପୁଲିସ୍ ତାଙ୍କୁ ଗିରଫ କଲେ । ଉପସ୍ଥିତ ଜନତା ଗୋଟିଏ ଶୋଭାଯାତ୍ରା କରି ଚୌଧୁରୀ ବଜାର ଆଡ଼କୁ ମୁହାଁଇବା ମାତ୍ରେ ପୁଲିସ୍ ଲାଠିକୁ ଲାଠି ଛନ୍ଦି ଦେଇ ଲୋକଙ୍କୁ ଅଟକାଇଲେ ।। ଲୋକେ କିଛି ସମୟ ଅଟକି ଜୟଧ୍ୱନି ଦେଇ ଖେଳେଇ ହୋଇଗଲେ । ସେହି ରାତିରେ ମାଳତୀ ଦେବୀ ଛଦ୍ମ ବେଶରେ କଟକ ଆସି ଆମକୁ ନି.ଭା.କଂ. କମିଟି ବୈଠକର ବିବରଣୀ, ବମ୍ବେରେ ସଭା, ଲୁହବୁହା ଗ୍ୟାସ ପ୍ରୟୋଗ, ଲାଠି ଚାର୍ଜ ଆଦି ଖବର ଶୁଣାଇଲେ ଏବଂ ପରଦିନ କଲେଜ ଛକରେ ସଭା କରି ଗିରଫ ହେବେ ବୋଲି କହିଲେ ।

ରାମଚନ୍ଦ୍ରପୁରକୁ ଲେଉଟି ଆସି ଶିକ୍ଷକମାନଙ୍କ ସହିତ ଆନ୍ଦୋଳନର କାର୍ଯ୍ୟକ୍ରମ କଥା ଆଲୋଚନା ହେଲା । ଏହାକୁ ଗାଁଏ ଗାଁଏ କାର୍ଯ୍ୟକାରୀ କରିବା ପାଇଁ ଲାଗି ପଡ଼ିଲୁ । ବ୍ରାହ୍ମଣୀ ନଦୀର ଦୁଇ କୂଳରେ ଥିବା ଗାଁଗୁଡ଼ିକରେ ସଭା କରି ଚୌକିଦାର,

ଦଫାଦାର ଓ ପ୍ରେସିଡ଼େଣ୍ଟଙ୍କ ଇସ୍ତଫାପତ୍ର ସଂଗ୍ରହ କରିବା, ଚଉକିଦାର ପୋଷାକ ପୋଡ଼ିବା, ଗାଁ ପଞ୍ଚାୟତ ଗଢ଼ିବା, ମରଣସେନା ସଂଗଠନ କରିବା କାମ ଜୋର୍‌ସୋର୍‌ରେ ଚାଲିଲା ।

ବରୀ ପଟରେ ସେବାଘରୁ ମଙ୍ଗଳା ଦେବୀ ଓ ଗୁଣନିଧି ବାବୁ ଗିରଫ ହେବା ଖବର ପାଇ କଲ୍ୟାଣପୁରରୁ ଗୋଦାବରୀ ଦେବୀ ଅଟିରାରୁ ଶକୁନ୍ତଳା ଓ ରଳୋଙ୍ଗରୁ କିରଣଲେଖା ଆସି ସେବାଘର ପୁନର୍ଦଖଲ କଲେ । ଭଗୀରଥବାବୁ, ପ୍ରିୟମ୍ବଦା ଦେବୀ, ହରପ୍ରିୟା ଦେବୀ ଓ ଉଷାଦେବୀଙ୍କ ସହିତ ଦଳବଦ୍ଧ ହୋଇ ସେମାନେ ବରୀରୁ ବାଲିଆପାଳ ମଧ୍ୟରେ ଥିବା ଗାଁମାନଙ୍କରେ ସଭା କଲେ । ଗୋବର୍ଦ୍ଧନ ପୁହାଣ, ବୀରବର ରଥ, ଅକ୍ରୁର ଜେନା ଆଦି ଅରଂଗାବାଦ, ଧାରପୁର ଆଦି ଅଞ୍ଚଳରେ ସଂଗଠନ କଲେ । ବୈଦ୍ୟନାଥ ଖରସୂଆ ସେପାରିରେ, ବାଞ୍ଛାନିଧି ବାଇଁଶିରିଆରେ, ଋଙ୍ଗାଧରବାବୁ ଅମଟପୁରରେ, ବାସୁଦେବ ସାମଲ ବାଲିବିଲରେ, ପଦ୍ମନାଭ ରାୟ ଛତ୍ରପଡ଼ାରେ, ମଧୁବାବୁ ଅଲିଆବାଦରେ, ରତ୍ନଗିରିରେ ଜଗବନ୍ଧୁ ଜେନା, ବାଗଦାରେ ରତ୍ନାକର, ଯଦୁ ଆଦି ବହୁ ଗ୍ରାମବାସୀ ବାହାରି ସଭା ଆଦି କରିବା ଫଳରେ ବରୀ ଅଞ୍ଚଳ ତାତିଲା । ପୁରୀର ମଧୁନନ୍ଦ ଓ ବାଗଲପୁରର ଜଗନ୍ନାଥ ଦାସ ରାମଚନ୍ଦ୍ରପୁରରେ ଶିକ୍ଷକ ତାଲିମ୍ ନେଉଥିଲେ । ବିଂଝାରପୁର ଥାନା ପୋଡ଼ିବା ପାଇଁ କଳ୍ପନା ଜଳ୍ପନା ଚାଲିଲାରୁ ଜଗନ୍ନାଥ ଦାସ ବାଗଲପୁର ଫେରିଯାଇ ସେଠାରେ ଆନ୍ଦୋଳନ ଚଳାଇଲେ । ମଧୁନନ୍ଦ ପ୍ରଚାର କାର୍ଯ୍ୟରେ କାଇପଡ଼ା ଯାଇଥିଲେ । ଥାନା, ଡ଼ାକଘର ଦଖଲ କରିଦେବା କଥାଟା ତାଙ୍କ ମୁଣ୍ଡରେ ଥାଏ । କାଇପଡ଼ା ଡ଼ାକଘରେ ପଶି ସେ ଡ଼ାକ ମୁନସୀକୁ ଚାକିରୀରୁ ଇସ୍ତଫା ଦେବା ପାଇଁ ବୁଝାଉ ବୁଝାଉ ଡ଼ାକଘର କାଗଜପତ୍ର ଟାଣି ଆଣି ପୋଡ଼ି ଦେଲେ । ସେ ପର୍ଯ୍ୟନ୍ତ ଡ଼ାକଘର ପୋଡ଼ିବା କାର୍ଯ୍ୟକ୍ରମ କଥା ବିଚାରକୁ ଆସି ନ ଥାଏ । ବିନା ପରାମର୍ଶରେ ଏହା କରି ରାମଚନ୍ଦ୍ରପୁରରେ ଆମକୁ ଏ ଖବର ଶୁଣାଇ ସେ ପ୍ରଚାର କାର୍ଯ୍ୟରେ କୁଶୁପୁର ଆଡ଼େ ଚାଲିଗଲେ ।

କଟକରେ ସରକାରୀ ମହଲରେ ଚହଳ ପଡ଼ିଗଲା ଯେ ବରୀରେ ସରକାରୀ କଳ ଆଉ କାମ କରୁନାହିଁ । ପୁଣି କାଦୁଅ ଯୋଗୁ ବରୀକୁ ଯିବାକୁ ସରକାରୀ ଲୋକଙ୍କୁ ସୁହାଏ ନାହିଁ । ତଥାପି ଡ଼ାକଘର କାଗଜ ପୋଡ଼ା ଖବର ପାଇ କଟକରୁ ପୁଲିସ ଫଉଜ କାଇପଡ଼ା ଆସିଲେ । ଯୋଗକୁ ଠିକ୍ ସେହିଦିନ କାଇପଡ଼ା ଗୋଲାରେ ଗୋଟିଏ ସଭା ହେବା ସ୍ଥିର ହୋଇଥାଏ । ବେସରକାରୀ ମୌଳିକ ସ୍କୁଲ ଶିକ୍ଷକ ଋଷି ବେହେରା

କାଇପଡ଼ା ଓ ତା' ଆଖପାଖ ଗାଁରେ ଆନ୍ଦୋଳନ ଦାୟିତ୍ୱରେ ଥାନ୍ତି । ସେଦିନ ସଭାରେ ସେ ଭାଷଣ ଦେବା ସ୍ଥିର ହୋଇଥାଏ । ଶରତ୍‌ବାବୁଙ୍କର ମଧ୍ୟ ସେ ସଭାକୁ ଯିବାର ଥିଲା । ସେ ଜ୍ୱରରେ ଶଯ୍ୟାଶାୟୀ ହେବାରୁ ଚୁନୀ କାଇପଡ଼ା ଯିବା ସ୍ଥିର ହେଲା । ପ୍ରାୟ ଦିନ ଗୋଟାଏ ବେଳେ କାଇପଡ଼ା ଅଭିମୁଖେ ବାହାରିଲି । ସନ୍ୟାସୀପୁର ତୋଟାରେ ଦେଖିଲି ହାଟସାହିର କୃଷ୍ଣ, ରାମ ଆଦି ମରଣସେନାରେ ନାମ ଲେଖାଇଥିବା ଯୁବକମାନେ ଖୁବ୍ ଉତ୍ତେଜିତ ହୋଇ କାଇପଡ଼ା ଆଡୁ ଆସୁଛନ୍ତି । ସେମାନେ ତୋଟାରେ ମୋତେ ଦେଖି ଏକାସାଙ୍ଗରେ ପାଟିକରି କଥା କହି ଲାଗିଲେ । ଅନେକ କଷ୍ଟରେ ବୁଝିଲି ଯେ କାଇପଡ଼ାକୁ ବନ୍ଧୁକଧାରୀ ଫଉଜ ଆସିଥିବା ଖବର ପାଇ ସେମାନେ କାଇପଡ଼ା ଗୋଲାକୁ ଫଉଜ ଦେଖିବାକୁ ଆସିଥିଲେ । ପୂର୍ବରୁ ତ ସେଠାରେ ସଭା ହେବା କଥା ଥିଲା । ତେଣୁ ଆଉ ଅନେକ ଗାଁ ଲୋକ ମଧ୍ୟ ଜମା ହେଲେ । ଲୋକ ଗହଳି ବଢ଼ି ଲାଗିବାରୁ ପୁଲିସ୍ ସାହେବ ପଚାରିଲେ- ତୁମେମାନେ ଏଠାରେ କାହିଁକି ଜମା ହୋଇଛ ? ହୃଷିଭାଇ (ରାୟ) କହିଲେ - ଆଜି ଏଠାରେ ସଭା ହେବ । ପ୍ରଶ୍ନ ହେଲା କିଏ ସଭା କରିବ ? ଉତ୍ତର ମିଳିଲା - 'ରମାଦେବୀ' । ପୁଲିସ୍ ସାହେବ ହସିଲେ । କାରଣ ରମାଦେବୀ ସେତେବେଳେ ଜେଲ୍‌ରେ । ପୁଲିସ୍ ସାହେବ ଭିଡ଼ ଭାଙ୍ଗିଦେବାକୁ ହୁକୁମ ଦେବାରୁ ଫଉଜ ବେୟନଟ ଝମଝମ କରି ଲୋକଙ୍କ ଆଡ଼କୁ ମାଡ଼ି ଆସିଲେ । ଫଳରେ ବହୁ ଲୋକ ପଳେଇଗଲେ । କିନ୍ତୁ ମରଣ ସେନା ତ ପଛଘୁଞ୍ଚା ଦେବେ ନାହିଁ । ସେମାନେ ନିଜ ନିଜ ସ୍ଥାନ ଛାଡ଼ିଲେ ନାହିଁ । ପୁଲିସ ସାହେବଙ୍କ ହୁକୁମରେ ହୃଷିଭାଇ ପ୍ରଭୃତି କେତେଜଣଙ୍କୁ ଗିରଫ କରି ନିଆଗଲା । କୃଷ୍ଣ ପ୍ରଭୃତିଙ୍କ ବକ୍ତବ୍ୟ ହେଲା - ଆଜି କାଇପଡ଼ାରେ ସଭା କରିବାକୁ ଯେତେବେଳେ କୁହାଯାଇଛି, ସେଠାରେ ନିଶ୍ଚୟ ସଭା କରିବାକୁ ହେବ । କୃଷ୍ଣ ଉଚ୍ଛନ୍ନ ହୋଇ କହୁଥାନ୍ତି । ଆମ ଭାଇଙ୍କୁ ଧରି ନେଇଗଲେ । ଚାଲ ଆମେ ତାଙ୍କୁ ଖଲାସ କରି ଆଣିବା । ଋଷିବାବୁଙ୍କ ନେତୃତ୍ୱରେ ସେମାନେ କାଇପଡ଼ା ଆଡ଼କୁ ମୁହାଁଇଲା ବେଳକୁ କେହି ଜଣେ ଧାଇଁ ଧାଇଁ ଆସି କହିଲେ ଯେ ପୁଲିସ ଫଉଜ ହୃଷିଭାଇ ପ୍ରଭୃତିଙ୍କୁ ନେଇ ପାଟରେ ଥିବା ଡ଼ଙ୍ଗା ଆଡ଼କୁ ଯାଉଛନ୍ତି । ଅଳ୍ପ କେତେଜଣ ପୁଲିସ କାଇପଡ଼ା ଗୋଲାରେ ଅଛନ୍ତି । ଏକଥା ଶୁଣିବା ମାତ୍ରେ ସେମାନେ ଡ଼ଙ୍ଗା ପାଖକୁ ଯାଇ ପୁଲିସକୁ ଚାକିରୀ ଛାଡ଼ିବାକୁ ଓ ହୃଷିଭାଇ ପ୍ରଭୃତିଙ୍କୁ ଛାଡ଼ିଦେବା ପାଇଁ ଦାବୀ କରିବାକୁ ପାଟ ଆଡ଼କୁ ଧାଇଁଲେ । ସନ୍ୟାସୀପୁରର ଗଦାଧର ପାଲିତ ସେହି ତୋଟାରେ ଉପସ୍ଥିତ ଥିଲେ । କାଳେ ପୁଲିସ ଡ଼ଙ୍ଗାରେ ପଳେଇବେ, ସେଥିପାଇଁ ସେମାନେ ପବନ

ପରି ଉଡ଼ି ଚାଲିଥାନ୍ତି । ମୁଁ ସେମାନଙ୍କ ସଙ୍ଗେ ତାଳ ରଖି ଚାଲି ନ ପାରି ଆଉ ଗୋଟାଏ ଅବାଟରେ ବାଡ଼ ଡ଼େଇଁ ପଶି ପାଟକୁ ଯିବାକୁ ଧାଇଁଲି । ଅବାଟରେ ଦଉଡ଼ୁ ଦଉଡ଼ୁ ଗୋଟିଏ ଉଚ୍ଚ କିଆବାଡ଼ ପଡ଼ିଲା । ଜଣେ ଲୋକ ସେଠାରେ କ'ଣ କାମ କରୁଥିଲେ । ତାକୁ ପାଟକୁ ଯିବା ବାଟ ପଚାରୁ ପଚାରୁ ଗୁଳି ଫୁଟିବା ଶବ୍ଦ ଶୁଣାଗଲା । ସେ ଲୋକଙ୍କୁ ସାଙ୍ଗରେ ଧରି ଦଉଡ଼ି ଦଉଡ଼ି ଯାଇ ଦେଖିଲି ହାଟସାହି ରାମଙ୍କୁ ଦୁଇଜଣ ଟେକି ଆଣୁଛନ୍ତି । ତା'ଦେହରୁ ରକ୍ତ ଝରୁଛି । ପିନ୍ଧା ଶାଢ଼ୀର ପଣତ ଚିରି ତା' କ୍ଷତ ବ୍ୟାଣ୍ଡେଜ କରି ଆଗକୁ ଆଗେଇଲା ବେଳକୁ ହାଡ଼ିବନ୍ଧୁ ପଣ୍ଡା ଓ ସାଉଁଟି ମଳିକଙ୍କୁ ଟେକି ଆଣିବାର ଦେଖିଲି । ସୁପ୍ରଭାତ ସେମାନଙ୍କ ସାଙ୍ଗରେ ଆସୁଥାଏ । ତା'ର ବୟସ ସେତେବେଳେ ନଅବର୍ଷ ହେବ । ତା'ର ବାହୁ ବାୟୋନଟ୍‌ରେ ଖଣ୍ଡିଆ ହୋଇ ରକ୍ତ ବୋହି ଯାଉଥାଏ । ତା' ବ୍ୟାଣ୍ଡେଜ ବାନ୍ଧିବା ବେଳେ କୃଷ୍ଣ ଦଉଡ଼ି ଆସି କହିଲେ ପାଟରେ ମାୟାଧର ଭୂୟାଁ ପଡ଼ି ରହିଛନ୍ତି । ସେତେବେଳକୁ ସାନନ୍ଦ ସ୍ୱାଇଁଙ୍କୁ ମଧ୍ୟ ଲୋକେ ଟେକି ଆଣିଲେଣି । ମୁଁ ମାୟାଧର ପାଖକୁ ଯିବାକୁ ବାହାରିବାରୁ ଉପସ୍ଥିତ ଲୋକେ କହିଲେ - ଫଉଜ ବର୍ତ୍ତମାନ ରକ୍ତମୁଖା ହୋଇଛନ୍ତି, ଆପଣ ପାଟକୁ ଯାଆନ୍ତୁ ନାହିଁ । ମାୟାଧରଙ୍କୁ ପାଟରେ ଛାଡ଼ିଦେଇ ମୁଁ ଆସିବି କିପରି ? ମୁଁ ଏକୁଟିଆ ପାଟ ଆଡ଼କୁ ଦଉଡ଼ିଲାରୁ କୃଷ୍ଣ ଓ ସୁପ୍ରଭାତ ମୋ ସାଙ୍ଗରେ ଗଲେ । ପାଟରେ ପହଞ୍ଚି ଦେଖିଲି ମାୟାଧର ମୁହଁମାଡ଼ି ପଡ଼ିଛନ୍ତି । ତାଙ୍କର ଡ଼ାହାଣ ପାଖ କଣ୍ଠାହାଡ଼ ସନ୍ଧିରେ ବେୟନଟ ଫୁଟାଇ ଦିଆହୋଇଛି । ସେଥିରୁ ରକ୍ତସ୍ରାବ ହୋଇ ସେହି ସ୍ଥାନରେ ଥିବା ଗୋଟିଏ ଛୋଟ ଖାଲିଆରେ ପାଦ ବୁଡ଼ିଯିବା ଭଳି ରକ୍ତ ଜମା ହୋଇଛି । କୃଷ୍ଣ, ସୁପ୍ରଭାତ ଓ ମୁଁ ମାୟାଧରଙ୍କୁ ଉଠାଉ ଉଠାଉ ଦେଖିଲୁ ଯେ ପୁଲିସ ଫଉଜ ଡ଼ବଲ ମାର୍ଚ୍ଚ କରି ପୁଣି କାଇପଡ଼ା ଆଡ଼କୁ ଆସୁଛନ୍ତି । ମୁଁ ସେତେବେଳେ ଭାବୁଥାଏ ମାୟାଧର ବଞ୍ଚିଛନ୍ତି । ମାନବିକତାର ଦ୍ୱାହି ଦେଇ ମାୟାଧରଙ୍କୁ ପୁଲିସ ଡ଼ଙ୍ଗାରେ ବିଂଝାରପୁର ଡ଼ାକ୍ତରଖାନାକୁ ନେଇ ଯିବାକୁ ମୁଁ ଫଉଜ ସରଦାରଙ୍କୁ କହିଲି - ଅବଶ୍ୟ ଭାଷା କଠୋର ହୋଇଗଲା । ସେମାନେ କୌଣସି ଜବାବ ନ ଦେଇ ଗୋଲା ଆଡ଼େ ଗଲେ ଓ ଗୋଲାରେ ଛାଡ଼ି ଆସିଥିବା ପୁଲିସ ସିପେଇଙ୍କୁ ସାଙ୍ଗରେ ଧରି ଡ଼ଙ୍ଗାକୁ ଫେରି ଆସିଲେ । ଏହି ହତ୍ୟାକାଣ୍ଡ ପରେ ସେମାନେ ସନ୍ତ୍ରସ୍ତ ହୋଇ ପଡ଼ିଥିବାଟା ସ୍ପଷ୍ଟ ଜଣା ପଡୁଥାଏ । କୃଷ୍ଣ ଓ ମୁଁ ମାୟାଧରଙ୍କ ଶବକୁ ଉଠାଇ ଟେକି ଟେକି ପାଟରୁ ସଡ଼କକୁ ଆଣିଲୁ । ପୁଲିସ ଚାଲିଯିବାର ଜାଣି ଲୋକେ ଗୋଟି ଗୋଟି ହୋଇ ଆସି ମାୟାଧରଙ୍କୁ କାନ୍ଧେଇ ହାଟସାହିକୁ ଆଣିଲେ । ହାଟସାହିରେ ପହଞ୍ଚି ଶୁଣିଲି ସାଉଁଟିର ଶବକୁ ବ୍ରାହ୍ମଣୀରେ

ଭସାଇ ଦିଆଯାଇଛି । ଗ୍ରାମବାସୀ ମାୟାଧରଙ୍କ ଶବକୁ କାନ୍ଧେଇ ଗ୍ରାମ ପ୍ରଦକ୍ଷିଣ କରାଇ ଅଜାଣ ପଡ଼ିଆରେ ସମାଧି ଦେଲେ । ନିଧି ସାମଲ, ରାମ ପ୍ରଭୃତିଙ୍କୁ ଚିକିତ୍ସା ପାଇଁ ଡ଼ଙ୍ଗାରେ କେନ୍ଦ୍ରାପଡ଼ା ପଠାଇବା ବ୍ୟବସ୍ଥା କରାଗଲା । ସେଦିନ ଗହ୍ମା ପୂନେଇ ୨୬ ଅଗଷ୍ଟ ୧୯୪୨ ।

କାଇପଡ଼ା ଗୁଳିକାଣ୍ଡ ପୂର୍ବରୁ ଗୋଦାବରୀ ଦେବୀ ପ୍ରଭୃତି ତା ୨୦.୮.୪୨ରେ ବାଲିଆପାଳରେ ଗିରଫ ହୋଇ ସାରିଥିଲେ । ବୀରବାବୁ, ଗୋବର୍ଦ୍ଧନ ବାବୁ, ଗୋବିନ୍ଦ ସାମଲ, ଧ୍ରୁବରାୟ ପ୍ରଭୃତି କାମ କରୁଥାନ୍ତି । ଏହି ସମୟରେ ପୁହାଣ ପରିବାର ଓ ଗୋଖେଇ ଜେନାଙ୍କ ମଧ୍ୟରେ ଥିବା ଗୋଟାଏ ପାରିବାରିକ କଳିର ସୁଯୋଗ ନେଇ କେତେକ ଲୋକ ଗୋଖେଇ ଜେନାଙ୍କ ଘର ପୋଡ଼ିଦେଲେ । ଥାନାରେ ଏତଲା ଦିଆହେଲାରୁ ପୁଲିସ ଆସିଲେ ଏବଂ ଏହି ଘରପୋଡ଼ିକୁ ଆନ୍ଦୋଳନ ସହିତ ଯୋଡ଼ି ଗୋବର୍ଦ୍ଧନ ବାବୁ ଓ ତାଙ୍କ ଭାଇମାନଙ୍କୁ ଘରପୋଡ଼ି ଅପରାଧରେ ଗିରଫ କଲେ । ଏହି ବ୍ୟକ୍ତିଗତ କଳି ବଢ଼ି ଲୋକଙ୍କ ମନ କାଳେ ଆନ୍ଦୋଳନରୁ ଓହରି ଯିବ, ଏହି ଆଶଙ୍କାରେ ଆମେ ବରୀ ଅରଂଗାବାଦ ଓ ତା' ଆଖପାଖ ଗାଁରେ ଅଧିକ ସମୟ ଦେଇ କାମ କଲୁ । ବରୀ ଓ ଅରଂଗାବାଦ ମୁସଲମାନ ଗୋଷ୍ଠୀଙ୍କ ସହିତ ଆମର ପୂର୍ବରୁ ଘନିଷ୍ଠତା ଥିବାରୁ ସେମାନେ ଆନ୍ଦୋଳନ ପ୍ରତି ଅନୁକୂଳ ଥିଲେ । ବରୀ ଦରଗାହ ଆଗରେ ସମସ୍ତେ ମିଳିମିଶି ଆନ୍ଦୋଳନ ଚଳାଇବା ପାଇଁ ନିଷ୍ପତ୍ତି କଲେ ।

ତା ୩୦.୮.୪୨ ଦିନ ଅଣଉଦିଆ ବରୀରୁ ଖବର ଆସିଲା ଯେ କାଲି ରାତିରେ କଟକରୁ ଜଣେ ଆଡ଼ିସନାଲ ଡ଼ିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ, ଆଡ଼ିସନାଲ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଓ ପୁଲିସ ଫଉଜ ଆସି ମାଉଣ୍ଡ ଉପରେ ମାଇନର୍ ସ୍କୁଲରେ ରହିଛନ୍ତି । ସେମାନେ ସାଙ୍ଗରେ ବହୁତ ବିଂଝାରପୁରିଆ ମୁସଲମାନ ଆଣିଛନ୍ତି । ଛଅହଜାର ଟଙ୍କା ସାମୂହିକ ଜୋରିମାନା ଆଦାୟ କରିବାକୁ ସେମାନେ ଏହି ବିଂଝାରପୁରିଆଙ୍କୁ ପିଆଦା ନିଯୁକ୍ତ କରିବେ । ମାଉଣ୍ଡ ଉପରକୁ ହାବିଲଦାର ବିରାଡ଼ି ଛୁଆଟିଏ ସୁଦ୍ଧା ଛାଡ଼ି ଦେଉନାହିଁ । ପ୍ରକୃତ ଘଟଣା ଜାଣିବା ପାଇଁ ଶରତ୍ ବାବୁ ଓ ମୁଁ ବରୀ ଗଲୁ । ମାଜିଷ୍ଟ୍ରେଟ୍ ସ୍କୁଲ ଘରେ କଚେରୀ କରୁଥାଆନ୍ତି । ମ୍ୟାଜିଷ୍ଟ୍ରେଟ୍ ଆମକୁ ଦେଖି ସେ ଓ ଗୋପବାବୁ ଏକାଦିନ ଡ଼େପୁଟୀ ଚାକିରୀରେ ଯୋଗ ଦେଇଥିବା ପୁଣ୍ୟ ସ୍ମୃତି ଶୁଣାଇ ସାରି ତାଙ୍କ ପାଖରେ ଗଦା ହୋଇଥିବା କାର୍ଟ୍ରିଜ୍ ବାକ୍ସଗୁଡ଼ିକ ଦେଖାଇ କହିଲେ । ଏ ଅଞ୍ଚଳରୁ ଛଅହଜାର ଟଙ୍କା ଆଦାୟ କରିବା ପାଇଁ ଦରକାର ପଡ଼ିଲେ ଏ ଛଅହଜାର କାର୍ଟ୍ରିଜ୍ ଖରଚ କରିବା ପାଇଁ ମୋତେ ଏଠାକୁ ପଠାଯାଇଛି ।

ଆମେ ବରୀକୁ ଯାଇ ଗାଁ ଭିତରେ ବୁଲିଲୁ । ଛଅ ହଜାର ଟଙ୍କା ନ ଦେବା ପାଇଁ ଲୋକଙ୍କୁ ପ୍ରବର୍ତ୍ତାଇବା କିଛି କଠିନ କଥା ନ ଥିଲା । କିନ୍ତୁ ଜୋରିମାନା ନ ଦେଲେ ଘରେ ପାଣ ପଠାଣ ପୂରାଇ ଦିଆ ହେବ, ଝିଅବୋହୂଙ୍କ ଇଜ୍ଜତ ଚାଲିଯିବ, ଜାତିଚ୍ୟୁତ ହେବାକୁ ହେବ ଏହି ଭୟରେ ଲୋକେ ଛାନିଆ ହୋଇ ଯାଇଥାନ୍ତି । ଆଡ଼ିସ୍‌ନାଲ୍ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଜ୍ୟୋତିଷଚନ୍ଦ୍ର ଘୋଷ ନିଜେ ଜୋରିମାନା ଆଦାୟ କାମ ଦେଖୁଥାନ୍ତି । ତାଙ୍କ ସାଙ୍ଗରେ ଯେତେ ପୁଲିସ୍ ଥା'ନ୍ତି ତାହାଠାରୁ ବେଶି ରହିଥାନ୍ତି ବିଂଝାରପୁରିଆ । ହିନ୍ଦୁଧର୍ମର ଜାତିପ୍ରଥା କିପରି ଆମକୁ ଦୁର୍ବଳ କରି ରଖିଛି ଏବଂ ବ୍ରିଟିଶ୍ ସରକାର କିପରି ଭେଦନୀତି ପ୍ରୟୋଗ କରି ଏ ଦେଶ ଶାସନ କରୁଛନ୍ତି, ତାହାର ପଦାର୍ଥ ପାଠ ମୋତେ ସେହିଦିନ ବରୀରେ ମିଳିଲା ।

ସମୂହ ଜୋରିମାନା ଆଦାୟ ସରିବା ପର୍ଯ୍ୟନ୍ତ ମ୍ୟାଜିଷ୍ଟ୍ରେଟ୍ ତାଙ୍କ ଦଳବଳ ସହ ମାଇନର ସ୍କୁଲରେ ରହିଲେ । ସମୂହ ଜୋରିମାନା ଆଦାୟ କରି ସାରି ସେବାଘର କଟେଜ ଟ୍ୟାନେରୀ ଓ ଖଦୀ କର୍ମୀ ତାଲିମ କେନ୍ଦ୍ର ଘରର ମଥାନ ଶ୍ରେଣୀ କାଟି ଦେଇ ଦୁଇପାଖ ଚାଳ ଦୁଇପଟକୁ ଖସାଇ ସେବାଘର ଲାଇବ୍ରେରୀର ବହିଗୁଡ଼ିକ ଚିରି ସଡ଼କରେ ଗଦେଇ ଧ୍ୱସ୍ତ ବିଧ୍ୱସ୍ତ ସେବାଘରେ ପ୍ରହରୀ ଜଗେଇ ସେମାନେ ୨.୯.୪୨ ତାରିଖରେ ଆମକୁ ଗିରଫ କରି ଡ଼ଙ୍ଗାରେ ବସାଇ ବିଂଝାରପୁର ଆଣିଲେ । ଶିକ୍ଷକ ଓ ଅଭିଜ୍ଞ କର୍ମୀମାନେ ଗିରଫ ହେବା ପରେ ମୌଳିକ ସ୍କୁଲର ଛାତ୍ରମାନେ ଶୋଭାରାଣୀ ପଣ୍ଡାଙ୍କ ସହିତ ମିଶି ଆନ୍ଦୋଳନ ଚଳାଇବାରୁ କଟେଜ ଟ୍ୟାନେରୀରେ ଗୋଟିଏ ପୁଲିସ୍ ଫାଣ୍ଡି ବସିଲା ଏବଂ ପୁଲିସ୍ ଗାଁ ଗାଁ ଘର ଘର ପଶି ସ୍ୱଚ୍ଛ ଆନ୍ଦୋଳନକାରୀଙ୍କୁ ଗିରଫ କଲେ ।

ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ଗାଁକୁ ଆସି ଆମେ ଗୋ-ସେବା, ମହୁଚାଷ ଆଦି କାମରେ ଲାଗିଥିବାରୁ ଆମର ବହୁ ପ୍ରତ୍ୟକ୍ଷ ସଂଗ୍ରାମୀ ବନ୍ଧୁ ମତବ୍ୟକ୍ତ କରିଥିଲେ ଯେ ଏ କାମ ସ୍ୱରାଜ୍ୟ-ଆନ୍ଦୋଳନକୁ ସାହାଯ୍ୟ କରିବ ନାହିଁ । ଗାନ୍ଧିଜୀ ଦୃଢ଼ ଭାବରେ କହୁଥିଲେ ଏହି ସବୁ କାମ ମାଧ୍ୟମରେ ଲୋକସମ୍ପର୍କ ସ୍ଥାପନ କଲେ ଯଥାର୍ଥ ଗଣ-ଜାଗରଣ ନିଶ୍ଚୟ ହେବ । ରଚନାତ୍ମକ ବା ଗଠନମୂଳକ କାମ ମଧ୍ୟରେ ଯେ ସ୍ୱରାଜ୍ୟସ୍ପୃହା ଜାଗ୍ରତ କରିବାର ଶକ୍ତି ଛପି କରି ରହିଥିଲା ତାହା ବରୀରେ ୧୯୪୨ରେ ଦେଖିବାକୁ ମିଳିଲା ।

ଗୋରାସର୍ଜେଣ୍ଟ ଜନ୍ ସାଇବ ଓ ଅତିରିକ୍ତ ପୁଲିସ ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀ ଜେ.ସି. ଘୋଷଙ୍କ ତତ୍ତ୍ୱାବଧାନରେ ଆମକୁ କଟକ ଜେଲକୁ ଅଣାଗଲା । ପ୍ରାୟ ଦଶବର୍ଷ ପରେ ପୁଣି ମୁଁ ବାରନମ୍ବର ୱାର୍ଡ଼ରେ ପ୍ରବେଶ କଲି । ସେତେବେଳକୁ ସେଠାରେ ରମାଦେବୀ,

ମାଳତୀ ଦେବୀ, ପ୍ରିୟମ୍ବଦା ଦେବୀ ପ୍ରଭୃତି ଆସ୍ଥାନ ଜମେଇ ସାରିଥାନ୍ତି । ତାଙ୍କ ଖବର ଶୁଣିବା ପାଇଁ ସେମାନେ ମୋତେ ଘେରିଗଲେ । ଉତ୍ତେଜନା ପ୍ରଶମିତ ହେବାରୁ ମୁଁ ୱାର୍ଡ଼ ଭିତରେ ଜାଗା ଖଣ୍ଡିଏ ବାଛି ବିଛଣାପତ୍ର ମେଲେଇ ଦେଇ ତୁରନ୍ତ ମାଳତୀ ଦେବୀଙ୍କ ସଙ୍ଗୀତ ଶିକ୍ଷା ବର୍ଗରେ ସାମିଲ ହୋଇଯାଇ ବୋଲିଲି -

''ତୋମାରା ପତାକା ଯାରେ ଦାଓ ତାରେ
ବହିବାରେ ଦାଓ ଶକତି
ଯୋମାର୍ ସେବାର ମହାନ୍ ବ୍ରତ
ସହିବାରେ ଦାଓ ଭକତି ।''

କଟକ ଜେଲ୍‌ରେ ପ୍ରଥମ ଦଫାରେ ବର୍ଷେ ଏଗାର ମାସ ଓ ଦ୍ୱିତୀୟ ଦଫାରେ ପାଞ୍ଚ ମାସ କଟାଇଲି । ତେଣେ ଆଗାଖାଁ ପ୍ରାସାଦରେ ଅଗଷ୍ଟ ପନ୍ଦର ତାରିଖ ଦିନ ପ୍ରଥମେ ବଳି ପଡ଼ିଲେ ମହାଦେବ ଦେଶାଇ । ପରବର୍ତ୍ତୀ ଆକର୍ଷଣ ହେଲେ ଶ୍ରୀମତୀ କସ୍ତୁରବା ଗାନ୍ଧୀ । ମହାଶିବରାତ୍ରି ଦିନ ମହାତ୍ମା ଗାନ୍ଧୀଙ୍କ କୋଳରେ ମଥା ରଖି ଏହି ମହାସତୀ ଦେଶପାଇଁ ଶହୀଦ ହେଲେ । ତାହାପରେ ମହାତ୍ମା ଗାନ୍ଧୀ ଜ୍ୱରାକ୍ରାନ୍ତ ହୋଇ ଜେଲ୍ ଡ଼ାକ୍ତରମାନଙ୍କ ଦ୍ୱାରା ଚିକିତ୍ସିତ ହୋଇ ଯେତେବେଳେ ଜଣାପଡ଼ିଲା ଯେ ଆଉ ତାଙ୍କର ବଞ୍ଚିବାର ସମ୍ଭାବନା ନାହିଁ ସେତେବେଳେ ତାଙ୍କୁ କାରାମୁକ୍ତ କରାଗଲା । ପ୍ରତ୍ୟକ୍ଷଦର୍ଶୀ ଆଶାଦେବୀ ଆର୍ଯ୍ୟନାୟକମ୍‌ଙ୍କ ଠାରୁ ଶୁଣିବା କଥା-ସେବାଗ୍ରାମରେ ପହଞ୍ଚିଲା ବେଳକୁ ବାପୁଙ୍କ ଦେହରେ ତାତି ଭର୍ତ୍ତି ହୋଇଥାଏ । ଖୁଁ ଖୁଁ କାଶ ହେଉଥାଏ, ପାଦ ଯୋଡ଼ିକ ଫୁଲିଥାଏ । ଚେହେରା ବ୍ଲଟିଂ ପେପର୍ ପରି ଧଳା-ଶିଠୁଆ ଦିଶୁଥାଏ । ଟିପିରି ଟିପିରି ମେଘ ବରଷୁ ଥାଏ । ବାପୁ ସାନ୍ଧ୍ୟ ଭ୍ରମଣରେ ବାହାରିଲେ । ଗୋଡ଼ ଚଳୁ ନଥାଏ, ଟାଣି ଘୋଷାରି ହୋଇ ଚାଲିବାକୁ ଚେଷ୍ଟା କରୁଥାନ୍ତି । ସେ ଦୃଶ୍ୟ ଯେ ଦେଖିଛି, ତା ଆଖିରେ ଲୁହ ରହି ନାହିଁ । ଧୀରେ ଧୀରେ ସେହି ମାଟିତାଟି କଟିସ୍ନାନ ଆଦି କରି ସେ ମାରକ ଦଶାରୁ ସେ ଉଧୁରିଲେ । ତାଙ୍କର ଅଧିକାଂଶ ସହକର୍ମୀ ସେତେବେଳେ ଜେଲ୍ ଭିତରେ ଥାଆନ୍ତି । ଗାନ୍ଧିଜୀଙ୍କର ସହକର୍ମୀ ଥିଲେ ତିନି ପ୍ରକାରର । ରାଜନୈତିକ ସ୍ୱାଧୀନତା ହାସଲ କରିବା ପାଇଁ କଂଗ୍ରେସ ମାଧ୍ୟମରେ ରାଜନୈତିକ ଚେତନା ଆଣିବା, ଆନ୍ଦୋଳନ ଆରମ୍ଭ ହେଲେ ସେଥିରେ ଝାସ ଦେବା ସହକର୍ମୀ ଥିଲେ ପଣ୍ଡିତ ଜବାହାରଲାଲ ନେହେରୁ, ମୌଲାନା ଆବୁଲ କାଲାମ୍ ଆଜାଦ୍ ଆଦି । କଂଗ୍ରେସ ମାଧ୍ୟମରେ ରାଜନୈତିକ ଚେତନା ଆଣିବା ଓ ଆନ୍ଦୋଳନରେ ଯୋଗ ଦେବା ସଙ୍ଗେ ସଙ୍ଗେ ଖଦୀ ଗ୍ରାମୋଦ୍ୟୋଗ ଆଦି

ରଚନାତ୍ମକ କାମରେ ମଧ୍ୟ ସମୟ ଦେଉଥିବା ସହକର୍ମୀ ଥିଲେ ଆଚାର୍ଯ୍ୟ ଜେ.ବି. କୃପାଲାନୀ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ବାବୁ ରାଜେନ୍ଦ୍ରପ୍ରସାଦ ପ୍ରଭୃତି । ଉପଯୁକ୍ତ ଦୁଇପ୍ରକାର ସହକର୍ମୀଙ୍କ ମଧ୍ୟରୁ ବଛାବଛା ବ୍ୟକ୍ତି କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟ ଥିଲେ । ଏମାନଙ୍କ ବ୍ୟତୀତ ସତୀଶଚନ୍ଦ୍ର ଦାସଗୁପ୍ତ, କାକା ସାହେବ କାଲେଲକର, କିଶୋର ମଶରୁୱାଲା, ବିନୋବା ଭାବେ, ଶ୍ରୀକୃଷ୍ଣଦାସ ଜାଜୁ, ଜେ.ସି କୁମାରପ୍ପା ଆଦି ବହୁ ସୁପଣ୍ଡିତ ଓ ନିଷ୍ଠାପର ବ୍ୟକ୍ତି ଭାରତର ସବୁ ପ୍ରଦେଶରେ ଗାନ୍ଧୀ ବିଚାର ଅନୁସାରେ ନାନାପ୍ରକାର ରଚନାତ୍ମକ କାମରେ ନିଜକୁ ବୁଡ଼େଇ ରଖୁଥିଲେ, ଅଥଚ ଆନ୍ଦୋଳନ ଆରମ୍ଭ ହେବା ମାତ୍ରେ ଆନ୍ଦୋଳନରେ ଝାସ ଦେଉଥିଲେ । ଉଦାହରଣ ସ୍ୱରୂପ ଗାନ୍ଧିଜୀ ଗୁଜରାଟୀ ଭାଷାରେ ଗୋଟିଏ ପ୍ରାମାଣିକ ଅଭିଧାନର ଅଭାବ ଅନୁଭବ କରି କାକା ସାହେବଙ୍କୁ ଏହି ଅଭିଧାନ ରଚନା କରିବାକୁ ନିର୍ଦ୍ଦେଶ ଦେଲେ ଏବଂ କାକା ସାହେବ ସେ କାର୍ଯ୍ୟ ସୁସଂପନ୍ନ କଲେ । ଭାରତରେ ତିଆରି ହୋଇ ପାରୁ ନ ଥିବା ଔଷଧ ଓ ଗ୍ଳୁକୋଜ ଆଦି ପଦାର୍ଥ ଭାରତରେ ତିଆରି କରିବା ପାଇଁ ଗାନ୍ଧିଜୀ ସତୀଶ ବାବୁଙ୍କୁ ସୂଚେଇଲେ । ସତୀଶବାବୁ ସେହି କାର୍ଯ୍ୟରେ ଲାଗି ସାଫଲ୍ୟମଣ୍ଡିତ ହେଲେ । ଜେ.ସି. କୁମାରପ୍ପା ଭାରତର ଗ୍ରାମ୍ୟ ଅର୍ଥନୀତି ଓ ଚାଷୀର ଋଣ ସମସ୍ୟା ତଥା ଆର୍ଥିକ ଉନ୍ନତି ପାଇଁ ବିଭିନ୍ନ ଗାଁ ସର୍ଭେ କରି ନାନାପ୍ରକାର ଗ୍ରାମୋଦ୍ୟୋଗର ପ୍ରସାର ଦିଗରେ କାମ କରୁଥିଲେ । ବିନୋବାଜୀ ତ ମୌଳିକଶିକ୍ଷାର ପ୍ରୟୋଗ ଓ ଖଦୀ-ପ୍ରୟୋଗ କ୍ଷେତ୍ରରେ ମାର୍ଗଦର୍ଶକ ଥିଲେ । ଏମାନେ ଓ ଏହିପରି ଶତ ଶତ ବିଦ୍ୱାନ୍ ସହକର୍ମୀଙ୍କୁ ଭାରତର ବିଭିନ୍ନ ଜେଲ୍‌ରେ ବ୍ରିଟିଶ୍ ସରକାର ବନ୍ଦୀ କରି ରଖିଥିଲେ । ଗାନ୍ଧିଜୀ ଓ ଏହି କର୍ମୀମାନଙ୍କ ଭିତରୁ କେତେକ କାରାମୁକ୍ତ ହେବାରୁ ସେବାଗ୍ରାମରେ ନିଖିଳ ଭାରତ ଚରଖା ସଂଘର ଗୋଟିଏ ବୈଠକ ବସିଲା । ସେତେବେଳକୁ ରମାଦେବୀ କାରାମୁକ୍ତ ହୋଇ ସାରି ଥିବାରୁ ଏବଂ ସେ ନିଖିଳ ଭାରତ ଚରଖା ସଂଘର ଟ୍ରଷ୍ଟୀ ଥିବାରୁ ଶ୍ରୀ ଈଶ୍ୱରଲାଲ ବ୍ୟାସଙ୍କ ସଙ୍ଗେ ସେବାଗ୍ରାମ ବୈଠକରେ ଯୋଗ ଦେଲେ । ସେହି ବୈଠକରେ ଗାନ୍ଧିଜୀ ଚରଖାସଂଘର କାର୍ଯ୍ୟ ପ୍ରଣାଳୀକୁ ବଦଳାଇ ଅଧିକ ବିପ୍ଳବାତ୍ମକ କାର୍ଯ୍ୟ ପଦ୍ଧତି ଗ୍ରହଣ କରିବା ପାଇଁ ପ୍ରସ୍ତାବ ଦେଲେ । ତାଙ୍କର ସେହି ବକ୍ତୃତା ରାଷ୍ଟ୍ର ପାଇଁ ଏକ ପ୍ରକାର ଭବିଷ୍ୟତବାଣୀ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ କହିଲେ , "ସ୍ୱାଧୀନତା ଆସୁଛି ଏବଂ ଯେତେଶୀଘ୍ର ଏହା ଆସିବ ବୋଲି ଆପଣମାନେ ଭାବୁଛନ୍ତି, ତାହାଠାରୁ ଏହା ଆହୁରି ଚଞ୍ଚଳ ଆସିବ କିନ୍ତୁ ଏହା ମୋ ପରିକଳ୍ପିତ ସ୍ୱାଧୀନତା ନୁହେଁ । ସବୁଠାରୁ ତଳେ ପଡ଼ି ରହିଥିବା ଲୋକର

ଉତ୍ଥାନ ଏ ସ୍ୱାଧୀନତା ଦ୍ୱାରା ହେବ ନାହିଁ । ତେଣୁ ଆମକୁ ଚରଖା ମାଧ୍ୟମରେ ଏ କାମ କରିବାକୁ ହେବ ।

xxxxx xxxxx xxxxx xxxxx

ଦୁଧରେ ମିଶ୍ରି ମିଶିଗଲା ପରି ଆମକୁ ଲୋକଙ୍କ ସହିତ ମିଶି ଯିବାକୁ ହେବ, ତାହା ସଙ୍ଗେ ସଙ୍ଗେ ବୌଦ୍ଧିକ ବିକାଶ ପାଇଁ ସମୟ ଦେବାକୁ ହେବ । ଆମେ ଭବିଷ୍ୟତରେ ଯେଉଁ ଅହିଂସାତ୍ମକ ସମାଜ ରଚନା କରିବାକୁ ଚାହୁଁଛୁ, ଏହି ଉପାୟରେ ସେହି ଜାଗରଣ ସୃଷ୍ଟି କରିବାକୁ ହେବ ।

''ହିଂସାବାଦୀଙ୍କ ଘରକୁ ଗଲେ ଦେଖିବ, କେଉଁଠି ବାଘ ଚମଡ଼ା ଟଙ୍ଗା ହୋଇଛି ତ କେଉଁଠି ହରିଣ ଚମଡ଼ା । କାନ୍ଥରେ ଖଣ୍ଡା ବନ୍ଧୁକ ଝୁଲୁଥିବ । ମୋତେ ମୁସୋଲିନୀଙ୍କ ପାଖକୁ ନେଇ ଯାଇଥିଲେ । ସେଠାରେ ଦେଖିଲି ଚାରିପାଖରେ ଅସ୍ତ୍ରଶସ୍ତ୍ର ରହିଛି । ସେହିପରି ଆମପାଇଁ ଅହିଂସାର ପ୍ରତ୍ୟକ୍ଷ ଦର୍ଶନ କରାଇବାର ପ୍ରତୀକ ହେଉଛି ଚରଖା । ମୁସୋଲିନୀଙ୍କ ଦରବାରରେ ତରବାରୀ କହୁଥିଲା, ତମେ ଯଦି ମୋତେ ଛୁଇଁବ ମୁଁ ତୁମକୁ ହାଣିବି । ମୋତେ ଛୁଇଁ, ମୋ ପ୍ରତାପ ଦେଖ । ସେଠି ତରବାରୀରୁ ହିଂସାର ପ୍ରତ୍ୟକ୍ଷ ଦର୍ଶନ ମିଳୁଥିଲା । ସେହିପରି ଆମକୁ ଚରଖାର ପ୍ରତାପ ସିଦ୍ଧି କରିବାକୁ ହେବ ।

''ମୁସଲମାନଙ୍କ ରାଜୁତି ବେଳେ ଚରଖା ଚାଲୁଥିଲା । ସେ ସମୟରେ ଢ଼ାକାରେ ମଲ୍‌ମଲ୍ ତିଆରି ହେଉଥିଲା । ମାତ୍ର ଚରଖା ଥିଲା କାଙ୍ଗାଳପଣିଆର ନିଦର୍ଶନ । ରାଜାଙ୍କ ଲୋକେ ସ୍ତ୍ରୀ ଲୋକଙ୍କୁ ଓ ତଳଶ୍ରେଣୀର ଲୋକଙ୍କୁ ବେଠି ଖଟଉ ଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ମଧ୍ୟ ସେୟା କରିଲେ । କୌଟିଲ୍ୟ ଅର୍ଥଶାସ୍ତ୍ରରେ ମଧ୍ୟ ତାହାହିଁ ଲେଖା ହୋଇଛି । ସେହି ଯୁଗରୁ ଚରଖା ଜୋର୍ ଜବରଦସ୍ତିର ପ୍ରତୀକ ହୋଇ ରହିଥିଲା । କଟାଳିକୁ ପୋଷେ ଚାଉଳ ବା ଦୁଇଟା ପାହୁଲା ମିଳୁଥିଲା । ଅଥଚ ସେହିମାନଙ୍କ ଦ୍ୱାରା ଉତ୍ପାଦିତ ମଲ୍‌ମଲ୍ ପିନ୍ଧି ବାଦଶାହଙ୍କ ବେଗମ୍‌ମାନେ ବିବସ୍ତ୍ର ଦେଖା ଯାଉଥିଲେ । କିନ୍ତୁ ମୁଁ ଆପଣମାନଙ୍କୁ ଯେଉଁ ଚରଖା ଦେଉଛି ତାହା ହେଉଛି ଅହିଂସାର ପ୍ରତୀକ ।

xxxxx xxxxx xxxxx xxxxx

ନୂଆ ଉତ୍ସାହରେ ସ୍ତ୍ରୀଲୋକ ଗାଁରେ ଏହି କାମ କରିବା ପାଇଁ ଆମେ ଯଦି ଲାଗି ପଡ଼ିବା ତେବେ ଆମର ଗୋଲାମୀ ଶେଷ ହୋଇଯିବ । ଆମର ପ୍ରତ୍ୟେକ ଗାଁ ସ୍ୱାଧୀନ ଓ ସ୍ୱାବଲମ୍ବୀ ହେବ । ଏହାହିଁ ହେବ ପ୍ରକୃତ ସ୍ୱରାଜ୍ୟ, ପ୍ରକୃତ ଗଣତନ୍ତ୍ର ।

''ସେଥିପାଇଁ ଯେ ସୂତା କାଟିବ, ବୁଝି ବିଚାରି କରି କାଟ । ଯେ କାଟିବ ସେ ପିନ୍ଧିବ । ଯେ ପିନ୍ଧିବ ସେ କାଟିବ ।''

xxxxx xxxxx xxxxx

ଗାନ୍ଧିଜୀଙ୍କର ଏହି ଗ୍ରାମ ସ୍ୱାବଲମ୍ବନ ତତ୍ତ୍ୱ ଉପରେ ସେବାଗ୍ରାମରେ ସାତଦିନ କାଳ ଆଲୋଚନା ହୋଇ ଚରଖା ସଂଘର କାର୍ଯ୍ୟକୁ ନୂଆ ପଦ୍ଧତିରେ ଚଳାଇବା ସ୍ଥିର ହେଲା । ସେଥିପାଇଁ ଏହାକୁ କୁହାଗଲା, ''ଚରଖା ସଂଘର ନବ ସଂସ୍କରଣ'' । ସାତଲକ୍ଷ ଗାଁକୁ ସଂଗଠିତ କରିବା ପାଇଁ ସାତଲକ୍ଷ ଯୁବକ ଗାଁରେ ନିଜେ ସ୍ୱାବଲମ୍ବୀ ହୋଇ ରହି ଗାଁଲୋକଙ୍କୁ ଖଦୀ ଗ୍ରାମୋଦ୍ୟୋଗ, ମୌଳିକ ଶିକ୍ଷା ଆଦି ଦ୍ୱାରା ସ୍ୱାବଲମ୍ବୀ ହେବାକୁ ପ୍ରବର୍ତ୍ତାଇ ଶୋଷଣମୁକ୍ତ କରିବେ ଏବଂ ବେଳ ଆସିଲେ ଅହିଂସାତ୍ମକ ପ୍ରଣାଳୀରେ ଶୋଷକ ଶ୍ରେଣୀର ମୁକାବିଲା କରିବେ, ଏହାହିଁ ଥିଲା ସେ ଯୋଜନାର ମୂଳ ଲକ୍ଷ୍ୟ । ଓଡ଼ିଶାରେ ସଦ୍ୟ ଜେଲ୍ ଫେରନ୍ତା ଯୁବକ ସର୍ବଶ୍ରୀ ଅଲେଖ ପାତ୍ର, ଶକ୍ତିଶେଖର ଦାସ, ବ୍ରଜସୁନ୍ଦର ଦାସ, ବଂଶୀଧର ଉପାଧ୍ୟାୟ ପ୍ରମୁଖ ଏହି ଯୋଜନା ଅନୁସାରେ କାମ କରିବାକୁ ଅଣ୍ଟା ଭିଡ଼ିଲେ । ଏହାକୁ କୁହାଗଲା – ସମଗ୍ର ଗ୍ରାମସେବା ଯୋଜନା ।

ଲୋକମାତା କସ୍ତୁରବା ଆଗାଖାଁ ପ୍ରାସାଦରେ ଦେହତ୍ୟାଗ କରିବା ପରେ ଦେଶବାସୀ ତାଙ୍କର ସ୍ମୃତିରକ୍ଷା ପାଇଁ ଏକ କୋଟି ତିରିଶ ଲକ୍ଷ ଟଙ୍କା ସଂଗ୍ରହ କରି ୧୯୪୪ ମସିହା ଅକ୍ଟୋବର ଦୁଇ ତାରିଖ ଦିନ ଗାନ୍ଧିଜୀଙ୍କୁ ଏହି ଟଙ୍କା ଭେଟି ଦେଲେ । ଗାଁ ଗହଳରେ ମହିଳା ଓ ଶିଶୁମାନଙ୍କର ସର୍ବାଙ୍ଗୀନ ଉନ୍ନତିମୂଳକ କାମରେ ଏହି ଅର୍ଥ ବ୍ୟୟ ହେବ ବୋଲି ଘୋଷଣା କରି ଗାନ୍ଧିଜୀ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ ନାମରେ ଏକ ସଂସ୍ଥା ଗଢ଼ି ଏହି ଟ୍ରଷ୍ଟ ହାତରେ ଉକ୍ତ ଅର୍ଥ ସମର୍ପଣ କଲେ । କେବଳ ମହିଳାମାନଙ୍କ ଦ୍ୱାରା ଗାଁ ଗହଳର ମହିଳାମାନଙ୍କର ଉତ୍‌ଥାନ ନିମନ୍ତେ ଏହି ଅର୍ଥର ବିନିଯୋଗ ହେବ ବୋଲି ଗାନ୍ଧିଜୀ ଘୋଷଣା କରିବା ପରେ ଉଆର୍ଦ୍ଧାରେ ସମଗ୍ର ଭାରତର ବିଶିଷ୍ଟ ସମାଜସେବୀ ମହିଳା ଓ ଏହି ଅର୍ଥ ସଂଗ୍ରହକାରୀମାନଙ୍କର ଗୋଟିଏ ଗୋଟିଏ ବୈଠକ ବସିଲା । ଓଡ଼ିଶାରୁ ରମାଦେବୀଙ୍କ ସାଙ୍ଗରେ ମୁଁ ଏହି ବୈଠକରେ ଯୋଗ ଦେବାର ସୁଯୋଗ ପାଇଥିଲି ।

ସେବାଗ୍ରାମରେ ତ ଏକତ୍ର ହେବାମାତ୍ରେ ଆମେମାନେ ଅଗଷ୍ଟ ଆନ୍ଦୋଳନର ଅଭିଜ୍ଞତା ବିଷୟରେ ଆଗ ଏକ ଅପର ସହିତ ଆଲୋଚନା ଆରମ୍ଭ କରିଦେଲୁ । ସମଗ୍ର

ଭାରତର ମହିଳା ସମାଜ ଏକତ୍ର ହୋଇ ଗୋଟିଏ ପରିବାର ଭଳି ଦେଶ ପାଇଁ ସହିଥିବା ଦୁଃଖ ଓ ତଜ୍ଜନିତ ସାତ୍ତ୍ୱିକ ଆନନ୍ଦ କଥା ପରସ୍ପରକୁ ଶୁଣାଇବା ରାଷ୍ଟ୍ରୀୟ ସଂହତିର କେଡ଼େ ମହାନ୍ ଉଦାହରଣ !!

ସେବାଗ୍ରାମରେ ଦେଖିଲୁ ଗାନ୍ଧିଜୀ ସ୍ତ୍ରୀଲୋକମାନଙ୍କ ଦ୍ୱାରା ଗାଁ ଗହଳର ସ୍ତ୍ରୀ ଲୋକମାନଙ୍କର ସେବା କରିବା କଥାଟି ଘୋଷଣା କରିଥିବାରୁ ଉଚ୍ଚଶିକ୍ଷିତା ଓ ସହରରେ କାମ କରୁଥିବା ଅତି ବିଦୂଷୀ ମହିଳାମାନେ ସୁଦ୍ଧା ଅଡୁଆରେ ପଡ଼ି ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ବହୁସଂଖ୍ୟକ ମହିଳା ଆନ୍ଦୋଳନରେ ଯୋଗଦେଇ କାରାବରଣ କରି ବହୁ ଦୁଃଖକଷ୍ଟ ସହିଥିଲେ ମଧ୍ୟ ଗାଁ ଗହଳରେ କାମ କରିବାରେ ଅଭ୍ୟସ୍ତ ନ ଥିଲେ । ଏପରିକି ଗ୍ରାମ ସେବା ସମ୍ବନ୍ଧରେ ଅନେକଙ୍କର ଆଦୌ କୌଣସି ଧାରଣା ନ ଥିଲା । ଦ୍ୱିତୀୟତଃ ଏତେଗୁଡ଼ାଏ ଟଙ୍କା ଏହି ଅନଭିଜ୍ଞା ମହିଳାମାନଙ୍କ ହାତରେ ଧରେଇଦେବାକୁ ଅନେକଙ୍କର ଛାତି ପତଉ ନ ଥିଲା । କିନ୍ତୁ ଗାନ୍ଧିଜୀ ନିଜ ନୀତିରେ ଦୃଢ଼ ରହିଲେ । ସେ କଥା ଛଳରେ ଏହା ମଧ୍ୟ କହିଲେ ଯେ ମହିଳାମାନେ ଯଦି ଏହି ଦାୟିତ୍ୱ ତୁଲାଇବାକୁ ଯାଇ କୌଣସି ଭୁଲ କରି ପକାଇବେ, ତାହାକୁ ସୁଦ୍ଧା ମୁଁ ବରଦାସ୍ତ କରିବି । ଆମର ମନେହେଲା ଗାନ୍ଧିଜୀ ସମ୍ଭବତଃ ମହିଳାମାନଙ୍କ ମଧ୍ୟରେ ସଂସ୍ଥା ପରିଚାଳନା ଓ ଗାଁ ଗହଳରେ ମହିଳାମାନଙ୍କର ଉତ୍‌ଥାନ ପାଇଁ ଗଠନମୂଳକ କାମ କରିପାରିବାର ଶକ୍ତିର ବିକାଶ ଘଟାଇବାକୁ ଚାହୁଁଥାନ୍ତି । ଯାହାହେଉ, ଭାରତର ବିଭିନ୍ନ ପ୍ରଦେଶରୁ ଏହି ଟ୍ରଷ୍ଟର କାମ ପାଇଁ ଯେଉଁସବୁ ଯୋଜନା ଆସିଥିଲା ସେଥିରେ ସହରରେ ସ୍କୁଲ, କଲେଜ ହାସପାତାଳ ଆଦି ସ୍ଥାପନ କରିବା କଥା ଥିଲା । ସୌଭାଗ୍ୟକ୍ରମେ ଓଡ଼ିଶାର ଯେଉଁ ଯୋଜନା ଯାଇଥିଲା ତାହା ମୁଖ୍ୟତଃ ଗାଉଁଲି ସ୍ତ୍ରୀଲୋକମାନଙ୍କର ଉନ୍ନତି ବିଧାନମୂଳକ ଥିଲା । ତେଣୁ ସର୍ବପ୍ରଥମେ ଓଡ଼ିଶାର ମହିଳା କର୍ମୀ ତାଲିମ ଶିବିର ଓ କନ୍ୟାଶ୍ରମ ଯୋଜନା ହିଁ ଗାନ୍ଧିଜୀଙ୍କ ଆଶୀର୍ବାଦଭାଜନ ହେଲା ।

ମୋ ଉପରେ ନିଷେଧାଜ୍ଞା ଜାରିହୋଇ ରହି ଥିବାରୁ ଓଡ଼ିଶା ଫେରି ପୁଣି ଗିରଫ ହୋଇ ଜେଲ୍ ଯିବାକୁ ମୋ ମନ ହୁକୁହୁକୁ ହେଉଥାଏ । କାରଣ ଗୋପବନ୍ଧୁ ଚୌଧୁରୀ ଓ ମନମୋହନ ଚୌଧୁରୀ ସେତେବେଳେ ସୁଦ୍ଧା କଟକ ଜେଲ୍‌ରେ ବନ୍ଦୀ ଥାଆନ୍ତି । କିନ୍ତୁ ଗାନ୍ଧିଜୀ ମୋତେ ସେବାଗ୍ରାମରେ ରହି ହିନ୍ଦୁସ୍ତାନୀ ତାଲିମୀ କାମରେ ସାହାଯ୍ୟ କରିବାକୁ ଆଦେଶ ଦେଲେ । ସେ ଆଦେଶ ଶିରୋଧାର୍ଯ୍ୟ କରି ମୁଁ ସେବାଗ୍ରାମରେ ରହି ଖଦୀ ବିଦ୍ୟାଳୟର ବୁଣାଇ ବିଭାଗରେ ଲୁଗା ବୁଣା ଶିଖିଲି । ଲୁଗାବୁଣାଟା ଠାଏ ବସି ରହି

କରିବା କାମ । ଏପରିକି ତାଳି କାଢ଼ିବା କାମ ଯେ ସାଧାରଣତଃ ଖୋଲା ଜାଗାରେ ଏ ମୁଣ୍ଡୁ ସେ ମୁଣ୍ଡ ଯିବା ଆସିବା କରି କରିବାକୁ ହୁଏ, ସେ କାମ ସୁଦ୍ଧା ଘର ଭିତରେ ବସି କରିବାକୁ ହେଉଥାଏ । ଜେଲ୍ ଭିତରେ ମୁଁ ଅର୍ଶରୋଗ ଅର୍ଜନ କରିଥିଲି । ଆଠଘଣ୍ଟା ଠାଏ ବସି ରହିବା ଫଳରେ ଅର୍ଶ ମୁଣ୍ଡ ଟେକିଲା । ମୋର ଯନ୍ତ୍ରଣା ଦେଖି ଆଶାଦେବୀ ଆର୍ଯ୍ୟନାୟକମ୍ ବିଚଳିତ ହୋଇ ଗାନ୍ଧିଜୀଙ୍କ ପାଖରେ ରହୁଥିବା ଡ଼ାକ୍ତର ସୁଶୀଳା ନାୟାରଙ୍କୁ ମୋତେ ପରୀକ୍ଷା କରିବା ପାଇଁ କହିଲେ । ଡ଼ାକ୍ତର ନାୟାର ପରୀକ୍ଷା କରି ଅସ୍ତ୍ରୋପଚାର କରିବାକୁ କହିଲେ । କଥାଟା ଗାନ୍ଧିଜୀଙ୍କ କାନକୁ ଗଲା । ସେ ତୁରନ୍ତ ସିଦ୍ଧାନ୍ତ ନେଲେ - ଅସ୍ତ୍ରୋପଚାର କରିବାକୁ ହେବ । ମୁଁ ଅରାଜି ହେବାରୁ ସେ ମୋତେ ଡ଼ାକି କରି କହିଲେ ମୋ ବାପାଙ୍କର ଭଗନ୍ଦର ରୋଗରେ ମୃତ୍ୟୁ ହୋଇଥିଲା । ତେଣୁ ମୋ ମନରେ ଗୋଟାଏ ଅବଶୋଷ ରହି ଯାଇଛି ଯେ ତାଙ୍କର ଅସ୍ତ୍ରୋପଚାର କରାଯାଇଥିଲେ ସେ ନିଶ୍ଚୟ ରୋଗମୁକ୍ତ ହୋଇଥାନ୍ତେ । ତୋ ଅର୍ଶରୋଗ ଯଦି ଅସ୍ତ୍ରୋପଚାର ଦ୍ୱାରା ଭଲ ହେବ ତେବେ ମୁଁ ଟିକିଏ ଆତ୍ମପ୍ରସାଦ ଲାଭ କରିବି । ଏ ଯୁକ୍ତିକୁ ଖଣ୍ଡନ କରିବାକୁ ଆଉ କି ଉତ୍ତର ଅଛି ? ଅଗତ୍ୟା ମୁଁ ଉଆର୍ଦ୍ଧା ହାସ୍‌ପାତାଳକୁ ଗଲି ଏବଂ ମୋର ଅର୍ଶର ଅସ୍ତ୍ରୋପଚାର କରାଗଲା । ସେ ସମୟରେ ପ୍ରଚଳିତ ଚିକିତ୍ସା ଅନୁସାରେ ମୋତେ କେବଳ ତରଳ ଖାଦ୍ୟ ମୁଖ୍ୟତଃ ବାର୍ଲି ପିଇ ସାତଦିନ ରହିବାକୁ ପଡ଼ିଲା । ଖରାଦିନ, ଭୋକରେ ମୁଁ ଚିଁ ଚିଁ ହେଉଥାଏ । ଗରମରେ ଦେହ ଜଳିଗଲା ପରି ଲାଗୁଥାଏ । ବିଛଣାରେ ଉଠି ବସିବାକୁ ସୁଦ୍ଧା ବଳ ପାଉ ନ ଥାଏ । ସେଦିନ ସୋମବାର । ହଠାତ୍ ଗାନ୍ଧିଜୀ ଆସି ମୋ ବିଛଣା ପାଖରେ ଠିଆ ହୋଇ ମୋ ମୁଣ୍ଡରେ ହାତ ବୁଲାଇ ଦେଲେ । ମୁଁ ବିହ୍ୱଳ ହୋଇ ତାଙ୍କ ହାତ ଧରି ପକାଇଲି । କେଡ଼େ ଶୀତଳ ସ୍ପର୍ଶ ! ରୋଗତାପ ଜର୍ଜରିତ ଦେହରେ ଯେପରି ଶୀତଳ ପ୍ରଲେପ ବୋଳି ହୋଇଗଲା - ମନେ ପଡ଼ିଗଲା,

''ତାପହରଣ ତୋମାର ଚରଣ
ଅସୀମ ଶରଣ ଦୀନଜନାର ।''

ଏହି ବ୍ୟକ୍ତିଗତ ଅନୁଭୂତିଟି ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି ମୋ ଭଳିଆ ଜଣେ ନଗଣ୍ୟ କର୍ମୀର ଦୁଃଖସୁଖ ସହିତ ନିଜକୁ ଯୋଡ଼ି ଅତି ଆପଣାର କରି ପାରିବାର କଳାର କିପରି ସାର୍ଥକ କଳାକାର ଗାନ୍ଧିଜୀ ଥିଲେ ତାହା ଦର୍ଶାଇବା । ଉଆର୍ଦ୍ଧାରେ ଥିବାବେଳେ ଏହିପରି ବହୁ ଦୃଷ୍ଟାନ୍ତର କାହାଣୀ ମୁଁ ସାରା ଭାରତର ମୋ ପରି ନଗଣ୍ୟ କର୍ମୀଙ୍କ ମୁହଁରୁ ଶୁଣିଛି ।

ଉଆର୍ଦ୍ଧାରେ ରହି ଟିକିଏ ସାଷ୍ଟାମ ହେଲାରୁ ମୁଁ ଓଡ଼ିଶା ଫେରିଲି । ସେତେବେଳକୁ ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ବନ୍ଦୀ ଥିଲେ ହେଁ ଶ୍ରୀ ହରେକୃଷ୍ଣ ମହତାବ ପ୍ରମୁଖ ମୁକୁଳି ସାରିଥାନ୍ତି । ନିର୍ବାଚନ ପାଇଁ ସଜବାଜ ମଧ୍ୟ ଆରମ୍ଭ ହୋଇ ଯାଇଥାଏ । ମୁଁ କଟକରେ ପହଞ୍ଚିବା ମାତ୍ରେ ସର୍ବଶ୍ରୀ ରାଜକୃଷ୍ଣ ବୋଷ ଓ ନିତ୍ୟାନନ୍ଦ କାନୁନଗୋ ମୋତେ ବିଧାନ ସଭାର ସଦସ୍ୟପଦ ପାଇଁ ପ୍ରାର୍ଥୀ ହେବାକୁ କହିଲେ । ମହତାବବାବୁ ମଧ୍ୟ ଏ ପ୍ରସ୍ତାବରେ ସମ୍ମତି ଦେଇଛନ୍ତି ବୋଲି ମୁଁ ଶୁଣିଲି । ଭୋଟର୍ ତାଲିକାରେ ମୋର ନାଆଁ ନ ଥିଲା । ତେଣୁ ମୋତେ ଯଥାବିଧି ଭୋଟର୍ ତାଲିକାଭୁକ୍ତ ମଧ୍ୟ କରାଗଲା । ମାତ୍ର ମୁଁ ପ୍ରାର୍ଥୀ ହେବାକୁ ଆଦୌ ରାଜି ନ ହେବାରୁ ରାଜକୃଷ୍ଣ ବାବୁ ଓ ନିତ୍ୟାନନ୍ଦ ବାବୁ ମୋତେ ଭର୍ତ୍ସନା କଲେ । ମୋର ଏକମାତ୍ର ଯୁକ୍ତି ଥିଲା ବିଧାନ-ସଭାର ସଦସ୍ୟ ଦାୟିତ୍ୱ ତୁଲାଇବା ମୋର ସ୍ୱଧର୍ମ ନୁହେଁ-ପରଧର୍ମ ଭୟାବହ । ରମାଦେବୀଙ୍କୁ ମଧ୍ୟ ବିଧାନ ସଭାର ସଦସ୍ୟ ପଦ ପାଇଁ ପ୍ରାର୍ଥୀ ହେବାକୁ ବାବୁ ରାଜେନ୍ଦ୍ର ପ୍ରସାଦ ପତ୍ର ଲେଖିଲେ । ''ଧାନକୁଟା ଛାଡ଼ି ଚଷ୍ଟୁ କୁଟିବାକୁ ଯିବାକୁ ମୋର ମନ ହେଉନାହିଁ'' କହି ସେ ନାସ୍ତିବାଣୀ ଶୁଣାଇଲେ ।

ସାକ୍ଷୀଗୋପାଳରେ ସୁନାମଣି ଦେବୀ ଓ ପଣ୍ଡିତ ହୋତା ମହାଶୟଙ୍କ ପରିଚାଳନାରେ କର୍ମୀମାନଙ୍କ ସହଧର୍ମିଣୀମାନଙ୍କର ଗୋଟିଏ ଶିବିର ଆରମ୍ଭ ହୋଇଥିଲା । ଯାଜପୁରର ବିପିନ ବିହାରୀ ମହାନ୍ତିଙ୍କ ସ୍ତ୍ରୀ ତିଳୋତ୍ତମା, ଛତ୍ରପଡ଼ାର ପଦ୍ମନାଭ ରାୟଙ୍କ ସ୍ତ୍ରୀ ରଜନୀ ଦେବୀ, ଅଦ୍ୱୈତ ପ୍ରସାଦ ଦାସଙ୍କ ସ୍ତ୍ରୀ ଶାରଦା ପ୍ରମୁଖ ଏହି ଶିବିରରେ ଯୋଗ ଦେଇଥିଲେ । ମୁଁ ସେହି ଶିବିର କାମରେ ଲାଗି ପଡ଼ିଲି ।

ଉତ୍କଳ ମୌଳିକ ଶିକ୍ଷା ପରିଷଦର ଶିକ୍ଷକ କର୍ମୀମାନେ କାରାମୁକ୍ତ ହେବା ପରେ ମୌଳିକ ଶିକ୍ଷାର ପରଖକୁ ପୁନରୁଜ୍ଜୀବିତ କରିବା ପାଇଁ ଲାଗି ପଡ଼ିଲେ । ବନ୍ୟା ହେତୁ ବରୀ ଅଞ୍ଚଳର ଲୋକେ ଖାଦ୍ୟାଭାବ ଭୋଗୁଥିବାରୁ ଶିକ୍ଷକମାନେ ପ୍ରଥମେ ରିଲିଫ୍ କାମରେ ଲାଗି ପଡ଼ିଲେ । ତାହାପରେ ଶ୍ରୀ ଭଗୀରଥ ଦାସଙ୍କ ପୃଷ୍ଠପୋଷକତାରେ ପୁଣି ବିଦ୍ୟାଳୟଗୁଡ଼ିକ ଆରମ୍ଭ କରାଗଲା । ମୌଳିକ-ଶିକ୍ଷା ପୁଣି ପଲ୍ଲବିଲା । ସର୍ବଶ୍ରୀ ରାଜକୃଷ୍ଣ ବୋଷ, ସୁଧୀର ଘୋଷ, ପଦ୍ମନାଭ ରାୟ ପ୍ରମୁଖ ଯେଉଁ କର୍ମୀମାନେ ଜେଲ୍‌ରୁ ଖଲାସ ହୋଇ ନ ଥିଲେ, ସେମାନଙ୍କ ପିଲାଙ୍କୁ ରାମଚନ୍ଦ୍ରପୁର ଅଣାଯାଇ ଗୋଟିଏ ଛାତ୍ରବାସ ସ୍ଥାପନ କରାଗଲା । ବୈକୁଣ୍ଠନାଥ ମହାନ୍ତି ଉଆର୍ଦ୍ଧା ଯାଇ ଦାଣ୍ଡିଆ ନାଚ ଶିଖି ଆସିଲେ । ଗାଁର ଯୁବକ, ମୌଳିକ ବିଦ୍ୟାଳୟ ଛାତ୍ରମାନଙ୍କ ଦାଣ୍ଡିଆ ନାଚ ଓ ଜାତୀୟ ସଙ୍ଗୀତ ତାନରେ 'ବାଣୀଶ୍ରୀ[୧]'' ପୁଣି ମୁଖରିତ ହୋଇ ଏକ ନୂଆ ସାଂସ୍କୃତିକ ଚେତନା ସୃଷ୍ଟି

୧. ରାମଚନ୍ଦ୍ରପୁର ମୌଳିକ ବିଦ୍ୟାଳୟର ନାମ

ହେଲା । ଆଜି ମଧ୍ୟ ସେ ଗୀତଲହରୀ କାନରେ ବାଜୁଛି –

''ସ୍ୱରାଜ ଦୁଆରେ ହାଜର ହେଲାଣି
ଗଢ଼ ବସି ତା ବିଧାନରେ
ଗାନ୍ଧୀ ବୋଲ ଏବେ ମାନରେ
କିମ୍ୱା
ସତ୍ୟ ଅହିଂସାକେ ସାଧନୋଁ ସେ ଚଲୋ
କରନେ ସ୍ୱରାଜ୍ୟକା ବିଧାନରେ
ଲଲ୍‌କାରା ଗାନ୍ଧୀ ମହାରାଜନେ –'' ।

ସର୍ବଶ୍ରୀ ବାସୁଦେବ ମହାନ୍ତି, ଫକୀର ମିଶ୍ର ପ୍ରମୁଖ ନୂଆ ନୂଆ କର୍ମୀ ଆସି ଏହି ପ୍ରୟୋଗରେ ଯୋଗ ଦେବାକୁ ଲାଗିଲେ । ଜନସାଧାରଣଙ୍କ ଆର୍ଥିକ ସାହାଯ୍ୟ ଉପରେ ନିର୍ଭର କରି ଏ କାମ ଚାଲୁଥିବାରୁ କର୍ମୀମାନଙ୍କୁ ବହୁତ ଅଭାବ ଅନାଟନ ସହିବାକୁ ପଡୁଥାଏ । ଇତି ମଧ୍ୟରେ କଂଗ୍ରେସୀ ମନ୍ତ୍ରୀମଣ୍ଡଳ ଗଢ଼ା ହେବାରୁ ଏହି ସରକାର ମୌଳିକ ଶିକ୍ଷାର ଏହି ପ୍ରୟୋଗର ପୃଷ୍ଟପୋଷକତା କରିବେ ବୋଲି ଅନେକ ଆଶା କରିଥିଲେ । ମାତ୍ର ଏ ମନ୍ତ୍ରୀମଣ୍ଡଳ ଏହି ପ୍ରୟୋଗ ଚଳାଇବା ଦିଗରେ କୌଣସି ଆଗ୍ରହ ପ୍ରକାଶ କଲେ ନାହିଁ । ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ ଏ ବିଷୟରେ ମନ୍ତ୍ରୀମାନଙ୍କ ସଙ୍ଗେ ଆଲୋଚନା କରି ଯେତେବେଳେ ଆଚାର୍ଯ୍ୟ ହରିହର ଦାସଙ୍କ ଭଳି ଶିକ୍ଷାବିତ୍‌ଙ୍କ ନେତୃତ୍ୱରେ ଏ ପ୍ରୟୋଗ ଚାଲୁଥିବାରୁ ଏହାର ଗୁରୁତ୍ୱ ସେମାନଙ୍କର ହୃଦ୍‌ବୋଧ କରିଥିଲେ ସେତେବେଳେ ଯାଇ ସରକାର ଆର୍ଥିକ ସାହାଯ୍ୟ ଦେବାକୁ ମଙ୍ଗିଲେ ସିନା ମାତ୍ର ମୌଳିକ-ଶିକ୍ଷାକୁ ସରକାରୀ ମାନ୍ୟତା ଦେଲେ ନାହିଁ । ଫଳରେ ଏହି ବିଦ୍ୟାଳୟରେ ପଢୁଥିବା ଛାତ୍ର କୌଣସି ବିଶ୍ୱ-ବିଦ୍ୟାଳୟରେ ପଢ଼ି ପାରିଲେ ନାହିଁ, ଅଥଚ ମୌଳିକ ବିଦ୍ୟାଳୟରେ ପାଠ ପଢ଼ି ଏକାଧିକ କୃତୀ ଛାତ୍ର ଆମେରିକା ଓ ଜାପାନର ବିଶ୍ୱ-ବିଦ୍ୟାଳୟରେ ପାଠ ପଢ଼ିବା ପାଇଁ ଯୋଗ୍ୟ ବିବେଚିତ ହେଲେ । ମୌଳିକ ଶିକ୍ଷା-ପ୍ରୟୋଗର ଏହି ଅଧ୍ୟାୟଟି ଅତ୍ୟନ୍ତ ବେଦନାଦାୟକ । ମୌଳିକ ଶିକ୍ଷାର ପ୍ରୟୋଗରେ ଦୋଷତ୍ରୁଟି ଯେ ଆଦୌ ନ ଥିଲା, ତାହା ନୁହେଁ, ପ୍ରୟୋଗ ଚାଲିଥିବା ବେଳେ ତ ତାହା ରହିବା ସ୍ୱାଭାବିକ, ମାତ୍ର ମଣିଷକୁ ନେଇ ଏ ଶିକ୍ଷାର ପ୍ରୟୋଗ ହେଉଥିବାରୁ ସେହି ମଣିଷକୁ ତ ପୁଣି ଥଇଥାନ କରିବାର ଦାୟିତ୍ୱ ମଧ୍ୟ ସମାଜ ଓ ସରକାର ବହନ କରିବା ଉଚିତ ! କର୍ମବିମୁଖ ଶିକ୍ଷାକୁ

କର୍ମ ଅଭିମୁଖୀ କରିବା ପାଇଁ ଆଜିକାଲି ଯେଉଁ ପ୍ରୟାସ ଚାଲିଛି, ସେ ସମୟରେ ମୌଳିକ ଶିକ୍ଷାର ପ୍ରୟୋଗକୁ ସମାଜ ଓ ସରକାର ସହାନୁଭୂତିପୂର୍ଣ୍ଣ ଦୃଷ୍ଟିରେ ଦେଖିଥିଲେ ଆଜିର ସମସ୍ୟାର ସମାଧାନରେ ତାହା ସାହାଯ୍ୟ କରିଥାନ୍ତା । ମାତ୍ର ଓଲଟା ଏହି ମୌଳିକ ଶିକ୍ଷାର ପ୍ରୟୋଗକୁ ଚଳାଇବାକୁ ଯାଇ ୧୯୪୦ ରୁ ୧୯୫୬ ପର୍ଯ୍ୟନ୍ତ ଯେତେ ନିନ୍ଦା ଦୁଃଖକ୍ଳେଶର ସମ୍ମୁଖୀନ ହେବାକୁ ପଡ଼ିଲା ତାହା ସ୍ୱାଧୀନତା ଆନ୍ଦୋଳନ ପାଇଁ ଭୋଗିଥିବା ଦୁଃଖକଷ୍ଟ ଠାରୁ କିଛି ଊଣା ନୁହେଁ । ପୁଣି ୧୯୪୫ରେ ରାମଚନ୍ଦ୍ରପୁର ସ୍କୁଲ ଘରେ ନିଆଁ ଲାଗି ଏନ୍‌ସାଇକ୍ଲୋପେଡ଼ିଆ ବ୍ରିଟାନିକାଠାରୁ ଆରମ୍ଭ କରି ମାଇକ୍ରୋସ୍କୋପ ଯାଏ ବହୁ ମୂଲ୍ୟବାନ ସାଧନ ସାମଗ୍ରୀ ଭସ୍ମୀଭୂତ ହୋଇଗଲା । ଏ ସବୁ ବିଘ୍ନକୁ ଆଚାର୍ଯ୍ୟ ମହାଶୟ 'ଶ୍ରେୟାଂସି ବହୁବିଘ୍ନାନି' କହି ହଜମ କରିଯିବା ବାତାବରଣ ସୃଷ୍ଟି କଲେ ।

ମୌଳିକ-ଶିକ୍ଷାର ପ୍ରୟୋଗ କ୍ଷେତ୍ର ରାମଚନ୍ଦ୍ରପୁରରେ ହିଁ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ୍ ପକ୍ଷରୁ ମହିଳା କର୍ମୀ ତାଲିମ ଶିବିର ୧୯୪୬ ମସିହାରେ ଆରମ୍ଭ ହେଲା । ସମଗ୍ର ଭାରତରେ ଟ୍ରଷ୍ଟ୍‌ର କାମକୁ ସଂଗଠିତ କରିବା ପାଇଁ ଗାନ୍ଧିଜୀ ପ୍ରତି ପ୍ରଦେଶରେ ଜଣେ ଲେଖା ମହିଳା ପ୍ରତିନିଧି ନିଯୁକ୍ତ କରିଥିଲେ । ଓଡ଼ିଶା ପାଇଁ ସେ ରମାଦେବୀଙ୍କୁ ପ୍ରତିନିଧି ନିଯୁକ୍ତ କଲେ । ୧୯୪୬ ମସିହା ଜୁନ୍ ପନ୍ଦର ତାରିଖରେ ରାମଚନ୍ଦ୍ରପୁରର କନ୍ୟାଶ୍ରମ ଓ ମହିଳାକର୍ମୀ ତାଲିମ ଶିବିର ତଦାନୀନ୍ତନ ରାଜସ୍ୱ ମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଦ୍ୱାରା ଉଦ୍‌ଘାଟିତ ହେଲା । କୁମାରୀ ମଙ୍ଗଳା ସେନ୍, କୁମାରୀ ଶକୁନ୍ତଳା ମହାନ୍ତି ଓ ମୁଁ ଏହି କାମର ଦାୟିତ୍ୱ ନେଲୁ । କାରାମୁକ୍ତ ହେବା ପରେ କୁମାରୀ ପାର୍ବତୀ ଗିରି ଆମ ସଙ୍ଗେ ଯୋଗ ଦେଲେ । ପାର୍ବତୀ ପରବର୍ତ୍ତୀ କାଳରେ ନାନାବିଧ ସମାଜ ସେବା ନିମନ୍ତେ ରାଷ୍ଟ୍ରୀୟ ପୁରସ୍କାର ପାଇଲେ ।

ମାତୃଭାଷାରେ ବାଲ୍‌ବାଡ଼ିରେ ଶିକ୍ଷା ଦେବାର ପରଖ ସର୍ବପ୍ରଥମେ ଏହି ରାମଚନ୍ଦ୍ରପୁରଠାରେ ଆରମ୍ଭ ହେଲା । ଗୁଜରାଟରେ ମ୍ୟାଡ଼ାମ୍ ମଣ୍ଟେସରୀଙ୍କ ପ୍ରବର୍ତ୍ତନାରେ ଶ୍ରୀ ଗୀଜୁଭାଇ ବଧେକା ଓ ତାରାବହନ ମୋଦକ ଯେପରି ମାତୃଭାଷାରେ ଶିଶୁ ଶିକ୍ଷା ଦେବା ପାଇଁ ବହୁ ସଂଖ୍ୟାରେ ବାଲବାଡ଼ି ଚଳାଇଥିଲେ, ଓଡ଼ିଶାରେ ତାହା ସେତେବେଳକୁ ହୋଇ ନ ଥିଲା । କଟକ ସହରରେ ସେଣ୍ଟ୍ ଯୋଶେଫ୍‌ସ କନ୍‌ଭେଣ୍ଟରେ ଯେଉଁ ବାଲବାଡ଼ି (ନର୍ସରୀ ସ୍କୁଲ) ଚାଲିଥିଲା ତାହାର ମାଧ୍ୟମ ଥିଲା ଇଂରାଜୀ । ଛୋଟ ପିଲା କିଛି ଅର୍ଥ ନ ବୁଝି ଯନ୍ତ୍ରଚାଳିତବତ୍ ଇଂରାଜୀ କବିତା ଆବୃତ୍ତି କରୁଥିଲେ । ଅଥଚ ଶିକ୍ଷାବିତ୍‌ମାନେ ଛୋଟ ଶିଶୁକୁ ମାତୃଭାଷା ମାଧ୍ୟମରେ ଶିକ୍ଷା ଦେବା ଉଚିତ ବୋଲି ଦୃଢ଼ ମତ ପୋଷଣ

କରୁଥିଲେ । ମୌଳିକ ଶିକ୍ଷାର ବିଶେଷଜ୍ଞମାନେ ମଧ୍ୟ ଏଥି ସହିତ ଏକମତ ଥିବାରୁ ରାମଚନ୍ଦ୍ରପୁରରେ ପ୍ରଥମେ ଏ ପରଖ ଆରମ୍ଭ ହେଲା । ଶ୍ରୀମତୀ ଛାୟା ପରିଡ଼ା ଏ କାମ ପାଇଁ ବଛା ହୋଇଥିଲେ । ଏହା ପରେ ପରେ ବରୀରେ ଶ୍ରୀମତୀ ସୁମିତ୍ରା ଚୌଧୁରୀ ଗୋଟିଏ ବାଲବାଡ଼ି ଚଳାଇଲେ । ତା'ପରେ କୁମାରୀ ପ୍ରେମଲତା ଜେନା ୱାର୍ଦ୍ଧାରୁ ତାଲିମ ପାଇ ଆସି ଏ କାମରେ ଲାଗିଲେ । ପରବର୍ତ୍ତୀ କାଳରେ ସୁମିତ୍ରା ଚୌଧୁରୀ କସ୍ତୁରବା ସ୍ମାରକ ଟ୍ରଷ୍ଟର ପ୍ରତିନିଧି ହେଲେ ଓ ପ୍ରେମଲତା କୋରାପୁଟରେ କାମ କଲେ ।

ଏହି ସମୟରେ ଶ୍ରୀମତୀ ରମ୍ଭାଦେବୀ ଜୁଡ଼ିଆ, ତାଙ୍କ ସ୍ୱାମୀ ଶ୍ରୀ ଗୋବର୍ଦ୍ଧନ ଦାସ ଜୁଡ଼ିଆଙ୍କ ସଙ୍ଗେ ପ୍ରଥମେ ବରୀ ଆସିଲେ । ରମ୍ଭାଦେବୀ ବିହାରର ଝିଅ, ଗୁଜରାତର ବୋହୂ, ମାତ୍ର ଲାଳିତପାଳିତ ହୋଇଥିଲେ କଲିକତାରେ । ପିଲାଦିନୁଁ ପ୍ରେମଚାନ୍ଦଙ୍କ ଉପନ୍ୟାସ ପଢ଼ି ଦେଶ ସେବା କରିବା ପାଇଁ ତାଙ୍କ ମନରେ ତୀବ୍ର ଆକାଂକ୍ଷା ଜାତ ହୋଇଥିଲା । ଅଳ୍ପ ବୟସରେ ବିବାହ କରିବା ପରେ ଗୋଟିଏ ପୁତ୍ରସନ୍ତାନ ଜାତ ହେବା ପରେ ସେ ପାଠ ପଢ଼ି ବି.ଏ. ପାସ୍ କରି ବି.ଏଡ୍ ପଢ଼ିଲେ । ଏହି ସମୟରେ ସେ ଗାନ୍ଧିଜୀଙ୍କ ସଂସ୍ପର୍ଶକୁ ଆସିଲେ ଏବଂ ତାଙ୍କ ପ୍ରବର୍ତ୍ତନାରେ ସେ ସଭର୍ତ୍ତୁକ ସେବାଗ୍ରାମ ଗଲେ । ସେଠାରେ କିଛିଦିନ ରହିବା ପରେ ଶ୍ରୀମତୀ ସରଳା ଦେବୀଙ୍କ ମାଧ୍ୟମରେ ରମାଦେବୀଙ୍କ ସହ ପତ୍ର ବିନିମୟ କରି ବରୀକୁ ଆସି ଗ୍ରାମ-ସେବା କାମରେ ଲାଗିଲେ । ତାଙ୍କ ସ୍ୱାମୀ ଜଣେ ଧନୀ ବ୍ୟବସାୟୀ । ତେଣୁ ସେ ବିଳାସବ୍ୟସନରେ ଜୀବନ କଟାଇବାରେ ଅଭ୍ୟସ୍ତ ଥିଲେ । କିନ୍ତୁ ଦେଶ-ସେବା ନିଶା ତାଙ୍କୁ ଏପରି ଘାରିଲା ଯେ ଆମ ସଙ୍ଗେ ଚାଳଛପର ମାଟିଘରେ ରହି ତଳେ ବସି ଖାଇଲେ, ରୋଗୀ-ସେବା କଲେ, ପାଇଖାନା ସଫା କରିବାକୁ ମଧ୍ୟ ପଛେଇଲେ ନାହିଁ । ବୋଲିବା ବାହୁଲ୍ୟ ରଚନାତ୍ମକ କର୍ମୀ ମାତ୍ରେ ପାଇଖାନା ବ୍ୟବହାର କରିବା ଓ ପାଇଖାନା ସଫା କରିବାଟାକୁ ଅବଶ୍ୟ କର୍ତ୍ତବ୍ୟ ମଣୁଥିଲେ । ପରବର୍ତ୍ତୀ କାଳରେ ରମ୍ଭାଦେବୀ ହରିଦାସପୁରଠାରେ ସେବା ସମିତି ନାମକ ସଂସ୍ଥା ସ୍ଥାପନ କରି ଗ୍ରାମ-ସେବା କାର୍ଯ୍ୟ କଲେ ଏବଂ ସେଥିପାଇଁ ରାଷ୍ଟ୍ରୀୟ ପୁରସ୍କାର ମଧ୍ୟ ପାଇଲେ ।

କୁମାରୀ ଅନ୍ନପୂର୍ଣ୍ଣା ଦାସ ବି.ଏ. ପାସ୍ କରି ଡେ଼ପୁଟୀ ମ୍ୟାଜିଷ୍ଟ୍ରେଟ ଚାକିରୀ ପାଇବା ସମ୍ଭାବନା ମଧ୍ୟରେ ଥିଲେ । ରମ୍ଭାଦେବୀ ତାଙ୍କର ବ୍ୟକ୍ତିତ୍ୱର ଯଶୋଗାନ ଲୋକମୁଖରେ ଶୁଣି ତାଙ୍କୁ ଗାନ୍ଧୀ-ବିଚାର ଅନୁସାରେ ଗଠନମୂଳକ କାମ କରିବା ପାଇଁ ପ୍ରରୋଚିତ କଲେ । ଅନ୍ନପୂର୍ଣ୍ଣା ଦେବୀ ପ୍ରଥମେ ମୌଳିକ ଶିକ୍ଷାର ପରଖରେ ଯୋଗ

ଦେଇ ରମାଦେବୀଙ୍କ ପରେ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟର ପ୍ରତିନିଧି ହେଲେ । ସେ ନିଖିଳ ଭାରତୀୟ ସ୍ତରରେ ଶାନ୍ତିସେନା ବିଦ୍ୟାଳୟର ପରିଚାଳନାର ଦାୟିତ୍ୱ ମଧ୍ୟ ଦଶବର୍ଷକାଳ ବହନ କରିଥିଲେ ।

୧୯୪୯ରେ ଡ଼କ୍ଟର ତୁଙ୍ଗବିଦ୍ୟା ଗୋପବାବୁଙ୍କ ପ୍ରବର୍ତ୍ତନାରେ ସରକାରୀ ଚାକିରୀ ଛାଡ଼ି କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟର ତତ୍ୱାବଧାନରେ ମାତୃମଙ୍ଗଳ ଓ ଶିଶୁ କଲ୍ୟାଣ କାମରେ ଆତ୍ମନିୟୋଗ କଲେ । ପରେ ସେ ଟ୍ରଷ୍ଟର ପ୍ରତିନିଧି ହେଲେ ଓ ରାଷ୍ଟ୍ରୀୟ ପୁରସ୍କାର ପାଇଲେ ।

ଆମେମାନେ ଏହିପରି ନୂଆନୂଆ ଉଚ୍ଚ ଶିକ୍ଷିତା ମହିଳା କର୍ମୀଙ୍କ ଗହଣରେ ରହି ରଚନାତ୍ମକ କାମରେ ବୁଡ଼ି ରହିଥିବା ବେଳେ ଦିଲ୍ଲୀରେ ଶାସନ ପରିଷଦ ଗଠିତ ହେଲା ଏବଂ ଜିନ୍ନା ସାହେବ ପ୍ରତ୍ୟକ୍ଷ ସଂଗ୍ରାମ ଦିବସ ପାଳନ କରିବା ପାଇଁ ତାଙ୍କର ଅନୁଗାମୀମାନଙ୍କୁ ଡ଼ାକରା ଦେଲେ । ଦେଶରେ ବିଶେଷରେ ବଙ୍ଗପ୍ରଦେଶ ଓ ପଞ୍ଜାବରେ ସାଂପ୍ରଦାୟିକତାର ନିଆଁ ଜଳି ଉଠିଲା । ଗାନ୍ଧିଜୀ ନୂଆଖାଲିରେ ଶାନ୍ତି ଯାତ୍ରା ଆରମ୍ଭ କଲେ । ଓଡ଼ିଶାରୁ ଗୋପବନ୍ଧୁ ଚୌଧୁରୀ, ମାଳତୀ ଚୌଧୁରୀ, ଡ଼ାକ୍ତର ରବି ଘୋଷ ଓ ସୁଦକ୍ଷା ବାନାର୍ଜି ନୂଆଖାଲି ଯାଇ ଶାନ୍ତି ସଂସ୍ଥାପନା କାମରେ ଲାଗିଲେ । ନୂଆଖାଲିର ଦଙ୍ଗା ବିଧ୍ୱସ୍ତ ଅଞ୍ଚଳରେ ସୁଦ୍ଧା ଗାନ୍ଧିଜୀ କୁମାରୀ ମନୁଗାନ୍ଧୀ ପରି ଯୁବତୀ ଝିଅମାନଙ୍କୁ ଅନ୍ଧାର ରାତିରେ ଏକାକିଆ ଯିବା ପାଇଁ ଉତ୍ସାହିତ କରୁଥିଲେ । ନାରୀ ନିଜର ଇଜ୍ଜତ ରକ୍ଷା କରିବା ପାଇଁ ନିଜେ ସମର୍ଥ ହେବା ଆବଶ୍ୟକ ଏବଂ ଏହି ଯୋଗ୍ୟତା ହାସଲ କରିବାରେ ଆଧ୍ୟାତ୍ମିକ ଶକ୍ତି ବା ରାମନାମ ହିଁ ନାରୀକୁ ସାହାଯ୍ୟ କରିପାରିବ, ଗାନ୍ଧିଜୀଙ୍କର ଏହି ବିଶ୍ୱାସ ନୂଆଖାଲିର ଧର୍ମାନ୍ତରିତ ମହିଳାମାନଙ୍କ ସଂସ୍ପର୍ଶକୁ ଆସି ଦୃଢ଼ତର ହୋଇଥିଲା । ଆମେ ନୂଆଖାଲିଠାରୁ ବହୁ ଦୂରରେ ଥାଇ ସୁଦ୍ଧା ଆପଣା ମଧ୍ୟରେ ଏହି ସାହସିକତା ବା ଆତ୍ମଶକ୍ତି ବଢ଼ାଇବା ପାଇଁ ନାନାପ୍ରକାର ଉପାୟ ଅବଲମ୍ବନ କରୁଥିଲୁ ।

୧୯୪୭ ମସିହା ଅଗଷ୍ଟ ପନ୍ଦର ଆସିଲା । ଭାରତରୁ ବ୍ରିଟୀଶ ସରକାର ଏଡ଼େ ଶୀଘ୍ର ଅପସରି ଯିବ ବୋଲି ମୁଁ ତ ଛାର, ଆଚାର୍ଯ୍ୟ ମହାଶୟ ସୁଦ୍ଧା କଳ୍ପନା କରି ନ ଥିଲେ । ଅଗଷ୍ଟ ଚଉଦ ରାତିଟି ଉଜାଗର ରହି ଆମେ ରାତି ବାରଟା ବାଜିବା ମାତ୍ରେ ପତାକା ପୀଠରେ ଏକତ୍ର ହୋଇ ଜାତୀୟ ସଙ୍ଗୀତ ବୋଲିଲୁ । ସେଦିନର ମନଃସ୍ଥିତି ଅବର୍ଣ୍ଣନୀୟ । ରାତିସାରା ଯେ ଯାହାକୁ ଦେଖୁଥାଉ, ଖାଲି କୁଣ୍ଢେଇ ପକାଉଥାଉ, କହିବାକୁ ଭାଷା ପାଉ ନ ଥାଉ । କି ଅନିର୍ବଚନୀୟ ଆନନ୍ଦ । ଆତ୍ମୋପଲବ୍ଧିରେ ଏହିପରି ଆନନ୍ଦ ହେଉଥିବ ପରା !

ରାତି ପାହିଲାରୁ ପତାକା ଉତ୍ତୋଳନ ଆଦି କାର୍ଯ୍ୟକ୍ରମ ଆରମ୍ଭ ହେଲା । ରାମଚନ୍ଦ୍ରପୁରରେ ସେଦିନ ସନ୍ଧ୍ୟାରେ ସହଭୋଜନ କାର୍ଯ୍ୟକ୍ରମ ରଖାଗଲା । ଆମେ ତ ପାଗୁପର୍ଯ୍ୟନ୍ତ ଗରିବଙ୍କ ପରି ଚଳୁଥାଉ, ସେଦିନ ସହଭୋଜନରେ କ୍ଷୀରି ଆହାର ପ୍ରକାରରେ ସ୍ଥାନ ପାଇଲା ।

ଏହି ଆୟୋଜନ ଚାଲିଛି, ରମାଦେବୀ ଓ ଗୋପବାବୁ ବରୀରୁ ଚାଲି ଚାଲି ଆସି ପହଞ୍ଚିଲେ । ଦୁହେଁ ଉପବାସ କରିଥାନ୍ତି, ଚିନ୍ତାଗ୍ରସ୍ତ ଦିଶୁଥାନ୍ତି । ନବଲବ୍ଧ ସ୍ୱାଧୀନତା ପାଇବାର ଆନନ୍ଦରେ ଆମେ ଯେତେବେଳେ ଉଲ୍ଲସିତ, ସେତେବେଳେ ସେ ଗାନ୍ଧିଜୀଙ୍କର ଚେତାବନୀ ମନେ ପକାଇ ଏହି ସ୍ୱାଧୀନତାର ଯଥାଯଥ ଉପଯୋଗ ଦେଶବାସୀ କରି ପାରିବେ କି ନାହିଁ ବିଚାରି ଚିନ୍ତା ସାଗରରେ ବୁଡ଼ି ଯାଇଥାନ୍ତି ।

କେତେଦିନ ପରେ ଆମେ ଜାଣିଲୁ ଅଗଷ୍ଟ ପନ୍ଦର ଉପଲକ୍ଷ୍ୟେ ଦିଲ୍ଲୀ ଯେତେବେଳେ ଆଲୋକମାଳା ବିଭୂଷିତ ହୋଇ ଇନ୍ଦ୍ରପୁରୀ ପରି ଦିଶୁଥିଲା, ସେତେବେଳେ ଗାନ୍ଧିଜୀ କଲିକତା ନଗରୀରେ ଉପବାସ ରହି ଗୋଟିଏ ଅନ୍ଧାରୁଆ ଘରେ ବସି ଆତ୍ମନିରୀକ୍ଷଣ କରୁଥିଲେ ।

ସେଦିନ ଜାଣିଲି ଆମେ କେତେ ହାଲୁକା ।

ଦେଶ ସ୍ୱାଧୀନ ହେବା ପରେ ଗଠନମୂଳକ କର୍ମୀଙ୍କ କ'ଣ ହେବ, କେଉଁ ପ୍ରକାର ଆଭିମୁଖ୍ୟ ଘେନି ସେମାନେ ନିଜର କର୍ମପନ୍ଥା ସ୍ଥିର କରିବେ, ଶହ ଶହ କାହିଁକି ହଜାର ହଜାର ଗଠନମୂଳକ କର୍ମୀଙ୍କ ଆଗରେ ଏ ପ୍ରଶ୍ନ ଉଭା ହେଲା । ଗଠନମୂଳକ କାମ କରୁଥିବା କର୍ମୀମାନେ ଏକାଠି ହୋଇ ଏ ବିଷୟରେ ଗାନ୍ଧିଜୀଙ୍କ ଉପସ୍ଥିତିରେ ବିଚାର ବିନିମୟ କରିବା ପାଇଁ ଓ ଗାନ୍ଧିଜୀଙ୍କ ନିର୍ଦ୍ଦେଶ ପାଇବା ପାଇଁ ଉଆର୍ଦ୍ଧାରେ ଏକ ସମ୍ମିଳନୀ ଡ଼କା ହେଲା । ଗୋପବନ୍ଧୁ ଚୌଧୁରୀ ଏହି ସମ୍ମିଳନୀରେ ଯୋଗ ଦେବା ପାଇଁ ୧୯୪୮ ମସିହା ଜାନୁଆରୀ ଏକତ୍ରିଶ ତାରିଖ ଦିନ ବରୀରୁ ଯାଜପୁର ବାଟେ ଉଆର୍ଦ୍ଧା ଅଭିମୁଖେ ଯାତ୍ରା କଲେ ।

ଆମେ ଆମର ନିତ୍ୟକର୍ମରେ ନିରତ ଥାଉ, ମାତ୍ର ମନ ଥାଏ ଉଆର୍ଦ୍ଧାରେ । ୧୯୪୪ରେ ଗାନ୍ଧିଜୀ ଚରଖାସଂଘର କର୍ମୀମାନଙ୍କୁ କହିଥିଲେ ଯେ ଯେଉଁ ସ୍ୱରାଜ୍ୟ ଆସୁଛି ତାହା ମୋ ପରିକଳ୍ପିତ ସ୍ୱରାଜ୍ୟ ନୁହେଁ । ଅହିଂସାର ମୂଳଦୁଆ ଉପରେ ପ୍ରତିଷ୍ଠିତ ଯେଉଁ ସର୍ବପ୍ରକାରେ ସମତ୍ୱର ଉପାସକ ସମାଜର କଳ୍ପନା ସେ କରିଥିଲେ ସେଥିପାଇଁ ସ୍ୱାଧୀନ ଭାରତରେ କେଉଁ ଧରଣର କାମ କରିବାକୁ ହେବ, ସେହି ସ୍ୱରାଜ୍ୟୋତ୍ତର

କାର୍ଯ୍ୟକ୍ରମର ରୂପରେଖ ଜାଣିବା ପାଇଁ ଆମେ ଉଦ୍‌ଗ୍ରୀବ ହୋଇ ରହିଥାଉ । ତାହା ସାଙ୍ଗକୁ ପୁଣି ମଦନ ଲାଲଙ୍କର ଗାନ୍ଧିଜୀଙ୍କ ପ୍ରାର୍ଥନା ସଭାରେ ବୋମା ନିକ୍ଷେପ ଘଟଣା ଏକ ବଜ୍ରପାତର ସୂଚନା ଦେଉଥାଏ । ଅବଶ୍ୟ ଗାନ୍ଧିଜୀଙ୍କୁ ହତ୍ୟା କରିବା ପାଇଁ ବହୁବାର ଉଦ୍ୟମ ହୋଇଗଲା । ଦକ୍ଷିଣ ଆଫ୍ରିକାରେ ମୀର୍ ଆଲମ୍‌ଙ୍କ ଠେଙ୍ଗା ପାହାରରୁ ସେ ବର୍ତ୍ତି ଯାଇଥିଲେ । ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ପାଇଁ ଗସ୍ତ କଲାବେଳେ ଆଜମେର ନିକଟରେ ତାଙ୍କ ଉପରକୁ ବୋମା ଫିଙ୍ଗା ହୋଇଥିଲା । ରାଜକୋଟ ସତ୍ୟାଗ୍ରହ ବେଳେ ଯେଉଁ ଲୋକ ଗାନ୍ଧିଜୀଙ୍କୁ ହତ୍ୟା କରିବା ପାଇଁ ସଜ ହୋଇ ଆସିଥିଲା, ଗାନ୍ଧିଜୀ ହଠାତ୍ ଅସହ୍ୟ ଉଦର ଯନ୍ତ୍ରଣାରେ କାତର ହୋଇ ସେହି ଲୋକର କୋଳକୁ ଆଉଜି ଯାଇଥିଲେ ଏବଂ ସେ ଲୋକକୁ ତାଙ୍କୁ ମୋଟର କାର୍ ଯାଏ ଧରି ଧରି ନେଇ ଯିବାକୁ ଅନୁରୋଧ କରିଥିଲେ । ''ଅହିଂସାୟାଂ ପ୍ରତିଷ୍ଠାୟାଂ ତତ୍‌ସନ୍ନିଧୌ ବୈରତ୍ୟାଗ'' ପ୍ରାଞ୍ଜଳ ଯୋଗ ସୂତ୍ରର ଏହି ଉକ୍ତିକୁ ସାର୍ଥକ କରି ସେ ଲୋକ ସେଦିନ ଗାନ୍ଧିଜୀଙ୍କୁ ମାରିବା ପରିବର୍ତ୍ତେ ହାତ ଧରି ଧରି ନେଇ ଯାଇଥିଲେ । ଏ ସବୁ ଘଟଣା ଶୁଣିବା ମାତ୍ରେ ମନକୁ ଗୋଟିଏ କଥା ଆସୁଥିଲା - ''ଯାହାକୁ ରଖିବେ ଅନନ୍ତ ।''

ବୁଦ୍ଧିରେ ବୁଝୁଥିଲେ ସୁଦ୍ଧା ଭାରତୀୟ ସଧବା ନାରୀ ଯେପରି କଳ୍ପନା କରେ ଯେ ସେ ବଞ୍ଚିଥିବା ଯାଏ ତା ସ୍ୱାମୀ ନିଶ୍ଚୟ ବଞ୍ଚି ରହିବେ, ସେହିପରି ଆମ ମନ ଆମ ବୁଦ୍ଧିକୁ ଅଗ୍ରାହ୍ୟ କରି ମନେ ମନେ ଭାବିଥିଲା ଯେ ଆମେ ବଞ୍ଚିଥିବା ଯାଏ ଆମ ଗାନ୍ଧିଜୀ ବଞ୍ଚିଥିବେ । ଏ କ୍ଷେତ୍ରରେ ମାନସିକ ପ୍ରସ୍ତୁତିର ପ୍ରଶ୍ନ ନ ଥାଏ ।

ମୁଁ ମହିଳା ତାଲିମ ଶିବିରର ବଗଡ଼ା ତାଟି ଘେରା ପାଇଖାନା ସଜାଡୁ ଥାଏ । ସମୟ ଦିନ ବାରଟା ହେବ । ଆକୁଳୀ ମେକାପ ମୋତେ ଡ଼ାକି ଡ଼ାକି ଆସି କହିଲେ- ଯାଜପୁରରୁ ଶୁଣି ଆସିଲି ଗାନ୍ଧିଜୀଙ୍କୁ କିଏ ଗୁଳି କରି ମାରି ଦେଇଛି । ତତ୍‌କ୍ଷଣାତ୍ ସେହି ସ୍ଥାନରୁ ବରୀ ଆଡ଼କୁ ମୁହାଁଇ ଚାଲିଲି । ବାଟଯାକ ମୁହଁରେ ଗୀତା ଆବୃତ୍ତି କରୁଥାଏ, ଅନ୍ତରରେ ଗୋଟିଏ ବ୍ୟାକୁଳ ପ୍ରଶ୍ନ- କ'ଣ ହେଲା !

ବରୀରେ ପହଞ୍ଚି ଦେଖିଲି ଗୋପବାବୁ ଏ ଖବର ପାଇ ଅଧାବାଟରୁ ଫେରି ଆସିଛନ୍ତି । ସେ ଓ ମନମୋହନ ଭାଇ ସ୍ତବ୍ଧହୋଇ ବସିଛନ୍ତି । ରମାଦେବୀ ଓ ସୁମିତ୍ରା ଦେବୀ ଜାଆଁଳା ଶିଶୁ ଦୁଇଟିକୁ କ୍ଷୀର ପିଆଉଛନ୍ତି । ମୁଁ ପଚାରିଲି - କ'ଣ କରିବା ? ବିନା କ୍ଲୋରୋଫର୍ମରେ ପଠାଘାଆରେ ଅସ୍ତ୍ରୋପଚାର ହେବାବେଳେ ହଲଚଲ ନ ହେବା ଲୋକ ମନମୋହନ ଚଉଧୁରୀ ପିଲାଙ୍କ ପରି ରାହା ଧରି କାନ୍ଦିଲେ । ଗୋପବାବୁ କିଛି

ଉତ୍ତର ନ ଦେଇ ବଡ଼ ପାଟିରେ ଭଗବଦ୍‌ଗୀତା ଆବୃତି କରିବା ଆରମ୍ଭ କରିଦେଲେ । କିଛିକ୍ଷଣ ପରେ ଆର୍ତ୍ତବନ୍ଧୁ ମହାନ୍ତି, ଗଣେଶ ମହାନ୍ତି, ବୃନ୍ଦାବନ ଜେନା ଆଦି କର୍ମୀମାନେ ଆସି ପହଞ୍ଚିଲେ । ଶୋକ ବାଣ୍ଟି ହୋଇଗଲା ।

ପରଦିନ ରାମଚନ୍ଦ୍ରପୁର ଝାଉଁ ବଗିଚାରେ ପ୍ରାର୍ଥନା ସଭା ଅନୁଷ୍ଠିତ ହେଲା । ଗୋପବାବୁ କହିଲେ - ତାଙ୍କର ଅସମାପ୍ତ କାମକୁ ସମ୍ପନ୍ନ କରିବା ପାଇଁ ଆମେ ଜୀବନ ପଣ କଲେ ଆମେ ତାଙ୍କର ସାନ୍ନିଧ୍ୟ ଲାଭ କରିବା । ସେ ଥିଲେ ଅନାସକ୍ତ ପୁରୁଷ । ଅନାସକ୍ତି ଥିଲା ତାଙ୍କ ଜୀବନର ଧ୍ରୁବପଦ । ତାଙ୍କ ପାଇଁ ଆମେ ଯଦି ଗୋଟିଏ ଗୋଟିଏ ଆସକ୍ତି ଛାଡ଼ି ପାରିବା, ତାହାହିଁ ତାଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧା ନିବେଦନ ହେବ ।

ପ୍ରାର୍ଥନା ଘରେ ଗୋପବାବୁ ରବୀନ୍ଦ୍ରନାଥଙ୍କ 'ଶିଶୁତୀର୍ଥ' ଆମୂଳଚୂଳ ଆବୃତ୍ତି କଲେ । କଥିତ ଅଛି ରାମଙ୍କ ଜନ୍ମ ପୂର୍ବରୁ ରାମାୟଣ ରଚିତ ହୋଇଛି । ସେହିପରି ଗାନ୍ଧିଜୀଙ୍କ ମୃତ୍ୟୁପୂର୍ବରୁ ବିଶ୍ୱକବି ତାଙ୍କର ମୃତ୍ୟୁର ବର୍ଣ୍ଣନା ''ଶିଶୁତୀର୍ଥ''ରେ କରି ଯାଇଛନ୍ତି:-

''...ସଂଶୟେ ଆମ୍‌ରା ତାକେ ଅସ୍ୱୀକାର କରେଛି
କ୍ରୋଧେ ଆମ୍‌ରା ତାକେ ହନନ କରେଛି
ପ୍ରେମେ ଆମ୍‌ରା ତାକେ ଗ୍ରହଣ କରବୋ
କେନନା ମୃତ୍ୟୁର ଦ୍ୱାରା ସେ ଆମାଦେର
ସକଲେର ମଧ୍ୟେ ସଂଜୀବିତ ।''



# ଆଳିମାଳିକା

ଦିଲ୍ଲୀର ଲାଲ୍‌କିଲ୍ଲା ଉପରେ ଭାରତର ଜାତୀୟ ପତାକା ଉଡ଼ିବ - ଏଇଟା ଥିଲା ଜୀବନର ସବୁଠାରୁ ବଡ଼ ସୁଖ ସ୍ୱପ୍ନ । ସେ ସ୍ୱପ୍ନ ସଫଳ ହେବା ସଙ୍ଗେ ସଙ୍ଗେ ସେ ମଧ୍ୟ ଚାଲିଗଲା ଯାହାର ହସହସ ମୁହଁଟି ଥିଲା ଜୀବନ-ପଥ ସଂକଟର ଶ୍ରେଷ୍ଠ ପାଥେୟ । ଆନନ୍ଦଠାରୁ ଦୁଃଖ ବଳେଇ ପଡ଼ିଲା । ''ମୃତ୍ୟୁ ଦ୍ୱାରା ସେ ଆମ ମଧ୍ୟରେ ସଂଜୀବିତ'' ବିଶ୍ୱକବିଙ୍କର ଏହି କଥାପଦକ ହେଲା ସବୁଠାରୁ ବଡ଼ ସମ୍ବଳ । ''ରାମଠାରୁ ରାମନାମ ବଡ଼, ରାମନାମ ଠାରୁ ରାମଙ୍କ କାମ ବଡ଼'' ବୋଲି ତ ସେହି ଲୋକ ବାରମ୍ବାର କହି ହେଉଥିଲେ । ପୁଣି ମୃତ୍ୟୁ ପାଖରେ ହାର ନ ମାନିବାର ସାଧନା ତ ସେହି ଶିଖାଇଥିଲା ! ତେଣୁ ପୁଣି ଜପ ଆରମ୍ଭ ହେଲା 'ଚରୈବତି ଚରୈବତି' ।

ସ୍ୱରାଜ୍ୟ ପରେ ଗଠନମୂଳକ କାମ କରୁଥିବା କର୍ମୀଙ୍କ ଭୂମିକା କ'ଣ ହେବ, ସେ ବିଷୟରେ ଆଲୋଚନା କରିବା ପାଇଁ ଗାନ୍ଧିଜୀଙ୍କର ସେବାଗ୍ରାମ ଯିବା କଥା ଥିଲା । ସେ ଆଲୋଚନା ତ ହୋଇ ପାରିଲା ନାହିଁ, ସେହି ବର୍ଷ ୧୯୪୮ ମସିହା ମାର୍ଚ୍ଚ ୧୩ ତାରିଖରେ ସେବାଗ୍ରାମଠାରେ ସମଗ୍ର ଭାରତବର୍ଷରେ ଗଠନମୂଳକ କାମ କରୁଥିବା କର୍ମୀ ଏକତ୍ର ହେଲେ । ପଣ୍ଡିତ ଜବାହାରଲାଲ ନେହେରୁ ଓ ତାଙ୍କ ପରି ରାଜନୈତିକ କ୍ଷେତ୍ରରେ କାମ କରୁଥିବା ବହୁ କର୍ମୀ ମଧ୍ୟ ଏହି ସମ୍ମିଳନୀରେ ଯୋଗ ଦେଲେ । ସେହି ସମ୍ମିଳନୀରେ ଭାଷଣ ଦେଇ ବିନୋବାଜୀ କହିଲେ ଯେ ଦେଶ ମଧ୍ୟରେ ସର୍ବୋଦୟର ଆଦର୍ଶ ପ୍ରତି ଆସ୍ଥାବାନ ବ୍ୟକ୍ତିଙ୍କ ମଧରେ ପରସ୍ପର ସମ୍ପର୍କ ରକ୍ଷା ଓ ବିଚାର ବିନିମୟ ନିମନ୍ତେ ସର୍ବୋଦୟ ସମାଜ ନାମରେ ଗୋଟିଏ ଅନୁଷ୍ଠାନ ରହୁ । ଏହି ସର୍ବୋଦୟ ସମାଜର ଉଦ୍ଦେଶ୍ୟ ହେବ ସତ୍ୟ ଓ ଅହିଂସାର ମୂଳଦୂଆ ଉପରେ ଏପରି ଏକ ସମାଜ ରଚନା କରିବା ଯହିଁରେ କାହାରିକୁ ଶୋଷଣ କରିବାର ଅବକାଶ ରହିବ ନାହିଁ । ଏହି ସର୍ବୋଦୟ ସମାଜରେ ବ୍ୟକ୍ତି ଓ ସମୂହ ଉଭୟଙ୍କର ସର୍ବାଙ୍ଗୀନ ବିକାଶ ଘଟିବାର ସୁଯୋଗ ରହିବ । ଏହାର ମୌଳିକ ସିଦ୍ଧାନ୍ତ ହେବ - ''କୌଣସି ଲକ୍ଷ୍ୟ ଲାଭ ନିମନ୍ତେ

ସେ ଲକ୍ଷ୍ୟ ଯେପରି ଶୁଦ୍ଧ ହେବା ଉଚିତ, ସେ ଲକ୍ଷ୍ୟଲାଭ କରିବାର ଉପାୟ ମଧ୍ୟ ସେହିପରି ଶୁଦ୍ଧ ହେବା ଉଚିତ । ବିନୋବାଜୀଙ୍କ ସୂଚନା ଅନୁସାରେ ସେହି ମାର୍ଚ୍ଚ ୧୩ ତାରିଖ ଦିନ ସର୍ବୋଦୟ ସମାଜ ଗଠିତ ହେଲା । ଏହି ସର୍ବୋଦୟ ପ୍ରେମୀମାନେ ଆପଣା ମଧ୍ୟରେ ବିଚାର ବିନିମୟ କରିବା ନିମନ୍ତେ ବର୍ଷରେ ଥରେ ଏକତ୍ର ହେବା ମଧ୍ୟ ସ୍ଥିର ହେଲା । ଏହି ସମ୍ମିଳନୀ ଜାନୁୟାରୀ ୩୦ ତାରିଖଟିକୁ ସର୍ବୋଦୟ ଦିବସରୂପେ ପାଳନ କରିବା ପାଇଁ ଏବଂ ଗାନ୍ଧିଜୀଙ୍କ ଚିତାଭସ୍ମ ବିସର୍ଜିତ ହୋଇଥିବା ସ୍ଥାନମାନଙ୍କରେ ଫେବୃଆରୀ ୧୨ ତାରିଖରେ ସର୍ବୋଦୟ ମେଳା ସଂଗଠନ କରିବା ପାଇଁ ପ୍ରସ୍ତାବ ଗ୍ରହଣ କଲେ ।

ମୋର ସ୍ୱାମୀ ଏହି ସମୟରେ ଅସୁସ୍ଥ ଥିବାରୁ ମୁଁ ଏହି ସମ୍ମିଳନୀରେ ଯୋଗ ଦେବାକୁ ଯାଇ ନ ଥିଲି । ଏହି ସମ୍ମିଳନୀ ଚାଲିଥିଲା ବେଳେ ମୋ ସାନଭାଇ ବିନାୟକ ସ୍ୱେଚ୍ଛାରେ ମୃତ୍ୟୁବରଣ କଲା । ଅତି ଅଳ୍ପ ବୟସରେ ସେ ସଂଗଠନାତ୍ମକ କାମରେ ନିଜର ପାରଦର୍ଶିତାର ପରିଚୟ ଦେଇଥିଲା । କଟକର ମେହେନ୍ତର ସଂଘ ଗଠନ କରିବାରେ ସେ ଥିଲା ଅନ୍ୟତମ ଅଗ୍ରଣୀ । ପାଠ ପଢ଼ିବା ସଙ୍ଗେ ସଙ୍ଗେ ଏସବୁ କାମ କରିବାରେ ସେ ଆନନ୍ଦ ପାଉଥିଲା । ସେ ଚାଲିଯିବା ଫଳରେ ଚୌଧୁରୀ ପରିବାରର ଅଣ୍ଟା ଭାଙ୍ଗି ଗଲା ।

ଯାହାହେଉ, ସେତିକିବେଳେ ଭାରତବର୍ଷରେ ଯେତେ ରଚନାତ୍ମକ କାମ କରୁଥିବା ଅନୁଷ୍ଠାନ ସେତେବେଳେ ଥିଲେ ସେସବୁ ଅନୁଷ୍ଠାନଗୁଡ଼ିକୁ ଏକତ୍ର କରିବା ପାଇଁ ଅନୁଷ୍ଠାନଗୁଡ଼ିକର ପ୍ରତିନିଧିମାନେ ଏକତ୍ର ବସି ବିଚାର କରି 'ସର୍ବ ସେବା ସଂଘ' ନାମରେ ଗୋଟିଏ ଅନୁଷ୍ଠାନ ଗଠନ କଲେ । ୧୯୪୯ ମସିହା ମାର୍ଚ୍ଚ ମାସରେ ସର୍ବ ସେବା ସଂଘର ପ୍ରଥମ ବୈଠକ ବସିଲା ଏବଂ ୫.୧.୫୧ରେ ଏହା ଏକ ରେଜେଷ୍ଟ୍ରୀଭୁକ୍ତ ଅନୁଷ୍ଠାନରେ ପରିଣତ ହେଲା । ଶୋଷଣହୀନ ସମାଜ ପ୍ରତିଷ୍ଠା କରିବା ପାଇଁ ସତ୍ୟ, ଅହିଂସାକୁ ଲକ୍ଷ୍ୟ ହାସଲର ମାଧ୍ୟମରୂପେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଏହି ଲକ୍ଷ୍ୟ ସାଧନର ଗୋଟିଏ ପଦକ୍ଷେପ ଭାବରେ ଭାରତୀୟ ନାଗରିକଙ୍କୁ ଗ୍ରାମଅଭିମୁଖୀ କରାଇବା, ଗାନ୍ଧିଜୀଙ୍କ ଦ୍ୱାରା ପ୍ରବର୍ତ୍ତିତ ବାଇଶ ପ୍ରକାର ରଚନାତ୍ମକ କାମଦ୍ୱାରା ଭାରତର ଗ୍ରାମବାସୀଙ୍କ ମଧ୍ୟରୁ ଦାରିଦ୍ର୍ୟ, ଅସ୍ୱାସ୍ଥ୍ୟ ଓ ଅଜ୍ଞାନକୁ ଦୂର କରିବା ମଧ୍ୟ ସଂଘର ଲକ୍ଷ୍ୟ ହେଲା । ଏହି ବାଇଶ ପ୍ରକାର ରଚନାତ୍ମକ କାମ ହେଉଛି - ଅସ୍ପୃଶ୍ୟତା ନିବାରଣ, ଜାତିଭେଦ ନିରାକରଣ, ଖଦୀ ଓ ଗ୍ରାମୋଦ୍ୟୋଗ, କୃଷିର ଉନ୍ନତି, ଗୋ-ସେବା, ମୌଳିକ ଶିକ୍ଷା, ଗ୍ରାମସଫାଇ, ସ୍ୱାସ୍ଥ୍ୟରକ୍ଷା, ନିଶାନିବାରଣ, ସାଂପ୍ରଦାୟିକ ଏକତା, ମହିଳାମାନଙ୍କର ସମାନ ଅଧିକାର

ଓ ସମାନ ମର୍ଯ୍ୟାଦା ପ୍ରତିଷ୍ଠା, ଦେଶର ବିଭିନ୍ନ ଭାଷାର ବିକାଶ ରାଷ୍ଟ୍ରଭାଷାର ପ୍ରସାର, ଆର୍ଥିକ ସମାନତା, ଶ୍ରମିକଙ୍କ ଉନ୍ନତି ପାଇଁ କାର୍ଯ୍ୟ, ଆଦିବାସୀ ସେବା, କୁଷ୍ଠରୋଗୀ ସେବା, ଛାତ୍ରମାନଙ୍କ ବିକାଶ ପାଇଁ କାର୍ଯ୍ୟ, ସଂକଟତ୍ରାଣ କାର୍ଯ୍ୟ ଓ ପ୍ରାକୃତିକ ଚିକିତ୍ସା ।

ଏହା ସହିତ ଏ ପ୍ରସ୍ତାବ ମଧ୍ୟ ଗୃହୀତ ହେଲା ଯେ ନିର୍ବାଚନ ଦ୍ୱାରା ବଛା ଯାଉଥିବା କୌଣସି ରାଜନୈତିକ ଦଳର ବା ବିଧାନସଭାର ସଦସ୍ୟ ସଂଘର ସଦସ୍ୟ ହୋଇ ପାରିବେ ନାହିଁ । ନିର୍ବାଚନରେ ପ୍ରାର୍ଥୀ ନ ହୋଇ ସୁଦ୍ଧା ସଂଘ ସଦସ୍ୟ ବିଧାନ ସଭା ବା ସଂସଦର ସଦସ୍ୟ ହୋଇ ପାରିବେ ନାହିଁ । ନର୍ବାଚନ ପ୍ରଚାର କାର୍ଯ୍ୟରେ ମଧ୍ୟ ସଂଘର ସଦସ୍ୟ ସକ୍ରିୟ ଅଂଶ ଗ୍ରହଣ କରି ପାରିବେ ନାହିଁ । ମୋଟକଥା, ଗାନ୍ଧିଜୀ କଂଗ୍ରେସକୁ ଭାଙ୍ଗିଦେଇ ଲୋକସେବକ ସଂଘ ଗଢ଼ିବା ପାଇଁ ଯେଉଁ ଇଚ୍ଛାପତ୍ର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଚିଠା କରିଥିଲେ ସେହି ଉଦ୍ଦେଶ୍ୟର ଆଂଶିକ ପୂର୍ତ୍ତି ଏହି ସଂଘ ଗଢ଼ା ହେବାଦ୍ୱାରା ହେଲା ବୋଲି ଆମେ ଭାବିଲୁ ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତରେ ଯେଉଁ ସରକାର ଗଢ଼ାହେଲା ସେ ସରକାର ଉପରେ ନିର୍ଭର କରି କୌଣସି ଗଠନମୂଳକ ଅନୁଷ୍ଠାନ ଚଳାଇବା ଉଚିତ ନୁହେଁ ବୋଲି ଗାନ୍ଧିଜୀ ଉଆର୍ଦ୍ଧାର ମହିଳାଶ୍ରମର କର୍ମକର୍ତ୍ତାଙ୍କ ପାଖକୁ ଲେଖିଥିବା ଚିଠିରୁ ଆଭାସ ମିଳିଥିଲା । ସେ ଚିଠିରେ ଗାନ୍ଧିଜୀ ଲେଖିଥିଲେ ଯେ ଯଦି ନିଜ ଶକ୍ତିରେ ଅନୁଷ୍ଠାନ ଚଳାଇ ନ ପାରିବ ତେବେ ତୁମେମାନେ ସେ ଅନୁଷ୍ଠାନକୁ ଭାଙ୍ଗିଦେଇ କୌଣସି ଗାଁକୁ ଚାଲିଯାଇ ଗାଁରେ କେନ୍ଦ୍ର କରି ଗ୍ରାମବାସୀଙ୍କ ପରି ଜୀବନ କଟାଇ ଗ୍ରାମ ଉତ୍‌ଥାନ କାମରେ ଲାଗିବା ଶ୍ରେୟଷ୍କର ହେବ । ତେଣୁ ଦେଶ ସ୍ୱାଧୀନ ହେବା ପରେ ମଧ୍ୟ ଆମେ ଏକ ପ୍ରକାରେ ସରକାରୀ ପ୍ରଭାବରୁ ଅଲଗା ରହିଲୁ ।

ଇତିମଧ୍ୟରେ ଚରଖା ସଂଘର ନବସଂସ୍କରଣ ଅନୁସାରେ ଓଡ଼ିଶାରେ ଉତ୍‌କଳ ଖଦୀମଣ୍ଡଳ[୧] ଏବଂ ଆଦିବାସୀ- ଉନ୍ନୟନ ଉଦ୍ଦେଶ୍ୟରେ ଉତ୍‌କଳ ନବଜୀବନମଣ୍ଡଳ[୨] ଗଢ଼ା ସରିଥାଏ । କସ୍ତୁରବା ସ୍ମାରକ ନିଧି ଓ ଉତ୍କଳ ନବଜୀବନ ମଣ୍ଡଳର କର୍ମୀ ତାଲିମ କାମରେ ଆମେ ଲାଗି ପଡ଼ିଲୁ ।

୧୯୫୦ ମସିହା ମାର୍ଚ୍ଚ ମାସରେ ଅନୁଗୁଳରେ ନିଖିଳ ଭାରତୀୟ ସର୍ବୋଦୟ

---

୧ ଉତ୍କଳ ଖଦୀମଣ୍ଡଳ ୨୧.୮.୪୭ରେ ଗଠିତ ହେଲା ।

୨ ଉତ୍କଳ ନବଜୀବନମଣ୍ଡଳ ଗଢ଼ା ହେଲା ୨୪.୧୦.୧୯୪୮ରେ । ରେଜେଷ୍ଟ୍ରୀଭୁକ୍ତ ହେଲା ୧୮.୬.୧୯୫୭ରେ । କର୍ମୀ ତାଲିମ ଶିବିର ୧୯୪୯ରେ ।

ସମ୍ମିଳନୀ ଅନୁଷ୍ଠିତ ହେଲା । ବେରବୋଇର ଗାନ୍ଧୀ ସେବା ସଂଘ ସମ୍ମିଳନୀ ପରେ ମୋ ଜାଣିବାରେ ଓଡ଼ିଶାରେ ଏଇଟି ନିଖିଳ ଭାରତୀୟ ସ୍ତରରେ ଦ୍ୱିତୀୟ ସମ୍ମିଳନୀ । ସର୍ବୋଦୟ ସମାଜର ଦୁଇହଜାରରୁ ଊର୍ଦ୍ଧ୍ୱ ସଦସ୍ୟ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ଅଭ୍ୟର୍ଥନା, ଯାତାୟତ, ପ୍ରଦର୍ଶନୀ, ନିବାସ ବ୍ୟବସ୍ଥା, ଭୋଜନ ଆଦି ପାଇଁ ହୋଇଥିବା ଯୋଜନାବଦ୍ଧ ବ୍ୟବସ୍ଥା ଏପରି ନିଖୁଣ ହୋଇଥିଲା ଯେ ଓଡ଼ିଶାର ବ୍ୟବସ୍ଥା ଶକ୍ତି ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କଲା । ଏହି ସମ୍ମିଳନୀ ଉପଲକ୍ଷ୍ୟେ ଯେଉଁ ପ୍ରଦର୍ଶନୀ ହୋଇଥିଲା ସେଥିରେ ଓଡ଼ିଶାର ଇତିହାସର ମୁଖ୍ୟ ଘଟଣାଗୁଡ଼ିକ ଚିତ୍ର ଆକାରରେ ପ୍ରଦର୍ଶିତ ହୋଇ ସେହି ଚିତ୍ରଗୁଡ଼ିକର ଗୋଟିଏ ଚିତ୍ରପଞ୍ଜୀ ପ୍ରସ୍ତୁତ ହୋଇ ରାଷ୍ଟ୍ରଭାଷାରେ ଚିତ୍ରର ବିଷୟବସ୍ତୁ ତତ୍‌ସହିତ ଦିଆ ଯାଇଥିଲା । ଗୋପବନ୍ଧୁ ଚୌଧୁରୀଙ୍କ ପରିକଳ୍ପନା, ପଣ୍ଡିତ ନୀଳକଣ୍ଠ ଦାସଙ୍କ ବିଷୟବସ୍ତୁ ନିର୍ବାଚନ, ଉପେନ୍ଦ୍ର କିଶୋର ଦାସ ଓ ଓଡ଼ିଶାର ମୁରଲୀଧର ଟାଲି ପ୍ରମୁଖ ପ୍ରଖ୍ୟାତ ଚିତ୍ରଶିଳ୍ପୀଙ୍କ ତୂଳିକା ମିଶି ଏହି ଐତିହାସିକ ଚିତ୍ରଗୁଡ଼ିକୁ ଅତି ଚିତ୍ତାକର୍ଷକ କରି ପାରିଥିଲେ । ଓଡ଼ିଶାରେ ଏହା ଏକ ସଂପୂର୍ଣ୍ଣ ନୂଆ ପ୍ରଯୋଜନା । ବର୍ତ୍ତମାନ ଏହି ଚିତ୍ରଗୁଡ଼ିକ ଭୁବନେଶ୍ୱରସ୍ଥ ରାଜଭବନର ଶୋଭାବର୍ଦ୍ଧନ କରୁଛି ।

ବିନୋବାଜୀଙ୍କର ଏହି ସମ୍ମିଳନୀରେ ଯୋଗ ଦେବା କଥା ଥିଲା ମାତ୍ର 'ଋଷିଖେତି' ଓ 'କାଞ୍ଚନମୁକ୍ତି' ପ୍ରୟୋଗକୁ ଛାଡ଼ି ସେ ଆସିଲେ ନାହିଁ ।

ମୋଟ ଉପରେ ସ୍ୱରାଜ୍ୟ ହାସଲ ହେବା ପରେ ମଧ୍ୟ ଆମେମାନେ ଗଠନମୂଳକ କାମରେ ମଶଗୁଲ୍ ହୋଇ ରହିଲୁ । ସ୍ୱେଚ୍ଛାରେ ଗରିବଙ୍କ ପରି ଚଳିବା, ଗାଁ ପିଲାଙ୍କ ସହିତ ଗାଁ ମୌଳିକ ବିଦ୍ୟାଳୟରେ ନିଜ ପିଲାଙ୍କୁ ପାଠ ପଢ଼ାଇବା ଓ ପାରୁ ପର୍ଯ୍ୟନ୍ତ ଦେହ ମିହନ୍ତ କରି ଚଳିବାର ବ୍ୟକ୍ତିଗତ ସାଧନା ମଧ୍ୟ ଜାରି ରହିଲା ।

ଦିନେ ମୁଁ ପାର୍ବତୀକୁ 'ସୟାନୀ କନ୍ୟା ସେ' ପଢ଼ାଉ ପଢ଼ାଉ ଭାବିଲି ଓଡ଼ିଶାର ଝିଅମାନଙ୍କ ପାଇଁ ଏହି ଧରଣର ଖଣ୍ଡେ ବହି ଦରକାର । କୈଶୋରରେ ଗୃହ ଶିକ୍ଷକ ଶ୍ରୀ ଚନ୍ଦ୍ରଶେଖର ମିଶ୍ର 'What a young girl ought to know ?' ବହିଟି ମୋତେ ପଢ଼ିବାକୁ ଦେଇ ମୋର ଅଶେଷ ଉପକାର ସାଧନ କରିଥିଲେ । ମାତ୍ର ସେତେବେଳେ ସବୁ ଝିଅ ଏ ବିଚାର ଜାଣିବା ଉଚିତ ଏ କଥା ଉପଲବ୍ଧି କରିବାର ବୟସ ମୋର ହୋଇ ନ ଥିଲା । ବର୍ତ୍ତମାନ ବହିଟି ଓଡ଼ିଆରେ ଅନୁବାଦ କରିବାକୁ ମନ ବଳିଲା । ଏ କାମ ମୁଁ ସ୍ୱାନ୍ତ ସୁଖାୟ ଆରମ୍ଭ କଲି । କିଛି କାଳ ପରେ ଉତ୍କଳ ଖଦୀମଣ୍ଡଳ 'ତରୁଣୀ କନ୍ୟାଙ୍କ ପ୍ରତି' ନାମରେ ଏହି ଅନୁବାଦକୁ ଛାପିଲେ । ସେହି ସମୟରେ ମୋର ଦ୍ୱିତୀୟ ସନ୍ତାନ ସମ୍ଭାବନା ହୋଇ

ଥିବାରୁ ମୁଁ ଗାଁରେ ବୁଲି ପ୍ରତ୍ୟକ୍ଷ ଗ୍ରାମସେବା କାମ କରି ପାରିଲି ନାହିଁ। କସ୍ତୁରବା ସ୍ମାରକ ଟ୍ରଷ୍ଟର ମହିଳା ତାଲିମ ଶିବିର ସଞ୍ଚାଳନାର ଦାୟିତ୍ୱରୁ ମଧ୍ୟ ଅବ୍ୟାହତି ନେଲି। ତେଣେ 'ସ୍ତ୍ରୀ ପୁରୁଷ ମର୍ଯ୍ୟାଦା' 'ଗୀତା ପ୍ରବଚନ' 'ମୌଳିକ ଶିକ୍ଷା' 'ସଂକ୍ଷିପ୍ତ ଆତ୍ମକଥା' ଆଦି ବିନୋବା ଓ ଗାନ୍ଧୀ ସାହିତ୍ୟ ଅନୁବାଦ ଆରମ୍ଭ କଲି। ଭୂଦାନ ଆନ୍ଦୋଳନ ଆରମ୍ଭ ହେବା ପରେ 'ଗ୍ରାମସେବକ' ପତ୍ରିକା ପାଇଁ ବିନୋବା ପ୍ରବଚନ ଓ ବିନୋବା ସାହିତ୍ୟ ଅନୁବାଦ ମୋର ମୁଖ୍ୟ କାମ ହେଲା। ପରେ ଗାନ୍ଧୀ ଶତବାର୍ଷିକୀ ଉପଲକ୍ଷେ ଗାନ୍ଧୀ ସ୍ମାରକ ନିଧି ଯେତେବେଳେ ଗାନ୍ଧୀ ରଚନାବଳୀ ଓଡ଼ିଆରେ ଛାପିବାକୁ ସଂକଳ୍ପ କଲେ ସେତେବେଳେ ନିଧି ନନ୍ଦବାବୁଙ୍କୁ (ନନ୍ଦକିଶୋର ଦାସ, ଭୂତପୂର୍ବ ବାଚସ୍ପତି ) ଓ ମୋତେ ଗାନ୍ଧୀସାହିତ୍ୟ ଅନୁବାଦ କରିବା ପାଇଁ ନିର୍ଦ୍ଦେଶ ଦେଲେ। ମୁଁ ଜାଣିଥିଲି ଯେ ଏ ପ୍ରକାର ରଚନା ଅନୁବାଦ କରିବା ପାଇଁ ଓଡ଼ିଆ ଭାଷା ଉପରେ ମୋର ଦଖଲ ନାହିଁ। ମାତ୍ର ଅନନ୍ୟୋପାୟ ହୋଇ ମୋତେ ଏ କାମ ଆବୁରିବାକୁ ପଡ଼ିଲା।

ଏହି ଅନୁବାଦ କାମ କଲାବେଳେ ମୁଁ ବିଚାରିଲି – ମୁଁ ଯେଉଁ ବିଷୟ ଅନୁବାଦ କରୁଛି ତାହା ସହିତ ମୋର ଜୀବନର, ମୋର ଆଚରଣର ଯୋଗସାଧିତ ହେବା ଉଚିତ। ସେଥିପାଇଁ ଅନୁବାଦ କରୁଥିବା ବହିର କୌଣସି ଗୋଟିଏ ଉପଦେଶ ନିଜ ଜୀବନରେ କାର୍ଯ୍ୟାନ୍ୱିତ କରିବାକୁ ମୋର ଉଦ୍ୟମ ଆରମ୍ଭ ହେଲା। ଏ ସାଧନା ମୋ ପାଇଁ ଅତ୍ୟନ୍ତ ଉପଯୋଗୀ ହେଲା ସତ୍ୟ ମାତ୍ର ତାହା କେଡ଼େ କଷ୍ଟସାଧ ତାହା ମଧ୍ୟ ମୁଁ ଅଳ୍ପଦିନେ କଳି ପାରିଲି। ଉଦାହରଣ ସ୍ୱରୂପ 'ଅନାସକ୍ତି ଯୋଗ' ଗାନ୍ଧୀଭାଷ୍ୟ ଗୀତା ଅନୁବାଦ କଲାବେଳେ ମୁଁ ଦ୍ୱାଦଶ ଅଧ୍ୟାୟର

ଯସ୍ମାନ୍ନୋଦ୍‌ବିଜତେ ଲୋକୋ
ଲୋକାନ୍ନୋଦ୍‌ବିଜତେ ଚୟଃ
ହର୍ଷାମର୍ଷଭୟୋଦ୍‌ବେଗୈର୍ମୁକ୍ତ ୟଃ
ସ ଚ ମେ ପ୍ରିୟଃ।

ଯାହା ଦ୍ୱାରା ଲୋକେ ଉଦ୍‌ବିଗ୍ନ ହୁଅନ୍ତି ନାହିଁ, ଯେ ଲୋକଙ୍କ ଦ୍ୱାରା ଉଦ୍‌ବିଗ୍ନ ହୁଏ ନାହିଁ, ଯେ ହର୍ଷ, କ୍ରୋଧ, ଈର୍ଷା, ଭୟ ଓ ଉଦ୍‌ବେଗରୁ ମୁକ୍ତ, ସେ ମୋର ପ୍ରିୟ।

ଶ୍ଳୋକଟିକୁ ନିଜ ଜୀବନରେ ଆଚରିବା ପାଇଁ ବର୍ଷେ ଉଦ୍ୟମ କରି ତାହା ମୋ ପକ୍ଷରେ ବିଶେଷ କରି ମୋ ପରି ଜଣେ ସନ୍ତାନବତୀ ପକ୍ଷରେ ଅସାଧ୍ୟସାଧନ ପରି ମନେ ହେଲା। ରବୀନ୍ଦ୍ରନାଥ ମା' ମନର ଉଦ୍‌ବେଗକୁ ବର୍ଣ୍ଣନା କରି କହିଛନ୍ତି, ''ଭୟେ

ଭୟେ ରଇ ବୁଝିବା ହାରାଇ ଭେବେ ମରି ଏକ୍‌ଟୁ ସରେ ଦାଁଡ଼ାଲେ ।'' ନଈକୁ ଗାଧୋଇ ଯାଇ ବା ଖେଳିବାକୁ ଯାଇ ସନ୍ତାନ ଯଥା ସମୟରେ ଘରକୁ ନ ଫେରିଲେ କିମ୍ବା ସ୍କୁଲ ଫେରନ୍ତା ବେଳକୁ ବର୍ଷା ହୋଇ ବିଜୁଳି ଘଡ଼ଘଡ଼ି ମାରିଲେ ଯେଉଁ ଉଦ୍‌ବେଗ ମା ମନରେ ଜନ୍ମେ ସେଥିରୁ ମୁକ୍ତ ହେବା କି କଠିନ ସାଧନା ତାହା ମର୍ମେ ମର୍ମେ ଉପଲବ୍ଧି କଲି କିନ୍ତୁ ତଥାପି ମୁଁ ଏ ଉଦ୍ୟମ ଛାଡ଼ିଲି ନାହିଁ । ଏ ପ୍ରକାର ଉଦ୍ୟମ ଯେ ମୋର ଅକୁହା ଜୀବନକୁ ସାଇତିବାରେ ସହାୟକ, ତାହା ଅଳ୍ପଦିନେ ଉପଲବ୍ଧି କଲି ।

୧୯୫୧ ମସିହା ଅଗଷ୍ଟ ମାସ ବେଳକୁ କୋରାପୁଟ ଜିଲ୍ଲାର ରାମ୍‌ନାଗୁଡ଼ା ଓ ଆଖପାଖ ଅଞ୍ଚଳରେ ଏକପ୍ରକାର ଦୁର୍ଭିକ୍ଷ ପରିସ୍ଥିତି ଉପୁଜିଲା । କୋରାପୁଟର ମୁଖ୍ୟ ରଚନାତ୍ମକ କର୍ମୀ ବିଶ୍ୱନାଥ ପଟ୍ଟନାୟକ ଗୋପବାବୁ ଓ ଆଚାର୍ଯ୍ୟ ମହାଶୟଙ୍କୁ ଏ କଥା ଜଣାଇଲେ । ବିଶ୍ୱନାଥବାବୁ ୧୯୪୦ରୁ ଗାନ୍ଧୀ ସେବାସଂଘ ପକ୍ଷରୁ କୋରାପୁଟର କୁଜେନ୍ଦ୍ରୀ ଗାଁରେ ରହି ଗଠନମୂଳକ କାମ କରୁଥିଲେ । ୧୯୪୨ର 'ଭାରତଛାଡ଼' ଆନ୍ଦୋଳନ ବେଳେ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ବହୁ ସଂଖ୍ୟକ କୋରାପୁଟବାସୀ ଆନ୍ଦୋଳନରେ ଯୋଗ ଦେଇ କାରାବରଣ କରିଥିଲେ । କୁଜେନ୍ଦ୍ରୀରେ କପାଚାଷ ଠାରୁ ଆରମ୍ଭ କରି ଲୁଗା ବୁଣାଯାଏ ସ୍ୱାବଲମ୍ବୀ ଖଦୀ କାମକୁ ସେ ଏପରି ଭାବରେ ସଂଗଠିତ କରିଥିଲେ ଯେ ଗାନ୍ଧିଜୀଙ୍କ ଉକ୍ତି ...'ଜୋ ପହନେ ସୋ କାତେ, ଜୋ କାତେ ସୋ ପହନେ, ଜୋ କାତେ ସୋ ସମଝ ବୁଝ୍‌କର କାତେ''– ସେଠାରେ ସାକାର ରୂପ ଧରିଥିଲା । ୧୯୫୫ରେ କୁଜେନ୍ଦ୍ରୀର କାମ ଦେଖି ବିନୋବାଜୀ କହି ଥିଲେ, 'ଏଠାରେ ମୋତେ ସ୍ୱରାଜ୍ୟର ପ୍ରତ୍ୟକ୍ଷ ଦର୍ଶନ ମିଳିଲା ।' କୋରାପୁଟରେ ବେଳ ଥାଉଁ ଥାଉଁ ସଂକଟତ୍ରାଣ କାମ ଆରମ୍ଭ ନ କଲେ ଅବସ୍ଥା ଅସମ୍ଭାଳ ହେବ ବୋଲି ବିଶ୍ୱନାଥବାବୁ ବାରମ୍ବାର ଚେତାଉଥାନ୍ତି । ଗୋପବାବୁ ସେତେବେଳେ ବରୀର ଦୁଧେଇ ନାମକ ସ୍ଥାନରେ ଥାନ୍ତି । ସ୍ୱରାଜ୍ୟ ପରେ ଶାସନକଳର ଆଭିମୁଖ୍ୟ ଏବଂ ଦେଶର ଆର୍ଥିକ ଓ ସାମାଜିକ ପରିସ୍ଥିତିର ଯଥା ପୂର୍ବଂ ତଥା ପର ଅବସ୍ଥା ଦେଖି ସେ ଘୋର ଉଦ୍‌ବେଗରେ କାଳ କାଟୁଥାନ୍ତି । ଦିନେ ଦିନେ ସାରା ରାତି ଉନ୍ନିଦ୍ର ରହି ସେ ବରୀ ବନ୍ଧରେ ଟହଲୁଥିବାର ମଧ୍ୟ ଦେଖାଯାଇଛି । ଏହି ସମୟରେ ''ଆମେ କାହାରିକୁ ଭୋଟ୍ ଦେବୁ ନାହିଁ'' ଶିରୋନାମାରେ ଏକ ନିବେଦନ ଗୋପବାବୁ ଓ ତାଙ୍କର କେତେକ ସହକର୍ମୀଙ୍କ ସ୍ୱାକ୍ଷରରେ ପ୍ରକାଶ ପାଇଥିଲା । ଏଥିପାଇଁ ସେ କେତେକ ରାଜନୀତିଜ୍ଞଙ୍କର ପରିହାସର ପାତ୍ର ମଧ୍ୟ ହୋଇଥିଲେ । ସେତେବେଳେ ସେ ଗାଡ଼ି ମୋଟର୍‌ରେ ଚଢ଼ିବା ଛାଡ଼ି

ଦେଇଥିବାରୁ ଈଶ୍ୱରଲାଲ ବ୍ୟାସ, ମାଳତୀ ଦେବୀ ଓ ରମାଦେବୀ ଅବସ୍ଥା ଅନୁଧ୍ୟାନ କରି ତୁରନ୍ତ ପ୍ରତିକାର କରିବା ଉଦ୍ଦେଶ୍ୟରେ କୋରାପୁଟ ଗଲେ । ଜିଲ୍ଲାପାଳଙ୍କୁ ସାଙ୍ଗରେ ଧରି ଗାଏଁ ଗାଏଁ ବୁଲି ପରିସ୍ଥିତି ଅନୁଧ୍ୟାନ କରି ସଙ୍ଗେ ସଙ୍ଗେ ଖାଦ୍ୟ ବାଣ୍ଟିବା ବ୍ୟବସ୍ଥା ମଧ୍ୟ ସେମାନେ କଲେ । କସ୍ତୁରବା ମହିଳା ତାଲିମ ଶିବିରର ଶାରଳା ହୋତା, କେତକୀ ମହାନ୍ତି, ମାଳତୀ ବିଶ୍ୱାଳ ପ୍ରଭୃତି ବଣ ଜଙ୍ଗଲରେ ପଶି ଲୋକଙ୍କୁ ଖାଦ୍ୟ ବାଣ୍ଟିବା କାମରେ ଲାଗି ପଡ଼ିଲେ । ରାମ୍‌ନାଗୁଡ଼ା ବ୍ଲକ୍‌ର ପାହାଡ଼ ଉପରେ ଥିବା ଗାଁ ଗୁଡ଼ିକରେ ନିଜେ ବୋହି ନେଇ ଖାଦ୍ୟ ପହଞ୍ଚାଇବା ଅସମ୍ଭବ । ସ୍ଥାନୀୟ ଲୋକେ ତ ଅନାହାରରେ ଜର୍‌ଜର । ଏହି ମହିଳା କର୍ମୀମାନେ ଶଙ୍କରପ୍ରସାଦ ଓ ଗଣେଶ ପ୍ରସାଦ ନାମକ ଦୁଇଟି ହାତୀ ପିଠିରେ ରସଦ ଲଦି ନିଜେ ସବାର ହୋଇ ପାହାଡ଼ ଉପରକୁ ଯାଇ ଲୋକଙ୍କ ଜୀବନ ରକ୍ଷା କଲେ । ଏହି ସ୍ୱଳ୍ପ ଶିକ୍ଷାପ୍ରାପ୍ତା ଭଉଣୀମାନେ ଯେତେବେଳେ କର୍ମୀ ତାଲିମ ଶିବିରକୁ ତାଲିମ ନେବାକୁ ଆସିଥିଲେ, ସେତେବେଳେ ଆମର ଅନେକ ପୁରୁଣା ଓ ଅଭିଜ୍ଞ ସହକର୍ମୀ ମୁହଁମୋଡ଼ି ନାସିକା କୁଞ୍ଚନ କରି ଏମାନଙ୍କ ପାଇଁ ସମୟ ଶକ୍ତି ଓ ସଂପଦର ବୃଥା ଅପଚୟ ହେଉଛି ବୋଲି ମତବ୍ୟକ୍ତ କରିଥିଲେ । ସଂକଟତ୍ରାଣ କାମରେ ଏହି ଭଉଣୀମାନଙ୍କର ପାରଗତା ଦେଖି ସେମାନଙ୍କର ସେ ଧାରଣା ବଦଳିଲା । ମୁଁ ମଧ୍ୟ ମୋ ଶିକ୍ଷାର୍ଥିନୀମାନଙ୍କର କାର୍ଯ୍ୟଦକ୍ଷତା ଦେଖି ଆତ୍ମପ୍ରସାଦ ଲାଭ କଲି । ପ୍ରକୃତରେ ଭାରତର ଗାଁ ଗହଳରେ ରହିଥିବା ସ୍ୱଳ୍ପ ଶିକ୍ଷିତା ଏପରି କି ନିରକ୍ଷରା ଭଉଣୀଙ୍କ ମଧ୍ୟରେ ଯେଉଁ ପ୍ରବଳ କର୍ମଶକ୍ତି ଛପିକରି ରହିଛି ତାହା ଗାନ୍ଧିଜୀ ଠିକ୍ କଳି ପାରିଥିଲେ ବୋଲି ସ୍ୱାଧୀନତା ଆନ୍ଦୋଳନରେ ଓ ରଚନାତ୍ମକ ସେବା କ୍ଷେତ୍ରରେ ସେହି ଗାଉଁଲି ଭଉଣୀମାନଙ୍କୁ ଟାଣି ଆଣି ସେମାନଙ୍କର ପ୍ରକୃତ ସ୍ୱରୂପର ପରିଚୟ ଦେଶ ଆଗରେ ଥୋଇଦେଲେ ।

ସେହି ୧୯୫୧ ମସିହା ଏପ୍ରିଲ ଅଠର ତାରିଖରେ ହାଇଦ୍ରାବାଦରେ ତେଲେଙ୍ଗାନାଠାରେ ଆଉ ଗୋଟିଏ ଘଟଣା ଘଟିଲା । ଶିବରାମପଲ୍ଲୀରେ ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଇ ବିନୋବାଜୀ ଉଆର୍ଦ୍ଧା ଆଡ଼କୁ ଚାଲି ଚାଲି ଫେରିବା ବାଟରେ ତେଲେଙ୍ଗାନା ଗଲେ । ସେଠାରେ ପୂର୍ବରୁ ସାମ୍ୟବାଦୀମାନଙ୍କ ନେତୃତ୍ୱରେ ଧନୀ ଜମି ମାଲିକଙ୍କ ବିରୁଦ୍ଧରେ ହିଂସାତ୍ମକ ଆନ୍ଦୋଳନ ଚାଲିଥିଲା । ସରକାରଙ୍କ ପୁଲିସ ଓ ଅର୍ଥବଳ ସେଠାରେ ଶାନ୍ତି-ରକ୍ଷା କରିବାରେ ବିଫଳ ହୋଇ ସାରିଥିଲା । ସାମ୍ୟବାଦୀ ଓ ସେମାନଙ୍କର ସମର୍ଥକମାନେ ଧନୀ ଜମି ମାଲିକଙ୍କ ଉପରେ ଆକ୍ରମଣ ଚଳାଇଥିଲେ । ଏବଂ ତେଲେଙ୍ଗାନାର ଆଖପାଖ ବଣ ଜଙ୍ଗଲରେ ଆତ୍ମଗୋପନ କରୁଥିଲେ । ପକ୍ଷାନ୍ତରେ

ପୁଲିସ ଓ ଧନୀ ଲୋକେ ନିରୀହ ଭୂମିହୀନମାନଙ୍କୁ ଶାନ୍ତି ରକ୍ଷା ନାମରେ ଉତ୍ପୀଡ଼ନ କରୁଥିଲେ । ଘଟଣାର ପ୍ରତ୍ୟକ୍ଷ ଅଭିଜ୍ଞତା ହାସଲ କରିବା ଉଦ୍ଦେଶ୍ୟରେ ବିନୋବାଜୀ ତେଲେଙ୍ଗାନା ଗଲେ । ପୋଚମପଲ୍ଲୀ ଗାଁରେ ସେ ଭୂମିହୀନଙ୍କ ସହିତ ଅଶାନ୍ତିର କାରଣ ସମ୍ବନ୍ଧରେ ଆଲୋଚନା କଲେ । ସେମାନେ କହିଲେ ଯେ ଯଦି ଆମକୁ ଅଶି ଏକର ଜଳ ଜମି ମିଳିଯାନ୍ତା ଆମେ ଏ ଗଣ୍ଡଗୋଳରେ ପଶନ୍ତୁ ନାହିଁ । ସେଦିନ ସାଂଧ୍ୟସଭାରେ ବିନୋବାଜୀ ଭୂମିହୀନମାନଙ୍କ କଥା ଉପସ୍ଥାପିତ କଲାରୁ ରାମଚନ୍ଦ୍ର ରେଡ୍ଡି ନାମକ ଜଣେ ଭୂମିମାଲିକ ଏକଶହ ଏକର ଜମି ଦେବେ ବୋଲି ଘୋଷଣା କଲେ । ଏପ୍ରକାର ଭୂମିଦାନ ପ୍ରକୃତରେ ମିଳିବ କି ନାହିଁ ଏବଂ ସମସ୍ୟାର ସମାଧାନରେ ସହାୟକ ହେବ କି ନାହିଁ ପରଖିବାକୁ ବିନୋବାଜୀ ତେଲେଙ୍ଗାନାରେ ପଦଯାତ୍ରା କଲେ । ଭୂମିହୀନଙ୍କୁ ଦେବାପାଇଁ ତାଙ୍କୁ ହଜାର ହଜାର ଏକର ଜମି ସେଠାରେ ଦାନସୂତ୍ରରେ ମିଳିଲା ଏବଂ ସେହି ଜମି ବିତରିତ ହେବାରୁ ପରିସ୍ଥିତି ବଦଳିଲା । ତେଲେଙ୍ଗାନାର ବିଶେଷ ପରିସ୍ଥିତିରେ ଏ ଦାନ ମିଳିଲା କି ପ୍ରକୃତରେ ଲୋକ ହୃଦୟ ଏ ବିଚାରଧାରାକୁ ସ୍ୱାଗତ କଲା ତାହା ପରଖିବା ପାଇଁ ବିନୋବାଜୀ ଉଆର୍ଦ୍ଧାରୁ ଦିଲ୍ଲୀ ଯିବା ବାଟରେ ମଧ୍ୟ ଭୂମି ମାଗିଲେ ଏବଂ ଜମି ମିଳିଲା । ଫଳରେ ଏହି ଆନ୍ଦୋଳନ ଭାରତର ବିଭିନ୍ନ କ୍ଷେତ୍ରରେ କାମ କରୁଥିବା ସର୍ବୋଦୟ ସେବକଙ୍କ ଦୃଷ୍ଟି ଆକର୍ଷଣ କଲା । ଭୂଦାନ ଆନ୍ଦୋଳନ ଆରମ୍ଭ ହେବା ପୂର୍ବରୁ ବିନୋବାଜୀ 'କାଞ୍ଚନମୁକ୍ତି'ର ପ୍ରୟୋଗ ପଉନାର ଗାରେ କରୁଥିଲେ । ଟଙ୍କା ପଇସା ବିନିମୟରେ ସମାଜର ଅତ୍ୟାବଶ୍ୟକ ଜିନିଷ କିଣାବିକା ଫଳରେ ସେହି ଜିନିଷର ଦରଦାମ ସରକାର ବା ଧନୀମାନେ ଧାର୍ଯ୍ୟ କରୁଛନ୍ତି । ଫଳରେ ଗାଁରେ ଉତ୍ପନ୍ନ ହେଉଥିବା ପଦାର୍ଥ ଓ ବଡ଼ବଡ଼ କଳକାରଖାନାରେ ଉତ୍ପନ୍ନ ହେଉଥିବା ଜିନିଷର ମୂଲ୍ୟରେ ଅନୁପାତ ଠିକ୍ ହେଉନାହିଁ । ତଦ୍ୱାରା ଗାଁର ଚାଷୀ ଓ କାରିଗରଙ୍କ ଆର୍ଥିକ ଅବସ୍ଥା ଦିନୁଁଦିନ ଖରାପ ଆଡ଼କୁ ଯାଉଛି । ଏହାର ଅହିଂସାତ୍ମକ ପ୍ରତିରୋଧର ପରଖ ଥିଲା କାଞ୍ଚନମୁକ୍ତି ।

ସର୍ବୋଦୟ ସମାଜର ସଂପାଦକ ଭାବରେ ସେହି ସମୟରେ ଗୋପବାବୁ ସାରା ଭାରତରେ ଗସ୍ତ କରୁଥିଲେ ଏବଂ ବିଚାର ବିନିମୟ ପାଇଁ ମଧ୍ୟେ ମଧ୍ୟେ ବିନୋବାଜୀଙ୍କୁ ଭେଟୁଥିଲେ । ପଡ଼ୋଶୀ ଦେଶ ଚୀନ୍‌ରେ ଭୂମି ବିତରଣ ଆରମ୍ଭ ହୋଇ ଯାଇଥିବା ସ୍ଥଳେ ଭାରତ ସରକାର ସେ ଦିଗରେ ନିଶ୍ଚେଷ୍ଟ ରହିଥିଲେ, ଏହାର ପରିଣତି ବିଷୟରେ ସେ ଦୁହିଁଙ୍କ ମଧ୍ୟରେ ଯେଉଁ ଆଲୋଚନା ହେଉଥିଲା, ଆମମାନଙ୍କ କାନଯାଏ ସେ କଥା ଆସୁଥିଲା । ।

ଭୂଦାନ ବିଚାରକୁ ଓଡ଼ିଶାବାସୀ କେତେଦୂର ଗ୍ରହଣ କରିବେ ତାହା ପରଖିବାକୁ ଗୋପବାବୁ ଓ ରମାଦେବୀ ୧୯୫୧ ମସିହା ଡ଼ିସେମ୍ବର ୨୪ ତାରିଖରୁ ପଦଯାତ୍ରା ଆରମ୍ଭ କଲେ । ସୌରୀକ ବାଟେ ଅନୁଗୁଳ ନିକଟସ୍ଥ ଟାଇଁସି ଗାଁକୁ ଯାଇ ସେଠାରେ ଗଠନମୂଳକ କର୍ମୀ ସମ୍ମିଳନୀରେ ଯୋଗ ଦେଇ ସେ ଦୁହେଁ ପୁରୀ ଆସିଲେ । ପୁରୀରୁ ଚିଲିକା କୂଳେ କୂଳେ ଗଞ୍ଜାମ ଯାଇ କୋରାପୁଟ, କଳାହାଣ୍ଡି, ବଲାଙ୍ଗୀର, ସମ୍ବଲପୁର ପରିକ୍ରମା କରି ସାତକୋଶିଆଗଣ୍ଡରେ ପାରିହୋଇ ସେମାନେ କଟକ ଆସିଲେ । ସର୍ବୋଦୟ ବିଚାରର ମୁଖପତ୍ର 'ଗ୍ରାମସେବକ'ରେ ସେମାନଙ୍କର ଅଭିଜ୍ଞତା ପ୍ରକାଶ ପାଇଲା । ଭୂଦାନ କାମ ଯଥାଯଥ ଭାବରେ କରାଗଲେ ଅହିଂସାତ୍ମକ ପନ୍ଥାରେ ଭୂମି ସମସ୍ୟାର ସମାଧାନର ବାଟ ଫିଟିବ ବୋଲି ସେ ଦୁହିଁଙ୍କ ମନରେ ଆଶାର ସଂଚାର ହେଲା । ଓଡ଼ିଶାରେ ଖଣ୍ଡସାହି ଗାଁରେ ଓଡ଼ିଶା ଭୂଦାନ ଯଜ୍ଞ ସମିତି ଗଠିତ ହେଲା । ଶରତଚନ୍ଦ୍ର ମହାରଣା ମୌଳିକ ଶିକ୍ଷା କ୍ଷେତ୍ରରୁ ଆସି ଏହି ସମିତିର ସଂଯୋଜକ ହେଲେ । ପରେ ଭୂଦାନ ଜମି ବାଣ୍ଟିବା ପାଇଁ ସରକାରୀ ଭୂଦାନ ଯଜ୍ଞ ସମିତି ଗଢ଼ା ହେବାରୁ ୧୯୫୮ରେ ଉତ୍କଳ ସର୍ବୋଦୟ ମଣ୍ଡଳ ଗଢ଼ା ହେଲା ।

୧୯୫୩ ମସିହାରେ ବିହାରର ଚାନ୍ଦିଲଠାରେ ସର୍ବୋଦୟ ସମ୍ମିଳନୀ ଅନୁଷ୍ଠିତ ହେଲା । ଆମେମାନେ ବହୁ ସଂଖ୍ୟାରେ ଏହି ସମ୍ମିଳନୀରେ ଯୋଗ ଦେଲୁ । ଭୂଦାନ ଆନ୍ଦୋଳନ ଯେ ଗୋଟାଏ ଭିକମଗା ଆନ୍ଦୋଳନ ନୁହେଁ ଏହା ମୂଳରେ ପ୍ରଥମେ ସମାଜରେ ବିଚାର ପରିବର୍ତ୍ତନ ଘଟାଇ ତା' ଉତ୍ତାରୁ ଜୀବନ ପରିବର୍ତ୍ତନ ଓ ସମାଜ ପରିବର୍ତ୍ତନ ଘଟାଇବାର ପ୍ରକ୍ରିୟା ରହିଛି ଏବଂ ଜନସାଧାରଣ ଓ ସରକାରଙ୍କ ଛଡ଼ା ଆଉ ଏକ ତୃତୀୟ ଶକ୍ତିର ଆବଶ୍ୟକତା ଶୋଷଣହୀନ ସମାଜ ଗଢ଼ିବା ପାଇଁ ଆବଶ୍ୟକ, ଏହା ବିନୋବାଜୀ ଏହି ସମ୍ମିଳନୀରେ ପ୍ରତିପନ୍ନ କଲେ । ସେତେବେଳକୁ ସମଗ୍ର ଭାରତରେ ଭୂଦାନର ଚେର ମାଡ଼ିଲାଣି ଏବଂ ବହୁ ଉଚ୍ଚଶିକ୍ଷିତ ଯୁବକ, ଯୁବତୀ ଏହି ଆନ୍ଦୋଳନରେ ଝାସ ଦେଲେଣି । ଠିକ ସ୍ୱାଧୀନତା ଆନ୍ଦୋଳନ ବେଳର ଉନ୍ମାଦନା ଏହି ସମ୍ମିଳନୀରେ ଦେଖା ଦେଇଥାଏ । ଓଡ଼ିଶାରୁ ଶୈଳବାଳା ମହାନ୍ତି, ଶୈଳବାଳା ପଟ୍ଟନାୟକ, ରୁକ୍ମିଣୀ ସ୍ୱାଇଁ ଆଦି ବହୁ ମହିଳା ଗାଁ ଗାଁ ବୁଲି ଭୂଦାନ ବାର୍ତ୍ତା ପ୍ରଚାର କରୁଥାନ୍ତି । କସ୍ତୁରବା ସ୍ମାରକ ଟ୍ରଷ୍ଟର ମହିଳା କର୍ମୀମାନେ ମଧ୍ୟ ଏ କାମରେ ମନପ୍ରାଣ ଢ଼ାଳି ଦେଇଥାନ୍ତି । 'କହ କେ ରୋକିବ ପକାଇ ଚାବି', 'ଉତ୍କଳ ଗଗନେ ଆଜି ଜୟଶଙ୍ଖ ନାଦ' ଆଦି ସଙ୍ଗୀତରେ ଗଗନ ପବନ ମୁଖରିତ ହେଉଥାଏ । ଏହି ସମ୍ମିଳନୀରେ ପ୍ରତିନିଧିମାନେ ଖାଇ ସାରିବା

ପରେ ଯେଉଁ ଅଇଁଠା ପତ୍ର ଫିଙ୍ଗି ଦିଆ ଯାଇଥିଲା, ସେହି ପତ୍ରକୁ ଛୋଟ ଛୋଟ ପିଲା ଚାଟୁଥିବାର ଦେଖି ଗୋପବାବୁ ସମ୍ମିଳନୀରେ ଭାଷଣ ଦେଇ କହିଲେ – ଆମେ ଯଦି ଭାରତର ଏହି ଦାରିଦ୍ର୍ୟ ଦୂର ନ କରି ପାରିବା, ଏହି ଶୋଚନୀୟ ଅବସ୍ଥାକୁ ଶୀଘ୍ର ନ ବଦଳାଇବା ତେବେ ଏହି ସମ୍ମିଳନୀ ବ୍ୟର୍ଥ ହେବ । ଲୋକେ କହିବେ ''When Rome was burning Nero was fiddling.''.

ଚାନ୍ଦିଲ ସମ୍ମିଳନୀରୁ ଫେରି ଓଡ଼ିଶାର ଗୋଟିଏ ଗୋଟିଏ ଅଞ୍ଚଳ ଧରି ହଜାରେ ଦାତା ହଜାରେ ଏକର ଜମି ସଂଗ୍ରହ ଅଭିଯାନ ଆରମ୍ଭ ହେଲା ଏବଂ ଏହି ଅଭିଯାନ ପରେ ଭୂଦାନ ମେଳାରେ ଦାତା ସହସ୍ର ନାମ ପାଠ କରାଗଲା । କର୍ମୀମାନେ ଗାଏଁ ଗାଏଁ ବୁଲି ଏ କାମରେ ଲାଗିଲେ । ଆମେ ଆମ ଶୈଶବ ଅବସ୍ଥା ଯେପରି ସ୍ୱାଧୀନତା ଆନ୍ଦୋଳନର ଉନ୍ମାଦନା ମଧ୍ୟରେ କଟାଇଥିଲୁ ଆମ ପିଲାଏ ସେହିପରି ଏ ଭୂମିକ୍ରାନ୍ତି ଆନ୍ଦୋଳନର ଉନ୍ମାଦନା ଭିତରେ ବଢ଼ିଲେ । ଆମେ ଯେମିତି କଂଗ୍ରେସିଆଙ୍କ ପିଲା ବୋଲେଇଥିଲୁ, ସେମାନେ ସେହିପରି ଭୂଦାନିଆଙ୍କ ପିଲା ବୋଲେଇଲେ । ମୋର ତ ଭୂଦାନ ସାହିତ୍ୟ ଅନୁବାଦ ହୋଇଥାଏ ମୁଖ୍ୟ କାମ । ମାତ୍ର ୧୯୩୧ ମସିହାରେ ଜୈନମନ୍ଦିର ସଭାରେ ଜେଲ୍ ନ ଯାଇଥିବା ସତ୍ୟାଗ୍ରହୀଙ୍କୁ ଅଲଗା କରି ବସାଇବା କଥା ସ୍ମରଣ କରି ମୁଁ ପ୍ରତ୍ୟକ୍ଷ ଭାବରେ ଭୂଦାନ ସଂଗ୍ରହ କାମ ମଧ୍ୟ କଲି ।

ମଣିଷ ଯେ ନିଃସ୍ୱାର୍ଥପର ମନୋବୃତ୍ତିରେ ଭୂମିହୀନଙ୍କୁ ଜମି ଦେଇପାରେ ଏହା ଅନେକ ଗାଁ ମାମଲତକାର ଆଦୌ ବିଶ୍ୱାସ କରିପାରୁ ନ ଥିଲେ । ସେମାନଙ୍କର ଆପ୍ତବାକ୍ୟ ଥିଲା – 'ମଣିଷ ଦେବାକୁ ମରିବାକୁ ଭଲପାଏ ନାହିଁ ।' ମୋର ମନେ ଅଛି ଯେଉଁଦିନ ଶ୍ରୀ ମୋତିଲାଲ ପଣ୍ଡିତ ଜମିର ପ୍ଲଟ୍ ନମ୍ବର ସହ ଏକହଜାର ଏକର ଜମିର ଦାନପତ୍ର ପୂରଣ କରି ପଠାଇଲେ ସେଦିନ ସେ ଦାନପତ୍ର ଓ ପ୍ଲଟ୍ ନମ୍ବର ଆଦି ଦେଇ ମୋତେ ମୋତିବାବୁଙ୍କ ଅଲିପୁର କଚିରୀର ଗୁମାସ୍ତାଙ୍କ ପାଖକୁ ପଠାହେଲା । କାରଣ ପ୍ଲଟ୍ ନମ୍ବର ଅନୁସାରେ ଜମି ଚିହ୍ନଟ ପାଇଁ ସେ ଗୁମାସ୍ତାଙ୍କ ସାହାଯ୍ୟ ଦରକାର ହେଉଥିଲା । ମୁଁ ଗୁମାସ୍ତାଙ୍କ ହାତକୁ ମୋତିବାବୁଙ୍କ ଚିଠି ଓ କାଗଜପତ୍ର ବଢ଼ାଇ ଦେଲି । ସେ ହଜାରେ ଏକର ଜମିର ଦାନପତ୍ର ଦେଖି ଘଡ଼ିଏ ଥକ୍‌କାମରା ହୋଇ ବସିଗଲେ । ଧର୍ମଶାଳା ନିକଟରେ ରସୁଲପୁରରେ ଥିବା ପକ୍କା କଚେରୀ ଘର ସମେତ ସମୁଦାୟ ଅବ୍‌ବଲ୍ ନମ୍ବର ଜମି ମୋତିବାବୁ ନିଜେ ସ୍ୱାକ୍ଷର କରି ଦାନ କରିଥିବାର ପଢ଼ି ସୁଦ୍ଧା ସେ ତାକୁ ବିଶ୍ୱାସ କରି ପାରୁ ନ ଥାନ୍ତି, ଶେଷରେ ଫଁ କରି ନିଃଶ୍ୱାସଟାଏ ପକେଇ ସେ କହିଲେ – ବାବୁ

ରସୁଲପୁର କଚିରୀଘର ସୁଦ୍ଧା ଭୂଦାନକୁ ଦେଇ ଦେଲେ ! ସେ ତ ଅଳିପୁର ସମ୍ପତ୍ତିର ଦଶଗୁଣ ହେବ । ସର୍ବଶ୍ରୀ ବିଜୟ ମଲ୍ଲ, ଗିରିଜାଶଙ୍କର ରାୟ ପ୍ରମୁଖ ବନ୍ଧୁ ଦାତା ବହୁତ ଭଲ ଜମି ଦାନ କଲେ । ସେ ଜମିକୁ ଚଷୁଥିବା ଭୂମିହୀନ ମୂଲିଆଙ୍କ ମଧ୍ୟରେ ଯେତେବେଳେ ସେ ଜମି ବିତରିତ ହେଲା, ସେମାନଙ୍କ ମୁହଁର ଭାବ ଭୂଲି ହେବ ନାହିଁ ।

ଅନେକେ ଅଭିଯୋଗ କରୁଥିଲେ ଯେ ଭୂଦାନକୁ ଦାତାମାନେ ପାହାଡ଼, ବାଲି, ନଈ ଦାନ କରିଛନ୍ତି । ଏହି ପ୍ରସଙ୍ଗରେ ଗାନ୍ଧିଜୀଙ୍କର ଗୋଟିଏ କଥା ଆମେ ବରାବର କହୁଥିଲୁ । ୧୯୪୫ରେ ଗାନ୍ଧିଜୀ ତାଲିମୀ ସଂଘକୁ ଯେଉଁ ଜମି କିଣାଇ ଦେଲେ ସେ ଜମି ଟାଙ୍ଗର ଓ ବନ୍ଧ୍ୟା ବୋଲି ସେଠା ଲୋକେ କୁହାକୋହି ହେଲେ । ଗାନ୍ଧିଜୀ ସେ କଥା ଶୁଣି କହିଲେ – ପୃଥିବୀରେ କୌଣସି ଜମି ବନ୍ଧ୍ୟା ନୁହେଁ । କେଉଁ ଜମି କେଉଁ ଫସଲ ଉପୁଜାଇ ପାରିବ ସେ ଜ୍ଞାନ ଅର୍ଜନ କରିବା ଦରକାର । ମୁଁ ଦକ୍ଷିଣ ଆଫ୍ରିକାରେ ଆଶ୍ରମ ପାଇଁ ଯେଉଁ ଜମି କିଣିଥିଲି ଲୋକେ ସେ ଜମିକୁ ନିକମା କହିଥିଲେ । ମାତ୍ର ମୁଁ ସେଥିରେ ସୁନା ଫଳେଇଲି । ବାସ୍ତବରେ ମୁକ୍ତେଶ୍ୱର ବେଉରିଆ ଜାପାନ୍‌ରୁ କୃଷି ତାଲିମ ପାଇ ଆସିବା ପରେ ସେବାଗ୍ରାମର ସେହି ଟାଙ୍ଗରା, ବନ୍ଧ୍ୟା ଜମିରେ ଲକ୍ଷ ଟଙ୍କାର ଅଙ୍ଗୁର, କମଳା ଫଳେଇଲେ ।

ବାଲିଅନ୍ତା ଓ ଅନ୍ୟତ୍ର ଭୂଦାନସୂତ୍ରରେ ଯେଉଁ ବାଲିଜମି ମିଳିଥିଲା ସେ ଜମିକୁ ଦର୍ଶାଇ ଲୋକେ ଥଟ୍ଟା ଖେଳୁଥିଲେ । ବର୍ତ୍ତମାନ ସେହି ଜମିରେ ଝାଉଁ, ଲଙ୍କାଆମ୍ବ ଚାଷରୁ ହଜାର ହଜାର ଟଙ୍କା ଆୟ ହେଉଛି । ଗୋଖାମାନେ ନଈରୁ ମାଛ ଧରି ଲାଭବାନ୍ ହେଉଛନ୍ତି । ସେଥିପାଇଁ ଭୂଦାନ ଆନ୍ଦୋଳନର ଅନ୍ୟତମ ସିଦ୍ଧାନ୍ତ ହେଉଛି ଯେଉଁ ଲୋକ ଜମିର ଯଥାଯଥ ବିନିଯୋଗ କରି ପାରିବ ଜମି ତାହାରି ହାତକୁ ଗଲେ ଦେଶ ସମୃଦ୍ଧ ହେବ ।

୧୯୫୫ ମସିହା ଜାନୁଆରୀରେ ଓଡ଼ିଶାରେ ବିନୋବାଜୀଙ୍କର ପଦଯାତ୍ରା ଆରମ୍ଭ ହେଲା । ସେପ୍ଟେମ୍ବରରେ ସେ ଓଡ଼ିଶାରୁ ଆନ୍ଧ୍ରରେ ପ୍ରବେଶ କଲେ । ମନମୋହନ ଚଉଧୁରୀ ତାଙ୍କ କ୍ରାନ୍ତି ଯାତ୍ରା ବହିରେ ଏହି ଯାତ୍ରାର ସରସ ବର୍ଣ୍ଣନା କରିଛନ୍ତି । ବିନୋବାଜୀ ଏହି ଆନ୍ଦୋଳନର ମୂଳ ବିଚାରକୁ ଲୋକଙ୍କ ଆଗରେ ଉପସ୍ଥାପିତ କଲେ । ଭୂଦାନ ଆନ୍ଦୋଳନ ଯେ ଏକ ଅହିଂସାତ୍ମକ ସମାଜ ପରିବର୍ତ୍ତନର ବାର୍ତ୍ତାବହ, ଭୂଦାନ-ଗ୍ରାମଦାନ – ଶାନ୍ତିସେନା-ସର୍ବୋଦୟ ଯାତ୍ରା-ଆଚାର୍ଯ୍ୟକୁଳ ଆଦି ଯେ ସର୍ବୋଦୟର ସମଗ୍ର ବିପ୍ଳବର କାର୍ଯ୍ୟକ୍ରମ ତାହାର ବିଶଦ ବ୍ୟାଖ୍ୟା ସେ କଲେ । ଗ୍ରାମଦାନରେ ଗାଁ ଜମିର ମାଲିକାନା

ସ୍ୱତ୍ୱ ଗ୍ରାମ-ସଭା ହାତରେ ରହିଲେ କିପରି ଲୋକେ ଅଯଥାରେ ଜମି ଖରିଦ ବିକ୍ରୀ କରି ପାରିବେ ନାହିଁ ପୁଣି ବାଣ୍ଟିକୁଣ୍ଟି ଖାଇବା, ଗାଁ କଳି ଗ୍ରାମସଭାରେ ତୁଟାଇବା, ଗାଁରେ ଗ୍ରାମପାଣ୍ଠି ରଖିବା ଆଦି ବିଚାରକୁ କୋରାପୁଟ ଲୋକେ ଗ୍ରହଣ କଲେ ଏବଂ ସେଠାରେ ଗ୍ରାମଦାନ ଅଭିଯାନ ଆଶାତୀତ ଭାବରେ ସଫଳ ହେଲା ।

"ଆମ ଗାଁରେ ଭୂମିହୀନ ରହିବେ ନାହିଁ, ରହିବେ ନାହିଁ" ଜୟଘୋଷରେ କୋରାପୁଟ କମ୍ପିଲା । ଘୋର ବର୍ଷାରେ କର୍ମୀମାନେ ଯେପରି ନାନା ଅସୁବିଧାର ସମ୍ମୁଖୀନ ହୋଇ ଏବଂ ବାରମ୍ବାର ଅସୁସ୍ଥ ହୋଇ ସୁଦ୍ଧା ଗ୍ରାମଦାନ ସଂଗ୍ରହ କାମ କଲେ ତାହା ନ ଦେଖିଲେ ବିଶ୍ୱାସ କରିବା କଷ୍ଟ । ଦଶମନ୍ତପୁରର ବାଘବଣ, ଫଳଫଳୁଆର ପ୍ରଖର ସ୍ରୋତ, ମାଳଜ୍ୱରର ଜ୍ୱାଳା ଯନ୍ତ୍ରଣା ସୁଦ୍ଧା ସେମାନଙ୍କ ଉତ୍ସାହକୁ ଅବନମିତ କରି ପାରିଲା ନାହିଁ । ମହିଳା କର୍ମୀମାନେ ମଧ୍ୟ ପୁରୁଷଙ୍କ ସମକକ୍ଷ ହୋଇ ଗ୍ରାମଦାନ ସଂଗ୍ରହ କରୁଥାନ୍ତି ।

ଏହା ପରେ ପରେ ଗୁଣନିଧି ବାବୁ (ମହାନ୍ତି), ମନମୋହନ ଚଉଧୁରୀ, ରମାଦେବୀ ଆଦି ଜମି ବାଣ୍ଟିବା କାମରେ ଲାଗି ପଡ଼ିଲେ । ରତନ ଦାସ, ଶାନ୍ତି ଦେବୀ, ବୃନ୍ଦାବନ ଜେନା, ଅଲେଖ ପାତ୍ର, ନିଶାକର ଦାସ, ବାଜୀ ମହମ୍ମଦ, ବିଶ୍ୱନାଥ ପଟ୍ଟନାୟକ, ମାଳତୀ ବିଶ୍ୱାଳ, ଶଚୀବାଳା ପଣ୍ଡା ଆଦି କର୍ମୀମାନେ ଆନ୍ଦୋଳନକୁ ସଫଳ କରିବା ପାଇଁ ଜୀବନ ପଣ କରି ଲାଗିଥାନ୍ତି । ଏ ଭୂମିବିତରଣ ସାଙ୍ଗକୁ ପୁଣି କୋରାପୁଟରେ ଭୟଙ୍କର ଯକ୍ଷ୍ମରୋଗ ବିତାଡ଼ନ ଅଭିଯାନ ମଧ୍ୟ ଚାଲିଲା । ଭ୍ରାମ୍ୟମାଣ ଯକ୍ଷ୍ମ ଚିକିତ୍ସା କେନ୍ଦ୍ର ଗ୍ରାମେ ଗ୍ରାମେ ଯକ୍ଷ୍ମ ଚିକିତ୍ସା କାମ ଆରମ୍ଭ କଲେ । ଉତ୍କଳ ନବଜୀବନ ମଣ୍ଡଳର କର୍ମୀ ଓ ଭୂଦାନ କର୍ମୀମାନଙ୍କୁ ଯକ୍ଷ୍ମ ଚିକିତ୍ସା ତାଲିମ ଦିଆହେଲା । ପୁଣି ସର୍ବସେବାସଂଘ ପକ୍ଷରୁ ଅଣପୀ ସାହେବ ସେଠାରେ ନିର୍ମାଣ କାମ ଆରମ୍ଭ କଲେ । ଏସବୁ କାମ ଚାଲିଥିଲା ବେଳେ ଗୋପବାବୁ ବାରମ୍ବାର କହୁଥାନ୍ତି ଯେ କର୍ମୀ ଓ ଗାଁ ଲୋକଙ୍କର ନୈତିକ ଉତ୍ଥାନ ପାଇଁ କାମ ନ କରି କେବଳ ଆର୍ଥିକ ଉନ୍ନତି ପାଇଁ କାମ କଲେ ସେ କାମ କଲ୍ୟାଣପ୍ରଦ ହେବ ନାହିଁ ।

ମୁଁ ମୋ ଅନୁବାଦ କାମ ତୁଲାଇବା ସଙ୍ଗେ ସଙ୍ଗେ ମଝିରେ ମଝିରେ ବିନୋବାଜୀଙ୍କ ପଦଯାତ୍ରାରେ ଯୋଗ ଦେଉଥାଏ । ୧୯୩୮ରେ ମୌଳିକ ଶିକ୍ଷା ସଂକ୍ରାନ୍ତରେ ମୁଁ ଉଆର୍ଦ୍ଧାରେ ଥିବାବେଳେ ତାଙ୍କ ସଂସ୍ପର୍ଶରେ ଆସିଥିଲି । ଏବେ ଗୀତା ପ୍ରବଚନର ଓଡ଼ିଆ ଅନୁବାଦ ଯାଞ୍ଚ କଲାବେଳେ ମୋତେ ତାଙ୍କ ନିକଟରେ ରହିବାକୁ

ପଢୁଥାଏ । ଓଡ଼ିଶାରେ ପ୍ରବେଶ କରିବାର ବହୁ ବର୍ଷ ପୂର୍ବରୁ ସେ ଓଡ଼ିଆ ଲିପି ଶିଖି ଓଡ଼ିଆ ବହି ପଢ଼ି ପାରୁଥିଲେ । ତେଣୁ ଗୀତା ପ୍ରବଚନର ଓଡ଼ିଆ ତର୍ଜମା ସେ ପଢ଼ିପାରୁଥିଲେ ଏବଂ ଭାଷା ମଧ୍ୟ ସଂଶୋଧନ କରୁଥିଲେ । ପ୍ରତିଦିନ ରହଣୀରେ ପହଞ୍ଚିବା ପରେ ସେ ଜଗନ୍ନାଥ ଦାସଙ୍କ ଭାଗବତ ଶୁଣୁଥିଲେ ଓ ବିଶ୍ରାମ ବେଳେ ମୂଳ ସଂସ୍କୃତ ଭାଗବତ ସହିତ ଓଡ଼ିଆ ଭାଗବତକୁ ମିଳାଉଥିଲେ । ମୁଁ ପଦଯାତ୍ରାରେ ଥିବାବେଳେ ଓଡ଼ିଆ ଭାଗବତ ପଢ଼ି ଶୁଣାଇବା ଧନ୍ଦାଟି କରୁଥିଲି । ଓଡ଼ିଶାରେ ଏହି ଭାଗବତ ପାଠର ଫଳସ୍ୱରୂପ ଭାଗବତ ଧର୍ମ-ସାର ପ୍ରସ୍ତୁତ ହୋଇ ପାରିଲା ।

ସେ ବିଭିନ୍ନ ଲୋକଙ୍କ ସହିତ ବିଭିନ୍ନ ପ୍ରକାର ଆଲୋଚନା କଲାବେଳେ ଆମେ ସେଠାରେ ଉପସ୍ଥିତ ରହି ପାରୁଥିଲୁ । ଭୂଦାନ, ଗ୍ରାମଦାନ ଆନ୍ଦୋଳନ ବିଷୟରେ ତ ଆଲୋଚନା ହେଉଥିଲା, ତାତ୍ତ୍ୱିକ ଆଲୋଚନା ମଧ୍ୟ ହେଉଥିଲା । ଦିନେ ଆଚାର୍ଯ୍ୟ ମହାଶୟ ତାଙ୍କୁ ପଚାରିଲେ – ଗୀତା ପ୍ରବଚନରେ 'ବିକର୍ମ'ର ଯେଉଁ ଅର୍ଥ ସେ କରିଛନ୍ତି, ତାହା କେଉଁଠୁ ପାଇଲେ ? ଏହି ସନ୍ଦର୍ଭରେ ସେଠାକୁ ଶ୍ରୀଧର ସ୍ୱାମୀ, ଶଙ୍କରାଚାର୍ଯ୍ୟ, ତିଲକ ମହାରାଜ ଓ ଜ୍ଞାନଦେବ ବିଜେ କଲେ ଅର୍ଥାତ୍ ସେମାନଙ୍କ ଗୀତାଭାଷ୍ୟ ମଧ୍ୟ ଆଲୋଚିତ ହେଲା । ଗୀତା ପ୍ରବଚନର ବିକର୍ମର ବ୍ୟାଖ୍ୟା ଜ୍ଞାନେଶ୍ୱରୀ ଅନୁସାରୀ ବୋଲି ସେ କହିଲେ ।

ମୁଁ ପଦଯାତ୍ରାରେ ରହୁଥିବା ବେଳେ ବିନୋବାଜୀ ରହୁଥିବା ଘର କାନ୍ଥରେ ଓଡ଼ିଆ ସୁଭାଷିତ ଲେଖି ଦେଉଥିଲି । ବିନୋବାଜୀ ତାକୁ ପଢୁଥିଲେ, ଦିନେ ଦିନେ ସେହି ଉକ୍ତି ଉପରେ ଭାଷଣ ଦେଉଥିଲେ । ଦିନେ ମୁଁ ଲେଖିଥିଲି –

''ଜାତୀୟ ମମତା ବିଶ୍ୱଜନ ପ୍ରୀତି,
ଉତ୍କଳବାସୀର ହେଉ ଏହା ନୀତି ।''

ବିନୋବାଜୀ ତାକୁ ପଢ଼ି ମୋତେ ଡ଼ାକି କହିଲେ – ଏ ଦୁଇଟି ପଂକ୍ତିରେ ମୋର ବିଚାର ସ୍ପଷ୍ଟ କରି ବୁଝାଇ ଦିଆହୋଇଛି । ଆଉ ଦିନେ ଲେଖିଥିଲି –

''ମହାତ୍ମା ଭାଷଣ ମହାତ୍ମା କଷଣ,
ଜଗତେ ନ ଯାଏ କେଭେଁ ଅକାରଣ ।''

ସେଦିନ ସେ କହିଲେ – ଓଡ଼ିଆରେ ଏ ଯେଉଁ କଷଣ ଶବ୍ଦଟି ଅଛି ତାହା ଭାରତର ଅନ୍ୟ କୌଣସି ଭାଷାରେ ନାହିଁ । କଷ୍ ଧାତୁରୁ କଷଣ କି ସୁନ୍ଦର ଶବ୍ଦ ! ଏହିପରି କେତେ କଥା !

୧୯୫୫ରେ ଦଳେଇ ଘାଇ ଭାଙ୍ଗିଲା । ଆଚାର୍ଯ୍ୟ ମହାଶୟ ଟାଇଫଏଡ୍ ରୋଗରେ ଆକ୍ରାନ୍ତ ହୋଇ କଟକରେ ଥାଆନ୍ତି । ସଚ୍ଚିଦାନନ୍ଦ ମହାନ୍ତି, ବିଶ୍ୱନାଥ ପରିଡ଼ା ଏହିପରି ଆମେ ଅଳ୍ପ କେତେଜଣ କଟକରେ ଥାଉ । ଆଉ ସମସ୍ତେ କୋରାପୁଟ ଗ୍ରାମଦାନ ଅଭିଯାନରେ ମାତିଥାନ୍ତି । ତେଣୁ ସେ ବର୍ଷ ରାମଚନ୍ଦ୍ରପୁର ବାଣୀଶ୍ରୀର ଶିକ୍ଷକ ଓ କସ୍ତୁରବା ସ୍ମାରକ ଟ୍ରଷ୍ଟର ଅନ୍ନପୂର୍ଣ୍ଣା ଦାସ, ଅନସୂୟା ମହାପାତ୍ର, ଜୀବନମଣି ମହାନ୍ତିଙ୍କ ବ୍ୟତୀତ ଆଉ କେହି ସଂକଟତ୍ରାଣ କାମ କରି ପାରିଲେ ନାହିଁ ।

୧୯୫୬ ମସିହା ଶେଷ ଆଡ଼କୁ ବିନୋବାଜୀ 'ତନ୍ତ୍ରମୁକ୍ତି ନିଧିମୁକ୍ତି' କଥା କହିଲେ । ଏ ପର୍ଯ୍ୟନ୍ତ ଭୂଦାନ ଗ୍ରାମଦାନ କାମ ଭୂଦାନ ଯଜ୍ଞ ସମିତି (ବେସରକାରୀ) ତତ୍ତ୍ୱାବଧାନରେ ଚାଲୁଥିଲା । ଗାନ୍ଧୀ ସ୍ମାରକ ନିଧି ଭୂଦାନ ଯଜ୍ଞ ସମିତିକୁ ଆର୍ଥିକ ସାହାଯ୍ୟ ଦେଉଥିଲେ । ଉତ୍କଳ ନବଜୀବନ ମଣ୍ଡଳ, କସ୍ତୁରବା ସ୍ମାରକ ଟ୍ରଷ୍ଟ ଆଦି ଅନୁଷ୍ଠାନର ଯେଉଁ କର୍ମୀ ଭୂଦାନ କାମ କରୁଥିଲେ ସେମାନେ ନିଜ ନିଜ ଅନୁଷ୍ଠାନରୁ ଅର୍ଥ ସାହାଯ୍ୟ ନେଉଥିଲେ । ବିନୋବାଜୀ କହିଲେ ଯେ ଏହି ଆନ୍ଦୋଳନ ବର୍ତ୍ତମାନ ଯେଉଁ ସ୍ତରକୁ ଆସିଗଲାଣି, ତାହାକୁ କୌଣସି ସଂସ୍ଥା ମଧ୍ୟରେ ଆବଦ୍ଧ ନ ରଖି ତାହାର ପରିସର ବ୍ୟାପକ କରି ଦେବାକୁ ହେବ । ଲୋକେ ଓ କର୍ମୀମାନେ ବୁଝିବା ଦରକାର ଯେ ଏହା ଏକ ଜନ ଆନ୍ଦୋଳନ । ତେଣୁ ଆନ୍ଦୋଳନ ଜନଆଧାରିତ ହୋଇ ଚଳିବା ଦରକାର । ଏହା ପୂର୍ବରୁ ସେ ଭାରତରେ ଗଠନମୂଳକ କାମରେ ଲିପ୍ତ ଥିବା କର୍ମୀମାନଙ୍କୁ ସବୁ କାମ ଛାଡ଼ି ଏହି ଭୂମି ସମସ୍ୟାର ସମାଧାନ କାମରେ ଲାଗିପଡ଼ିବାକୁ ଡ଼ାକରା ଦେଇଥିଲେ । ତାଙ୍କର ଯୁକ୍ତି ଥିଲା ଯେ ଅହିଂସାତ୍ମକ ଉପାୟରେ ଆମେ ଯଦି ଗ୍ରାମୋଦ୍ୟୋଗପ୍ରଧାନ ଭୂମିକ୍ରାନ୍ତିକୁ ଶୀଘ୍ର ସଫଳ କରି ସମାଜରେ ସାମାଜିକ, ଆର୍ଥିକ, ଶୈକ୍ଷଣିକ ଓ ସାଂସ୍କୃତିକ କ୍ଷେତ୍ରରେ ପରିବର୍ତ୍ତନ ନ ଆଣିବା, ଶାସନ ବ୍ୟବସ୍ଥାକୁ ବିକେନ୍ଦ୍ରିତ କରିବା ପାଇଁ ଲୋକଙ୍କ ମଧ୍ୟରେ ଚେତନା ଆଣି ଗ୍ରାମସଭା ଗଢ଼ି ପ୍ରତ୍ୟେକ ଗାଁକୁ ଛୋଟ ଛୋଟ ଗଣରାଜ୍ୟରେ ପରିଣତ କରି ସୁଚିନ୍ତିତ ଭାବରେ ଶାସନ କ୍ଷମତାକୁ ଗାଁ ଓ କେନ୍ଦ୍ର ମଧ୍ୟରେ ବାଣ୍ଟି ନ ଦେବା ତେବେ ଶାସନ ବ୍ୟବସ୍ଥା କେନ୍ଦ୍ରିତ ହେବା ଫଳରେ ଏହି ଖଦୀ ମୌଳିକ ଶିକ୍ଷା ଆଦି କାମଗୁଡ଼ିକ ଆପେ ଆପେ ଭୁଷୁଡ଼ି ପଡ଼ିବ । ''ଏକ୍ ସଧେ ସବ୍ ସଧେ ସବ୍ ସଧେ ସବ୍ ଜାଏ'' ଥିଲା ତାଙ୍କର ଆପ୍ତ ବାକ୍ୟ । ଫଳରେ ଓଡ଼ିଶାରେ ମୌଳିକ ଶିକ୍ଷା କ୍ଷେତ୍ରରେ କାମ କରୁଥିବା ସର୍ବଶ୍ରୀ ଫକୀର ମିଶ୍ର, ସୁଧାଂଶୁ ଶେଖର ଦାସ, ଶରତ୍ ଚନ୍ଦ୍ର ମହାରଣା ଆଦି ଭୂଦାନ କାମରେ ଲାଗିଥିଲେ । ଉତ୍କଳ ଖଦୀମଣ୍ଡଳର ମନମୋହନ ଚଉଧୁରୀ,

ବିଶ୍ୱନାଥ ପରିଡ଼ା ଆଦି ମଧ୍ୟ ଏ କାମ ଧରିଲେ । ବର୍ତ୍ତମାନ ଏ ତନ୍ତ୍ରମୁକ୍ତି, ନିଧିମୁକ୍ତି ବିଚାର ଅନୁସାରେ ଭୂଦାନ ଯଜ୍ଞ ସମିତିକୁ ଭାଙ୍ଗିଦେଇ ପ୍ରତ୍ୟେକ ଜିଲ୍ଲାରେ ଭୂଦାନ ଗ୍ରାମଦାନ ଆନ୍ଦୋଳନର ସଂଚାଳନା ପାଇଁ ଜଣେ ଜଣେ ନିବେଦକ ନିଯୁକ୍ତ ହେଲେ । ସାଧାରଣ ଚାନ୍ଦାଦାତା ଯାହା ଚାନ୍ଦା ଦେଲେ ବା ସମ୍ପତ୍ତିଦାନ ଦେଲେ ସେଇଥିରେ ସେମାନେ ଚଳିଲେ ।

୧୯୫୭ ମସିହା ସୁଦ୍ଧା ସମଗ୍ର ଭାରତରେ ଭୂମି ସଂଗ୍ରହ ଓ ବିତରଣ କାମ ଶେଷ କରି ତାହାପରେ ନିର୍ମାଣ କାମରେ ଲାଗିବା ପାଇଁ ବିନୋବାଜୀ ଡ଼ାକରା ଦେଲେ । ଦେଶର ପ୍ରତ୍ୟେକ ପରିବାରରୁ ଜଣେ ସ୍ୱେଚ୍ଛାସେବକ ବର୍ଷେ ଏହି କାମ ପାଇଁ ସମୟ ଦେବ ଓ ତାଙ୍କର ଯୋଗାଯୋଗ - ସେହି ପରିବାର ବହନ କରିବେ, ଏହା ହେଲା ତାଙ୍କର ଅର୍ଥ ବ୍ୟବସ୍ଥା । ସେ କହିଲେ ଏହି ସ୍ୱେଚ୍ଛାସେବକ ଓ ତାଙ୍କ ପରିବାରର ଲୋକେ ବିଚାରିବେ ଯେ ପରିବାରର ଜଣେ ବିନୋବାର ଜେଲ୍‌ରେ ବର୍ଷଟିଏ ରହିବ । ଯେଉଁମାନେ ବର୍ଷେ ଏପରି ଭାବରେ ସମୟ ଦେଇ ପାରିବେ ନାହିଁ ସେମାନେ ଅନ୍ତତଃ ମାସେ ସମୟ ଏହି କାମ ପାଇଁ ଦେବେ ଯାହା ଫଳରେ ୧୯୫୭ ଶେଷ ସୁଦ୍ଧା ଭୂମିକ୍ରାନ୍ତି କାର୍ଯ୍ୟ ସମ୍ପନ୍ନ ହେବ । ଭାରତରେ ଯେପରି ଏକା ଦିନରେ ଏକା ସମୟରେ ପ୍ରତି ଘରେ ଦୀପାବଳି ଉତ୍ସବ ସେହିପରି ସାରା ଭାରତରେ ଏକା ଦିନକେ ପାଳନ କରାଯାଇ ଗ୍ରାମେ ଗ୍ରାମେ ଭୂମିହୀନଙ୍କୁ ଜମି ବାଣ୍ଟି ଦିଆଯାଉ ।

ସେ ବ୍ୟକ୍ତିତ୍ୱ, ସେ ବିଚାରସମୃଦ୍ଧ ଭାଷା ଆମମାନଙ୍କୁ ଚୁମ୍ବକ ପରି ଟାଣି ନେଉଥାଏ । ସେ କହୁଥାନ୍ତି ୧୭୫୭ରେ ପଲାସି ଯୁଦ୍ଧ, ୧୮୫୭ରେ ସିପାହୀ ବିଦ୍ରୋହ ହେଲା । ୧୯୫୭ରେ ଭୂମିକ୍ରାନ୍ତି ଘଟାଇ ନିଜର ପୁରୁଷାର୍ଥ ପ୍ରତିପନ୍ନ କରିବାକୁ ହେବ

ଭୂଦାନ କାମରେ ଲାଗିଥିବା କର୍ମୀମାନେ ତନ୍ତ୍ରମୁକ୍ତ ନିଧିମୁକ୍ତ ହୋଇ କାମ କରିବା ପାଇଁ ସଙ୍କଳ୍ପବଦ୍ଧ ହେଲେ । ଏଥିପାଇଁ ସେମାନେ ଯେଉଁ କଷ୍ଟ ସହିଲେ ତାହା ଜେଲ୍ କଷ୍ଟଠାରୁ ଶତଗୁଣ ବଳି ପଡ଼ିଲା । ମାଳତୀ ବିଶ୍ୱାଳ କସ୍ତୁରବା ସ୍ମାରକ ନିଧିରୁ ଅର୍ଥ ସାହାଯ୍ୟ ନ ନେଇ ବର୍ଷେ ଜନଆଧାରିତ ହୋଇ ଚଳିବାକୁ ସଂକଳ୍ପ କଲେ । ଆଦିବାସୀ ଅଞ୍ଚଳ । ମାଣ୍ଡିଆ ପେଜ ସେମାନଙ୍କର ଖାଦ୍ୟ । ପତର ଠୋଲାରେ ମାଣ୍ଡିଆ ପେଜ ଖାଇ ସେ କାମ କରୁଥାନ୍ତି । ଗୁଣୁପୁର ଅଞ୍ଚଳରେ କେବଳ ବୋଇତି କଖାରୁ ସିଝା ଖାଇ ସେ ଦିନ ଦିନ କାହିଁକି ସପ୍ତାହ ସପ୍ତାହ କଟାଇଲେ । କର୍ମୀମାନଙ୍କ ପରିବାର ମଧ୍ୟ ଏହି ଭୂମିକ୍ରାନ୍ତି ପାଇଁ ଅଶେଷ ଦୁଃଖ ବରଣ କଲେ । ଆମ ପରିବାରରେ ଗୋପବାବୁ,

ରମାଦେବୀ, ମନମୋହନ ଚଉଧୁରୀ, ଶରତ୍‌ଚନ୍ଦ୍ର ମହାରଣା, ବିନୋବା ଜେଲ୍‌କୁ ଚାଲିଗଲେ । ସୁମିତ୍ରା ଚୌଧୁରୀ ବାଣୀଶ୍ରୀର ଉତ୍ତର ମୌଳିକ ବିଭାଗରେ କାମ କରୁଥାନ୍ତି । ପାରିଶ୍ରମିକ ମାସକୁ ପଚସ୍ତରୀ ଟଙ୍କା । ମୁଁ ତ ଅନୁବାଦ କାମ କରୁଥାଏ । ଉତ୍କଳ ଖଦୀମଣ୍ଡଳ ଏଥିପାଇଁ ମୋତେ ଦେଉଥାନ୍ତି ମାସକୁ ଷାଠିଏ ଟଙ୍କା । ସେହି ୧୯୩୧ ମସିହା କଥା ସ୍ମରଣ କରି ଅନ୍ତତଃ ମାସେ ବିନୋବା ଜେଲରେ ରହି ଆସିବାକୁ ମନ ଉଚ୍ଛନ୍ନ ହେଲା । ସାନପୁଅକୁ ପାଞ୍ଚବର୍ଷ ପୂରିଥାଏ । ଦୁହିଁଙ୍କୁ ବସେଇ ସବୁକଥା ବୁଝାଇଲି । କାରଣ ମୁଁ ଭାବିଲି ସେମାନଙ୍କୁ ନ ବୁଝାଇ ମୋର ଆତ୍ମତୃପ୍ତି ପାଇଁ ସେମାନଙ୍କୁ ଛାଡ଼ିଗଲେ ସେମାନେ ଆନ୍ଦୋଳନ ପ୍ରତି ବୀତସ୍ପୃହ ହୋଇଯାଇ ପାରନ୍ତି । ସେମାନେ ଚାହିଁଲାରୁ ସୁମିତ୍ରା ଚୌଧୁରୀଙ୍କ ପାଖରେ ସେମାନଙ୍କୁ ଛାଡ଼ି ମୁଁ ମାସକ ପାଇଁ କେନ୍ଦୁଝର ଗଲି ।

ରମାଦେବୀ କେନ୍ଦୁଝର ଜିଲ୍ଲାର ନିବେଦକ ନିଯୁକ୍ତ ହୋଇଥିଲେ । ଅତୀତରେ କେନ୍ଦୁଝର ରାଜା ନାବାଳକ ଥିଲାବେଳେ ତାଙ୍କ ବାପା ଗୋପାଳବଲ୍ଲଭ ଦାସ ସେହି ଗଡ଼ଜାତ ରାଜ୍ୟର ରିସିଭର ନିଯୁକ୍ତ ହୋଇଥିଲେ । ରାଜାଙ୍କ ସହିତ ତାଙ୍କର ପିତାପୁତ୍ର ସମ୍ପର୍କ ସ୍ଥାପିତ ହୋଇଥିଲା । ଗୋପାଳବଲ୍ଲଭ କେନ୍ଦୁଝରରେ ରିସିଭର ଥିବାବେଳେ ''ଭୀମାଭୂୟାଁ'' ଉପନ୍ୟାସ ଲେଖିଥିଲେ । କେନ୍ଦୁଝର ରାଜପରିବାର ସହିତ ଏ ପ୍ରକାର ସମ୍ପର୍କ ଥିବାରୁ ରମାଦେବୀ ପ୍ରଥମେ କେନ୍ଦୁଝର ରାଜା ଓ ରାଣୀଙ୍କ ଠାରୁ ଭୂଦାନ ସଂଗ୍ରହ କଲେ । ଯାହାହେଉ, ତାଙ୍କ ନିର୍ଦ୍ଦେଶରେ ମୁଁ ଆନନ୍ଦପୁର ସବ୍‌ଡ଼ିଭିଜନର ଓରାଳୀ ଗାଁର କାର୍ତ୍ତିକବାବୁଙ୍କ ସ୍ତ୍ରୀ ଉଷା ଦେବୀଙ୍କ ସଙ୍ଗେ ମାସଟିଏ ପଦଯାତ୍ରା କଲି । ବିଚିତ୍ର ଅନୁଭୂତିରେ ସେ ପଦଯାତ୍ରା କଟିଲା । ପ୍ରଥମ ଦିନ ଡ଼ଙ୍କୁରୀ ଗାଁରେ ସଭା ହେଲା । ଭୂମିବାନ୍ ଲୋକେ ଭୂଦାନ ନାଆଁ ଶୁଣି ଏପରି ଛାନିଆ ହେଲେ ଯେ ଆଦୌ ସଭାକୁ ଆସିଲେ ନାହିଁ । ଗାଁ ମଝିରେ ସଭା ହେଉଥାଏ । ମରେଇ ଗାଁର ନିତ୍ୟାନନ୍ଦ ବାବୁ, ପଦ୍ମନାଭ ବାବୁ ଓ ଆଉ କେତେଜଣ ଭୂମିହୀନ ସଭାରେ ବସିଥାନ୍ତି । ଆମେ ଭୂଦାନ, ଗ୍ରାମଦାନ ଆନ୍ଦୋଳନର ଉଦ୍ଦେଶ୍ୟ ବୁଝାଉଥାଉ । ଆମେ ବୁଝି ପାରୁଥାଉ ଯେ ଲୋକେ ଘର ଭିତରେ ଥାଇ ଆମ କଥାକୁ କାନ ଡ଼େରିଛନ୍ତି । ରାତି ପ୍ରାୟ ଏଗାରଟାରେ ସଭା ମଉଳିଲା । ପାଞ୍ଚଲକ୍ଷ ଗାଁର ଲୋକଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବା ପାଇଁ ଦେଶରେ ପଞ୍ଚାବନ ଲକ୍ଷ ଚାକର ସରକାର ଗାଁ ଲୋକଙ୍କ ପଇସାରୁ ଦରମା ଦେଇ ନିଯୁକ୍ତ କରିଛନ୍ତି ଅର୍ଥାତ୍ ପ୍ରତ୍ୟେକ ଗାଁ ପାଇଁ ଏଗାରଜଣ ଚାକର ସରକାର ଖଞ୍ଜିଛନ୍ତି, ଗାଁର ଧାନ, ତୈଳବୀଜ, ଝୋଟ ଆଦି କଞ୍ଚାମାଲ ଶସ୍ତାରେ ଧନୀ ବ୍ୟବସାୟୀମାନେ କିଣି ନେଇ ତହିଁରେ ଚାଉଳ, ତେଲ, ଅଖା

ଆଦି କଳରେ ତିଆରି କରି ତାହା ପୁଣି ମହରଗରେ ଗାଁକୁ ବିକୁଛନ୍ତି । ଗାଁ କଳିଗୋଳ କଚିରୀକୁ ଯିବା ଫଳରେ ଗାଁ ପଇସାରେ ଓକିଲ ହାକିମଙ୍କ ଅବସ୍ଥା ବଦଳୁଥିବା ସ୍ଥଳେ ଗାଁ ଲୋକେ ସର୍ବସ୍ୱାନ୍ତ ହେଉଛନ୍ତି । ଅହିଂସାତ୍ମକ ଉପାୟରେ ଏହି ଶୋଷଣରୁ ମୁକ୍ତ ହେବାର ଉପାୟ ହେଉଛି ''ଗାଁ ମେଳି'' । ଗାଁରେ ଭୂମିହୀନ ଭୂମିବାନ୍ ଭେଦ ରହିବ ନାହିଁ, ଏଇଟା ହେବ ଗାଁ ମେଳିର ପ୍ରଥମ ସୋପାନ । ଗାଁ ସଭା ଗାଁ କଳି ଭାଙ୍ଗିବ, ଗାଁରେ ଉତ୍ପାଦନ ହେଉଥିବା ଜିନିଷର ଦରଦାମ୍ ଠିକ୍ କରିବ, ଗ୍ରାମପାଣ୍ଠି ଗଢ଼ି ମହାଜନ ଦାଉରୁ ରକ୍ଷା ପାଇବ, ଆଦି କଥା ଶୁଣି ଏମାନେ ଜବରଦସ୍ତି ଜମି ଛଡ଼ାଇ ନେବାକୁ ଆସି ନାହାନ୍ତି - ଏ କଥା ହୃଦ୍‌ବୋଧ ହେବାରୁ ଲୋକେ ଗୋଟି ଗୋଟି ହୋଇ ଘର ଭିତରୁ ବାହାରି ଆସି ସଭାରେ ବସିଲେ ।

ଡ଼ଙ୍କୁରୀ ଗାଁରେ ୧୯୫୭ରେ କୂଅ ନ ଥିଲା । ଗୋଟିଏ ପୋଖରୀରେ ଶୌଚକ୍ରିୟା, ଗାଧୁଆ, ଲୁଗାକଚା, ରୋଷେଇ, ପାଣିପିଆ, ଗୋରୁ ଗାଧୁଆ ଆଦି କାମଗୁଡ଼ିକ ସମ୍ପାଦିତ ହେଉଥାଏ । ସଫା ପାଣି ମୁନ୍ଦିଏ ପିଇବା ଲୋଭରେ ଗାଁ କାରବାର ବନ୍ଦ ହେଲାରୁ ରାତି ବାରଟା ପରେ ସେ ପୋଖରୀରୁ ପାଣି ମୁନ୍ଦିଏ ଆଣି ସାଇତିଲୁ । ଏ ସବ୍‌ଡ଼ିଭିଜନ୍‌ର ବହୁତ ଗାଁରେ ସେତେବେଳେ ଏହିପରି ପୋଖରୀ ପାଣିରେ ସର୍ବକାର୍ଯ୍ୟସାଧନ ହୋଇଥିବାର ଦେଖିଲୁ । ଯାହାହେଉ, ପାଣି ତ ଅଛି ! ଆଦୌ ପାଣି ନ ମିଳୁଥିବା ବା ଅମେଇପାଳ ତିଖିରି ପରି ଖରାଦିନେ ଲୁଣାପାଣି ତ ନାହିଁ !

ଉଷାଦେବୀ ଓ ମୁଁ ଦୁଇଟା ଭୁଆଷୁଣୀ ଏପରି ଗାଏଁ ଗାଏଁ ବୁଲୁଥିବାର ଦେଖି ଲୋକେ ଆଚମ୍ବିତ ହେଉଥାନ୍ତି । କିନ୍ତୁ ଅଧିକାଂଶ ଗାଁର ଲୋକେ କୀର୍ତ୍ତନ ବାବୁଙ୍କୁ ଜାଣିଥିବାରୁ ଉଷାଦେବୀଙ୍କ ପରିଚୟ ପାଇଲେ ଆଉ ଅଚିହ୍ନା ବାରନ୍ତି ନାହିଁ । ଚିହ୍ନା ଗାଁରେ ସହଜରେ ମୁଠିଏ ଖାଇବାକୁ ମିଳେ ସିନା ମାତ୍ର ଲୋକେ ବିଶେଷକରି ସ୍ତ୍ରୀଲୋକ ବିଚିତ୍ର ବିଚିତ୍ର ପ୍ରଶ୍ନ ପଚାରନ୍ତି । ସ୍ୱାମୀପୁତ୍ର ଛାଡ଼ି ଏପରି ବୁଲିବାଟା ଯେ ମର୍ଯ୍ୟାଦାହାନିକର ସେ କଥା ମଧ୍ୟ ଆମକୁ ବୁଝାନ୍ତି । ସଭାରେ ଆମ ବକ୍ତବ୍ୟ ଶୁଣି ସାରିଲା ପରେ ଲୋକଙ୍କ ଧାରଣା ବଦଳେ । ରାତିରେ ଦିନେ ଦିନେ ମୁଠିଏ ମିଳେ, ଦିନେ ଦିନେ ନିଶାପାଳନ ହୁଏ । ଥରେ ଏହିପରି ନିଶାପାଳନ କରି ଆମେ ବଡ଼ି ଭୋରରୁ ଉଠି ଆଉ ଗୋଟିଏ ଗାଁକୁ ବାହାରିଲୁ । ରାତି ଦଶଟାଯାଏ ସଭାରେ କଥା କହି କହି ସଭା ସରିଲାବେଳକୁ ହିଁ ଭୋକ କରିଯାଏ । ସକାଳୁ ତ ଭୋକରେ କରଡ଼ି ଜଳେ । ସେହି ଭୋକରେ ପରବର୍ତ୍ତୀ ରହଣିରେ ପହଞ୍ଚିବା ପାଇଁ ବାଟ ସାରୁଥାଉ । ବାଟରେ ଗୋଟାଏ ଆମ୍ବଗଛ ମୂଳେ କଞ୍ଚା ଆମ୍ବଟିଏ

ଝଡ଼ି ପଡ଼ିଥିଲା । ଉଷାଦେବୀ ଆମ୍ବଟିକୁ ସାଉଁଟି ସାରି ଦେଖିଲେ କିଛି ଦୂରରେ ଜଣେ ଲୋକ ଛିଡ଼ାହୋଇ ଆମକୁ ତରାଟି ଚାହୁଁଛି । ଆମେ ଭାବିଲୁ ସେ ବୋଧହୁଏ ସେ ଗଛ ମାଲିକ । ତା' ଗଛ ଆମ୍ବ ନେଇଥିବାରୁ ଆମକୁ ଏଥର ମରାମତ କରିବ । ସାମାନ୍ୟ ଆମ୍ବଟିଏ ପାଇଁ ଏମିତି ବିକଳିଆ କାମ କଲୁ ବୋଲି ଲାଜରା ହେଲା ବେଳକୁ ସେ ଲୋକଟି ଆସି ଉଷାଦେବୀଙ୍କୁ ଜୁହାର ହେଲା । ସେ ହେଉଛି ଉଷାଦେବୀଙ୍କ ଧର୍ମପୁଅ । ଉଷାଦେବୀ ତାକୁ ପଚାରିଲେ – ତମ ହାଣ୍ଡିରେ ପଖାଳ ଅଛି ? ସେ ରଜକପୁଅ ତାକୁ କଲବଲ କରି ଚାହିଁଲା । ଉଷାଦେବୀ ଆଉ ତା ଉତ୍ତରକୁ ଅପେକ୍ଷା ନ କରି ତାଙ୍କ ଘରକୁ ପଶିଯାଇ ହାଣ୍ଡିଶାଳରୁ ଦୁଇବେଲା ପଖାଳ ନିଜେ ବାଢ଼ିଆଣି ଆମ୍ବଟିକୁ ପନିକୀରେ ଦୁଇଫାଳ କରି କାଟି ଫାଳେ ମୋତେ ଦେଇ ଆର ଫାଳକ ଲଗାଇ ପଖାଳ ଖାଇବା ଆରମ୍ଭ କରିଦେଲେ । ପର ଗଛ ଆମ୍ବ ବିନାନୁମତିରେ ନେବା, ପରଘରେ ଅନଧିକାର ପ୍ରବେଶ କରି ହାଣ୍ଡିଶାଲୁ ଭାତ ବାଢ଼ିଆଣି ଖାଇବା ଆଦି ସୌଜନ୍ୟ ବିରୁଦ୍ଧ କାମ ସବୁ ଉଷାଦେବୀ ସେଦିନ ଅମ୍ଳାନ ବଦନରେ କରିଗଲେ । ''ବୁଭୁକ୍ଷିତଃ କିଂ ନ କରୋତି ପାପମ୍ ।''

ଆନନ୍ଦପୁରରେ ୧୯୫୭ରେ ଯକ୍ଷ୍ମାରୋଗର ପ୍ରାଦୁର୍ଭାବ ବହୁତ ଥିଲା । ଗୋଟିଏ ଗୋଟିଏ ପରିବାରରେ ତିନି ଚାରିଜଣ ଯକ୍ଷ୍ମାରୋଗୀ ଆମେ ଦେଖିଲୁ । ଆମେ ସେମାନଙ୍କ ସଙ୍ଗେ ଏକା ଘରେ ରହୁ । ସେମାନଙ୍କ ବାସନରେ ଖାଉ । ବାରଣର ପ୍ରଶ୍ନ ନ ଥାଏ ।

ଆମେ ବୁଲୁଥିବା ଅଞ୍ଚଳରେ ଆମେ ବେଶ୍ ଅନୁଭବ କରିଥିଲୁ ଯେ ବଡ଼ ବଡ଼ ଜମିମାଲିକମାନେ ବୁଝି ସାରିଥିଲେ ଏଣିକି ଏତେ ଜମି ସେମାନେ ଆଉ ରଖି ପାରିବେ ନାହିଁ । ଅନେକ ଗାଁର ଲୋକ ସଭାରେ କହିଦେଇଥାନ୍ତି – ଏହିମାନେ ବୁଲି ବୁଲି କହିଥିଲେ ଯେ ରାଇଜରେ ରଜା ରହିବ ନାହିଁ, ରଜା ରହିଲା ନାହିଁ । ପୁଣି ଏମାନେ ବୁଲି ବୁଲି କହିଲେଣି ଜମି ମାଲିକାନା ରହିବ ନାହିଁ । ତେଣୁ ତାହା ମଧ୍ୟ ଯିବ । ଭୂମିହୀନଙ୍କୁ ନିଜ ଜମିର ଷଷ୍ଠାଂଶ ଦେବାକୁ ଜମିମାଲିକମାନଙ୍କର ମାନସିକ ପ୍ରସ୍ତୁତି ହୋଇ ସାରିଥିଲା । ଏକ ନୂଆ ସମାଜ ବ୍ୟବସ୍ଥା ପାଇଁ ବାତାବରଣ ମଧ୍ୟ ଅନୁକୂଳ ଜଣା ପଡୁଥାଏ, ଅନ୍ତତଃ କେନ୍ଦୁଝର ଜିଲ୍ଲାରେ ଆନନ୍ଦପୁର ସବଡ଼ିଭିଜନ୍‌ରେ ଏପ୍ରକାର ବାତାବରଣ ଆମେ ଦେଖିଥିଲୁ ।

ଆନନ୍ଦପୁର ପଦଯାତ୍ରା ସାରି ରମାଦେବୀଙ୍କ ନିର୍ଦ୍ଦେଶରେ ଗୁଣନିଧି ବାବୁଙ୍କ ସାଙ୍ଗରେ ଗଡ଼କୁ ଆସି ଶ୍ରୀ ବଂଶୀଧର ପଟ୍ଟନାୟକଙ୍କୁ ଦେଖା କଲି । ତାଙ୍କ ସୂଚନା ଅନୁସାରେ କଣ୍ଟିଆପଡ଼ା ଗାଁକୁ ଗଲୁ । ସେ ଗାଁର ଧନେଶ୍ୱର ଭାଇ ପ୍ରଭୃତି ସ୍ୱେଚ୍ଛା

ପ୍ରଣୋଦିତ ହୋଇ କପାଚାଷ କରି ସୂତାକାଟି ଲୁଗା ବୁଣୁଥାନ୍ତି । ଗ୍ରାମଦାନର ବିଚାର ଶୁଣି ସେମାନେ ଗ୍ରାମଦାନ କରିବାକୁ ଇଚ୍ଛା ପ୍ରକାଶ କଲେ ମାତ୍ର ଗୁଣନିଧି ବାବୁଙ୍କର କଟକରେ ଜରୁରୀ କାମ ଥିବାରୁ ଆମେ ଦାନପତ୍ର ପୂରଣ କରାଇବା ପାଇଁ ସେ ରାତି ସେଠାରେ ରହି ପାରିଲୁ ନାହିଁ । ରମାଦେବୀ ପରେ ସେ ଗାଁକୁ ଗଲେ, ସେ ଗାଁ ଗ୍ରାମଦାନ ହେଲା । ରମାଦେବୀ ସେହି ଗାଁରେ ସହକର୍ମୀମାନଙ୍କ ସହିତ ରହି ଆଖପାଖରେ ଗ୍ରାମଦାନ ସଂଗ୍ରହ କାମ କଲେ ।

କଣ୍ଡିଆପଡ଼ା ସଭା ପରେ ସେହି ରାତିରେ ଆମେ ଉଦୟପୁର ଆସିଲୁ । ରାତି ବହୁତ ବେଶୀ ହୋଇଗଲା । ତଥାପି ଲୋକେ ଏକତ୍ର ହୋଇ ସଭାରେ ଗ୍ରାମଦାନ ବିଚାର ଶୁଣିଲେ । ଛଟଛଟିଆ ବେଳେ ଆମେ ରାଜନଗର ବାଟେ କେନ୍ଦୁଝର ଗଡ଼କୁ ଯିବାକୁ ବାହାରିଲୁ । ବାଟରେ ପାଷାଣଗର୍ଭା ବୈତରଣୀ ପଡ଼ିଲା । ପାଣି ଜଙ୍ଘେ, ମାତ୍ର ସ୍ରୋତ ପ୍ରଖର । ତାହା ସାଙ୍ଗକୁ ପଥର ଶିଉଳି ବଲବଲ । ପଦେ ପଦେ ଗୋଡ଼ ଖସିବା ଭୟ । ବିଛଣା ଧରି ସେ 'ଦୋଳା' ପାରି ହେବା ବେଳେ ଗୁଣନିଧି ବାବୁ ପାଣି ତୋଡ଼ ସମ୍ଭାଳି ନ ପାରି ସେହି ଜଙ୍ଘେ ପାଣିରେ ଭାସିଗଲେ । ଘଣ୍ଟା, ଚଷମା, କଲମ ଭାସିଗଲା । କୌଣସି ପ୍ରକାରେ ଉଠି ଦୋଳା ପାରିହୋଇ ଆମେ ଜାତୀୟ ରାଜପଥକୁ ଆସି କରଞ୍ଜିଆ ବସ୍‌କୁ ଅପେକ୍ଷା କଲୁ । ସହଯାତ୍ରୀ ମଧ୍ୟ ଯୁଟିଲେ । ବସ ଆସିଲା । ବସ୍ ଛାତ ଉପରେ ସୁଦ୍ଧା ଯାତ୍ରୀ ବୋଝେଇ ହୋଇଥାନ୍ତି । ସେତେବେଳେ ଶ୍ରୀମତୀ ସୁମିତ୍ରା ଚୌଧୁରୀ ଜାଆଁଳା ପିଲା ଦୁଇଟିଙ୍କ ସହ ରାମଚନ୍ଦ୍ରପୁରରେ ବାଣୀଶ୍ରୀର ଉତ୍ତର ମୌଳିକ ବିଭାଗରେ ଶିକ୍ଷକତା କରୁଥିଲେ । ବିବାହ ପୂର୍ବରୁ ସୁମିତ୍ରା ଚୌଧୁରୀ କୃଷ୍ଣନଗର କଲେଜରେ ବି.ଏସ.ସି. ପର୍ଯ୍ୟନ୍ତ ପଢ଼ି ସେବାଗ୍ରାମରେ ହିନ୍ଦୁସ୍ତାନୀ ତାଲିମୀ ସଂଘରେ ମୌଳିକ ଶିକ୍ଷାର ଶିକ୍ଷକ ତାଲିମ ନେଇଥିଲେ । ୧୯୪୬ରେ ଆଶାଦେବୀ ଆର୍ଯ୍ୟନାୟକଙ୍କ ମଧ୍ୟସ୍ଥତାରେ ସେବାଗ୍ରାମରେ ମନମୋହନ ଭାଇଙ୍କ ସହିତ ତାଙ୍କର ବିବାହ ଆଶ୍ରମ ପଦ୍ଧତିରେ ହେଲା । ସେ ବିବାହରେ ଭୋଜିଭାତ ହୋଇ ନ ଥିଲା । ବରକନ୍ୟା ପ୍ରଥମେ ଗାନ୍ଧିଜୀଙ୍କ ପାଖକୁ ଯାଇ ତାଙ୍କୁ ପ୍ରଣାମ କରି ତାଙ୍କ ଉପଦେଶ ଓ ଆଶୀର୍ବାଦ ଗ୍ରହଣ କଲେ । ସେଦିନ ଉପବାସ କରି ଦୁହେଁ ପଞ୍ଚଯଜ୍ଞ ଅର୍ଥାତ୍ ବୃକ୍ଷରୋପଣ, ଗୀତା ପାଠ, ଗୋଶାଳା ସଫାଇ, ସୂତ୍ରଯଜ୍ଞ ଓ ଗୁରୁଜନଙ୍କୁ କୂଅରୁ ପାଣି କାଢ଼ି ଦେବା କାମ କଲେ । ତାହାପରେ ବେଦମନ୍ତ୍ର ପାଠ କରାଯାଇ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ବିବାହ ବେଳେ ଆଶାଦେବୀ ସମସ୍ତଙ୍କୁ କଞ୍ଚା ଚିନାବାଦାମ ଦାନା ଓ ଗୁଡ଼ ହାତେ ହାତେ ବାଣ୍ଟି ଦେଲେ । ସୁମିତ୍ରା ଦେବୀ ବିବାହ

ପରେ ବରୀରେ ରହି ପୂର୍ବ ମୌଳିକ ବିଦ୍ୟାଳୟ ଚଳାଉଥିଲେ । ମଧ୍ୟେ ମଧ୍ୟେ ଭୂଦାନ, ଗ୍ରାମଦାନ କାମ ମଧ୍ୟ କରୁଥିଲେ । ୧୯୫୨ରୁ ଗୋପବାବୁଙ୍କୁ ସାରା ଓଡ଼ିଶାରେ ଭୂଦାନ, ଗ୍ରାମଦାନ କାମରେ ବୁଲିବାକୁ ପଡୁଥିଲା । ତଥାପି ସେ ବସ୍‌ବାଲା ଆମକୁ ନେବାକୁ ମନା କଲେ । ସଞ୍ଜ ବୁଡ଼ି ଆସୁଥାଏ । ଜଣେ ରସିକ ସହଯାତ୍ରୀ ନଜିର ଦେଖେଇଲେ ଯେ ଉନ୍ତଳେଇ ହୁକୁମ ବେଳେ ସେ ନିଜେ ବସ୍ ଡ୍ରାଇଭର ଥାଇ ଏହାର ଦୁଇଗୁଣ ଯାତ୍ରୀଙ୍କୁ ଉନ୍ତଳେଇ ନେ'ଆଣ କରିଛନ୍ତି । ତାଙ୍କ ଯୁକ୍ତି ବଳରେ ଆମେ ବସ୍‌ରେ ଠେସା ହେଲୁ ।

୧୯୫୦ ବନ୍ୟାରେ ମନମୋହନ ଚୌଧୁରୀ ରହୁଥିବା ଘରେ ପାଣି ପଶି ଘର ଭାଙ୍ଗି ଯାଇଥିଲା । ତାହାପରେ ଦୁଧେଇରେ ଡ଼ିହ ବାନ୍ଧି ସେମାନେ ଘର କଲେ । ୧୯୪୪ରେ ଗାନ୍ଧିଜୀ ପାଞ୍ଚଲକ୍ଷ ଯୁବକଙ୍କୁ ଗାଁରେ ଗାଁଲୋକଙ୍କ ପରି ସ୍ୱାଶ୍ରୟୀ ହୋଇ ରହି ଗାଁ ଲୋକଙ୍କୁ ଆର୍ଥିକ ସ୍ୱାଧୀନତା ପାଇଁ ଅହିଂସାତ୍ମକ ଉପାୟରେ ଲଢ଼ିବା ପାଇଁ ପ୍ରସ୍ତୁତ କରିବାକୁ କହିଥିଲେ । ତଦନୁସାରେ ସମଗ୍ର ଗ୍ରାମସେବା ଯୋଜନା ନାମରେ ଗୋଟିଏ ଯୋଜନା ପ୍ରସ୍ତୁତ ହୋଇଥିଲା । ଭାରତର ବହୁ ଯୁବକ ଏହି ଯୋଜନା ଅନୁସାରେ କାମ କରିବା ପାଇଁ ଗାଁକୁ ଚାଲି ଯାଇଥିଲେ । ଓଡ଼ିଶାରେ ବଂଶୀଧର ଉପାଧ୍ୟାୟ, ଶକ୍ତିଶେଖର ଦାସ, ଅଲେଖ ପାତ୍ର ପ୍ରଭୃତି ଏହି ଯୋଜନା ଅନୁସାରେ କାମ କରୁଥିଲେ । ମନମୋହନ ଭାଇ ମଧ୍ୟ ସ୍ୱାଶ୍ରୟୀ ହୋଇ ଏ କାମ କରିବା ପାଇଁ ମନ କରି ଦୁଧେଇରେ ରହିଥିଲେ । ମାତ୍ର ଭୂଦାନ ଆନ୍ଦୋଳନ ଆରମ୍ଭ ହେବାରୁ ସେ ଯୋଜନା ଫସରଫାଟି ଗଲା । ମନମୋହନ ଭାଇ ଭୂଦାନ ଗ୍ରାମଦାନ କାମରେ ଲାଗିଲେ । ମଧ୍ୟେ ମଧ୍ୟେ ଆସି ଦୁଧେଇରେ ରହୁଥିଲେ । ୧୯୫୭ରେ ରମାଦେବୀ କେନ୍ଦୁଝରରେ ଥାନ୍ତି, ଗୋପବାବୁଙ୍କୁ ଦୁଧେଇରେ ଜ୍ୱର ହେଲା । କୁଇନାଇନ୍ ଖାଇ ଜ୍ୱର ଛାଡ଼ିଲା ନାହିଁ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ଓ ଗୁଣନିଧି ବାବୁ ତାଙ୍କୁ ଚିକିତ୍ସା ପାଇଁ କଟକ ଯିବାକୁ ଲେଖିଲେ । ଅଳ୍ପକାଳ ପୂର୍ବରୁ ସାରଙ୍ଗଧର ବାବୁ ଓ ଗୋଦାବରୀଶ ବାବୁଙ୍କ ଦେହାନ୍ତ ହୋଇଥାଏ । ଗୋପବାବୁ ସ୍ୱାମୀଜୀଙ୍କୁ ଲେଖିଲେ - ସାରଙ୍ଗଧର ବାବୁ ଓ ଗୋଦାବରୀଶ ବାବୁଙ୍କ ସଙ୍ଗେ ହାସ୍‌ପାତାଳରେ ଦେଖା କରିବା ଇଚ୍ଛା ମୋର ନାହିଁ । ସେ ଜଳ ଚିକିତ୍ସା ଆରମ୍ଭ କଲେ । ମୁଁ ତାଙ୍କ ପାଖରେ ରହିଲି । ତାଙ୍କ ଭାଣିଜୀ ଡ଼ାକ୍ତର ତୁଙ୍ଗବିଦ୍ୟା କସ୍ତୁରବା ମାତୃମଙ୍ଗଳ କେନ୍ଦ୍ରରୁ ଆସି ତାଙ୍କର ତତ୍ତ୍ୱ ନେଉଥାଏ । କଟିସ୍ନାନ ଓ ପେଟରେ ମାଟିପଟି ଦେବା ପରେ ଜ୍ୱର ଛାଡ଼ିଲା । ରମାଦେବୀଙ୍କର ମହୀଶୂର ଯେଲୱାଲ୍ ସର୍ବଦଳୀୟ ସମ୍ମିଳନୀକୁ

ଯିବାର ଥାଏ । ଗୋପବାବୁଙ୍କ ଜ୍ୱର ଖବର ପାଇ ସେ ଯେଲ୍‌ୱାଲ୍ ଯିବା ସ୍ଥଗିତ ରଖି ତାଙ୍କ ପାଖକୁ ଆସୁଛନ୍ତି ବୋଲି ଲୋକମୁଖରୁ ଖବର ପାଇ ତାଙ୍କୁ ଟେଲିଗ୍ରାମ କଲେ ''Am under his care proceed Mysore''. ଜଳ ଚିକିତ୍ସାରେ ସୁସ୍ଥ ହୋଇ ସେ ବାରି ବଗିଚାରେ କାମ କଲେ । ସେହି ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ଡ଼କ୍ଟରେଟ୍ ଉପାଧି ଦେବା ପାଇଁ ସ୍ଥିର କଲେ । କୁଳପତି ପରିଜାଙ୍କ ଚିଠି ପାଇ ସେ ତାଙ୍କୁ ଏହି ମର୍ମରେ ଲେଖିଲେ -

ଭାଇ ପରିଜା,

ଯେତିକି ପାଠ ପଢ଼ିଛି, ତାହା ଜନତା ସହିତ ଏକରୂପ ହେବାରେ ଅନ୍ତରାୟ ହେଉଛି । ତେଣୁ ଡ଼କ୍ଟରେଟ୍ ଉପାଧି ଗ୍ରହଣ କରି ଜନସାଧାରଣଙ୍କ ଠାରୁ ଆହୁରି ଦୂରେଇ ଯିବାକୁ ମୋ ମନ ଡ଼ାକୁ ନାହିଁ । ୧୯୫୭ ଡ଼ିସେମ୍ବରରେ କଟକରେ ଶାନ୍ତିସେନା ଶିବିରରେ ଯୋଗ ଦେଇ ସେ ପୁଣି ବରୀ ଫେରିଗଲେ ।

୧୯୫୮ ମସିହା ମାର୍ଚ୍ଚ ମାସରେ ବ୍ରହ୍ମପୁରରେ ବାର୍ଷିକ କର୍ମୀ ସମ୍ମିଳନୀ ହେଲା । ରମାଦେବୀ ବ୍ରହ୍ମପୁର ଯାଇ ଖରାତରା ନ ମାନି ସମ୍ମିଳନୀ ପାଇଁ ଅର୍ଥ ସଂଗ୍ରହ କଲେ । ସେଠାରେ ତାଙ୍କୁ ଜ୍ୱର ହେଲା । କେନ୍ଦୁଝର ଜିଲ୍ଲାରେ ସେ ବର୍ଷ ମରୁଡ଼ି ହେତୁ ଫସଲହାନି ହୋଇଥିଲା । ରମାଦେବୀ ଓ କର୍ମୀମାନେ ଜନଆଧାରିତ ହୋଇ ଚଳୁଥିବାରୁ ପେଟ ପୂରାଇ ଖାଇବାକୁ ପାଉ ନ ଥିଲେ । ଆମ୍ବଡ଼ା, ପୋଡ଼ା ମୁଢ଼ି ବା ସଜନା ଶାଗ ଓ ଭାତ ଥିଲା ଖାଦ୍ୟ । ରମାଦେବୀ ପୁରୁଷ କର୍ମୀଙ୍କୁ ତାଙ୍କ ଭାଗ ଭାତରୁ କାଢ଼ି ଦେଉଥିଲେ । ଏହିପରି ବହୁଦିନ ସ୍ୱଳ୍ପାହାରରେ ରହିବା ଫଳରେ ଏ ଜ୍ୱର ହେଲା ବୋଲି ଚିକିତ୍ସକ ସନ୍ଦେହ କରୁଥାନ୍ତି ।

ଗୋପବାବୁ ପୁଣି ଗ୍ରାମଦାନ ଗସ୍ତ ଆରମ୍ଭ କରିବା ଉଦ୍ଦେଶ୍ୟରେ କଟକ ଆସିଲେ । ରମାଦେବୀଙ୍କ ଅସୁସ୍ଥତା ହେତୁ ଗସ୍ତ ତାରିଖ ବଦଳାଇଲେ । ୧୯୫୮ ମସିହା ଏପ୍ରିଲ ସତେଇଶ ତାରିଖ ଦିନ ଡ଼କ୍ଟର ମାୟାଧର ମାନସିଂହ ସସ୍ତ୍ରୀକ ତାଙ୍କୁ ଦେଖା କରିବା ପାଇଁ ଆସିଲେ । ବିଭିନ୍ନ ପ୍ରଦେଶର ଜାତୀୟ ଖାଦ୍ୟ ବିଷୟରେ ଆଲୋଚନା କରୁ କରୁ ଗୋପବାବୁ ତାଙ୍କୁ କହିଲେ, ''ଓଡ଼ିଶାର ଜାତୀୟ ଖାଦ୍ୟ ପଖାଳ'' ।

''ଉତ୍କଳେ ପଖାଳ ସଂଜୀବନୀ ସୁଧା
ହରେ ଏକାଧାରେ ଭୋକଶୋଷ ବାଧା ।''

ସେହି ଏପ୍ରିଲ ଅଣତ୍ରିଶ ତାରିଖ ଦିନ ସେ ଶାଗ ପଖାଳ ଖାଇ ହରି (ଆଚାର୍ଯ୍ୟ ହରିହର ଦାସ) ଭାଇନାଙ୍କ ସଙ୍ଗେ ଭୁବନେଶ୍ୱର ଗଲେ । ସେଠାରେ ରାଜପଥରେ ବିଲାତି ମଦର ବିଜ୍ଞାପନ ଦେଖି ଏବଂ ଜନୈକ ବିଧାୟକଙ୍କ ମୁହଁରୁ ବିଧାୟକମାନେ ମଦ ପିଇ ମାଡ଼ ମରାମରି ହେବା ବିବରଣ ଶୁଣି ଅତ୍ୟନ୍ତ ବ୍ୟଥିତ ହେଲେ ।

ରାତିରେ ହଠାତ୍ ସେ ଝିଅକୁ ବୁଢ଼ୀ ବୁଢ଼ୀ ଡ଼ାକିଲେ ଓ ଶ୍ୱାସ କଷ୍ଟ ହେଉଥିବା କଥା କହିଲେ । କଟିସ୍ନାନ କରିବା ପାଇଁ ପାଣି ଟବ୍‌ରେ ବସିଲେ । ହଠାତ୍ କହିଲେ - ''ମୁଁ କ'ଣ ଦେଖୁଛି ! କି ସୁନ୍ଦର ଆଲୋକ ! କି ଦିବ୍ୟ ଆଲୋକ ! ଆସିଛ ଯେବେ ପ୍ରଭୁ କୋଳକୁ ନିଅ । ଦୟାମୟ ! କରୁଣାମୟ ! ତମରି ଇଚ୍ଛା ପୂର୍ଣ୍ଣ ହେଉ ।'' ଜଣେ ସହକର୍ମୀ କୃଷ୍ଣପ୍ରିୟା ଦାସ ବିହ୍ୱଳ ହୋଇ କହିଲେ-''ଜୟଗୁରୁ''। ''ହଁ ଜୟଗୁରୁ । ଏଥର ମୋତେ ଶୁଆଇ ଦିଅ ମୁଁ ମରିଯାଏଁ'' କହି ଗୋପବାବୁ ମଥା ନୁଆଁଇ ଦେଲେ । ଅଗଣାରେ ଗୋପବାବୁ ଲଗାଇଥିବା ମଲ୍ଲୀ ଗଛରେ ଫୁଲ ଫୁଟି ବାସୁଥାଏ, ଦକ୍ଷିଣା ପବନ ବହୁଥାଏ, ବୈଶାଖ ଶୁକ୍ଳ ଦଶମୀର ଜହ୍ନ ଆକାଶରେ ମୃଦୁ ମୃଦୁ ହସୁଥାଏ । ଆଉ କେଉଁ ଦିବ୍ୟ ଆଲୋକ ଗୋପବାବୁଙ୍କୁ କେଉଁଠାକୁ ବାଟ କଢ଼େଇ ନେଇଗଲା କିଏ ଜାଣେ ?

ଡ. ଶରତ ମିଶ୍ର ଜଗି ବସି ରମାଦେବୀଙ୍କୁ ମୃତ୍ୟୁ ମୁଖରୁ ଫେରାଇ ଆଣିଲେ କିନ୍ତୁ ବିଛଣାରୁ ସେ ଉଠିଲେ ନାହିଁ । ଶ୍ରୀମତୀ ରମ୍ଭା ଦେବୀଙ୍କ ସ୍ୱାମୀ ଶ୍ରୀ ଗୋବର୍ଦ୍ଧନ ଦାସ ଦୁତିୟାଙ୍କ ମୃତ୍ୟୁ ସମ୍ବାଦ ଶୁଣି ମୋ ଦୁଃଖଠାରୁ ରମ୍ଭାଦେବୀଙ୍କ ଦୁଃଖ ବଳି ପଡ଼ିଲା କହି ସେ ଧୈର୍ଯ୍ୟ ଧରିଲେ ଓ ରମ୍ଭାଦେବୀଙ୍କୁ ବମ୍ବେରୁ ଓଡ଼ିଶାକୁ ଆଣିବା ପାଇଁ ନବବାବୁ ମାଳତୀ ଦେବୀଙ୍କ ସଙ୍ଗେ କଥାବାର୍ତ୍ତା କଲେ । ଏପ୍ରିଲ ଅଠେଇଶ ତାରିଖ ଗୋପବାବୁଙ୍କ ମୃତ୍ୟୁର ଠିକ୍ ପୂର୍ବଦିନ ଦୂତିୟାଜୀଙ୍କର ଦେହାନ୍ତ ହୋଇଥିଲା ।

ସୁମିତ୍ରା ଚୌଧୁରୀ ଓ ମୁଁ ବିଚାର କରି ଠିକ୍ କଲୁ ଯେ ରମାଦେବୀଙ୍କ ପାଖରେ ଆମ ଦୁହିଁଙ୍କ ମଧ୍ୟରୁ ଜଣେ ରହିବୁ । ତଦନୁସାରେ ମୁଁ କଟକରେ ରମାଦେବୀଙ୍କ ପାଖରେ ରହିଲି । ୧୯୩୪ ରୁ ୧୯୫୮ ପର୍ଯ୍ୟନ୍ତ ଦୁଇଟି ଯୁଗ ଯେଉଁ ଗ୍ରାମ୍ୟ ଚଳଣିରେ ବହୁ ସାଧନା କରି ଅଭ୍ୟସ୍ତ ହୋଇଥିଲି ଏବଂ ଗାଁର ପରିବେଶ ସହିତ ନିଜକୁ ସ୍ନେହ ଡ଼ୋରରେ ବାନ୍ଧି ଦେଇଥିଲି, ତାହାକୁ ଛିନ୍ନ କରି ପୁଣି କଟକକୁ ଫେରି ଆସିଲି ।

ସେ ବର୍ଷ ମେ' ମାସରେ ପଣ୍ଡରପୁରରେ ସର୍ବୋଦୟ ସମ୍ମିଳନୀ ହେଲା । ରମାଦେବୀଙ୍କ ସାଙ୍ଗରେ ମୁଁ ପଣ୍ଡରପୁର୍ ଗଲି । ବିନୋବାଜୀଙ୍କ ଆଗ୍ରହାତିଶଯ୍ୟ ହେତୁ

ରମାଦେବୀ ଏହି ସମ୍ମିଳନୀରେ ଅଧ୍ୟକ୍ଷା ହେଲେ । ବର୍ଷକ ମଧ୍ୟରେ ବିହାରର ଲକ୍ଷ୍ମୀବାବୁ, ଉତ୍ତର ପ୍ରଦେଶର ବାବା ରାଘବ ଦାସ ଓ ଓଡ଼ିଶାର ଗୋପବାବୁଙ୍କର ଦେହାନ୍ତ ହୋଇ ଯାଇଥିଲା । ତିନିଜଣ ଘନିଷ୍ଠ ସାଥୀଙ୍କୁ ହରାଇ ସ୍ଥିତପ୍ରଜ୍ଞ ବିନୋବାଜୀ ସମ୍ମିଳନୀରେ ସୁଦ୍ଧା ବାରମ୍ବାର ଆଖିରୁ ଲୁହ ପୋଛୁଥାନ୍ତି । ବାବୁ ରାଜେନ୍ଦ୍ର ପ୍ରସାଦ ମଧ୍ୟ ସେହି ସମ୍ମିଳନୀକୁ ଆସିଥିଲେ । ସେତେବେଳେ ସେ ଭାରତର ରାଷ୍ଟ୍ରପତି । ହଜାରିବାଗ ଜେଲ୍‌ରେ ସହବନ୍ଦୀ ଭାବରେ ଗୋପବାବୁଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଥିଲା । ତାଙ୍କ ଭଉଣୀ ଭଗବତୀ ଦେବୀ ରମାଦେବୀଙ୍କ ସଙ୍ଗେ ହଜାରିବାଗ ଜେଲରେ ଥିଲେ । ରାଜେନ୍ଦ୍ରବାବୁ ରମାଦେବୀ ଓ ତାଙ୍କର ସମୁଦାୟ ପରିବାରକୁ ଭେଟି ଶୋକ ପ୍ରକାଶ କଲେ । ଦୁଃଖ କିୟତ୍ ପରିମାଣରେ ବାଣ୍ଟି ହୋଇଗଲା ।

ତନ୍ତ୍ରମୁକ୍ତି ନିଧି ମୁକ୍ତି ପରେ ମୁଖ୍ୟତଃ ଈଶ୍ୱରଲାଲ ବ୍ୟାସ ଓ ରମାଦେବୀ ମୁଖ୍ୟତଃ ଅର୍ଥ ସଂଗ୍ରହ କରୁଥିଲେ । ରମାଦେବୀ ଆଉ ଚାନ୍ଦା ପାଇଁ ବୁଲି ପାରିଲେ ନାହିଁ । ଅନୁବାଦ କରିବା ସଙ୍ଗେ ସଙ୍ଗେ ଗୁଣନିଧି ବାବୁଙ୍କ ସହିତ ମିଶି ଅର୍ଥ ସଂଗ୍ରହ କାର୍ଯ୍ୟରେ ଲାଗିଲି । କଟକରେ ଶାନ୍ତିସେନା ବିଦ୍ୟାଳୟ, ଲୋକନୀତି ବିଦ୍ୟାଳୟ, ସର୍ବୋଦୟ ପାତ୍ର ସ୍ଥାପନା ଆଦି କାମ ସର୍ବଶ୍ରୀ ଫକୀର ମିଶ୍ର, ଇନ୍ଦିରା ଦେବୀ, ବିକ୍ରମ ବିଶ୍ୱାଳଙ୍କ ତତ୍ତ୍ୱାବଧାନରେ ଚାଲିଥାଏ । କୁଶଧ୍ୱଜ ମେହେର୍, ଅନାଦି ନାୟକ, ନିର୍ମଳଚନ୍ଦ୍ର ରାୟ ଆଦି ମଧ୍ୟ କାମରେ ଲାଗିଥାନ୍ତି । ଏହି ସମୟରେ ଶ୍ରୀମତୀ ନନ୍ଦିନୀ ଶତପଥୀ ସର୍ବୋଦୟ ଆନ୍ଦୋଳନରେ ଯୋଗ ଦେଲେ । ସର୍ବୋଦୟ ପାତ୍ର ସ୍ଥାପନା, 'ଗ୍ରାମସେବକ' ପତ୍ରିକା ପାଇଁ ବିନୋବା ସାହିତ୍ୟ ଅନୁବାଦ କରିବା, ସଭାସମିତିରେ ସର୍ବୋଦୟ ବିଚାର ବୁଝାଇବା ଆଦି କାମ ସେ କରୁଥାନ୍ତି ।

ବିନୋବାଜୀ କହୁଥାନ୍ତି ଯେ ଭାରତରେ ଏପରି ଅଞ୍ଚଳ ସୃଷ୍ଟି କରାଯାଉ ଯେଉଁଠି ଲୋକେ ସବୁ ସମସ୍ୟାର ସମାଧାନ ସ୍ନେହ ସଦ୍‌ଭାବନା ରକ୍ଷା କରି କରି ପାରିବେ । ଲୋକେ ପୁଲିଶ ଓ କୋର୍ଟ କଚିରୀର ଆଶ୍ରୟ ନ ନେଇ ଶାନ୍ତି ରକ୍ଷା କରିବେ । ଲୋକଙ୍କ ମନରେ ଯେଉଁ ବଦ୍ଧମୂଳ ଧାରଣା ହୋଇଛି ଯେ ପୁଲିଶ ଓ ଅଦାଲତ ବିନା ସମାଜ ତିଷ୍ଠିବ ନାହିଁ, ସେ ଧାରଣା ବଦଳାଇ ଲୋକେ ଯେ ନିଜେ ଶାନ୍ତି ରକ୍ଷା କରିବାକୁ ନ୍ୟାୟ ବିଚାର କରିବାକୁ ସକ୍ଷମ, ସେ ଆତ୍ମବିଶ୍ୱାସ ଲୋକଙ୍କ ମଧ୍ୟରେ ଜାଗ୍ରତ କରିବାକୁ ହେବ । ଗାଁ କଳିଗୋଳ ପାଇଁ ପୁଲିଶ ଓ ଅଦାଲତର ଆଶ୍ରୟ ନେବାରେ ଯେତେ ଗାଁ ଧନ ଅପବ୍ୟୟ ହେଉଛି, ତାହାକୁ ବନ୍ଦ କରିବାକୁ ହେବ । ଏହି ପ୍ରସ୍ତାବକୁ ପରଖିବା ପାଇଁ ୧୯୫୯ରେ

ରମାଦେବୀ ବରୀ ଅଞ୍ଚଳକୁ ଗଲେ ଏବଂ ଗାଁଲୋକଙ୍କୁ ନେଇ ସମନ୍ୱୟ ସମିତି ନାମରେ ଗୋଟିଏ ସମିତି ଗଢ଼ି ଗାଁ କଳି ଗାଁ ଲୋକଙ୍କ ଦ୍ୱାରା ଗାଁରେ ତୁଟାଇବା ପରଖ ଆରମ୍ଭ କଲେ । ବେଙ୍ଗରାପୁରର ବାଇଧର ଜେନା, ହଳଦୀବସନ୍ତର ଗୟାଧର ଜେନା, ରାମପୁରର ଗୋବିନ୍ଦ ସାମଲ ଆଦି ଗାଁ ଲୋକେ ଏ କାମରେ ହାର୍ଦ୍ଦିକ ସହଯୋଗ କଲେ । ବହୁତ ବଡ଼ ବଡ଼ ମୋକଦ୍ଦମା ଆପୋଷରେ ରଫା ହୋଇଗଲା । ଦିନେ ଦିନେ ଏହି ରଫା କାମରେ ରାତି ପାହିଯାଏ । ରଫାର ଗୋଟିଏ ସର୍ତ୍ତ ଥାଏ ଉଭୟ ପକ୍ଷ ଆନ୍ତରିକତା ସହକାରେ ରଫା କରିବା ପାଇଁ ରାଜି ହେବେ ଏବଂ ଅତୀତର ଭୂଲ ତ୍ରୁଟିକୁ ଆଦୌ ନ ଦର୍ଶାଇ ରଫା କରିବାରେ ଯାହା ସାହାଯ୍ୟ କରିବ ସେହିପରି କଥା ଆଲୋଚନା କରିବେ ।

ସମନ୍ୱୟ ସମିତି କାମ ସଙ୍ଗେ ଗାଁର କେତୋଟି ଝିଅକୁ ପାଖରେ ରଖି ତାଲିମ ଦେବା କାମ ମଧ୍ୟ ଚାଲିଥାଏ । ବରୀ ଅଞ୍ଚଳରେ ବର୍ଷାଦିନିଆ ଫସଲ ଧୋଇରେ ଯାଉଥିବାରୁ ଶୀତଦିନେ ଉଠାଜଳସେଚନ ଦ୍ୱାରା ଚାଷ ଓ ବର୍ଷାଦିନେ ସୂତାକଟା ବା ସେହିପରି ଧନ୍ଦାଦ୍ୱାରା ଜୀବିକା ଅର୍ଜନ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ମଧ୍ୟ ଗାଁଲୋକଙ୍କଦ୍ୱାରା ଚେଷ୍ଟା କରାଯାଇଥାଏ । ଶ୍ରମିକମାନେ ନିଜ ମଧ୍ୟରେ ସହଯୋଗ ସମିତି ଗଢ଼ି (କୋ-ଅପରେଟିଭ୍ ସୋସାଇଟି) ଛୋଟ ଛୋଟ ରାସ୍ତା ତିଆରି ଆଦି କାମ ଠିକା ନେବେ । ତଦ୍ୱାରା ସେମାନଙ୍କର ସଙ୍ଗଠନଶକ୍ତି ଓ କାର୍ଯ୍ୟଦକ୍ଷତା ବଢ଼ିବ – ସେଥିପାଇଁ ମଧ୍ୟ ବିଭିନ୍ନ ଗାଁକୁ ଯାଇ ସେମାନଙ୍କ ସଙ୍ଗେ ଆଲୋଚନା କରାଯାଇଥାଏ ।

ଶ୍ରୀମତୀ ରମାଦେବୀ ବମ୍ବେରୁ ଓଡ଼ିଶା ଆସି କିଛିକାଳ କସ୍ତୁରବା ସ୍ମାରକ ନିଧିର ସଞ୍ଚାଳନା କରିବା ପରେ ହରିଦାସପୁରରେ ନିଜର ରୁଚି ଅନୁସାରେ ଏକ ସ୍ୱତନ୍ତ୍ର ସଂସ୍ଥା ସ୍ଥାପନ କରିବାକୁ ପାଇଁ ଚାହିଁଲେ । ସର୍ବଶ୍ରୀ ଫକୀର ମିଶ୍ର ଓ ଶରତ୍‌ଚନ୍ଦ୍ର ମହାରଣାଙ୍କ ଉଦ୍ୟମରେ ହରିଦାସପୁର ନିକଟସ୍ଥ କଦଳାମଠର ଅଧିକାରୀ ଚକ୍ରଧର ଦାସ ଏହି ସଂସ୍ଥା ପାଇଁ ପାଞ୍ଚ ଏକର ଜମି ଦେଲେ । ମାତ୍ର ସେଠି ରହି କାମ ଆରମ୍ଭ କରାଯିବ କିପରି ? କଦଳା ମଠରେ ରହି ପୋଖରୀ ପାଣିରେ ଚଳି କାମ ଆରମ୍ଭ କରିବା ରମାଦେବୀଙ୍କ ପକ୍ଷରେ ସମ୍ଭବ ନୁହେଁ । ସେଥିପାଇଁ ରମାଦେବୀଙ୍କ ଅନୁମତିକ୍ରମେ ମୁଁ ୧୯୫୯ ମସିହା ଅକ୍ଟୋବର ମାସରେ ହରିଦାସପୁର ଯାଇ କଦଳା ମଠରେ ନିଶ୍ଚିନ୍ତ ଚିତ୍ତରେ ଆସ୍ଥାନା ଜମାଇଲି । କାରଣ ସୁମିତ୍ରା ଚୌଧୁରୀ ଓ ଶରତ୍‌ଚନ୍ଦ୍ର ମହାରଣା ରମାଦେବୀଙ୍କ ପାଖରେ ରହି ତାଙ୍କୁ ସାହାଯ୍ୟ କରୁଥାନ୍ତି । ମଠ ଆଖପାଖର ଝିଅଙ୍କୁ ପାଠ ପଢ଼ାଇବା, ଗାଁ ରୋଗୀଙ୍କୁ ଔଷଧ ଦେବା, ବିଭିନ୍ନ ଗାଁକୁ ଯାଇ ଗାଁ ଲୋକଙ୍କ ସାଙ୍ଗରେ ସମ୍ପର୍କ ସ୍ଥାପନ

କରିବା ଆଦି କାମ ଆରମ୍ଭ କଲି । ସେବା ସମିତି ଶ୍ରୀ ସାଧୁଚରଣ ମହାନ୍ତିଙ୍କ ସଭାପତିତ୍ୱରେ ଗଠିତ ହୋଇ ରେଜେଷ୍ଟ୍ରୀଭୁକ୍ତ ହେଲା । ମଧ୍ୟେ ମଧ୍ୟେ କଟକ ଆସି ସର୍ବଶ୍ରୀ ବୀଣାଦେଈ, ଜ୍ୟୋସ୍ନା ଦେଈ, ସୁନ୍ଦରମଣି ପରିଜାଙ୍କ ସହ ବୁଲି ସେବାସମିତି ପାଇଁ ଅର୍ଥ ସଂଗ୍ରହ କରାଗଲା । ଦୀପାବଳି ଦିନ ରମାଦେବୀ ସେବାସମିତି ଘରେ ଶୁଭ ଦେଲେ । ଚାରିମାସ ସେଠାରେ ରହି ଅନ୍ନପୂର୍ଣ୍ଣା ସାମନ୍ତରାୟ ଆସିବାରୁ ମୁଁ ପୁଣି ରମାଦେବୀଙ୍କ ପାଖକୁ ଫେରି ଆସିଲି ।

ପ୍ରଜାସୂୟ ଯଜ୍ଞର ଅଶ୍ୱ ପରି ସନ୍ଥ ବିନୋବା ପଞ୍ଜାବ ପାରି ହୋଇ କାଶ୍ମୀର ପରିକ୍ରମା ସାରି ପଞ୍ଜାବରେ ପ୍ରବେଶ କରି ଘୋଷଣା କଲେ ଯେ ଆନ୍ଦୋଳନର ବିକାଶ ପାଇଁ ଓ ନିଜର ଆଧ୍ୟାତ୍ମିକ ସାଧନା ନିମନ୍ତେ ସେ ଅଜ୍ଞାତ ସଂଚାର କରିବେ । ନିର୍ମଳା ଦେଶପାଣ୍ଡେ, କୁସୁମ ଦେଶପାଣ୍ଡେ ଆଦି ଯେଉଁମାନେ ତାଙ୍କ ଭାଷଣ ଟିପୁଥିଲେ ଏବଂ ଯେଉଁମାନେ ସେ ସବୁ ଭାଷଣ ଟାଇପ୍ କରୁଥିଲେ ସେମାନଙ୍କୁ ସମସ୍ତଙ୍କୁ ସେ ଅନ୍ୟତ୍ର ପଠାଇ ଦେଲେ । ସଭା ପାଇଁ ମାଇକ୍‌ରେ ପ୍ରଚାର ଓ ସଭାରେ ଲାଉଡ଼୍‌ସ୍ପିକର୍ ବ୍ୟବହାର ବନ୍ଦ ହୋଇଗଲା । କେବଳ ମହାଦେବୀ ତାଇ ଜୟଦେବ ଭାଇ ଓ ବାଲ୍‌ଭାଇ ତାଙ୍କ ସାଙ୍ଗରେ ରହିଲେ । ଫଳରେ ବିନୋବାଜୀଙ୍କ ଗତିବିଧି ବିଷୟରେ କେହି କିଛି ଜାଣି ପାରିଲେ ନାହିଁ । ଭାରତବ୍ୟାପୀ ଏତେବଡ଼ ଆନ୍ଦୋଳନର ହଜାର ହଜାର କର୍ମୀ କର୍ମକ୍ଷେତ୍ରର ନାନା ସମସ୍ୟା ବିଷୟରେ ବିନୋବାଜୀଙ୍କ ସହିତ ଆଲୋଚନା କରି ପାରିଲେ ନାହିଁ । ବିନୋବାଜୀଙ୍କର ପ୍ରିୟ ଶିଷ୍ୟ ବଲ୍ଲଭସ୍ୱାମୀ ସେତେବେଳେ ସର୍ବସେବା ସଂଘର ସଭାପତି ଥାନ୍ତି । ସେ ବିନୋବାଜୀଙ୍କୁ କହିଲେ ଯେ ପ୍ରତି ପ୍ରଦେଶର ଜଣେ ଜଣେ କର୍ମୀ ମାସେ ଲେଖା ତାଙ୍କ ପଦଯାତ୍ରାରେ ରହିବେ । ତଦ୍ୱାରା ସେ କର୍ମୀ ଓ ବ୍ୟକ୍ତିଗତ ଭାବରେ ଲାଭବାନ ହେବେ । ସର୍ବସେବା ସଂଘ ମଧ୍ୟ ସେମାନଙ୍କ ଜରିୟାରେ ଆପଣଙ୍କ ଚିନ୍ତା ଓ କାର୍ଯ୍ୟଧାରା ସହିତ ସମ୍ପର୍କ ରକ୍ଷା କରି ପାରିବ । ବିନୋବାଜୀ ଏହି ପ୍ରସ୍ତାବରେ ସମ୍ମତ ହେବାରୁ ବଲ୍ଲଭସ୍ୱାମୀ ମୋତେ ପଞ୍ଜାବ ଯାଇ ପଦଯାତ୍ରାରେ ଯୋଗଦେବାକୁ ନିର୍ଦ୍ଦେଶ ଦେଲେ । ରମାଦେବୀ ଓ ବେଲା ପରିଜାଙ୍କ ସହ ୧୯୬୦ ମସିହା ମାର୍ଚ୍ଚ ମାସରେ ମୁଁ ପଞ୍ଜାବ ଗଲି । ଲୁଧିଆନାରୁ କରନାଲ୍ ଜିଲ୍ଲାର ପଛି କଲ୍ୟାଣ ପର୍ଯ୍ୟନ୍ତ ଆମେ ପଦଯାତ୍ରାରେ ରହିଲୁ । ବିନୋବାଜୀଙ୍କର ଦିନଯାକର ଭାଷଣ ଟିପି ଉତାରି ସର୍ବସେବାସଂଘକୁ ପଠାଇବା ଥିଲା ମୋର ନିତ୍ୟକର୍ମ । ଟାଇପିଷ୍ଟ ବା ଟାଇପରାଇଟର୍ ନ ଥିଲା । ପଞ୍ଜାବର କନକନିଆ ଶୀତରେ ପାହାନ୍ତାରୁ ପଦଯାତ୍ରା ଆରମ୍ଭ ହୁଏ । କେଉଁଦିନ ପାଞ୍ଚ ମାଇଲ ତ କେଉଁଦିନ

ଦଶ ମାଇଲ । ଦିନେ ଦିନେ ଚଉଦ ମାଇଲ । ତାଙ୍କ ସାଙ୍ଗରେ ଚାଲିକରି ବାଟରେ ସେ ଯାହା ଗୁରୁତ୍ୱପୂର୍ଣ୍ଣ ଆଲୋଚନା କରନ୍ତି ସେ ସବୁକୁ କାନ ଡ଼େରିବାକୁ ହୁଏ । କିଛିବାଟ ଚାଲିବା ପରେ ସୂର୍ଯ୍ୟୋଦୟର ଅବ୍ୟବହିତ ପୂର୍ବରୁ କୌଣସି ଖୋଲାଜାଗାରେ ସମସ୍ତେ ବୃତ୍ତାକାରରେ ବସନ୍ତି । ବିନୋବାଜୀ ନିଜେ ଆବୃତ୍ତି କରନ୍ତି-

ସତ୍ୟେନ୍ ଲଭ୍ୟସ୍ ତପସା ସମ୍ୟକ୍ ଜ୍ଞାନେନ

ବ୍ରହ୍ମଚର୍ଯ୍ୟେଣ ନିତ୍ୟମ୍

ଅନ୍ତଃଶରୀରେ ଜ୍ୟୋତିର୍ମୟୋହି ଶୁଭ୍ର ଯଂ

ପଶ୍ୟନ୍ତି ଯତୟଃ କ୍ଷୀଣ ଦୋଷାଃ ॥

ସତ୍ୟମେବ ଜୟତେ ନାନୃତଂ ସତ୍ୟେନ ପନ୍ଥା

ବିତତୋ ଦେବଯାନଃ

ଯଂ ପଶ୍ୟତି ଋଷୟେ ହ୍ୟାପ୍ତକାମାଃ ଯତ୍ରତତ୍

ସତ୍ୟସ୍ୟ ପରମଂ ନିଧାନମ୍ ॥

ତାହାପରେ କିଛି ସମୟ ସମସ୍ତେ ଧ୍ୟାନ କରନ୍ତି ।

ଚାରି ପାଞ୍ଚ ହଜାର ବର୍ଷ ପୂର୍ବର ବୈଦିକ ଯୁଗକୁ ଫେରିଗଲା ପରି ଲାଗେ । ଧ୍ୟାନ ପରେ ବିନୋବାଜୀ କିଛି କହନ୍ତି । ରହଣୀରେ ପହଞ୍ଚି ସେଠାରେ ଅଭ୍ୟର୍ଥନା ପାଇଁ ଏକତ୍ର ହୋଇଥିବା ଜନସମାବେଶରେ ଭାଷଣ ଦିଅନ୍ତି । ତା'ପରେ ସନ୍ଧ୍ୟା ପ୍ରବଚନ । ଏହା ମଧ୍ୟରେ ତାଙ୍କୁ ଭେଟିବାକୁ ଆସୁଥିବା ବିଭିନ୍ନ ସଂସ୍ଥାର ଲୋକଙ୍କ ସଙ୍ଗେ ବାଟ ଚାଲିଲା ବେଳେ, ଖରାବେଳେ କଥାବାର୍ତ୍ତା କରୁଥିଲେ । ସନ୍ଧ୍ୟା ପ୍ରାର୍ଥନା-ସଭାରେ ସେ ଯେ କେବଳ ଭୂଦାନ ଗ୍ରାମଦାନ କଥା କହୁଥିଲେ ତାହା ନୁହେଁ, ଦେଶର ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା କରୁଥିଲେ । କରନାଲ୍‌ରେ ସେ କହିଲେ, ''... ମୁଁ ଦେଖୁଛି ସମସ୍ତେ ଚାହୁଁଛନ୍ତି ଭ୍ରଷ୍ଟାଚାର ନ ହେଉ । ଏଇଟା ଭଲ ଲକ୍ଷଣ । ଭ୍ରଷ୍ଟାଚାର କିପରି କମିବ ସେ ବିଷୟରେ ଭାବିଲା ବେଳକୁ ମୁଁ ଦେଖୁଛି ଆମ ଭିତରେ ଲୋଭ ବଢ଼ିଛି । ଆମର ଆର୍ଥିକ ବ୍ୟବସ୍ଥା ଏଥିପାଇଁ ଦାୟୀ । ପାଞ୍ଚଶହ ବର୍ଷ ପୂର୍ବେ ଏ ଦେଶରେ ଯେତେ କାମ କ୍ରୋଧ ଥିଲା ବର୍ତ୍ତମାନ ତାହା ତାହାଠାରୁ ଅଧିକ ହୋଇଛି ବୋଲି କହିହେବ ନାହିଁ । ପ୍ରାଚୀନ ଯୁଗର ଋଷିମାନେ ତ ବହୁତ ରାଗୁଥିଲେ । ଆଜିର ପିଲା ସେ ଋଷିମାନଙ୍କ କ୍ରୋଧ କଥା ଶୁଣି କହୁଛନ୍ତି – ସେମାନେ ଏତେ ରାଗୁଥିଲେ କାହିଁକି ? ଆମ ପୁରାଣରେ

ଋଷିମାନଙ୍କ କାମ-ବାସନା କଥା ମଧ୍ୟ ଅଛି । ଅନ୍ୟର ଝିଅକୁ ହରଣ କରି ନେଇଯିବା ତ ଗୋଟାଏ ସାଧାରଣ କଥା ଥିଲା । ରାମାୟଣ ଆଦି କାବ୍ୟ ଏହି କଥାକୁ ମୂଳକରି ରଚିତ ହୋଇଛି । ଏ ଯୁଗରେ ଏ ଧରଣର କାବ୍ୟ ଚଳି ପାରିବ ନାହିଁ । କାରଣ ଲୋକେ ଏହାକୁ ଭଲ ଦୃଷ୍ଟିରେ ଦେଖିବେ ନାହିଁ । ପୂର୍ବେ କାହାରି ଝିଅକୁ ବଳ ପ୍ରୟୋଗ କରି ନେଇଯାଇ ତାକୁ ବିଭା ହେଉ ଥିଲେ । ଏବେ ସେ କଥା ଆଉ ଚଳୁ ନାହିଁ । ପ୍ରାଚୀନ ଯୁଗରେ କାମବାସନା ଯେତେ ଥିଲା ଏ ଯୁଗରେ ତାହା କମିଛି, କିନ୍ତୁ ଲୋଭ ଯେ ବହୁତ ବଢ଼ିଛି ଏଥିରେ କୌଣସି ସନ୍ଦେହ ନାହିଁ । ଯୁଗ ଥିଲା ଯେତେବେଳେ ପୁରୁଷ ଚାରିଜଣ ସ୍ତ୍ରୀଙ୍କୁ ବିଭା ହେଉଥିଲେ । ପୁଣି ଗର୍ବ ସହକାରେ କହୁଥିଲେ ଅମୁକର ହଜାରେ ସ୍ତ୍ରୀ ଅଛନ୍ତି । ଏଇଟା ଗୌରବ ମନେ କରାଯାଉଥିଲା । ଆଜି ଯଦି କାହାର ଦୁଇଟି ସ୍ତ୍ରୀ ହୋଇ ଯାଉଛି ସେ ଲାଜରେ ସେ କଥା ଲୁଚାଉଛି । ଏହିରୂପେ କ୍ରୋଧ ଓ କାମବାସନା କମିଥିବାର ଦେଖାଯାଉଛି । ପ୍ରାଚୀନ ଯୁଗରେ କ୍ରୋଧରେ ଯୁଦ୍ଧ କରୁଥିଲେ । ଏ ଯୁଗର ଯୁଦ୍ଧ କ୍ରୋଧମୂଳକ ହେଉନାହିଁ, ବିଚାରମୂଳକ ହେଉଛି । ଆଜିକାଲିକା ଯୁଦ୍ଧରେ କ୍ରୋଧ ଚଳିବ ନାହିଁ । କାରଣ ମୁଣ୍ଡ କଟାକଟି ଯୁଦ୍ଧ ଆଉ ନାହିଁ । ବୋମା ପକାପକି ଯୁଦ୍ଧ ଚାଲିଛି । ବୋମା ପକା ଯୁଦ୍ଧରେ ହିସାବ କରି ବୋମା ପକାଇବାକୁ ହୁଏ ଯେ ଯଦି କରନାଲରୁ ଜଲନ୍ଧର ଉପରେ ବୋମା ବୃଷ୍ଟି କରିବାକୁ ହେବ ତେବେ ଏଇ ଉଚ୍ଚତା ଓ ଏହି କୋଣରୁ ବୋମା ପକାଇବାକୁ ହେବ । ତେଣୁ ଏ ଯୁଦ୍ଧରେ ମୁଣ୍ଡ ଥଣ୍ଡା ରଖି ଲଢ଼ିବାକୁ ହୁଏ । ବିଜ୍ଞାନ ଯୁଗରେ କ୍ରୋଧ ଚଳିବ ନାହିଁ । କିନ୍ତୁ ମଣିଷର ମନଟା ଲୋଭରେ ଛନ୍ଦି ହୋଇ ଯାଇଛି । ଏହାର କାରଣ ହେଉଛି ପଇସା । ପଇସାଟା ଲଫଙ୍ଗା । ଲଫଙ୍ଗାର ଅର୍ଥ ହେଲା ଯାହାର କଥାର ଠିକ୍ ନାହିଁ । ପଇସା ସେଇଆ କରୁଛି । ଆଜି ଗହମ ଟଙ୍କାରେ ଅଢ଼େଇ ସେର, କାଲି ଦୁଇ ସେର, ପରଦିନକୁ ଦେଢ଼ ସେର । ଏହି ଲଫଙ୍ଗା କାରବାର ଯୋଗୁ ସବୁ ଦୂଷିତ ହୋଇ ଯାଉଛି । ଲୋଭ ବଢୁଛି ସମାଜରେ ନାନା ଦୋଷ ଦୁର୍ବଳତା ଦେଖା ଦେଉଛି, ଭ୍ରଷ୍ଟାଚାର ବଢୁଛି । ତେଣୁ ସମସ୍ତେ କହୁଛନ୍ତି ସମାଜର ପତନ ହୋଇଛି । ମାତ୍ର ପ୍ରକୃତରେ ସମାଜର ପତନ ହୋଇନାହିଁ, ସମାଜ ରଚନା ତଳକୁ ଖସି ଯାଇଛି । ସମାଜ ସେ ପର୍ଯ୍ୟନ୍ତ ତଳକୁ ତଳକୁ ଖସିବ ଯେଉଁ ପର୍ଯ୍ୟନ୍ତ ସରକାର ହାତରେ ସବୁ କ୍ଷମତା ଠୁଳ ହୋଇ ରହିବ । ପରମେଶ୍ୱର ସୁଦ୍ଧା ନିଜ ହାତରେ ସବୁ କ୍ଷମତା ରଖି ନାହାନ୍ତି । ସେ ଯାହାର ଯେତିକି ବୁଦ୍ଧି ଲୋଡ଼ା ତାକୁ ସେତିକି ବୁଦ୍ଧି ବାଣ୍ଟି ଦେଇଛନ୍ତି । ସେ ଯଦି ବୁଦ୍ଧିର ଗୋଟାଏ ବଡ଼ ଭଣ୍ଡାର ଦିଲ୍ଲୀରେ ରଖି ଦେଇଥାନ୍ତେ ଏବଂ ଯାହାର

ଯେତେବେଳେ ଯେତେ ବୁଦ୍ଧି ଦରକାର ତାକୁ ସେତିକି ବୁଦ୍ଧି ଦିଲ୍ଲୀରୁ ତାଙ୍କୁ ପଠାଇବାକୁ ପଡୁଥାନ୍ତା ତେବେ ସେ ଝାଳନାଳ ହୋଇ ଯାଉଥାନ୍ତେ । ସେ ତ କ୍ଷୀର ସମୁଦ୍ରରେ ଯୋଗନିଦ୍ରାରେ ଶୋଇଛନ୍ତି । ସେ ଏପରି ଭାବରେ ବୁଦ୍ଧି ବାଣ୍ଟି ଦେଇ ଅଲଗା ରହିଛନ୍ତି ଯେ ଈଶ୍ୱର ଅଛନ୍ତି କି ନାହିଁ ସେ ବିଷୟରେ ଲୋକେ ଯୁକ୍ତି ତର୍କ କରୁଛନ୍ତି । କିନ୍ତୁ ଆମର ତ ଦିଲ୍ଲୀ ଓ ଚଣ୍ଡୀଗଡ଼ରେ କ୍ଷମତା ଭଣ୍ଡାର ରହିଛି । ଆପଣମାନେ ସେଠାରେ କାମ ତୁଲାଇବାକୁ ଲୋକ ବାଛିକରି ପଠଉଛନ୍ତି । ସେ ଠିକ୍ କାମ ନ କଲେ ଆପଣ ଭାବୁଛନ୍ତି ଆଉ ଜଣକୁ ପଠେଇଦେବା । ଏମିତି ବାରମ୍ବାର କେତେ ନୂଆ ଲୋକ ବାଛୁଥିବେ ? ଆପଣମାନେ ଚିନ୍ତା କରିବା ଦରକାର ଯେ ଏ ବ୍ୟବସ୍ଥା ହିଁ ଭୁଲ୍ । ଦିଲ୍ଲୀ, ଲଣ୍ଡନ, ୱାଶିଂଟନ୍‌ରେ ସବୁ ବ୍ୟବସ୍ଥା ହେବ ଏବଂ ଜନସାଧାରଣ ସୁଖୀ ହେବେ, ତାହା କଦାପି ହୋଇ ପାରିବ ନାହିଁ । ପୁଣି ଏ ଦଳଗତ ରାଜନୀତି ଥିବାଯାଏ ଭ୍ରଷ୍ଟାଚାର ମଧ୍ୟ ଦୂର ହେବ ନାହିଁ । ଇଂରେଜଙ୍କ ରାଜତ୍ୱ ବେଳେ ପଣ୍ଡିତ ନେହେରୁ କହିଥିଲେ ଯେ ସ୍ୱରାଜ୍ୟ ହେଲେ ଆମେ କଳାବଜାରୀକୁ ଫାଶୀଖୁଣ୍ଟରେ ଝୁଲେଇବୁ । ବାରବର୍ଷ ହେଲା ସ୍ୱରାଜ୍ୟ ହେଲାଣି, କେତେଜଣକୁ ଫାଶୀଖୁଣ୍ଟରେ ଝୁଲା ହେଲାଣି ? ତେଣୁ ମନେ ରଖନ୍ତୁ ଯଦି କେନ୍ଦ୍ରରେ କ୍ଷମତା ଠୁଳ ହୋଇ ରହିବ ଏବଂ ସେହିମାନେ ଆମ ପାଇଁ ସବୁ କଥା ଚିନ୍ତା କରିବେ ଓ ଯୋଜନା କରି କାମ କରିବେ ତେବେ ଏହିପରି ଚାଲିଥିବ । ସରକାର ହାତକୁ ସବୁ କ୍ଷମତା ବଢ଼ାଇ ଦେବା ଫଳରେ ଆମେ ପୁରୁଷାର୍ଥହୀନ ହୋଇ ଯାଉଛୁ । ସରକାରଙ୍କ ଠାରୁ କୌଣସି ସାହାଯ୍ୟ ନ ନେବାକୁ ମୁଁ କହୁନାହିଁ ମାତ୍ର ଲୋକେ ଯଦି ସ୍ୱତଃପ୍ରବୃତ୍ତ ହୋଇ ନିଷ୍କାମ ସେବା ନ କରିବେ ତେବେ ସମାଜର ଉନ୍ନତି ହେବ ନାହିଁ ।...''

ଆର୍ଯ୍ୟମାନଙ୍କର ଆଦି ନିବାସ, ମହାକାବ୍ୟ ମହାଭାରତରେ ନାୟକମାନଙ୍କର ଲୀଳାସ୍ଥଳ, ଗୁରୁ ନାନକ, ଗୁରୁ ତେଗ୍‌ବାହାଦୂର, ଗୁରୁ ଗୋବିନ୍ଦ ସିଂହ ଆଦିଙ୍କ ବୀରତ୍ୱ ଓ ସାହସିକତା ଠାରୁ ଆରମ୍ଭ କରି ଜାଲିଆନ୍‌ୱାଲାବାଗ୍ ହେତୁ ପଞ୍ଜାବ ପ୍ରତି ମନରେ ଗଭୀର ଶ୍ରଦ୍ଧା ପିଲାଦିନୁ ରହିଥିଲା । ସେଠାକୁ ଯାଇ ସେଠା ଭୂମିରେ ପାଦ ରଖିଲା ବେଳକୁ ମହାଭାରତର ଘଟଣା ଆଖି ଆଗରେ ନାଚି ଉଠିଲା । କୁରୁକ୍ଷେତ୍ର ରହଣୀ ଦିନ ତ ବାସ୍ତବ ଜଗତରୁ ମୋ ମନ ହଜାର ହଜାର ବର୍ଷ ପଛକୁ ଚାଲିଗଲା । ମନଶ୍ଚକ୍ଷୁରେ ଦେଖିଲି - କୃଷ୍ଣ ଭଗବାନ ପାଞ୍ଚଖଣ୍ଡ ପଡ଼ା ମାଗିବାକୁ କୁରୁସଭାକୁ ଯାଉଛନ୍ତି - ବାଗପଥ, ସୋନପଥ, ପାନିପଥ୍ । ହରିୟାନାର ଉଚ୍ଚାରଣ ବାସ୍ତବରେ 'ହରିୟାନ୍'-ହରି ଅର୍ଥାତ୍

ବାସୁଦେବ କୃଷ୍ଣଙ୍କ ଯାନ- ରଥ ଯେଉଁ ଭୂମି ପରିକ୍ରମା କରିଥିଲା ତାହାର ନାମ ହରିଯାନ - ଏ କଥା ସର୍ଦ୍ଦାର କାକାଜୀଙ୍କ ମୁହଁରୁ ଶୁଣି ମୋ ରୋମ ଟାଙ୍କୁରି ଉଠିଲା । ପଞ୍ଜାବ- ଅବିଭକ୍ତ ପଞ୍ଜାବର ଏହି ଧୂଳି ସହିତ ବାସୁଦେବ କୃଷ୍ଣଙ୍କ ପଦଧୂଳି ମିଶି କରି ରହିଛି - ଏ କଥା ମନକୁ ଆସିବାମାତ୍ରେ ସେ ଧୂଳିକୁ ଦେହରେ ବୋଳି ହୋଇଯିବା ପାଇଁ ମନ ଡ଼ାକିଲା ।

ପଞ୍ଜାବବାସୀଙ୍କ ଉଦ୍ୟମଶୀଳତା ପଞ୍ଜାବୀ ମହିଳାମାନଙ୍କର ସାହସିକତା ମୋତେ ମୁଗ୍‌ଧ କଲା । ପଞ୍ଜାବୀ ହେଉଛନ୍ତି ଯଥାର୍ଥରେ କ୍ଷତ୍ରିୟ ବର୍ଣ୍ଣ ଯାହାକୁ କହନ୍ତି martial race ବହୁ ସଂଖ୍ୟାରେ ସେମାନେ ଯୁଦ୍ଧ ବିଭାଗରେ ଯୋଗ ଦିଅନ୍ତି । ତେଣୁ ପଞ୍ଜାବର ସଂସ୍କୃତି ଭିନ୍ନ ପ୍ରକାର । ଭାରତ ଉପରେ ଯେତେ ଯେତେ ଆକ୍ରମଣ ହୋଇଛି ସେ ସବୁର ମୁକାବିଲା କରିଛନ୍ତି ଏହି ପଞ୍ଜାବୀମାନେ । ତେଣୁ ପଞ୍ଜାବର କ୍ଷତ୍ରିୟ ରମଣୀ ଏକ ଭିନ୍ନ ଉପାଦାନରେ ଗଢ଼ା । ଗାଏଁ ଗାଏଁ ମହିଳା ସତ୍‌ସଂଗ । ଶହଶହ ମହିଳା ସନ୍ଧ୍ୟାରେ ଏକତ୍ର ହୋଇ ଭଜନ ବୋଲନ୍ତି । ଆଜିଯାଏ କାନରେ ବାଜୁଛି ।

''ଡ଼ଗମଗ ଡ଼ୋଲତ ମେରୀ ନୈୟା
ପାର କରୋ ତୋ ଜାନୁ ଖବୈୟା ।''

ଆତିଥେୟତାର ତ ତୁଳନା ନାହିଁ । ସ୍କୁଲ କଲେଜର ଅଧ୍ୟାପିକାମାନେ ହିଁ ଆମର ଚର୍ଚ୍ଚା କରୁଥିଲେ । ଶିକ୍ଷିତ ଗୁରୁଜନ ଶ୍ରେଣୀର ସର୍ଦ୍ଦାରମାନେ ଆମ ହାତରୁ ଅଇଣ୍ଠା ବାସନ ଛଡ଼ାଇ ନେଇ ନିଜେ ମାଜୁଥିଲେ । ଏତେ ସ୍ନେହ ! ଏତେ ଆଦର ! ଆର୍ଯ୍ୟତ୍ୱର ଲକ୍ଷଣ ଯେ କୁହାଯାଇଛି 'ସଃ ଚ ନିତ୍ୟ ପ୍ରସନ୍ନାତ୍ମା ମୃଦୁ ପୂର୍ବଂ ଚ ଭାଷତେ । ଇତ୍ୟାଦି ସେହି ଲକ୍ଷଣ ଗୁଡ଼ିକର ପ୍ରତ୍ୟକ୍ଷ ଦର୍ଶନ ମୋତେ ମିଳିଲା ।

ଯେଉଁ ହରିୟାନ ଗାଈ ବଳଦଙ୍କୁ ବରି ଜଳବାୟୁରେ ଅଭ୍ୟସ୍ତ କରାଇବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲୁ, ଘରେ ଘରେ, ବିଲରେ ରହଟ୍ ଚଳଉଥିବାବେଳେ ସେମାନଙ୍କୁ ଦେଖି ପେଟ ପୁରି ଯାଉଥାଏ । ଦଣ୍ଡେ ନ ଆଉଁଷି ଥୟ ଧରି ରହି ହୁଏ ନାହିଁ । କୃଷ୍ଣ ବାସୁଦେବଙ୍କ ଗୋରକ୍ଷା ଗୋସଂବର୍ଦ୍ଧନର ପ୍ରୟୋଗ କ୍ଷେତ୍ର ଦେଖି ଜୀବନ ଧନ୍ୟ ମଣିଲି ।

କିନ୍ତୁ ଗୋଟିଏ ବିପଜ୍ଜନକ ଜିନିଷ ହେଉଛି ପଞ୍ଜାବୀ ଗିଲାସରେ କ୍ଷୀର । ମାତୃପ୍ରତିମ ଲକ୍ଷ୍ମୀଦେବୀ ତିରଖା ଯେତେବେଳେ ରାତିରେ ଶୋଇବା ଆଗରୁ ବାର ଇଞ୍ଚିଆ ପିତଳ ବାଲଟିରେ କ୍ଷୀର ଓ ଦଶବାରଟା ଏକ ଲିଟର କ୍ଷୀର ସମ୍ଭେଇଲା ପରି ପଞ୍ଜାବୀ ଗିଲାସ ଧରି ସାହାଯ୍ୟକାରୀଙ୍କ ସହ ଆମ ରହଣୀକୁ ବିଜେ କରନ୍ତି ମୋର ରୀତିମତ ହୃତ୍‌କମ୍ପ

ଆରମ୍ଭ ହୋଇଯାଏ । ପଖାଳଖିଆ ପାକସ୍ଥଳୀ ବିଚାରିକୁ ରକ୍ଷା କରିବା ପାଇଁ ମୁଁ ସିଡ଼ିତଳ ଘରେ, ଲନ୍‌ରେ ବା ପାଇଖାନା ପଛପଟେ ଆତ୍ମଗୋପନ କରେ ।

ପଞ୍ଜାବରେ କାମ ସାରି ଆମେ ଦିଲ୍ଲୀ ଆସି ମୃଦୁଲା ସାରାଭାଇଙ୍କ ଘରେ ରହିଲୁ । ତାଙ୍କ ମାଆ ସରଳା ସାରାଭାଇ ରମାଦେବୀଙ୍କର ଘନିଷ୍ଠ ବନ୍ଧୁ । ମୃଦୁଲାଙ୍କ ସଙ୍ଗଠନ ଶକ୍ତି ସାହସିକତା ସତ୍ୟାଗ୍ରହ ଆନ୍ଦୋଳନ ବେଳେ ସମଗ୍ର ଭାରତର ଦୃଷ୍ଟି ଆକର୍ଷଣ କରିଥିଲା । ସେ ସମୟରେ କାଶ୍ମୀର ସଂକ୍ରାନ୍ତୀୟ ବ୍ୟାପାର ହେତୁ ଦିଲ୍ଲୀର ଉପର ମହଲରେ ତାଙ୍କୁ ଏକପ୍ରକାର ବାସନ୍ଦ କରା ଯାଇଥାଏ । ରମାଦେବୀ ଚାଣକ୍ୟପୁରୀରେ ତାଙ୍କରି ଘରେ ରହିଲେ । ମୋର ପିତୃବନ୍ଧୁ ରାଷ୍ଟ୍ରପତି ବାବୁ ରାଜେନ୍ଦ୍ର ପ୍ରସାଦ ରମାଦେବୀ ଦିଲ୍ଲୀ ଆସିଥିବା ଖବର ପାଇ ତାଙ୍କୁ ସାକ୍ଷାତ କଲେ ଏବଂ ରାଷ୍ଟ୍ରପତି ଭବନରେ ରହିବା ପାଇଁ ଆମନ୍ତ୍ରଣ କଲେ । ରମାଦେବୀ ସସମ୍ମାନରେ ସେହି ଆମନ୍ତ୍ରଣ ପ୍ରତ୍ୟାଖ୍ୟାନ କରି କହିଲେ ଯେ ମୃଦୁଲା ଆଜିକାଲି ନିଜକୁ ନିଃସଙ୍ଗ ଓ ଏକାକୀ ବୋଧ କରୁଛି । ତେଣୁ ମୁଁ ତାରି ପାଖରେ ରହିବାକୁ ସ୍ଥିର କରିଛି । ସେଥର ଦିଲ୍ଲୀରେ ଆମେ ଯାହାକୁ ଭେଟିଲୁ ସେମାନେ ସମସ୍ତେ ଆମେ ମୃଦୁଲାବେନ୍‌ଙ୍କ ଘରେ ରହିଛୁ ଶୁଣି ଆଶ୍ଚର୍ଯ୍ୟାନ୍ୱିତ ତ ହେଲେ ଟିକିଏ ଭୟଭୀତ ହେବାର ମଧ୍ୟ ଆମେ ଅନୁଭବ କଲୁ ।

ପରବର୍ତ୍ତୀକାଳରେ ଇନ୍ଦିରା ଗାନ୍ଧୀ, ସେତେବେଳେ ସମସ୍ତଙ୍କର ଆଦରର ଇନ୍ଦୁ-ଇନ୍ଦୁଜୀଙ୍କୁ ଫ୍ଲୁ ହୋଇଥିବାରୁ ରମାଦେବୀ ତାଙ୍କୁ ଦେଖିବାକୁ ପ୍ରଧାନମନ୍ତ୍ରୀ ଭବନକୁ ଗଲେ । ତାଙ୍କର ତରୁଣୀସୁଲଭ ସଲଜ୍ଜ ନମ୍ର ବ୍ୟବହାର ତାଙ୍କର ଦୈହିକ ସୌନ୍ଦର୍ଯ୍ୟକୁ ଅଧିକ କମନୀୟ କରି ଦେଇଥିଲା । ପ୍ରଧାନମନ୍ତ୍ରୀଙ୍କ କନ୍ୟାଭାବରେ ନୁହେଁ ସର୍ବତ୍ୟାଗୀ ନେହେରୁ ପରିବାରର ଉତ୍ତରାଧିକାରୀ ଭାବରେ ତାଙ୍କ ପ୍ରତି ମୋର ପୂର୍ବଶ୍ରଦ୍ଧା ତାଙ୍କର ଏହି ମୃଦୁ ଓ ସୌଜନ୍ୟପୂର୍ଣ୍ଣ ବ୍ୟବହାର ଫଳରେ ଶତଗୁଣିତ ହେଲା ।

ଗ୍ରାମଦାନ ଭୂଦାନ ଆନ୍ଦୋଳନର ଅବିଚ୍ଛେଦ୍ୟ ଅଙ୍ଗ ହେଲା ଶାନ୍ତି-ସେନା । ଶାନ୍ତି-ସେନାର ବିଚାର ୧୯୩୮ ମସିହାରେ 'ଗାନ୍ଧୀ ସେବା ସଂଘ' ସମ୍ମିଳନୀରେ ବୁଝାଇବାକୁ ଯାଇ ଗାନ୍ଧିଜୀ କହିଥିଲେ - ଦେଶରେ ଏପରି ଗୋଟିଏ ନିର୍ଭୀକ ସ୍ୱେଚ୍ଛାସେବକ ଦଳ ରହିବା ଉଚିତ, ଯେଉଁ ଦଳ କୌଣସି ସ୍ଥାନରେ ଦଙ୍ଗାହାଙ୍ଗାମା ବା ଅଶାନ୍ତି ହେଲେ ନିଜକୁ ଆହୂତି ଦେବାକୁ ପଛେଇବ ନାହିଁ । ଗାନ୍ଧିଜୀ କହିଥିଲେ-ଶାନ୍ତି-ସୈନିକ ଉପଦ୍ରବ ବେଳେ ଓ ଶାନ୍ତି ବେଳେ କାର୍ଯ୍ୟରତ ରହେ । ଦୁଇଟି ଲଢୁଥିବା ଦଳ ମଧ୍ୟରେ ଭଲ ସମ୍ପର୍କ ସ୍ଥାପନ କରିବାର ସୁଯୋଗ ଯେ ଉଣ୍ଡି ବୁଲୁଥାଏ । ଝଗଡ଼ା ଆରମ୍ଭ ହେବା ଆଗରୁ

ସେ ପରିସ୍ଥିତିକୁ ସମ୍ଭାଳିବାକୁ ଯତ୍ନ କରିବ, କିନ୍ତୁ ଯେକୌଣସି ବିପଦର ମୁକାବିଲା କରିବାକୁ ସେ ପ୍ରସ୍ତୁତ ରହିବ । ଜନତାର କ୍ରୋଧକୁ ଶାନ୍ତ କରିବା ପାଇଁ ସେ ନିଜ ଜୀବନକୁ ମଧ୍ୟ ସଂକଟାପନ୍ନ କରିବ ।

ସତ୍ୟ ଓ ଅହିଂସାର ମୂଳଦୂଆ ଉପରେ ପ୍ରତିଷ୍ଠିତ ସମାଜରେ ଅହିଂସାତ୍ମକ ଉପାୟରେ ଶାନ୍ତିରକ୍ଷା କରିବା କାମ ଶାନ୍ତି ସେନା ସଂଗଠନ ଦ୍ୱାରା ସାଧିତ ହେବ । ସେଥିପାଇଁ ଗ୍ରାମଦାନ ଆନ୍ଦୋଳନରେ ଶାନ୍ତି-ସେନା ସଂଗଠନ ଉପରେ ଖୁବ୍ ଗୁରୁତ୍ୱ ଦିଆ ଯାଉଥିଲା ।

ମହିଳା ଶାନ୍ତି-ସେନାମାନଙ୍କ ପାଇଁ ନିଖିଳ ଭାରତୀୟ ସ୍ତରରେ ଗୋଟିଏ ମହିଳା ଶାନ୍ତି-ସେନା ବିଦ୍ୟାଳୟ ଚଳାଇବା ପାଇଁ ବିନୋବାଜୀ କସ୍ତୁରବା ସ୍ମାରକ ଟ୍ରଷ୍ଟକୁ ସୂଚେଇଲେ ଏବଂ ଏହି ବିଦ୍ୟାଳୟ ଚଳାଇବା ପାଇଁ ମୋତେ ଓ ଅନ୍ନପୂର୍ଣ୍ଣା ଦାସଙ୍କୁ କାଶୀ ଯିବା ପାଇଁ ଲେଖିଲେ । ୧୯୬୦ ଡ଼ିସେମ୍ବରରେ ଆମେ ଦୁହେଁ ମୋ ସାନପୁଅ କର୍ମଦେବ୍‌କୁ ସାଙ୍ଗରେ ନେଇ କାଶୀ ଗଲୁ । ନିର୍ମଳା ଦେଶପାଣ୍ଡେ ସେହି ବିଦ୍ୟାଳୟର ମୁଖ୍ୟ ପରିଚାଳିକା ହେବା କଥା ଥିଲା । ସେ ଅସୁସ୍ଥ ହେବାରୁ ଶ୍ରୀମତୀ ସରଳୁ ତାଇ ଧୋତ୍ରେଙ୍କୁ ଆମକୁ ସାହାଯ୍ୟ କରିବାକୁ ଅନୁରୋଧ କଲୁ । ଦାଦା ଧର୍ମାଧିକାରୀ ଓ ଶଙ୍କର ରାଓ ଦେଓଙ୍କ ମାର୍ଗଦର୍ଶନ ଆମକୁ ମିଳିଲା । ବିଦ୍ୟାଳୟର ପାଠ୍ୟକ୍ରମ ଉଚ୍ଚକୋଟୀର ଥିଲା । କାଶୀ ବିଦ୍ୟାପୀଠର ଅଧ୍ୟାପକଗଣ ଅଚ୍ୟୁତ ପଟ୍ଟବର୍ଦ୍ଧନ ପାଠ୍ୟକ୍ରମ ଅନୁସାରେ ବିଦ୍ୟାର୍ଥିନୀଙ୍କୁ ଶିକ୍ଷା ଦେଲେ । ବୌଦ୍ଧିକ ଜ୍ଞାନ ସଙ୍ଗେ ସଙ୍ଗେ ପ୍ରତ୍ୟକ୍ଷ ସେବା କାର୍ଯ୍ୟର ପଦାର୍ଥ ପାଠ ଦେବା ଓ ସମାଜରେ ଅଶାନ୍ତିର ମୂଳ କାରଣ ନିରୂପଣ କରିବା ପାଇଁ ଅଶାନ୍ତି ଦମନର ଉପାୟ ବାହାର କରି ଜନସମ୍ପର୍କ ସ୍ଥାପନ କରିବା ମଧ୍ୟ ସେହି ପାଠ୍ୟକ୍ରମର ଅଙ୍ଗ ଥିଲା । ସପ୍ତାହରେ ଗୋଟିଏ ଦିନ ଆମେ ଦଳ ଦଳ ହୋଇ ଛାତ୍ରୀମାନଙ୍କ ସହ ସହର ଭିତରକୁ ଯାଇ ଜନସମ୍ପର୍କ ସ୍ଥାପନ କରୁଥିଲୁ ଏବଂ ଅପରିଚିତ ସ୍ଥାନରେ ଅପରିଚିତ ଗୃହସ୍ଥଙ୍କ ସଙ୍ଗେ ସଂପର୍କ ସ୍ଥାପନ କରି କିପରି ନିଜର ମଧ୍ୟାହ୍ନ ଭୋଜନ ସଂଗ୍ରହ କରିବାକୁ ହୁଏ ସେ ବିଷୟରେ ମଧ୍ୟ ପଦାର୍ଥପାଠ ନେଇଥିଲୁ । ଓଡ଼ିଶାରେ ଶାନ୍ତି-ସେନା ଶିବିରରେ ଏସବୁ କରାଯାଉଥିବାରୁ ଆମେ ଦୁହେଁ ଏପ୍ରକାର କାମ କରିବାରେ ଅଭ୍ୟସ୍ତ ଥିଲେ ହେଁ ଦେବଧାମ କାଶୀନଗରରେ ଅହରହ ଘଟୁଥିବା ଅନେକ ବିଚିତ୍ର ଘଟଣା ଆମକୁ ବହୁ ମୂଲ୍ୟବାନ ତଥ୍ୟ ଯୋଗାଇଲା । ଗୋଟିଏ ଦିନର ଅନୁଭୂତି ଉଦାହରଣ ସ୍ୱରୂପ ଉଲ୍ଲେଖ କରିବି –

ଗୋଟିଏ ସପ୍ତାହରେ ମୁଁ ଦଳେ ଛାତ୍ରୀଙ୍କୁ ସଙ୍ଗରେ ନେଇ ଡ଼ି.ଏ.ଭି. କଲେଜର ଆଖପାଖ ଅଞ୍ଚଳରେ ସମ୍ପର୍କ ସ୍ଥାପନ କରିବାକୁ ଗଲି । ସେହି କଲେଜର ଜଣେ ଅଧ୍ୟାପକ ବିଶ୍ୱନାଥଜୀଙ୍କର ଆମେ ସେଦିନ ଅତିଥି ହେଲୁ । କଥା ପ୍ରସଙ୍ଗରେ ସେ ମୋତେ କହିଲେ ଯେ ଆପଣଙ୍କର ଏପ୍ରକାର ଯୋଜନା ଏ ଦେଶରେ ନୂଆ । ଏ କାମ ଦ୍ୱାରା ସମାଜବିଜ୍ଞାନୀକୁ ବହୁତ ନୂଆ ତଥ୍ୟ ମିଳିବ । ଏହା କହି ସେ ମୋତେ କାଶୀ ସହରର ଗତ ଚାଳିଶ ବର୍ଷର ଜନଗଣନା ବିବରଣୀ ପଢ଼ିବା ପାଇଁ କହିଲେ । ଆମେ ସେନ୍‌ସସ୍ ରିପୋର୍ଟ ପଢ଼ି, ଆଲୋଚନା କରି ପର ସପ୍ତାହରେ ବିଶ୍ୱନାଥଜୀଙ୍କ ପାଖକୁ ଗଲୁ । ସେନ୍‌ସସ୍ ରିପୋର୍ଟରେ ଦେଖିଲୁ ଯେ ଚାଳିଶ ବର୍ଷ ମଧ୍ୟରେ ବାରାଣସୀରେ ମୁସଲମାନମାନଙ୍କ ସଂଖ୍ୟା ବହୁତ ବଢ଼ି ଯାଇଛି । ଏହାର କାରଣ ଅନୁସନ୍ଧାନ କରି ଜାଣିଲୁ ଯେ କାଶୀର ଆଖପାଖ ଅଞ୍ଚଳର ଗାଁମାନଙ୍କରେ କୌଣସି ବୋହୂ ଝିଅଙ୍କର ଚାରିତ୍ରିକ ସ୍ଖଳନ ହେଲେ ପରିବାରର ମୁଖିଆ ନିଜର ମର୍ଯ୍ୟାଦା ରକ୍ଷା ପାଇଁ ବିଶ୍ୱନାଥ ଦର୍ଶନ ବାହାନାରେ ସେ ଝିଅକୁ କାଶୀକୁ ଆଣି ମୁସଲମାନ ବସ୍ତି ପାଖରେ ଛାଡ଼ିଦେଇ ଯାଆନ୍ତି । ସେହି ନିରାଶ୍ରୟ ହିନ୍ଦୁ ଝିଅଟିକୁ ମୁସଲମାନମାନେ ହିଁ ଆଶ୍ରୟ ଦିଅନ୍ତି । ଆଜନ୍ମରୁ ହିନ୍ଦୁ ସଂସ୍କାରରେ ଲାଳିତପାଳିତ ସେହି ଝିଅ କ୍ଷଣକର ସ୍ଖଳନ ଯୋଗୁଁ ବାଧ୍ୟ ହୋଇ ନିଜର ରୀତିନୀତି ଓ ରୁଚିକୁ ବିସର୍ଜନ ଦେଇ ଯାହାକୁ ଅଭକ୍ଷ୍ୟ ମଣିଥିଲା, ତାହାକୁ ହିଁ ଖାଏ ଅଥଚ ଏହି ସ୍ଖଳନରେ ଭାଗୀଦାର ପୁରୁଷକୁ କୌଣସି ଦଣ୍ଡ ସହିବାକୁ ବା ଘର ଓ କୁଳ ତ୍ୟାଗ କରିବାକୁ ପଡ଼େ ନାହିଁ । ଏପରି ସ୍ଥଳେ ସେହି ଝିଅ ଓ ତା'ର ଗର୍ଭଜାତ ଶିଶୁ ଯେ ହିନ୍ଦୁଧର୍ମ ବିଦ୍ୱେଷୀ ହେବେ, ଏଥିରେ ସନ୍ଦେହ ନାହିଁ ।

ଶାନ୍ତିସେନା ବିଦ୍ୟାଳୟରେ ସମଗ୍ର ଭାରତରୁ ଛାତ୍ରୀ ଆସିଥିବାରୁ ବିଦ୍ୟାଳୟରେ ନିଖିଳ ଭାରତୀୟ ସ୍ତରରେ ସାଂସ୍କୃତିକ କାର୍ଯ୍ୟକ୍ରମ ସଂଗଠନ କରିବା ବେଶ୍ ହାସ୍ୟୋଦ୍ଦୀପକ ହେଉଥାଏ । ଉଦାହରଣ ସ୍ୱରୂପ ହିମାଳୟାଗତା କନ୍ୟାମାନେ ବସନ୍ତୋତ୍ସବ ପାଳନ କରିବା ପାଇଁ ଆୟୋଜନ କଲାରୁ ଦକ୍ଷିଣଭାରତାଗତା କନ୍ୟାମାନେ ବସନ୍ତୋତ୍ସବର ଅର୍ଥ ହିଁ ବୁଝି ପାରିଲେ ନାହିଁ । ଏଥିପାଇଁ ରୀତିମତ ଭୂଗୋଳ ପଢ଼ାଇ ବୁଝାଇବାକୁ ପଡ଼ିଲା ଯେ କର୍ଣ୍ଣାଟକ ଆଦି ଅଞ୍ଚଳ ହେଉଛି ଚିରବସନ୍ତର ରାଜ୍ୟ । ହିମାଳୟର ତୁଷାରପାତ ପରେ ବସନ୍ତ ଋତୁରେ କୋଇଲିର କୁହୁତାନ, ଗଛମାନଙ୍କରେ କିଶଳୟର ଶୋଭା ସେଠା ଅଧିବାସୀଙ୍କୁ କେତେ ଆନନ୍ଦ ଓ ଆଶ୍ୱାସନା ଦିଏ ତାହା ଆମେ କଳିବା ସହଜ ନୁହେଁ ।

ସେହିପରି ଉତ୍ତରଭାରତରେ ଶିବପାର୍ବତୀଙ୍କ ପୁଅ କାର୍ତ୍ତିକେୟ ଚିରକୁମାର ହୋଇଥିବା ସ୍ଥଳେ ଦକ୍ଷିଣଭାରତରେ ସେ ପଲନୀ ମହାରାଜ ବୋଲାଇ ସସ୍ତ୍ରୀକ ବସବାସ କରୁଥିବା କଥା ଶୁଣି ମହାଦ୍ୱନ୍ଦ୍ୱ ଉପୁଜିଲା । ଆମେ ତାଙ୍କୁ ବୁଝାଇଲୁ ଯେ କୁମାର କାର୍ତ୍ତିକ ଅବିବାହିତ ଅବସ୍ଥାରେ ଦକ୍ଷିଣଭାରତ ଭ୍ରମଣକୁ ଯାଇ ସେଠାରେ ବିବାହ କରିଛନ୍ତି । ସେ ଯୁଗରେ ଡ଼ାକଘର, ଟେଲିଫୋନ୍ ଆଦିର ବ୍ୟବସ୍ଥା ନ ଥିବାରୁ ଏବଂ ନାରଦ ମୁନି ଏକ ମାତ୍ର ସାମ୍ବାଦିକ ହୋଇଥିବାରୁ ସେ ଏ ସମ୍ବାଦଟି ଅସାବଧାନତାବଶତଃ ଉତ୍ତରଭାରତରେ ପ୍ରଚାର କରି ନାହାନ୍ତି । ବର୍ତ୍ତମାନ ନିଖିଳ ଭାରତ ଶାନ୍ତିସେନା ବିଦ୍ୟାଳୟର ଛାତ୍ରୀମାନଙ୍କ ଦ୍ୱାରା ଏ ସମ୍ବାଦ ପ୍ରଚାରିତ ହେବ । ଏହିପରି ଖାଇବା ବେଳେ ମଧ୍ୟ ଦ୍ୱନ୍ଦ୍ୱ । ସମସ୍ତଙ୍କ ମନୋବୃତ୍ତି - ''ମୋ ଭାଲୁକୁଣୀ ଚହଟ ଚିକ୍‌କଣ ତୋ ଭାଲୁକୁଣୀ କେମ୍ପା । '' ରାଷ୍ଟ୍ରୀୟ ସଂହତି ରକ୍ଷା ପାଇଁ କେତେ ଉଦାର ଓ ନମ୍ର ହେବାକୁ ହେବ ଏବଂ ବୁଦ୍ଧିକୁ କେତେ ଓଡ଼ ଚଷିବାକୁ ହେବ ତାହା ଏହି ବିଦ୍ୟାଳୟରେ ଜାଣିଲୁ । ଧନ୍ୟ ସେ ଅନ୍ନପୂର୍ଣ୍ଣା ଦାସ ଯେ ଦଶବର୍ଷ କାଳ ନିରବଚ୍ଛିନ୍ନ ଭାବରେ ଏ କାମ ସୁଚାରୁ ରୂପେ ସମ୍ପନ୍ନ କଲେ ! ବିଦ୍ୟାଳୟରେ ଭାରତର ପ୍ରତ୍ୟେକ ଭାଷାର ଭଜନ ଶିଖା ହେଉଥିଲା । ଛାତ୍ରୀମାନେ ଚେନ୍ନୋଲ ଯିବା ବାଟରେ ପୁରୀ ଆସିଲେ । ଅନ୍ୟ ଭାଷାଭାଷୀଙ୍କ ମୁହଁରୁ ଓଡ଼ିଆ ଭଜନ ଶୁଣି ଅଭ୍ୟର୍ଥନାକାରୀ ମୁଗ୍ଧ ହୋଇଗଲେ ।

କାଶୀରେ ହୋଲି ଉତ୍ସବ ମହା ସମାରୋହରେ ପାଳିତ ହୁଏ । ସ୍ତ୍ରୀ ପୁରୁଷ ପରସ୍ପରକୁ ଅଶ୍ଳୀଳ ଭାଷାରେ ବ୍ୟାଜଗାଳି ଦେବା ଏବଂ କାଦୁଅ ଏପରିକି ନର୍ଦ୍ଦମାର ମଇଳା ଫିଙ୍ଗାଫିଙ୍ଗି ହେବାଟା ଏହି ଉତ୍ସବର ଗୋଟିଏ ଅଙ୍ଗ । ସେଦିନ ଶିବପାର୍ବତୀଙ୍କ ବିବାହ 'ବାରାତ୍' ବାହାରେ । ବାରାତ୍ ବା ଶୋଭାଯାତ୍ରାକାରୀମାନେ ବଡ଼ ଅଶୋଭନୀୟ ଆଚରଣ କରନ୍ତି ।

ଆମେମାନେ ଠିକ କଲୁ ଯେ ଏ ବର୍ଷ ଅନ୍ତତଃ କାଶୀର ଆମେ ରହୁଥିବା ଅଞ୍ଚଳ ରାଜଘାଟରେ ହୋଲି ଉତ୍ସବ ସୁରୁଚିସମ୍ପନ୍ନ ଭାବରେ ପାଳନ କରିବା ପାଇଁ ଉଦ୍ୟମ ହେବ । ସେଥିପାଇଁ ଅନ୍ନପୂର୍ଣ୍ଣା ଦାସ, ଆମ ଶାନ୍ତି ସେନା ବିଦ୍ୟାଳୟର ଛାତ୍ରୀ ଓ ସ୍ଥାନୀୟ ସର୍ବୋଦୟ କର୍ମୀ ମାସେ ପୂର୍ବରୁ ରାଜଘାଟର ପ୍ରତି ସାହିରେ ଆଲୋଚନା ସଭା କରି ଏ ବିଷୟରେ ଲୋକଙ୍କୁ ବୁଝାଇଲେ । ଶେଷରେ ସ୍ଥିର ହେଲା ହୋଲି ଦିନ ଗାଳି ଦିଆଦେଇ ବନ୍ଦ ହେବ । ଶିବ-ପାର୍ବତୀଙ୍କ ବାରାତ୍ ରାଜଘାଟରେ ଆମେ ରହୁଥିବା ସ୍ଥାନ ସାଧନା-କେନ୍ଦ୍ରକୁ ଆସିବେ ଓ ସମୂହ ପ୍ରାର୍ଥନା ହେବ । ଆମ କର୍ମୀମାନେ ହୋଲି ଦିନ ରାଜଘାଟରେ

ପଇଁତରା ମାରି ପରିସ୍ଥିତି ଅନୁଧ୍ୟାନ କରୁଥାନ୍ତି । ଶେଷରେ ବାରାତ୍ ଆସି ସାଧନା କେନ୍ଦ୍ର ଦ୍ୱାରଦେଶରେ ପହଞ୍ଚିଲା, ଜଣେ ପୁଅ ପିଲାକୁ ପାର୍ବତୀ ସଜାଇଥାନ୍ତି । ସମସ୍ତେ ବନାରସୀ ଭାଙ୍ଗ ଖାଇ ଭୋଳ । ନାଲି ନାଲି ଆଖି ଓ ଅଣାୟତ୍ତ ଅଙ୍ଗଭଙ୍ଗୀ । ଏସବୁ ଦେଖି ଆମ ବିଦ୍ୟାଳୟର ଛାତ୍ରୀମାନେ ବିଶେଷରେ ଦକ୍ଷିଣ ଭାରତର ଝିଅମାନେ ଝାଉଁଳି ପଡ଼ିଲେ । ମାତ୍ର ସେ ବେଳରେ ତ ଆଉ ପଛଘୁଞ୍ଚା ଦେବା କଥା ନାହିଁ । ଛାତ୍ରୀମାନଙ୍କୁ ଅନ୍ନପୂର୍ଣ୍ଣା ଦାସଙ୍କ ଜିମା ଛାଡ଼ି ମୁଁ ଶୋଭାଯାତ୍ରାକାରୀଙ୍କ ଆଡ଼କୁ ଆଗେଇ ଗଲି । ସେମାନଙ୍କ ମଧ୍ୟରୁ ଜଣେ ଅପ୍ରକୃତିସ୍ଥ ବ୍ୟକ୍ତି ହାତରେ ଅବିର ଧରି ମୋ ପାଖକୁ ଲାଗିଆସି କହିଲେ 'ତମଠେଇଁ ରଙ୍ଗ ବୋଳିବି ।' ସଙ୍ଗେ ସଙ୍ଗେ ତାଙ୍କ ପିଠି ଆଉଁଷି ପକେଇ ମୁଁ କହିଲି – 'ନିଶ୍ଚୟ ନିଶ୍ଚୟ ।' ସେ ମୋ ମୁହଁରେ ରଙ୍ଗ ବୋଳିଦେଲେ । ମୁଁ ତାଙ୍କରି ହାତରୁ ଅବିର ନେଇ ତାଙ୍କ ମୁଣ୍ଡ ଉପରେ ଛିଞ୍ଚି ଦେଇ 'ଯୁଗ ଯୁଗ ଜୀଓ' କହି ଆଶୀର୍ବାଦ କଲି । ସଙ୍ଗେ ସଙ୍ଗେ ବାତାବରଣ ବଦଳି ଗଲା । ଅନ୍ୟ ସମସ୍ତେ ମୋ ଗୋଡ଼ରେ ଅବିର ଦେଇ ମୋତେ ପ୍ରଣାମ କଲେ, ମୁଁ ସେମାନଙ୍କ ମୁଣ୍ଡ ଉପରେ ଅବିର ଛିଞ୍ଚି ଆଶୀର୍ବାଦ କଲି । ଦୁଇ ଯୁଗରୁ ଅଧିକ କାଳ ପୂର୍ବର କଥା । ଲୋଳଚର୍ମ ଓ ତିଳତଣ୍ଡୁଳିତ କେଶଭାର ଯେଉଁ ସମ୍ମାନର ଅଧିକାରୀ, ତାହା ମୁଁ ହାସଲ କରି ନେଲି ଅକ୍ଳେଶରେ । ତାହାପରେ ସାଧନା-କେନ୍ଦ୍ରର ବରଣା ନଦୀ କୂଳ ପ୍ରାର୍ଥନା ସ୍ଥଳରେ ସମସ୍ତେ ଏକତ୍ର ବସିଲୁ । ଆମ ଛାତ୍ରୀ ପ୍ରମିଳା 'ଜୟ ଜଗଦୀଶ ହରେ' ବୋଲିଲେ । ସମସ୍ତେ ତାକୁ ଦୋହରେଇଲେ । ତା'ପରେ ସରବତ୍ ପିଆ ଆରମ୍ଭ ହେଲା । ଏହି ରୂପେ ସମାରୋହଟି 'ମଧୁରେଣ' ସମାପ୍ତ ହେଲା । ରାଜଘାଟ ଲୋକେ ଆମ କାର୍ଯ୍ୟକ୍ରମକୁ ପସନ୍ଦ କଲେ । ସ୍ତ୍ରୀଲୋକେ ଯେ ହୋଲିର ବୀଭତ୍ସ ରସ ଶାନ୍ତିରସରେ ପରିଣତ କରିବାର ଶକ୍ତି ଧାରଣ କରନ୍ତି, ଗାନ୍ଧିଜୀଙ୍କର ସେହି ବିଶ୍ୱାସ ଓ ଉକ୍ତି ପ୍ରତି ପ୍ରତ୍ୟେକ କର୍ମୀଙ୍କ ବିଶ୍ୱାସ ଦୃଢ଼ ହେଲା ।

କାଶୀ ନଗରୀ-ବରୁଣା ଅସୀ ନଦୀର ମଧ୍ୟବର୍ତ୍ତୀ ଦେବନଗରୀ ବାରାଣସୀ ଭାରତର ହଜାର ହଜାର ବର୍ଷ ପୂର୍ବର ପ୍ରାଚୀନ ସ୍ମୃତିକୁ ଧରି ରଖିଛି । ମାଲବ୍ୟ ସେତୁ ଉପରେ କିମ୍ବା ବରୁଣା ଗଙ୍ଗା ସଂଗମ ସ୍ଥାନରେ ଛିଡ଼ା ହୋଇ ଉତ୍ତରବାହିନୀ ଗଙ୍ଗା ଓ କାଶୀ ନଗରୀକୁ ଚାହିଁଲେ ମନ ପୌରାଣିକ ଯୁଗରେ ପରିକ୍ରମା ଆରମ୍ଭ କରିଦିଏ । ଭାରତରେ ସମ୍ଭବତଃ ସମଗ୍ର ପୃଥିବୀରେ ବାରାଣସୀ ଏକମାତ୍ର ଦେବଧାନୀ- ଯାହାର ଭାଷା ଦେବଭାଷା, ଯାହାର ଲିପି ଦେବନାଗରୀ । ପଞ୍ଚବିଂଶ ଶତାବ୍ଦୀର କବୀର ଚୌରା, ତୁଳସୀଘାଟ କାଲିକା ପରି ଲାଗେ-ଯେତେବେଳେ ହରିଶ୍ଚନ୍ଦ୍ର ଘାଟ, ମଣିକର୍ଣ୍ଣିକା ଘାଟ,

ଦଶାଶ୍ୱମେଧ ଘାଟରେ ଐତିହ୍ୟ ମନେ ପଡ଼ିଯାଏ । ହରିଶ୍ଚନ୍ଦ୍ର ଘାଟକୁ ଯିବାମାତ୍ରେ ତ ମୃତପୁତ୍ରକୁ କୋଳରେ ଧରି ଶୈବ୍ୟା ଓ ହରିଶ୍ଚନ୍ଦ୍ରଙ୍କର ପୁନର୍ମିଳନ ଦୃଶ୍ୟ ମନଶ୍ଚକ୍ଷୁରେ ଜୀବନ୍ତ ହୋଇ ଉଠେ । ବାରାଣସୀରେ ଘୁଷୁରୀ ପଲକୁ ଦେଖିବା ମାତ୍ରେ ମନକୁ ଆସେ ଏମାନେ ସେହି ଚଣ୍ଡାଳ ହରିଶ୍ଚନ୍ଦ୍ରଙ୍କ ଘୁଷୁରୀ ପଲର ବଂଶଧର ହୋଇ ଥିବେ ପରା ।

ବାରାଣସୀରେ ମନେ ପଡ଼ନ୍ତି ଶଙ୍କରାଚାର୍ଯ୍ୟ ଓ ଉଭୟଭାରତୀ, ଯେଉଁ ଭଉୟଭାରତୀଙ୍କ ଦାଣ୍ଡରେ ଶୁଆସାରି ସୁଦ୍ଧା ବେଦମନ୍ତ୍ର ଉଚ୍ଚାରଣ କରୁଥିଲେ । ଆଚାର୍ଯ୍ୟ ଗୃହରେ ବଟୁମାନଙ୍କର ବିଶୁଦ୍ଧ ସଂସ୍କୃତ ଉଚ୍ଚାରଣ ସମନ୍ୱିତ ବେଦପାଠ ଶୁଣିଲେ ସେହି ବେଦ ଉପନିଷଦ୍ ଯୁଗରେ ଥିବା ପରି ମନେ ହୁଏ ।

ଜୁନ୍ ୧୯୬୧ରେ ଏହି ବିଦ୍ୟାଳୟ ରାଣୀ ଅହଲ୍ୟାବାଈଙ୍କ ସ୍ମୃତି ସୁରକ୍ଷିତ ଇନ୍ଦୋର ନିକଟସ୍ଥ କସ୍ତୁରବା ଗ୍ରାମକୁ ସ୍ଥାନାନ୍ତରିତ ହେଲା । ସେଠାରେ ଦୁଇମାସ କଟାଇବା ପରେ ମୋ ଶାଶୁଙ୍କ ଅସୁସ୍ଥତା ସମ୍ବାଦ ପାଇ ଓଡ଼ିଶା ଫେରି ଆସିଲି । ଶାଶୁ ୧୯୬୨ ମସିହା ଏପ୍ରିଲ ଦଶ ତାରିଖରେ ପ୍ରାଣତ୍ୟାଗ କଲେ । ଉନବିଂଶ ଶତାବ୍ଦୀର ସଂସ୍କାର ଅନୁସାରେ ସବୁ ରୀତିନୀତି ସେ ମାନୁଥିଲେ ହେଁ ମୋତେ କେତୋଟି ବିଷୟରେ ପ୍ରଶ୍ରୟ ଦେଉଥିଲେ । ମୁଁ ଶାଶୁଘରକୁ ପ୍ରଥମ କରି ଯାଇ ଦେଖିଲି ସେଠା୍ରେ ଛୁଆଁ ଅଛୁଆଁ ଭେଦ, ପର୍ଦ୍ଦା ପ୍ରଥା, ଗହଣା ପିନ୍ଧିବା ଆଦି ସାଧାରଣ ଓଡ଼ିଆ ଘରର ଚଳଣି ରହିଛି । ୧୯୩୪ରେ ଗାନ୍ଧିଜୀଙ୍କୁ ମୁଁ ମୋ ହାତରେ ପିନ୍ଧିଥିବା ସୁନାଚୁଡ଼ି ଦେବା ବେଳେ ସେ କହିଲେ ଯେ ତୁ ଯଦି ଆଉ କେବେ ହେଁ ସୁନା ନ ପିନ୍ଧିବୁ ତେବେ ମୁଁ ତୋ ଗହଣା ନେବି । ମୁଁ ହଁ ଭରିଥିଲି । ତେଣୁ ଶାଶୁଘରକୁ ଆସି ସେଠା ଚଳଣିରୁ କାହାକୁ ମାନିବି କାହାକୁ ମାନିବି ନାହିଁ ଚିନ୍ତା କରି ଠିକ୍ କଲି ଯେ ଗହଣା ପିନ୍ଧିବି ନାହିଁ । ଛୁଆଁଛୁଇଁ ମାନିବି ନାହିଁ । ମୋର ଉଦାର ହୃଦୟା ଶାଶୁ ମୋ ଯୋଗୁ ତଥାକଥିତ ଅଛୁଆଁ ଲୋକଙ୍କୁ ରୋଷେଇ ଖଞ୍ଜାରେ ପୁରାଇବାକୁ ସୁଦ୍ଧା ପଶ୍ଚାତ୍‌ପଦ ହେଲେ ନାହିଁ । ତାଙ୍କ ଅନ୍ତେ ମୋ ଶାଶୁଘର ଜୀବନ ବହୁ ପରିମାଣରେ ନୀରସ ହୋଇଗଲା ।

ଶାଶୁଙ୍କ ମୃତ୍ୟୁ ପୂର୍ବରୁ ପରମ ସ୍ନେହୀ ଗୁଣନିଧି ବାବୁଙ୍କର ୧୯୬୧ ଡ଼ିସେମ୍ବର ସତର ତାରିଖରେ ଦେହାନ୍ତ ହୋଇ ସାରିଥିଲା । ସାର୍ବଜନୀନ ସେବା କ୍ଷେତ୍ରରେ ଗୁଣନିଧି ବାବୁଙ୍କ ସହିତ ଯେଉଁ ଘନିଷ୍ଠ ଆତ୍ମୀୟତା ଥିଲା ସେ ଘନିଷ୍ଠତା ନିକଟ ଆତ୍ମୀୟଙ୍କ ସହିତ ମଧ୍ୟ ନ ଥିଲା । ତାଙ୍କ ବିୟୋଗରେ ସାର୍ବଜନୀନ ସେବା କ୍ଷେତ୍ରରେ ମିଳିତ ଭାବରେ କାମ କରିବାର ଆନନ୍ଦ ବହୁ ପରିମାଣରେ ଊଣା ହୋଇଗଲା ।

ନବକୃଷ୍ଣ ଚୌଧୁରୀ ସର୍ବସେବାସଂଘର ଅଧ୍ୟକ୍ଷ ଥା'ନ୍ତି । ଦିନେ ସେ ଓ ରମାଦେବୀ କଥାବାର୍ତ୍ତା ହେଲେ ଯେ ଅହମଦାବାଦ ଆଦି ସହରରେ ଯେପରି ବହୁ ସଂଖ୍ୟାରେ ଛୋଟ ପିଲାଙ୍କ ପାଇଁ ନର୍ସରୀ ସ୍କୁଲ ବା ବାଲବାଡ଼ୀ ଚାଲିଛି, କଟକରେ ସେପରି କରାଗଲେ ଭଲ ହୁଅନ୍ତା । ରମାଦେବୀ ଏହି ନର୍ସରୀ ସ୍କୁଲ ବା ବାଲବାଡ଼ୀ ଓଡ଼ିଆ ଭାଷା ମାଧ୍ୟମରେ ଚଳାଇବା ପାଇଁ ୧୯୪୫ରୁ ଉଦ୍ୟମ କରୁଥିଲେ । ମାତ୍ର ତାହା ରାମଚନ୍ଦ୍ରପୁର, ବରୀ ଆଦି ଗାଁରେ ଚାଲୁଥିଲା । ଓଡ଼ିଶାରେ ବାଲବାଡ଼ୀର ବହୁଳ ପ୍ରଚାର ଉଦ୍ଦେଶ୍ୟରେ ସେ ଶ୍ରୀମତୀ ନଳିନୀ ଦେବୀ, ପ୍ରେମଲତା, ମଦନ ମୋହନ ସାହୁ, ମଙ୍ଗଳା ଦେବୀ ଓ ରମ୍ଭାଦେବୀଙ୍କୁ ବାଲବାଡ଼ୀ ଶିକ୍ଷକ ତାଲିମ ନେବାକୁ ଓଡ଼ିଶା ବାହାରକୁ ପଠାଇଥିଲେ ଏବଂ ୧୯୫୦ରେ ବାଲବାଡ଼ୀ ଶିକ୍ଷକ ତାଲିମ କେନ୍ଦ୍ର ମଧ୍ୟ ଚଳାଇଥିଲେ । କଟକରେ ସେତେବେଳେ ସେଣ୍ଟ୍ ଯୋଶେଫ୍ସ କନ୍‌ଭେଣ୍ଟରେ ନର୍ସରୀ ସ୍କୁଲ ଥିଲା । ସେଠାରେ ଇଂରାଜୀ ମାଧ୍ୟମରେ ଶିକ୍ଷା ଦିଆଯାଉଥିଲା । ଶିଶୁ ମନୋବୈଜ୍ଞାନିକମାନଙ୍କ ମତରେ ମାତୃଭାଷାରେ ହିଁ ପ୍ରଥମେ ଶିଶୁକୁ ଶିକ୍ଷା ଦେବା ଉଚିତ । ସେହି ଦୃଷ୍ଟିରୁ କଟକ ସହରରେ ଓଡ଼ିଆ ଭାଷା ମାଧ୍ୟମରେ ଏକ ନର୍ସରୀ ସ୍କୁଲ ବା ବାଲବାଡ଼ୀ ଆରମ୍ଭ କରିବାକୁ ସେ ମନ ବଳାଇଲେ । ମଙ୍ଗଳା ଦେବୀ, ବିଦ୍ୟୁତ୍‌ଲତା ମହାନ୍ତିଙ୍କ ସହିତ ମୁଁ ଏଥିପାଇଁ ପାଠ୍ୟକ୍ରମ ପ୍ରସ୍ତୁତ କରିବା, ଅର୍ଥ ସଂଗ୍ରହ କରିବା ଆଦି କାମରେ ଲାଗିଲି । କଟକ ସହରର ବାଖରାବାଦରେ ୧୯.୩.୧୯୬୨ରେ ଏହି ବାଲବାଡ଼ୀ ସ୍ଥାପିତ ହେଲା । ଏହା ଶିଶୁବିହାର ନାମରେ ନାମିତ ହେଲା । ବର୍ତ୍ତମାନ ଏହା ଚାନ୍ଦନୀଚୌକସ୍ଥ ଶିଶୁଭବନର ପରିସର ମଧ୍ୟରେ କାର୍ଯ୍ୟ କରୁଛି । ଈଶ୍ୱରଭାଇ ବ୍ୟାସ ଛାତ୍ର ତାଲିକାରେ ସର୍ବପ୍ରଥମେ ନାମ ଲେଖାଇ ଏ ଅନୁଷ୍ଠାନଟି ଉଦ୍‌ଘାଟନ କଲେ । ବାସନ୍ତୀ ମିଶ୍ର, ଅନୁସୂୟା ମହାପାତ୍ର ହେଲେ ପ୍ରଥମ ଶିକ୍ଷୟିତ୍ରୀ । ମଣ୍ଟେସରୀ ପଦ୍ଧତିରେ ତାଲିମପ୍ରାପ୍ତା ହୀରାବେନ୍ ମଧ୍ୟ ଏ ଅନୁଷ୍ଠାନରେ ଯୋଗ ଦେଲେ । ସର୍ବଶ୍ରୀ ନଳିନୀ ଦେବୀ ରାଉତରା, ଅ. ବୈଦ୍ୟନାଥ ରଥ ହେଲେ ପରାମର୍ଶଦାତା । କିଛିକାଳ ପରେ ଶ୍ରୀ ଦୁଃଖିଶ୍ୟାମ ମିତ୍ରଙ୍କ ଅଧ୍ୟକ୍ଷତାରେ ଏହାର ପରିଚାଳନା ସମିତି ଗଠିତ ହେଲା । ସର୍ବଶ୍ରୀ ଶୈଳେନ୍ ରାୟ, ବସନ୍ତକୁମାରୀ ଦେବୀ, ରମାଦେବୀ, ଶରତଚନ୍ଦ୍ର ମୁଖାର୍ଜି ଆଦି ଏହି ସମିତିର ସଦସ୍ୟ ହେଲେ । ବାଲବାଡ଼ୀ ପାଇଁ କୌଣସି ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ପୂର୍ବରୁ ନ ଥିଲା । ଶିଶୁ ସାହିତ୍ୟ ସଂଗ୍ରହ ମଧ୍ୟ ନ ଥିଲା । ଓଡ଼ିଆ ଭାଷାରେ ବାଲବାଡ଼ୀ ଉପଯୋଗୀ କବିତା, ଗଳ୍ପ, ନାଟକ, ଗୀତ ଆଦି ସଂଗ୍ରହ କରିବା ଓ ରଚନା କରିବା ମଧ୍ୟ ଆମେ ଆରମ୍ଭ କଲୁ । ଏବେ ତ ଓଡ଼ିଶା ଏ କ୍ଷେତ୍ରରେ ଅଗ୍ରଗତି କଲାଣି ।

ଏହି ବାଲବାଡ଼ୀକୁ ସୁସଂଗଠିତ କରିବା କାମରେ ମାତିଥିବା ବେଳେ ଡ଼ିସେମ୍ବରରେ ଚୀନ୍ ଭାରତ ସଂଘର୍ଷ ଆରମ୍ଭ ହେଲା । ୧୯୬୨ ମସିହା ଅକ୍ଟୋବର । ''ହିନ୍ଦୀଚିନୀ' ଭାଇ ଭାଇ ଘୋଷ ଦେବାରେ ଅଗ୍ରଣୀ ପଣ୍ଡିତ ନେହେରୁ ସିଲୋନ୍ ଗସ୍ତରେ ଯିବା ବାଟରେ ଘୋଷଣା କରିଦେଇ ଗଲେ -''ଦୋଜ୍ ୟେଲୋ ଶିପ୍ ! ମେକ୍ ଦେମ୍ ଆଉଟ୍ ।'' ଭାଇକୁ ହିଁ ଭାଇ ଏପରି ଗାଳି ଦେଇପାରେ ! ମା' ଗର୍ଭରେ ହିଁ ତ ଉଗାରୀର ବାସ ! ସଂସ୍କୃତରେ ଶତ୍ରୁକୁ 'ସପତ୍ନ' କୁହାଯାଏ ପରା ! ଭାଇ ଭାଇ ଭିତରେ ଜମିବାଡ଼ି, ହିଡ଼ବାଡ଼ ନେଇ ଫୌଜଦାରୀ ଆରମ୍ଭ ହୋଇଗଲା । ଯୁଦ୍ଧ ଘୋଷଣା ହେଲାଦିନ ମୁଁ କଟକରେ ଥାଏ । ସେଦିନ ନାରୀ ସେବା ସଂଘ ପକ୍ଷରୁ ତୁରନ୍ତ ସଭା ଡ଼କା ହେଲା । ମୋତେ ସଭାକୁ ଡ଼ାକିଥାନ୍ତି । ଯୁଦ୍ଧ ସଂକ୍ରାନ୍ତରେ ସର୍ବୋଦୟ ମଣ୍ଡଳର ଆଭିମୁଖ୍ୟ କ'ଣ ହେବା ଉଚିତ, ବିନୋବାଜୀ କ'ଣ ଭାବୁଛନ୍ତି, କିଛି ଜାଣି ନ ଥାଏ । ଏପରି ସ୍ଥଳେ ସଭାରେ କ'ଣ କହିବି ସେହି କଥା ଭାବୁଥାଏ । ଯୁଦ୍ଧ ଘୋଷଣା ହେବାବେଳୁ ମୋ ମନେ ମନେ ମୁଁ ଭାବୁଥାଏ ଚୀନ୍‌ର ଦାରିଦ୍ର୍ୟ ଦୂର କରିବା ପାଇଁ ସେମାନେ ଯାହା କରିଛନ୍ତି, ଭାରତକୁ ଆସିଲେ ସେମାନେ ଭାରତର ଦାରିଦ୍ର୍ୟ ଦୂର କରିବା ପାଇଁ ସେହି ଉପାୟ ଅବଲମ୍ବନ କରିବେ । କିନ୍ତୁ ତାହା ହେବ ହିଂସାତ୍ମକ ପଦ୍ଧତିରେ । ଆମେ ଭୂଦାନ ଗ୍ରାମଦାନ ଆଦି ଦ୍ୱାରା ସେହି ଦାରିଦ୍ର୍ୟ ଦୂର କରିବା କାମ ଅହିଂସାତ୍ମକ ଉପାୟରେ କଲୁ । ଲୋକେ ସେ ବିଚାର ଘେନିଲେ ନାହିଁ । ଚୀନ୍ ଆମକୁ ଗୋଲାମ କରି ସେହି କଥା କରାଇବ ଏଇଟା ଆମ ପାଇଁ କେତେବଡ଼ ଅପମାନ ! କିନ୍ତୁ ସଭାରେ ତ ଏ ମନ କଥା କହିବାର ନୁହେଁ । ତେଣୁ ସଭାରେ କହିଲି ଯେ ଯୁଦ୍ଧ ଲାଗିଗଲେ ପୁରୁଷମାନେ ଯୁଦ୍ଧକ୍ଷେତ୍ରକୁ ଯାଆନ୍ତି କିମ୍ବା ଯୁଦ୍ଧ ସଂକ୍ରାନ୍ତୀୟ କାମରେ ଲାଗନ୍ତି । ସେ ପରିସ୍ଥିତିରେ ଦେଶର ସ୍ତ୍ରୀଲୋକମାନେ ଶିକ୍ଷା, ସ୍ୱାସ୍ଥ୍ୟ, ଯାତାୟତ ଏପରି କି କେତେକାଂଶରେ ପ୍ରଶାସନର ଦାୟିତ୍ୱ ମଧ୍ୟ ତୁଲାଇଥିବାର ୟୁରୋପର ଯୁଦ୍ଧବେଳର ଇତିହାସରେ ଦେଖାଯାଏ । ଗତ କେତେ ଶହ ବର୍ଷ ହେଲା ଭାରତ ଭୂମିରେ ଯୁଦ୍ଧ ହୋଇ ନାହିଁ । ଭାରତୀୟ ସୈନ୍ୟ ଅନ୍ୟ ଦେଶକୁ ଯାଇ ଲଢ଼େଇ କରିଛନ୍ତି । ସେଥିପାଇଁ ପଞ୍ଜାବୀ, ଜାଠ ଆଦି martial race ବୋଲାଉଥିବା ଜାତିର ନାରୀ ସମାଜକୁ ଛାଡ଼ିଦେଲେ ଯୁଦ୍ଧକାଳୀନ ପରିସ୍ଥିତିରେ ଆମେମାନେ ନିଜର କର୍ତ୍ତବ୍ୟ ସମ୍ବନ୍ଧରେ ଆଦୌ ସଚେତନ ନୋହୁଁ । ଏହି ଚେତନା ଆଣିବା ପାଇଁ ନାରୀସମାଜ ମଧ୍ୟରେ ଆମକୁ କାମ କରିବାକୁ ହେବ । ହଠାତ୍ ଉଡ଼ାଜାହାଜ ଆକ୍ରମଣ ହେଲେ କ'ଣ କରିବାକୁ ହେବ, ଘରକରଣା କାମ ସହିତ ଯୁଦ୍ଧ କରୁଥିବା

ସୈନ୍ୟଙ୍କୁ ସାହାଯ୍ୟ କଲା ଭଳି କି କାମ ଆମେ କରି ପାରିବା, ଏ ବିଷୟରେ ଆଲୋଚନା କରିବା ଦରକାର ଏବଂ ପ୍ରତ୍ୟେକ ସ୍ତ୍ରୀଲୋକ ଯେପରି ପ୍ରଥମୋପଚାର (First aid) ଶିଖିବ ସେଥିପାଇଁ ଠାଆକୁ ଠାଆ ଫାଷ୍ଟଏଡ୍ ଶିଖାଇବା ପାଇଁ ଆମକୁ ଉଦ୍ୟମ ଆରମ୍ଭ କରି ଦେବାକୁ ହେବ । ଯୁଦ୍ଧ ଦୀର୍ଘକାଳ ହେଲେ ତ ଡ଼ାକଘର, ଡ଼ାକ୍ତରଖାନା, ସ୍କୁଲ ଆଦି ଚଳାଇବା ପାଇଁ ଆମେ ସ୍ତ୍ରୀ ଲୋକମାନେ ପ୍ରସ୍ତୁତ ରହିବା ଦରକାର । ବିଶ୍ୱଯୁଦ୍ଧ ବେଳେ ଶ୍ରୀମତୀ ସୁଧାଂଶୁ ମାଳି ରାୟ ବିଲାତରେ ଥିଲେ । ମୋର ଏହି ପ୍ରସ୍ତାବ ଯେ ବାସ୍ତବଧର୍ମୀ ତାହା ସେ ନିଜ ଅନୁଭୂତିରୁ କହିଲେ ।

ଏହି ଆଲୋଚନା ଅନୁସାରେ ଡ଼କ୍ଟର ଗୁରୁପ୍ରସାଦ ମହାନ୍ତି ବାଖରାବାଦରେ ସାହିର ମହିଳାମାନଙ୍କୁ ତୁରନ୍ତ ଫାଷ୍ଟଏଡ୍ ଶିଖାଇବା ଆରମ୍ଭ କରି ଦେଲେ । ଅନ୍ୟତ୍ର ମଧ୍ୟ ଏ ଉଦ୍ୟମ ଚାଲିଲା । ମାତ୍ର ଯୁଦ୍ଧ ବନ୍ଦ ହେବା ମାତ୍ରେ ଏ ଉତ୍ସାହରେ ଭଟ୍ଟା ପଡ଼ିଗଲା ।

ପଶ୍ଚିମବଙ୍ଗର ହରିଶ୍ଚନ୍ଦ୍ରପୁର ପିପ୍‌ଲାରେ ସର୍ବସେବାସଂଘର ଛଅମାସିଆ ବୈଠକ ଏହି ଯୁଦ୍ଧ ଲାଗିଥିବାବେଳେ ବସିଲା । ରମାଦେବୀ ସଂଘର ସଦସ୍ୟ । ସେ ସେଠାକୁ ଗଲେ । ମୁଁ ସାଙ୍ଗରେ ଗଲି । ବିନୋବାଜୀ ଆସାମ ଯାତ୍ରା ଶେଷ କରି ପୂର୍ବ ପାକିସ୍ତାନ ବାଟେ ପଶ୍ଚିମବଙ୍ଗରେ ପ୍ରବେଶ କରିଥାନ୍ତି । ତାଙ୍କ ସାଙ୍ଗରେ ନିର୍ମଳା ଦେଶପାଣ୍ଡେ, କୁସୁମ ଦେଶପାଣ୍ଡେ ତ ନ ଥାନ୍ତି । କାଳିନ୍ଦୀ ସରବଟେ ଅସୁସ୍ଥ ଥାନ୍ତି । ଚୀନ-ଭାରତ ସଂଘର୍ଷ ସଂକ୍ରାନ୍ତରେ ବିନୋବାଜୀ କ'ଣ କହୁଛନ୍ତି ବା ଭାବୁଛନ୍ତି କିଛି କେହି ଜାଣି ପାରୁ ନ ଥାନ୍ତି । ଅନ୍ୟ ରିପୋର୍ଟର ରଖିବା ତ ପଞ୍ଜାବ ପ୍ରବେଶ ବେଳୁ ସେ ବନ୍ଦ କରି ଦେଇଥାନ୍ତି । ପିପ୍‌ଲାରେ ସର୍ବସେବା ସଂଘର ସଦସ୍ୟମାନେ ବିନୋବାଜୀଙ୍କୁ କହିଲେ ଯେ ଦେଶର ଏ ଘଡ଼ିସନ୍ଧି ବେଳେ ତାଙ୍କର ବିଚାର ଧାରା ସମଗ୍ର ଭାରତର କର୍ମୀମାନେ ଓ ଲୋକେ ଜାଣିବା ଦରକାର । ତେଣୁ ଜଣେ ରିପୋର୍ଟର ସାଙ୍ଗରେ ରଖିବା ପାଇଁ ସେ ଅନୁମତି ଦିଅନ୍ତୁ । କେହି ଜଣେ ମୋ ନାଆଁଟା ସେଠି କହିଦେଲେ । ବିନୋବାଜୀ ତୁରନ୍ତ ତାକୁ ସମର୍ଥନ କଲେ । ମୋତେ ଜ୍ୱର ହୋଇଥାଏ । ଏ କଥା ଶୁଣି ବଳିକୁ ଗଲା ଛେଳି ପରି ଥରି ଥରି ମୁଁ ଯେତେ କରୁଣ ସ୍ୱରରେ ପ୍ରତିବାଦ କଲି, ସମସ୍ତେ ପାଟିତୁଣ୍ଡ କରି ମୋ ସ୍ୱରକୁ ବୁଡ଼େଇ ପକେଇଲେ ।

ଚୀନ୍‌ର ଅଗ୍ରଗତି ଓ ଭାରତର ଶିଥିଳତା ଦେଖି ବିନୋବାଜୀଙ୍କ ପରି ସ୍ଥିରବୁଦ୍ଧି ବ୍ୟକ୍ତି ସୁଦ୍ଧା ବିଚଳିତ ହେଉଥାନ୍ତି । ଦେଶର ସ୍ୱାଧୀନତା ବିପନ୍ନ, ତଥାପି ଲୋକେ ବେପରବାୟ - ଏଇଟା ତାଙ୍କୁ ଅସହ୍ୟ ବୋଧ ହେଉଥାଏ । ପୁଣି ଦିଲ୍ଲୀରୁ ତାଙ୍କ ପାଖକୁ

ଆସୁଥିବା କର୍ମୀମାନେ କହୁଥାନ୍ତି ଯେ ଦିଲ୍ଲୀର ନିତିଦିନିଆ ଭୋଗବିଳାସ ମଉଜ ମଜଲିସ୍ ଏ ଯୁଦ୍ଧ ବେଳରେ ସୁଦ୍ଧା ଅବ୍ୟାହତ' ରହିଛି । ଦିଲ୍ଲୀର କ୍ଲବ୍‌ମାନଙ୍କରେ ଓ ଅନ୍ୟାନ୍ୟ ମନୋରଞ୍ଜନାତ୍ମକ କାର୍ଯ୍ୟକ୍ରମରେ ଲୋକେ ନିଶ୍ଚିନ୍ତ ଚିତ୍ତରେ ଯୋଗ ଦେଉଛନ୍ତି । କେବଳ ଲାଲବାହାଦୂର ଶାସ୍ତ୍ରୀ ରାତି ଦୁଇଟା ପର୍ଯ୍ୟନ୍ତ ସଚିବାଳୟରେ ଆଲୁଅ ଜାଳି କାମ କରୁଛନ୍ତି । ଏହା ସାଙ୍ଗକୁ ଆସାମରୁ ଆସୁଥିବା ପ୍ରତ୍ୟକ୍ଷଦର୍ଶୀଙ୍କ ଠାରୁ ନେଫାରେ ଚୀନ୍ ସୈନ୍ୟଙ୍କ ତତ୍ପରତା, ଭାରତୀୟ ସେନାପତିଙ୍କ ଶିଥିଳତା ସାଙ୍ଗକୁ ଟସ୍କର କୋମ୍ପାନୀର ସଡ଼କ ତିଆରି କେଲେଙ୍କାରୀ, ସୈନ୍ୟଙ୍କୁ ଶୀତବସ୍ତ୍ର ଯୋଗାଇବାରେ ଭ୍ରଷ୍ଟାଚାର ଆଦି ସମ୍ବାଦ ଶୁଣିବାକୁ ମିଳୁଥାଏ । ବିନୋବାଜୀଙ୍କର ଉଦ୍‌ବେଗ ଓ ମନୋବେଦନା ସାଧାରଣ ସଭାରେ ତାଙ୍କ ଭାଷଣରେ ପରିସ୍ଫୁଟ ହୋଇ ଉଠୁଥାଏ । ଲୋକଙ୍କୁ ଚେତାବନୀ ଦେଇ ସେ ବାରମ୍ବାର କହୁଥାନ୍ତି ଯେ ଚୀନ ଆକ୍ରମଣର ମୁକାବିଲା ଯେ କେବଳ ଯୁଦ୍ଧକ୍ଷେତ୍ରରେ କରିବାକୁ ହେବ ତାହା ନୁହେଁ । ତାହାର ସଶସ୍ତ୍ର ଆକ୍ରମଣ ଓ ବୈଚାରିକ ଆକ୍ରମଣର ପ୍ରତିରୋଧ ପାଇଁ ଆମ ଦେଶରେ ଥିବା ଜାତିଭେଦ, ଧର୍ମଭେଦ ସର୍ବୋପରି ଥିଲାବାଲା ନଥିଲାବାଲା ଭେଦକୁ ଦୂର କରିବାକୁ ହେବ । ମିରଜାଫର, ଜୟଚନ୍ଦ୍ର ଆଦିଙ୍କ ଉଦାହରଣ ଦେଇ ଭାରତ ଇତିହାସରେ ସ୍ୱାଧୀନତା କେଉଁ କାରଣରୁ ବିପନ୍ନ ହୋଇଛି, ତାହା ମଧ୍ୟ କହୁଥାନ୍ତି । ସ୍ୱାଧୀନ ଦେଶରେ ଶିକ୍ଷାରେ ଶାରୀରିକ ଉତ୍କର୍ଷ ଓ ମାନସିକ ତତ୍ପରତାର ବିକାଶ ପାଇଁ ଯେଉଁ ବ୍ୟବସ୍ଥା ପାଠ୍ୟକ୍ରମରେ ରହିବା କଥା ତାହା ଏ ଦେଶରେ ନାହିଁ, ସାରା ଦେଶ ବେପରବାୟ ଭାବରେ ଜୀବନ କଟାଉଛି ଆଦି କଥା ସେ ବାରମ୍ବାର କହୁଥାନ୍ତି । ସେଇଥିପାଇଁ ଭୂମିହୀନ ଭୂମିବାନ୍‌ର ଭେଦ ମେଣ୍ଟାଇବା ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରୁଥାନ୍ତି ।

ଚୀନ୍ ଭାରତ ସଂଘର୍ଷର ବହୁ ପୂର୍ବରୁ ଆସାମରେ ପୂର୍ବପାକିସ୍ଥାନ ଓ ଚୀନ୍‌ର ଅନୁପ୍ରବେଶ (Infiltration) ଆରମ୍ଭ ହୋଇ ଯାଇଥିଲା । ଏହି ଅନୁପ୍ରବେଶକାରୀମାନଙ୍କର ବିଶ୍ୱାସଘାତକତା ପରାକାଷ୍ଠା ଅନୁଭୂତ ହେଲା ଏହି ସଂଘର୍ଷ ବେଳେ । ଆସାମରେ ପଦଯାତ୍ରା କଲାବେଳେ ବିନୋବାଜୀ ଗ୍ରାମଦାନକୁ defence major ଯେ ବାରମ୍ବାର କହିଥିଲେ ତାହା ପଛରେ ଏହି ବିଚାର ଥିଲା ଯେ ଆଜି ଗାଁର ଜମି ମାଲିକର ଜମି ବିକ୍ରୀ କରିବାର ଅଧିକାର ଥିବାରୁ ସେ ଯାହାଠାରୁ ଅଧିକ ମୂଲ୍ୟ ପାଉଛି, ତାକୁ ଜମି ବିକୁଛି । ଗାଁର ବା ଦେଶର ସ୍ୱାର୍ଥ ପ୍ରତି ଦୃଷ୍ଟି ଦେଉନାହିଁ । ଯେଉଁ ଲୋକଙ୍କୁ ଜମି ସେ ବିକିଲା ସେ ଲୋକ ଗାଁ ବା ଦେଶର ହିତୈଷୀ କି ନାହିଁ, ତାହା ବିଚାରକୁ ଆଣୁ ନାହିଁ । ଜମି ବିକ୍ରୀ

କ୍ଷମତା ଗ୍ରାମସଭା ହାତରେ ରହିଲେ କେଉଁ ଲୋକ ଜମି କିଣୁଛି ତାହା ଗ୍ରାମବାସୀ ଜାଣିବେ ଏବଂ ସେ ଲୋକଙ୍କୁ ଜମି ବିକିଲେ ଗାଁ ଓ ଦେଶର କ୍ଷତି ହେବ କି ନାହିଁ ତାହା ବିଚାର କରିବେ । ଆସାମ ସୀମାନ୍ତ ରାଜ୍ୟ । ସେଠାରେ ଅନୁପ୍ରବେଶ ବନ୍ଦ କରିବାର ଏହା ଏକ ଉପାୟ ବୋଲି ବିନୋବାଜୀ ସେ ବେଳୁ କହିଥିଲେ । ଛାଡ଼ନ୍ତୁ ସେ କଥା ।

ଏହି ଯୁଦ୍ଧବେଳେ ଆସାମରେ ଥିବା ଅଣ-ଆସାମୀ ସରକାରୀ ହାକିମ ଓ ଅନ୍ୟମାନେ ଆସାମ ଛାଡ଼ି ପଳାଇ ଆସିଲେ । ଏପରିକି ସେଠାରେ ମୁଖ୍ୟ ହାକିମ ସୁଦ୍ଧା ଟ୍ରେଜେରୀର ଭାରତୀୟ ମୁଦ୍ରା କାଳେ ଚୀନ୍‌ର ହସ୍ତଗତ ହୋଇଯିବ ଏହି ଭୟରେ ଲକ୍ଷ ଲକ୍ଷ ଟଙ୍କାର ନୋଟ୍ ଜାଳି ଦେଇ ସେଠାରୁ ପଳେଇ ଆସିଲେ । ଆସାମୀମାନଙ୍କ ମଧ୍ୟରେ ଏହି ଘଟଣା ଘୋର ପ୍ରତିକ୍ରିୟା ସୃଷ୍ଟି କଲା । ଭାରତର ଅନ୍ୟ ପ୍ରଦେଶର ଲୋକଙ୍କ ପ୍ରତି ସେମାନଙ୍କ ମନରେ ବିତୃଷ୍ଣା ସୃଷ୍ଟି ହେଲା । ଏହି ମନୋଭାବ ବଦଳାଇବା ପାଇଁ ଏବଂ ଯୁଦ୍ଧ ପରିସ୍ଥିତି ବିଷୟରେ ବିଶଦ ଭାବରେ ଜାଣିବା ପାଇଁ ଶାନ୍ତିସେନା ମଣ୍ଡଳ ପକ୍ଷରୁ ରମାଦେବୀ, ବେଲା ପରିଜା ଓଡ଼ିଶାରୁ ଆସାମ ଗଲେ । ସେଠାରେ ସେମାନେ ନେଫା ଅଞ୍ଚଳରେ ବୁଲିଲେ । ଚୀନ୍‌ରେ ସୈନ୍ୟ ବିଭାଗରେ ଯେଉଁ ସମଭାବ ଉପରୁ ତଳଯାଏ ଖାଇବା, ପିନ୍ଧିବା, ରହିବା ଆଦିରେ ରହିଛି, ବନ୍ଦୀ ଭାରତୀୟ ସୈନ୍ୟମାନଙ୍କଠାରୁ ସେମାନେ ତା'ର ବିବରଣୀ ଶୁଣିଲେ ଏବଂ ସେମାନଙ୍କ ଉପରେ ଏହାର ଗଭୀର ପ୍ରଭାବ ପଡ଼ିଥିବାର ମଧ୍ୟ ଲକ୍ଷ୍ୟ କଲେ । ନେଫାରେ ଭାରତ ସରକାର ସ୍ୱାଧୀନତା ପରେ ଯାହା ଉନ୍ନୟନ କାମ କରିଛନ୍ତି ତାହା ତୁଳନାରେ ଚୀନ୍ ସରକାର ସେମାନଙ୍କର ଉନ୍ନତି ସାଧନ ପାଇଁ ସେମାନଙ୍କର ଶିକ୍ଷାଦିକ୍ଷା ପାଇଁ କିପରି ଗଠନମୂଳକ କାମ କରିଛନ୍ତି ତାହାର ପରିଚୟ ମିଳିଲା ।

ଏଠାରେ ଗୋଟିଏ ପୁରୁଣା ସ୍ମୃତି ଉଲ୍ଲେଖ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ୧୯୪୨ରେ ଭାରତଛାଡ଼ ଆନ୍ଦୋଳନରେ ଗିରଫ ହୋଇ ବିନୋବାଜୀ ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ୧୯୪୫ରେ ଜେଲରୁ ଖଲାସ ହେଲେ । ସେମାନେ ଖଲାସ ହେବା ପୂର୍ବରୁ ବୁଝିଥିଲେ ଏବଂ ଗାନ୍ଧିଜୀ ମଧ୍ୟ ୧୯୪୪ରେ ଚରଖାସଂଘର ବୈଠକରେ କହିଥିଲେ ଯେ ଭାରତ ଅଦୂର ଭବିଷ୍ୟତରେ ସ୍ୱାଧୀନତା ହାସଲ କରିବ । ଜେଲରୁ ବାହାରି କେତେକ ଘନିଷ୍ଠ ସହକର୍ମୀଙ୍କ ଗହଣରେ ଥିଲାବେଳେ ବିନୋବାଜୀ ଭାରତର ସୀମାନ୍ତ ଅଞ୍ଚଳ ନେଫା, ଲଦାଖ ଆଦିକୁ ମାନଚିତ୍ରରେ ଦେଖାଇ କହିଥିଲେ ଯେ ଏହି ସୀମାନ୍ତ ଅଞ୍ଚଳରେ ଯଦି ନିବିଡ଼ ଗଠନମୂଳକ କାମ ଏବେଠୁଁ କରା ନ ଯିବ ତେବେ ଭାରତ ସ୍ୱାଧୀନ ହେବା ପରେ ଏହି ଅଞ୍ଚଳଗୁଡ଼ିକୁ ଭାରତର ଅନ୍ତର୍ଗତ କରି ରଖିବା କଷ୍ଟସାଧ୍ୟ

ହେବ । କାରଣ ଏହି ଅଞ୍ଚଳଗୁଡ଼ିକର ଭାଷା ଓ ଚାଲିଚଳଣି ଏବଂ ପଡ଼ୋଶୀ ରାଜ୍ୟର ଭାଷା ଓ ଚାଲିଚଳଣି ମଧ୍ୟରେ ସାଦୃଶ୍ୟ ରହିଛି । ତେଣୁ ଭାରତୀୟ ସଂସ୍କୃତିକୁ ସେମାନଙ୍କ ମଧ୍ୟରେ ପୂରାଇ ଦୃଢ଼ୀଭୂତ କରିବା ଦରକାର । ପ୍ରକୃତରେ ଦେଖାଗଲା, ଚୀନ୍-ଭାରତ ସଂଘର୍ଷ ବେଳେ ଅଣଆସାମୀ ସରକାରୀ ଲୋକେ ଆସାମ ଛାଡ଼ି ପଳାଇ ଆସୁଥିବା ସ୍ଥଳେ ଯୁଦ୍ଧକ୍ଷେତ୍ରର ଅନତିଦୂରରେ ଥିବା ରଚନାତ୍ମକ କର୍ମକେନ୍ଦ୍ରର ମହିଳା କର୍ମୀମାନେ ଲୋକଙ୍କୁ ସାହସର ସହିତ ଚୀନ୍ ସହିତ ଅସହଯୋଗ କରିବା ପାଇଁ ପ୍ରବର୍ତ୍ତାଇ ପାରିଲେ ଏବଂ ସେମାନେ ସେ ସ୍ଥାନ ଛାଡ଼ି ଚାଲିଗଲେ ନାହିଁ ।

ଚୀନ୍ ପକ୍ଷରୁ ସିଜ୍‌ଫାୟାର୍ ଘୋଷିତ ହେବାରୁ ଉଦ୍‌ବେଗ ତ ଦୂର ହେଲା ମାତ୍ର ପରାଜୟର ଗ୍ଲାନିରେ ହୃଦୟ ଘାରିଲା ।

ଗାନ୍ଧିଜୀ ଯେ ୧୯୩୪ ମସିହାରେ ପୁରୀରୁ ଭଦ୍ରଖ ପର୍ଯ୍ୟନ୍ତ ପଦଯାତ୍ରା କରିଥିଲେ ତାହା ସ୍ମରଣ କରିବା ନିମନ୍ତେ ଆମେ ପ୍ରତିବର୍ଷ ଭଦ୍ରଖରୁ ପଦଯାତ୍ରା ଆରମ୍ଭ କରି ପୁରୀରେ ଫେବୃୟାରୀ ବାର ତାରିଖ ପୂର୍ବରୁ ପହଞ୍ଚି ସର୍ବୋଦୟ ମେଳାରେ ଯୋଗ ଦେଉଥିଲୁ । ଏହା ଫଳରେ ଲୋକଙ୍କ ସହିତ ଦୁଃଖସୁଖ ହେବା ଓ ବିଚାର ବିନିମୟ କରିବାର ସୁଯୋଗ ମିଳୁଥିଲା । ରାଜ୍ୟର ଶାସନଠାରୁ ଆରମ୍ଭ କରି ଛୋଟ ପିଲାଙ୍କ ପାଠପଢ଼ା ଯାଏ ବିଭିନ୍ନ ବିଷୟରେ ଆମେ ଗାଁ ଲୋକଙ୍କ ସହିତ ଆଲୋଚନା କରୁଥିଲୁ ଏବଂ ଲୋକଙ୍କର ସମାଜ, ଶାସନ ବିଷୟରେ ମତାମତ ମଧ୍ୟ ଜାଣୁଥିଲୁ । ଲୋକେ ଆମ ରହିବା ଖାଇବା କଥା ବୁଝୁଥିଲେ । ଏହି ପଦଯାତ୍ରା ଯୋଗୁ ଅନେକ ନୂଆ ତଥ୍ୟ ମଧ୍ୟ ଆମେ ସଂଗ୍ରହ କରି ପାରୁଥିଲୁ । ଉଦାହରଣ ସ୍ୱରୂପ, ଜିଗିନୀ ପାଟପୁର ରହଣୀରୁ ଆସିବା ବେଳକୁ ବାଟରେ ପୁରୁଣା ସାଥୀ ବାନରସେନା ଗୋଲକ ମିଶ୍ରଙ୍କ ସଙ୍ଗେ ଦେଖା ହେଲା । ମୁଁ ତାଙ୍କୁ ରାଜ୍ୟ ସମାଚାର ପଚାରିଲି । ଗୋଲକ ଗମ୍ଭୀର ମୁଦ୍ରାରେ କହିଲେ- ଗୋଟାଏ ବଡ଼ କଥା ଏ ବର୍ଷ ଦେଖି ପାରୁ ନାହିଁ ? ସାଲେପୁର ବ୍ଲକ୍‌ରେ ହଜାର ହଜାର ଏକର ଜମିରେ ବିରି ଚାଷ ହୋଇଛି । ମୁଁ ଚାରିଆଡ଼କୁ ଚାହିଁ ଦେଖିଲି ବିରି ଗଛର ଚିହ୍ନବର୍ଣ୍ଣ ନାହିଁ । ପ୍ରଶ୍ନବାଚକ ଦୃଷ୍ଟିରେ ଗୋଲକ ମୁହଁକୁ ଚାହିଁଲାରୁ ଉତ୍ତର ମିଳିଲା – ଜଣେ ବିଶିଷ୍ଟ ସରକାରୀ ହାକିମଙ୍କ ପୁଅର ବିଭାଘର ନିମନ୍ତ୍ରଣ ରକ୍ଷା କରିବା ପାଇଁ ଗୋଷ୍ଠୀ ଉନ୍ନୟନ ବିଭାଗର ବଡ଼ କର୍ତ୍ତା କେନ୍ଦ୍ରାପଡ଼ା ଯାଇଥିଲେ । ସେଠାରେ ଦିୟତାଂ ଭୁଜ୍ୟତାଂ ବ୍ୟାପାରରେ ଉତ୍ତମ ପାନୀୟର ବ୍ୟବସ୍ଥା ହୋଇଥିଲା । ତେଣୁ ବଡ଼କର୍ତ୍ତା କେନ୍ଦ୍ରାପଡ଼ାରୁ ଫେରିବା ବେଳେ ପ୍ରକୃତିସ୍ଥ ନ ଥିଲେ । ସାଲେପୁର ବ୍ଲକ୍ ଅଫିସ୍‌ରେ

ଗାଡ଼ିରୁ ଓହ୍ଲାଇ ସେ ସାତ ଆଠଜଣ ଚାଷୀଙ୍କୁ ବିରି ବିହନ ବାଣ୍ଟିଲେ । ଏହା ବାଣ୍ଟିଲା ବେଳେ ଫଟୋ ମଧ୍ୟ ଉଠିଲା । ଏହାପରେ ସାଲେପୁର ବ୍ଲକ୍‌ରେ ହଜାର ହଜାର ଏକର ଜମିରେ ବିରି ଚାଷ ହୋଇଛି, ମାତ୍ର ତାହା କାଗଜ କଲମରେ ।

ଲୋକେ ସଚେତନ ନ ହେଲେ ଗ୍ରାମ ଗୋଷ୍ଠୀ ଉନ୍ନୟନ ଯୋଜନାରୁ ଯାହା ଉପକୃତ ହେବା କଥା, ତାହା ହୋଇ ପାରିବ ନାହିଁ । ଏହି କଥାଟା ଶିଶୁଆ ରହଣୀରେ ଗାଁ ଲୋକଙ୍କ ସାଙ୍ଗରେ ଆଲୋଚନା କଲାବେଳେ ଆମେ 'ବିରି ଚାଷ' ଉଦାହରଣ ଦେଲୁ । ଶିଶୁଆର କେତେଜଣ ପୋଖତ ଚାଷୀ କହିଲେ - ଆମ ଧାନଚାଷ କଥା ଶୁଣ । ଆମେ ଆମର କେତେ ପୁରୁଷରୁ ଚାଷବାସ କରି ଚଳୁଛୁ । ଆଗବର୍ଷ ବି.ଡ଼ି.ଓ ଆମ ଗାଁକୁ ଆସି କହିଲେ- ତୁମେ ଲେଖିଦିଅ ଯେ ଅମୁକ ଧାନର ବିହନ ବୁଣି ଆମର ଏତେ ମହଣ ଧାନ ଅଧିକ ହୋଇଛି । ତା'ହେଲେ ତୁମକୁ କୋଡ଼ିଏ ଟଙ୍କା ଲେଖା ମିଳିବ । ଆମେ ସେ ବିହନ ଆଖିରେ ଦେଖିନାହୁଁ । ମାତ୍ର ଏଇ କଥାଟା ଲେଖିଦେଲେ ଯଦି ମାଗଣାରେ କୋଡ଼ିଏ ଟଙ୍କା ମିଳିବ, ତେବେ ଲେଖିଦେଲେ କ୍ଷତି କ'ଣ ? ଆମେ ଏୟା ବିଚାରି ଲେଖିଦେବାକୁ ରାଜି ହେଲୁ ।

ଏହି କଥାଟା ଆମେ ଭେଡ଼ା ରହଣୀର ଲୋକଙ୍କୁ ଶୁଣାଇବା ମାତ୍ରେ ସେ ଗାଁର କେତେଜଣ କହିଲେ-ଏଇ କଥା ! ଆମ ଗାଁକୁ ସାକ୍ଷରତା ଦୂରୀକରଣ ପାଇଁ ସରକାରୀ ପଇସା ଆସେ । ନିରକ୍ଷର କେହି ପଢ଼ନ୍ତି ନାହିଁ । କେତେଜଣ ପାଠ ପଢ଼ିଥିବା ଲୋକ ଲେଖି ଦିଅନ୍ତି ଯେ ଆମେ ପାଠ ପଢ଼ି ଶିଖୁଛୁ । ସେହିମାନଙ୍କ ଦସ୍ତଖତ୍ ଉପରେ ଟଙ୍କା ମିଳେ । କିଛି ଟଙ୍କା ସେମାନେ ନିଅନ୍ତି, କିଛି ନିଅନ୍ତି ସଂପୃକ୍ତ କର୍ମଚାରୀ । ପରବର୍ତ୍ତୀ ରହଣୀରେ ଏ କଥାଗୁଡ଼ିକ କହିବାରୁ ସେଠା ଲୋକେ କହିଲେ- ଆମ ଗାଁ ହାଲ ଶୁଣ । ଆମେ ଚାଷୀ, ଆମର ବୁଆଠାରୁ ରୁଆ ବେଶି । ଏଠା ଗ୍ରାମସେବକ ସରକାରଙ୍କୁ ରିପୋର୍ଟ ଦେଲେ - ଏ ଅଞ୍ଚଳରେ ଜାପାନୀ ଚାଷର ପ୍ରବର୍ତ୍ତନ ସେ ଭଲ ଭାବରେ କରି ପାରିଛନ୍ତି । ରିପୋର୍ଟ ପାଇ ତାଙ୍କ ଉପର ହାକିମ ଜାପାନୀ ଚାଷ ଦେଖିବାକୁ ଆସିଲେ । ଗ୍ରାମସେବକ ତାଙ୍କୁ ଆମ ରୁଆ ବିଲ ଦେଖେଇ ଦେଇ କହିଲେ - ଆଉ ଟିକିଏ ଭିତରେ ଆହୁରି ଭଲ ଚାଷ ହୋଇଛି । ଆପଣ ଦେଖି ଆସିଲେ ଭଲ ହୁଅନ୍ତା । କିନ୍ତୁ ଟିକିଏ କାଦୁଅ ପଡ଼ିବ । ହାକିମ କହିଲେ - ଏଠି ତ ଭଲ ଚାଷ ହୋଇଛି, ଭିତରକୁ ଯିବା କି ଦରକାର ?

ଏ ତ ଗଲା ଗୋଷ୍ଠୀ ଉନ୍ନୟନ ଦୁଃଖ ସୁଖ । ଚୀନ୍ ଭାରତ ସଂଘର୍ଷ ପରେ ସ୍ମରଣ ଯାତ୍ରା କରି ଆମେ ଚନ୍ଦନପୁର ଗାଁରେ ପହଞ୍ଚି ଲୋକଙ୍କ ସଙ୍ଗେ ସବୁ ବର୍ଷ ପରି ଦୁଃଖସୁଖ

ହେଲୁ । ଯୁଦ୍ଧ କଥା ପଡ଼ିଲା । ସାଆନ୍ତମାନେ କହିଲେ – ଗାନ୍ଧିଜୀ ହରିଜନଙ୍କୁ ଯେତେ ମୁଣ୍ଡରେ ବସେଇଲେ କ'ଣ ହେବ, ସେମାନେ ଭାରି ସ୍ୱାର୍ଥପର, ତାଙ୍କଠେଇଁ ଯେ ଆତ୍ମବୋଧ ନାହିଁ । ଏହି ଆମରି ଗାଁରେ ଭୋଇମାନଙ୍କୁ ଯୁଦ୍ଧବେଳେ ଆମେ କହିଲୁ ଯେ ଆମେ ତ ସବୁବେଳେ ପିଣ୍ଡାରେ ବସି ବସି ଅକର୍ମଣ୍ୟ ହୋଇ ଗଲୁଣି, ଆମ ଦେଇ ତ ଲଢ଼ାଲଢ଼ି ହୋଇ ପାରିବ ନାହିଁ । ତୁମେମାନେ ବାହାପିଟି ଚଳୁଛ, ମଜଭୁତ ଅଛ, ଯୁଦ୍ଧରେ ନାମ ଲେଖାଅ । ସେମାନେ କହିଲେ-ସାଆନ୍ତେ ! ସେ କଥା ହୋଇ ପାରିବ ନାହିଁ । ଆମେ ଯୁଦ୍ଧକୁ ଗଲେ ଆମ ପିଲାକବିଲାଙ୍କୁ କିଏ ପାଳିବ ? ଆପଣ କହିଲେ ଭଲା, ପିଲାଛୁଆଙ୍କୁ ପାଳିବେ ବୋଲି ଦେଶରକ୍ଷା କାମରେ ଯିବାକୁ ମନା କରିବା ଉଚିତ କି ? ଆମେ କହିଲୁ – ଆପଣ କାହିଁକି ସେମାନଙ୍କୁ କହିଲେ ନାହିଁ ଯେ ଆମେ ସମସ୍ତେ ଗୋଟିଏ ପରିବାର । ତୁମେ ପାରିଲାର, ତେଣୁ ତୁମେ ଯୁଦ୍ଧକୁ ଯାଅ । ତୁମ ପିଲାକବିଲାଙ୍କ କଥା ଆମକୁ ଲାଗିଲା । ଆମେ ସେମାନଙ୍କୁ ସମ୍ଭାଳିବୁ । ସାଆନ୍ତମାନେ ମୋ କଥାରେ କିଛି ଜବାବ ଦେଲେ ନାହିଁ ।

ଆଉ ଗୋଟାଏ ଗାଁରେ ଖଣ୍ଡେଇତ ହରିଜନ ଅମେଳ ହୋଇଥିଲା । ସେ ଗାଁର ହରିଜନଙ୍କ ମନ ବିଡ଼ିବା ପାଇଁ କହିଲି, ତୁମେ ସବୁ ଯୁଦ୍ଧକୁ ଚାଲିଯାଅ । କାଞ୍ଚି ଯୁଦ୍ଧବେଳେ ଗଜପତି ପୁରୁଷୋତ୍ତମଦେବଙ୍କ ସାଙ୍ଗରେ ଜେନା, ସାମଲ, ବାରିକ, ବେହେରା ଆଦି ଛତିଶ ପାଟକ ଯୁଦ୍ଧକୁ ଯାଇଥିଲେ । ଗଜପତି କାଞ୍ଚି ବିଜୟ ପରେ ସେମାନଙ୍କ ଉପରେ ତୋଷ ହୋଇ କିଛି ମାଗିବାକୁ ସେମାନଙ୍କୁ କହିବାରୁ ସେମାନେ କହିଲେ, ଛାମୁ ! ଆମେ ତ ଖଣ୍ଡାଇତ ସାଙ୍ଗରେ ସମସରି ଯୁଦ୍ଧରେ ଲଢ଼ିଲୁ । ତାହାହେଲେ ଆମେ କାହିଁକି ଖଣ୍ଡାୟତ ନ ବୋଲାଇବୁ ? ଛାମୁ ମନ୍ତ୍ରୀଙ୍କ ସଙ୍ଗେ ମନ୍ତ୍ରଣା କରି କହିଲେ – ତୁମେମାନେ ଆଜିଠାରୁ ଖଣ୍ଡାୟତ ବୋଲାଇବ, ମାତ୍ର ତୁମ ପଦବୀ ବା ସାଙ୍ଗିଆ ପୂର୍ବବତ୍ ରହିବ । ସେହିଦିନୁଁ ଜେନା, ସାମଲ, ଗୋଛାୟତ ଆଦି ସର୍ବପ୍ରକାର ସାଙ୍ଗିଆ ଖଣ୍ଡାୟତମାନଙ୍କର ଥିବାର ଦେଖାଯାଏ । ତୁମେମାନେ ସେହିପରି ଏ ଯୁଦ୍ଧକୁ ଗଲେ ତୁମ ହାତକୁ ଅସ୍ତ୍ର ଆସିଯିବ । ତୁମେ ଖଣ୍ଡାୟତ ପାଲଟି ଯିବ । ଯୁବକ ହରିଜନମାନେ କିଛି ସମୟ ନୀରବ ରହି କହିଲେ, ଅପା ! ଆମେ ଏଇକ୍ଷଣି ଯୁଦ୍ଧକୁ ଯିବୁ ନାହିଁ । ଏ ଖଣ୍ଡାୟତମାନେ ସାଆନ୍ତ ବୋଲେଇ ଏତେ ଦିନଯାଏ ନାନା ସୁଖସୁବିଧା ମାରି ନେଉଛନ୍ତି । ସେମାନେ ଆଗ ଯୁଦ୍ଧକୁ ଯାଇ ସାରନ୍ତୁ, ତା'ପରେ ଆମେ ଯିବୁ ।

ଆଉ ଗୋଟିଏ ଆଲୋଚନା ସଭାରେ ଜଣେ ବିଲମୁଲିଆ କହିଲେ – ଆମର ଚୀନ୍ ଆଇଲେ କେତେ, ଋଷିଆ ଅଇଲେ କେତେ ? ଜଣେ ଚାଷୀ ତା' ବଳଦକୁ

କହିଲା – ବେଗି ବେଗି ଚାଲ । ଚୋର ଆସୁଛି ! ତୋତେ ନେଇଯିବ । ବଳଦ କହିଲା- ମୋ ପାଇଁ ତୁ ଓ ଚୋର ସମାନ । ତୁ ମୋତେ ହଳରେ ଯୋଚୁଚୁ, ପାଞ୍ଚଣରେ ଅଡ଼ଉଛୁ । ଚୋର ମଧ୍ୟ ମୋତେ ସେଇତା କରିବ । ଆମେ ମଳିମୁଣ୍ଡିଆ ସେହି ବଳଦ ପରି । ଯାଙ୍କ ପାଖରେ ଖଟି ମୂଲ ନେଉଛୁ, ତାଙ୍କ ପାଖରେ ଖଟି କରି ମୂଲ ନେବୁ । ଆମକୁ ହାତ ଚକିରେ ବସାଇ କେହି ଖାଇବାକୁ ଦେଉ ନାହାନ୍ତି କି ଦେବେ ନାହିଁ ।

ସବୁଠାରୁ ଟାଣୁଆ ପାହାର ଆମ ଉପରେ ବସିଲା ବାଲିଅନ୍ତା ରହଣୀରେ । ବାଲିଅନ୍ତାରେ ନିକୁଞ୍ଜ ବିହାରୀଙ୍କ ମନ୍ଦିର ଦ୍ୱାର ଗାନ୍ଧିଜୀ ୧୯୩୪ରେ ହରିଜନଙ୍କ ପାଇଁ ଖୋଲିଥିଲେ । ସେଥିପାଇଁ ସ୍ମରଣ ଯାତ୍ରାରେ ଯିବାବେଳେ ସେହି ମନ୍ଦିରର ମୁଖଶାଳାରେ ରହିବାକୁ ଭାରି ଭଲ ଲାଗେ । ନଦୀରେ ଗାଧୋଇ ଆସି ଦେବଦର୍ଶନ କରିବାର ଆନନ୍ଦଟି ବର୍ଷକରେ ଥରେ ଏଇଠି ଉପଭୋଗ କରିବାକୁ ମିଳେ ! ଆମେ ନଦୀରେ ଗାଧୋଇବା ବେଳେ କେତେଜଣ ମୂଲିଆଣୀ ଆମ ସାଙ୍ଗରେ ଗାଧୋଇଲେ । ସେମାନେ ଭୋଇ ସାହିର ବୋହୁଝିଅ । ଗାଧୋଇ ସାରି ସେମାନଙ୍କୁ ଆମେ କହିଲୁ ଚାଲ- ନିକୁଞ୍ଜବିହାରୀଙ୍କୁ ଦର୍ଶନ କରିବା । ସେମାନେ ମୁହୂର୍ତ୍ତେ ବିଳମ୍ବ ନ କରି ଜବାବ ଦେଲେ- ସେ ଠାକୁର ଯାହାକୁ ଭଲ ଖାଇବାକୁ ଭଲ ପିନ୍ଧିବାକୁ ଦେଇ ଭଲରେ ରଖିଛି, ସେହିମାନେ ଯାଆନ୍ତୁ ସେ ଠାକୁର ଦର୍ଶନ କରିବେ । ଆମେ ମୁଣ୍ଡଝାଳ ତୁଣ୍ଡରେ ମାରି ପେଟ ପୋଷୁ । ଆମର ସେ ଠାକୁର ଦର୍ଶନ ଦରକାର ନାହିଁ । ଏ କଥା ଶୁଣି ମଥାରେ ବଜ୍ରପାତ ହେଲା ପରି ଲାଗିଲା । ଅଦ୍ୱୈତ, ଅଭେଦ, ସମତ୍ୱ ଆଦି ହିନ୍ଦୁଧର୍ମର ମୂଳତତ୍ତ୍ୱ ଯେତେ ବୟାନ କଲେ କ'ଣ ହେବ ? ଆମ ଆଚରଣରେ ଯେଉଁ ବିଷମତା, ଭେଦ ଓ ଦ୍ୱୈତଭାବନା ପୂରି ରହିଛି ତାହାରି ଯୋଗୁ ଦେଶର ଗରିବ ଲୋକେ ଧର୍ମ ପ୍ରତି କିପରି ବୀତଶ୍ରଦ୍ଧ ହେଉଛନ୍ତି ତାହାର ଉଦାହରଣ ଉପଯୁକ୍ତ ଉତ୍ତରରୁ ମିଳିଲା ।

୧୯୬୩ ଅଗଷ୍ଟ ମାସରେ ଶୀର୍ଷା (ମୟୁରଭଞ୍ଜ) ବାଟେ ବିନୋବାଜୀ ଦ୍ୱିତୀୟ ଥର ଓଡ଼ିଶାରେ ପ୍ରବେଶ କଲେ । ମୟୁରଭଞ୍ଜ, ବାଲେଶ୍ୱର, କଟକ, ଢେଙ୍କାନାଳ, ବଣେଇ, ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡି ଜିଲ୍ଲାରେ ପଦଯାତ୍ରା କରି ସେ ଖଡ଼ିଆଳ ରୋଡ଼ ବାଟେ ମଧ୍ୟପ୍ରଦେଶକୁ ଗଲେ । ପଦଯାତ୍ରାର ବ୍ୟବସ୍ଥା, ଅର୍ଥ ସଂଗ୍ରହ, ଗ୍ରାମଦାନ ସଂଗ୍ରହ ଆଦି କାମରେ ଆମେମାନେ ଲାଗି ପଡ଼ିଲୁ ।

ଏହି ପଦଯାତ୍ରା ଆରମ୍ଭ ହେବା ପୂର୍ବରୁ ଶ୍ରୀମତୀ ଆଶା ଦେବୀ ଆର୍ଯ୍ୟ ନାୟକମ୍ ମୋତେ ପଶ୍ଚିମବଙ୍ଗକୁ ପଠାଇବା ପାଇଁ ରମାଦେବୀଙ୍କୁ ଲେଖିଲେ । ସେତେବେଳେ

ବିନୋବାଜୀ ପଶ୍ଚିମବଙ୍ଗରେ ପଦଯାତ୍ରା କରୁଥାନ୍ତି । ସେ ତ ଯେଉଁ ପ୍ରଦେଶରେ ବୁଲୁଥାନ୍ତି ସେହି ପ୍ରଦେଶର ସାହିତ୍ୟ ପଢ଼ନ୍ତି । ପଶ୍ଚିମବଙ୍ଗରେ ସେ ରବୀନ୍ଦ୍ରନାଥଙ୍କ ଗୀତ ବିତାନର ପୂଜା ଅଂଶଟି ପଢ଼ିବା ଆରମ୍ଭ କରିଥାନ୍ତି । ତାଙ୍କ ସ୍ୱାଗତ ସଭା ପ୍ରାର୍ଥନା ସଭାରେ ମଧ୍ୟ ରବୀନ୍ଦ୍ର ସଙ୍ଗୀତ ହିଁ ବୋଲା ହେଉଥାଏ । ତେଣୁ ତାଙ୍କର ଅଧିକାଂଶ ଭାଷଣରେ ସେ ସଭାରେ ବୋଲା ହୋଇଥିବା ରବୀନ୍ଦ୍ର ସଙ୍ଗୀତ ଉପରେ ଭାଷଣ ଦେଉଥାନ୍ତି । ଏହି ସଙ୍ଗୀତ ଓ ସଙ୍ଗୀତ ସମ୍ବନ୍ଧୀୟ ଭାଷଣଗୁଡ଼ିକର ସଂକଳନ କରି ତାହାକୁ ପୁସ୍ତକାକାରରେ ପ୍ରକାଶ କରିବା ଉଦ୍ଦେଶ୍ୟରେ ଆଶା ଦେବୀ ମୋତେ ଡ଼କାଇଥାନ୍ତି । ମୁଁ ପଦଯାତ୍ରାରେ ବିନୋବାଜୀଙ୍କ ସାଙ୍ଗରେ ରହି ଏ କାମ କଲି । ଗୀତ ବିତାନ ଅଧ୍ୟୟନ କରିବା ଫଳରେ ବିନୋବାଙ୍କର ରବୀନ୍ଦ୍ରନାଥଙ୍କ ସମ୍ବନ୍ଧରେ ଯେଉଁ ଧାରଣା ଥିଲା ତାହା ବଦଳି ଗଲା ବୋଲି ସେ ଜୋଡ଼ାସାଁକୋରେ ରବୀନ୍ଦ୍ରନାଥଙ୍କ ଜନ୍ମସ୍ଥାନରେ ନିଜ ଭାଷଣରେ କହିଲେ । ସେ କହିଲେ ଯେ ଗୀତ ବିତାନ ଅଧ୍ୟୟନ ପୂର୍ବରୁ ଏବଂ ପଶ୍ଚିମବଙ୍ଗରେ ପଦଯାତ୍ରା କରିବା ଆଗରୁ ସେ ଯାହା ରବୀନ୍ଦ୍ର ସାହିତ୍ୟ ଅଧ୍ୟୟନ କରିଥିଲେ ସେଥିରୁ ତାଙ୍କର ଧାରଣା ହୋଇଥିଲା ଯେ ରବୀନ୍ଦ୍ରନାଥ ଜଣେ ମହାନ୍ ସଂସ୍କାରକ । ମାତ୍ର ଗୀତ ବିତାନ ଅଧ୍ୟୟନ କରିବା ପରେ ତାଙ୍କର ହୃଦ୍‌ବୋଧ ହେଲା ଯେ ସେ ଜଣେ ସାଧକ ଥିଲେ ଏବଂ ସିଦ୍ଧି ମଧ୍ୟ ଲାଭ କରିଥିଲେ । 'ପେୟେଛି ମୋ ଛୁଟି' ଗୀତଟି ଆବୃତ୍ତି କରି ସେ ରବୀନ୍ଦ୍ରନାଥଙ୍କ ସିଦ୍ଧି ଲାଭ ପ୍ରତିପନ୍ନ କରିଥିଲେ । ଏହି ସଂକଳନ 'ପୂଜାଗୀତ' ନାମରେ ପ୍ରକାଶ ପାଇଲା । ମାତ୍ର ସେଥିରେ ମୂଳ ଉଦ୍ୟୋକ୍ତା ଆଶା ଦେବୀଙ୍କର ନାମ ରହିଲା ନାହିଁ । ପୃଥିବୀରେ ଏହିପରି ଅନେକ କାମରେ ମୂଳ ଉଦ୍ୟୋକ୍ତାଙ୍କ ନାମ ଧରାପୃଷ୍ଠରୁ ଲୁଚି ଯାଉଛି ଓ ଯାଇଛି ।

ପୂଜାଗୀତ ସଂକଳନ ଶେଷ କରି ଓଡ଼ିଶାରେ ବିନୋବାଜୀଙ୍କର ପଦଯାତ୍ରାର ଆୟୋଜନରେ ଲାଗିଲି । ସେତେବେଳକୁ କୋରାପୁଟର ସର୍ବୋଦୟ କର୍ମୀଙ୍କ ମଧ୍ୟରେ ଟିକିଏ ଟିକିଏ ବୈମନସ୍ୟର ଆଭାସ ମିଳିବା ଆରମ୍ଭ ହୋଇଥାଏ । ସେଥିପାଇଁ ବିନୋବାଜୀଙ୍କୁ କୋରାପୁଟ ନେବା ପାଇଁ ଆମେ ସବୁମନ୍ତେ ଚେଷ୍ଟା କରୁଥାଉଁ । ସେ ସ୍ପଷ୍ଟ ଭାବରେ ତାଙ୍କର ମତ ବ୍ୟକ୍ତ କରି ନ ଥାନ୍ତି । କଳାହାଣ୍ଡି ଜିଲ୍ଲାର ପ୍ରଥମ ରହଣୀରେ ଗୋଟିଏ ଖୋଲା ପଡ଼ିଆରେ ତମ୍ବୁ ଭିତରେ ରହିବା ବ୍ୟବସ୍ଥା ହୋଇଥାଏ । ଶୀତଦିନ । ପ୍ରତ୍ୟେକ ତମ୍ବୁ ପାଖରେ ଧୁନି ଲାଗିଥାଏ । ବିନୋବାଜୀ ସନ୍ଧ୍ୟା ପ୍ରାର୍ଥନା ପରେ ତମ୍ବୁ ଦୁଆର ମୁହଁରେ ନିଆଁ ପୋଉଁ ପୋଉଁ କହିଲେ – ମୁଁ ଚିନ୍ତା କରି ଦେଖିଲି ଯେ କୋରାପୁଟରେ

ଯାହା କାମ ହୋଇଛି ଓ ଆଉ ଯାହା ଘଟିଛି, ତଦ୍ୱାରା ମୋଟ୍ ଉପରେ କୋରାପୁଟ ଜିଲ୍ଲା ନିଶ୍ଚିତ ରୂପେ ଲାଭବାନ ହୋଇଛି । କ୍ଷତି ଯାହା ହୋଇଛି ତାହା ଅତି ସାମାନ୍ୟ । ତେଣୁ ସେଥିପାଇଁ ଚିନ୍ତା କରିବା ଦରକାର ନାହିଁ । ଏତକ କହି ସେ ଯେ କୋରାପୁଟ ଏଥର ଯିବେ ନାହିଁ ତାହା ଆମକୁ ସୂଚେଇ ଦେଲେ । ତଥାପି କାଳେ ତାଙ୍କର ମତ ବଦଳିବ ଏହି ଆଶାରେ ତାଙ୍କ ସଙ୍ଗେ ପଦଯାତ୍ରାରେ ଜଗନ୍ନାଥ ନାୟକ ଓ ମୁଁ ରାୟପୁର ପର୍ଯ୍ୟନ୍ତ ରହିଲୁ । ମାତ୍ର ସେତେବେଳକୁ ବିନୋବାଜୀ ଉଆର୍ଦ୍ଧା ଯିବାକୁ ମନ ସ୍ଥିର କରି ସାରିଥିଲେ ।

ଏଥରକ ପଦଯାତ୍ରାର ପ୍ରଭାବ ବଲାଙ୍ଗିର ଓ ରାଉରକେଲା ଉପରେ ଭଲ ଭାବରେ ପଡ଼ିଲା । ବଲାଙ୍ଗିରରେ ବିନୋବାଜୀ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂଦେଓଙ୍କ ସଙ୍ଗେ ଦେଖାକଲେ । ପୂର୍ବରୁ କଳାହାଣ୍ଡିରେ ଶ୍ରୀ ପ୍ରତାପକେଶରୀ ଦେଓ ଗୋପବାବୁଙ୍କ ସହିତ ପଦଯାତ୍ରା କରିଥିଲେ ଏବଂ ଜମି ମଧ୍ୟ ଦାନ କରିଥିଲେ । ମାତ୍ର ଶ୍ରୀ ସିଂଦେଓଙ୍କର ସର୍ବୋଦୟ ଆନ୍ଦୋଳନ ପ୍ରତି ନାତିଶୀତୋଷ୍ଣ ମନୋଭାବ ଥିଲା ପରି ମନେ ହେଉଥିଲା । ବିନୋବାଜୀଙ୍କ ସଙ୍ଗେ ସାକ୍ଷାତ୍ କରିବା ପରେ ଏବଂ ଗାନ୍ଧୀ ଶତବାର୍ଷିକୀ ସମାରୋହ ଉପଲକ୍ଷେ ଦାଦା ଧର୍ମାଧିକାରୀଙ୍କ ଭାଷଣ ଶୁଣିବା ପରେ ସେ ସର୍ବୋଦୟ ବିଚାର ପ୍ରତି ଆକୃଷ୍ଟ ହେଲେ ବୋଲି ଆମେ ଅନୁଭବ କରିଥିଲୁ ।

ରାଉରକେଲାର ସାଧାରଣ ସଭାରେ ଜନସମାବେଶ ଦେଖି ରାଉରକେଲା କାରଖାନାର ଜେନେରାଲ ମ୍ୟାନେଜର ସୁୟମ୍ବାଜାଜୀ ମତ ଦେଲେ ଯେ ଏହା ପୂର୍ବରୁ କୌଣସି ସଭା ଏପରି କି ପଣ୍ଡିତ ନେହେରୁଙ୍କ ସଭା ସୁଦ୍ଧା ଏପରି ସୁନ୍ଦର ଭାବରେ ରାଉରକେଲାରେ ହୋଇ ନ ଥିଲା । କେବଳ 'ଗୀତା ପ୍ରବଚନ' ଏହି ସଭା ପରେ ବିକ୍ରୀ ହୋଇଥିଲା ଆଠଶହ । ବିନୋବାଜୀ ରାଉରକେଲାରୁ ତିନିଶହ ଶାନ୍ତି ସେବକ ସଂଗ୍ରହ କରିବା ପାଇଁ ସୂଚାଇଲେ । ରାଉରକେଲା କାରଖାନାର ବହୁ ଅଫିସର ଯଥା ସର୍ବଶ୍ରୀ ନରେଶ ନାୟକ, ହିରଣ୍ମୟ ମହାନ୍ତି, ପରବର୍ତ୍ତୀ କାଳରେ କାରଖାନାର ଜେନେରାଲ ମ୍ୟାନେଜର ପଦରେ ନିଯୁକ୍ତ ହୋଇଥିବା ଅଗ୍ରୱାଲ ସାହେବ ପ୍ରମୁଖ ଶାନ୍ତି-ସେବକ ହେଲେ । ଏହାର ପରିଣାମ ଜଣା ପଡ଼ିଲା ୧୯୬୪ର ସାଂପ୍ରଦାୟିକ ଗଣ୍ଡଗୋଳ ବେଳେ ।

ଏ ପଦଯାତ୍ରାରେ ବିନୋବାଜୀଙ୍କ ସହିତ ବ୍ୟକ୍ତିଗତ ଘନିଷ୍ଠତା ଟିକିଏ ଅଧିକ ହେଲା । ସନ୍ଧ୍ୟା ପ୍ରାର୍ଥନା ପରେ ସେ ଦିନେ ଦିନେ ମୋତେ କାହାଣୀ କହିବାକୁ କହନ୍ତି । ଦିନେ ଦିନେ ମରାଠୀ ଭାଷାରେ ନିଜେ କାହାଣୀ କହି ମୋତେ ତାର ଓଡ଼ିଆ ଅନୁବାଦ କରିବାକୁ କହନ୍ତି । ଅନ୍ୟାନ୍ୟ ବିଷୟ ମଧ୍ୟ ଆଲୋଚିତ ହୁଏ । ଦିନେ ସେ କହିଲେ-ନିଜ

ଚିତ୍ତକୁ ପ୍ରସନ୍ନ ରଖିବା ହେଉଛି ଗୋଟାଏ ବଡ଼ ସମାଜ ସେବା । ଝାଡୁ ଦେବା, ରିପୋର୍ଟିଂ କରିବା, ରୋଗୀ ସେବା, ରୋଷେଇ ଆଦି ମଧ୍ୟ ସେବା, ମାତ୍ର ଚିତ୍ତ ପ୍ରସନ୍ନ ରଖିବା ହେଉଛି ସବୁଠାରୁ ବଡ଼ ସେବା, କାରଣ ତଦ୍ୱାରା ଆଖପାଖର ଲୋକଙ୍କ ଚିତ୍ତ ମଧ୍ୟ ପ୍ରସନ୍ନ ହୁଏ । ଗୋଟିଏ ଶିଶୁକୁ ଆଣି ଆମ ମଝିରେ ଶୁଆଇ ଦିଆଗଲେ ସେ ହସିଲେ ଆମେ ସମସ୍ତେ ପ୍ରସନ୍ନ ହୋଇଯିବା । ସୂର୍ଯ୍ୟ ଉଇଁଲେ ସୃଷ୍ଟି ପ୍ରସନ୍ନ ହୁଏ । ଫୁଲଟିଏ ଛାଏଁ ଫୁଟେ, ମାତ୍ର ତାକୁ ଦେଖିବା ଲୋକର ଚିତ୍ତ ପ୍ରସନ୍ନ ହୋଇଯାଏ । ଫୁଲ ବା ସେ ଶିଶୁ କିଛି ଦିଏ ନାହିଁ କି ନିଏ ନାହିଁ । ମଣିଷକୁ ପ୍ରସନ୍ନ କରିପାରିବା ଗୋଟାଏ ବଡ଼ କାମ । ତତ୍‌କ୍ଷଣାତ୍ ଖୁଡ଼ୀ ଶିଖାଇଥିବା ରବୀନ୍ଦ୍ରନାଥଙ୍କ ଗୀତ ମନେ ପଡ଼ିଗଲା –

''ନୟନ ଦୁଟି ମେଲିଲେ କବେ ପରାଣ ହବେ ଖୁସି
ଯେ ପଥ ଦିୟା ଚଲିୟା ଯାବ ସବାରେ ଯାବ ତୁଷି ।''

ସୁକିନ୍ଦା ରହଣୀରେ ଏହିପରି ଗଳ୍ପ କରୁ କରୁ ସେ କହିଲେ, ଉପନିଷଦ୍‌ରେ ଯଜ୍ଞର ତିନୋଟି ବିଭାଗ ରହିଛି – ଉଷୋପାସନା, ମଧ୍ୟାହ୍ନ ଉପାସନା ଓ ସାନ୍ଧ୍ୟ ଉପାସନା । ଏହା ଯଥାକ୍ରମେ ଗାୟତ୍ରୀ, ତ୍ରିଷ୍ଟୁପ୍ ଓ ଜଗତୀ ଛନ୍ଦରେ ରଚିତ ଚବିଶ, ଚଉରାଳିଶ ଓ ଅଠଚାଳିଶ ଅକ୍ଷରର ମନ୍ତ୍ର । ମଣିଷର ବୟସ ମଧ୍ୟ ସେହିପରି ଭାବରେ ବିଭକ୍ତ ହୋଇଛି । ମଣିଷର ଆୟୁ ଏକଶହ ଷୋଳ ବର୍ଷ । ପ୍ରଥମ ଚବିଶ ବର୍ଷ ମଣିଷ ବ୍ରହ୍ମଚର୍ଯ୍ୟ ପାଳନ କରି ଜୀବନ କଟାଇବ । ତାହାପର ଚଉରାଳିଶ ବର୍ଷ ସେ ଯଜ୍ଞକର୍ମ କରିବ । ତାହାପର-ଅଠଚାଳିଶ ବର୍ଷ ସେ ଧ୍ୟାନ-ଚିନ୍ତନରେ କଟାଇବ ଅର୍ଥାତ୍ ଭାବନାତ୍ମକ ସେବା କରିବ । ଘୋର ଆଙ୍ଗିରସ ଋଷି ବାସୁଦେବ କୃଷ୍ଣଙ୍କୁ ଏହି ତତ୍ତ୍ୱ କହିଥିଲେ । ମହାଭାରତ ଯୁଦ୍ଧବେଳକୁ ବାସୁଦେବ କୃଷ୍ଣଙ୍କୁ ଅଠଷଠି ବର୍ଷ ହୋଇଥିବାରୁ ସେ ଅସ୍ତ୍ରଧାରଣ କଲେ ନାହିଁ । ମଣିଷର ବୟସ ବଢ଼ିବା ସଙ୍ଗେ ସଙ୍ଗେ କର୍ମର ସ୍ୱରୂପ ମଧ୍ୟ ବଦଳାଇବା ବିଧେୟ ।

ଆଉଦିନେ କହିଲେ, ମୁଁ ବ୍ରିଟିଶ ଜେଲରେ ଥିଲାବେଳେ ଗୀତା, ଉପନିଷଦ, ସନ୍ଥ ସାହିତ୍ୟ ପଢ଼ିବା ପାଇଁ ଚାହିଁବାରୁ ସରକାର ବିନା ଆପତ୍ତିରେ ତାହା ଦେଲେ । ସରକାରଙ୍କୁ ଜଣା ନ ଥିଲା ଯେ ସେହି ସାହିତ୍ୟରେ ଅସଲ ବିପ୍ଳବର ତତ୍ତ୍ୱ ରହିଛି । ଚାଳିଶ ବର୍ଷ ହେଲା ଆମର ଏ ଅହିଂସାତ୍ମକ ଯୁଦ୍ଧ ଚାଲିଛି । ସମଗ୍ର ବିଶ୍ୱର ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ମଣିଷ ଭିତରୁ ଓ ବାହାରୁ ସ୍ୱାଧୀନ ନ ହେବା ପର୍ଯ୍ୟନ୍ତ ଏ ଯୁଦ୍ଧ ଚାଲିଥିବ । ଏ ସର୍ବୋଦୟ ବିଚାର-ସମସ୍ତଙ୍କର କଲ୍ୟାଣ ଏବଂ କାହାରି ହିତର ଅନ୍ୟ କାହାରି ହିତ ସହିତ ବିରୋଧ ନ ରହିବା ବିଚାରଟା ଆମ ଦେଶର ପୁରୁଣା ବିଚାର । କିନ୍ତୁ ତାହା

କାର୍ଯ୍ୟରେ ସାଧିତ ହୋଇ ନାହିଁ । ବିଜ୍ଞାନ ଯୋଗୁ ଏହାକୁ କାର୍ଯ୍ୟକାରୀ କରିବା ଏଣିକି ସହଜ ହେବ ।

ଗ୍ରାମଦାନ ଭୂଦାନ ଆନ୍ଦୋଳନ ଯେ ଅହିଂସାତ୍ମକ ଲଢ଼େଇ ଏ କଥାଟା ବିନୋବାଜୀ ଖୋଲାଖୋଲି ସଭାରେ କହୁ ନ ଥିଲେ, ମାତ୍ର ତାଙ୍କର ଏ ସବୁ ଆଲୋଚନାରୁ ଏହା ଜଣା ପଡ଼ି ଯାଉଥିଲା । ଅନ୍ୟାୟର ପ୍ରତିରୋଧ ବା ପ୍ରତିକାର କିପରି ପୂରାପୂରି ଅହିଂସାତ୍ମକ ପଦ୍ଧତିରେ ହେବ, ସେଥିରୁ କୌଣସି ମନ୍ଦ ପ୍ରତିକ୍ରିୟା ଆଦୌ ଉପୁଜିବ ନାହିଁ, ସେ ବିଷୟରେ ସେ ଚିନ୍ତା କରୁଥିଲେ । ଏହି ଆନ୍ଦୋଳନ ଥିଲା ତା'ର ପ୍ରୟୋଗଶାଳା । ମାନବ ସମାଜରେ ଅହିଂସାର ଉତ୍ତରୋତ୍ତର ବିକାଶର ଲକ୍ଷଣ ବିଷୟରେ ସେ ଦିନେ କହୁ କହୁ କହିଲେ, ପ୍ରଚଳିତ ରାଜ୍ୟ ଶାସନର ନୀତି ହେଉଛି – Resist evil with greater evil ମୂସା (ମୋଜେସ୍) କହିଥିଲେ –Resist evil with equal evil ଅର୍ଥାତ୍ ଯେ ତୁମର ଗୋଟଏ ଦାନ୍ତ ଉପାଡ଼ିଛି ତା'ର ତୁମେ ଗୋଟିଏ ଦାନ୍ତ ଉପାଡ଼ (ଗୋଟିଏ ବଦଳରେ ଦୁଇଟି ଦାନ୍ତ ଉପାଡ଼ ନାହିଁ) ଯୀଶୁଖ୍ରୀଷ୍ଟ କହିଲେ –Resist not evil. ଅର୍ଥାତ୍ ମନକୁ ଉପେକ୍ଷା କରି ତୁମେ ମୈତ୍ରୀ ଓ କରୁଣାର ପଜିଟିଭ କାମ କର ! ଗାନ୍ଧୀ ଓ ଟଲଷ୍ଟୟ କହିଲେ –Resist evil with non-violence. ଯେତେବେଳେ ସମାଜରେ ଅହିଂସାର ପୂର୍ଣ୍ଣ ବିକାଶ ହେବ ସେତେବେଳେ ଅନ୍ୟାୟ ପ୍ରତିକାରର ଅହିଂସାତ୍ମକ ପନ୍ଥା ହେବ –Assist the opposite man in right thinking that is non-violent assistance. ଶୁଦ୍ଧ ଅହିଂସା ହେଉଛି ପ୍ରତିପକ୍ଷ କିପରି ଠିକ୍ ବାଟକୁ ଆସିବ ସେ ଦିଗରେ ତାକୁ ସାହାଯ୍ୟ କରିବା ।

ଏହିସବୁ କଥାରୁ ବିନୋବାଜୀ ଅହିଂସାତ୍ମକ ପନ୍ଥାରେ ସମାଜର ସବୁ ସମସ୍ୟାର ସମାଧାନ କଥା ଚିନ୍ତା କରୁଥିବା ଜଣା ପଡୁଥାଏ । ଦେଶର ଯେ କୌଣସି ସମସ୍ୟାର ସମାଧାନ ପାଇଁ ଅହିଂସାର ପ୍ରୟୋଗରୁ ବିଚ୍ୟୁତ ହେବା ସେ ଠିକ୍ ମଣୁ ନ ଥାନ୍ତି । କାରଣ ହିଂସାତ୍ମକ ପନ୍ଥାର ଚରମ ଉତ୍କର୍ଷ ସାଧିତ ହେବା ପରେ ମାନବ ସମାଜ ଆଗରେ ଅହିଂସା ହିଁ ହେବ ଏକମେବ ପନ୍ଥା । ସାମୂହିକ ଭାବରେ ସେହି ଅହିଂସା ପ୍ରଣାଳୀ ପ୍ରୟୋଗ କରିବାର ଟେକ୍‌ନିକ୍ ବାହାର କରିବା ଦ୍ୱାରା ମାନବ ସମାଜ ସମୃଦ୍ଧ ହେବ, ତେଣୁ ସେହି ଟେକ୍‌ନିକ୍ ପରଖିବାକୁ ଶୋଷଣ ଓ ବିଷମତାକୁ ଲୋପ କରି ସାମ୍ୟଯୋଗୀ ସମାଜ ସ୍ଥାପନ କରିବା ପାଇଁ ଏ ଆନ୍ଦୋଳନ ଗୋଟାଏ ମାଧ୍ୟମ ବୋଲି ମନେ ହେଉଥାଏ ।

ବିନୋବାଜୀଙ୍କର ଗୋଟିଏ ଜୀବନ ଦର୍ଶନ ମୋତେ ଗଭୀର ଭାବରେ ପ୍ରଭାବିତ କଲା ଏବଂ ଗାନ୍ଧୀ-ଜୀବନ ଦର୍ଶନକୁ ସହଜ ବୋଧଗମ୍ୟ କରାଇ ଦେଲା । ନାରୀ ନରକର ଦ୍ୱାର, କାମିନୀ କାଞ୍ଚନ ପୁରୁଷକୁ ପତନ ଆଡ଼କୁ ନେଇ ଯାଆନ୍ତି, ମୋକ୍ଷକାମୀ ବା ଆଧ୍ୟାତ୍ମିକ ସାଧନାରେ ବ୍ରତୀ ପୁରୁଷମାନେ ନାରୀଠାରୁ ଦୂରରେ ରହିବା ଉଚିତ୍ ବୋଲି ଆଧ୍ୟାତ୍ମିକ ସାଧନା କ୍ଷେତ୍ରରେ ଯେଉଁ ଆପ୍ତବାକ୍ୟମାନ ରହିଛି ତାହା ନାରୀ ମନରେ ସୁଦ୍ଧା ନିଜ ବାବଦରେ ଘୃଣା ସୃଷ୍ଟି କରୁଥିବାର ମୁଁ ଅନୁଭବ କରିଛି ଏବଂ ନାରୀ ଜାତି ମଧ୍ୟରେ ସୁଦ୍ଧା ଏ ବାବଦରେ ଏକ ଅପରକୁ ଅପରାଧୀ କରିବାର ବୃତ୍ତି ଦେଖିଛି । ଗାନ୍ଧିଜୀ ଦୃଢ଼ ଭାବରେ ଏହି ବିଚାର ଉପରେ କୁଠାରଘାତ କରିଥିଲେ, ଉଦାହରଣ ସ୍ୱରୂପ ଲକ୍ଷ୍ମଣଙ୍କର ବ୍ରହ୍ମଚର୍ଯ୍ୟ ଯେତେବେଳେ "ନାହଂ ଜାନାମି କେୟୁରେ ନାହଂ ଜାନାମି କୁଣ୍ଡଲେ ନୂପୁରେ ତ୍ୱଭିଜାନାମି ନିତ୍ୟଂ ପାଦାର୍ଭି ବନ୍ଦନାତ୍" ଉଚ୍ଚ ପ୍ରଶଂସିତ ହେଉଥିଲା ସେତେବେଳେ ସେ ସେ ପ୍ରକାର ବ୍ରହ୍ମଚର୍ଯ୍ୟକୁ ପୂରାପୂରି ନାପସନ୍ଦ କରିଥିଲେ । ହାତ ପୋଡ଼ିଯିବ ବୋଲି ନିଆଁ ପାଖରୁ ଦୂରେଇ ରହିବା ଅପେକ୍ଷା ନିଆଁକୁ ଯଥାଯଥ ଭାବରେ ବ୍ୟବହାର କରି ଶିଖିବା ହିଁ ଉଚିତ - ଏଇଟା ଥିଲା ତାଙ୍କର ମତ । ସେଇଥିପାଇଁ ତାଙ୍କ ନେତୃତ୍ୱରେ ଏ ଦେଶରେ ଅଭୂତପୂର୍ବ ନାରୀ ଜାଗରଣ ହୋଇ ପାରିଲା ।

ବିନୋବାଜୀ ଆଉ ଗୋଟିଏ ବିଚାର ଦର୍ଶନରେ ବିପ୍ଳବ ଘଟାଇଲେ । ସ୍ତ୍ରୀ, ପୁତ୍ର ପରିବାର ପ୍ରତି ସ୍ନେହ ମମତା ବା ଆସକ୍ତି ଓ ଧନାଗମ ତୃଷ୍ଣାରୁ ମୁକ୍ତ ନ ହେଲେ ଆଧ୍ୟାତ୍ମିକ ସାଧନା କରି ହେବ ନାହିଁ । ସନ୍ତାନ, ପରିବାର ପ୍ରତି ମଣିଷର ସ୍ନେହ ମମତା ହିଁ ମଣିଷକୁ କର୍ମ କରିବା ପାଇଁ ମୁଖ୍ୟତଃ ପ୍ରେରଣା ଦେଇଥାଏ । ସେହି ସ୍ନେହ ମମତାରୁ ନିଜକୁ ଓହରେଇ ଆଣି ବୈରାଗୀ ନ ହେଲେ ମୁକ୍ତି ମିଳିବ ନାହିଁ - ଏଇଟା ଗୋଟାଏ ଜୀବନ ଦର୍ଶନ । ଅବଶ୍ୟ ରବୀନ୍ଦ୍ରନାଥ କହିଛନ୍ତି ଯେ "ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର୍ ନହେ, ଅସଂଖ୍ୟ ବନ୍ଧନ୍ ମାଝେ ମହାନନ୍ଦମୟ ଲଭିବ ମୁକ୍ତି ସ୍ୱାଦ୍-" କିନ୍ତୁ ବିନୋବାଜୀ ଏ ବିଚାରକୁ ଆଉ ଗୋଟାଏ ସ୍ତରକୁ ନେଇଯାଇ କହିଲେ ଯେ ସନ୍ତାନ ଓ ପରିବାର ପ୍ରତି ତୁମର ଯେଉଁ ସ୍ନେହ ଓ ଆସକ୍ତି ରହିଛି ତାକୁ ଆହୁରି ପ୍ରସାରିତ କରିଦିଅ । ସ୍ନେହର ପରିସରକୁ ବ୍ୟାପକ କରିବାରେ ହିଁ ମଣିଷ ଜୀବନର ସାର୍ଥକତା ନିହିତ । ସ୍ନେହ ଯେତେ ବ୍ୟାପକ ହେବ, ଆନନ୍ଦ ସେତେ ସହଜଲବ୍ଧ ହେବ । ଧନ ସଂଗ୍ରହ କରିବାର ଯେଉଁ ସାମର୍ଥ୍ୟ ଓ ବାସନା ତୁମ ମନରେ ରହିଛି, ତାକୁ ପରିବାରର ସ୍ୱାର୍ଥ ସାଧନାରେ ଆବଦ୍ଧ ନ ରଖି ସମାଜର ନିଜ ଗାଁର ସ୍ୱାର୍ଥ ସାଧନାରେ ନିୟୋଜିତ କର । ଅବଶ୍ୟ ଏ

ସବୁ ତତ୍ତ୍ୱ ବୁଝାଇବାର ମାଧ୍ୟମ ଥିଲା ଗ୍ରାମଦାନ ଋଷିଆରେ ସାମୁହିକ (Collective farming)ର ପ୍ରଚଳନ ଦ୍ୱାରା ଉତ୍ପାଦନ ବୃଦ୍ଧି ଆଶାନୁରୂପ ନ ହେବାରୁ ଚାଷୀକୁ ବ୍ୟକ୍ତିଗତ ଭାବରେ ଚାଷ କରିବା ପାଇଁ ଅଳ୍ପ ଅଳ୍ପ ଜମି ଦିଆଯିବା ଉଦାହରଣ ଦର୍ଶାଇ ନିଜ ସନ୍ତାନ, ନିଜ ପରିବାର ପାଇଁ ଖଟିବା ପଛରେ ଯେ ଗୋଟାଏ ପ୍ରକାର ପ୍ରେରଣା ରହିଛି ତାହା ରକ୍ଷା କରିବାକୁ ଗ୍ରାମଦାନରେ ଜମିର ମାଲିକାନା ସତ୍ୱ ଗ୍ରାମସଭା ହାତରେ ଦେଇ କିଛି ଜମି ବ୍ୟକ୍ତିଗତ ରୁଚି ଅନୁସାରେ (ଅବଶ୍ୟ ଯେଉଁ ରୁଚି ସମୂହ ସ୍ୱାର୍ଥର ବିରୋଧୀ ହୋଇ ନ ଥିବ) ଏବଂ କିଛି ଜମି ସମବାୟ ପଦ୍ଧତିରେ ଚାଷ କରିବା ବିଚାର ସେ ଦେଶ ଆଗରେ ଥୋଇଥିଲେ । ଏଇ ସଂଦର୍ଭରେ ସେ ସ୍ନେହ ମମତା ଓ ଧନାରାମ ତୃଷ୍ଣାକୁ ପ୍ରସାରିତ କରି ମଣିଷକୁ ''ବିଶ୍ୱମୈତ୍ରୀ'' ଆଡ଼କୁ ବା ନିଜକୁ ସମସ୍ତଙ୍କ ମଧ୍ୟରେ ଦେଖିବା ବୃତ୍ତି ଆଡ଼କୁ ଆଗେଇ ନେବାକୁ ପ୍ରରୋଚିତ କରୁଥିଲେ । ଏହି ସୁନ୍ଦର ସଜୀବ ବିଶ୍ୱକୁ ମାୟା ମାୟା କହି ମିଥ୍ୟା ପ୍ରତିପନ୍ନ କରାଇବା-ଜୀବନ ଦର୍ଶନକୁ ମୋ ପରି ଜଣେ ସନ୍ତାନବତୀ ଅଜ୍ଞାନୀ ସ୍ତ୍ରୀ ପକ୍ଷରେ ଗ୍ରହଣ କରିବା ବଡ଼ କଷ୍ଟସାଧ୍ୟ ହେଉଥିଲା । ସ୍ନେହକୁ ପ୍ରସାରିତ କରିବାର ବିନୋବା ଜୀବନ ଦର୍ଶନ ମୋତେ ସହଜ ବୋଧ ହେଲା । ମୁଁ ମୋର ବ୍ୟକ୍ତିଗତ ଅନୁଭୂତିକୁ ମନେ ପକାଇଲି । ମୋର ପ୍ରଥମ ସନ୍ତାନ ହେବା ପରେ ମୋର ମନେ ହେଲା ମୋର ଭଲ ପାଇବାର ପୁଞ୍ଜି ନିଃଶେଷ ହୋଇଗଲା । ଯେତେବେଳେ ମୋର ଦ୍ୱିତୀୟ ଥର ସନ୍ତାନ ସମ୍ଭାବନା ହେଲା, ମୋ ମନରେ ସବୁଠାରୁ ବଡ଼ ଦ୍ୱନ୍ଦ୍ୱ ସୃଷ୍ଟି ହେଲା ଯେ ମୁଁ ମୋର ପ୍ରଥମ ସନ୍ତାନକୁ ତ ସବୁ ସ୍ନେହ ଦେଇ ସାରିଛି, ଏହାପାଇଁ ତ ମୋ ପାଖରେ ଆଉ କିଛି ନାହିଁ, ମୁଁ ଏହାକୁ ବଞ୍ଚିତ କରି କେତେ ବଡ଼ ପାପ ନ କରିବି ! ମାତ୍ର ଦ୍ୱିତୀୟ ସନ୍ତାନ ଭୂମିଷ୍ଠ ହେବା ମାତ୍ରେ ମୋର ପ୍ରଥମ ସନ୍ତାନକୁ ମୁଁ ଯେତିକି ଭଲ ପାଉଥିଲି ଏହାକୁ ମଧ୍ୟ ସେତିକି ଭଲ ପାଇଲି । ଏହା ଅନୁଭବ କରି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲି । ସ୍ନେହର ପରିସର ବଢ଼େଇ ବଢ଼େଇ ସମଗ୍ର ବିଶ୍ୱକୁ ଭଲ ପାଇବାର ଏ ଯେଉଁ ପଦ୍ଧତି ବିନୋବାଜୀ ବତେଇଲେ ତାହା ସହିତ ମୋର ସେହି ସନ୍ତାନ ସ୍ନେହ ଦ୍ୱନ୍ଦ୍ୱର ଅନୁବନ୍ଧ କରି ମୁଁ ଉପଲବ୍ଧି କଲି ଯେ ମଣିଷ ମନରେ ଏତେ ସ୍ନେହ ପୂରି ରହିଛି ଯେ ସମଗ୍ର ବିଶ୍ୱକୁ ଭଲ ପାଇ ସାରି ସୁଦ୍ଧା ସେ ସ୍ନେହ ଶେଷ ହେବ ନାହିଁ । ସ୍ନେହର ପରିସର ବଢ଼ାଇ ସଂକୀର୍ଣ୍ଣ ସ୍ୱାର୍ଥ ପାଖରୁ ମୁକ୍ତ ହେବାର ଏହି ସାଧନାରୁ ମୋତେ ବହୁତ ଆଶ୍ୱାସନା ମିଳିଲା ।

ଅନେକ ଦିନରୁ ମନରେ ଜମି ରହିଥିବା ଅନେକ ଛୋଟ ଛୋଟ ପ୍ରଶ୍ନର ଉତ୍ତର ମୋତେ ବିନୋବା ସନ୍ନିଧିରୁ ମିଳୁଥିଲା । ଉଦାହରଣ ସ୍ୱରୂପ ମୁଁ ଶ୍ରୀ ଚନ୍ଦ୍ରଶେଖର ମିଶ୍ରଙ୍କ

ପାଖରେ ପିଲାଦିନେ ପାଠ ପଢୁଥିଲା ବେଳେ ଦିନେ ସେ ଗଛରୁ ଫୁଲ ଛିଣ୍ଡାଇବା କିପରି କୁରୁଚିପୂର୍ଣ୍ଣ ଆଚରଣ ତାହା ମୋତେ ବୁଝାଇଲେ । ତାଙ୍କର ବୁଝାଇବା ଶୈଳୀ ମୋତେ ଏତେଦୂର ପ୍ରଭାବିତ କଲା ଯେ ଘରେ ଫୁଲଦାନୀ ରଖି ଫୁଲ ସଜାଇବା ବା କାହାରିକୁ ଫୁଲମାଳ ଦେଇ ଅଭ୍ୟର୍ଥନା କରିବା ସୁଦ୍ଧା ମୋତେ ସୁହାଇଲା ନାହିଁ । ସେଥିପାଇଁ ନଡ଼ିଆ ଦେଇ ଅଭ୍ୟର୍ଥନା କରିବା ଚଳଣି ଚଳାଇବା ପାଇଁ ମୁଁ ଚେଷ୍ଟା କଲି । ଠାକୁର ପୂଜାରେ ଫୁଲ ଲାଗି କରିବା ବିଧି ତ ରହିଛି । ମାତ୍ର ମୋ ବିବେକ ଠାକୁର ପୂଜା ପାଇଁ ଫୁଲ ଛିଣ୍ଡାଇବାଟାକୁ ଆଦୌ ଅନୁମୋଦନ କରେ ନାହିଁ । ମାତ୍ର ମୁଁ ତାର ବିରୋଧ କରି ପାରୁ ନ ଥାଏ । ବିନୋବାଜୀ ଠାକୁର ପୂଜାରେ ଫୁଲ ଲାଗି କରିବାର ଗୋଟାଏ ସୁନ୍ଦର ଅର୍ଥ କରି କହିଲେ - ଈଶ୍ୱରଙ୍କ ଠାରେ ସୁମନ ଲାଗି କରିବା ବିଧି ରହିଛି । ସୁମନର ଅର୍ଥ ହେଲା ସୁନ୍ଦର ଶୁଭ ମନ । ନିଜ ମନକୁ ସୁନ୍ଦର, ଶୁଭ, ସ୍ୱଚ୍ଛ କରି ଠାକୁରଙ୍କ ପୂଜା କରିବା ହିଁ ପ୍ରକୃତ ସୁମନ ଲାଗି । ମୋତେ ସମାଧାନ ମିଳିଗଲା ।

ଅହିଂସା ପ୍ରଥମଂ ପୁଷ୍ପଂ
ଦ୍ୱିତୀୟଂ କରଣଗ୍ରହଃ
ତୃତୀୟଞ୍ଚ ଭୂଦେୟ
ଚତୁର୍ଥଂ କ୍ଷାନ୍ତିରେବ ଚ ॥
ଶମସ୍ତୁ ପଞ୍ଚମଂ ପୁଷ୍ପଂ
ଦମଃ ଷଷ୍ଠଂ ଚ ସପ୍ତମମ୍
ଧ୍ୟାନଂ ସତ୍ୟଂ ଚାଷ୍ଟମଂଚ
ହ୍ୟେତୈସ୍ତୁଷ୍ୟତି କେଶବଃ ॥

(ଅହିଂସା, ଇନ୍ଦ୍ରିୟ ସଂଯମ ସବୁ ଜୀବଙ୍କ ପ୍ରତି ଦୟା, କ୍ଷମା, ଶମ, ଦମ, ଧ୍ୟାନ ଓ ସତ୍ୟ ଏହି ଆଠୋଟି ଫୁଲ ଲାଗି କଲେ ଭଗବାନ ତୋଷ ହୁଅନ୍ତି । )

ସ୍ୱରାଜ୍ୟ ପରେ ସେକ୍ୟୁଲାର ଶବ୍ଦଟା ବହୁତ ବ୍ୟବହୃତ ହେଲା । (Secular State) ସେକ୍ୟୁଲାର୍ ଷ୍ଟେଟ୍-ଧର୍ମ ନିରପେକ୍ଷ ରାଷ୍ଟ୍ର ଶବ୍ଦଟାରେ ସର୍ବଧର୍ମ ସମଭାବ କଥାଟା ପରିସ୍ଫୁଟ ହେଉ ନ ଥିଲା । ଦିନେ ବିନୋବାଜୀ ଗପ କରୁ କରୁ କହିଲେ ସେକ୍ୟୁଲାର ବୋଇଲେ ନିର୍ମଳ କର୍ମ । ସମାଜରେ ଏକତା ଓ ସଦ୍‌ଭାବନାର ପ୍ରସାର ପାଇଁ ଯେଉଁ କର୍ମ କରାଯାଏ ତାହାହିଁ ନିର୍ମଳ କର୍ମ । ଯୁକ୍ତିଟାରେ ମନ ମାନିଗଲା ।

ଦିନେ ସେ କହିଲେ - ସନ୍ତାନ ତିନି ପ୍ରକାର - ଯୋଗଜନ୍ୟ, ଭୋଗଜନ୍ୟ ଓ ପାପଜନ୍ୟ । ଯେଉଁ ବାପ ମାଆ ଯଜ୍ଞକର୍ମ ଅର୍ଥାତ୍ ପରୋପକାର ଓ ଶରୀରଶ୍ରମ କରନ୍ତି ଏବଂ ଭଗବାନଙ୍କୁ ସନ୍ତାନ ମାଗନ୍ତି ପୁଣି ସନ୍ତାନ ଉପଯୁକ୍ତ ମଣିଷର ରୂପ, ଗୁଣ, ସ୍ୱାସ୍ଥ୍ୟ ଧାରଣ କରି ଆସିବ, ସେ ଦିଗରେ ସତତ ସାବଧାନ ରହନ୍ତି, ସେମାନଙ୍କ ସନ୍ତାନ ଯୋଗଜନ୍ୟ ।

ଯେଉଁ ବାପ ମାଆ ଯଜ୍ଞ କର୍ମ କରନ୍ତି ମାତ୍ର ସନ୍ତାନ କାମନା କରୁ ନ ଥାନ୍ତି, ସ୍ତ୍ରୀ ପୁରୁଷ ଭୋଗରୁ ଯେଉଁ ସନ୍ତାନ ଜନ୍ମଲାଭ କରେ, ତାହାକୁ ବାତ୍ସଲ୍ୟ ମମତାର ବଶବର୍ତ୍ତୀ ହୋଇ ପାଳନ କରନ୍ତି ସେ ସନ୍ତାନ ଭୋଗଜନ୍ୟ ।

ଯେଉଁ ବାପମାଆ କୌଣସି ଶରୀରଶ୍ରମ ବା ପରୋପକାର ନ କରି ବିନାଶ୍ରମରେ ସୁଖ ଭୋଗ କରନ୍ତି ଏବଂ ସନ୍ତାନ ଲାଭର ବାସନା ନ ଥାଇ ଯେଉଁ ସନ୍ତାନ ଭୋଗରୁ ଜନ୍ମଲାଭ କରେ, ସେହି ପାପଜନ୍ୟ ସନ୍ତାନ ପୃଥିବୀକୁ ଭାରସ୍ୱରୂପ ହୋଇଥାଏ । ଦିନେ ସ୍ୱର୍ଗ ନରକ କଥା ପଡ଼ିଲା । ବିନୋବାଜୀ କହିଲେ ମଣିଷ ଯେପରି ନିଦରେ ଶୋଇଥିବା ବେଳେ ସୁଖସ୍ୱପ୍ନ ଦେଖିଲେ ତାହା ଅବାସ୍ତବ ହୋଇଥିଲେ ହେଁ ସୁଖ ଅନୁଭବ କରେ ପୁଣି ଦୁଃସ୍ୱପ୍ନ ଦେଖିଲେ ଦୁଃଖରେ କାତର ହୁଏ ଏବଂ ଆଦୌ ସ୍ୱପ୍ନ ନ ଦେଖି ଗଭୀର ନିଦରେ ଶୋଇ ପଡ଼ିଲେ ପ୍ରଶାନ୍ତି ଅନୁଭବ କରେ ସେହିପରି ଜୀବାତ୍ମା ଯଦି ନିଜ ମନକୁ ବାସନାମୁକ୍ତ କରି ପାରିଥାଏ, ମୃତ୍ୟୁ ପରେ ସେ ପ୍ରଶାନ୍ତି ଲାଭ କରେ । ଶୁଭ ବାସନା ଘେନି ମରିଥିଲେ ସୁଖସ୍ୱପ୍ନ ଦେଖିବା ପରି ସୁଖ ଭୋଗ କରେ, ଦୁର୍ବାସନା ଘେନି ମରିଥିଲେ ଦୁଃସ୍ୱପ୍ନ ଦେଖିବା ପରି ଯାତନା ଅନୁଭବ କରେ । ଏହାହିଁ ନିର୍ବାଣ, ସ୍ୱର୍ଗ ଓ ନରକ ।

ଏହିପରି ଏଣୁତେଣୁ କେତେ କଥା !

ରାୟପୁରରେ ସର୍ବୋଦୟ ସମ୍ମିଳନୀରେ ତ୍ରିବିଧ କାର୍ଯ୍ୟକ୍ରମ-ଗ୍ରାମଦାନ, ଶାନ୍ତିସେନା ଓ ଗ୍ରାମାଭିମୁଖୀ ଖଦୀ- ଗ୍ରହଣ କରିବା ପ୍ରସ୍ତାବ ଗୃହୀତ ହେଲା । ସେଠାରୁ ଫେରିବା ପରେ ନିଖିଳ ଭାରତ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଯୋଗ ଦେଉଥିବା ପ୍ରତିନିଧିମାନଙ୍କୁ ଭୂଦାନ ଗ୍ରାମଦାନ ଆନ୍ଦୋଳନ ପ୍ରତି ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ପ୍ରଦର୍ଶନୀ ଓ ପ୍ରଚାରପତ୍ର ପ୍ରସ୍ତୁତ କରିବା କାମରେ ଲାଗିଲୁ । ମନେ ପଡୁଥାଏ ୧୯୩୧ ମସିହାରେ ପୁରୀରେ କଂଗ୍ରେସ ଅଧିବେଶନ ହେବା କଥା ଥିଲା । କେତେ ଆୟୋଜନ, କେତେ ଅରଦୋଳି ଲାଗିଥିଲା !

୧୯୬୪ ମସିହାରେ ପ୍ରଥମ ଥର ପାଇଁ ଏ ଅଧିବେଶନ ଭୁବନେଶ୍ୱରରେ ହେଲା । ବ୍ୟବସ୍ଥା, ସାଜସଜ୍ଜା ଆଦି ସମୁଦାୟ ଆୟୋଜନ ପ୍ରତିନିଧିମାନଙ୍କ ଦ୍ୱାରା ପ୍ରଶଂସିତ ହେଲା । ବିଜୁ ପଟ୍ଟନାୟକଙ୍କ ପ୍ରତିପକ୍ଷ ଓ କଟୁ ସମାଲୋଚକ ସୁଦ୍ଧା ତାଙ୍କର କାର୍ଯ୍ୟଦକ୍ଷତା ଓ ରୁଚିଜ୍ଞାନର ସ୍ତାବକ ପାଲଟି ଗଲେ ।

ପ୍ରଦର୍ଶନୀରେ ଭୂଦାନ ଗ୍ରାମଦାନ ଆନ୍ଦୋଳନରେ ବିଚାର ପ୍ରଚାର ଓ ଆନ୍ଦୋଳନର ଅଗ୍ରଗତି ଦର୍ଶାଇବା ଉଦ୍ଦେଶ୍ୟରେ ଷ୍ଟଲ୍ ଖୋଲା ହେଲା । ଚିତ୍ତାକର୍ଷକ ଇଂରାଜୀ ଭାଷାରେ ରିପୋର୍ଟ ଛପାଇ ପ୍ରତ୍ୟେକ ପ୍ରତିନିଧିଙ୍କ ପାଖରେ ତାହା ପହଞ୍ଚାଇବାକୁ ପାଗୁପର୍ଯ୍ୟନ୍ତ ଚେଷ୍ଟା କରି ସଫଳ ହେଲୁ । ବିନୋବାଜୀଙ୍କର ବକ୍ତୃତାଗୁଡ଼ିକର ଯେଉଁ ରେକର୍ଡ଼ ଲୋକସମ୍ପର୍କ ବିଭାଗଙ୍କ ଆନୁକୂଲ୍ୟରେ ତିଆରି ହୋଇଥିଲା, ସେହି ରେକର୍ଡ଼ ବଜାଇବା ଦ୍ୱାରା ପ୍ରତିନିଧି ଓ ସାଧାରଣ ଲୋକେ ବିନୋବାଜୀଙ୍କର ବକ୍ତବ୍ୟ ଶୁଣି ପାରିଲେ ।

୧୯୬୪ ମସିହା ମାର୍ଚ୍ଚ ଅଠର ତାରିଖ ରାତି ସାଢ଼େ ଏଗାରଟା । ରାଉରକେଲାରୁ କ୍ଷେତ୍ରବାସୀ ପତି ଟେଲିଫୋନ୍ ଯୋଗେ ରମାଦେବୀଙ୍କୁ ଜଣାଇଲେ ଯେ ପୂର୍ବ ପାକିସ୍ତାନରୁ ଆସୁଥିବା ଶରଣାର୍ଥୀଙ୍କ ସ୍ପେଶାଲ ଟ୍ରେନ୍ ରାଉରକେଲା ବାଟେ ମଧ୍ୟପ୍ରଦେଶକୁ ଯାଉଥିବା ବେଳେ ଗାଡ଼ି ଷ୍ଟେସନରେ ଅଟକୁଛି । ଶରଣାର୍ଥୀମାନେ ସେମାନଙ୍କ ଉପରେ ହୋଇଥିବା ଅତ୍ୟାଚାରର ବର୍ଣ୍ଣନା କରୁଛନ୍ତି । ଲୋକେ ତାହା ଶୁଣି ଉତ୍ତେଜିତ ହେଲେଣି । ଯେକୌଣସି ସମୟରେ ସାଂପ୍ରଦାୟିକ ଗଣ୍ଡଗୋଳର ସମ୍ଭାବନା ଦେଖାଗଲାଣି । ତେଣୁ ମୁଖ୍ୟମନ୍ତ୍ରୀଙ୍କୁ ଏହା ଜଣାଇ ପରିସ୍ଥିତିର ମୁକାବିଲା କରିବା ଦରକାର ।

ରାତି ପାହିଲାରୁ ରମାଦେବୀଙ୍କ ନିର୍ଦ୍ଦେଶରେ ମୁଖ୍ୟମନ୍ତ୍ରୀ ଶ୍ରୀ ବୀରେନ୍ ମିତ୍ରଙ୍କୁ ଦେଖାକରି ଏ ଖବର ଦେଲି । ସେ କଥାଟା ହସରେ ଉଡ଼ାଇଦେଇ କହିଲେ – ‘‘ମା’କୁ କହିବୁ ସେ ନିଶ୍ଚିନ୍ତ ରହିବ । ରାଉରକେଲାରେ ଦଂଗା ହେବ ନାହିଁ ।’’ କିନ୍ତୁ ରମାଦେବୀ ଟେଲିଫୋନ୍ ଯୋଗେ ନବକୃଷ୍ଣ ଚୌଧୁରୀଙ୍କୁ ରାଉରକେଲା ପରିସ୍ଥିତି ଜଣାଇ ରାଉରକେଲା ଯିବା ପାଇଁ କହିଲେ । ନବକୃଷ୍ଣ ଚୌଧୁରୀ, ରାଧାଶ୍ୟାମ ମହାରାଜ ଓ ଶରତଚନ୍ଦ୍ର ମହାରଣା ରାଉରକେଲାକୁ ଏବଂ ହରମୋହନ ପଟ୍ଟନାୟକ, ନିର୍ମଳଚନ୍ଦ୍ର ରାୟ ଝାରସୁଗୁଡ଼ାକୁ ଯିବା ସ୍ଥିର ହେଲା ।

ରାତି ବାରଟାବେଳେ ରାଉରକେଲା ଶାନ୍ତି କେନ୍ଦ୍ରର ପରିଚାଳକ ଶ୍ରୀ କ୍ଷେତ୍ରବାସୀ ପତିଙ୍କ ଠାରୁ ଟେଲିଫୋନ ଯୋଗେ ଖବର ମିଳିଲା ଯେ ରାଉରକେଲା ଫଳଦୋକାନ ପାଖରେ ଜଣକୁ ମାରିଦିଆଗଲାଣି । ଦଂଗା ଆରମ୍ଭ ହେଲାଣି । ପୁଲିସ ପରିସ୍ଥିତି ସମ୍ଭାଳିବାକୁ

ଅସମର୍ଥ । ଉଡ଼ାଜାହାଜ ଯୋଗେ ସୈନ୍ୟଙ୍କୁ ଅଣାଇବା ଦରକାର । ଲାଇଟ୍‌ନିଙ୍ଗ କଲ୍ କରି ମୁଖ୍ୟମନ୍ତ୍ରୀଙ୍କୁ ଏହା ଜଣାଇବାରୁ ସେ କହିଲେ ଯେ, ସେ ସୈନ୍ୟ ପଠାଇବା ବ୍ୟବସ୍ଥା କରି ସାରିଲେଣି ।

ରାଉରକେଲାରେ ଲୋକେ କିପରି ଉନ୍ମତ୍ତ ହୋଇ ଅମାନୁଷିକ କାରବାର କଲେ ତାହାର ତଥ୍ୟସମ୍ବଳିତ ବର୍ଣ୍ଣନା *'Time to Speak'* ପୁସ୍ତିକାରେ ଦିଆହୋଇଛି । ସାଧାରଣତଃ ଅନେକେ ଭାବନ୍ତି ଯେ ହିନ୍ଦୁମାନେ କ୍ରୂରକର୍ମା ହୁଅନ୍ତି ନାହିଁ । ମାତ୍ର ରାଉରକେଲାରେ ଯାହା ଘଟିଲା, ତାହା ମହାଭାରତର ଦ୍ରୌପଦୀ ବସ୍ତ୍ର ହରଣ, ଯତୁଗୃହଦାହ ଆଦିଠାରୁ ବଳିଗଲା । ବ୍ରିଗେଡ଼ିଅର ରେଜା ତାଙ୍କର ରେଜିମେଣ୍ଟ ନେଇ ପହଞ୍ଚିବା ପରେ ମଧ୍ୟ ରାଉରକେଲା ଶାନ୍ତ ହୋଇ ନ ଥିଲା । ନବକୃଷ୍ଣ ଚୌଧୁରୀଙ୍କ ସହିତ ପରାମର୍ଶ କରି ସେ ଶାନ୍ତିସ୍ଥାପନ କାମ ଆରମ୍ଭ କଲେ । ମାଳତୀ ଚୌଧୁରୀଙ୍କ ସାଙ୍ଗରେ ମୁଁ ରାଉରକେଲା ଯାଇ ଦେଖିଲି ଜଲ୍‌ଦାରେ ଦଂଗାରେ ହତ ମୃତଦେହକୁ ପୋଡ଼ିବା ପାଇଁ ସୈନ୍ୟଦଳ ଯେଉଁ ନିଆଁ ଜାଳିଥିଲେ ତାହା ଏପ୍ରିଲ ଚାରି ତାରିଖ ପର୍ଯ୍ୟନ୍ତ ଜଳୁଛି ।

ସମୁଦାୟ ସୁନ୍ଦରଗଡ଼ ଜିଲ୍ଲାର ଦଂଗାହତମାନଙ୍କ ବିଧବା ପତ୍ନୀ, ଆତ୍ମୀୟ ଓ ସନ୍ତାନସନ୍ତତିଙ୍କୁ ଥଇଥାନ କରିବା କାମରେ ଆମେ ଲାଗିପଡ଼ିଲୁ । ସେମାନେ ଏ ଘଟଣାପରେ ହତବୁଦ୍ଧି ହୋଇଯାଇଥାନ୍ତି । ଏକନମ୍ବର ସେକ୍ଟରରେ କେତେଗୁଡ଼ିଏ କୋଠାଘର ନୂଆ ତିଆରି ହୋଇଥାଏ । ସେଥିରେ ଲୋକ ରହି ନ ଥାନ୍ତି । କେତେଜଣ ଲୋକ ଆସି ନବବାବୁଙ୍କୁ ଖବର ଦେଲେ ଯେ ସେହି ଘର ଭିତରେ ଜଣେ ମୁସଲମାନ ଲୋକ ଲୁଚି ରହିଛି । (ସବୁ ମୁସଲମାନଙ୍କୁ ସେତେବେଳେ ତ୍ରାଣ ଶିବିରରେ ରଖାଯାଇଥାଏ) ନବବାବୁଙ୍କ ନିର୍ଦ୍ଦେଶରେ ମୁଁ ଗୋଟିଏ ଷ୍ଟେସନୱାଗନ୍‌ରେ ବସି ସେହି ମୁସଲମାନ୍ ଭାଇକୁ ଆଣିବାକୁ ଗଲି । ପ୍ରତ୍ୟେକ କୋଠାରେ ଖୋଜି ଖୋଜି ଗୋଟିଏ କୋଠାରେ ଭିତରୁ ଦ୍ୱାର ବନ୍ଦ ଥିବାର ଦେଖି ଦ୍ୱାର ବାଡ଼େଇଲି । ଅନେକ ସମୟ ପର୍ଯ୍ୟନ୍ତ ଦ୍ୱାର ବାଡ଼େଇବା ପରେ ଲୋକଟି ଦ୍ୱାର ଖୋଲିଲେ । ତାଙ୍କର ଦୃଷ୍ଟିରେ ଆତଙ୍କ ଫୁଟି ଉଠିଥାଏ । ସେ ହତଚକିତ ହୋଇ ଚାହିଁ ରହିଲେ । ମୁଁ ତାଙ୍କୁ ମୋ ସାଙ୍ଗରେ ଗାଡ଼ିକୁ ଆସିବାକୁ କହିଲି । ଦୁଇ ତିନି ମିନିଟକାଳ ସେ ମୋ ମୁହଁକୁ ବଙ୍କା ହୋଇ ଚାହିଁ ରହିଲେ । ମୁଁ ତାଙ୍କ ପିଠି ଆଉଁଷି ପ୍ରବୋଧନା ଦେବା ପରେ ସେ ଆସି ଗାଡ଼ିରେ ବସିଲେ । ମାର୍ଚ୍ଚ ୧୯ ତାରିଖର ମଣିଷ ଶିକାର ଦେଖି ସେ ଭୟରେ ସେଠାରେ ଲୁଚି ରହିଥିଲେ । ଜଣେ ଗୁରଖା ପ୍ରହରୀ ତାଙ୍କୁ ମଧ୍ୟେ ମଧ୍ୟେ କିଛି ଖାଦ୍ୟ ଆଣି ଦେଉଥିଲେ । ସୈନ୍ୟ ଶିବିରକୁ ଯିବା ବାଟରେ ମୁଁ

ଝୋପଡ଼ି ମାର୍କେଟ୍ ପାଖରେ ତାଙ୍କୁ ପଚାରିଲି - ''ଏଇଟା କେଉଁ ଜାଗା ?'' ସେ ଭୟବିହ୍ୱଳ ଦୃଷ୍ଟିରେ ମୋତେ ଚାହିଁ କହିଲେ - ''ମୁଁ ଜାଣେ ନାହିଁ ।''

ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ଅମାନୁଷିକ ନିଷ୍ଠୁର କୃତ୍ୟ କରିସାରିବା ପରେ ନିଜକୃତ ପାପ ଭୟରେ ରାଉରକେଲା ସହର ମୃତନଗରୀ ପରି ସ୍ତବ୍ଧ ହୋଇ ଯାଇଥାଏ । କାରଖାନା ମଧ୍ୟ ବନ୍ଦ ହୋଇଯାଇଥାଏ । ଲୋକେ ଘରୁ ବାହାରୁ ନ ଥାନ୍ତି । ଆମେ ଦଶ ବାର ଜଣ ସକାଳେ ରାମଧୂନ ଗାଇ ପ୍ରଭାତଫେରୀ ଆରମ୍ଭ କଲୁ । ଉତ୍କଳ ନବଜୀବନ ମଣ୍ଡଳ, କସ୍ତୁରବା ସ୍ମାରକ ଟ୍ରଷ୍ଟ, ସର୍ବସେବାସଂଘ ପକ୍ଷରୁ ଶାନ୍ତି ସୈନିକମାନେ ଆମ ସାଙ୍ଗରେ ବୁଲିଲେ । ସ୍ଥାନୀୟ ଶାନ୍ତି ସେବକମାନେ ମଧ୍ୟ ଆମ ସହିତ ଯୋଗଦେଲେ । ରାମଧୂନ୍ ସହିତ ଆମର ଜୟଘୋଷ (ସ୍ଲୋଗାନ୍) ଥିଲା -

ଆମର ଧର୍ମ-ମାନବ ଧର୍ମ

ଆମର ଜାତି-ମାନବ ଜାତି

ଆମର ସେବା - ମାନବ ସେବା

ଆମର ମନ୍ତ୍ର - ଜୟ ଜଗତ୍

ଉଦିତନଗରରେ ଏହି ଜୟଘୋଷ ଶୁଣି ଗୋଟିଏ ଛୋଟପିଲା ତା ମାଙ୍କୁ ପଚାରିଲା, ''ମା ଆମର କି ଜାତି ?'' ମା କହିଲେ -''ମାରୱାଡ଼ି'' । ଓକିଲ ଶ୍ରୀ ଧନଞ୍ଜୟ ମହାନ୍ତିଙ୍କ ସ୍ତ୍ରୀଙ୍କୁ ତାଙ୍କ ଲରିଆଣୀ ପଚାରିଲା - 'ପଚାରିବି ପଚାରିବି ବୋଲୁଛେଁ, ପଚରି ନାହିଁ ପାରେ ମା ! ତମେ ତ ହେଲ ମହାନ୍ତି, ନନା ବାମୁଣ, ମୁହିଁ ଗଉଡ଼, ହିନ୍ଦୁ ହିନ୍ଦୁ ଯେ ବୋଲୁଛନ୍ ହିନ୍ଦୁ କାଣ୍ ଗୋ ?'' ଏଇ ହେଲା ହିନ୍ଦୁ ମହିମା !

ଥଇଥାନ୍ କାମକୁ ବ୍ୟାପକ କରିବା ପାଇଁ ବିଶ୍ରା ଓ କୁଆଁରମୁଣ୍ଡାରେ ଆମେ ଦୁଇଟି କର୍ମୀଶିବିର କଲୁ । ଡ଼କ୍ଟର କୁଳମଣି ମହାପାତ୍ର, ରତନ ଦାସ, ଅମରନାଥ ଭାଇ, ମନମୋହନ ଭାଇ ପ୍ରମୁଖ ଶିବିରରେ ବିଭିନ୍ନ ବିଷୟରେ ଶିକ୍ଷା ଦେଲେ । ଦଂଗାର କାରଣ ଅନୁସଂଧାନ୍ନ କରି ଯେଉଁ ତଥ୍ୟସବୁ ମିଳୁଥାଏ ତାହା ଆଦୌ ଗୌରବଜନକ ନୁହେଁ । ରାଉରକେଲା କାମ ପାଇଁ ବିଭିନ୍ନ ଅନୁଷ୍ଠାନରୁ କର୍ମୀ ସେଠାକୁ ପଠାଇବା ଓ ଅର୍ଥ ସଂଗ୍ରହ କରିବା କାମରେ ମୁଁ କଟକ-ରାଉରକେଲା ଦଉଡ଼ାଧାପଡ଼ା କରୁଥିଲି । ଭାରତ ସେବକ ସମାଜର ରଘୁବାବୁ, ହିନ୍ଦ୍ ସେବକ ସଂଘର ମଧୁବାବୁ, ଖଣ୍ଡଗିରି ତପୋବନରୁ ସ୍ୱାମୀ ଆନନ୍ଦସ୍ୱରୂପ ପ୍ରମୁଖ ବହୁ ଦାୟିତ୍ୱସମ୍ପନ୍ନ ସ୍ୱେଚ୍ଛାସେବକ ରାଉରକେଲାରେ ଶାନ୍ତି

ସ୍ଥାପନ କାମରେ ଲାଗିଗଲେ । ଉତ୍କଳ ନବଜୀବନ ମଣ୍ଡଳ ରାଉରକେଲାରେ ସ୍ଥାୟୀ କେନ୍ଦ୍ର ସ୍ଥାପନ କରିବା ପରେ ଅଗଷ୍ଟ ମାସରେ ଆମେ ରାଉରକେଲା ଛାଡ଼ିଲୁ । ଏହି କାମରେ ଲାଗିଥିବାବେଳେ ପଣ୍ଡିତ ନେହେରୁ ଧରାଧାମ ତ୍ୟାଗ କରି ଚାଲିଗଲେ ।

ସେପ୍ଟେମ୍ବର ୧୯୬୪ ସତେଇଶ ତାରିଖ ସକାଳେ ରମାଦେବୀ କୌଣସି କାମରେ ବାଖରାବାଦ ଛକବାଟେ ଯାଉଥିବା ବେଳେ ଜଣେ ପଥଚାରୀ କହିଲେ – 'କଲେଜ ଛକରେ ଛାତ୍ର ପୁଲିସ ମରାମରି ଚାଲିଛି, ଆପଣ କଣ ଏପାଖରେ ?' ରମାଦେବୀ ଏ ଖବର ପାଇବା ମାତ୍ରେ ଘଟଣା ଜାଣିବା ପାଇଁ ନିର୍ମଳଚନ୍ଦ୍ର ରାୟ, ସୁଚିତ୍ରା ଚୌଧୁରୀ, ଶରତଚନ୍ଦ୍ର ମହାରଣା ଓ ଅନ୍ନପୂର୍ଣ୍ଣା ମହାରଣାଙ୍କୁ ସାଙ୍ଗରେ ନେଇ ରେଭେନ୍ସା କଲେଜ ଆଡ଼କୁ ମୁହାଁଇଲେ । ରାଣୀହାଟ ଛକ ପାଖରୁ ଲୋକଭିଡ଼ ଓ ଅଶ୍ଳୀଳ ବୋଲି ଆରମ୍ଭ ହେବାର ଦେଖିଲୁ । ଭିଡ଼ ପାରିହୋଇ କଲେଜର ମୁଖ୍ୟ ପ୍ରବେଶଦ୍ୱାରରେ ପହଞ୍ଚି ଦେଖିଲୁ ପୁଲିସ ପଇଁତରା ମାରୁଛନ୍ତି । ପୋଡ଼ା ଜୀପ୍‌କାର୍‌ଟିଏ ରାସ୍ତାରେ ପଡ଼ିଛି । କଲେଜ୍ ହତା ଭିତରେ ଟେନିସ୍ କୋର୍ଟରେ ଛାତ୍ରମାନେ ଜମା ହୋଇଛନ୍ତି । ହତା ଭିତରେ ପଶି ଛାତ୍ରସଭା ଆଡ଼କୁ ଯିବା ବେଳେ କଲେଜର ପ୍ରିନ୍ସିପାଲ ରମାଦେବୀଙ୍କୁ ହତାରେ ନ ରହିବା ପାଇଁ ନିର୍ଦ୍ଦେଶ ଦେଲେ । ଆମେ ହତା ବାହାରକୁ ଆସି ପ୍ରଭାବଶାଳୀ ଅଭିଭାବକମାନଙ୍କୁ ପରିସ୍ଥିତି ବିଷୟରେ ଅବହିତ କରିବା ପାଇଁ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କୁ ସାକ୍ଷାତ୍ କରିବାକୁ ଗଲୁ ।

ଏଥିପୂର୍ବରୁ ମେଡ଼ିକାଲ କଲେଜ୍‌ରେ ଇଣ୍ଟର୍ଣ୍ଣସିପ୍ ମାମଲାକୁ ଘେନି ଯେଉଁ ଛାତ୍ର ଧର୍ମଘଟ ହୋଇଥିଲା, ତାହାର ସମାଧାନ ପାଇଁ ଆମେ କାମ କରିଥିଲୁ । ସର୍ବଶ୍ରୀ ପ୍ରମୋଦ ସାମନ୍ତରାୟ, ଜେନାମଣି ନରେନ୍ଦ୍ର କୁମାର, ଭବାନୀକୁମାର ଆଦି ଥିଲେ । ଛାତ୍ରନେତା ବିଜୟ ପଟ୍ଟନାୟକ ଓ ଆଉ ଜଣେ ଛାତ୍ର ଆମରଣ ଅନଶନ କରିଥାନ୍ତି । ସେହି ଧର୍ମଘଟର ସମାଧାନ ପାଇଁ କାମ କଲାବେଳେ ମୁଁ ଏହି ଅଭିଜ୍ଞତା ଅର୍ଜନ କରିଥିଲି ଯେ ଛାତ୍ରମାନେ ପ୍ରଥମେ ଧର୍ମଘଟ ଆରମ୍ଭ କରନ୍ତି ସିନା, ମାତ୍ର ପରେ ତାହା ଉପରେ ଅନ୍ୟମାନେ ଏପରି ଏକାଧିପତ୍ୟ ବିସ୍ତାର କରନ୍ତି ଯେ ସେମାନେ ନ ଚାହିଁଲେ ସମାଧାନ ଅତ୍ୟନ୍ତ କଷ୍ଟସାଧ୍ୟ ହୁଏ । ଏଥରକ ଛାତ୍ର ଧର୍ମଘଟର ପରିଣତି ମଧ୍ୟ ସେୟା ହେଲା । ''ଲୁହା କୋଟଟକୁ କମାର କୋଟଟ'' । ରମାଦେବୀ ପ୍ରାଣପଣ କରି ସମାଧାନର ବାଟ ଫିଟାଇବା ପାଇଁ ଉଦ୍ୟମ କଲେ । ଆଚାର୍ଯ୍ୟ ମହାଶୟ ଆମରଣ ଅନଶନ କରିବାପାଇଁ ସୂଚାଇଲେ । ତଥାପି ପ୍ରରୋଚକମାନେ ସମାଧାନ କରାଇ ଦେଉ ନ ଥାନ୍ତି । ସେହି ଘଟଣାବଳୀ

ଲିପିବଦ୍ଧ କଲେ ଗୋଟିଏ ପୋଥି ହେବ । ଯାହାହେଉ, ଶେଷରେ ଗୁଲଜାରୀଲାଲ ନନ୍ଦା ଆସି ଧର୍ମଘଟ ଉଦ୍‌ଯାପନ କରାଇଲେ । ଏହି ଧର୍ମଘଟରେ ମୋର ଗୋଟିଏ ନୂଆ ଅଭିଜ୍ଞତା ହେଲା ଯେ ଅଭିଭାବକମାନଙ୍କର ଏହି ଛାତ୍ର ଲାଞ୍ଛନା ପାଇଁ ଆଦୌ ଚିନ୍ତାଦକ ନ ଥିଲା । ଛାତ୍ରମାନେ ମଧ୍ୟ ଅଭିଭାବକମାନଙ୍କ ପ୍ରତି ଧର୍ମଘଟ ସମାଧାନ ବାବଦରେ ବିଶ୍ୱାସ ସ୍ଥାପନ କରୁ ନ ଥିଲେ ।

ରାଉରକେଲା ଗଣ୍ଡଗୋଳ, ଛାତ୍ର ଧର୍ମଘଟ ଆଦି ନୈମିତ୍ତିକ ବ୍ୟାପାରରେ ସମୟ ଦେବା ସଂଗେ ସଂଗେ ଗାନ୍ଧୀ ସାହିତ୍ୟ ଅନୁବାଦ ଓ ଗ୍ରାମଦାନ ଆନ୍ଦୋଳନ ସଂକ୍ରାନ୍ତୀୟ କାମ ମୋର ନିତ୍ୟକର୍ମ ହୋଇଥାଏ । ଗ୍ରାମଦାନୀ ଗାଁର ଗ୍ରାମବାସୀଙ୍କ ଶିବିର ଓ କର୍ମୀ ଶିବିରରେ ଯୋଗଦେବାକୁ କେନ୍ଦୁଝର, ବଲାଙ୍ଗିର, କଳାହାଣ୍ଡି, କୋରାପୁଟ ଆଦି ଜିଲ୍ଲାମାନଙ୍କରେ ବୁଲିବାକୁ ପଡୁଥାଏ । ଏ ସବୁ ଅଂଚଳରେ ରମାଦେବୀ ହଜାର ହଜାର ମାଇଲ ଚାଲି ଚାଲି ସର୍ବୋଦୟ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ ଏବଂ ଗ୍ରାମଦାନ ସଂଗ୍ରହ କରିଥିଲେ । କୋରାପୁଟର ନାରାୟଣ ପାଟଣା, ବିଜାପୁର, ପାଡୁଆ, ତରାଗାଁ, ସିପାହୀପୁଟ, ଜୟପୁର, ନବରଂଗପୁର, ତୁମଠୁଲି, ବୁର୍ଜା ଆଦି ସ୍ଥାନରେ ଶିବିର ହେଲାବେଳେ ମୁଁ ଦେଖିଛି ସେଠା କର୍ମୀ ଓ ଗାଁ ଲୋକଙ୍କ ନାମଧାମ ତାଙ୍କ ନଖଦର୍ପଣରେ ଥାଏ । କୋରାପୁଟର ନିବିଡ଼ ଅରଣ୍ୟ ମଧ୍ୟସ୍ଥିତ ଗାଁଗୁଡ଼ିକର ଆଦିବାସୀମାନଙ୍କ ମଧ୍ୟରେ 'ବିନୋବା ମହାପ୍ରଭୁ'ଙ୍କ ନୂଆ ବିଚାର କିପରି ଭାବରେ ଚେର ମାଡ଼ିଛି, ତାହା ଶିବିରରେ ସେମାନଙ୍କ ଆଲୋଚନାରୁ ଜଣା ପଡୁଥାଏ । ପଶ୍ଚିମବଙ୍ଗର କ୍ଷିତୀଶ ରାୟ ଚୌଧୁରୀ ସେମାନଙ୍କର 'ବାଣ୍ଟିକରି ଖାଇବା' ଧର୍ମ ବିଚାରକୁ ଶୁଣି ଅଭିଭୂତ ହୋଇ ପଡୁଥାନ୍ତି । ବିଶ୍ୱନାଥ ପଟ୍ଟନାୟକଙ୍କ ଲୋକଶିକ୍ଷଣ ଟେକ୍‌ନିକ୍‌କୁ ମଧ୍ୟ ସେ ଉପଭୋଗ କରୁଥାନ୍ତି । ଗୋଟିଏ ସଭାରେ ବୃନ୍ଦାବନ ଜେନା ପ୍ରସ୍ତାବ କଲେ ଯେ ସୀତାରାମ ପୂଜାରୀ ଏହି ସଭାରେ ସଭାପତି ହେବେ । ସଭାରେ ଯୋଗ ଦେଇଥିବା ଶହ ଶହ ଆଦିବାସୀ ସେ ପ୍ରସ୍ତାବକୁ ଶୁଣି ନ ଶୁଣିଲା ପରି ଚୁପ୍ ରହିଲେ - ବିଶ୍ୱନାଥ ପଟ୍ଟନାୟକ ଛିଡ଼ା ହୋଇ କହିଲେ- 'ସଭାରେ ଏତେ ଲୋକ ବସିଛ, ସମସ୍ତେ ଏକାସାଙ୍ଗରେ କଥା କହିଲେ ଗୋଳମାଳ ହେବ ତ ?' ସଭାରୁ ସମସ୍ତେ ଏକ ସ୍ୱରରେ କହିଲେ –'ହଇ ହଇ ଆଜ୍ଞା ସତ କଇଲୁ ।'

ବି.ପ-ଜଣେ କେହି ବସି ତୁ କହ ତୁ କହ, କହି ଜଣ ଜଣଙ୍କୁ ଡ଼ାକି କୁହାଇଲେ ସଭା ହେବ ତ ?

ଉତ୍ତର - ହଇ ହଇ ଆଜ୍ଞା ସତ କଇଲୁ ।

ବି.ପ - ଏହି ଡ଼ାକିକରି କୁହାଇବା  କାମ ଯେ କରିବ ସେହି ଲୋକକୁ ସଭାପତି କହୁଛନ୍ତି ।

ଏହି ବ୍ୟାଖ୍ୟା ଶୁଣିବା ପରେ ସୀତାରାମ ଭାଇ ଛିଡ଼ା ହୋଇ କହିଲେ-''ମୁଁ ସଭାପତି ହେଲି । ମୁଁ ଯାହାକୁ ଡ଼ାକି 'ତୁ  କହ' କହିବି, ସେ ସଭାରେ କହିବ । ଏହା ପରେ ସଭାକାର୍ଯ୍ୟ ଆରମ୍ଭ ହେଲା । ବିଶ୍ୱନାଥ ପଟ୍ଟନାୟକ ୧୯୪୦ରୁ କୋରାପୁଟ ଜିଲ୍ଲାରେ ରହି ଏହି ଲୋକ-ଶିକ୍ଷଣ କାମ ନିରବଚ୍ଛିନ୍ନ ଭାବରେ କରୁଛନ୍ତି । ସେ ଅବିବାହିତ, ମାତ୍ର କୋରାପୁଟରେ ତାଙ୍କ ଝିଅ-ଜ୍ୱାଇଁ, ପୁଅ-ବୋହୂଙ୍କ ସଂଖ୍ୟା ଗଣି ବାହାର କରିବା କଷ୍ଟସାଧ୍ୟ । ୧୯୪୨ ଆନ୍ଦୋଳନରେ ତାଙ୍କ ନେତୃତ୍ୱରେ ଶହ ଶହ ଆଦିବାସୀ ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଯାଇଥିଲେ । ପୁଣି କୁଢେନ୍ଦ୍ରୀ ଗାଁର ଖଦୀ କାମକୁ ସେ ଏପରି ସଂଗଠିତ କରିଥିଲେ ଯେ ୧୯୫୫ରେ ବିନୋବାଜୀ କହିଲେ -'ଗାନ୍ଧୀ ପରିକଳ୍ପିତ ସ୍ୱରାଜ୍ୟର ପ୍ରତ୍ୟକ୍ଷଦର୍ଶନ ମୋତେ ଏହି କୁଢେନ୍ଦ୍ରୀରେ ମିଳିଲା ।'

କୋରାପୁଟରେ ଲୋକଶିକ୍ଷଣ ଓ ଭୂମିକ୍ରାନ୍ତିର ଅସଂଖ୍ୟ ଦୃଷ୍ଟାନ୍ତ ଦେଖି ବିନୋବାଜୀ ନିଆଁ ପୋଡଁ ପୋଡଁ କହିଥିଲେ, ଯେ ''କୋରାପୁଟରେ ଲାଭ ବହୁତ ହୋଇଛି, ତାହା ଉପଲବ୍ଧି କଲି । ''

ଓଡ଼ିଶା ବାହାରୁ ଯେଉଁମାନେ ସର୍ବୋଦୟ ଆନ୍ଦୋଳନ କାମରେ ଆସି ଗସ୍ତ କରୁଥାନ୍ତି ସେମାନଙ୍କ ବକ୍ତୃତା, ଅନୁବାଦ ଓ ସେବାଯତ୍ନ ପାଇଁ ସେମାନଙ୍କ ସାଙ୍ଗରେ ମଧ୍ୟ ବୁଲିବାକୁ ପଡୁଥାଏ । ସେମାନେ ସମସ୍ତେ ଯେ କେବଳ ଗ୍ରାମଦାନର ବିଚାର ହିଁ ଶୁଣାଉ ଥାନ୍ତି ତାହା ନୁହେଁ । ଶୋଷଣ ମୁକ୍ତ ସାମ୍ୟଯୋଗୀ ସମାଜ ଗଠନ ପଥରେ ଯେତେ ଯାହା ଅନ୍ତରାୟ ରହିଛି, ସେଗୁଡ଼ିକ ଲୋକ ସମ୍ମୁଖରେ ସ୍ପଷ୍ଟ କରି ଦେଉଥାନ୍ତି । ଶ୍ରୀ ଧୀରେନ୍ ମଜୁମଦାର ଓଡ଼ିଶା ଗସ୍ତରେ ଆସିଥିବା ବେଳେ ତାଙ୍କ ସାଙ୍ଗରେ ରହିବାର ସୁଯୋଗ ମୋତେ ମିଳିଲା । ଧୀରେନ୍ ଭାଇ ତିନୋଟି ମୁଖ୍ୟ ଶୋଷଣ ସଂସ୍ଥା - ସରକାରୀ ବ୍ୟବସ୍ଥା, ବିଚାର ବିଭାଗୀୟ ବ୍ୟବସ୍ଥା, ଗାଁରୁ କଞ୍ଚାମାଲ ନେଇ କଳକାରଖାନାରେ ପଣ୍ୟଦ୍ରବ୍ୟ ତିଆରି କରି ପୁଣି ତାକୁ ଗାଁରେ ମହଙ୍ଗାରେ ବିକିବା ଅର୍ଥନୀତି ବ୍ୟବସ୍ଥା କଥା ଲୋକଙ୍କୁ ବୁଝାଇଥାନ୍ତି । ଏହାର ନିରାକରଣ ବିଷୟରେ ଲୋକଙ୍କ ସଙ୍ଗେ ଆଲୋଚନା କରୁଥାନ୍ତି । ମୋର କାମ ଥାଏ ଦୋଭାଷୀ ହୋଇ ସେମାନଙ୍କ ବିଚାରକୁ ବୁଝାଇବା । ସମ୍ବଲପୁରର ପାଣିମୋରା ଗାଁର ଲୋକେ ଧୀରେନ୍ ଭାଇଙ୍କ ସଙ୍ଗେ ଏ ସବୁ ବିଷୟରେ

ଏପରି ସୁନ୍ଦର ଭାବରେ ଆଲୋଚନା କଲେ ଯେ ଧୀରେନ୍ ଭାଇ କହିଲେ – ମୁଁ ସମଗ୍ର ଭାରତରେ ବୁଲିଛି ମାତ୍ର ଏପରି ବିଚାରସଂପନ୍ନ ଗ୍ରାମଲୋକ କେଉଁଠି ହେଲେ ଦେଖିନାହିଁ ।

ଏହା ମଧ୍ୟରେ ଇନ୍ଦୋରର ମହିଳା ସମ୍ମିଳନୀରେ ଯୋଗ ଦେଇଥିବା ବେଳେ ମାନ୍ଦ୍ରାଜରେ ଭାଷା ଶିକ୍ଷା ସମସ୍ୟାକୁ ଘେନି ଗଣ୍ଡଗୋଳ ହେବାରୁ ବିନୋବାଜୀ ଅନଶନ ଆରମ୍ଭ କଲେ । ସେ ପାଞ୍ଚଦିନ ଅନଶନ କରିବା ପରେ ସମାଧାନର ସୂତ୍ର ବାହାରିବାରୁ ଓ ଉଭୟପକ୍ଷଙ୍କ ଦ୍ୱାରା ତାହା ସ୍ୱୀକୃତ ହେଲାରୁ ସେ ଅନଶନ ଛାଡ଼ିଲେ । ଇନ୍ଦୋରରୁ ଫେରିବା ବାଟରେ ରମାଦେବୀ ବିନୋବାଜୀଙ୍କୁ ଭେଟିବାକୁ ୱାର୍ଦ୍ଧାରେ ଅଟକିଲେ । ରମାଦେବୀଙ୍କୁ ଦେଖି ସେ ତାଙ୍କର ଦୁର୍ବଳତା ସତ୍ତ୍ୱେ ହସି ହସି କହିଲେ – ‘‘ଆଜି ମଣିଷ ଆଗରେ ଯେତେ ସମସ୍ୟା ଦେଖାଦେଇଛି, ସେ ସମସ୍ୟା ସଂକୀର୍ଣ୍ଣ ମନୋଭାବ ଘେନି ସମାଧାନ ହୋଇ ପାରିବ ନାହିଁ । ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ସୀମାନ୍ତ ସମସ୍ୟା, ଧର୍ମ ଓ ସଂପ୍ରଦାୟ ସମସ୍ୟା, ବେପାରବଣିଜ ସମସ୍ୟା, ଶୋଷଣମୁକ୍ତି ଓ ପୋଷଣମୁକ୍ତି ସମସ୍ୟା ନାନାରୂପ ଧରି ବିଶ୍ୱ ଆଗରେ ରହିଛନ୍ତି । ଏସବୁଗୁଡ଼ିକର ଉଦ୍‌ଭବ ଦେହାସକ୍ତିରୁ ହୋଇଛି । ଆମେ ଯେଉଁ କେତୋଟି ଆଶ୍ରମ ଆରମ୍ଭ କରିଛୁ ତାହା ବ୍ରହ୍ମବିଦ୍ୟା ସାଧନା ପାଇଁ ଉଦ୍ଦିଷ୍ଟ । ଚିତ୍ତଶୁଦ୍ଧି, ନିରହଂକାରିତା ଓ ସମୂହ ସାଧନା ଏହାର ମୂଳତତ୍ତ୍ୱ । ଆମର ସବୁ କାମ ବ୍ରହ୍ମବିଦ୍ୟାମୂଳକ ହୋଇ ପାରିଲେ ସର୍ବୋଦୟ ଓ ବିଶ୍ୱଶାନ୍ତି ସ୍ଥାପିତ ହୋଇ ପାରିବ ।’’

ସେପ୍‌ଟେମ୍ବର ୧୯୬୫ରେ ପାକ୍-ଭାରତ ଯୁଦ୍ଧ ଆରମ୍ଭ ହେଲା । ଚୀନ୍-ଭାରତ ଯୁଦ୍ଧରେ ଭାରତର ପରାଜୟ ଦେଶବାସୀଙ୍କ ମନରେ ଯେଉଁ ଗ୍ଳାନି ଆଣି ଦେଇଥିଲା ଶାସ୍ତ୍ରୀଜୀଙ୍କ ପ୍ରଧାନମନ୍ତ୍ରୀତ୍ୱରେ ତାହା ଦୂର ହୋଇଗଲା । ଭାରତୀୟ ସେନାବାହିନୀ ଏହି ଯୁଦ୍ଧରେ ଯେଉଁ ପରାକ୍ରମ ଦେଖାଇଲେ ତଦ୍ୱାରା ଭାରତର ଲଘୁତା ଗ୍ରନ୍ଥି ଦୂର ହୋଇଗଲା ।

୧୯୬୯ରେ ଗାନ୍ଧୀ ଶତବାର୍ଷିକୀ ସମାରୋହର ଆୟୋଜନ ପାଇଁ ୧୯୬୫ ମସିହା ଅକ୍ଟୋବର ମାସରେ ଅନୁଗୁଳରେ ଗୋଟିଏ ସଭା ହେଲା । ସେହି ସଭାରେ ରମାଦେବୀଙ୍କୁ ଗାନ୍ଧୀ ଶତବାର୍ଷିକୀ ଆୟୋଜନ ସମିତି ଓ ଗାନ୍ଧୀ ସ୍ମାରକନିଧିର ଅଧ୍ୟକ୍ଷା ବଛାଗଲା । କେନ୍ଦ୍ରୀୟ ଗାନ୍ଧୀ ସ୍ମାରକନିଧିର ସଂପାଦକ ଶ୍ରୀ ଦେବେନ୍ଦ୍ରଗୁପ୍ତ ମୋତେ ଏହି ସମିତି ଓ ନିଧିର ସଂପାଦକ ହେବାକୁ ବଳାଇଲେ । ମୁଁ ସେତେବେଳକୁ ରମାଦେବୀଙ୍କ କାମରେ ତାଙ୍କୁ ସାହାଯ୍ୟ କରିବା ପାଇଁ ମନସ୍ଥିର କରି ସାରିଥିବାରୁ କୌଣସି ପଦପଦବୀର ଦାୟିତ୍ୱ ନ ନେବାକୁ ଠିକ୍ କରି ସାରିଥିଲି । ସେଥିପାଇଁ ସଂପାଦକ ପଦରେ ନ ରହି ସଂପାଦକଙ୍କୁ ସବୁମନ୍ତେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇ ମୁଁ ତାଙ୍କ ସ୍ନେହାକ୍ରମଣରୁ

ନିଜକୁ ରକ୍ଷାକଲି । ଶ୍ରୀ ନନ୍ଦକିଶୋର ଦାସ (ପୂର୍ବତନ ବାଚସ୍ପତି) ଏହି ସମିତିର ସଂପାଦକ ହେଲେ । ମୁଁ ଗାନ୍ଧୀ ସାହିତ୍ୟ ଅନୁବାଦ ଓ ଅନ୍ୟାନ୍ୟ କାମରେ ତାଙ୍କୁ ସାହାଯ୍ୟ କଲି । ପ୍ରାୟ ଛଅମାସ ପରେ କେନ୍ଦ୍ର ଶତବାର୍ଷିକୀ ସମିତି ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କୁ ରାଜ୍ୟସ୍ତରୀୟ ସମିତିର ସଭାପତି କରିବା ପାଇଁ ସ୍ଥିର କଲେ । ଏହା ଫଳରେ ରମାଦେବୀ ଅଧ୍ୟକ୍ଷା ପଦରୁ ଅବ୍ୟାହତି ନେଲେ । ମାତ୍ର ତ୍ରିବିଧ କାର୍ଯ୍ୟକ୍ରମ, ମହିଳା ଶିବିର, ଗାନ୍ଧୀ ରଚନାବଳୀ ଓଡ଼ିଆ ଭାଷାରେ ଅନୁବାଦ କରି ପ୍ରକାଶ କରିବା ଆଦି କାମରେ ଆମେ ଲାଗି ରହିଲୁ ।

୧୯୬୬ ଜାନୁଆରୀରେ ପ୍ରଧାନମନ୍ତ୍ରୀ ଶାସ୍ତ୍ରୀଜୀଙ୍କର ମୃତ୍ୟୁ ହେଲା । 'ମୁହୂର୍ତ୍ତ ଜ୍ୱଳିତୋ ଶ୍ରେୟ' ଉକ୍ତିଟି ନିଜ ଜୀବନରେ ଚରିତାର୍ଥ କରି ସେ ଆମମାନଙ୍କୁ ପୁଣ୍ୟ ପ୍ରେରଣା ଦେଇଗଲେ । ନିମ୍ନ ମଧ୍ୟବିତ୍ତ ପରିବାରର ସତ୍‌ଲୋକ ଯେ ଭାରତର ପ୍ରଧାନମନ୍ତ୍ରୀ ହୋଇପାରିବେ, ଏହି ଆଶା ଓ ବିଶ୍ୱାସ ସେ ଭାରତର ଜନପ୍ରାଣରେ ସୃଷ୍ଟି କରିଦେଇ ଗଲେ । ଶାସ୍ତ୍ରୀଜୀଙ୍କ ସଙ୍ଗେ ଘନିଷ୍ଠ ପରିଚୟ ନ ଥିଲେ ହେଁ ଜଣେ ଅତି ଆପଣାର ଲୋକକୁ ହରାଇଲା ପରି ବୋଧହେଲା ।

ସେହି ୧୯୬୬ ମସିହା ମାର୍ଚ୍ଚ ମାସରେ ରମାଦେବୀ ସର୍ବୋଦୟ କର୍ମୀ ଶ୍ରୀ ଗୋପାଳ ପ୍ରସାଦ ଦାସଙ୍କ ଠାରୁ କଳାହାଣ୍ଡିରେ ଫସଲହାନିଜନିତ ପରିସ୍ଥିତିର ଖବର ପାଇ ମୟୁରଭଞ୍ଜ ଗସ୍ତ ବାତିଲ କରି କଳାହାଣ୍ଡି ଗଲେ । ନୂଆପଡ଼ା ସବ୍‌ଡ଼ିଭିଜନର ଭେଲା ଗାଁରେ ପହଞ୍ଚି ପଞ୍ଚାୟତ ସମିତି ଚେୟାରମ୍ୟାନ ଶ୍ରୀ ଜଗଦୀଶ ପ୍ରସାଦ ଯୋଷୀଙ୍କ ସହିତ ଭେଲା ଓ ଦେଓଦରହା ବରନ୍ଦାପାଟ ଆଦି ଗାଁ ବୁଲି ଯାହା ଦେଖିଲୁ ପ୍ରଥମେ କିଛି ବୁଦ୍ଧିବାଟ ଦିଶିଲା ନାହିଁ । ଲୋକେ ନିମପତ୍ର, ଅଶ୍ୱତ୍‌ଥପତ୍ର ସିଝାଇ ଖାଉଥିବା ଦୃଶ୍ୟ ନିଜ ଆଖିରେ ଦେଖିଲୁ । ଅନାହାର ମୃତ୍ୟୁର ଅବ୍ୟବହିତ ପୂର୍ବରୁ ମଣିଷ କିପରି ହୋଇଯାଏ ତାହା ଦେଖିଲୁ । ଖାଇବାକୁ ନ ପାଇ ମୃତପ୍ରାୟ ହୋଇ ପଡ଼ି ରହିଥିବା, ପ୍ରେତପରି କଙ୍କାଳସାର ହୋଇ ବୁଲୁଥିବା ଲୋକ ଦେଖିଲୁ । ରମାଦେବୀ ମୁଣ୍ଡରେ ହାତ ଦେଇ ବସିଯାଇ କହିଲେ - "ମୁଁ କି ଅପରାଧ କରିଛି ବୋଲି ଈଶ୍ୱର ମୋତେ ଏ ଦୃଶ୍ୟ ଦେଖାଉଛନ୍ତି !"

ତୁରନ୍ତ ପ୍ରତିକାର ବ୍ୟବସ୍ଥା ପାଇଁ କଟକ ଫେରିଲୁ । ବିରଜା ପ୍ରସାଦ ରାୟ ସବୁକଥା ଶୁଣି ସଙ୍ଗେ ସଙ୍ଗେ ପାଞ୍ଚହଜାର ଟଙ୍କା ଭୋଜନକେନ୍ଦ୍ର ପାଇଁ ଦେଲେ । ଶରତଚନ୍ଦ୍ର ମହାରଣା ଭୋଜନକେନ୍ଦ୍ର ଆରମ୍ଭ କରିବା ପାଇଁ ସଙ୍ଗେ ସଙ୍ଗେ କଳାହାଣ୍ଡି ଚାଲିଗଲେ । ଏହାପରେ କଟକର ବିଶିଷ୍ଟ ଲୋକଙ୍କର ଏକ ବୈଠକ ଡ଼ାକି ରମାଦେବୀ

କଳାହାଣ୍ଡି ପରିସ୍ଥିତି ସଂକ୍ରାନ୍ତରେ ଏକ ବିବୃତ୍ତି ଦେଲେ । ଉତ୍କଳ ରିଲିଫ୍ କମିଟି ଗଠିତ ହେଲା । ରାଜ୍ୟପାଳ ଖୋସ୍‌ଲା ସାହେବ ରମାଦେବୀଙ୍କ ମୁହଁରୁ କଳାହାଣ୍ଡି ପରିସ୍ଥିତି କଥା ଶୁଣି ତୁରନ୍ତ ଦଶହଜାର ଟଙ୍କା ରେଡ୍‌କ୍ରସ୍ ସୋସାଇଟିରୁ ଦେଲେ ଏବଂ ନିଜେ କଳାହାଣ୍ଡି ଯାଇ ସ୍ୱଚକ୍ଷୁରେ ସେଠା ଅବସ୍ଥା ଦେଖି ଆସି ରମାଦେବୀଙ୍କୁ ଡ଼କାଇ ଅଶ୍ରୁସିକ୍ତ ନେତ୍ରରେ ସେଠା ଅନୁଭୂତି ବର୍ଣ୍ଣନା କଲେ । ସମଗ୍ର ଭାରତରୁ ଦାନର ସୁଅ ଛୁଟିଲା । ଉତ୍କଳ ରିଲିଫ୍ କମିଟି ୧୨୦ଟି ଭୋଜନକେନ୍ଦ୍ରରେ ହଜାର ହଜାର ଲୋକଙ୍କୁ ଖାଦ୍ୟ ଯୋଗାଇଲେ । ପାଣି ଯୋଗାଇବା ପାଇଁ War on Want ସଂସ୍ଥା ଚାରୋଟି ପୋଖରୀ ଖୋଳାଇଲେ । ଲୋକେ ଟିକିଏ ସାକ୍ଷମ ହେଲାରୁ ସୂତାକଟା, ପୋଖରୀ ଖୋଳା ଆଦି କାମରେ ହାତଦେଲେ । କୋଡ଼ି କୋଦାଳ ସୁଦ୍ଧା ସେମାନଙ୍କୁ ଯୋଗାଇବାକୁ ପଡ଼ିଲା । ପିତୃମାତୃହୀନ ଶିଶୁଙ୍କ ପାଇଁ ଶ୍ରୀମତୀ ସ୍ନେହଲତା ପତିଙ୍କ ପରିଚାଳନାରେ ବାଳାଶ୍ରମ ସ୍ଥାପିତ ହେଲା । ଦେଶର ଭିନ୍ନ ଭିନ୍ନ ରିଲିଫ ସଂସ୍ଥା ମଧ୍ୟ କଳାହାଣ୍ଡି, ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼ର ମରୁଡ଼ିଗ୍ରସ୍ତ ଅଞ୍ଚଳରେ କାମକଲେ । ତନ୍ମଧ୍ୟରୁ ଗୁଜରାଟର ସନ୍ଥ ରଣଛୋଡ଼ ଦାସ ମହାରାଜଙ୍କର ଶିଷ୍ୟମାନେ ସୁନ୍ଦରଗଡ଼ରେ ଯେପରି ଭକ୍ତିଭାବନା ଘେନି ସଂଗଠିତ ଭାବରେ କାମ କରୁଥିଲେ ତାହା ପ୍ରକୃତରେ ଉଲ୍ଲେଖଯୋଗ୍ୟ । ରଣଛୋଡ଼ ଦାସ ମହାରାଜଙ୍କ ଶିଷ୍ୟମାନେ ପାଳିକରି ଟ୍ରକ୍‌ରେ ଖାଦ୍ୟଦ୍ରବ୍ୟ ଆଣି ପ୍ରତିଦିନ ୧୮୦୦୦ (ଅଠର ହଜାର) ଲୋକଙ୍କୁ ଖାଇବାକୁ ଦେଉଥାନ୍ତି । ମହାରାଜ ରମାଦେବୀଙ୍କୁ କହିଲେ-"ଏ ଲୋକେ ଅତ୍ୟନ୍ତ କ୍ଷୁଧିତ । ସେମାନଙ୍କୁ କେହି କେଭେ ପାଖରେ ବସାଇ ଯତ୍ନକରି ମନବୋଧ କରି ଖୁଆଇ ନାହିଁ । ତେଣୁ ମୁଁ ମୋ ସାଥୀମାନଙ୍କୁ କହିଛି, ତୁମେ ନିଜ ପିଲାଙ୍କୁ ଯେପରି ଯତ୍ନରେ ସୁସ୍ୱାଦୁ ଖାଦ୍ୟ ଖୁଆଅ ଏମାନଙ୍କୁ ସେହିପରି ଖୋଇବ ।" ୧୮୬୬ରେ ନଅଙ୍କ ଦୁର୍ଭିକ୍ଷରେ ତ୍ରାଣକାର୍ଯ୍ୟ କରିଥିବା ଏହି କୃଶଦେହୀ ତପସ୍ୱୀଙ୍କର ଲୋକଙ୍କପ୍ରତି ମମତା ଦେଖି ମୁଁ ଅଭିଭୂତ ହୋଇଗଲି ।

ଏ କାମ ସାଙ୍ଗରେ ମୋର ଅନୁବାଦ କାମ ମଧ୍ୟ ଚାଲିଥାଏ । 'ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ' ଓ 'ସ୍ଥିତପ୍ରଜ୍ଞ ଦର୍ଶନ'ର ଅନୁବାଦ ମୁଁ ଏହି ସମୟରେ ଶେଷ କଲି । ଆମର ଅନେକ ସାଥୀ ଏହି ରିଲିଫ୍ ବା ସଙ୍କଟତ୍ରାଣ କାମଟା କ୍ରାନ୍ତି ସାଧନ ପଥରେ ବାଧକ ବୋଲି ଏହି ସମୟରେ ମତ ଦେଲେ । ହଜାର ହଜାର ଲୋକଙ୍କୁ ଅନାହାର ମୃତ୍ୟୁ କବଳରୁ ରକ୍ଷା କରିବା ମଧ୍ୟ ଗୋଟାଏ ସାମାଜିକ କର୍ତ୍ତବ୍ୟ । ଏହି ବିଚାରପ୍ରଣୋଦିତ ହୋଇ ଆମେ କଳାହାଣ୍ଡି ଓ ବଲାଙ୍ଗୀରରେ ରିଲିଫ୍ କାମରେ ମନପ୍ରାଣ ଢ଼ାଳିଦେଲୁ ।

ଗାନ୍ଧୀ ସ୍ମାରକନିଧିର ଅଧ୍ୟକ୍ଷା ଭାବରେ ଏହି କାମ ଭିତରେ ରମାଦେବୀଙ୍କୁ ବାଙ୍ଗାଲୋର ସମ୍ମିଳନୀକୁ ଯିବାକୁ ପଡ଼ିଲା । ଦୁଇ ସମ୍ପାଦକ ସର୍ବଶ୍ରୀ ନନ୍ଦକିଶୋର ଦାସ ଓ ଫକୀର ମିଶ୍ରଙ୍କ ସହିତ ମୁଁ ମଧ୍ୟ ରମାଦେବୀଙ୍କ ସଙ୍ଗେ ବାଙ୍ଗାଲୋର ଗଲି । ଫେରିବା ବାଟରେ ଦକ୍ଷିଣ ଭାରତରେ ଗଠନମୂଳକ କାମର ପ୍ରାଣକେନ୍ଦ୍ର ଗାନ୍ଧୀଗ୍ରାମ ଓ ନାଲୁପଟିର କାମ ଦେଖିଆସିଲୁ । ଶ୍ରୀ ଅରୁଣାଚଳମ୍ ଓ ଶ୍ରୀମତୀ ସୌନ୍ଦ୍ରମ୍‌ଙ୍କ ରଚନା ଦେଖି ତାଙ୍କୁ ବିଚିତ୍ରକର୍ମା ମଣିଲି । ମଦୁରାଇରେ ଥିବା ଗାନ୍ଧୀ ସଂଗ୍ରହାଳୟ ପରି ଗୋଟିଏ ଓଡ଼ିଶାରେ ଗଢ଼ିବା ପାଇଁ ମନ ବଳାଇ କଟକ ସ୍ୱରାଜ୍ୟ ଆଶ୍ରମରେ ଏହା କରିବା ପାଇଁ ଆଶ୍ରମର ଟ୍ରଷ୍ଟୀମଣ୍ଡଳକୁ ରମାଦେବୀ ଅନୁରୋଧ-ପତ୍ର ଲେଖିଲେ । ମାତ୍ର ତାହା ହୋଇ ପାରିଲା ନାହିଁ । ଦକ୍ଷିଣ-ଭାରତର କର୍ମୀମାନଙ୍କର କର୍ମତତ୍ପରତା ଓ ସଚୋଟପଣିଆ ଆମ ମନକୁ କିଣିନେଲା ।

କଳାହାଣ୍ଡି-ବଲାଙ୍ଗୀରରେ ସଙ୍କଟତ୍ରାଣ କାମ ବନ୍ଦ ହେଲା । ସେଠା ବାଳାଶ୍ରମ ପିଲା କସ୍ତୁରବା ସ୍ମାରକ ଟ୍ରଷ୍ଟର ସତ୍ୟଭାମାପୁର କେନ୍ଦ୍ରକୁ ଆସି ରହିଲେ । ଏହି କାମରେ ୭୭୬୮ କିଲୋମିଟର ବୁଲିବାକୁ ପଡ଼ିଥିଲା ।

'କୁମ୍ଭାର ଘର ବୋହୂ, ଝାଟିକି ନ ଗଲେ ମାଟିକି ଯାଉ' ନୀତିରେ ଆମେ ଗାନ୍ଧୀ କସ୍ତୁରବା ଶତବାର୍ଷିକୀ ସମାରୋହ ଆୟୋଜନରେ ଲାଗିଲୁ । ଗାନ୍ଧୀ ରଚନାବଳୀ ପ୍ରକାଶନ ତ୍ରିବିଧ କାର୍ଯ୍ୟକ୍ରମର ପ୍ରସାର ଆଦି ସାଙ୍ଗକୁ ଗ୍ରାମେ ଗ୍ରାମେ ନାରୀ-ଜାଗରଣ ଉଦ୍ଦେଶ୍ୟରେ ମହିଳା ଶିବିର ସଂଗଠନ କରିବା କାର୍ଯ୍ୟକ୍ରମ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ ପକ୍ଷରୁ ଆୟୋଜିତ ହେଲା । ବୈଦେହୀ ପଣ୍ଡା ଓ ମେନକା ମହାପାତ୍ର ବିଭିନ୍ନ ଜିଲ୍ଲାକୁ ଯାଇ ସ୍ଥାନୀୟ ଲୋକଙ୍କ ସହଯୋଗରେ ଏ ଶିବିର ସଂଗଠନ କଲେ । କୌଣସି ସ୍କୁଲ, ମହିଳା ସମିତି ଘର ବା କୌଣସି ଅବସ୍ଥାପନ୍ନ ଗ୍ରାମବାସୀଙ୍କ ଚଉପାଢ଼ୀରେ ଏହି ଶିବିର କରାଯାଉଥିଲା । ଯେଉଁ ଭଉଣୀମାନେ ରାତିରେ ରହି ପାରୁଥିଲେ ସେମାନେ ରାତିରେ ରହୁଥିଲେ । ଅଧିକାଂଶ ଶିବିରାର୍ଥିନୀ ଘର କାମ ସଅଳ ସଅଳ ସାରି ଦିନ ବାରଟାରୁ ସଂଧ୍ୟା ଛଅଟା ଯାଏ ଶିବିରରେ ରହୁଥିଲେ । ମଧ୍ୟାହ୍ନରେ ସହଭୋଜନ ଅନିର୍ବାର୍ଯ୍ୟ ଥିଲା । ସମସ୍ତେ ଏକାପଂକ୍ତିରେ ବସି ଖାଉଥିଲେ ।

ବାପଘର ଛାଡ଼ି ପରଘରକୁ ଆସି ପରକୁ ଆପଣାର କରିବାର ଯେଉଁ ସଂସ୍କାର ଓ ସାଧନା ମହିଳା-ସମାଜ ମଧ୍ୟରେ ପ୍ରଚଳିତ, ତାହାକୁ ପରିବାରର କଲ୍ୟାଣ ପାଇଁ ଆହୁରି ପ୍ରସାରିତ କରି ଗାଁକୁ ଆପଣାର କରିବା ସାଧନାର ଯୁଗ ଆସିଛି – ଏଥିପାଇଁ ଘରକାମ

ସାଙ୍ଗକୁ କିଛି କିଛି ଗ୍ରାମସେବା କାମ ମଧ୍ୟ ସ୍ତ୍ରୀ-ସମାଜକୁ କରିବାକୁ ହେବ ଏବଂ ନିଜର ମର୍ଯ୍ୟାଦା ନିଜେ ରକ୍ଷା କରିବାକୁ ସମର୍ଥ ହେବା ପାଇଁ ନିଜର ଆଧ୍ୟାତ୍ମିକ ଶକ୍ତିର ବିକାଶ କରିବାକୁ ହେବ - ଏହା ଥିଲା ଶିବିରର ମୁଖ୍ୟ ଆଲୋଚ୍ୟ ବିଷୟ । ଏହା ସାଙ୍ଗରେ ଶିଶୁ ପାଳନ, ସୁଷମ ଖାଦ୍ୟ, ସଫାଇ, କୀର୍ତ୍ତନ, ଭଜନ ଆଦି ମଧ୍ୟ ଶିକ୍ଷା ଦିଆଯାଉଥିଲା । ୧-ବ୍ୟସନ ମୁକ୍ତି, ୨-କଳହ ମୁକ୍ତି, ୩-ଅସୁଚିତାରୁ ମୁକ୍ତି (ଗାଁ ସଫେଇ) ୪- ଅଜ୍ଞାନରୁ ମୁକ୍ତି (ସ୍ୱାଧ୍ୟାୟ ଓ ପ୍ରାର୍ଥନାମଣ୍ଡଳ ଆଦି), ୫-କୁସଂସ୍କାର ମୁକ୍ତି (ଯୌତୁକ, ବିଭାବ୍ରତ ଆଦିରେ ବୃଥାଡ଼ମ୍ବରାଦି) ୬- ମାନବ-ସେବା ହିଁ ନାରାୟଣ ସେବା ବିଚାରରେ ପ୍ରତିବେଶୀର ସେବା ନିମନ୍ତେ ପ୍ରବର୍ତ୍ତନା ଦେବା ପାଇଁ ଉଦ୍ୟମ ହେଉଥିଲା । ଆମେ ଏହି ଶିବିରମାନଙ୍କରେ ଯୋଗ ଦେଉଥିଲୁ ।

ବିନୋବାଜୀ ଆମକୁ ବୁଝାଇଥିଲେ ଯେ ସମାଜ ପରିବର୍ତ୍ତନ ହେଉଛି ମାର୍କ୍ସ୍ ଆଦି କମ୍ୟୁନିଷ୍ଟଙ୍କ ଧ୍ୟେୟ । ବ୍ୟକ୍ତିର ହୃଦୟ ପରିବର୍ତ୍ତନ ଥିଲା ସମର୍ଥ ରାମଦାସ, ଚୈତନ୍ୟ, ନାନକ, କବୀର ପ୍ରମୁଖ ସାଧୁସନ୍ଥଙ୍କ ଧ୍ୟେୟ । ବିଚାର ପରିବର୍ତ୍ତନ ହେଲା ଶଙ୍କରାଚାର୍ଯ୍ୟ, ରାମାନୁଜାଚାର୍ଯ୍ୟ ପ୍ରମୁଖ ଆଚାର୍ଯ୍ୟଙ୍କ ଧ୍ୟେୟ । ଆମ ସର୍ବୋଦୟ ଆନ୍ଦୋଳନରେ ଏ ତିନୋଟିଯାକ ଧ୍ୟେୟର ସମାବେଶ ହୋଇଥିବାରୁ ଆମକୁ ଅଧିକରୁ ଅଧିକ କର୍ମକୁଶଳତା ତତ୍ତ୍ୱଶୋଧନ ଓ ହୃଦୟ ପରିବର୍ତ୍ତନ ପାଇଁ ସାଧନା କରିବାକୁ ହେବ । ସେଥିପାଇଁ ନାନା କାର୍ଯ୍ୟକ୍ରମ ମାଧ୍ୟମରେ ଲୋକ-ଚିତ୍ତକୁ ଏହି ବିଚାର ଆଡ଼କୁ ଢ଼ଳେଇବା ପାଇଁ ଉଦ୍ୟମ ଚାଲିଥାଏ ।

ମନ ବିଚାରେ ଆନ, କର୍ମ ବିଚାରେ ଆନ, ଓ୍ୱାର୍ଦ୍ଧାରେ ସର୍ବ-ସେବା-ସଂଘର ଗୋଟିଏ ଆଲୋଚନା ସଭାରେ ଯୋଗଦେଇ ଫେରିବା ଟିକଟ କିଣିବାକୁ ଯାଇ କଟକ ଟିକଟ ପାଇଲୁ ନାହିଁ । ବନ୍ୟାଯୋଗୁ ରେଳ ଯାତାୟାତ ବନ୍ଦ ବୋଲି ଖବର ପାଇ ରମାଦେବୀ ଓଡ଼ିଶା ଫେରିବାକୁ ଉଛନ୍ନ ହେଲେ । ଝାରସୁଗୁଡ଼ାବାଟେ ଓଡ଼ିଶାରେ ପଶି ଜାଣିଲୁ ଯେ ବଳଙ୍ଗ, ଗଙ୍ଗାହାର ବନ୍ୟାରେ ମୟୁରଭଞ୍ଜ-ବାଲେଶ୍ୱର ଜିଲ୍ଲାରେ ଲୋକେ ବିପନ୍ନ । ଜୀପ୍ ଟ୍ରେଲରରେ ଚୁଡ଼ାବସ୍ତା ଲଦି ରମାଦେବୀ ଓ ଚଉଦକୁଲାଟର ବସନ୍ତ କୁମାରୀ ଦେବୀଙ୍କ ସଙ୍ଗେ ଯାତ୍ରାରମ୍ଭ ହେଲା । ରବି ସାହୁ, ଶରତଚନ୍ଦ୍ର ମହାରଣା ମଧ୍ୟ ସାଙ୍ଗରେ ଥାନ୍ତି । ବାଲେଶ୍ୱର-ମୟୁରଭଞ୍ଜ ରାସ୍ତା କଡ଼ରେ ଆଶ୍ରୟ ନେଇଥିବା ଲୋକେ ସବୁ ରିଲିଫ୍ ଜିନିଷ ମାଡ଼ିବସି ନେଇଯାଉଥିବାରୁ ମୟୁରଭଞ୍ଜରେ ସାହାଯ୍ୟ ପହଞ୍ଚାଇ ହେଉନାହିଁ ଶୁଣି ରାତି ବାରଟା ପରେ ବାଲେଶ୍ୱରରୁ ବାହାରି ଆମେ ରାତାରାତି ସେ

ସ୍ଥାନ ପାରି ହୋଇଗଲୁ । ରମାଦେବୀ ତାଙ୍କ ଚିରାଚରିତ କାର୍ଯ୍ୟପଦ୍ଧତି ଅନୁସାରେ ଜିଲ୍ଲାପାଳଙ୍କୁ ଭେଟି ବଡ଼ସାହି, ମାଣିତ୍ରୀ ଆଦି ଅଞ୍ଚଳକୁ ଚୂଡ଼ାବସ୍ତା ସହ ବାହାରିଗଲେ । ଓଃ, ସେ କି ଦୃଶ୍ୟ ! ଆରପଟ ଗାଁର ପ୍ରତ୍ୟେକଟି ଘର ଭାଙ୍ଗିଥାଏ । ହାତୀଶାଳ ପରି ଲଦଡ କାନ୍ଥର ବିରାଟ ବିରାଟ ମାଟିଘର । ବଢ଼ିପାଣି ଲାଗିବା ମାତ୍ରେ କାନ୍ଥ ମିଳେଇଯାଇ ଘର ଭୁଷୁଡ଼ିଛି । ବନ୍ୟାର କରାମତି ଏମାନଙ୍କୁ ଅଜଣା । ବାସନକୁଶନ, ଧାନଚାଉଳ ସବୁ କାନ୍ଥତଳେ । ଲୋକେ ଶୂନ୍ୟଦୃଷ୍ଟିରେ ଆମକୁ ଚାହିଁ ରହିଲେ । ପାଟିରୁ କଥା ବାହାରୁ ନ ଥାଏ । ଆଗ ଛୋଟପିଲାଙ୍କୁ ଚୁଡ଼ା ଖାଇବାକୁ ଦେଇ ରମାଦେବୀ ଗ୍ରାମବାସୀଙ୍କୁ କହିଲେ, ''ତୁମେମାନେ ଦଶ ବାରଜଣିଆ ଦଳ କରି ପରସ୍ପର ସାହାଯ୍ୟରେ ଖଣ୍ଡେ ଖଣ୍ଡେ ଚାଳିଆ ଛିଡ଼ା କରିଦିଅ । ଏହି ଚାଳିଆ ଛିଡ଼ା ହେବା ଯାଏ ଆମେ ତୁମକୁ ଓ ତୁମ ପରିବାରକୁ ଚୂଡ଼ା ଖାଇବାକୁ ଦେବୁ ।'' ଲୋକଙ୍କ ପିଣ୍ଡରେ ପ୍ରାଣ ପଶିଲା ପରି ଲାଗିଲା । ମାଣିତ୍ରୀରୁ ଆରମ୍ଭ କରି ଗଙ୍ଗାହାର ବଳଙ୍ଗକୂଳିଆ ସବୁ ଗାଁଗୁଡ଼ିକର ଏହି ଦଶା ଦେଖିଲୁ । ଲୋକେ ଯେ ଯାହା ଚାଳ ଉପରେ ହତାଶ ହୋଇ ବସିଥାନ୍ତି । କେହି ଜଣେ ଅଧେ ଉଦ୍ୟମୀ ମାଟିକାନ୍ଥ ତାଡ଼ି ବାସନ ବାହାର କରୁଥାନ୍ତି । ରମାଦେବୀଙ୍କର ପରସ୍ପର ସହଯୋଗରେ ଚାଳିଆ ଟେକା ପ୍ରସ୍ତାବ ଲୋକଙ୍କ ମନକୁ ପାଇଲା । ସ୍ଥାନୀୟ ସର୍ବୋଦୟ କର୍ମୀ ପ୍ରଶାନ୍ତ ମହାନ୍ତିଙ୍କୁ ଏ କାମର ତତ୍ତ୍ୱାବଧାରକ କରି ପିଲାଙ୍କ ମଧ୍ୟାହ୍ନ ଭୋଜନ, ଟେଷ୍ଟ ରିଲିଫ୍, ବିହନ ଯୋଗାଣ, ଅସ୍ଥାୟୀ ସରକାରୀ ଚାଉଳଗୋଲା ଖୋଲିବା ଆଦିର ବ୍ୟବସ୍ଥା ପାଇଁ ରମାଦେବୀଙ୍କ ସାଙ୍ଗରେ ବାରିପଦା ଫେରିଲୁ । ଗଙ୍ଗାହାର ବଳଙ୍ଗକୂଳର ଏକାବନ ଖଣ୍ଡ ଗାଁରେ ଉତ୍କଳ ରିଲିଫ୍ କମିଟି ଏହି ସହଯୋଗ ପଦ୍ଧତିରେ ଘର କରାଇଲେ । ମୋରଡ ବ୍ଲକ୍‌ର ଏକତାଳୀ, ହାଣ୍ଡିଧୁଆ, ସୁମିତ୍ରାଦେଇପୁର ଆଦି ଗାଁ ବୁଲି ଭୋଗରାଇ ଓ ବାଲିଆପାଳରେ ପାଣି ଛାଡ଼ିବା ମାତ୍ରେ କିପରି କିଛି ଚାଷ ହୋଇ ଯଥାଶୀଘ୍ର ସମ୍ଭବ ଫସଲ ଉତ୍ପାଦନ ହେବ, ସେ ବିଷୟରେ ଗ୍ରାମବାସୀଙ୍କ ସଙ୍ଗେ କଥାବାର୍ତ୍ତା କରି ବିହନ ଯୋଗାଇବା ବ୍ୟବସ୍ଥା ହେଲା । ସପବୁଣାଳୀ ବାଉଁଶ କାମ କଲା ଲୋକ, କୁମ୍ଭାର, ତନ୍ତୀ ଆଦି କାରିଗରଙ୍କୁ ସେମାନଙ୍କ ସରଞ୍ଜାମ ତୁରନ୍ତ ଯୋଗାଣ ବ୍ୟବସ୍ଥା ସାଙ୍ଗକୁ ବାଲିଆପାଳରେ ଇନ୍ନଡ଼ା, ରସଲପୁର, ଡ଼ାଙ୍ଗରପଦା, ପାଳପଡ଼ା ଆଦି ବନ୍ୟାବିଧ୍ୱସ୍ତ ଗାଁରେ ସଙ୍ଗେ ସଙ୍ଗେ ମଧ୍ୟାହ୍ନ ଭୋଜନ କେନ୍ଦ୍ର ଆରମ୍ଭ କରାଗଲା । ଯୁଦ୍ଧକାଳୀନ ଜରୁରୀ ପରିସ୍ଥିତିର ତତ୍ପରତାରେ ଏ କାମ କରାଯାଉଥିବାରୁ ଗୋଟିଏ ପ୍ରକାର ଆତ୍ମସନ୍ତୋଷ ଏ କାମରୁ ମିଳୁଥାଏ ।

ଓଡ଼ିଶାରେ ତ ବନ୍ୟା, ମରୁଡ଼ି, ଦୁର୍ଭିକ୍ଷ ଦେହଘଷା ହୋଇଯାଇଛି । ତା ସାଙ୍ଗକୁ ବାତ୍ୟା ଆସି ଜୁଟିଗଲା । ୧୯୬୭ ଅକ୍‌ଟୋବର ନଅ ତାରିଖ ଦିନ ମେଘୁଆ ପାଗ କରି ପବନ ପିଟିଲା । ମଧ୍ୟେ ମଧ୍ୟେ ଝିପି ଝିପି ବର୍ଷା ହେଉଥାଏ ।

ରମାଦେବୀଙ୍କ ଭାଇ ନିକୁଞ୍ଜ କିଶୋର ଦାସଙ୍କର ଅକ୍ଟୋବର ଦଶ ତାରିଖରେ ଦେହାନ୍ତ ହେଲା । ତାଙ୍କ ଘରେ ଚିଫ୍ ଇଞ୍ଜିନିୟରଙ୍କ ସ୍ତ୍ରୀ ମିନତି ମହାନ୍ତି କହିଲେ ଯେ ତୋଫାନରେ ଗଛ ଉପୁଡ଼ି ପାରାଦୀପ ଯିବା ରାସ୍ତା ବନ୍ଦ ହୋଇଯାଇଛି । କଲେକ୍ଟରଙ୍କୁ ଏ ବିଷୟରେ ପଚାରିବା ପାଇଁ ଟେଲିଫୋନ୍ ଏକ୍‌ସଚେଞ୍ଜକୁ ନମ୍ବର ମାଗିବାରୁ ଗୋଟିଏ ଅପରିଚିତ କଣ୍ଠ ଏକ୍‌ସଚେଞ୍ଜରୁ ଶୁଣାଗଲା – 'ମା ! ଆପଣ ଆଗ ଆମ ଗାଁ ପଙ୍କପାଳକୁ ଯାଆନ୍ତୁ । ପରେ ଜାଣିଲୁ ତାଙ୍କ ନାମ ଅଦ୍ୱୈତ ପ୍ରସାଦ ମହାପାତ୍ର ।

ଗଛ ଉପୁଡ଼ି ବାଟ ବନ୍ଦ । ଫଳରେ ସରକାରୀ କଳ ଅଚଳ । କଲେକ୍ଟର କିନ୍ତୁ ସଠିକ୍ ବିବରଣୀ ପାଇ ନ ଥାନ୍ତି । ଆରମ୍ଭ ହେଲା ପଦଯାତ୍ରା । ରେଭେନ୍ସା କଲେଜ ଛାତ୍ର ଉଦୟଚାନ୍ଦ ବିଶ୍ୱାଳ ଗଲେ ରାଜନଗର । ଆଳି, କନିକା, ଚାନ୍ଦବାଲି ଅବସ୍ଥା ଦେଖିବାକୁ ଚାଲିଲେ ରବି ସାହୁ ଓ ଶ୍ୟାମସୁନ୍ଦର ବିଶ୍ୱାଳ । କୁଜଙ୍ଗ, କେନ୍ଦ୍ରାପଡ଼ା, ପଟାମୁଣ୍ଡାଇକୁ ଗଲେ ଶରତଚନ୍ଦ୍ର ମହାରଣା ଓ ମନୋରଞ୍ଜନ ପାଢ଼ୀ । ସାଙ୍ଗରେ ସମସ୍ତେ କିଛି କିଛି ନଗଦ ଟଙ୍କା ସାହାଯ୍ୟ ଦେବାକୁ ନେଲେ । ରମାଦେବୀ ପ୍ଲୁରୁସି ରୋଗ ଭୋଗିବା ପରେ ଅଧିକ ବାଟ ଚାଲିପାରୁ ନ ଥାନ୍ତି । ବ୍ରିଗେଡ଼ିଅର ସଂଗ୍ରାମ କେଶରୀ ରାୟଙ୍କ ଜିପ୍‌ରେ ତାଙ୍କ ସାଙ୍ଗରେ ଈଶ୍ୱରଲାଲ ବ୍ୟାସ ପ୍ରମୁଖ କେତେଜଣ ଗଲୁ ଆଗ ପଙ୍କପାଳ । ତାପରେ ମାର୍ଶାଘାଇ କୁମ୍ଭାରସାହି ପର୍ଯ୍ୟନ୍ତ । ନଡ଼ିଆ ଗଛଗୁଡ଼ିକ ତଳେ ଲୋଟୁଥାନ୍ତି । କୌଣସି ଘରେ ଛପର ନ ଥାଏ । ମାର୍ଶାଘାଇ ବ୍ଲକ୍ ଅଫିସ୍ ଧ୍ୱସ୍ତବିଧ୍ୱସ୍ତ, ଲୁଣା ନଈ ପୋଲ ଉପରେ ପଡ଼ିଥିବା ବିରାଟ ବିରାଟ ସ୍ଲାବ୍ ଉଡ଼ିଯାଇଥାଏ । ପୁରା ଧାନଗଦା ଗୋଟାଏ ଗାଁରୁ ଆଉ ଗୋଟାଏ ଗାଁକୁ ଉଡ଼େଇ ନେଇ ସେମିତି ଗଦାମଡ଼ା ଥୋଇ ଦେଇଛି । ତାରଖୁଣ୍ଟ ଧନୁ ପରି ବଙ୍କା ।

ମଇଁଷୀଙ୍କର ପାଣି କାଦୁଅରେ ଶରଧା । ସେମାନେ ବଣ ବିଲକୁ ପଳେଇ ଯାଇଥିବାରୁ ବର୍ତ୍ତି ଯାଇଥାନ୍ତି । ଗାଈ ବଳଦ ଘରମୁହାଁ । ପଘା ଫିଟାଇଦେବା ସତ୍ତ୍ୱେ ଗୁହାଳରେ ପଶି କାନ୍ଥ ପଡ଼ି ମରି ଶୋଇଥାନ୍ତି । ଘରେ କାନ୍ଥ ତଳେ ପଦାରେ ତୋଫାନରେ ନିଃଶ୍ୱାସ ନେଇ ନ ପାରି ମଣିଷ ମରି ଶୋଇଥାନ୍ତି । ଧାନଗଛର ପତ୍ର ସୁଦ୍ଧା ତୋଫାନରେ ଚିରି ହୋଇ ସୂତାଖିଅ ପରି ହୋଇ ଯାଇଥାଏ । ସେ ଦୃଶ୍ୟ ବର୍ଣ୍ଣନାତୀତ ।

କେନ୍ଦ୍ରାପଡ଼ା କଲେଜ୍‌ରେ ଆସ୍ଥାନ ଜମେଇ ସଂକଟତ୍ରାଣ କାମ ଆରମ୍ଭ ହେଲା । ଜୟପ୍ରକାଶ ନାରାୟଣ ରମାଦେବୀଙ୍କ ଟେଲିଗ୍ରାମ୍ ପାଇ ବିହାର ରିଲିଫ୍ କମିଟିରୁ ନଗଦ ଲକ୍ଷେ ଟଙ୍କା ସାଙ୍ଗକୁ ପ୍ରତିଦିନ ଏକ ଟ୍ରକ୍ ଖାଦ୍ୟଶସ୍ୟ, ତେଲ, ଗୁଣ୍ଡଦୁଧ, ଲୁଗାପଟା ପଠାଇ ଉତ୍କଳ ରିଲିଫ୍ କମିଟିର ଗୋଦାମ ବୋଝେଇ କରିଦେଲେ । ଶ୍ରୀ ଶ୍ରୀକାନ୍ତ ପଣ୍ଡା ଥା'ନ୍ତି ସେ ଗୋଦାମ ତତ୍ତ୍ୱାବଧାରକ । ଯାଉଛି ଯେତେ, ଆସୁଛି ସେତେ । ତାଙ୍କର ଆନନ୍ଦ କହିଲେ ନ ସରେ । କିନ୍ତୁ ନାକ ପୋଛିବାକୁ ବେଳ ନାହିଁ । ଦୁଗ୍ଧ ବଣ୍ଟନ କେନ୍ଦ୍ର, ମଧ୍ୟାହ୍ନ ଭୋଜନ କେନ୍ଦ୍ର, ମୃତଲୋକଙ୍କ ପରିବାରକୁ ଆର୍ଥିକ ସାହାଯ୍ୟ ଦାନ, ଅନାଥ ପିଲାଙ୍କ ଥଇଥାନ, ନାଉରୀକୁ ଡ଼ଙ୍ଗା, ତନ୍ତୀଙ୍କୁ ତନ୍ତ, କେଉଟଙ୍କୁ ଜାଲ, କୁମ୍ଭାରକୁ ମୂଳଧନ, ଚାଷୀଙ୍କ ପାଇଁ ନୂଆ ପାଣିପମ୍ପ ଓ ଘେରିବନ୍ଧ ଯୋଗାଇବା ସାଙ୍ଗକୁ ମଢ଼ ଉଠାଇବା, କୂଅ ଶୋଧନ, ଔଷଧ ବିତରଣ, ଚାଳିଆ ତିଆରି ଆଦି କାମ ପୂରାଦମ୍‌ରେ ଚାଲିଲା । ମାନନୀୟ ରାଧାନାଥ ରଥ ଓ ରମାଦେବୀ ଚର୍‌କୀପରି ବାତ୍ୟାବିଧ୍ୱସ୍ତ ଅଞ୍ଚଳରେ ବୁଲୁଥାନ୍ତି । ଜୟପ୍ରକାଶଜୀଙ୍କ ଦ୍ୱାରା ପ୍ରଦତ୍ତ ପ୍ରଚୁର ଖାଦ୍ୟଶସ୍ୟ ଯୋଗାଇ ଏ କାମ କରାଯାଉଥାଏ ।

ଏହା ସାଙ୍ଗକୁ ଅନ୍ୟ ନୈମିତ୍ତିକ କାମ ମଧ୍ୟ ଜୁଟୁଥାଏ । ଯଥା ଓଡ଼ିଆ-ତେଲୁଗୁ ଦ୍ୱନ୍ଦ୍ୱ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ରମାଦେବୀଙ୍କୁ ଏହି ମର୍ମରେ ପତ୍ର ଲେଖିଲେ ଯେ ଆନ୍ଧ୍ରପ୍ରଭା ପତ୍ରିକାରେ ପ୍ରକାଶ ପାଉଥିବା ଏକ ପ୍ରବନ୍ଧକୁ ମୂଳ କରି ଯେଉଁ ଉତ୍ତେଜନା ଦେଖା ଦେଇଛି ଆପଣ ତାର ସମାଧାନ ପାଇଁ ତତ୍ପର ହୁଅନ୍ତୁ । ମୁଖ୍ୟମନ୍ତ୍ରୀ ଅବଶ୍ୟ ଏ ଚିଠି ଲେଖିଥିଲେ ୩୦ ଏପ୍ରିଲ, ୧୯୬୭ରେ; କିନ୍ତୁ ଏ ଶାନ୍ତି ସ୍ଥାପନା କାମ କ'ଣ ତୁରନ୍ତ ଶେଷ ହୁଏ !

ବାତ୍ୟା ଜଞ୍ଜାଳ ସରିବା ପରେ ପରେ ଚିନ୍ତା ପଡ଼ିଲା ମରୁଡ଼ି ପାଇଁ । ଓଡ଼ିଶାର ଆଠୋଟି ଜିଲ୍ଲାରେ ୧୯୬୮ ମସିହାରେ ମରୁଡ଼ି ପଡ଼ିଲା । ଏହାର ପ୍ରତିକାର ପାଇଁ ରମାଦେବୀ ଆବୁରୋଡ଼୍‌ରେ ଜୟପ୍ରକାଶଜୀଙ୍କ ପରାମର୍ଶ ଲୋଡ଼ିଲେ । ତାଙ୍କ ଉଦ୍ୟମରେ ଦିଲ୍ଲୀରେ ଥିବା ପୃଥିବୀର ସମୁଦାୟ ରିଲିଫ୍ ସଂସ୍ଥାର ଏକ ବୈଠକରେ ରମାଦେବୀ ଓଡ଼ିଶା ପରିସ୍ଥିତି ବଖାଣିଲେ । ମୁଖ୍ୟମନ୍ତ୍ରୀ ସିଂହଦେଓ ଯୋଗକୁ ସେତେବେଳେ ଦିଲ୍ଲୀରେ ଥାନ୍ତି । ଉତ୍କଳଭବନରେ ତାଙ୍କୁ ସାକ୍ଷାତ୍ କରି ଭୁବନେଶ୍ୱରରେ ଏହି ସଂସ୍ଥାମାନଙ୍କର ଏକ ବୈଠକ ଡ଼ାକି ବାର ଦିନ ବାର ଠିକ ହେଲା । ଶ୍ରୀ ରାମନାଥନ୍ ଓ ରାଜସ୍ୱମନ୍ତ୍ରୀ ସୁରେନ୍ଦ୍ର ପଟ୍ଟନାୟକଙ୍କ ଉପସ୍ଥିତିରେ ଏ ବୈଠକ ଭୁବନେଶ୍ୱରରେ ବସିଲା । ସଂସ୍ଥାମାନେ ଗୋଟିଏ

ଗୋଟିଏ ଜିଲ୍ଲା ସମ୍ଭାଳିବାର ଦାୟିତ୍ୱ ବାଣ୍ଟିନେଲେ । କାମଟି ସୁରୁଖୁରୁରେ ସମାଧାନ ହେଲା ।

ଦଶପଲ୍ଲାର ମରୁଡ଼ି ଅବସ୍ଥାର ମୁକାବିଲା କରିବା ପାଇଁ ରମାଦେବୀ ସେଠାରେ ବନ୍ଧ ତିଆରି ଆଦି କାମ ସାଙ୍ଗକୁ ସ୍ତ୍ରୀଲୋକଙ୍କ ପାଇଁ ଯେଉଁ ଧାନକୁଟା ଯୋଜନା ପ୍ରସ୍ତୁତ କଲେ, ସେ ବିଷୟରେ ସେ ଆଲୋଚନା କରିବା ପାଇଁ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କୁ ଭେଟିଲେ । ସେହି ନମ୍ର ସୌଜନ୍ୟପୂର୍ଣ୍ଣ ବ୍ୟବହାର ସହିତ ଏକ ଦୃଢତାବ୍ୟଞ୍ଜକ ଦୃଷ୍ଟି ତାଙ୍କଠାରେ ଦେଖିଲି । ଏ ଯୋଜନା ପାଇଁ ସେ ଲକ୍ଷେ ବା ଦୁଇଲକ୍ଷ ଟଙ୍କା ଦେବେ ବୋଲି କହିଲେ । ମାତ୍ର ବିଭାଗୀୟ ସଚୀବ କୋଡ଼ିଏ ହଜାର ଟଙ୍କା ମଞ୍ଜୁର କଲେ । ମନେ ପଡ଼ିଗଲା – ''ରାଜା ଯାହା ଦେଲେ ହରଷେ........।'' ସେକ୍ରେଟେରିଏଟ୍‌ର ବଙ୍ଗଳା ଅନୁବାଦ ''ମହାକରଣ'' ପରା !!

ଗାନ୍ଧୀ ଶତବାର୍ଷିକୀ ଉପଲକ୍ଷେ ତ୍ରିବିଧ କାର୍ଯ୍ୟକ୍ରମ ସଂକ୍ରାନ୍ତରେ ଆଲୋଚନା କରିବାକୁ ରମାଦେବୀଙ୍କ ସାଙ୍ଗରେ ବିନୋଦ ମହାନ୍ତି ଓ ମୁଁ ଜମ୍ବୁ ଅଞ୍ଚଳକୁ ଗଲୁ । ଟାଙ୍କିବେଲାରୀ ଖ୍ରୀଷ୍ଟିଆନ୍ ପଡ଼ାରେ ରାତି କଟେଇ ପରଦିନ ଜମ୍ବୁ ଯାଇ ସ୍କୁଲଘର ବାରଣ୍ଡାରେ ବସିଯାଇଛୁ – ଜଣେ ସାନ୍ତାଳ ସ୍ତ୍ରୀଲୋକ ଫୁଲନାଡ଼ ଲାଗିଥିବା ସଦ୍ୟପ୍ରସୂତ ଶିଶୁଟିଏ କୋଳରେ ଧରି ଆସି ରମାଦେବୀଙ୍କୁ କହିଲେ –'ମୋତେ ଏହି ଅବସ୍ଥାରେ ଘରୁ ବାହାର କରିଦିଆଯାଇଛି ।' ଘଟଣା ବୁଝିବାକୁ ବିନୋଦବାବୁ ଓ ମୁଁ ସେ ସ୍ତ୍ରୀଲୋକ ସାଙ୍ଗରେ ତତ୍‌କ୍ଷଣାତ୍ ଘଟଣାସ୍ଥଳକୁ ଯାତ୍ରା କଲୁ । ପ୍ରାୟ ଅଢ଼େଇମାଇଲ ଚାଲିବା ବାଟରେ ବାଟ ଦୁଇପାଖ ଧାନବିଲ ଆମକୁ ଜମ୍ବୁ ପରିସ୍ଥିତି ନୀରବ ଭିକ୍ଷଣରେ କହିଦେଲା ।

ଏହି ଅଞ୍ଚଳ ପୂର୍ବେ ବର୍ଦ୍ଧମାନ ରାଜାଙ୍କ ଜମିଦାରୀ ଅନ୍ତର୍ଗତ ଜଙ୍ଗଲ ଥିଲା । ବର୍ଦ୍ଧମାନ ରାଜା ଏହି ଜମିକୁ ପଟ୍ଟା ଦେବାକୁ ଚାହିଁବାରୁ ଏହି ଘନ ଜଙ୍ଗଲର ଜନ୍ତୁଭୟ, ସନ୍ତସନ୍ତିଆ ମାଟି ହେତୁ ବାତକଫ ଜ୍ୱର, ସର୍ବୋପରି ଲୁଣାପାଣି ଯୋଗୁ କେହି ଓଡ଼ିଆ ଏ ଜମିକୁ ପଟ୍ଟା ନେଲେ ନାହିଁ । ମେଦିନୀପୁରର ବଙ୍ଗାଳୀ ଚାଷୀ ଏ ଜମି ପଟ୍ଟା ନେଇ ହେନ୍ତାଳ ବଣ ସଫା କରି ପଲାମାରି ରହି ଲୁଣା ପାଣିରେ ତେନ୍ତୁଳି ପକେଇ ପିଇ ଜମିରେ ଲୁଣା ଘେରିବନ୍ଧ ଦେଇ ପଡ଼ିଆ ଜମିକୁ ଉଠିଆ କଲେ । ଅବଶ୍ୟ ମାର୍ଶାଘାଇ, ମହାକାଳପଡ଼ା ଅଞ୍ଚଳରୁ କନ୍ଧାଚାଷୀ ଆସି କନ୍ଧା ଚାଷ କରି ଚାଲିଯାଉଥିଲେ ଏବଂ ଧାନ ପାଚିଲେ କାଟି ନେଉଥିଲେ । ମାତ୍ର ସେମାନଙ୍କ ସଂଖ୍ୟା ବହୁତ କମ୍ ଥିଲା । ବଙ୍ଗାଳୀମାନେ ଜମିକୁ ଚାଷୋପଯୋଗୀ କରି ସୁନା ଫଳେଇବାରୁ କେତେକ ମାମଲତକାର ସେ ଜମି

ଦଖଲ କରିବା ପାଇଁ ଲୋକଙ୍କୁ ମତେଇଲେ । ଫଳରେ ବିଭ୍ରାଟ ଆରମ୍ଭ ହେଲା । ବଙ୍ଗାଳୀ ଚଷିଥିବା ଜମିରେ ଓଡ଼ିଆ ବିହନ ବୁଣିଲେ, ବଙ୍ଗାଳୀ ବୁଣିଥିବା ଜମିରେ ଓଡ଼ିଆ ବାଛିଲେ । ଏହିପରି ହେଉ ହେଉ ଧାନକଟା ବେଳ ଆସିଲା ଓ ଉଭୟପକ୍ଷ ଧାନକାଟିବାକୁ ବିଲକୁ ଯିବାରୁ ଗଣ୍ଡଗୋଳ ଆରମ୍ଭ ହେଲା । ଅସ୍ତ୍ର ଭିତରେ ତ ଠେଙ୍ଗାବାଡ଼ି, ଦା' କଟୁରୀ, ପନିକୀ ପନ୍ଥା ତେଣ୍ଟା ! ସେହି ଅସ୍ତ୍ର ସଂଗ୍ରହ କରି ଉଭୟପକ୍ଷ ମାରପିଟ୍ ଆରମ୍ଭ କଲେ । ଠାଏ ଠାଏ ମ୍ୟାଜିଷ୍ଟ୍ରେଟ୍ ଜମି ଉପରେ ୧୪୪ ଜାରିକଲେ । ଯେଉଁ ବଙ୍ଗାଳୀ, ସୁନୀତି, ପେଟଛେଲା, ବେଣାକନ୍ଦା, ଖରନାସୀ ଆଦିରେ ସପରିବାରେ ବସବାସ କରି ବହୁତ ଜମି ଦଖଲକରି ମେଦିନୀପୁରରୁ ଚାଷୀ ଆଣି ଜମି ଭାଗ ଲଗାଉଥିଲେ ଏବଂ ଧାନ ପ୍ରଦେଶ ବାହାରକୁ ରପ୍ତାନୀ କରିବା ଉପରେ ସରକାରୀ କଟକଣା ଥିବାବେଳେ ରାଜନୈତିକ ଦଳ ଓ ସଂପୃକ୍ତ ରାଜପୁରୁଷଙ୍କୁ ଉତ୍କୋଚ ଦେଇ ସମୁଦ୍ରପଥରେ ନୌକାରେ ଧାନ ରପ୍ତାନୀ କରିବା କାରବାରରେ ଲିପ୍ତ ଥିଲେ, ସେମାନେ ଏ ଘଟଣାରେ କ୍ଷିପ୍ତ ହୋଇ ଉଠିଲେ । ମଜାର କଥା ହେଉଛି ମେଦିନୀପୁରରୁ ଯେଉଁ ଲୋକଙ୍କୁ ଭାଗରେ ଜମି ଦେଇ ସେମାନେ ଶୋଷଣ କରୁଥିଲେ ସେମାନଙ୍କ ମଧ୍ୟରୁ ଅନେକେ ଓଡ଼ିଆଙ୍କ ସଙ୍ଗେ ଯୋଗଦେଲେ । ଜମ୍ମୁରେ ଏହି ଦଙ୍ଗାଗୋଳ ଆରମ୍ଭ ହେବାକୁ ଯାଉଥିବା ବେଳେ ଆମେ ସେଠାରେ ପହଞ୍ଚିଲୁ । ତ୍ରିବିଧ କାର୍ଯ୍ୟକ୍ରମ କଥାକୁ ପେଡ଼ିରେ ପୁରେଇ ଦେଇ ଆମେ ଉଭୟ ଦଳକୁ ଡ଼କାଇ ଏକାଠି ବସାଇଲୁ । ଶାନ୍ତିପୂର୍ଣ୍ଣ ନ୍ୟାୟସଙ୍ଗତ ଉପାୟରେ ଏ ଅଡୁଆ ତୁଟାଇବାକୁ ରମାଦେବୀ ସେମାନଙ୍କୁ ନିବେଦନ କଲେ । ରାତି ବାରଟା ଯାଏ ପାଟିତୁଣ୍ଡ, ଯୁକ୍ତିତର୍କ ହୋଇ କିଏ କେତେ ଧାନ ପାଇବେ ତାହା ନିଷ୍ପତ୍ତି ହେଲା । ସର୍ବଶ୍ରୀ ଶ୍ରୀଧର ସାମଲ, ଜଗନ୍ନାଥ ନାୟକ, ଗଙ୍ଗାଧର ମହାପାତ୍ର ପ୍ରମୁଖ ସ୍ୱେଚ୍ଛାସେବକ ଭାବରେ ଏ ସମାଧାନରେ ସାହାଯ୍ୟ କଲେ । ବେଣାକନ୍ଦା ସୁନୀତିରେ ପରିସ୍ଥିତି ଆହୁରୀ ଜଟିଳ ହୋଇଥାଏ । ସର୍ବଶ୍ରୀ ଫକୀର ରାଉତ, ଅର୍ଜ୍ଜୁନ ବେହେରା ଆଦି ମୁଖିଆଙ୍କୁ ଭେଟିଲାବେଳକୁ ଦେଖିଲୁ ସେମାନଙ୍କ ଆସ୍ଥାନରେ ଶହ ଶହ ଲୋକ ଗୋଟାଏ ହାତରେ ଠେଙ୍ଗା ଅନ୍ୟ ହାତରେ ଦାଆ ଧରି ଧାନ କାଟିବାକୁ ଉଦ୍ୟତ । ରମାଦେବୀ ଡ଼କାଇବା କଥା କହି ଫକୀର ରାଉତ ଅପେକ୍ଷା କରିବାକୁ କହିବା ମାତ୍ରେ ଶହ ଶହ ଠେଙ୍ଗା ତଳେ ପଡ଼ିଗଲା, ପୂରାପୂରି ସାମରିକ କାଇଦାରେ । ତେଣେ ଶକ୍ତିପଦ ଦାସ, ଅମୂଲ୍ୟ ବେରା, ଅଖିଳ ଦାସ ପ୍ରଭୃତି ଦା' କଟୁରୀ ଧରି 'ନବବାଂଲା' ସ୍ଥାପନ କରିବା ପାଇଁ ଚିତ୍କାର କରୁଥାନ୍ତି । ଏ ତ୍ରିମୂର୍ତ୍ତି ଏପରି ସ୍ୱଭାବର ଯେ ସେଠା ବଙ୍ଗାଳୀମାନେ ସୁଦ୍ଧା ସେମାନଙ୍କ ଅନ୍ୟାୟ ଆଚରଣ

ବିରୁଦ୍ଧରେ ଆମକୁ କହୁଥାନ୍ତି । ଯାହାହେଉ, ଉଭୟପକ୍ଷ ବସି ଗଣ୍ଡଗୋଳ ମୀମାଂସା ହୋଇଗଲା । ଶ୍ରୀ ଫକୀର ରାଉତ ଏ ଅଡୁଆ ତୁଟାଇବାରେ ନିଜର ଉଦାରତାର ପରିଚୟ ଦେଲେ ।

ଡ଼ଙ୍ଗାରେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଗଲାବେଳକୁ ଶହ ଶହ ସ୍ତ୍ରୀଲୋକ ପିଲା କାଖେଇ ନଦୀ କୂଳେ କୂଳେ ଡ଼ଙ୍ଗା ସାଙ୍ଗରେ ଚାଲିଚାଲି କହୁଥାନ୍ତି –‘‘ମା ! ଆପଣ ଆମକୁ ରକ୍ଷା କରିବାକୁ ଆସିଛନ୍ତି । ଆପଣ ରକ୍ଷା ନ କଲେ ଏ ପିଲାଛୁଆ ଓ ଆମେ ବଂଚିବୁ ନାହିଁ । ଜମ୍ମୁରେ ଅସ୍ଥାୟୀ ଭାବରେ ନିଯୁକ୍ତ ହୋଇଥିବା ମ୍ୟାଜିଷ୍ଟ୍ରେଟ୍ ରମାଦେବୀଙ୍କୁ କହିଲେ ଯେ ଆପଣ ଯାହା କରୁଛନ୍ତି, ସେ ଖବର ମୁଁ ପାଉଛି । ଆପଣ ଏଥିରେ ହସ୍ତକ୍ଷେପ ନ କରିଥିଲେ ମୁଁ ନିଶ୍ଚିତରୂପେ ଗୁଳି ଚଳାଇଥାଆନ୍ତି । ସେ ପୁଣି ରମାଦେବୀଙ୍କୁ ଖରନାସୀ ଯିବାକୁ ଅନୁରୋଧ କଲେ । ରାମନଗର ହାଟରେ ବିରାଟ ସମାଧାନ-ସଭା ହେଲା । ମଧ୍ୟସ୍ଥ ନିଷ୍ପତ୍ତି କଲେ ଯେ ଏକ ଏକର ଜମି ରଖିଥିବା ବଙ୍ଗାଳୀ ସେ ଜମିର ସବୁ ଶସ୍ୟ ପାଇବେ । ଦେଢ଼ରୁ ସାଢ଼େ ତିନି ଏକର ଜମିର ବଙ୍ଗାଳୀ ମାଲିକ ବାରଅଣା ଓ ଜବରଦସ୍ତି ବାଛିଥିବା ବା ବୁଣିଥିବା ଓଡ଼ିଆ ଚାରଣା ଫସଲ ପାଇବେ । ସାଢ଼େ ତିନି ଏକରରୁ ଆଠ ଏକର ଜମିଥିବା ବଙ୍ଗାଳୀ ମାଲିକର ଫସଲ ଅଧା ଅଧା ବଣ୍ଟାହେବ । ଆଠ ଏକରରୁ ଅଧିକ ଜମିର ମାଲିକ ଚାରଣା, ଓଡ଼ିଆ ବାରଣା ପାଇବେ । କହିବା ବାହୁଲ୍ୟ ଏଥିରୁ ବହୁପରିମାଣ ଜମି ଜବରଦଖଲ କରାଯାଇଥିଲା । ସର୍ବଶ୍ରୀ ପଦ୍ମଚରଣ ନାୟକ, ମହାକାଳପଡ଼ାର ନୃସିଂହ ବାବୁ ଓ ଶ୍ରୀଧର ସାମଲ ଏହି ସମାଧାନ ପାଇଁ ଅକ୍ଳାନ୍ତ ପରିଶ୍ରମ କଲେ । ଆମେ ଥିଲୁ ପଛପାଳିଆ । ଜମ୍ମୁରେ ଯେତେ ଜମି ଅଛି ତାହାର ପାଞ୍ଚଗୁଣ ଏକର ଲେଖା ଜମି ଦେବା ଲୋଭ ଦେଖାଇ ମାମଲତକାରମାନେ ଯେ ସେମାନଙ୍କୁ ଡ଼ାକି ଆଣିଛନ୍ତି – ଏହି ପ୍ରତିଶ୍ରୁତିର ଅସତ୍ୟତା ତଥ୍ୟ ସହିତ ପ୍ରତିପନ୍ନ କରିବା ଆଦି କାମ କରୁଥିଲୁ ।

‘ଓଁ ଶାନ୍ତି ଶାନ୍ତି ଶାନ୍ତି’ ଉଚ୍ଚାରଣ କରି ଲଞ୍ଚରେ ପାରାଦ୍ୱୀପରେ ପହଞ୍ଚି ବସ୍‌କୁ ଅପେକ୍ଷା କରିଛୁ, ଜଣେ ଭଦ୍ରବ୍ୟକ୍ତି କହିଲେ, ଶୀଘ୍ର କଟକ ବାହାରି ଯାଆନ୍ତୁ। କଟକରେ ଭାରି ଗଣ୍ଡଗୋଳ-ସକାଳ ଦଶଟାରେ କରଫ୍ୟୁ ଘୋଷିତ ହେବ ।

ଯାହାହେଉ, ଆମେ ସର୍ବୋଦୟ କାର୍ଯ୍ୟାଳୟରେ ପହଞ୍ଚିବା ପରେ କରଫ୍ୟୁ ଘୋଷିତ ହେଲା । କଟକରେ ପହଞ୍ଚି ଜାଣିଲୁ ଖ୍ରୀଷ୍ଟ କଲେଜର ଛାତ୍ରମାନେ ଫୁଟବଲ ଖେଳରେ ଜିଣି ବାଜା ବଜେଇ ଶୋଭାଯାତ୍ରା କଲେ । ସେଇଥିରୁ ଏ ଖଳବ ଉପୁଜି ଦୋକାନ

ପୋଡ଼ା ଲୁଟତରାଜ ଆଦି ଘଟିଛି । ଟେଲିଫୋନ୍ ଯୋଗେ ଯୋଗାଯୋଗ ସ୍ଥାପନ କରି ସର୍ବଶ୍ରୀ ଡ଼କ୍‌ଟର ବୀଣା ଦେଈ, ଡ଼କ୍ଟର ଜ୍ୟୋସ୍ନା ଦେଈ, ବ୍ରିଗେଡ଼ିଅର ସଂଗ୍ରାମ କେଶରୀ ରାୟ, ସୁଧାଂଶୁମାଳି ରାୟ, ପ୍ରଭାମୟୀ ଦାସ ପ୍ରମୁଖ ଟାଣୁଆ ଟାଣୁଆ ବିଚାରବନ୍ତ ଶାନ୍ତି-ସେବକ ବାହାରି ତୁରନ୍ତ କଟକ ସହରରେ ବୁଲି ଶାନ୍ତିରକ୍ଷା ଓ ଥଇଥାନ କାମ ତୁଲାଇଲେ । ଆମେ ସେମାନଙ୍କୁ ପାରୁ ପର୍ଯ୍ୟନ୍ତ ସାହାଯ୍ୟ କଲୁ ।

ଏହିପରି ଭାବରେ ଦୁର୍ଭିକ୍ଷ, ବନ୍ୟା, ବାତ୍ୟା, ସାଂପ୍ରଦାୟିକ ଗଣ୍ଡଗୋଳ, ଛାତ୍ର ଧର୍ମଘଟ ଆଦି ବ୍ୟାପାରରେ ଆମକୁ ଏତେ ସମୟ ଦେବାକୁ ପଡ଼ିଲା ଯେ ସର୍ବୋଦୟ ବିଚାର ପ୍ରଚାର କାମରେ ସମୁଦାୟ ସମୟ ଦେବା ଅସମ୍ଭବ ହୋଇଗଲା । ମାତ୍ର ଟଲଷ୍ଟୟ ଗୋଟିଏ ଗଳ୍ପରେ କହିଛନ୍ତି ଯେଉଁ ମୁହୂର୍ତ୍ତରେ ଯେଉଁ କାମ କରିବା ଅନିର୍ବାର୍ଯ୍ୟ ବୋଧ ହେବ ତାହାହିଁ ସେହି ମୁହୂର୍ତ୍ତର ପ୍ରଥମ କର୍ତ୍ତବ୍ୟ । ଏହି ଉକ୍ତି ଅନୁସାରେ ସବୁ ସମୟ ଦେଇ ସର୍ବୋଦୟ ବିଚାର ପ୍ରଚାର କରି ପାରିଲୁ ନାହିଁ ବୋଲି ଆମ ମନରେ କୌଣସି ଶୋଚନା ରହିଲା ନାହିଁ । ଯାହା ସମୟ ପାଉଥାଉଁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବୁଲି ସର୍ବୋଦୟ ବାର୍ତ୍ତା ପ୍ରସାର କାମ ଓ ଅର୍ଥ ସଂଗ୍ରହ କାମ କରୁଥାଉଁ ଏବଂ ବହୁ ମନୋରଞ୍ଜନାତ୍ମକ ସମାଲୋଚନାର ସମ୍ମୁଖୀନ ହେଉଥାଉ । ଉଦାହରଣ ସ୍ୱରୂପ ବିଧାନ ସଭାର ସଦସ୍ୟମାନଙ୍କ ସହିତ ଅର୍ଥ ସଂଗ୍ରହ ମାଧ୍ୟମରେ ନିର୍ମଳଚନ୍ଦ୍ର ରାୟ ଓ ମୁଁ ଭୁବନେଶ୍ୱର ଗଲୁ । ମୟୁରଭଞ୍ଜର ପ୍ରସନ୍ନବାବୁଙ୍କୁ ଦେଖା କରି କହିଲି -'ଗତବର୍ଷ ଆପଣ ଦଶଟଙ୍କା ଚାନ୍ଦା ଦେଇଥିଲେ । ଏ ବର୍ଷ କୋଡ଼ିଏ ଟଙ୍କା ଦେବେ । ସେ କହିଲେ-'ମୁଁ ସର୍ବୋଦୟ କାମ ପାଇଁ ଆଦୌ ଚାନ୍ଦା ଦେବି ନାହିଁ । ସର୍ବୋଦୟ ଭିତରେ ଗୋଳମାଳ ପଶିଲାଣି । ମୁଁ ଏଥର ନକ୍‌ସଲାଇଟ୍ ହୋଇଯିବି ।' ମୁଁ କହିଲି -'ଭଲ ହେଲା । ମୋର ପରବର୍ତ୍ତୀ ପିଢ଼ିର ଯୁବକ ସମାଜ-ପରିବର୍ତ୍ତନ ପାଇଁ କି ଉପାୟ ଚିନ୍ତା କରୁଛନ୍ତି, ସେହି କଥାଟା ଜାଣିବାକୁ ମୁଁ ଚାନ୍ଦା ସଂଗ୍ରହ ବାହାନାରେ ବୁଲୁଛି । ଆପଣଙ୍କର ମତାମତ ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । କାଲି ଏ କଥାଟା ଖବର କାଗଜରେ ଛାପିଦେଲେ ବହୁ ଲୋକ ଉପକୃତ ହେବେ ।' ଶ୍ରୀ ବାଙ୍କ ବିହାରୀ ଦାସ ସେଠାରେ ଉପସ୍ଥିତ ଥିଲେ । ସେ ହସି ହସି କହିଲେ -'ପ୍ରସନ୍ନ ବାବୁ ! ଆପଣ ଯାହା କହନ୍ତୁ, ଚୁନୀଅପାଙ୍କ ପାଖରେ ଆପଣ ହାରିଲେ ।' ପ୍ରସନ୍ନ ବାବୁ ମଧ ହସି ହସି ପ୍ରସନ୍ନ ଚିତ୍ତରେ ମୋତେ ଚାନ୍ଦା ଦେଲେ ।

ତାଙ୍କ ପାଖରୁ ଶ୍ରୀ ନିଶାମଣି ଖୁଣ୍ଟିଆଙ୍କ ପାଖକୁ ଆମେ ଚାନ୍ଦା ପାଇଁ ଗଲୁ । ସେଠାରେ ଶ୍ରୀ ବିରଜା ପ୍ରସାଦ ରାୟ ଓ କେତେଜଣ ଯୁବକ ବସିଥାନ୍ତି । ମୁଁ ପ୍ରସନ୍ନବାବୁଙ୍କ

କଥା କହିବାରୁ ବିରଜାବାବୁ ତାଙ୍କର ସ୍ୱଭାବସୁଲଭ ଧୀର ଗମ୍ଭୀର ଅଥଚ ବିହ୍ୱଳାତ୍ମକ କଣ୍ଠରେ କହିଲେ - 'ପ୍ରସନ୍ନ ବାବୁଙ୍କ କଥା ଠିକ୍ । ସର୍ବୋଦୟ ବାଲାଙ୍କଠାରୁ ଯାହା ପ୍ରତ୍ୟାଶା କରାଯାଉ ଥିଲା, ସେମାନେ ତାହା କରି ପାରିଲେ ନାହିଁ ।' ମୁଁ କହିଲି - 'ପ୍ରତ୍ୟାଶା କଲେ କାହିଁକି ? ବିଚାରି ଦେଖନ୍ତୁ, ସମାଜରେ ଯେଉଁମାନେ ଯୋଗ୍ୟତମ ବ୍ୟକ୍ତି ସେମାନେ ମୁଣ୍ଡଝାଳ ତୁଣ୍ଡରେ ମାରି ଚାଷକାମ କରି ମୂଲ ଲାଗି ଚଳୁଛନ୍ତି । ତାଙ୍କର ପରବର୍ତ୍ତୀ ଶ୍ରେଣୀର ଯୋଗ୍ୟଲୋକେ ଅଧ୍ୟାପନା କାର୍ଯ୍ୟ କରନ୍ତି ବା ପ୍ରତିଯୋଗିତାମୂଳକ ପରୀକ୍ଷା ଦେଇ ରାଜପୁରୁଷ ହୁଅନ୍ତି । ତାଙ୍କ ପରର ଯୋଗ୍ୟବ୍ୟକ୍ତି ହେଉଛନ୍ତି ବିଧାନ ସଭାର ସଦସ୍ୟ । ତାଙ୍କ ତଳକୁ ରହିଛନ୍ତି ନିର୍ବାଚନରେ ପ୍ରାର୍ଥୀ ହୋଇ ହାରିଥିବା ଲୋକେ । ଏମାନଙ୍କ ପରେ ଯେତେକ ବଳିଲେ ସେହିମାନଙ୍କ ମଧ୍ୟରୁ ଆମେ ସର୍ବୋଦୟବାଲା ବାହାରିଛୁ । ଚାଷୀ ମୂଲିଆ, ରାଜପୁରୁଷଙ୍କ କଥା ଥାଉ, ଯେଉଁମାନେ ବିଧାନ ସଭାର ସଦସ୍ୟ ସେମାନେ ବିଧାନସଭାରେ ପେଶ୍ ହେଉଥିବା ବିଲ୍‌ଗୁଡ଼ିକର ଅର୍ଥ ସମସ୍ତେ ବୁଝନ୍ତି କି ?'' ବିରଜାବାବୁ ନାସ୍ତିସୂଚକ ମୁଣ୍ଡ ହଲେଇଲେ । ମୁଁ ପୁଣି କହିଲି-'ଆଚ୍ଛା ! ସେ ବିଲ୍‌ର ଅର୍ଥ ନ ବୁଝିଲେ ନାହିଁ, ଧୈର୍ଯ୍ୟଧରି ଆସେମ୍ବ୍ଲିହଲରେ ବସି ତାହା ଶୁଣନ୍ତି କି ?' ଉତ୍ତର ମିଳିଲା ''ନା'' । 'ଆଚ୍ଛା ନ ଶୁଣିଲେ ନାହିଁ ସେମାନେ ନିଜ ଆସନରେ ବସି ଅନ୍ତତଃ ଢୁଳାଇଲେ ସୁଦ୍ଧା ସଭାଗୃହ ପୂରିଲା ପରି ଦିଶନ୍ତା; ତାହା ନ କରି ସେମାନେ ନିଜ ନିଜ ବସାକୁ ପଳାଇ ଆସନ୍ତି ନା ନାହିଁ ?' ଉତ୍ତରରେ ବିରଜା ବାବୁ ''ହଁ'' ଭରିଲେ । ମୁଁ ନମ୍ର ଭାବରେ ପଚାରିଲି -'ଯେଉଁଠି ବିଧାୟକମାନଙ୍କର ଯୋଗ୍ୟତା ଏୟା ସେଠାରେ ବିଚରା ସର୍ବୋଦୟବାଲାଙ୍କ ଠାରୁ ଆପଣ କଣ ସବୁ ପ୍ରତ୍ୟାଶା କରୁଥିଲେ ?'' ଏ କଥାବାର୍ତ୍ତା ଶୁଣି ଉପସ୍ଥିତ ଯୁବକମାନେ ଖୁବ୍ ହସିଲେ । ନିଶାମଣିବାବୁ ନିର୍ମଳବାବୁଙ୍କୁ ପଚାରିଲେ,'ଗତବର୍ଷ ମୁଁ କେତେ ଦେଇଥିଲି ?' ନିର୍ମଳବାବୁ କହିଲେ, 'କୋଡ଼ିଏ ଟଙ୍କା ।' ନିଶାମଣିବାବୁ ଶାନ୍ତିସୁଧାଙ୍କୁ ଡ଼ାକି ତିରିଶ ଟଙ୍କା ଆମକୁ ଦେବା ପାଇଁ ବରାଦ କଲେ ।

ହାୟ ! ଆଜି ଥକ୍‌କାମରା ହୋଇ ଫେରିବା ବେଳକୁ ସ୍ମିତମୁଖରେ ଭାତ ପରିଷିବାକୁ ଶାନ୍ତିସୁଧା ନାହାନ୍ତି କି ଯେତେ ଥଟ୍ଟିଲି କଥା କହିଲେ ଛଳ ନକରି ତାକୁ ଉପଭୋଗ କରିବାକୁ ନିଶାମଣି ନାହାନ୍ତି ।

ଜୀବନର ନାଟ୍ୟଶାଳାରେ ପୁଣି ବିୟୋଗାତ୍ମକ ଦୃଶ୍ୟର ଅଭିନୟ ଆରମ୍ଭ ହେଲା ।୧୯୬୯ ଜାନୁଆରୀ ୧୫ ତାରିଖ ଦିନ ବ୍ୟାସଜୀଙ୍କ ଛାତିରେ ଯନ୍ତ୍ରଣା ଆରମ୍ଭ

ହେଲା । ଏହା ପୂର୍ବରୁ ଭଦ୍ରଖରେ ଥରେ ଏହି ହୃଦ୍‌ରୋଗ ଦେଖାଦେଇ ସାରିଥିଲା । ତାଙ୍କୁ ଭଦ୍ରଖକୁ ଦେଖିବାକୁ ଯାଇ ପାଖରେ ବସିଥାଏ । କିଛି ସମୟ ନୀରବ ରହି ବ୍ୟାସଜୀ କହିଲେ -''ମୋର ଯାହା କରିବାର କଥା ତାହା କରିସାରିଛି । ଏପରି କୌଣସି କାମ କରି ନାହିଁ ଯେଉଁଥିପାଇଁ ଅନୁତାପ କରିବାକୁ ହେବ । ତେଣୁ ମୃତ୍ୟୁ ଆସିବ ତ ଆସୁ, ଚିନ୍ତା ନାହିଁ । ଏପରି ବେପରବାୟ ହୋଇ ଏ କଥାଟା କହି ପାରିବେ କେତେଜଣ ?''

ଡ଼ାକ୍ତର ହାସପାତାଳକୁ ନେବାକୁ କହିଲେ । ସାଙ୍ଗରେ ହାସପାତାଳକୁ ଗଲି । ବାଟସାରା ଯନ୍ତ୍ରଣାରେ 'ହରି ଓଁ ହରି ଓଁ'' କହୁଥାନ୍ତି । ହାସପାତାଳରେ ପହଞ୍ଚିବା ପରେ ଆଉ କଥା କହି ପାରିଲେ ନାହିଁ, ଶେଷକଥା ''ହରି ଓଁ'' । ଧୀରେ ଧୀରେ ଅବସ୍ଥା ଭଲ ଆଡ଼କୁ ଆସିଲା । ବ୍ୟାସଜୀ ଚଲାବୁଲା କଲେ । ଡ଼ାକ୍ତର ଅନୁମତି ଦେବାରୁ ରମାଦେବୀ ନିଖିଳ ଭାରତୀୟ ମହିଳା ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ ଇନ୍ଦୋର ଗଲେ । ଫେବୃଆରୀ ଏଗାର ତାରିଖରେ ଏହି ହ୍ୟାପ୍ତକାମା ସତ୍‌ପୁରୁଷ ଦେହଛାଡ଼ି ଚାଲିଗଲେ । ଗଲେ ଗୋପବନ୍ଧୁ ଚୌଧୁରୀ, ଗୁଣନିଧି ମହାନ୍ତି, ଈଶ୍ୱରଲାଲ ବ୍ୟାସ । ରହିଲେ ଆଚାର୍ଯ୍ୟ ମହାଶୟ, ହୋତା ମହାଶୟ ଓ ରମାଦେବୀ - ଏମାନେ ଅଭେଦାତ୍ମା ଥିଲେ । ତିନ୍ ଗଲେ, ତିନ୍ ରହିଲେ ।

ଅଗଷ୍ଟ ମାସରେ ବିନୋବାଜୀଙ୍କର ତୃତୀୟ ଓଡ଼ିଶା ଗସ୍ତ ଶେଷ ହେଲା । ଅକ୍ଟୋବର ମାସରେ କୋରାପୁଟର ଗରଣ୍ଡା ଗାଁରେ ଦୀନବନ୍ଧୁ ଚୌଧୁରୀଙ୍କୁ ହତ୍ୟା କରାଗଲା । ଜାଣିବା ଶୁଣିବା ଲୋକେ କହିଲେ ଯେ ନକ୍‌ସଲପନ୍ଥୀମାନେ ତାଙ୍କୁ ହତ୍ୟାକଲେ । ପୂର୍ବରୁ ମାଳତୀ ବିଶ୍ୱାଳଙ୍କ ଜରିଆରେ ଆମେ ଜାଣିଥିଲୁ ଯେ ଆନ୍ଧ୍ରପଟୁ ନକ୍‌ସଲପନ୍ଥୀମାନେ କୋରାପୁଟ ଆସି ସେମାନଙ୍କ ସଙ୍ଗଠନ ଦୃଢ଼ କରୁଛନ୍ତି । ଏ ହତ୍ୟା ସମ୍ବାଦ ପାଇବା ମାତ୍ରେ ରମାଦେବୀଙ୍କ ସାଙ୍ଗରେ କୋରାପୁଟ ଗଲି । ଆମେ ରାୟଗଡ଼ା, କୋରାପୁଟ, କାକିରିଗୁମା, ଜୟପୁର, ନବରଙ୍ଗପୁର ଆଦି ଅଞ୍ଚଳରେ ବୁଲି ଧନୀଲୋକଙ୍କୁ ଏହି ଦୀନବନ୍ଧୁ ଚୌଧୁରୀ ହତ୍ୟାକାଣ୍ଡ ସମ୍ପର୍କରେ ବର୍ତ୍ତମାନ ପରିସ୍ଥିତି ବୁଝାଇ କହିଲୁ ଯେ ପୁଲିସ ଓ ସୈନ୍ୟବଳରେ ଏ ପ୍ରକାର ଆନ୍ଦୋଳନକୁ ମୂଳପୋଛ କରିଦେବା ଉଦାହରଣ ଇତିହାସରେ ନାହିଁ । ତେଣୁ ବୁଦ୍ଧିମାନ୍ ଧନୀଲୋକେ ବର୍ତ୍ତମାନ ଏ ପ୍ରକାର ପଦକ୍ଷେପ ନେବା ଦରକାର ଯଦ୍ୱାରା ଗରିବ ଲୋକଙ୍କର ଦୃଢ଼୍‌ବୋଧ ହେବ ଯେ, ଧନୀମାନେ ଗରିବଙ୍କ ଅଭାବ ଅସୁବିଧା ଦୂର କରିବାକୁ ତତ୍ପର ହେଲେଣି । ପୁରୁଣା କରଜ ଛାଡ଼ କରିଦେବା, ବନ୍ଧକୀ ଜମି ଫେରସ୍ତ ଦେବା, ଗୋତିପ୍ରଥା ଉଠାଇଦେବା, ଭୂମିହୀନଙ୍କୁ ଜମି ଓ ହଳନଙ୍ଗଳ

ଦେବା, ଜମି ଅନୁପାତରେ ରାଜସ୍ୱ କମାଇବା, ବନରକ୍ଷକମାନେ ନିଜର ଆଚରଣ ବଦଳାଇବା ଆଦି କାର୍ଯ୍ୟ କରିବା ପାଇଁ ଗୋଟିଏ ନିବେଦନପତ୍ର ସର୍ବଶ୍ରୀ ଆନନ୍ଦରାଓ କୁମୁଦନ୍, କୃଷ୍ଣଚନ୍ଦ୍ର ବକ୍‌ସିପାତ୍ର, କାମେୟା, କାମେଶ୍ୱର ରାଓ, ଉଦୟ ପଣ୍ଡା, ରାଧାକୃଷ୍ଣ ତୁଳ ପ୍ରମୁଖଙ୍କ ସ୍ୱାକ୍ଷରରେ ଛାପା ହୋଇ ବିତରିତ ହେଲା । ମାତ୍ର ଆମେ ଲକ୍ଷ୍ୟ କଲୁ ଯେ ଏ ପ୍ରକାର କାମ କରିବାଟାକୁ ଆମର କେତେକ ସର୍ବୋଦୟ କର୍ମୀ ନାପସନ୍ଦ କଲେ । ଜଣେ ପରିଷ୍କାର କହିଲେ, ଅହିଂସାତ୍ମକ ଉପାୟରେ ବିଷମତା ଦୂର କରିବା କଥା ଆମେ ପାରୁପର୍ଯ୍ୟନ୍ତ ଏହି ଶୋଷକ ଶ୍ରେଣୀକୁ ବୁଝାଇଲୁ । ଏମାନେ ବୁଝିଲେ ନାହିଁ । ବର୍ତ୍ତମାନ ହାଣ ଖାଇକରି ଯଦି ସେମାନଙ୍କ ଆଖି ଫିଟେ, ତେବେ ଯଥା ଲାଭ । ମୁଁ ବ୍ୟକ୍ତିଗତ ଭାବରେ ଭାବିଲି ଯେ ଗାନ୍ଧିଜୀ ଅହିଂସାଦ୍ୱାରା ଅନ୍ୟାୟର ପ୍ରତିରୋଧ କରିବା ପାଇଁ ଯେଉଁ ଟେକ୍‌ନିକ୍ ବାହାର କରିଛନ୍ତି ଏବଂ ସେ ଟେକ୍‌ନିକରେ ପୂରାପୂରି ସଫଳ ହୋଇ ନାହାନ୍ତି; ମାତ୍ର ସେ ଟେକ୍‌ନିକ୍ ଅବଶ୍ୟ ସଫଳ ହେବ ବୋଲି ଯେ ସେ କହିଯାଇଛନ୍ତି, ସେହି ପ୍ରୟୋଗରେ ଆମେ ହେଉଛୁ 'ଗାନ୍ଧିଜୀଙ୍କ ଗିନିପିଗ୍'' । ତେଣୁ ଅହିଂସାତ୍ମକ ଉପାୟରେ ସମାଜରେ ଅନ୍ୟାୟର ପ୍ରତିରୋଧ କରିବା ଓ ଶାନ୍ତିରକ୍ଷା କରିବା ପାଇଁ ଆମର ବୁଦ୍ଧିବଳ ଥିବାଯାଏ କାମ କରିଯିବାକୁ ହେବ । ଫଳ ନରନାରାୟଣରୂପୀ ଭଗବାନଙ୍କ ହାତରେ ।

୧୯୬୯ରେ ବିହାର ପ୍ରଦେଶରେ ରାଜଗିରଠାରେ ସର୍ବୋଦୟ ସମ୍ମିଳନୀ ହେଲା । ଏଥିପୂର୍ବରୁ ହୋଇଥିବା ସର୍ବୋଦୟ ସମ୍ମିଳନୀମାନଙ୍କରେ ଏତେ ସଂଖ୍ୟକ ଲୋକ କେବେହେଁ ଯୋଗ ଦେଇ ନ ଥିଲେ । ମାତ୍ର ସମ୍ମିଳନୀରେ ଲକ୍ଷେ ଲୋକ ଯୋଗଦେବା ଓ ସମାଜ ପରିବର୍ତ୍ତନ ବା ସଂପୂର୍ଣ୍ଣ କ୍ରାନ୍ତିକୁ କାର୍ଯ୍ୟାନ୍ୱିତ କରିବାରେ ଯେ ଆକାଶପାତାଳ ଫରକ ରହିଛି, ତାହା ତ ଜଣାଶୁଣା ! ଏହି ସମ୍ମିଳନୀରେ ଯୋଗ ଦେବାକୁ ଯାଇ ରାଜଗିରରେ ରମାଦେବୀ ପ୍ରାତଃପ୍ରାର୍ଥନା ପରେ ବିନୋବାଜୀଙ୍କୁ ଭେଟି ଦୀନବଂଧୁ ଚୌଧୁରୀ ହତ୍ୟାର ସର୍ବଶେଷ ବିବରଣୀ ଶୁଣାଇଲେ । ବିନୋବାଜୀ ସବୁ ଶୁଣିସାରି କହିଲେ - 'ଏଣିକି ମଣିଷ ମଣିଷ ମାଂସ ଖାଇବା ବେଳ ଆସୁଛି । ଏସବୁର ମୂଳ କାରଣ ହେଉଛି ବିଷୟାସକ୍ତି । ବିଷୟାସକ୍ତି ନ ଗଲେ ଏ ହଣାମରା ପିଟାପିଟି ମଧ୍ୟ ଯିବନାହିଁ । ଆପଣମାନେ ଶାନ୍ତି-ସେନା କାମ କରୁଛନ୍ତି; ମାତ୍ର ସେଥିପାଇଁ ଅନୁମତି କାହିଁ ? ଅର୍ଥାତ୍ ଲୋକେ ଘରେ ଘରେ ଶାନ୍ତି-ପାତ୍ର ବସାଇ ଶାନ୍ତି-ସେନାଙ୍କୁ ମାନ୍ୟତା ଦେଲେଣି କି ? ଆମେ ମୂଳ ସମସ୍ୟା ଦାରିଦ୍ର୍ୟ, ଅଜ୍ଞାନ ଓ ସାଂପ୍ରଦାୟିକତା ଦୂର କରିବା ପାଇଁ କାମ କରୁଛୁ । ତେଣୁ ଏ ଘଟଣାରେ ଘାବରା ହେବାର କୌଣସି କାରଣ ନାହିଁ । ଆଜିକାଲି ଦେଶରେ ଧର୍ମଘଟ,

ଷ୍ଟ୍ରାଇକ୍ ଆଦି ହେଲେ ଲୋକେ ରେଳଗାଡ଼ି ମୋଟରଗାଡ଼ି ଆଦି ପୋଡୁଛନ୍ତି । ମୁଁ ତ କହୁଛି – ସେଗୁଡାକ ନ ପୋଡ଼ି ମଣିଷ ମାର । ତାହାହେଲେ ଯେଉଁମାନେ ବଞ୍ଚିବେ ଅନ୍ତତଃ ସେମାନେ ସେସବୁ ଜିନିଷ ଭୋଗ କରି ପାରିବେ ।'

ସର୍ବ ସେବା ସଂଘର ସଭାପତି ଶ୍ରୀ ଜଗନ୍ନାଥନ୍ ଏହି କଥାବାର୍ତ୍ତାବେଳେ ସେଠାରେ ଉପସ୍ଥିତ ଥିଲେ । ବିନୋବାଜୀଙ୍କ କଥା ଶୁଣି ସେ ଶିହରି ଉଠି କହିଲେ –'ଏ ବେଦାନ୍ତୀର ହୃଦୟ ତ ବଡ଼ କଠୋର !'' ବିନୋବାଜୀ ଗମ୍ଭୀର ହୋଇଯାଇ କହିଲେ ''କଠୋର ବୋଲି କୁହା ଯାଇଥାନ୍ତା ଯଦି ତେରବର୍ଷ କାଳ ଚାଲି ଚାଲି ବୁଲି ଦେଶବାସୀଙ୍କୁ ଏକଥା କହି ସତର୍କ କରି ଦିଆଯାଇ ନ ଥାନ୍ତା ।'' ଏତିକି କହି ସେ ଚୁପ୍ ହୋଇଗଲେ । ତାଙ୍କର ମର୍ମବେଦନା ମୁଖମୁଦ୍ରାରେ ସ୍ପଷ୍ଟ ପ୍ରତିବିମ୍ବିତ ହେଉଥାଏ ।

୧୯୬୯ ଡ଼ିସେମ୍ବରରେ ଗାନ୍ଧୀ ଶାନ୍ତି-ପ୍ରତିଷ୍ଠାନର ସେକ୍ରେଟାରୀ ରାଧାକୃଷ୍ଣନ୍‌ଜୀ ମୋତେ ଖାନ୍ ଅବଦୁଲ ଗଫୁର ଖାନ୍‌ଙ୍କ ସଙ୍ଗେ ରହିବା ପାଇଁ ଟେଲିଗ୍ରାମ କଲେ । ଖାନ୍‌ସାହେବ ହଜାରିବାଗ ଜେଲ୍‌ରେ ରହିଥିବାବେଳେ ଗୋପବାବୁଙ୍କ ସହିତ ତାଙ୍କର ଘନିଷ୍ଠ ସଂପର୍କ ସ୍ଥାପିତ ହୋଇଥିଲା । ସହଜେ ତ ଗାନ୍ଧୀ ଅନୁଗାମୀ ଭାବରେ ଦୁହେଁ ଏକା କ୍ଷେତ୍ରରେ କାମ କରୁଥିଲେ ! ଖାନ୍ ସାହେବଙ୍କ ଦ୍ୱାରା ସଙ୍ଗଠିତ 'ଖୁଦାଇ ଖିଦମତଗାର୍' ସ୍ୱାଧୀନତା ଆନ୍ଦୋଳନରେ ଯେଉଁ ବୀରତ୍ୱ ପ୍ରଦର୍ଶନ କରିଥିଲେ ସେଥିପାଇଁ ଖାନ୍ ସାହେବ ଜଣେ ବୀର ଯୋଦ୍ଧା ଭାବରେ ଆମର ଆଦର୍ଶ ଥିଲେ । ଏହି ଛଅଫୁଟ ତିନିଇଞ୍ଚ ଦୈର୍ଘ୍ୟବିଶିଷ୍ଟ ସୁଦର୍ଶନ ପୁରୁଷ ୧୮୯୧ରେ ଜନ୍ମଗ୍ରହଣ କରିଥିଲେ । ଯୌବନରେ ସୈନ୍ୟବିଭାଗରେ ଯୋଗଦେଇ ଦେଖିଲେ ସେ ସେହି ବିଭାଗର ଗୋରା ସୈନ୍ୟମାନେ ଭାରତୀୟ ସୈନ୍ୟମାନଙ୍କ ପ୍ରତି ଅପମାନଜନକ ବ୍ୟବହାର କରୁଛନ୍ତି । ଏକୋଇଶ ବର୍ଷ ବୟସରେ ସେ ହାଜୀ ଅବଦୁଲ୍ ୱାହିଦ୍‌ଙ୍କ ସଂସ୍ପର୍ଶକୁ ଆସି ସୀମାନ୍ତ ପ୍ରଦେଶରେ ସମାଜ ସଂସ୍କାର କାମରେ ଲାଗିଲେ । ଶିକ୍ଷାର ପ୍ରସାର ପାଇଁ ସ୍କୁଲ ବସାଇବାରୁ ରକ୍ଷଣଶୀଳ ମୋଲ୍ଲାମାନେ ଓ ବ୍ରିଟିଶ ସରକାର ତାଙ୍କ କାମର ବିରୋଧ କଲେ । ଯୌବନରେ ତାଙ୍କ ସ୍ତ୍ରୀଙ୍କର ଇଚ୍ଛାମୃତ୍ୟୁ ହେଲା । ତାଙ୍କ ପୁଅ ଅସୁସ୍ଥ ହୋଇ ବଞ୍ଚିବା ଆଶା ରହିଲା ନାହିଁ । ସମସ୍ତେ ହତାଶ ହେବାସ୍ଥଳେ ତାଙ୍କ ସ୍ତ୍ରୀ ଅସୁସ୍ଥ ପୁଅ ନିକଟରେ ବସି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନାକରି ପୁଅ ବଞ୍ଚିବା ପାଇଁ ଆଶୀର୍ବାଦ ଭିକ୍ଷା କଲେ ।

ପୁଅ ବଞ୍ଚିଲା । କିନ୍ତୁ ମାଆଙ୍କର ମୃତ୍ୟୁହେଲା । ତାଙ୍କର ଦ୍ୱିତୀୟ ସ୍ତ୍ରୀ ମଧ୍ୟ ହଜ୍ କରିବାକୁ ଯାଇଥିବାବେଳେ ଗୋଡ଼ ଖସି ପଡ଼ିଯାଇ ପ୍ରାଣ ହରାଇଲେ । ଖାନ୍‌ସାହେବ ଏହି

ହଜ୍ ଯାତ୍ରାବେଳେ ଆରବ, ଇରାକ୍, ଇରାନ୍, ପାଲେଷ୍ଟାଇନ୍ ଆଦି ଦେଶକୁ ଯାଇ ଜାଣିଲେ ଯେ ବ୍ରିଟିଶ ସରକାର ଭାରତୀୟ ସୈନ୍ୟଙ୍କ ଦ୍ୱାରା ଏ ଦେଶମାନଙ୍କରେ ଅତ୍ୟାଚାର କରାଉଥିବା ହେତୁ ଏ ଦେଶଲୋକେ ଭାରତୀୟଙ୍କୁ ଘୃଣା କରୁଛନ୍ତି । ଫଳରେ ସେ ଆହୁରି ସରକାର-ବିରୋଧୀ ହୋଇଗଲେ । ୧୯୧୯ରେ ସେ ରୌଲାଟ୍ ଆକ୍ଟର ବିରୋଧ କରି ଛଅମାସ ଜେଲ୍‌ରେ ରହିଲେ । କାରାମୁକ୍ତ ହେବାପରେ ସମଗ୍ର ପ୍ରଦେଶରେ ଠାଆକୁଠାଆ ସ୍କୁଲ ବସାଇଲେ । ପୁଣି ୧୯୨୦ରେ ଖିଲାଫତ୍ ଆନ୍ଦୋଳନରେ ଯୋଗଦେବା ଅପରାଧରେ ତାଙ୍କୁ ତିନିବର୍ଷ ବନ୍ଦୀଶାଳାରେ ରହିବାକୁ ପଡ଼ିଲା । ସଶ୍ରମ କାରାବାସ ଦଣ୍ଡ ମିଳିଥିବାରୁ ପ୍ରତିଦିନ ଚକିରେ ତାଙ୍କୁ ତିରିଶ ସେର ଅଟା ପେଶିବାକୁ ପଡୁଥିଲା । ଏଥରକେ ମୁକ୍ତହେବା ପରେ ୧୯୨୯ରେ ସେ ଖୁଦାଇ ଖିଦ୍‌ମତଗାର (Army of Sufferers) ନାମକ ସ୍ୱେଚ୍ଛାସେବକ ବାହିନୀ ଗଢ଼ିଲେ । ଏହି ସମୟରେ ସେ ଗାନ୍ଧିଜୀଙ୍କର ଅହିଂସାତ୍ମକ ପ୍ରତିରୋଧ ଦ୍ୱାରା ପ୍ରଭାବିତ ହେଲେ । ୧୯୩୦ ମସିହାରେ ଖାନ୍‌ସାହେବଙ୍କ ଗିରଫର ପ୍ରତିବାଦ କରି ଶୋଭାଯାତ୍ରା କରୁଥିବା ବେଳେ ପେଶୱାର ଓ କିସାଖାନୀ ବଜାରରେ ଏହି ପଠାନ୍ ଖୁଦାଇ ଖିଦ୍‌ମତ୍‌ଗାର ବାହିନୀ ଯେପରି ଅହିଂସ ରହି ଛାତିରେ ଗୁଳିଖାଇ ପ୍ରାଣଦେଲେ ତାହା ଦେଶର ସ୍ୱାଧୀନତାର ଇତିହାସରେ ବୀରତ୍ୱର ଦୀପସ୍ତମ୍ଭ ହୋଇ ରହିଲା । ଖାନ୍‌ସାହେବ ଅଶିହଜାର ସ୍ୱେଚ୍ଛାସେବକଙ୍କର ଯେଉଁ ବିରାଟ ଅହିଂସା ସଙ୍ଗଠନ ଗଢ଼ିଲେ ସେଥିରେ ଜେନେରାଲ, କର୍ଣ୍ଣେଲ, କ୍ୟାପଟେନ୍ ଆଦି ପଦ rank and file ଥିଲା । ଏହାର ଗୁପ୍ତଚର ବିଭାଗ ସମଗ୍ର ପ୍ରଦେଶରେ କାମ କରୁଥିଲା । ପଠାନ୍ ବୋଇଲେ କେବଳ ମୁସଲମାନ ବୁଝାଏ ନାହିଁ । ପଠାନ୍ ଜାତିର ଲୋକଙ୍କ ମଧ୍ୟରେ ହିନ୍ଦୁ ଓ ମୁସଲମାନ ଉଭୟ ଧର୍ମର ଲୋକ ଅଛନ୍ତି । ପଠାନ୍ ଜାତି ଅଳ୍ପକେ ଉତ୍ୟକ୍ତ ହୁଅନ୍ତି । ମାଡ଼ ଖାଇ ସହିଯିବା ସେମାନଙ୍କ ଜାତକରେ ନାହିଁ । ବିଶେଷକରି ସ୍ତ୍ରୀ ଲୋକଙ୍କ ଆଗରେ ମାଡ଼ ଖାଇବା ସେମାନଙ୍କ ପାଇଁ ବଡ଼ ଅପମାନ । ସ୍ୱଭାବତଃ ସେମାନେ ପ୍ରତିଶୋଧପରାୟଣ । ଅପମାନର ପ୍ରତିଶୋଧ ନ ନେବା ଅହିଂସ ଅସହଯୋଗ ଅସ୍ତ୍ର ଧାରଣ କରିବା ସେମାନଙ୍କ ପକ୍ଷରେ ଜାଣି ଅଷ୍ଟମ ଆଶ୍ଚର୍ଯ୍ୟ । ଖାନ୍‌ସାହେବ ସେମାନଙ୍କୁ କୋରାନ୍ ସରୀଫର 'ସବ୍ର'ର ଅର୍ଥ ବୁଝାଇଦେଲେ ଯେ ଧୈର୍ଯ୍ୟ ହିଁ ମଣିଷକୁ ପ୍ରକୃତ ବିଜୟୀ କରେ । ପଠାନ୍‌ମାନେ ଏହି ବିଚାରପ୍ରଣୋଦିତ ହୋଇ ଯେତେବେଳେ ମଦ ଦୋକାନରେ ପିକେଟିଂ କରିବାବେଳେ ମାଡ଼ଖାଇ ସୁଦ୍ଧା ହାତ ଉଠେଇଲେ ନାହିଁ –ସେତେବେଳେ ତାହା ଦେଖି ଲୋକେ ଚକିତ ହେଲେ । ପୁଣି ସୀମାନ୍ତର ପାହାଡ଼ିଆ ଅଞ୍ଚଳରେ ବେପାର କରିବା ପାଇଁ

ପେଶ୍ୱାର ଓ ଅନ୍ୟତ୍ର ଖୁଦାଇ ଖିଦ୍‌ମତ୍‌ଗାରଙ୍କର ଏ ଅପମାନ ସହିବା ଦୃଶ୍ୟ ଦେଖି ନିଜ ଅଞ୍ଚଳରେ ତାହା ପ୍ରଚାର କଲେ । ଖୁଦାଇ ଖିଦ୍‌ମତ୍‌ଗାରଙ୍କ ସଂଖ୍ୟା ଲକ୍ଷେକୁ ଛୁଇଁଲା । ବ୍ରିଟିଶ ସରକାର ଏହି ସଂଗଠନର ଗୁରୁତ୍ୱ ଉପଲବ୍‌ଧି କଲେ । କାରଣ ଏହା ଏକ ସମାନ୍ତରାଳ ସରକାର ଭଳି କାମକଲା । ସରକାର ଏହି ସଂଗଠନକୁ ବେଆଇନ ଘୋଷଣା କରି ଜିଲ୍ଲାସ୍ତରୀୟ ଜିର୍ଗାର ସମ୍ପାଦକଙ୍କ ଠାରୁ ଆରମ୍ଭ କରି ସୁବେଦାରଯାଏ ସମସ୍ତଙ୍କୁ ବନ୍ଦୀ କଲେ । ଏହି ମହାନ୍ ଯୋଦ୍ଧା-ଯାହାକୁ ଆମେ 'ସୀମାନ୍ତ ଗାନ୍ଧୀ' କହୁଥିଲୁ-ଭାରତକୁ ଖଣ୍ଡ ଖଣ୍ଡ କରିବାର ବିରୋଧ କରିଥିବାରୁ ଷୋଳବର୍ଷ କାଳ ପାକିସ୍ତାନରେ କାରାରୁଦ୍ଧ ହୋଇ ରହିଥିଲେ । ଏହି ମହାନ୍ ପୁରୁଷଙ୍କ ସାନ୍ନିଧ୍ୟ ଲାଭକୁ ମୁଁ ଜନ୍ମଜନ୍ମାନ୍ତର ପୁଣ୍ୟର ଫଳ ବୋଲି ବିଚାରିଲି ।

ଦେଶ ବିଭାଗ ଫଳରେ ଯେଉଁ ବେଦନା ତାଙ୍କ ହୃଦୟରେ ପୁଞ୍ଜିଭୂତ ହୋଇ ରହିଥାଏ ତାହା ତାଙ୍କର ପ୍ରତ୍ୟେକ ଭାଷଣରେ ଫୁଟି ଉଠୁଥାଏ । ଯୋଗକୁ ସେ ଭାରତ ବର୍ଷରେ ପାଦଦେବା ବେଳକୁ ଗୁଜରାତର ସାଂପ୍ରଦାୟିକ ଗଣ୍ଡଗୋଳ ଘଟି ଯାଇଥାଏ । ସେହି ଦଙ୍ଗାଗୋଳର ପରିଣାମ ସେ ଅହମଦାବାଦରେ ପ୍ରତ୍ୟକ୍ଷ ଦେଖି ଆସିଥାଆନ୍ତି । କଲିକତାର ପ୍ରଥମ ଭାଷଣରେ ହିଁ ସେ କହିଲେ-'ଗାନ୍ଧିଜୀଙ୍କ ଅମଳରେ ମୁଁ ଯେଉଁଠି ପ୍ରେମ, ଅହିଂସା, ସେବା, ମନୁଷ୍ୟତ୍ୱ, ସତ୍ୟ ଦେଖୁଥିଲି ସେ ସ୍ଥାନରେ ଘୃଣା, ହିଂସା, ଲୁଟତରାଜ ଓ ପଶୁତା ଦେଖୁଛି । ଏହା ଫଳରେ ଭାରତର ଇଜ୍ଜତ କମୁଛି । ଆପଣମାନେ ଗାନ୍ଧୀକୁ ଭୁଲି ଯାଇଛନ୍ତି । ଗାନ୍ଧୀକୁ ଭୁଲିଲେ ଗାନ୍ଧୀର କିଛି ଲୋକସାନ ହେବ ନାହିଁ । ଆପଣମାନଙ୍କର ହିଁ କ୍ଷତି ହେବ । ଗାନ୍ଧୀକୁ ଭୂଲିଯିବା ଫଳରେ ଏ ଦେଶରେ ହିନ୍ଦୁ, ମୁସଲମାନ, ବଙ୍ଗାଳୀ, ଆସାମୀ ଆଦି ନାନାପ୍ରକାର କଳିଗୋଳ ବଢ଼ି ଚାଲିଛି । ଧର୍ମ ନାମରେ ସୁଦ୍ଧା ପିଟାପିଟି ଚାଲିଛି । ହିନ୍ଦୁ ହିନ୍ଦୁ ଭିତରେ, ବ୍ରାହ୍ମଣ ଅବ୍ରାହ୍ମଣ ମଧ୍ୟରେ, ସିୟା ସୁନ୍ନି ମଧ୍ୟରେ କଳି । ଧର୍ମ ନାମରେ କଳି କରିବା, ମାରପିଟ୍ କରିବା ଧର୍ମ ନୁହେଁ । ହିଂସାଦ୍ୱାରା କୌଣସି ସମାଧାନ ହୋଇପାରେ ନାହିଁ । ଅହିଂସା ଅର୍ଥାତ୍ ପ୍ରେମ ହିଁ ମଣିଷକୁ ମଣିଷ ସହିତ ଯୋଡ଼େ । ଅହମ୍ମଦାବାଦରେ ମୋତେ ଅରଟ ଦେଖାଇଲେ । ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ କରିବାକୁ କୁହାଗଲା । ଏସବୁ କରି କି ଲାଭ ? କେବଳ ଅରଟ ଚଳାଇଲେ କ'ଣ ହେବ ? ଅରଟକୁ ତ ଗାନ୍ଧିଜୀ ସେବା ଓ ପ୍ରେମର ମାଧ୍ୟମ କରିଥିଲେ ।'

ରାଉରକେଲା ସଭାରେ ସେ ଦୀର୍ଘ ଭାଷଣ ଦେଇଥିଲେ । କାରଣ ଏହି ସଭାର ଶ୍ରୋତାମାନଙ୍କର ଅନୁଶାସନ ରକ୍ଷା ତାଙ୍କୁ ପ୍ରଭାବିତ କରିଥିଲା । ଅନ୍ୟ ସଭାମାନଙ୍କରେ

ଜୟଘୋଷ ଦିଆ ଯାଉଥିବାରୁ ସେ ବିରକ୍ତ ହୋଇ ଯାଉଥିଲେ । ଏ ସଭାଟିର ସୁନ୍ଦର ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ତାଙ୍କୁ ମନକଥା କହିବାପାଇଁ ପ୍ରେରିତ କଲା –

''ମୋ ପ୍ରତି ଆପଣମାନଙ୍କର ଏହି ସ୍ନେହ ପାଇଁ ମୁଁ ଧନ୍ୟବାଦ ଦେଉଛି । ତେରବର୍ଷ କାଳ ମୁଁ ବହୁତ ଦୁଃଖ ଓ ନିର୍ଯ୍ୟାତନା ସହି ସହି ଆପଣଙ୍କ ଭାରତବର୍ଷକୁ ଆସିଛି । ଆପଣମାନଙ୍କର ପ୍ରେମ ଓ ଗାନ୍ଧିଜୀଙ୍କ ସ୍ମୃତି ମୋତେ ଭାରତକୁ ଭିଡ଼ି ଆଣିଛି । ଏଠାକୁ ଦୁଇଟି ଉଦ୍ଦେଶ୍ୟ ଘେନି ମୁଁ ଆସିଛି । ଗୋଟିଏ ହେଉଛି – ଗାନ୍ଧୀ ଶତବାର୍ଷିକୀ ସମାରୋହରେ ମୁଁ ଯୋଗ ଦେବି । ଅନ୍ୟଟି ହେଉଛି ଭାରତର ଲୋକେ କିପରି ଚଳୁଛନ୍ତି ତାହା ଦେଖିବି । ଅନେକ ବର୍ଷ ପରେ ଭାରତରେ ବୁଲି ମୁଁ ଦେଖୁଛି ଯେ ଭାରତବାସୀ ଗାନ୍ଧିଜୀଙ୍କୁ ପୁରାପୁରି ଭୁଲି ଯାଇଛନ୍ତି । ଗାନ୍ଧିଜୀଙ୍କ ବାଟ ଥିଲା ପ୍ରେମର ବାଟ । ଭାରତରେ ମୁଁ ଖାଲି ହିଂସା ଓ ଘୃଣା ଦେଖୁଛି । ଗାନ୍ଧିଜୀଙ୍କ ବାଟ ଥିଲା ସତ୍ୟ ଓ ନ୍ୟାୟର ବାଟ । ମୁଁ ଏଠାରେ କେବଳ ଅନ୍ୟାୟ ଦେଖୁଛି । ଆପଣମାନେ ଯେ ଏଡ଼େ ଚାଣ୍ଡେ ଗାନ୍ଧିଜୀଙ୍କୁ ଭୁଲିଗଲେ ସେଥିପାଇଁ ମୋର ଅବଶୋଷ ହେଉଛି । ଏ ସ୍ୱାଧୀନତା ଆପଣଙ୍କୁ ଗାନ୍ଧିଜୀଙ୍କ ଠାରୁ ମିଳିଛି । ଅଥଚ ଆପଣମାନେ ଗାନ୍ଧିଜୀଙ୍କ ରାସ୍ତା ଛାଡ଼ିଦେଲେ ।

ଦ୍ୱିତୀୟ କଥା ହେଲା ଆମେ ଯେ ଗାନ୍ଧିଜୀଙ୍କ ସାଥୀ ଥିଲୁ, ଦେଶକୁ ସ୍ୱାଧୀନ କରିବାକୁ ଚାହୁଁଥିଲୁ, ଆମେ ଦେଶ ଉପରେ ରାଜୁତି କରିବା ପାଇଁ ତାହା କରୁ ନ ଥିଲୁ । ଏ ଦେଶରୁ ଇଂରେଜ ଚାଲିଗଲେ ଦେଶର କଲ୍ୟାଣ ହେବ, ଇଂରେଜମାନେ ଯେଉଁ ଦୁଃଖକଷ୍ଟ ସୃଷ୍ଟି କରିଛନ୍ତି ଓ ହିନ୍ଦୁ ମୁସଲମାନ୍ ଦ୍ୱେଷଭାବ ଆଦି ଲୋପପାଇବ ବୋଲି ଆମେ ଭାବିଥିଲୁ । ମୁଁ ଭାବିଲି ଯେଉଁଥି ପାଇଁ ଆମେ ଭାରତକୁ ସ୍ୱାଧୀନ କରିବା ପାଇଁ ଚାହୁଁଥିଲୁ, ଏତେ କଷ୍ଟ ସହିଥିଲୁ ସେ ଉଦ୍ଦେଶ୍ୟ ପୂରଣ ହୋଇଛି କି ନାହିଁ ତାହା ଭାରତକୁ ଯାଇ ଦେଖି ଆସିବି । ଏଠାରେ ତିନିମାସ କଟେଇକରି ଦେଖୁଛି ଧନୀମାନଙ୍କର ସହରରେ ଉନ୍ନତି ହୋଇଛି । ଗରିବଙ୍କର ଉନ୍ନତି ହୋଇ ନାହିଁ (ସଭାରେ ଜିନ୍ଦାବାଦ ଧ୍ୱନି) । ମୁଁ ଜିନ୍ଦାବାଦ ଶୁଣିବାକୁ ଏ ଦେଶକୁ ଆସି ନାହିଁ । ମୋ କଥା ଆପଣମାନେ ଶୁଣନ୍ତୁ । ମୁଁ ଦେଖୁଛି ଦିଲ୍ଲୀରେ ବହୁତ ଉନ୍ନତି ହୋଇଛି । କୋଠାବାଡ଼ି ତିଆରି ହୋଇଛି । ସଡ଼କ, କାରଖାନା, ବିଳାସବ୍ୟସନ ବଢ଼ିଛି । କିନ୍ତୁ ଗାଁକୁ ଯାଇ ଅଲଗା ଦୃଶ୍ୟ ଦେଖୁଛି । ରାଷ୍ଟ୍ର ଓ ରାଷ୍ଟ୍ରର ଜନତା ତ ଗାଁରେ ରହନ୍ତି ! ଗାଁର ଉନ୍ନତି ଉପରେ ରାଷ୍ଟ୍ରର Nationର ଉନ୍ନତି ନିର୍ଭର କରେ । ଗାଁରେ ସେହି କଳିଗୋଳ, ଅତ୍ୟାଚାର ଚାଲିଛି । ପିଲାକୁ ଖାଇବାକୁ ମିଳୁ ନାହିଁ, ସେମାନଙ୍କ ପାଦରେ ଜୋତା ସୁଦ୍ଧା ନାହିଁ ।

ହେ ହିନ୍ଦୁ ଓ ମୁସଲମାନ ! ସମସ୍ତେ ଏକାଠି ବସିକରି ଦେଖ, ତୁମ ଦଶା କ'ଣ ହୋଇଛି । ଏ ଦେଶ କେଉଁ ଦିଗକୁ ଗତି କରୁଛି । ଉନ୍ନତି ଆଡ଼କୁ ନା ଅବନତି ଆଡ଼କୁ ! ଦେଶର ଇଜ୍ଜତ ହେଉଛି ସବୁଠାରୁ ବଡ଼ ଜିନିଷ । ମୋତେ କାକାସାହେବ କାଲେଲ୍କର କହିଲେ ଯେ, ତାଙ୍କୁ ଜାପାନ୍‌ର ଲୋକେ କହିଲେ-ଆମେ ପୂର୍ବେ ଭାରତକୁ ସମ୍ମାନ କରୁଥିଲୁ, ଏବେ ତା ପ୍ରତି ଆମର ସେ ସମ୍ମାନ ନାହିଁ । ପୃଥିବୀରେ ଭାରତର ଆଉ ଇଜ୍ଜତ ନାହିଁ । କାହିଁକି ନାହିଁ ତାହା ବିଚାର କର ।

ବାଇଶ ବର୍ଷ ହେଲା ଏ ଦେଶ ସ୍ୱାଧୀନ ହେଲାଣି । ଆମ ଖାଦ୍ୟଶସ୍ୟ ଆମେ ଉତ୍ପାଦନ କରିପାରୁ ନାହୁଁ । ଆମେରିକା,ଋଷିଆ, ଅଷ୍ଟ୍ରେଲିଆକୁ ଆମେ ଗହମ ମାଗୁଛୁ । କେବଳ ଖାଦ୍ୟଶସ୍ୟ ନୁହେଁ, ପଇସା ମଧ୍ୟ ମାଗୁଛୁ । ତାହାହେଲେ ଆପଣମାନେ ମାଗିଖିଆ ହୋଇଗଲେଣି । ଖାଲି ଆପଣା ଭିତରେ କଳି କରୁଛନ୍ତି, ଗରିବ ଲୋକଙ୍କ କଥା ଆଦୌ ଚିନ୍ତା କରୁ ନାହାନ୍ତି । ଦେଶ ଯେ ସର୍ବନାଶ ଆଡ଼କୁ ଗତି କରୁଛି, ସେ କଥା ଟିକିଏ ଭାବନ୍ତୁ । ସ୍ୱର୍ଗରୁ ଓହ୍ଲାଇଆସି କେହି ଦେଶକୁ ସୁଧାରେ ନାହିଁ । ଜର୍ମାନୀ, ଋଷିଆ ଓ ଜାପାନକୁ ଦେଖନ୍ତୁ । ଜର୍ମାନୀ ଦୁଇଟା ଯୁଦ୍ଧ ଲଢ଼ିଲା । ତାହାର ଉନ୍ନତି ଓ ସମୃଦ୍ଧି ଦେଖନ୍ତୁ । ସେ ନିଜ ଗୋଡ଼ରେ ଛିଡ଼ା ହୋଇଛି । ଜାପାନ୍ ଉପରେ ଆଟମ୍‌ବମ୍ ପକା ହେଲା । ତଥାପି ଦେଖ ସେ ଆଜି ଏ ଦେଶକୁ ସାହାଯ୍ୟ କରୁଛି । ତୁମେ ଏଡ଼େ ବଡ଼ (Nation)ନେଶନ୍ । ତୁମ ଦଶା କାହିଁକି ଏପରି ହେଲା ? କେଉଁ ଦୁଃଖ ତୁମ ଉପରେ ପଡ଼ିଛି ବୋଲି ତୁମେ ମାଗି ଖାଉଚ ? ଦେଶ ତୁମର, ସରକାର ତୁମର, ଏ ଦୁର୍ଦ୍ଦଶାର କାରଣ ତୁମେ ବାହାର କର । ଏକତା, ଜାତୀୟତା ଦେଶପ୍ରେମ ଯେଉଁ ଦେଶରେ ବଢ଼େ, ସେ ଦେଶ ଉପରକୁ ଉଠେ । ଜାପାନ କାହିଁକି ଆଗେଇଛି ସେ କଥା ବିଚାରକର । ଜାପାନ୍ ଗୋଟିଏ ଜାତି । ଜର୍ମାନୀରେ ବୁଲିଲାବେଳେ ମୁଁ ଯଦି ସେଠା ଲୋକଙ୍କୁ ପଚାରେ - ତୁମେ କିଏ ? ସେ କହନ୍ତି, ମୁଁ ଜର୍ମାନ । ଫ୍ରାନ୍‌ସ ଓ ଇଂଲଣ୍ଡରେ ମଧ୍ୟ ମୁଁ ଏହିପରି ଜବାବ ପାଇଲି । କେହି କହିଲେ ନାହିଁ ଯେ ମୁଁ ଖ୍ରୀଷ୍ଟିଆନ୍ ବା ଇହୁଦୀ ବା ବୌଦ୍ଧ ।

ଭାଇ ଓ ଭଉଣୀମାନେ ! ଏ ଭାରତ ଗୋଟାଏ ବିଚିତ୍ର ଦେଶ । ଏ ଦେଶରେ ରାଷ୍ଟ୍ରୀୟତା ପରିବର୍ତ୍ତେ ଧର୍ମ ସମ୍ପ୍ରଦାୟ ସହିତ ଲୋକଙ୍କର ସଂପର୍କ ବେଶି । ପ୍ରଥମେ ରାଷ୍ଟ୍ର ଓ ତାହା ପରେ ଧର୍ମ । ମାତ୍ର ଭାରତରେ ତାହା ନାହିଁ । ପ୍ରକୃତରେ ଏହା ଏକ ବିଚିତ୍ର ଦେଶ । ପୃଥିବୀରେ ଯେତେ ଧର୍ମ ଅଛି ସବୁ ଧର୍ମ ମାନବିକତା, ପ୍ରେମ, ସତ୍ୟ, ନ୍ୟାୟ,

ଭଗବତ୍ ସୃଷ୍ଟି, ଜୀବଙ୍କ ସେବା କରିବା ପାଇଁ ନିର୍ଦ୍ଦେଶ ଦେଇଛି । ଭାରତରେ ଧର୍ମ ନାମରେ ଲୁଟ୍‌ତରାଜ, ମାରପିଟ୍, ଘରପୋଡ଼ି ଚାଲିଛି । ଅହିଂସା ଓ ମାନବିକତା ହିଁ ଅସଲ ଧର୍ମ । ହେ ଗରିବ ଲୋକେ ! ତୁମକୁ ବ୍ରାହ୍ମଣ ଅବ୍ରାହ୍ମଣ, ସିଯା ସୁନ୍ନୀ ଛୁଆଁ ଅଛୁଆଁ ଆଦି ପ୍ରକାର ପ୍ରକାରର ଇଢ଼େଇରେ ଲଗେଇ ଦିଆ ହେଉଛି । ତୁମର ଦେଶ ଓ ସମାଜ ପାଇଁ ଚିନ୍ତା ନାହିଁ । ତୁମେ ଚିନ୍ତା କରି ଦେଖ-ଭାରତ ପାକିସ୍ତାନ କଳିରେ ଧନୀଲୋକ କେତେ ମରିଛନ୍ତି ! ତୁମେ ଭାବୁନାହିଁ ଏ ଦେଶ ତୁମର । ଗରିବଙ୍କର ଭୋଟ୍ ବେଶି । ତୁମେ ଯାହାକୁ ଚାହିଁବ ତାକୁ ଶାସନ ଗାଦିରେ ବସାଇ ପାରିବ । ଗାଦିରୁ ଉତାରି ଦେଇ ପାରିବ । କିନ୍ତୁ ତୁମକୁ ତ କଳିରେ ଲଗେଇ ଦିଆ ହେଉଛି ! ହିନ୍ଦୁ, ମୁସଲମାନ୍, ଖ୍ରୀଷ୍ଟିୟାନ୍ ସମସ୍ତେ ଗରିବ । ତୁମେ କଳିଗୋଳ ଛାଡ଼ । ସମସ୍ତେ ଏକତ୍ର ବସି ନିଜ ଅବସ୍ଥା ଚିନ୍ତା କର । ପରସ୍ପରକୁ ବୁଝାଅ ଯେ, ଏ ଦେଶ -ଏ ଭାରତ ଆମର । ତୁମେ ସମସ୍ତେ ମିଳିମିଶି ଏପରି ଲୋକ ହାତରେ ଦାୟିତ୍ୱ ଦିଅ ଯେଉଁ ଲୋକ ଦେଶ କଥା ଚିନ୍ତା କରୁଥିବ ଓ ସ୍ୱାର୍ଥପର ହୋଇ ନ ଥିବ । ବିଳାସବ୍ୟସନରେ ଯେ ଜୀବନ କଟାଇବାକୁ ଚାହୁଁଛନ୍ତି ସେହିମାନେ ଏ କଳିଗୋଳ ଭିଆଉଛନ୍ତି ।

ହେ ଯୁବକ ଓ ଛାତ୍ରଭାଇମାନେ ! ତୁମଠାରୁ ମୁଁ ବହୁତ ଆଶା କରେ । ରାଷ୍ଟ୍ରକୁ ଗଢ଼ିବା ଓ ଉନ୍ନତ କରିବାରେ ତୁମମାନଙ୍କର ହାତ ଥାଏ । ହେ ଯୁବକମାନେ ! ତୁମେମାନେ ଚିନ୍ତା କର ଯେ ଆମେ ଭିକାରୀ ପାଲଟି ଗଲୁଣି । ଜାପାନ, ଋଷିଆ, ଜର୍ମାନୀକୁ ଦେଖ । ମଣିଷ ପରି ବଞ୍ଚିବା ଶିଖ । ଦିଲ୍ଲୀରେ ବଡ଼ ବଡ଼ କୋଠାବାଡ଼ି ହୋଇଛି ଅଥଚ ହରିଜନ ଭାଇ ଅଭିଯୋଗ କରୁଛନ୍ତି ଯେ, ଆମକୁ କୂଅରୁ ପାଣି ନେବାକୁ ଦିଆଯାଉ ନାହିଁ । ସେମାନଙ୍କୁ ମାରିବା ପାଇଁ ଯୋତା ଉଠାଉଛନ୍ତି । ଏ ଅପରାଧ ତୁମମାନଙ୍କର । ତୁମେ ଛୁଟିରେ ଗାଁକୁ ଯାଅ, ଲୋକଙ୍କୁ ବୁଝାଅ ଯେ ଏ ଦେଶ, ଏ ସରକାର ତୁମର । ତୁମ ଭୋଟରେ ଏ ସରକାର ଗଢ଼ା ହୋଇଛି । ଅଥଚ ତୁମ ଅବସ୍ଥା ଏପରି ହୋଇଛି । ତୁମେ ସଚ୍ଚୋଟ ଲୋକଙ୍କୁ ଭୋଟ ଦିଅ । ସେପରି ଲୋକ ଶାସନକୁ ଆସିଲେ ତୁମ ଦୁଃଖ ଦୂର ହେବ । ସଭା ସମ୍ମିଳନୀ ଦ୍ୱାରା ଏହା ହେବ ନାହିଁ । ଗାଁରେ ବୁଲି ଜଣ ଜଣ କରି ଲୋକଙ୍କୁ ଏହା ବୁଝାଇବାକୁ ହେବ । ତାହାହେଲେ ଏ ଦେଶର ଦୁଃଖ ଦୁର୍ଦ୍ଦଶା ପରସ୍ପର ପ୍ରତି ଘୃଣା ଓ କଳିଗୋଳ ଦୂର ହେବ । ଏଇଥିପାଇଁ ମୁଁ ବିନୋବାଜୀଙ୍କୁ କହିଥିଲି, ୧୦୦ ବର୍ଷ ଚେଷ୍ଟାକଲେ ଗ୍ରାମଦାନରେ ଯାହା ହେବ ନାହିଁ ରାଜନୈତିକ କ୍ଷମତା ଦ୍ୱାରା ୭ ଦିନରେ ତାହା ହେବ ।

ଖାନ୍‌ସାହେବଙ୍କ ସଙ୍ଗେ ପଶ୍ଚିମ ବଙ୍ଗ ଓ ଓଡ଼ିଶାରେ ଦଶଦିନ କଟେଇବା ପରେ ବିଦାହେବା ଦିନ ମୁସଲମାନ ମହିଳାଙ୍କ ମଧ୍ୟରେ କାମ କରିବା କଥା ସେ ମୋତେ କହିଲେ । ମୁଁ ମୁସଲମାନ ମହିଳା ସମାଜରେ ବରୀରେ ଓ ଅନ୍ୟତ୍ର କାମ କରିବା କଥା କହି ତାଙ୍କୁ ପଚାରିଲି ଯେ, ଇସ୍‌ଲାମ୍‌ରେ ଯେ ରୋଜା, ନମାଜ, ହଜ୍, ଜେହାଦ୍, ଜକାତ୍ ପାଇଁ ନିର୍ଦ୍ଦେଶ ଦିଆଯାଇଛି – ଅନେକ ବନ୍ଧୁ ଜେହାଦ୍‌ର ଅର୍ଥ ଅନ୍ୟ ଧର୍ମାବଲମ୍ବୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ତାହାର ଅର୍ଥ ବୋଲି କହୁଛନ୍ତି । ଖାନ୍‌ସାହେବ କହିଲେ – ତୁମେ ସେମାନଙ୍କୁ ବୁଝାଇବ ଯେ ଜେହାଦ୍‌ର ପ୍ରକୃତ ଅର୍ଥ ହେଉଛି ମଜ୍‌ଲୁମ୍; ଅର୍ଥାତ୍ ଅତ୍ୟାଚାରିତଙ୍କୁ ଜାଲିମ୍-ଅର୍ଥାତ୍ ଅତ୍ୟାଚାରୀ ହାତରୁ ରକ୍ଷା କରିବା । ଲୋକଙ୍କୁ ଖୁଦାଙ୍କ ଧର୍ମକଥା ଶୁଣାଇବା ଏବଂ ସେଥିପାଇଁ ଦୁଃଖ କଷ୍ଟ ସହିବା ହିଁ ଜେହାଦ୍ । ପୈଗମ୍ବର ମହମ୍ମଦଙ୍କର ଜୀବନର କେଉଁ ଘଟଣାର ଉଦାହରଣ ଦ୍ୱାରା ଉପରୋକ୍ତ କଥା ପ୍ରତିପନ୍ନ କରିହେବ ଏବଂ ହଜରତ ମହମ୍ମଦ ଅହିଂସାର ସମର୍ଥକ ଥିଲେ ବୋଲି ପ୍ରମାଣ କରିହେବ ପଚାରିବାରୁ ସେ କହିଲେ, ପୈଗମ୍ବର ମହମ୍ମଦ ମକ୍‌କାରେ ଥିବାବେଳେ ଧର୍ମପାଇଁ ବହୁତ କଷ୍ଟ ସହିଥିଲେ ହେଁ ତରବାରୀ ଧାରଣ କରି ନ ଥିଲେ । ତାଙ୍କ ଗୋଡ଼କୁ ବାନ୍ଧି ଦିଆହୋଇଥିଲା, ବହୁତ ନିର୍ଯ୍ୟାତନା ତାଙ୍କୁ ସହିବାକୁ ପଡ଼ିଲା, ତଥାପି ସେ ଖଣ୍ଡା ଧରିଲେ ନାହିଁ । ସେଥିପାଇଁ ମୁଁ ଗାନ୍ଧିଜୀଙ୍କୁ କହିଥିଲି ଯେ, ଆପଣ କିଛି ନୂଆ କଥା କହୁ ନାହାନ୍ତି । ପୈଗମ୍ବର ଆମକୁ ଏହି ଶିକ୍ଷା ଦେଇଥିଲେ । ଆମେ ତାକୁ ପାଶୋରି ପକେଇଥିଲୁ । ଆପଣ ତାକୁ ମନେ କରେଇଦେଲେ ।

ବିନୋବାଜୀ ୧୯୫୫ରେ ଓଡ଼ିଶାରେ ପଦଯାତ୍ରା କରୁଥିବା ବେଳେ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରତିଦିନ ପାଠ କରୁଥିଲେ ଓ ସଂସ୍କୃତ ଭାଗବତ ସହିତ ତାହା ମିଳାଉ ଥିଲେ । ଏହା ଫଳରେ 'କୋରାନ୍‌ସାର', 'ନାମଘୋଷାସାର' ପରି ସଂସ୍କୃତ ଭାଗବତରୁ ସେ 'ଭାଗବତ ଧର୍ମସାର' ସଂକଳନ କଲେ । ଆଚାର୍ଯ୍ୟ ମହାଶୟ ଏହି 'ଭାଗବତ ଧର୍ମସାର'କୁ ଓଡ଼ିଆ ଗଦ୍ୟ ଅନୁବାଦ ଓ ଜଗନ୍ନାଥ ଦାସଙ୍କ ଅନୁବାଦ ସହ ଛାପିବାକୁ ମନ ବଳାଇଲେ । ସେ ନିଜେ ଦୃଷ୍ଟିଶକ୍ତି ହରାଇ ଥିବାରୁ ପୁରୀର ଜଣେ ଖ୍ୟାତନାମା ପଣ୍ଡିତଙ୍କୁ ଏହା ଅନୁବାଦ କରିବା ପାଇଁ କହିଲେ । ମାତ୍ର ତାଙ୍କ ଅନୁବାଦ ଆଚାର୍ଯ୍ୟ ମହାଶୟଙ୍କର ଏବଂ ବିନୋବାଜୀଙ୍କର ମଧ୍ୟ ମନକୁ ପାଇଲା ନାହିଁ । ଆଚାର୍ଯ୍ୟ ମହାଶୟ ମୋତେ ଏହାକୁ ଅନୁବାଦ କରିବାକୁ ଆଦେଶ ଦେଲେ । ମୋ ମୁଣ୍ଡରେ ବଜ୍ରପାତ ହେଲା ପରି ମୋତେ ଲାଗିଲା । ଏକେ ମୋର ସଂସ୍କୃତ ଜ୍ଞାନ 'ନଦୀ ବହତି ବେଗେନ' ରେ

ସୀମାବଦ୍ଧ ତହିଁକୁ ପୁଣି ଯେଉଁ ଶ୍ରୀମଦ୍‌ଭାଗବତରେ ଅର୍ଥ କରିବା ବେଳେ ମହାପଣ୍ଡିତ ସୁଦ୍ଧା ସତର୍କ ସାବଧାନ ରହନ୍ତି । ସେ ସ୍ଥଳରେ ମୋତେ ଏ ଦଣ୍ଡ ଦେବାର କାରଣ ବୁଝି ପାରିଲି ନାହିଁ । ଆଚାର୍ଯ୍ୟ ମହାଶୟଙ୍କ ଖାତିରରେ ତାହା ଅନୁବାଦ କଲି । ଅନୁବାଦ ସରିବା ବେଳକୁ ଆଚାର୍ଯ୍ୟ ମହାଶୟ ତାକୁ ସଂଶୋଧନ କରିବା ଅବସ୍ଥାରେ ନ ଥିଲେ । 'ମଲା ଜହ୍ନ'ର ଲେଖକ ଉପେନ୍ଦ୍ର କିଶୋର ଦାସ ତାହାକୁ ସଂଶୋଧନ କଲେ । ଓଡ଼ିଆ 'ଭାଗବତ ଧର୍ମସାର' ଛାପା ହୋଇ ଆତ୍ମପ୍ରକାଶ କଲାବେଳକୁ ଉଭୟଙ୍କର ଭଗବତ୍ ପ୍ରାପ୍ତି ହୋଇ ସାରିଥିଲା ।

ମୁଁ ଆଜିଯାଏ ଆଶା ବାନ୍ଧି ରହିଛି ଯେ ଜଣେ ପ୍ରକୃତ ଭାଗବତପ୍ରେମୀ ପଣ୍ଡିତ ଓଡ଼ିଆରେ ପୁଣି ଥରେ 'ଭାଗବତ ଧର୍ମସାର' ଅନୁବାଦ କରିବେ ।

୧୯୭୦ ମସିହା ଫେବୃଆରୀ ମାସରେ ମୁଁ ପଓନାରସ୍ଥିତ ବ୍ରହ୍ମବିଦ୍ୟା ମନ୍ଦିରର ସ୍ନେହ ସମ୍ମିଳନୀରେ ଯୋଗ ଦେବାକୁ ଗଲି । ନିର୍ମଳା ଦେଶପାଣ୍ଡେଙ୍କ ନାମ ଆଜି କାହାରିକୁ ଅବିଦିତ ନାହିଁ । ସେ ନାଗପୁର କଲେଜରେ ଅଧ୍ୟାପନା କରୁଥିବା ବେଳେ ବିନୋବା ବିଚାରଦ୍ୱାରା ପ୍ରଭାବିତ ହୋଇ ଭୂଦାନ ଗ୍ରାମଦାନ ଆନ୍ଦୋଳନରେ ଯୋଗ ଦେଲେ ଏବଂ ଆଧ୍ୟାତ୍ମ ସାଧନା ପାଇଁ ବେଦ ଅଧ୍ୟୟନ କରିବା ପାଇଁ ବାରାଣସୀ ଗଲେ । ବାରାଣସୀର ବେଦଜ୍ଞ ବ୍ରାହ୍ମଣମାନେ ନାରୀର ବେଦ ଅଧ୍ୟୟନ କରିବାର ଅଧିକାର ନାହିଁ କହି ତାକୁ ବେଦ ପଢ଼ାଇଲେ ନାହିଁ । ସେତେବେଳେ ବିନୋବାଜୀ ଘୋଷଣା କରିଥିଲେ ଯେ ଯେଉଁ ମହିଳା ବେଦ ଅଧ୍ୟୟନ କରିବାକୁ ଚାହିଁବେ ମୁଁ ତାଙ୍କୁ ବେଦ ପଢ଼ାଇବି । ଭାରତ ସାରା ପଦଯାତ୍ରା କଲାବେଳେ ବିନୋବାଜୀ ଅନୁଭବ କଲେ ଯେ ବହୁ ମହିଳା ବେଦାଧ୍ୟୟନ କରିବାକୁ ଓ ଆଧ୍ୟାତ୍ମିକ ସାଧନା କରିବା ପାଇଁ ଚାହୁଁଛନ୍ତି । ଫଳରେ ୧୯୫୮-୫୯ରେ ମହିଳାମାନଙ୍କ ପାଇଁ ବ୍ରହ୍ମବିଦ୍ୟା ମନ୍ଦିର ସ୍ଥାପନ କରିବା ବିଚାର ତାଙ୍କ ମନକୁ ଆସିଲା । ଭାରତରେ ଏ ପର୍ଯ୍ୟନ୍ତ ଯେଉଁମାନେ ବ୍ରହ୍ମବିଦ୍ୟା ସାଧନା କରୁଥିଲେ ସେମାନେ ଭିକ୍ଷା ବା ସମାଜର ଦାନ ଉପରେ ନିର୍ଭର କରୁଥିଲେ । ବିନୋବାଜୀ କହିଲେ ଏଣିକି ଯେଉଁମାନେ ବ୍ରହ୍ମବିଦ୍ୟା ସାଧନା କରିବେ ସେମାନେ ଭିକ୍ଷା ବା ଦାନ ନ ନେଇ ନିଜର ଦେହମିହନ୍ତଦ୍ୱାରା ଅନ୍ନବସ୍ତ୍ର ଉତ୍ପାଦନ ବା ସଂଗ୍ରହ କରିବେ । ବ୍ରହ୍ମ-ବିଦ୍ୟା ସାଧନା ପାଇଁ ସମାଜ ଉପରେ ବୋଝ ହେବାର ଯୁଗ ଆଉ ନାହିଁ । ଫଳରେ ବ୍ରହ୍ମବିଦ୍ୟା ମନ୍ଦିରର ଭଉଣୀମାନେ ଦେହମିହନ୍ତ କରି ମୂଲିଆଙ୍କ ସଙ୍ଗେ ସମରସ ହୋଇ ଆଧ୍ୟାତ୍ମିକ ସାଧନା ଆରମ୍ଭ କଲେ । ସର୍ବୋଦୟ ଆନ୍ଦୋଳନରେ

ଉଚ୍ଚଶିକ୍ଷିତା ବା ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତ ଥିବା ଅନେକ ମହିଳା ନିଜ ଧନ୍ଦା ଛାଡ଼ି ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ବାଛି ବାଛି କେତେଜଣଙ୍କୁ ବ୍ରହ୍ମବିଦ୍ୟା ମନ୍ଦିରକୁ ପଠା ହୋଇଥିଲା । ସ୍ୱେଚ୍ଛାପ୍ରଣୋଦିତ ଦାରିଦ୍ର୍ୟବ୍ରତ ଓ ଶରୀରଶ୍ରମ ସାଙ୍ଗକୁ ସମୂହ ସାଧନା ଏଠା ସାଧନାର ବିଶେଷତ୍ୱ । ସ୍ନେହ ସମ୍ମିଳନୀ ପରେ Gandhian values in Indian Education ଉପରେ ହେଉଥିବା ନିଖିଳଭାରତୀୟ ସ୍ତରର ସେମିନାରରେ ଯୋଗ ଦେବାକୁ ମୁଁ ସେବାଗ୍ରାମ ଗଲି । ଏହି ସମୟରେ ବିନୋବାଜୀ ଶିକ୍ଷାର ଗୋଟିଏ ସୂତ୍ର ଆମକୁ ଶୁଣାଇଲେ –

ମୂଳୋଦ୍ୟୋଗଃ ସଗଣିତ
ମାତୃଭାଷା ସରାଷ୍ଟ୍ରିକା ।
ସମାଜ ସୃଷ୍ଟି ବିଜ୍ଞାନେ
ଚିତ୍ରଂ ସଂଗୀତମେବଚ ॥

ଓଡ଼ିଶା ଫେରି Education for a Living ଉପରେ ଏକ ସେମିନାରରେ ଯୋଗ ଦେବାକୁ ଡ଼ାକରା ଆସିଲା । ଓଡ଼ିଶାର ବହୁ ସ୍ୱନାମଧନ୍ୟ ଶିକ୍ଷାବିତ୍ ଏହି ସେମିନାରରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ କେହି ପରିବର୍ତ୍ତିତ ପରିସ୍ଥିତିରେ ସୂତାକଟା ସମ୍ବଳିତ ମୌଳିକ ଶିକ୍ଷା ଅଚଳ ବୋଲି କହିଲେ । ମୋ ପାଳି ପଡ଼ିବାରୁ ସୀତାଙ୍କର ଉକ୍ତି 'ସ୍ମାରୟେ ନ ତ୍ୱାଂ ଶିକ୍ଷୟେ' ବୃତ୍ତିରେ ହସ୍ତଚାଳନାର ବିକାଶ ସହିତ ମସ୍ତିଷ୍କର ବିକାଶର ଯେ ଅବିଚ୍ଛେଦ୍ୟ ସମ୍ବନ୍ଧ ରହିଛି ସେଥିପାଇଁ ମୌଳିକ ଶିକ୍ଷାରେ ହସ୍ତଶିଳ୍ପ ଉପରେ ଗୁରୁତ୍ୱ ଦିଆଯିବା ସଙ୍ଗେ ସଙ୍ଗେ ଶିଶୁର ବୃତ୍ତିଶୋଧନ, ମନୋରଞ୍ଜନାତ୍ମକ କାର୍ଯ୍ୟକ୍ରମରେ ମାର୍ଜିତ ରୁଚିର ବିକାଶ, ଗଣତାନ୍ତ୍ରିକ ପଦ୍ଧତିରେ କାର୍ଯ୍ୟ କରିବାର ଅଭ୍ୟାସ, ସହଯୋଗ ସହଭୋଗ ଆଦି ତତ୍ତ୍ୱଗୁଡ଼ିକ ମୌଳିକ ଶିକ୍ଷାରେ ରହିଛି ତତ୍‌ପ୍ରତି ବିଦ୍ୱାନମାନଙ୍କ ଦୃଷ୍ଟି ଆକର୍ଷଣ କରିବାର ନମ୍ର ପ୍ରୟାସ କଲି ।

ଜୈନଗୁରୁ ଆଚାର୍ଯ୍ୟ ତୁଳସୀ ପଦଯାତ୍ରା କରି କଣ୍ଟାବାଞ୍ଜିରେ ପହଞ୍ଚି ରମାଦେବୀଙ୍କ ସଙ୍ଗେ କଥାବାର୍ତ୍ତା କରିବା ପାଇଁ ଇଚ୍ଛାପ୍ରକାଶ କଲେ । ତାଙ୍କ ଶିଷ୍ୟମାନଙ୍କ ବ୍ୟବସ୍ଥା ଅନୁସାରେ ରମାଦେବୀ ମୋଟର୍‌କାର୍‌ରେ କଣ୍ଟାବାଞ୍ଜି ଗଲେ । ସାଙ୍ଗରେ ଥାଉ ପ୍ରଶାନ୍ତ ମହାନ୍ତି ଓ ମୁଁ । ସେଦିନ ସାଧାରଣ ସଭାରେ ଆଚାର୍ଯ୍ୟଶ୍ରୀ ଜାତିଭେଦ, ସାମ୍ପ୍ରଦାୟିକତା, ଧନୀନିର୍ଦ୍ଧନ ଭେଦର ବିରୋଧ କରି ଯେପରି ଟାଣଟାଣ କଥା କହିଲେ ତାହା ଶୁଣି ମନେ

ହେଉଥାଏ ଜଣେ ଟାଣୁଆ ସାମ୍ୟବାଦୀ ଏ ସଭାରେ ବକ୍ତୃତା ଦେଉଛନ୍ତି । ଓଡ଼ିଶାରେ ଅଣୁବ୍ରତ ଆନ୍ଦୋଳନ ଓ ସର୍ବୋଦୟ ଆନ୍ଦୋଳନ କିପରି ପାଖାପାଖି ଚାଲି ପାରିବ ସେହି ବିଷୟରେ ସେ ରମାଦେବୀଙ୍କ ସହିତ ଆଲୋଚନା କଲେ ।

ପରଦିନ କୃଷ୍ଣକୁମାରୀ ନାମ୍ନୀ ଜଣେ ଊଣେଇଶ କୋଡ଼ିଏ ବର୍ଷ ଝିଅ ଆଚାର୍ଯ୍ୟଙ୍କ ଠାରୁ ଦୀକ୍ଷା ନେଇ ଶିଷ୍ୟତ୍ୱ ଗ୍ରହଣ କଲେ । ଏହି ଦୀକ୍ଷାଦାନ ଉତ୍ସବରେ ଯୋଗ ଦେବାକୁ ସମଗ୍ର ଭାରତରୁ ହଜାର ହଜାର ଜୈନ ସ୍ତ୍ରୀ ପୁରୁଷ ଆସିଥିଲେ । ଦୀକ୍ଷାଦାନର ପୂର୍ବଦିନ ଏହି ଝିଅଟିକୁ ବହୁମୂଲ୍ୟ ବସ୍ତ୍ରାଳଙ୍କାର ପିନ୍ଧାଇ ଚତୁର୍ଦ୍ଦୋଳାରେ ବସାଇ ଆଚାର୍ଯ୍ୟଶ୍ରୀଙ୍କ ପାଖକୁ ଶୋଭାଯାତ୍ରାରେ ଅଣାଗଲା । ଘଟଣା କ'ଣ ଜାଣିବାକୁ ମୁଁ ପଚରାପଚରି କରି କୃଷ୍ଣକୁମାରୀଙ୍କ ଘରକୁ ଯାଇ ତାଙ୍କ ବାପ, ମା'ଙ୍କୁ ଦେଖାକଲି । ସେମାନେ କହିଲେ, ଝିଅଟି ପିଲାଦିନୁଁ ସାଂସାରିକ ଆମୋଦ ପ୍ରମୋଦ ପ୍ରତି ବୀତସ୍ପୃହ । ସେ ବରାବର ବାପମାଆଙ୍କୁ କହେ ଯେ ମୁଁ ବଡ଼ ହେଲେ ସାଧ୍ୱୀ ହେବି । ତା'ର ବିବାହ ବୟସ ହେବାରୁ ବାପମାଆ ବିବାହ ଆୟୋଜନ କରିବାରୁ ସେ ବିଭା ହେବାକୁ ମନା କଲା । ତହୁଁ ଆଚାର୍ଯ୍ୟଶ୍ରୀଙ୍କ ସଙ୍ଗେ ପରାମର୍ଶ କରି ତାକୁ କଣ୍ଟାବାଞ୍ଜିର ପରମାର୍ଥିକ ଶିକ୍ଷଣ ସଂସ୍ଥାରେ ଛାଡ଼ିଲେ । ସେଠାରେ ରହି ସେ ତିନି ଚାରିବର୍ଷ ଧର୍ମାଚରଣ କରିବା ପରେ ଆଚାର୍ଯ୍ୟଶ୍ରୀ ତାକୁ ଏ ବର୍ଷ ଦୀକ୍ଷା ଦେବାକୁ କହିଲେ । ଦୀକ୍ଷା ଦେବା ପରେ ସେ ଆଉ ଗହଣା, ଭଲ ଲୁଗା ପିନ୍ଧିବ ନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ଗାଧୋଇବ ନାହିଁ । ସେଥିପାଇଁ ତାକୁ ଆଜି ଭଲ କରି ଗାଧୁଆଇ, ଗହଣା ପାଟଶାଢ଼ୀ ପିନ୍ଧାଇଲୁ ।

ପରମାର୍ଥିକ ଶିକ୍ଷଣ ସଂସ୍ଥା କଥା ଶୁଣି ଆମେ ସେ ସଂସ୍ଥାକୁ ଗଲୁ । ୧୯୫୦ ମସିହାରୁ ଏହି ସଂସ୍ଥା ଝିଅମାନଙ୍କୁ ପରମାର୍ଥ ଶିକ୍ଷା ଦେଉଛି । ସେଠାରେ ଊଣେଇଶ ଜଣ ଝିଅଙ୍କୁ ଦେଖିଲୁ । ସେମାନେ ବ୍ରହ୍ମଚାରିଣୀ । ଜୈନ ଧର୍ମଶାସ୍ତ୍ର ପାଠ ସାଙ୍ଗରେ ସିଲେଇ, ଚିତ୍ରାଙ୍କନ ଓ ପୋଥି ନକଲ କାମ ସେମାନେ କରନ୍ତି । ସେମାନେ କେହି ରୋଷେଇ କରନ୍ତି ନାହିଁ କି ରୋଷେଇ ଜାଣନ୍ତି ନାହିଁ । ସାଧ୍ୱୀମାନଙ୍କୁ ଭିକ୍ଷାନ୍ନ ସମ୍ବଳ କରି ବଞ୍ଚିବାକୁ ହୁଏ । ତେଣୁ ରୋଷେଇ, ହଣ୍ଡାମଜା, ପରଷା ଧନ୍ଦାରୁ ଛୁଟି । ଦୁଇଖଣ୍ଡରୁ ଅଧିକ ଲୁଗା ବ୍ୟବହାର କରିବା ସେମାନଙ୍କ ପାଇଁ ନିଷିଦ୍ଧ । ପାଣି ଓ ନିଆଁର ଉପଯୋଗ ପାରୁପର୍ଯ୍ୟନ୍ତ କମ୍ କରିବା ପାଇଁ ସେମାନଙ୍କୁ ତାଲିମ ଦିଆଯାଏ । ଦୀକ୍ଷା ନେବା ଦିନ ସେମାନେ ଗାଧାନ୍ତି । ମୃତ୍ୟୁପରେ ସେମାନଙ୍କ ଶବକୁ ଗାଧୁଆଇ ଦିଆହୁଏ । ଏହିପରି କଠୋର ଜୀବନ ବରଣ କରିବା ପାଇଁ ସ୍ୱେଚ୍ଛାରେ ଏହି ଝିଅମାନେ ପଣ କରିଥିବାର ଦେଖି

ଅବଳା ବୋଲାଉଥିବା ନାରୀ ଇଚ୍ଛାକଲେ କେତେ ଦୃଢ଼ପଣ କରି ପାରନ୍ତି ତାହାର ପରିଚୟ ପାଇ ଆତ୍ମପ୍ରସାଦ ଲାଭ କଲି ।

ପରଦିନ ସକାଳ ଓଳି କୃଷ୍ଣକୁମାରୀ ଅଷ୍ଟ ଅଳଙ୍କାର ମଣ୍ଡି ହୋଇ ଚତୁର୍ଦ୍ଦୋଳାରେ ସଭାସ୍ଥଳକୁ ଆସିଲା । ଆଚାର୍ଯ୍ୟ ତୁଳସୀ ମଣ୍ଡପ ଉପରେ ବସି ଗୋଟି ଗୋଟି କରି ତା ବାପ, ଭାଇ ଓ ମାଆକୁ ଡ଼ାକି କୃଷ୍ଣକୁମାରୀ ଦୀକ୍ଷା ନେବାରେ ସେମାନଙ୍କର କୌଣସି ଆପତ୍ତି ଅଛି କି ବୋଲି ବଡ଼ ପାଟିରେ ପଚାରିଲେ । ବାପ, ଭାଇ ଛିଡ଼ା ହୋଇ ସମ୍ମତି ଦେଲେ । ମାଆ ସମ୍ମତି ଦେବା ପାଇଁ ଛିଡ଼ା ହୋଇ ସମ୍ମତିସୂଚକ ମୁଣ୍ଡ ହଲାଇ ମୂର୍ଚ୍ଛିତ ହୋଇ ପଡ଼ିଗଲେ । ମୁଁ ଜାଣିଶୁଣି ସଭା ଆରମ୍ଭରୁ ତାଙ୍କ ପାଖରେ ତାଙ୍କ ମନୋଦଶା ଜାଣିବାକୁ ବସିଥିଲି । ପ୍ରଥମୋପଚାରରେ ଲାଗିଗଲୁ । ଦୁଇଜଣ ସାଧ୍ୱୀ କୃଷ୍ଣକୁମାରୀକୁ ସାଙ୍ଗରେ ନେଇ ସଭାସ୍ଥଳରୁ ଚାଲିଗଲେ । ଆଚାର୍ଯ୍ୟଶ୍ରୀଙ୍କ ଭାଷଣ ଓ ଗୀତ ଚାଲିଥାଏ । ପ୍ରାୟ ଘଣ୍ଟାଏ ପରେ କୃଷ୍ଣକୁମାରୀ ସଭାକୁ ଫେରି ଆସିଲା – ନିରାଭରଣା, ମୁଣ୍ଡିତକେଶା, ଶ୍ୱେତାମ୍ବରା । ପ୍ରଶାନ୍ତ ମହାନ୍ତି କୃଷ୍ଣକୁମାରୀର ରୂପାନ୍ତର ଦେଖି ବିହ୍ୱଳ ହୋଇଗଲେ ।

ଆଚାର୍ଯ୍ୟଶ୍ରୀ ମୋତେ ସଭାରେ କିଛି କହିବାକୁ ଡ଼ାକିଲେ । ମୁଁ କହିଲି – ଆଜି ମୋର ଗୋଟିଏ ଅପୂର୍ଣ୍ଣ ବାସନା ପୂର୍ଣ୍ଣ ହେଲା । ଖଣ୍ଡଗିରିକୁ ଗଲେ ସମ୍ରାଟ୍ ଖାରବେଳ ରାଣୀମାନଙ୍କ ସହ କିପରି ଜୈନଧର୍ମରେ ଦୀକ୍ଷିତ ହୋଇଥିବେ, ସେ ଦୃଶ୍ୟ କେଡ଼େ ହୃଦୟସ୍ପର୍ଶୀ ହୋଇଥିବ, ସେହିସବୁ କଥା ଖଣ୍ଡଗିରିର ପଥର ଉପରେ ବସି ମୁଁ କଳ୍ପନା କରେ ଏବଂ ମନଶ୍ଚକ୍ଷୁରେ ସେ ଦୃଶ୍ୟ ଦେଖିବା ପାଇଁ ଚେଷ୍ଟା କରେ । ସେହି ଭବ୍ୟ ଦୃଶ୍ୟ ଆଜି ସ୍ୱଚକ୍ଷୁରେ ଦେଖିବାର ସୌଭାଗ୍ୟ ମୁଁ ଆଚାର୍ଯ୍ୟଶ୍ରୀଙ୍କ ଅନୁଗ୍ରହରୁ ଲାଭ କଲି ।

ଆମେ ସର୍ବୋଦୟ-ବିଚାର ଅନୁସାରେ କରୁଣାମୂଳକ କ୍ରାନ୍ତି ପାଇଁ ନିଜ ନିଜ ସାମର୍ଥ୍ୟ ଅନୁସାରେ ଉଦ୍ୟମ ଚଳାଇଥିବା ବେଳେ ଦେଶରେ ଆଉ ଏକ ପନ୍ଥାରେ ବିପ୍ଳବ ସଂଘଟିତ କରିବା ପାଇଁ ଆପ୍ରାଣ ଉଦ୍ୟମ ଚାଲିଥାଏ । ଏହି ବିପ୍ଳବୀମାନେ ପଶ୍ଚିମବଙ୍ଗର ନକ୍‌ସଲବାଡ଼ୀ ଠାରେ ଜମି ଦଖଲ କାର୍ଯ୍ୟକ୍ରମ ଆରମ୍ଭ କରିଥିବାରୁ ସେମାନଙ୍କୁ ନକ୍‌ସଲପନ୍ଥୀ କୁହାଯାଉଥାଏ । ମାର୍କସପନ୍ଥୀ କମ୍ୟୁନିଷ୍ଟ ଓ ନକ୍‌ସଲପନ୍ଥୀଙ୍କ ମଧ୍ୟରେ ମତଭେଦ ଥିବାରୁ ପଶ୍ଚିମବଙ୍ଗରେ ଖାସକରି କଲିକତାରେ ଉଭୟ ଦଳ ମଧ୍ୟରେ ଘୋର ସଂଘର୍ଷ ଚାଲିଥାଏ । ୧୯୭୦-୭୧ ରେ କଲିକତାର ଅବସ୍ଥା ଏପରି ହେଲା ଯେ ସ୍କୁଲ ଭିତରେ, କାରଖାନାରେ, ବୀଚବଜାରରେ, ଚାହା ଦୋକାନରେ, ରାତି ଅଧରେ ଘର ଭିତରେ ପଶି ଏକ ଦଳ ଅନ୍ୟ ଦଳର ଲୋକଙ୍କୁ ହତ୍ୟା କରୁଥାନ୍ତି । କେହି କୌଣସି କାମରେ

ଘରୁ ବାହାରକୁ ଗଲେ ସେ ନିରାପଦରେ ଫେରିବ ଏ ଭରସା ଘର ଲୋକର ନ ଥାଏ । କଲିକତାର ଗୋଟିଏ ଗୋଟିଏ ଅଞ୍ଚଳରେ ଗୋଟିଏ ଗୋଟିଏ ଦଳ ଆଧିପତ୍ୟ ବିସ୍ତାର କରି ସେ ଅଞ୍ଚଳକୁ ନିଜ ଦଖଲରେ ରଖିଥାନ୍ତି । ଅନ୍ୟ ଦଳର ଅଧିକୃତ ଅଞ୍ଚଳର ନିରୀହ ନିରପେକ୍ଷ ଲୋକ ସୁଦ୍ଧା ସେ ଅଞ୍ଚଳକୁ ଗଲେ ତାକୁ ହତ୍ୟା କରାଯାଉଥାଏ ।

କଲିକତାର ଏହି ଭୟଙ୍କର ବାତାବରଣକୁ ବଦଳାଇବା ଉଦ୍ଦେଶ୍ୟରେ ପଶ୍ଚିମ ବଙ୍ଗର ବିଶିଷ୍ଟ ସର୍ବୋଦୟ କର୍ମୀ ସର୍ବଶ୍ରୀ ଚାରୁଚନ୍ଦ୍ର ଭଣ୍ଡାରୀ, କ୍ଷିତୀଶ ରାୟ ଚୌଧୁରୀ ପ୍ରମୁଖ କଲିକତାର ଉପଦ୍ରୁତ ଅଞ୍ଚଳରେ ଶାନ୍ତି-ଯାତ୍ରା କରି ଲୋକ ସମ୍ପର୍କ ସ୍ଥାପନ କରି ଏ ଭୟ ଭାଙ୍ଗିବା ପାଇଁ ଉଦ୍ୟମ କରିବାକୁ ସ୍ଥିର କଲେ । ଭାରତର ବିଭିନ୍ନ ପ୍ରଦେଶର ଶାନ୍ତି-ସେବକ ଏହି ଶାନ୍ତି-ଯାତ୍ରାରେ ଯୋଗ ଦେବାକୁ ଆସିଲେ ।

୧୬ ଜାନୁଆରୀ ୧୯୭୧ରେ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟର ପଶ୍ଚିମବଙ୍ଗ ଶାଖାର ପ୍ରତିନିଧି ଶ୍ରୀମତୀ ଅମ୍ବାଳିକା ରାୟ ଚୌଧୁରୀ ଗୋଟିଏ ମହିଳା ଶିବିର ସଂଚାଳନା କାମରେ ସାହାଯ୍ୟ କରିବା ପାଇଁ ତାର ଯୋଗେ କଲିକତାକୁ ମୋତେ ଡ଼କାଇଲେ । ଏହି ଶିବିର କାମ ତୁଲାଇବା ସଙ୍ଗେ ସଙ୍ଗେ ମୁଁ ପ୍ରତିଦିନ ଶାନ୍ତି-ଯାତ୍ରାରେ ଯୋଗ ଦେଉଥାଏ । ଆମେ ପ୍ରତିଦିନ ଭୋରରେ ପୂର୍ବଦିନରୁ ସ୍ଥିର ହୋଇଥିବା ସ୍ଥାନରେ ଏକତ୍ର ହୋଇ ଶାନ୍ତିଯାତ୍ରା ଆରମ୍ଭ କରୁଥାଉ ଏବଂ ପୁର୍ବନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ସେଠା ଲୋକଙ୍କ ସଙ୍ଗେ କଥାବାର୍ତ୍ତା କରି ନିଜ ନିଜ ରହିବା ସ୍ଥାନକୁ ଫେରୁ । ମୁଁ ସେଥର ବାଲିଗଞ୍ଜ ପ୍ଲେସ୍‌ରେ ରହିଥାଏ । ଜାନୁଆରୀ ୨୦ ତାରିଖ ଦିନ ଆମେ ଦେଶପ୍ରିୟ ପାର୍କରୁ ଯାତ୍ରା ଆରମ୍ଭ କରି ବେଲଲୋ ବାଟେ ସଦର୍ଣ୍ଣ ପାର୍କକୁ ଆସିଲୁ । ଜଣେ ଯୁବକ ଆସି ପଚାରିଲେ "ମୁଁ ଯଦି ଏ ଶାନ୍ତି-ଯାତ୍ରାରେ ଯୋଗ ଦେବି ତେବେ ମୋତେ କେତେ ପଇସା ମିଳିବ ? ତାଙ୍କ ସଙ୍ଗେ ଆମ କାମ ଓ ଉଦ୍ଦେଶ୍ୟ ବିଷୟରେ ଆଲୋଚନା କରିବାରୁ କେତେଜଣ ଯୁବକ ଗୁଣ୍ଡ ହୋଇଯାଇ କ୍ଷିତୀଶବାବୁଙ୍କୁ ପଚାରିଲେ- ଆପଣ କ'ଣ ପ୍ରକୃତରେ ଭାବୁଛନ୍ତି ଯେ ଏ ଶାନ୍ତି-ଯାତ୍ରା ଦ୍ୱାରା କିଛି ଲାଭ ହେବ ? କ୍ଷିତୀଶ ବାବୁ କହିଲେ- ଆମର ତ ସେ ବିଶ୍ୱାସ ଅଛି । ଆପଣମାନେ କ'ଣ ଭାବୁଛନ୍ତି ତାହା ଚାଲନ୍ତୁ ଆଲୋଚନା କରିବା । ପିଲାଏ କହିଲେ -ଭଲ କଥା, କିନ୍ତୁ ଆପଣ ଗାନ୍ଧୀ ନାଆଁ ଧରିବେ ନାହିଁ । କ୍ଷିତୀଶ ବାବୁ କହିଲେ - ଉତ୍ତମ, ଆପଣମାନେ ମଧ୍ୟ ମାର୍କସ୍, ଲେନିନଙ୍କ ନାମ ଧରିବେ ନାହିଁ । ସେଇଠି ସ୍ଥିର ହେଲା ଯେ ଆମେ ରାତିରେ ଜଣ ଜଣ ହୋଇ ସେମାନଙ୍କ ସାଙ୍ଗରେ ଯାଇ ଆତ୍ମଗୋପନ କରି ରହିଥିବା ସେମାନଙ୍କ ମୁଖିଆଙ୍କୁ ଭେଟିବୁ ।

ଏହି କଥାବାର୍ତ୍ତା ପରେ ତାଙ୍କର ଆମର ଭେଟାଭେଟି ଗୋପନରେ ଚାଲିଲା । ମୁଁ ଯେଉଁ ଦୁଇଜଣ ଯୁବକଙ୍କୁ ଭେଟିଲି ସେ ଦୁହେଁ ପୁଣି ଦୁଇ ମତବାଦର ଲୋକ । ଜଣେ ହେଉଛନ୍ତି Evolutionist । ସେ ଟାଟା, ବିରଲା ଶ୍ରେଣୀୟ ଲୋକଙ୍କ ବିରୁଦ୍ଧରେ ସଂଗଠନ କରୁଥା'ନ୍ତି । ଆଉ ଜଣେ ସି.ପି.ଆଇ.ଏମ୍(ଏଲ୍) ଅର୍ଥାତ୍ ନକ୍ସଲପନ୍ଥୀ । ସେମାନେ ଜୋତଦାର ଅର୍ଥାତ୍ ବଡ଼ ବଡ଼ ଜମି ମାଲିକଙ୍କ ଓ ବଡ଼ ଚାଷୀଙ୍କ ବିରୁଦ୍ଧରେ ସଂଗ୍ରାମରତ । ଆରମ୍ଭରୁ ମୁଁ କହିଦେଲି ଯେ ଆପଣ ଯେପରି ଆପଣଙ୍କ ଆଦର୍ଶରେ ଦୃଢ଼ ମୁଁ ମଧ୍ୟ ସେହିପରି ମୋ ଆଦର୍ଶ ପ୍ରତି ଏକନିଷ୍ଠ । ଏ ଆଲୋଚନାର ମୂଳ ଉଦ୍ଦେଶ୍ୟ ହେଉଛି, ଦୁଃଖ ମୂଳ ନିବାରଣ ପାଇଁ ଆପଣମାନେ ଓ ଆମେ ଯେଉଁ ବାଟ ଧରିଛୁ ସେ ବିଷୟରେ ପରସ୍ପରକୁ ସ୍ପଷ୍ଟ ଧାରଣା ଦେବା । ନକ୍ସଲପନ୍ଥୀ ଭାଇ କହିଲେ - ଦିଦି ! ଆପଣଙ୍କର ଓ ଆମର ଲକ୍ଷ୍ୟ ଏକ, ପନ୍ଥା ଭିନ୍ନ । ମୁଁ ତାଙ୍କୁ ଷ୍ଟେଟସ୍‌ମ୍ୟାନ୍‌ରେ ବାହାରିଥିବା ବିନୋବାଜୀଙ୍କ ବିବୃତ୍ତି ଶୁଣାଇଲି - Your aim is right but method is wrong. ବୋଲିବା ବାହୁଲ୍ୟ ଆମେ ବଙ୍ଗଳା ଭାଷାରେ କଥାବାର୍ତ୍ତା ହେଲୁ । ମୁଁ ପଚାରିଲି-ଆପଣମାନେ ଭାଇସ୍ ଚାନ୍‌ସେଲର ଗୋପାଳ ସେନ୍‌ଙ୍କୁ କାହିଁକି ହତ୍ୟା କଲେ ? ଜବାବ ମିଳିଲା ଗୋପାଳ ସେନ ଏ ଦେଶରେ ଆମେରିକାନ୍ ଶିକ୍ଷାପଦ୍ଧତି ଚଳାଇବାରେ ଅନ୍ୟତମ ମୁଖ୍ୟ ପଣ୍ଡା ଥିଲେ । ସେଥିପାଇଁ ତାଙ୍କୁ ମାରିଦେଲୁ । ମୁଁ ପଚାରିଲି-ବାଟରେ ଘାଟରେ ଲୋକଙ୍କୁ ମାରି ଦେଉଛନ୍ତି କାହିଁକି ? ସେ କହିଲେ - ଶାସନ କଳକୁ ବିଭ୍ରାନ୍ତ କରିବାକୁ ଓ ପୋଲିଶ ଅତ୍ୟାଚାରର ପ୍ରତିଶୋଧ ନେବାକୁ ଏହା କରାଯାଉଛି । ମୁଁ ପଚାରିଲି- ମଣିଷକୁ ମଣିଷ ବିନା କାରଣରେ ନୃଶଂସ ଭାବରେ ହତ୍ୟା କରିବାର ଯେଉଁ ମନୋବୃତ୍ତି ଏହାଦ୍ୱାରା ଗୋଟାଏ ଶ୍ରେଣୀର ଲୋକଙ୍କ ମଧ୍ୟରେ ବିକଶିତ ହେଉଛି, ତାହାର ଭବିଷ୍ୟତ ପରିଣତି କ'ଣ ହେବ ? ସେ କହିଲେ ବିପ୍ଳବର ପ୍ରାରମ୍ଭିକ ଅବସ୍ଥାରେ ଏହି ଶ୍ରେଣୀର ଲୋକ ଦରକାର ହୁଅନ୍ତି । ସେମାନଙ୍କୁ ଆମେ ଲୁମ୍ପେନ୍ କହୁ । ଆମ ବିପ୍ଳବ ସଫଳ ହେବା ପରେ ଆମେ ସେମାନଙ୍କୁ ମଧ୍ୟ ସଫା କରିଦେବୁ ।

ଗ୍ରାମଦାନ ଆନ୍ଦୋଳନ ସଂକ୍ରାନ୍ତରେ ମୟୁରଭଞ୍ଜ ଜିଲ୍ଲାରେ ବୁଲିବା ବେଳେ ପଶ୍ଚିମ ବଙ୍ଗର ଗୋପୀବଲ୍ଲଭପୁର, ବିହାରର ବହଡ଼ାଗୋଡ଼ା, ଓଡ଼ିଶାର ଶୁଳିଆପଦା ବ୍ଲକ୍‌ର ଶାଳୁଆ ଡ଼ହର ଅଞ୍ଚଳରେ ଗୋପନରେ ଗରିଲା ସୈନ୍ୟ ସଂଗଠନ ଚାଲିଥିବାର ସୁରାଖ ଆମକୁ ମିଳିଥିଲା । ସେଥିପାଇଁ ସେ ଅଞ୍ଚଳ ସହିତ ଯୋଗସୂତ୍ର ରକ୍ଷା କରିବା ପାଇଁ ନାରୀ କର୍ମୀ ମଧ୍ୟ ରହିଥିଲେ । ସନ୍ତୋଷ ରାଣା, ଜୟଶ୍ରୀ ରାଣାଙ୍କ ଲୋକଙ୍କ ସଙ୍ଗେ ଏହି

ନାରୀକର୍ମୀମାନଙ୍କର ଦେଖାସାକ୍ଷାତ ହେଉଥିଲା । ଆନ୍ଧ୍ର ଓଡ଼ିଶା ସୀମା ପରି ବଙ୍ଗ ବିହାର ଓଡ଼ିଶାର ଏହି ଅଞ୍ଚଳକୁ ଏକ "ମୁକ୍ତ ଅଞ୍ଚଳ" ରେ ପରିଣତ କରିବାକୁ ସେମାନେ ଯେଉଁ ସଂଗଠନ ଚଳାଇଥିଲେ ଏବଂ ଗୋପୀବଲ୍ଲଭପୁରରେ ତାହା କିପରି ବ୍ୟର୍ଥ ହେଲା ସେ ବିଷୟରେ ମୋ ଠାରୁ ଶୁଣି ତାଙ୍କର ହୃଦ୍‌ବୋଧ ହେଲା ଯେ ତାଙ୍କ ଆନ୍ଦୋଳନ ବିଷୟରେ ମୁଁ କିଛି ମାତ୍ରାରେ ଓୟାକିବ୍‌ହାଲ୍ ଅଛି । ତେଣୁ ସେ ଆହୁରି ଉତ୍ସାହିତ ହୋଇ ମୋତେ ତାଙ୍କ ବିଚାର ବୁଝାଇବାକୁ ଆରମ୍ଭ କରନ୍ତେ Evolutionist କହିଲେ-ମିଛରେ କାହିଁକି ବକର ବକର ହେଉଛ, ସେ କିଛି ବୁଝି ପାରିବେ ନାହିଁ । ନକ୍‌ସଲପନ୍ଥୀ ଭାଇ କହିଲେ- "ନା ନା ଦିଦି ବୁଝୁଛି ।" ନକ୍‌ସଲପନ୍ଥୀଙ୍କ ବିଚାର ଅନୁସାରେ ପଚିଶ ତିରିଶ ବର୍ଷ ବୟସରୁ ଅଧିକ ବୟସ୍କ ମଣିଷର ବିଚାର ବୁଝିବା ଓ ବଦଳିବା ପ୍ରାୟ ସମ୍ଭବ ନୁହେଁ । ତେଣୁ .... । ସେ ବନ୍ଧୁ "ଦିଦି ବୁଝୁଛି" କହିବା ମାତ୍ରେ ମୁଁ ଟିକିଏ ପରିହାସ କରି କହିଲି -ତାହାହେଲେ ଆପଣଙ୍କ ସିଦ୍ଧାନ୍ତ ବଦଳିଲା । କାରଣ ପଚାଶ ବର୍ଷରୁ ଊର୍ଦ୍ଧ୍ୱ ବୟସରେ ମଧ୍ୟ ମୋର ବୋଧଶକ୍ତି ଅଛି ବୋଲି ଆପଣ ସ୍ୱୀକାର କଲେ ।

ତିନୋଟି ରାତି ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରି ମୋର ଧାରଣା ହେଲା ଯେ ସେମାନଙ୍କ ପନ୍ଥା ଗାନ୍ଧୀ ପନ୍ଥାଠାରୁ ଭିନ୍ନ ସତ୍ୟ ମାତ୍ର ବିପ୍ଳବ ପାଇଁ, ଦୁଃଖ ମୂଳ ନିବାରଣ ପାଇଁ ସର୍ବସ୍ୱ ତ୍ୟାଗ କରି ନିଜର ଜୀବନ ବଳି ଦେବା ପାଇଁ କୃତସଂକଳ୍ପ ହୋଇ ସେମାନେ ଯେପରି ତ୍ୟାଗ କରୁଛନ୍ତି, ସେହି ତ୍ୟାଗକୁ ପ୍ରଶଂସା ନ କରି ରହିହେବ ନାହିଁ ।

ସେତେବେଳକୁ ଶ୍ରୀ ନାଗଭୂଷଣ ପଟ୍ଟନାୟକ କଲିକତାରେ ଗିରଫ ହୋଇ ସାରିଥାନ୍ତି ଏବଂ ତାଙ୍କରି ଦଳର ଲୋକେ ତାଙ୍କୁ ଧରେଇ ଦେବା କଥା ମୁଁ ସେହିମାନଙ୍କ ମୁହଁରୁ ଶୁଣି ସାରିଥାଏ । ଶେଷଦିନ ମୁଁ ତାଙ୍କୁ ପଚାରିଲି - ଆପଣମାନଙ୍କ ମଧ୍ୟରେ ପରସ୍ପର ପ୍ରତି ଯେଉଁ ବିଶ୍ୱାସଘାତକତା ଆରମ୍ଭ ହୋଇଛି, ଆମେ ବ୍ରିଟିଶ ସହିତ ଲଢୁଥିବା ବେଳେ ସନ୍ତ୍ରାସବାଦୀଙ୍କ ମଧ୍ୟରେ ତାହା ଘଟୁଥିଲା । ମାତ୍ର ଆପଣମାନଙ୍କ ମଧ୍ୟରୁ ଅନେକେ ଯେ ପାର୍ଟିର ଶୃଙ୍ଖଳା ମାନି ନିଜର ଘନିଷ୍ଠ ବନ୍ଧୁ ଓ ଆତ୍ମୀୟଙ୍କୁ ହତ୍ୟା କରିବା ପରେ ଅସ୍ଥିର ଚିତ୍ତ ହେଉଛନ୍ତି ପୁଣି ସେମାନେ କାଳେ ଦୁର୍ବଳ ମନୋଭାବ ହେତୁ ଦଳର ଗୋପନୀୟତା ରକ୍ଷା କରି ପାରିବେ ନାହିଁ ବୋଲି ଆପଣଙ୍କୁ ତାଙ୍କୁ ହତ୍ୟା କରିବାକୁ ପଡୁଛି, ସେମାନଙ୍କର ଏହି ହୃଦୟ ଦୌର୍ବଲ୍ୟର କାରଣ କ'ଣ ? କିଛି ସମୟ ନୀରବ ରହି ସେ କହିଲେ- ଆମେ ତ କାରଣ ଖୋଜି ପାଉ ନାହୁଁ । ଆପଣ କ'ଣ ଭାବୁଛନ୍ତି ?

ମୁଁ କହିଲି – ଆମ ଅମଳର ସନ୍ତ୍ରାସବାଦୀମାନେ କାହାରିକୁ ହତ୍ୟା କଲାବେଳେ ସେମାନଙ୍କ ହାତରେ ବନ୍ଧୁକ ଓ ପକେଟ୍‌ରେ ଗୀତା ରହୁଥିଲା । କାହାରିକୁ ହତ୍ୟା କଲାବେଳେ ସେମାନେ ବିଚାରୁଥିଲେ – ଏହାର ଶରୀରଟା ନଷ୍ଟ ହୋଇଯିବ ମାତ୍ର ଆତ୍ମା ମରିବ ନାହିଁ । ତେଣୁ ହତ୍ୟା କରି ସାରିବା ପରେ ତାଙ୍କ ମଧ୍ୟରେ ହୃଦୟ ଦୌର୍ବଲ୍ୟ ଦେଖା ଦେଉ ନ ଥିଲା । ଆପଣମାନେ ଆତ୍ମାର ଧାର ଧାରନ୍ତି ନାହିଁ, ଯାହାକୁ ହତ୍ୟା କରୁଛନ୍ତି ତାକୁ ଆପଣ ମାରିଦେଲେ ତା'ର ମୁଁ ସବୁ ଶେଷ କରିଦେଲି ଏହି ବିଚ୍ଛେଦ ଦୁଃଖରେ ହତ୍ୟା କରିବା ଲୋକର ଚିତ୍ତଭ୍ରମ ଘଟୁଛି ବୋଲି ମୋର ଧାରଣା । ବନ୍ଧୁ ଏ କଥା ଶୁଣି ନୀରବ ରହିଲେ । ଶେଷରେ ତାଙ୍କୁ କହିଲି–ଆପଣ ତ ଗାଁ–ଗଣ୍ଡାରେ ସାଧାରଣ ଲୋକଙ୍କୁ ଆପଣଙ୍କ ବିଚାର ବୁଝାଉଛନ୍ତି । ମାତ୍ର ଗାଁ ଲୋକେ ସେ ବିଚାର ଦ୍ୱାରା ପ୍ରଭାବିତ ହୋଇ ଆନ୍ଦୋଳନରେ ଯୋଗ ଦେଉଛନ୍ତି କି ? ୧୯୩୦ ମସିହା ଲବଣ ସତ୍ୟାଗ୍ରହ ବେଳେ ଗାନ୍ଧିଜୀଙ୍କ ଡ଼ାକରାରେ ଯେପରି ଥିଲାବାଲା ନ ଥିଲାବାଲା ନିର୍ବିଶେଷରେ ଜନସାଧାରଣ ବହୁ ସଂଖ୍ୟାରେ ଆନ୍ଦୋଳନରେ ଯୋଗ ଦେଲେ, ଆପଣଙ୍କ ଆନ୍ଦୋଳନ ପ୍ରତି ଲୋକେ ସେପରି ଆକୃଷ୍ଟ ହେଉଛନ୍ତି କି ? ଅଳ୍ପ ଦିନ ତଳେ ଗୋପୀବଲ୍ଲଭପୁରରେ ଘଟିଥିବା ଗୋଟିଏ ଘଟଣା ସ୍ମରଣ କରାଇ ଦେଇ ମୁଁ ଏ ପ୍ରଶ୍ନ କଲି । ସେ ମୋ ପ୍ରଶ୍ନର ଉତ୍ତର ନ ଦେଇ ଓଲଟି ମୋତେ ପଚାରିଲେ – ଏ ବିଷୟରେ ଆପଣଙ୍କ ମତ ମୁଁ ଶୁଣିବାକୁ ଚାହେଁ । ମୁଁ କହିଲି – ମୁଁ ଅନୁମାନ କରୁଛି ଲୋକେ ଯେଉଁ ଭାଷା, ଯେଉଁ ଉଦାହରଣ, ଯେଉଁ ସଂସ୍କାରକୁ ଦେଖି ଶୁଣି ବଢ଼ି ଆସିଛନ୍ତି, ଆପଣମାନେ ସେହି ଭାଷା ସେହି ଉଦାହରଣ ପ୍ରୟୋଗ କରୁ ନାହାନ୍ତି । ଗାନ୍ଧିଜୀ ତାହା କରୁଥିଲେ । ଉଦାହରଣ ସ୍ୱରୂପ କର୍ଣ୍ଣକୁ ଅଂପାଙ୍କ୍ତେୟ କରିବା, ଅଶ୍ୱତ୍ଥାମାକୁ ପିଠୋଉ ପାଣି ଗୋଳି ପେଇବା, କୁନ୍ତୀର ପୁଅକୁ ପୈତୃକ ସମ୍ପତ୍ତିରୁ ବଞ୍ଚିତ କରିବା ଫଳରେ ଯେ ମହାଭାରତ ଯୁଦ୍ଧ ହେଲା ସେ କଥା କୁହାଯାଇ ପାରନ୍ତା ନାହିଁ କି ?

ଦୁଇବନ୍ଧୁ ସମସ୍ୱରରେ କହିଲେ "ଏ କଥାଟା ଭାବି ଦେଖିବାକୁ ହେବ ।"

ଏହାର ଅଳ୍ପଦିନ ପରେ କଲିକତାରେ ସି.ଆର୍.ପି.ଙ୍କର ତାଣ୍ଡବଲୀଳା ଆରମ୍ଭ ହୋଇଗଲା ।

୧୯୭୧ ମସିହା ଫେବୃଆରୀ ୨୧ ତାରିଖ ପଂକୋଦ୍ଧାର ଏକାଦଶୀ ସୂର୍ଯ୍ୟ ଉଇଁ ଆସିବା ବେଳକୁ ଆଚାର୍ଯ୍ୟ ମହାଶୟଙ୍କ ଜୀବନ ପ୍ରଦୀପ ଲିଭିଗଲା । ପୁରାଣ ଶାସ୍ତ୍ରରେ ଅଛି ଯୋଗୀ, ସାଧକମାନେ ଇଚ୍ଛା କଲେ ନିଜର ଆକୃତିକୁ ସାନ ବଡ଼ କରି ପାରୁଥିଲେ ।

ହନୁମାନ-ସୁରସା ରାକ୍ଷସୀ ସଂବାଦରେ ହନୁମାନ ସୁମେରୁ ପର୍ବତ ପରି ବିଶାଳ ଦେହୀ ହୋଇ ପୁଣି ଅତି ଲଘୁ ରୂପ ଧରି ସୁରସା କବଳରୁ ଉଦ୍ଧୁରିଥିଲେ ବୋଲି ରାମାୟଣରେ ବର୍ଣ୍ଣିତ ହୋଇଛି । ଆଚାର୍ଯ୍ୟ ମହାଶୟ ତାଙ୍କ ଗୁଜୁ ଗୌର ତନୁକୁ ସାନବଡ଼ କରିଦେଇ ନ ଥିଲେ ସିନା ମାତ୍ର ବାଳବୃଦ୍ଧାଯୁବା ନିର୍ବିଶେଷରେ ସମସ୍ତଙ୍କ ସହିତ ବନ୍ଧୁ ଭଳି ମିଶି ମନକଥା ବୁଝି ଯାହାଙ୍କର ଯେପରି ସାନ୍ତ୍ୱନା, ରଙ୍ଗରସ ବା ଉପଦେଶ ଲୋଡ଼ା ତାଙ୍କୁ ତାହା ଦେବାର ଅଦ୍ଭୁତ ଶକ୍ତି ତାଙ୍କର ଥିଲା । ସ୍ୱାଧୀନତା ଆନ୍ଦୋଳନ ବେଳେ ଓ ପରେ ଯେଉଁ ନାରୀ ଜାଗରଣ ଓଡ଼ିଶାରେ ହୋଇଛି, ସେଥିରେ ଆଚାର୍ଯ୍ୟ ମହାଶୟଙ୍କର ଅବଦାନ ଭାଷାରେ ବର୍ଣ୍ଣି ହେବ ନାହିଁ । ଝିଅମାନଙ୍କ ସହିତ କିପରି ମିଶିବା ଉଚିତ ତାହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ଆଚାର୍ଯ୍ୟ ମହାଶୟ । ଦଶରଥ ତନୟ ରାମଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ କୁହାଯାଇଥାଏ । ମୋ ଜାଣିବାରେ ଆଚାର୍ଯ୍ୟ ମହାଶୟ ଥିଲେ ମର୍ଯ୍ୟାଦା ପୁରୁଷୋତ୍ତମ । ସର୍ବତ୍ର ଅନନ୍ତିସ୍ନେହ, ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସମସ୍ତଙ୍କ ପ୍ରତି ଜ୍ୟୋତ୍ସ୍ନା ପରି ସ୍ନିଗ୍ଧ ସ୍ନେହ ଢ଼ାଳି ଦେବ ଆଉ କିଏ ?

ବିପଦ ଭିତରକୁ ଟାଣି ନେଇଯାଇ ନାନା ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଜନସେବା କରିବାରେ ଯେଉଁ ଅନାବିଳ ଆନନ୍ଦ ରହିଛି, ବସନ୍ତ ରୋଗୀ ହଇଜା ରୋଗୀଙ୍କ ସେବା କରି କରାଇ ସେ ଆନନ୍ଦ ଚାଖି ଶିଖାଇବ କିଏ ? ନିତ୍ୟକର୍ମ ସାରି ବ୍ରାହ୍ମମୁହୂର୍ତ୍ତରେ ସେହି ବୈଦିକ ଯୁଗର ଋଷି ପରି ଧ୍ୟାନସ୍ଥ ହୋଇ ଯାଉଥିବା ଆଚାର୍ଯ୍ୟ ମହାଶୟ ଯେତେବେଳେ ନିଜେ ପାଣିକୁ ଡ଼େଇଁ ବୁଡ଼ା ପହଁରା ଦେଇ ଆମକୁ ମଧ୍ୟ ବୁଡ଼ା ପହଁରା ଦେବା କଳା ଶିଖାନ୍ତି ସେତେବେଳେ ସେ ଯେ ଆମର ଗୁରୁଗରିୟାନ୍ ସେ କଥା ତ ମନେ ରହେ ନାହିଁ । ସେତେବେଳେ ସେ ହୁଅନ୍ତି ଆମ ଖେଳସାଥୀ, ଘର କୋଣରୁ ସଦ୍ୟ ବାହାରି ଆସିଥିବା ଝିଅବୋହୂଙ୍କୁ ଯୁକ୍ତିଯୁକ୍ତ ଭାଷାରେ ବକ୍ତୃତା ଦେବାକୁ ଶିଖାଇବେ ଆଚାର୍ଯ୍ୟ ମହାଶୟ । ପଦଯାତ୍ରାରେ ଚାଲି ଚାଲି ଥକାମରା ହେଲା ବେଳକୁ କିଏ ଜଣେ ଡ଼ିସ୍‌ପେନ୍‌ସାରୀକୁ ଡ଼ିସେଣ୍ଟ୍ରି ଆଇଡିଆକୁ ଡ଼ାଇରିଆ କହିଥିଲେ, ତାକୁ ନକଲ କରି ଆମକୁ ହସାଇବେ ଆଚାର୍ଯ୍ୟ ମହାଶୟ । ଅନ୍ଧାର ରାତିରେ ହଇଜା ମଲୁ ପାଖରୁ ଫେରିବା ବେଳେ ବା ଘରପୋଡ଼ି ନିଆଁ ଲିଭାଇ ଫେରିବା ବେଳେ ଆକାଶରେ କାଳପୁରୁଷ, ଦିବ୍ୟଶ୍ୱାନ ଚିହ୍ନେଇବେ ଆଚାର୍ଯ୍ୟ ମହାଶୟ । ଆଶା ନିରାଶା, ଅପ୍ରତ୍ୟାଶିତ ଆଘାତର ମୁକାବିଲା କରିବା ପାଇଁ ସଞ୍ଚିତ କର୍ମ, କ୍ରିୟମାଣ କର୍ମ, ପ୍ରାରବଧି ତତ୍ତ୍ୱ ବୁଝେଇବେ ଆଚାର୍ଯ୍ୟ ମହାଶୟ । ନିଜର ଅଭାବ ଅସୁବିଧାକୁ ଠେଲି ଦେଇ ପାଖ ଲୋକଙ୍କର ସାମାନ୍ୟତମ ଅଭାବ ଅସୁବିଧା ଦୂର କରିବା ପାଇଁ

ଦୃଷ୍ଟିହୀନ ଅବସ୍ଥାରେ ବୃଦ୍ଧ ବୟସରେ ସୁଦ୍ଧା ତାଙ୍କର ବ୍ୟାକୁଳତା ଦେଖିଲେ ତାଙ୍କୁ "ଆତ୍ମୋପମ୍ୟେନ ସର୍ବତ୍ର-" ର ଅବତାର ମନେ ହୁଏ ।

ପବିତ୍ରତାର ପ୍ରତିମୂର୍ତ୍ତି ସେ ଯାହାଙ୍କ ମୁହଁରୁ କେବେ ଅଶ୍ଳୀଳ କଥା ପଦେ ବାହାରିବା ତ ଦୂରର କଥା ଯାହାଙ୍କ ଆଗରେ ଅଭଦ୍ର ବ୍ୟକ୍ତି ମଧ୍ୟ ଶୀଳବାନ୍ ହୋଇଯାଏ । ସେହି ପୁରୁଷ ସହିତ ମିଶିବାର ସୌଭାଗ୍ୟ ଓଡ଼ିଶାର ମହିଳା କର୍ମୀମାନଙ୍କୁ ମିଳିଥିଲା ବୋଲି ସେମାନେ ନିଃଶଙ୍କ ଚିତ୍ତରେ ସମାଜ ଉପରେ ବିଶ୍ୱାସ ସ୍ଥାପନ କରି ନିଆଁକୁ ଡ଼େଇଁଥିଲେ ।

ସେହି ଆଚାର୍ଯ୍ୟ ମହାଶୟ ଚାଲିଗଲେ -

ସଖେତି ମତ୍ୱା ପ୍ରସଭଂ ଯଦୁକ୍ତଂ
ହେ କୃଷ୍ଣ ହେ ଯାଦବ ହେ ସଖେତି
ଅଜାନତା ମହିମାଙ୍କ ତବେଦଂ
ମୟାପ୍ରମାଦାତ୍ ପ୍ରଣୟେନ ବାପି
ୟଚ୍ଚବହାସାର୍ଥମସତ୍ କୃତୋଽସି
ବିହାର ଶଯ୍ୟାଶନ ଭୋଜବେଷ୍ଟ
ଏକୋଽଥବାପ୍ୟଚ୍ୟୁତ ତତ୍ ସମକ୍ଷଂ
ତତ୍କ୍ଷାମୟେ ତ୍ୱାମହପ୍ରମେୟମ୍
ପିତାସି ଲୋକସ୍ୟ ଚରାଚରସ୍ୟ
ତ୍ୱମସ୍ୟ ପୂଜ୍ୟଶ୍ଚ ଗରୁଗରିୟାନ
ନ ତ୍ୱତ୍ ସମୋଽସ୍ତ୍ୟଭ୍ୟଧିକ୍ୟ କୁତୋଽନ୍ୟୋ
ଲୋକତ୍ରୟେଽପ୍ୟପ୍ରତିମ ପ୍ରଭାବ ॥
ତସ୍ମାତ୍ ପ୍ରଣମ୍ୟ ପ୍ରଣିଧାୟ କାୟଂ
ପ୍ରସାଦୟେ ତ୍ୱାମହମୀଶ ମୀଡ୍ୟମ୍
ପିତେବ ପୁତ୍ରସ୍ୟ ସଖେବ ସଖ୍ୟୁଃ ପ୍ରିୟଃ
ପ୍ରିୟାୟାର୍ହସି ଦେବ ସୋଢୁମ୍ ॥

୧୯୭୧ ମସିହା ମଇ ମାସରେ ନାସିକ୍ ଠାରେ ସର୍ବୋଦୟ ସମ୍ମିଳନୀ ହେଲା । ସେତେବେଳକୁ ପୂର୍ବ-ପାକିସ୍ଥାନରେ ଗୃହଯୁଦ୍ଧ ଆରମ୍ଭ ହୋଇ ଭାରତକୁ ଲକ୍ଷ ସଂଖ୍ୟାରେ

ଶରଣାର୍ଥୀ ପଳାଇ ଆସିବାକୁ ଆରମ୍ଭ କଲେଣି । ଜୟପ୍ରକାଶ୍‌ଜୀ ଏହି ସମ୍ମିଳନୀରେ ପୂର୍ବ-ପାକିସ୍ତାନ୍ ସମସ୍ୟା ଉପରେ ସାଢ଼େ ତିନିଘଣ୍ଟା କାଳ ଭାଷଣ ଦେଲେ ଏବଂ ପୂର୍ବପାକିସ୍ତାନ ସମସ୍ୟା ପ୍ରତି ପୃଥିବୀର ବିଭିନ୍ନ ଦେଶର ଦୃଷ୍ଟି ଆକର୍ଷଣ କରାଇବା ଉଦ୍ଦେଶ୍ୟରେ ସେ ବିଦେଶ ଭ୍ରମଣ କରିବେ ବୋଲି ମଧ୍ୟ ସୂଚେଇଲେ । ଏହି ସମ୍ମିଳନୀରେ ଭାରତର ଜନସାଧାରଣଙ୍କୁ ପୂର୍ବ-ପାକିସ୍ତାନ ସମସ୍ୟା ବିଷୟରେ ଜଣାଇବା ପାଇଁ କର୍ମୀମାନେ ସଭା, ସେମିନାର ଆଦି ସଂଗଠନ କରିବା ପ୍ରସ୍ତାବ ଗୃହୀତ ହେଲା । ତଦନୁସାରେ ନିଜ ନିଜ ପ୍ରଦେଶକୁ ଫେରିବା ପରେ ଆମର ଏହା ହିଁ ହେଲା ମୁଖ୍ୟ କାମ ।

ମାତ୍ର ଜୁନ୍ ଶେଷ ବେଳକୁ ପରିସ୍ଥିତି ଭିନ୍ନ ରୂପ ଧରିଲା । ଶାନ୍ତି ସେନା ମଣ୍ଡଳ ପକ୍ଷରୁ ଶ୍ରୀ ନାରାୟଣ ଦେଶାଇଙ୍କର ପରିପତ୍ର ଆସିଲା ଯେ ପଶ୍ଚିମବଙ୍ଗର ଶରଣାର୍ଥୀ ଶିବିରଗୁଡ଼ିକରେ ହଇଜାରେ ପ୍ରତିଦିନ ଶହ ଶହ ଶରଣାର୍ଥୀ ପ୍ରାଣ ହରାଉଛନ୍ତି । ପଶ୍ଚିମବଙ୍ଗ ସରକାରଙ୍କ ପକ୍ଷରେ ଏ ପରିସ୍ଥିତିକୁ ସମ୍ଭାଳିବା ଅସମ୍ଭବ ହେଲାଣି ବୋଲି ସେ ରାଜ୍ୟ ସରକାରଙ୍କ ମୁଖପାତ୍ର ସୁଚେଇଲେଣି । ତେଣୁ ଏ ମହାମାରି ଦାଉରୁ ଦେଶକୁ ରକ୍ଷା କରିବା ନିମନ୍ତେ ସ୍ୱେଚ୍ଛାସେବୀ ସଂସ୍ଥାମାନେ ଆଗେଇ ଆସିବା ଦରକାର । ରମାଦେବୀ ଏ ପରିପତ୍ର ପାଇବା ମାତ୍ରେ ସର୍ବୋଦୟ କର୍ମୀମାନଙ୍କ ସହ ପରାମର୍ଶ କରି ମୁଖ୍ୟମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର କର୍ତ୍ତୃପକ୍ଷ ଓ କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟର ପ୍ରତିନିଧି ଶ୍ରୀମତୀ ସୁମିତ୍ରା ଚୌଧୁରୀଙ୍କ ସଙ୍ଗେ କଥାବାର୍ତ୍ତା କରି ଗୋଟିଏ ସ୍ୱେଚ୍ଛାସେବକ ଦଳ ସହ ପଶ୍ଚିମବଙ୍ଗ ଯିବାକୁ ସଜ ହେଲେ । ଶ୍ରୀ ବିରଜା ପ୍ରସାଦ ରାୟ ପ.ବଙ୍ଗ ସରକାରଙ୍କ ସଂପୃକ୍ତ ବିଭାଗର ମୁଖ୍ୟ କର୍ତ୍ତାଙ୍କ ସଙ୍ଗେ ଆଲୋଚନା କରିବାକୁ ଗଲେ । ରାଜ୍ୟ ସରକାରଙ୍କ ପକ୍ଷରୁ ସଂପୃକ୍ତ ବିଭାଗର କର୍ତ୍ତା ମତ ଦେଲେ ଯେ ସଲଟ୍ ଲେକ୍ ଅଞ୍ଚଳରେ ଶରଣାର୍ଥୀ ସେବା କରିବା ସୁବିଧାଜନକ ହେବ ସତ୍ୟ ମାତ୍ର ପଶ୍ଚିମ ଦିନାଜପୁରର ପରିସ୍ଥିତି ଆପଣମାନଙ୍କ ସାହାଯ୍ୟ ଲୋଡ଼ୁଛି । ପ. ଦିନାଜପୁରର ହିଲି ବ୍ଲକ୍ ଗୋଟାଏ ନାସିପରି ପୂର୍ବ ପାକିସ୍ତାନ ଭିତରକୁ ପଶି ଯାଇଥିବାରୁ ତାହାର ତିନିପଟ ପୂ.ପାକିସ୍ତାନ ଦ୍ୱାରା ବେଷ୍ଟିତ । ସେଥିପାଇଁ ସେହି ବିପଜ୍ଜନକ ଅଞ୍ଚଳରେ କୌଣସି ସ୍ୱେଚ୍ଛାସେବୀ ସଂସ୍ଥା କାମ କରିବାକୁ ଚାହୁଁନାହାନ୍ତି । ଅଥଚ ସେଠାରେ ପ୍ରତିଦିନ ଶହ ଶହ ଶରଣାର୍ଥୀ ହଇଜାରେ ଆକ୍ରାନ୍ତ ହୋଇ ପ୍ରାଣ ହରାଉଛନ୍ତି । ବିରଜାବାବୁଙ୍କ ଠାରୁ ଏହା ଶୁଣିବା ପରେ ପଶ୍ଚିମ ଦିନାଜପୁରକୁ ହିଁ ସେବାକ୍ଷେତ୍ର ରୂପେ ବାଛିବା ସ୍ଥିର ହେଲା । ଗାନ୍ଧୀସ୍ମାରକ ନିଧି ଗୋଟାଏ ରେଜିଷ୍ଟାର୍ଡ଼ ସଂସ୍ଥା ହୋଇଥିବାରୁ ଏହି ସଂସ୍ଥା ମାରଫତ୍

କାମ କରିବା ପାଇଁ ଓଡ଼ିଶା ରିଲିଫ୍ ପାର୍ଟିର ତେତ୍ରିଶ ଜଣ ସ୍ୱେଚ୍ଛାସେବକ ଓ ସ୍ୱେଚ୍ଛାସେବିକା ପଶ୍ଚିମବଙ୍ଗ ଯାତ୍ରା କଲେ । ଏମାନଙ୍କ ମଧ୍ୟରୁ ଦଶଜଣ ଥିଲେ ହାଉସ୍ ସର୍ଜନ୍ । ଜଣେ ଡ଼ାକ୍ତର ଓ ନର୍ସିଂ ତାଲିମ ପାଇଥିବା ମହିଳା କର୍ମୀମାନେ । ମୁଖ୍ୟମନ୍ତ୍ରୀ ଶ୍ରୀ ଦାସ୍ ଯାତ୍ରା ଖରଚ ବାବଦକୁ ନଗଦ ଦଶହଜାର ଟଙ୍କା ପଠାଇ ଦେଲେ ।

କଟକରୁ ପଶ୍ଚିମ ଦିନାଜପୁରର ଜିଲ୍ଲା ମହକୁମା କାଲୁରଘାଟର ଦୂରତ୍ୱ ଆଠଶହ ଛପନ କିଲୋମିଟର । ସ୍ଥଳପଥ ଓ ଜଳପଥରେ ଏହି ଦୂରତ୍ୱ ଅତିକ୍ରମ କରି ଆମେ କାଲୁରଘାଟରେ ପହଞ୍ଚିବା ବେଳକୁ ଝଡ଼ି ବରଷା ଆରମ୍ଭ ହୋଇଗଲା । ଚାରିଆଡ଼େ କାଦୁଅ ପଚର ପଚର, ତା' ସାଙ୍ଗକୁ ଗଛମୂଳେ, ସଡ଼କ କଡ଼ରେ ଯତ୍ର ଯତ୍ର ହଇଜା ରୋଗାକ୍ରାନ୍ତ ଶରଣାର୍ଥୀଙ୍କ ମୃତଦେହ । ମାହୀନଗର ଗ୍ରାମସେବକ ତାଲିମ କେନ୍ଦ୍ରରେ ଆସ୍ଥାନ ଜମେଇ ଜିଲ୍ଲାପାଳଙ୍କ ସହିତ ପରାମର୍ଶ କରି ହଇଜା ବିରୁଦ୍ଧରେ ସର୍ବାତ୍ମକ ଆକ୍ରମଣ ଆରମ୍ଭ ହେଲା । ଦଳ ଦଳ ହୋଇ ସ୍ୱେଚ୍ଛାସେବକମାନେ ସଡ଼କ, ବଜାର ବସ୍ତି ଗାଁ, ସ୍କୁଲ, କଲେଜ ଆଦିରେ ପଶିଯାଇ ଟୀକା ଦେବା ଆରମ୍ଭ କରିଦେଲେ । ଆଉ ଗୋଟିଏ ଛୋଟିଆ ଦଳ ରହିଲେ ହଇଜା ରୋଗୀକୁ ଔଷଧ, ସାଲାଇନ୍, ପଥ୍ୟ ଆଦି ଦେବା ପାଇଁ । ପ୍ରତିଦିନ ହଜାର ହଜାର ଲୋକଙ୍କୁ ହଇଜା ଟୀକା ଦିଆହେଲା । ଅକ୍ସଫାମ୍ ନାମକ ଏକ ଆନ୍ତର୍ଜାତିକ ସ୍ୱେଚ୍ଛାସେବୀ ସଂସ୍ଥାର ଫିଲଡ୍ ଡ଼ାଇରେକ୍ଟର ଶ୍ରୀ ଏଲେନ୍ ଲେବର ଓଡ଼ିଶା ରିଲିଫ ପାର୍ଟିର କର୍ମୀଙ୍କ ସାହସିକତା ଓ କାର୍ଯ୍ୟଦକ୍ଷତା ସ୍ୱଚକ୍ଷୁରେ ଦେଖି 'ମୋନୋଜେଟ୍' ଇଞ୍ଜେକସନ୍ ସିରିଞ୍ଜ, କଲେରା ଟୀକା ଓ ନାନା ପ୍ରକାର ଔଷଧ ସାଙ୍ଗକୁ କମ୍ପ୍ଲାନ୍ ଜାତୀୟ ରୋଗୀ ଖାଦ୍ୟ ବ୍ୟାରେଲ ଭରତି କରି ବିଲାତରୁ ଆଣି ଉଡ଼ାଜାହାଜ ଯୋଗେ ଆମ ପାଖରେ ପହଞ୍ଚାଇ ଦେଲେ । ଫଳରେ ସପ୍ତାହକ ମଧ୍ୟରେ ହିଲି ବ୍ଲକ୍‌ରେ ହଇଜା ନିୟନ୍ତ୍ରିତ ହୋଇଗଲା । ଜିଲ୍ଲାପାଳ, ଓଡ଼ିଶା ରିଲିଫ ପାର୍ଟିର କର୍ମୀ ଓ ଡ଼ାକ୍ତରଙ୍କ ମଧ୍ୟରୁ କେତେଜଣଙ୍କୁ ଇସ୍‌ଲାମପୁର ପଠାଇ ଦେଲେ । ସେଠାରେ ସେତେବେଳେ ଶ୍ରୀ ଶାମଲ ଥିଲେ ଏସ୍.ଡ଼ି.ଓ ।

ପୂର୍ବପାକିସ୍ତାନ୍ ସୀମାକୁ ଲାଗିଥିବା ଗାଁଗୁଡ଼ିକରେ କାମ କରିବା ପାଇଁ ଆମେ ସୀମାନ୍ତଠାରୁ ଅଳ୍ପ ଦୂରରେ ତ୍ରିମୋହିନୀ ଗାଁର ସ୍କୁଲହତାରେ ତମ୍ବୁ ପକେଇ ରହିଲୁ । ତମ୍ବୁରେ ରହିବା, ଖାଇବା, ରୋଷେଇ, ଡ଼ାକ୍ତରଖାନା ଚାଲୁ ହୋଇଗଲା । ବର୍ଷାର ବିରାମ ନ ଥାଏ । ତମ୍ବୁ ଭିତରେ ପାଣି ପଶି ଯାଉଥାଏ । ବାଉଁଶ ଭାଡ଼ି କରି ତାହାରି ଉପରେ ରହିବାକୁ ପଡ଼ିଲା । ତ୍ରିମୋହିନୀ, ନତପଡ଼ା ଓ ଇସ୍‌ଲାମ୍‌ପୁରରେ ତିନୋଟି

ହାସପାତାଳ ଓଡ଼ିଆ ଡ଼ାକ୍ତରମାନେ ତମ୍ବୁରେ ଚଳେଇଲେ । ହଇଜା ନିୟନ୍ତ୍ରିତ ହେବା ପରେ ଅକ୍ସଫାମ୍ ଓଡ଼ିଶା ରିଲିଫ୍ ପାର୍ଟିକୁ ପାନୀୟଜଳ, ପାଇଖାନା ଆଦି ସଫାଇ କାମ, ଖାଦ୍ୟ ଓ ଛୋଟ ପିଲାଙ୍କ ପାଇଁ ଦୁଗ୍ଧ ଯୋଗାଣ, ଶୀତବସ୍ତ୍ର, ବଡ଼ ଡ଼ାକ୍ତରଖାନାକୁ ରୋଗୀଙ୍କୁ ନେବା ପାଇଁ ଆମ୍ବୁଲାନସ୍ ଆଦିର ବ୍ୟବସ୍ଥା ପାଇଁ ସବୁମନ୍ତେ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଲେ । ଏକଲକ୍ଷ କୋଡ଼ିଏ ହଜାର ଜନସଂଖ୍ୟା ବିଶିଷ୍ଟ ହିଲି ଅଞ୍ଚଳରେ ଶରଣାର୍ଥୀ ଓ ସ୍ଥାନୀୟ ଅଧିବାସୀଙ୍କୁ ଉପରୋକ୍ତ ପ୍ରକାରେ ସାହାଯ୍ୟ ଯୋଗାଇବାର ଆୟୋଜନ ଚାଲିଲା । ହିଲି ସୀମାନ୍ତ ଅଞ୍ଚଳ ହୋଇଥିବାରୁ ଭାରତ ପୂର୍ବପାକିସ୍ତାନ ମଧ୍ୟରେ ଅବିରତ ଗୋଳା ବିନିମୟ ଚାଲିଥାଏ । ରାତିରେ କମାଣ ମୁହଁର ନିଆଁ ସୁଦ୍ଧା ଦେଖାଯାଉଥାଏ । କର୍ମୀମାନେ ଜୀବନ ବିପନ୍ନ କରି ଗାଁ ଗାଁ ବୁଲି କୋଡ଼ିଏ ହଜାର ପିଲାଙ୍କୁ ପ୍ରତିଦିନ କ୍ଷୀର ବାଣ୍ଟୁଥାନ୍ତି । ରୁଗ୍ଣ ଶିଶୁଙ୍କ ପାଇଁ ଭୋଜନକେନ୍ଦ୍ର, ନଳକୂଅ ଖୋଳା, ଲୁଗା, କମ୍ବଳ, ଚାଦର ବଣ୍ଟା, ରୁଗ୍ଣ ଶିଶୁଙ୍କ ପାଇଁ ବାଉଁଶରେ ଖଟ ଯୋଗାଇବା ଆଦି କାମ ସେମାନେ କରୁଥାନ୍ତି । ବର୍ଷା ଦିନଟାରେ ଭିଟାମାଟି ଛାଡ଼ି ଏକବସ୍ତ୍ରରେ ପଳାଇ ଆସିଥିବା ଶରଣାର୍ଥୀମାନେ ଧାନବିଲରେ ପଡ଼ି ରହିଥା'ନ୍ତି । ଭାରତ ସରକାର ଓ ରାଜ୍ୟ ସରକାର ଯେଉଁ ଟାରପୋଲିନ୍ ଯୋଗାଇ ଦେଉଥା'ନ୍ତି ତାହା ସମୁଦ୍ରକୁ ଶଙ୍ଖେ ପାଣି ପରି । ସେମାନଙ୍କ ମାନସିକ ସ୍ଥିତି ତ ଆହୁରି ଦୟନୀୟ ହୋଇଥାଏ । ପଶ୍ଚିମ ପାକିସ୍ତାନୀଙ୍କ ଗୁଳିରେ କାହାର ସ୍ୱାମୀ, କାହାର ବାପ, କାହାର ମାଆ, କାହାର ପୁଅଝିଅ ହତ ହୋଇଛନ୍ତି ବା ପ୍ରାଣ ବିକଳରେ କେଉଁଠି ରହି ଯାଇଛି । ଆତ୍ମୀୟ ଶୋକରେ କେହି ପାଗଳ ହୋଇ ବୁଲୁଛି । ଦିନ ଦିନ ଧରି ନ ଖାଇ ନ ପିଇ ଚାଲି ଚାଲି ଭାରତ ସୀମାରେ ପାଦ ଦେଇ କିଏ ବସିପଡ଼ି ଧକଉଛି, ବସ୍‌ଷ୍ଟାଣ୍ଡ୍, ବଜାର, ରାସ୍ତାକଡ଼ରେ ପିମ୍ପୁଡ଼ି ଧାର ପରି ପିଲା କାଖେଇ ଲୋକଙ୍କ ଧାଡ଼ି ଛୁଟିଛି । ଦିନେ ସକାଳେ ଚେମେଣି ଚଢ଼େଇ ପରି ଶୀର୍ଣ୍ଣ ଶିଶୁଟିଏ କାଖରେ ଜାକି ଜଣେ ଲୋକ ଆମ କ୍ୟାମ୍ପକୁ ଆସିଲା । ତା'ର ନାମ ନିତାଇ ଗୋପାଳ ମାନି । ଘର ରାଜସାହି ଜିଲ୍ଲାର ନାଟୋର୍‌ରେ । ଶୀତସକାଳଟାରେ ପୁଅକୁ କାଖେଇ ଦାଣ୍ଡରେ ଛିଡ଼ା ହୋଇ ଗରମ ଚାହା ପିଇ ପିଇ ପଡ଼ିଶା ସାଙ୍ଗରେ କଥାବାର୍ତ୍ତା ହେଉଥାଏ, ଭିଣୋଇ ବୁଲି ଆସିଥାନ୍ତି । ଭିଣୋଇ, ମା', ସ୍ତ୍ରୀ ଓ ଭଉଣୀ ଚୁଲୀ ପାଖରେ ବସି ଚା' ପିଇପିଇ ଗପସପ ହେଉଥା'ନ୍ତି । ହଠାତ୍ ପଡ଼ିଶା ଘରେ ନିଆଁ ଲାଗିଗଲା । ଜଣେ ଲୋକ ଦଉଡ଼ି ଆସି କହିଲା - ଖାନ୍‌ମାନେ (ପଶ୍ଚିମ ପାକିସ୍ତାନୀ ସୈନ୍ୟ) ଆସୁଛନ୍ତି । ନିତାଇ ଗୋପାଳ ଦାଣ୍ଡପଟୁ ବାରିପଟକୁ ଚାଲିଗଲା ବେଳକୁ

ଖାନ୍‌ମାନେ ଘରେ ପଶିଗଲେ । ନିତାଇର ସାନ ଭାଇ ଘର ଭିତରୁ ବାହାରକୁ ବାହାରି ଆସିଲା । ତାକୁ ସେମାନେ ଗୁଳିକରି ମାରି ଦେଲେ । ଚୂଲିମୁଣ୍ଡରେ ବସିଥିବା ଗର୍ଭବତୀ ସ୍ତ୍ରୀ, ମା', ଭଉଣୀ, ଭିଣୋଇ ସମସ୍ତଙ୍କୁ ସଙ୍ଗେ ସଙ୍ଗେ ଗୁଳି କରି ମାରି ଦିଆ ହେଲା । ନିତାଇ କାଠପିତୁଳା ପରି ଦେଖୁଥାଏ । ଜଣେ କିଏ ନିତାଇକୁ ଠେଲି ଦେଇ କହିଲା - ଦେଖୁଛ କ'ଣ ? ପିଲାଟିକୁ ବଞ୍ଚାଇବାକୁ ଚାହଁ ତ ଏହି ବାରିପଟେ ପଳାଅ । ସେହିଦିନୁ ପିଲାଟିକୁ କାଖେଇ ନିତାଇ ଚାଲିଛି, ଚାଲିଛି । ମାସେ କାଳ ଚାଲି ଚାଲି ଜୁଲାଇ ଏକତ୍ରିଶ (୧୯୭୧) ତାରିଖ ଦିନ ସେ ଭାରତରେ ପଶି ମୁରାରୀପୁର ଭୋଜନ କେନ୍ଦ୍ରରେ ଭାତ ଖାଇଲା । ଅସ୍ଥିଚର୍ମସାର ପିଲାଟାକୁ ବୈଦେହୀ ପଣ୍ଡା କୋଳ କରିନେଲେ ।

ଦିନେ ବସ୍‌ଷ୍ଟାଣ୍ଡକୁ ଯାଇ ଦେଖିଲୁ ପାବ୍‌ନା ଜିଲ୍ଲାରୁ ଦେଢ଼ମାସ ହେଲା ଚାଲି ଚାଲି ଆସି ଦଳେ ଶରଣାର୍ଥୀ ଥକ୍‌କାମରା ହୋଇ ବସିଛନ୍ତି । ତାଙ୍କ ମଧ୍ୟରୁ ଜଣେ ସ୍ତ୍ରୀଲୋକ ଖାନ୍‌ମାନଙ୍କ ଅତ୍ୟାଚାର ଭୟରେ ସ୍ୱାମୀ, ଶାଶୁ, ବଡ଼ପୁଅ, କୋଳପୁଅକୁ ଧରି କନାକତରା ଢାକି ଭାରତକୁ ଆସୁଥିଲା । ମୁଣ୍ଡରେ ବୋଝ ଥିବାରୁ ସ୍ୱାମୀ ଟିକିଏ ପଛରେ ପଡ଼ିଗଲା । ବାଟରେ ଖାନ୍‌ମାନଙ୍କ ହାବୁଡ଼ରେ ପଡ଼ିଯିବାରୁ ସେମାନେ ଗୁଳି କରି ପୁଅ ଦୁହିଁଙ୍କୁ ଓ ଶାଶୁକୁ ମାରିଦେଲେ । ସ୍ତ୍ରୀଲୋକଟିକୁ ଉପଭୋଗ କରିବାକୁ ବ୍ୟାରାକ୍‌କୁ ନେଇଗଲେ । ସେଠାରେ ୧୪୫ ଜଣ ସ୍ତ୍ରୀଲୋକଙ୍କ ସାଙ୍ଗରେ ତାକୁ ଏଗାରଦିନ ରଖି ଉପଭୋଗ କରି ତା'ପରେ ବିଦା କରିଦେଲେ । ସ୍ୱାମୀ କେଉଁଠି ସେ ଜାଣେ ନାହିଁ । ଦଳେ ଭାରତ ଯାତ୍ରୀଙ୍କ ସାଙ୍ଗରେ ସେ ସୀମା ପାର ହୋଇ ଆସିଛି । ସବୁବେଳେ ଶାଶୁ ଓ ପୁଅକୁ ଖାନ୍‌ମାନେ କେମିତି ଗୁଳି କଲେ, ତାକୁ କେମିତି ବ୍ୟାରାକ୍‌କୁ ନେଇ ତା' ଉପରେ ଅତ୍ୟାଚାର କଲେ, ସେହିକଥା ସେ ବାରମ୍ବାର କହି ଲାଗିଥାଏ । ତା'କୁ ଭଲା କିଏ କି ସାନ୍ତ୍ୱନା ଦେବ ! କିଛିଦିନ ବାଲୁରଘାଟରେ ରହି ସେ ପାତିରାମ ଚାଲିଗଲା । ଆମେ ଖବର ନେଇ ଜାଣିଲୁ ଯେ ଦୈବଯୋଗକୁ ପାତିରାମରେ ସ୍ୱାମୀ ସ୍ତ୍ରୀ ଭେଟାଭେଟି ହେଲେ । ତା'ର ସ୍ୱାମୀ ସ୍ତ୍ରୀ ସ୍ୱମୁଖରୁ ସବୁ ଶୁଣି କହିଲା - ''ମୋ ସ୍ତ୍ରୀର ତ ଏଥିରେ କିଛି ଭୁଲ ନାହିଁ ।' ମୁଁ କାହିଁକି ତାକୁ ତ୍ୟାଗ କରିବି ? ସ୍ୱାମୀର ଆଦରଯତ୍ନ ପାଇ ଧୀରେ ଧୀରେ ତା'ର ମସ୍ତିଷ୍କବିକୃତ ଦୂର ହେଲା । ଦଶରଥତନୟ ମର୍ଯ୍ୟାଦାପୁରୁଷୋତ୍ତମ ରାମଚନ୍ଦ୍ର ମହାପ୍ରଭୁଙ୍କ ପ୍ରତି ମୋର ଯେତେ ଶ୍ରଦ୍ଧାଭକ୍ତି ରହିଛି ତାହାର ଶତଗୁଣ ଶ୍ରଦ୍ଧାଭକ୍ତି ଏହି ପୁରୁଷଟିର ଶ୍ରୀଚରଣରେ ମୁଁ ଅର୍ପଣ କଲି ।

ଏହିପରି ଶତଶତ ଘଟଣା ଶୁଣି ଶୁଣି ସଙ୍କଟତ୍ରାଣ କାମ କରିବା ସଙ୍ଗେ ସଙ୍ଗେ ଏହି ଘଟଣାଗୁଡ଼ିକୁ ମଧ୍ୟ ଆମେ ଲିପିବଦ୍ଧ କରିବା ଆରମ୍ଭ କଲୁ । ଶରଣାର୍ଥୀମାନଙ୍କ

ସହିତ ଆମେ ଘନିଷ୍ଠ ହେଲୁ । ରମାଦେବୀ ସେମାନଙ୍କର "କର୍ତ୍ତାମା" ବନିଗଲେ । ଫଳରେ ପୂର୍ବପାକିସ୍ତାନର ରାଜନୈତିକ ପରିସ୍ଥିତି, ବଙ୍ଗଳାଭାଷୀ ମୁସଲମାନମାନଙ୍କ ସହିତ ପଶ୍ଚିମ ପାକିସ୍ତାନିଙ୍କର ଘୃଣାପୂର୍ଣ୍ଣ ବ୍ୟବହାର, ବଙ୍ଗଳା ଭାଷା ପ୍ରତି ସେମାନଙ୍କର ତାଚ୍ଛଲ୍ୟ ଭାବ, ସରକାରୀ ଚାକିରୀରେ ପାତର ଅନ୍ତର, ଉଭୟ ପାକିସ୍ତାନ ମଧ୍ୟରେ ଜିନିଷପତ୍ରର ଦରଦାମର ତାରତମ୍ୟ, ପୂର୍ବପାକିସ୍ତାନରେ ବସବାସ କରିଥିବା ବିହାରୀ ମୁସଲମାନମାନଙ୍କର କୀର୍ତ୍ତିକଳାପ ଆଦି ନାନା ଲୋମହର୍ଷଣକାରୀ କାହାଣୀ ଆମେ ଶୁଣିଲୁ । ମୁଜିବୁର ରହମାନ୍ ହିନ୍ଦୁ ମୁସଲମାନ ନିର୍ବିଶେଷରେ କିପରି ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ତାହା ପ୍ରତ୍ୟକ୍ଷ ଅନୁଭବ କଲୁ । ଦେଶପାଇଁ ବହୁ ନିର୍ଯ୍ୟାତନା ସହି ଓ ସାମ୍ପ୍ରଦାୟିକ ସଙ୍କୀର୍ଣ୍ଣତା ଠାରୁ ଦୂରରେ ରହି ସେ ଏ ଶ୍ରଦ୍ଧା ଅର୍ଜ୍ଜନ କରିଛନ୍ତି । ମାତ୍ର ତାଙ୍କର ଅନୁଗାମୀମାନଙ୍କ ପ୍ରତି ସେମାନେ ଭିନ୍ନଭାବ ପୋଷଣ କରନ୍ତି ।

ପିଲାଦିନୁ ଆନ୍ଦୋଳନରେ ମିଶିଥିବା ହେତୁ ପ୍ରଚାର- ପତ୍ର ସଂଗ୍ରହ କରିବାକୁ ମୁଁ ଭଲପାଏ । ତେଣୁ ପୂର୍ବ ପାକିସ୍ତାନର ପ୍ରଚାର-ପତ୍ରର ନମୁନା ମଧ୍ୟ ସଂଗ୍ରହ କରିବାକୁ ଚେଷ୍ଟା କଲି । ଗୋଟିଏ ପ୍ରଚାର-ପତ୍ରର ଅନୁବାଦର ନମୁନା ଏଠାରେ ଦେଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ସୁନାର ବଙ୍ଗଳା ଶ୍ମଶାନ କାହିଁକି ?

| ବୈଷମ୍ୟ ବିଷୟ | ବାଂଲାଦେଶ | ପଶ୍ଚିମ ପାକିସ୍ତାନ |
|---|---|---|
| ରାଜସ୍ୱ ବିଭାଗ ବ୍ୟୟ | ୧୫୦୦କୋଟି | ୫୦୦୦କୋଟି |
| ଉନ୍ନୟନ ବିଭାଗ ବ୍ୟୟ | ୩୦୦୦କୋଟି | ୬୦୦୦କୋଟି |
| ବୈଦେଶିକ ସାହାଯ୍ୟ | ୨୦% | ୮୦% |
| କେନ୍ଦ୍ରୀୟ ସରକାରୀ ଚାକିରୀ | ୧୦% | ୯୦% |
| ସାମରିକ ବିଭାଗ ଚାକିରୀ | ୧୫% | ୮୫% |
| ଚାଉଳ ଗହମ | ଟ ୫୦.୦୦ | ଟ୨୫.୦୦ |
| ଅଟା ଗହମ | ଟ ୩୦.୦୦ | ଟ ୧୫.୦୦ |
| ସୋରିଷତେଲ ସେର | ଟ ୫.୦୦ | ଟ. ୨.୫୦ |
| ସୁନା ଭରି | ଟ ୧୭୦.୦୦ | ଟ ୧୩୪.୦୦ |

**ଆଉ ସେ ଗୀତ !**

''ସୋନା ସୋନା ସୋନା
ଲୋକେ ବଲେ ସୋନା
ସୋନା ନହେ ତେ ଖାଣ୍ଟି,
ଯତ ଆଛେ
ଖାଁଟି ତାର ଚେୟେ ଖାଁଟି
ବାଂଲାମାୟେର ମାଟି ।''

ଆମ ବସ୍ତନଗରୀର ଅନତୀଦୂର ଭିଓରରେ ଭାରତ ସେବାଶ୍ରମ ଅନୁଷ୍ଠାନ । ସେ ଅନୁଷ୍ଠାନର ମନି ମହାରାଜ ମଧ୍ୟ ସଙ୍କଟତ୍ରାଣ କାମ କରୁଥାନ୍ତି । ଅନୁଷ୍ଠାନ ହତାରେ ମୁକ୍ତି ଫୌଜ ''କୁଚ୍‌କାଓୟାଦ୍'' କରନ୍ତି । ମୋତେ ଦିନେ ସେଠାକୁ ସେମାନେ ଡ଼ାକି ନେଲେ । ଲୁଙ୍ଗି ପିନ୍ଧି, କେହି କେହି ଅଣ୍ଟାରୁ ଫିଟି ପଡୁଥିବା ଲୁଙ୍ଗିକୁ ଗୋଟାଏ ହାତରେ ସମ୍ଭାଳି ସେମାନେ ଡ୍ରିଲ୍ କରୁଥାନ୍ତି । ଇସଲାମପୁରର ଜଣେ ଓଡ଼ିଆ ସରକାରୀ ହାକିମ ଶ୍ରୀ ଚନ୍ଦ୍ରଶେଖର ଶାମଲଙ୍କୁ ମୁକ୍ତିଫୌଜଙ୍କ ବୀରତ୍ୱ ସମ୍ବନ୍ଧରେ ପଚାରି ଯାହା ଶୁଣିବାକୁ ମିଳିଲା, ସେଗୁଡ଼ାକ ନ ଲେଖିଲେ ଭଲ । ଯାହାହେଉ, ସୀମାନ୍ତ ଅଞ୍ଚଳରେ କାମ କରିବା ଫଳରେ ଗୋଳା ବିନିମୟ, ରାସ୍ତାକଡ଼ରେ ମାଇନ୍ ବିଛାଣ, ଟ୍ୟାଙ୍କ୍ ଯାତାୟାତ ପୁଣି ଟ୍ୟାଙ୍କ୍‌କୁ ଶତ୍ରୁ ଦୃଷ୍ଟିରୁ ଲୁଚେଇ ରଖିବା କୌଶଳ (କ୍ୟାମୋଫ୍ଲାଜ୍) ଆଦି ଯୁଦ୍ଧ ପ୍ରସ୍ତୁତିର ଅନେକ ଦୃଶ୍ୟ ଦେଖିବାକୁ ମିଳିଲା । ହିଲିର ବି.ଡ଼ି.ଓ ଦିନେ ''କର୍ତ୍ତାମା''କୁ ପାକ୍ ରଣସଜ୍ଜା ଦେଖାଇବାକୁ ହିଲି ନେଇଗଲେ । ଆମେ ମଧ୍ୟ ଡ଼ାଲୁଅ ଯୋଗୁ କାନ୍‌ସିରି ପାଣି ପାଇଲୁ । ଏପଟେ ଭାରତ, ସେପଟେ ପୂର୍ବ ପାକିସ୍ତାନ, ମଝିରେ ପାକିସ୍ତାନ୍ ରେଳପଥ । ପାକିସ୍ତାନର ସୀମାରେ ୨୫-୩୦ ଫୁଟ୍ ଛଡ଼ାରେ ଚେକ୍‌ପୋଷ୍ଟରେ ବାଲିବସ୍ତା ସଜେଇ ବଲୁଚି ସୈନ୍ୟ ଭାରତ ଆଡ଼କୁ ମେଶିନ୍‌ଗନ୍ ଲାଖ କରି ବସିଛନ୍ତି । ମୁଁ ଓଲୁଙ୍କ ପରି ମୁହଁ କରି ବି.ଡ଼ି.ଓ.ଙ୍କୁ ପଚାରିଲି - ସେମାନେ ତ ସଜବାଜ ହୋଇ ରହିଛନ୍ତି । ଭାରତ ପକ୍ଷରୁ ଯୁଦ୍ଧ ପ୍ରସ୍ତୁତିର କାହିଁ କିଛି ଲକ୍ଷଣ ତ ଦିଶୁ ନାହିଁ । ବି.ଡ଼ି.ଓ. ମୋ ପ୍ରତି କୃତ୍ରିମ କ୍ରୋଧ ପ୍ରକାଶ କରି ଖୁବ୍ ପାଟିରେ କହିଲେ -''ପାକିସ୍ତାନ ନ ଆମର ମିତ୍ର ରାଷ୍ଟ୍ର । ସେମାନେ ମୁକ୍ତିଫୌଜଙ୍କ ସଙ୍ଗେ ଲଢ଼ିବାକୁ ସଜ ହୋଇ ବସିଛନ୍ତି । ଆମର ସମର ସଜ୍ଜା କାହିଁକି ହେବ ? ମାତ୍ର ଏ କଥାରେ ମୋ ମନରୁ ସଂଶୟ ଗଲା ନାହିଁ । ବିପଦର ସମ୍ଭାବନା ସତ୍ତ୍ୱେ

ମୁଁ ଦଳଛଡ଼ା ହୋଇ ଏକାଟିଆ ଅନ୍ଧିସନ୍ଧିରେ ପଶି ବୁଲି ଦେଖିଲି ଗଛ ଉପରେ, ବାଉଁଶ ବୁଦା ଭିତରେ, ଘରୋଇ ଲୋକଙ୍କ ଘର ଭିତରେ ଭାରତୀୟ ସେନା ଟ୍ରିଗର୍ ଉପରେ ହାତ ପକେଇ ବସି ଏକ ଧ୍ୟାନରେ ପାକିସ୍ତାନ ଆଡ଼କୁ ଚାହିଁଛନ୍ତି । କାମୋଫ୍ଲାଜ୍‌ର ଅତି ଉପାଦେୟ ପଦାର୍ଥପାଠ ମିଳିଲା ।

ଗୋଳା ବିନିମୟ ବଢ଼ିଗଲାରୁ ମେଜର୍ ଝା ସାହେବଙ୍କ ଆଦେଶରେ ଦୁଇ ଜଣ ସୈନ୍ୟ ଆସି ଆମ ବସ୍ତିନଗରୀରେ ବଙ୍କର୍ ତିଆରି କରାଇଲେ । ମରାଠା ରେଜିମେଣ୍ଟ୍‌ର ମେଜର୍ ଝା କର୍ତ୍ତାମା (ରମାଦେବୀ)ଙ୍କ ସଙ୍ଗେ ଆତ୍ମୀୟତା ଜନ୍ମି ସାରିଥିଲା । ମଝିରେ ମଝିରେ ସେ ଆମ ଶିବିରକୁ ଆସି ପ୍ରାର୍ଥନାରେ ଯୋଗ ଦେଉଥାନ୍ତି, ଛୋଟ ପିଲାଙ୍କ ଖାଇବା ଦେଖନ୍ତି, ହସି ହସି କହନ୍ତି-''ମରୁଭୂମିରେ ଏହି ସ୍ଥାନଟି ଓଏସିସ ।'' ଦିନେ ରମାଦେବୀ ତାକୁ କହିଲେ - ଆପଣମାନେ ତ ଢ଼େଙ୍ଗୁରା ଦେଇ ସ୍ଥାନୀୟ ଲୋକଙ୍କୁ ତ୍ରିମୋହିନୀ ଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଲେଣି । ଆମେ ଯେ ଏଠି ହସ୍ପିଟାଲ୍, ଭୋଜନକେନ୍ଦ୍ର, ଶରଣାର୍ଥୀ ପିଲାଙ୍କ ଚାଟଶାଳୀ ଆଦି ପସରା ମେଲିଛୁ, ଆମେ ମଧ୍ୟ ଏଠୁ ହଟିଯିବୁ ତ ? ମେଜର ଝା ଆକର୍ଣ୍ଣବିସ୍ତୃତ ହସଟାଏ ହସି ଦେଇ କହିଲେ, ''ମାତାଜୀ ! ଆପଣ ବେଫିକର୍ ରହନ୍ତୁ । ଆମେ ଏ ପାକ୍ ସୈନ୍ୟଙ୍କୁ ଢ଼ାକ୍କା ଯାଏ ତଡ଼ିନେବୁ । ଆପଣ କେବଳ ଆପଣଙ୍କ ହସ୍ପିଟାଲ ଉପରେ ବଡ଼ କରି ଲାଲ କ୍ରଶ୍ ଚିହ୍ନ ଦେଇ ଦିଅନ୍ତୁ । ତାହା ହେଲେ ଆମ ପକ୍ଷରୁ ବୋମାବର୍ଷଣ ଆରମ୍ଭ ହେଲେ ଏଠାରେ ବୋମା ପଡ଼ିବ ନାହିଁ । '' ଓଡ଼ିଶା ରିଲିଫ୍ ପାର୍ଟିକୁ ଏ ପ୍ରକାର ପ୍ରଶ୍ରୟ ଦେବାର କାରଣ ହେଲା ମିଲିଟାରୀ ବେସ୍ ହସ୍ପିଟାଲ ହିଲିଠାରୁ ଷାଠିଏ ମାଇଲ୍ ଦୂରରେ ରାଣୀଗଞ୍ଜଠାରେ ଅବସ୍ଥିତ । ତେଣୁ ହିଲିରେ ଥିବା ଜବାନ୍‌ମାନେ ଓଡ଼ିଆ ରିଲିଫ୍ ପାର୍ଟିର ହସ୍ପିଟାଲ୍‌ରେ ଚିକିତ୍ସିତ ହେଉଥାନ୍ତି । ଆମ ହସ୍ପିଟାଲ୍‌ର ବ୍ୟବସ୍ଥାପକ ଥା'ନ୍ତି ବିଲାତ ଫେରନ୍ତା ଏଫ.ଆର.ସି.ଏସ୍ କଟକର ସାଧନ ରାୟ, ଔଷଧ ଓ ପଥ୍ୟ ଆସୁଥାଏ ସିଧା ବିଲାତରୁ । ସେଥିପାଇଁ ବ୍ରିଗେଡ଼ିଅରଙ୍କ ହସଟା କାନଯାଏ ଲମ୍ବିଗଲା । କିନ୍ତୁ ହାୟ, ବିଶ୍ୱାସଘାତକମାନଙ୍କ କଥାରେ ବିଶ୍ୱାସ କରି ମରାଠା ରେଜିମେଣ୍ଟ ପାକ୍ ହିଲି ଉପରେ ଆକ୍ରମଣ ଚଳାଇ ଯେତେବେଳେ ପାକ୍ ଆକ୍ରମଣରେ ମୂଳପୋଛ ହୋଇ ଗଲେ ମେଜର୍ ଝା ମଧ୍ୟ ସେହିଠାରେ ପ୍ରାଣ ହରାଇଲେ ।

ପଶ୍ଚିମ ଦିନାଜପୁରରେ ଓଡ଼ିଶା ରିଲିଫ୍ ପାର୍ଟି ଯୁଦ୍ଧକ୍ଷେତ୍ରରେ ଯୁଦ୍ଧକାଳୀନ ତତ୍ପରତାର ସହିତ କାମ କଲେ । ଯୁଦ୍ଧ ଶେଷ ହେବାପରେ ପାର୍ଟିର ସଞ୍ଚାଳକ ଶ୍ରୀ

କ୍ଷେତ୍ରବାସୀ ପତି ଓ ଅନ୍ୟ କର୍ମୀମାନେ ଶରଣାର୍ଥୀମାନଙ୍କ ସାଙ୍ଗରେ ବାଂଲାଦେଶକୁ ଯାଇ ସେମାନଙ୍କ ଘରେ ଛାଡ଼ିଦେଇ ଆସିଲେ ।

ଯୁଦ୍ଧକ୍ଷେତ୍ରରେ ରହି କାମ କରିବାର ଅଭିନବ ଅଭିଜ୍ଞତା ଓଡ଼ିଶା ରିଲିଫ୍ କମିଟିର କର୍ମୀମାନେ ହାସଲ କଲେ । ନାନା ବିପଦ ଓ ବିଷାଦ ମଧ୍ୟରେ ଦିନ କଟୁଥିଲେ ହେଁ ଗୋଟାଏ ବିଚିତ୍ରପ୍ରକାର ଆତ୍ମପ୍ରସାଦ ସେ କାମରୁ ମିଳୁଥିଲା । ଗୋଟିଏ ବଡ଼ କଥା ହେଲା, ଆନ୍ତର୍ଜାତିକ ସେବା-କ୍ଷେତ୍ରରେ ଓଡ଼ିଆ ପୁଅ ଝିଅଙ୍କର ସୁନାମ ବୃଦ୍ଧି ହେଲା । ଅକସ୍‌ଫାମ୍‌ର ଜୁଲିଆନ୍ ଫ୍ରାନ୍‌ସିସ୍ ଚିଠି ଲେଖିଲେ-

ପ୍ରିୟ ରମାଦେବୀ,

ଏ ଚିଠି ନେଇ ସୁରେଶ୍ ଆପଣଙ୍କ ପାଖରେ ପହଞ୍ଚିଲା ବେଳକୁ ଆପଣ ସୁସ୍ଥ ଥିବେ ବୋଲି ଆଶା କରୁଛି । ସୁରେଶ୍‌ଙ୍କୁ କଟକକୁ ପଠାଇବାର ମୁଖ୍ୟ କାରଣ ହେଲା ହିଲିର ଘଟଣାବଳୀ ସଂକ୍ରାନ୍ତୀୟ ଚାକ୍ଷୁସ ବିବରଣୀ ଆପଣ ତାହାଙ୍କଠାରୁ ପାଇବେ । ପୁଣି ହିଲିରୁ ଗଙ୍ଗାରାମପୁରକୁ ଚାଲି ଆସିଥିବା ଶରଣାର୍ଥୀଙ୍କ ମଧ୍ୟରେ ଓଡ଼ିଶା ରିଲିଫ୍ ପାର୍ଟି କାମ କରିବା ପାଇଁ ଆପଣଙ୍କ ଅନୁମତି ଆବଶ୍ୟକ । ବାସ୍ତବିକ୍, ଆପଣଙ୍କର କର୍ମୀଦଳଟିର କୃତି ବିସ୍ମୟକର । ବାଲୁରଘାଟ୍‌ର କାମକୁ ସାଫଲ୍ୟମଣ୍ଡିତ କରିବା ପାଇଁ ଆପଣମାନେ ଯେଉଁ କାର୍ଯ୍ୟ କରିଛନ୍ତି, ସେଥିପାଇଁ ଆମେ ଯେତେ ଧନ୍ୟବାଦ ଦେଲେ ତାହା ଯଥେଷ୍ଟ ହେବ ନାହିଁ । ଆପଣମାନଙ୍କର କଠିନ ପରିଶ୍ରମ, ସହଯୋଗ ଓ ପରାମର୍ଶ ପାଇଁ ଆମେ ଚିରକୃତଜ୍ଞ । (ଇତି)

ଆପଣଙ୍କର ଅନ୍ତରଙ୍ଗ

ଜୁଲିଆନ୍ ଫ୍ରାନ୍‌ସିସ୍

ଆଜି ଜୀବନ-ସନ୍ଧ୍ୟାରେ ସୁଦ୍ଧା ବେଳେ ବେଳେ ଶୁଭିଯାଉଛି ।

"ସୋନାର ବାଂଲା ଆମି ତୋମାୟ ଭାଲବାସି "

କାର୍ତ୍ତିକ ଝଡ଼ି । ତମ୍ବୁରେ ବସା । ବର୍ଷନ୍ତା ପାଣି ହାବୁକା ମାରି ତମ୍ବୁ ଭିତରକୁ ପଶି ଆସୁଛି । ପାଣି କାଦୁଅରେ ବୁଲି ଗୋଡ଼ ଆଙ୍ଗୁଠି ସନ୍ଧି ବାଲିଖାଇ ନରଖର । ଶରଣାର୍ଥୀମାନଙ୍କ ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣିବାକୁ ଭାଷା ନାହିଁ । ମେଘ ଅନ୍ଧାର ରାତି, ମେଘ ଡ଼ାକୁଛି । ଯେ ଯାହା ତମ୍ବୁରେ ବାଉଁଶ ଭାଡ଼ିରେ ଜାକିଜୁକି ହୋଇ ବସି କିଏ କେତେଦିନିଆ ଝଡ଼ି ଦେଖିଛି ତାହାରି ପାକୁଳି ଚାଲିଛି । ବୈଦେହୀ ପଣ୍ଡା ତାଙ୍କ ଦଦରା ରେଡ଼ିଓଟି ଧରି ବର୍ଷାରେ ତିନ୍ତି

ତିନି ଆସି କହିଲେ - ଓଡ଼ିଶାରେ ତୋଫାନ ହୋଇ ଲୁଣା ମାଡ଼ି ଆସି ରାଜ ନଗର ଅଞ୍ଚଳରୁ ଦଶହଜାର ଲୋକଙ୍କୁ ଭସେଇ ନେଇଛି । କ୍ଷୟକ୍ଷତି ଏ ପର୍ଯ୍ୟନ୍ତ କଳନା କରାଯାଇ ନାହିଁ ।

''ଉଠୋ ମୁଶାଫିର୍ ! ବାଁଧୋ ଗଠରିୟା'' - ସେହି ବର୍ଷଣମୁଖର ରାତିରେ ଓଡ଼ିଶା ଆସିବା ପାଇଁ ରମାଦେବୀଙ୍କ ପ୍ରସ୍ତୁତି ଆରମ୍ଭ ହୋଇଗଲା । କ୍ଷେତ୍ରବାସୀ ପତି, ଅନ୍ନପୂର୍ଣ୍ଣା ମହାନ୍ତି, ଶରତଚନ୍ଦ୍ର ମହାରଣା, ଶ୍ୟାମସୁନ୍ଦର ବିଶ୍ୱାଳ, କିଶୋର ସ୍ୱାଇଁ, ବୈଦେହୀ ପଣ୍ଡା, ବୈଦ୍ୟନାଥ ଦାସ, ଗଣେଶଚନ୍ଦ୍ର ମହାନ୍ତି, ମଙ୍ଗଳା ସେନଗୁପ୍ତ ପ୍ରଭୃତି ସଙ୍କଟତ୍ରାଣ କାମର ବିଭିନ୍ନ ବିଭାଗର ମୁଖ୍ୟ ଦାୟିତ୍ୱରେ ଥିବା କର୍ମୀ ସେହି ରାତିରେ ଏକତ୍ର ହୋଇ କିଏ ବାଲୁରଘାଟ କାମ ସମ୍ଭାଳିବେ, କିଏ ଓଡ଼ିଶା ଫେରିବେ ତାହା ଠିକ୍ ହୋଇଗଲା । ଦୁଇଟା ହାସପାତାଳ, ଲକ୍ଷ ଲକ୍ଷ ଟଙ୍କାର କମ୍ବଳ, ଗାଡ଼ି ଗାଡ଼ି ଔଷଧପତ୍ର ଯଥାଯଥ ବିନିଯୋଗର ବ୍ୟବସ୍ଥା କରି କର୍ତ୍ତାମା' ବାଲୁରଘାଟ୍ ଛାଡ଼ିଲେ ।

କଲିକତାରେ ମାରୁଆଡ଼ି ରିଲିଫ ସୋସାଇଟି ଓ ଅକ୍ସଫାମ୍‌ର କର୍ତ୍ତାଙ୍କୁ ଭେଟି ହାଓଡ଼ାରେ ପହଞ୍ଚି ବୋଧ ହେଲା କଲିକତାର ସବୁ ଓଡ଼ିଆ ସେଦିନ ଓଡ଼ିଶା ଫେରିବାକୁ ଷ୍ଟେସନରେ ରୁଣ୍ଡ ହୋଇଛନ୍ତି । କୌଣସି ପ୍ରକାରେ ଠେଲାପେଲା ହୋଇ ରେଳଡ଼ବାରେ ଚଢ଼ି କଟକରେ ପହଞ୍ଚି ଜଣାଗଲା 'କଟକ ଜିଲ୍ଲା ସାଇକ୍ଲୋନ୍ ରିଲିଫ୍ କମିଟି' ଗଠିତ ହୋଇ ସଙ୍କଟତ୍ରାଣ କାମ ଆରମ୍ଭ କରାଯାଇଛି । ବର୍ତ୍ତମାନ କେଉଁଠି ଚୂଆ, କେଉଁଠି ପାଣିକଳ, କେଉଁଠି ଘେରିବନ୍ଧ, କେଉଁଠି ବିହନ ବ୍ୟବସ୍ଥା କଲେ ଚାଷୀ ଶୀଘ୍ର ଫସଲ ଉତ୍ପାଦନ କରି ପାରିବ । ଅମ୍ବର ଚରଖା, ବାଉଁଶ କାମ, ମାଟିକାମ ଆଦି କି କାମ କରାଇଲେ ଲୋକେ କାମ ପାଇବେ ତାହା ତଦାରଖ କରିବା ପାଇଁ ରମାଦେବୀ ମହାକାଳପଡ଼ା, ମାର୍ଶାଘାଇ, ରାଜନଗର ଆଦି ଅଞ୍ଚଳରେ ଚରକୀ ପରି ବୁଲିବା ଆରମ୍ଭ କରିଦେଲେ । ଶ୍ରୀ ରାଧାନାଥ ରଥଙ୍କ ସଙ୍ଗେ (୬.୧୧.୭୧) ପରାମର୍ଶ କରି ଦୁହେଁ ଠିକ୍ କଲେ ଯେ ଉତ୍କଳ ରିଲିଫ୍ କମିଟି ପକ୍ଷରୁ ରମାଦେବୀ ଏଥର ରିଲିଫ୍‌କାମ କରିବେ ନାହିଁ । କାରଣ ସେ ସେତେବେଳକୁ କମିଟିର ହିସାବ ଅଡ଼ିଟ୍ କରାଇ ସଭାପତି ପଦରୁ ଅବ୍ୟାହତି ନେଇ ସାରିଥା'ନ୍ତି ।

ଏଥରକ ତୋଫାନ ସୁନିଆ ତୋଫାନ୍, ନାଗର ଚଉଠି ତୋଫାନ, ସତଷଠିର ଦଶରା ତୋଫାନ୍‌ର କାନ କାଟି ଦେଇଥାଏ । ରାଜନଗର, ଚାନ୍ଦବାଲି, ଜମ୍ବୁ ଆଦି ସମୁଦ୍ରକୂଳିଆ ଅଞ୍ଚଳର ଧ୍ୱଂସ ଲୀଳା ସାଙ୍ଗକୁ କାହିଁ ଧର୍ମଶାଳା, ବଡ଼ଚଣା, ରେମୁଣା ଆଦି

ଅଞ୍ଚଳର ଘରଦ୍ୱାର ଉଜୁଡ଼ି ଗଛ ଉପୁଡ଼ି ଛାରଖାର ହୋଇ ଯାଇଥାଏ । ସମୁଦ୍ରକୂଳର ଘନ ଜଙ୍ଗଲକୁ ନଷ୍ଟ କରି ଧାନ ଜମିରେ ପରିଣତ କରାଯିବା ଫଳରେ ସାମୁଦ୍ରିକ ଝଡ଼ରେ ସମୁଦ୍ର ପାଣିର ନିରଙ୍କୁଶ ବିହାରର ଏ ପରିଣତି କେତେ ଭୟଙ୍କର ! କିନ୍ତୁ ଆମେ ତ ଢ଼ୋକେ ପିଇ ଦଣ୍ଡେ ଜିଇବା ଲୋକ । ଭବିଷ୍ୟତର ବିପତ୍ତିକୁ କଳି ତଦନୁସାରେ ସତର୍କ ହୋଇ ଚଳିବା ଆମ ଜାତକରେ ନାହିଁ । ଏବେ କି ଜଙ୍ଗଲ ସାଫି ଚାଲିଛି ।

ଗୁଜରାତରୁ ପଶ୍ଚିମ ଦିନାଜପୁରରେ ସଙ୍କଟତ୍ରାଣ କାମ କରିବା ପାଇଁ ଆସିଥିବା ଛାତ୍ର ଓ କର୍ମୀମାନେ ରବିଶଙ୍କର ମହାରାଜଙ୍କ ନିର୍ଦ୍ଦେଶରେ ଓଡ଼ିଶା ରିଲିଫ୍ ପାର୍ଟି ସାଙ୍ଗରେ ମିଶି କାମ କରୁଥିଲେ । କୁମାରୀ କାଶୀବେନ୍ ମେହେତା ସେମାନଙ୍କ ମଧ୍ୟରୁ ଜଣେ । ସେ ତୋଫାନ୍ ପରିସ୍ଥିତି ଦେଖିବା ପାଇଁ ଓଡ଼ିଶା ଆସିଲେ । ସେ ଅତୀବ କରୁଣ ଦୃଶ୍ୟ ଦେଖି ମର୍ମାହତ ହୋଇ ରବିଶଙ୍କର ମହାରାଜଙ୍କୁ ଏଠା ପରିସ୍ଥିତି ଜଣାଇଲେ । ମହାରାଜ ଶ୍ରୀମତୀ ମଣିବେନ ନାନାବଟୀଙ୍କୁ ସାଙ୍ଗରେ ନେଇ ଓଡ଼ିଶା ଆସି ରାଜନଗର, ଜମ୍ମୁ, ଚାନ୍ଦବାଲି, ହରିଦାସପୁର, ରେମୁଣା, ବରୀ ଆଦି ଅଞ୍ଚଳରେ ବୁଲି ଗୃହହୀନ ଲୋକଙ୍କ ଅବସ୍ଥା ଦେଖି ପ୍ରଥମେ ଗୃହହୀନଙ୍କ ପାଇଁ ଘର ତିଆରି କରାଇବା ଉପରେ ଗୁରୁତ୍ୱ ଆରୋପ କଲେ । ଘର ନ କଲେ ଶୀତରତୁ ଆସିଗଲେ ଲୋକଙ୍କର ଦୁର୍ଦ୍ଦଶାର ସୀମା ରହିବ ନାହିଁ – ଏହାହିଁ ଥିଲା ତାଙ୍କର ଯୁକ୍ତି । ମହାରାଜ ମୁଖ୍ୟମନ୍ତ୍ରୀ ସମ୍ବାଦ ବଡ଼ ହୃଦୟସ୍ପର୍ଶୀ ହେଲା । ମହାରାଜ କହିଲେ – ଘର ତିଆରି ପାଇଁ ମୁଁ ପ୍ରଥମ ଦଫାରେ ଦୁଇଲକ୍ଷ ଦେବି, ଆପଣ ଦୁଇଲକ୍ଷ ଦିଅନ୍ତୁ । ମୁଖ୍ୟମନ୍ତ୍ରୀ ତାଙ୍କର ସ୍ୱଭାବସୁଲଭ ହସ ହସି କହିଲେ – ''ଦେବି'' । ରମାଦେବୀ ପରିହାସ ଖେଳିଲେ – ''ଦୁଇ ବ୍ରାହ୍ମଣଙ୍କ ଏ ସଉଦାରେ ମୁଁ ସାକ୍ଷୀ ରହିଲି'' ଜଣେ ରାଜପୁରୁଷ ମୁଖ୍ୟମନ୍ତ୍ରୀଙ୍କୁ ମନେ ପକେଇ ଦେଲେ – ସରକାର ଏପରି ଭାବରେ ଟଙ୍କା ଦେବାଟା ବିଧି ବହିର୍ଭୁତ ହେବ । ମୁଖ୍ୟମନ୍ତ୍ରୀ କହିଲେ – କିହୋ ବ୍ୟକ୍ତିକୁ ଦେଖିବି ନା ବିଧିକୁ ଧରି ବସିବି !

ଆଜି ଶ୍ରୀ ବିଶ୍ୱନାଥ ଦାସ ନାହାନ୍ତି, ରବିଶଙ୍କର ମହାରାଜ ନାହାନ୍ତି, ରମାଦେବୀ ମଧ୍ୟ ନାହାନ୍ତି । କାଳ କାହାକୁ ବା କବଳିତ ନ କରେ । ମାତ୍ର ସତ୍‌କର୍ମ ତ କାଳଜୟୀ ନା !

ଘର ତିଆରି ଆରମ୍ଭ ହେଲା । ଚାରିଲକ୍ଷ ସରିଲା । ମହାରାଜ ଆହୁରି ଚାରିଲକ୍ଷ ପଠାଇଲେ । ବାସନ ଆସିଲା, ଲୁଗା ଆସିଲା । ଅରଟ, ନଡ଼ିଆଗଛ, ଠାଆକୁ ଠାଆ କୂଅ, ଘେରିବନ୍ଧ, ପାଣି କଳ, ଯେତେଦୂର ଯାଏ ବୁଦ୍ଧି ଖେଳିଲା ସାହାଯ୍ୟ ଚାଲିଲା ।

ଅକସ୍‌ଫାମ୍ ପକ୍ଷରୁ ବିକ୍ରେକଲେ ରେମଣ୍ଡ ସାହେବ । ମହାକାଳପଡ଼ା ମାର୍ଶାଘାଇ ଅଞ୍ଚଳରେ ଚାଷର ଉନ୍ନତି ପାଇଁ ଅକ୍‌ସଫାମ୍ ଅର୍ଥ ଯୋଗାଇଲା । କିନ୍ତୁ ରେମଣ୍ଡ ସାହେବଙ୍କର ଭାରି ଝୁଙ୍କ - ଲୋକଙ୍କୁ ସଞ୍ଚୟ କରିବା ପାଇଁ ପ୍ରରୋଚିତ କରିବାକୁ ହେବ । ଭବିଷ୍ୟତରେ ପରମୁଖାପେକ୍ଷୀ ନ ହେବା ପାଇଁ ସଞ୍ଚୟ କରିବା ଦରକାର - ଏଇ କଥାଟା ରେମଣ୍ଡ ଗାଁ ଗାଁ ବୁଲି ଗାଁଲୋକଙ୍କ ମେଳରେ ଚେକା ପକେଇ ବସି ଲୋକଙ୍କ ମୁଣ୍ଡରେ ପୂରାଇବାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କଲେ । ନିଜର ପିଲାଦିନ କଥା ବର୍ଣ୍ଣନା କରି ସେ ପ୍ରାୟ ସବୁ ସଭାରେ କହୁଥାନ୍ତି ଯେ ସେ ନିଜେ ହେଉଛନ୍ତି ଗୋଟିଏ ଫ୍ରେଞ୍ଚ କାନାଡ଼ିଆନ୍ ପରିବାରର ପିଲା । ଫ୍ରେଞ୍ଚ୍ କାନାଡ଼ିଆନ୍‌ମାନେ ତାଙ୍କ ପିଲାଦିନରେ ଗରିବ ଥିଲେ । କାରଣ ସେମାନେ ସଞ୍ଚୟ କରି ଜାଣି ନ ଥିଲେ । ସେହି ଗୋଷ୍ଠୀର ଜଣେ ମହାନୁଭବ ବ୍ୟକ୍ତି ସେମାନଙ୍କ ମଧ୍ୟରେ ସଞ୍ଚୟ କରିବା ବୃତ୍ତିକୁ ବଢ଼ାଇବା ପାଇଁ କାମ କଲେ । ସେ ହାଟ, ବଜାର, ଗୀର୍ଜା, ବିଦ୍ୟାଳୟ ସର୍ବତ୍ର ବୁଲି ଲୋକଙ୍କୁ ସଞ୍ଚୟର ମହିମା ବୁଝାଇଲେ । ରେମଣ୍ଡ ସାହେବଙ୍କ ଗରିବ ବାପା ପ୍ରଥମେ ମାତ୍ର ଟଙ୍କାଟିଏ ସଞ୍ଚୟ କଲେ । ରେମଣ୍ଡ ସେତେବେଳେ ଚାହାଲିରେ ପଢୁଥା'ନ୍ତି । ସେ ମଧ୍ୟ ଏହି ବିଚାରଦ୍ୱାରା ପ୍ରଭାବିତ ହୋଇ ନିଜ ଜଳଖିଆ ଖିଆ ପଇସାରୁ ଏକ, ଦୁଇ ପେନି ସଞ୍ଚୟ କରିବାକୁ ଲାଗିଲେ । ଏହି ସଞ୍ଚୟ ବୃତ୍ତି ଯୋଗୁ ତାଙ୍କର ପାଞ୍ଚୋଟି ଭାଇ ପାଠ ପଢ଼ି ପାରି ନ ଥିବା ସ୍ଥଳେ ସେ ପାଠ ପଢ଼ି ପାରିଲେ । ଏହି ସଞ୍ଚୟ ବୃତ୍ତିର ବିକାଶ ଫଳରେ ଆଜି ଫ୍ରେଞ୍ଚ କାନାଡ଼ିଆନ୍ ଜାତି ସମୃଦ୍ଧି ଲାଭ କରିଛି । ସମବାୟ ନୀତିରେ ସେମାନେ ସତୁରୀ କୋଟି ଡ଼ଲାରର କୋଠାବାଡ଼ି କଲେଣି । ରେମଣ୍ଡଙ୍କ କଥା କହିବା ଶୈଳୀ ମନୋମୁଗ୍ଧକର । ତାଙ୍କ ସଭାରୁ ଫେରିବା ବାଟରେ ନାଉରିଆଠାରୁ ଆରମ୍ଭ କରି ରିକ୍‌ସାଚାଳକ ଯାଏ ଯାହାଙ୍କ ସଂସ୍ପର୍ଶରେ ମୁଁ ଆସୁଥାଏ ତାଙ୍କୁ ଏ ସଞ୍ଚୟ ଗାଥା ଶୁଣାଉଥାଏ । ଆମେ ତନ୍ତ୍ରମୁକ୍ତ ନିଧିଯୁକ୍ତ କର୍ମୀ ତ 'ଅଦ୍ୟଭକ୍ଷ ଧନୁର୍ଗୁଣ' ଶ୍ରେଣୀର । ତଥାପି... ।

ମହାରାଜ ଲୋକଙ୍କ ପାଇଁ ଘର ତିଆରି କରିବା ବନ୍ଦୋବସ୍ତ କରିଦେଇ ନିଶ୍ଚିନ୍ତ ହେଲେ ନାହିଁ । ଘର ତିଆରି ସଙ୍ଗେ ସଙ୍ଗେ ଲୋକଙ୍କ ମଧ୍ୟରେ ଶୁଭସଂସ୍କାର ଆଣିବା ପାଇଁ କ'ଣ କରିବାକୁ ହେବ, ନିଜ ଅନୁଭୂତିରୁ ସେ ସେକଥା ମଧ୍ୟ ଆମକୁ ବତେଇ ଦେଲେ । ସେ ତ ବିଚିତ୍ରକର୍ମା ପୁରୁଷ । ଗୁଜରାତର ଖେଡ଼ା, ବରୋଦା ଓ ମହେଷାଣା ଜିଲ୍ଲାର ୧ ୧ ୩ ଖଣ୍ଡ ଗାଁର ଜୟରାମପେଶାର (Criminal tribe) ଲୋକଙ୍କୁ ସେ ଚୋରୀ ଛଡ଼େଇ ପାରିଲେ । ଗୁଜରାତର ଆଦିବାସୀ ବହୁଳ ଅଞ୍ଚଳରେ ଲେଙ୍ଗୁଟି ମାରି

ବେକରେ ପଥରମାଳି ପକେଇ ସବୁବେଳେ ଫାରଶା କଟୁରୀ ଧରି ବୁଲୁଥିବା ଆଦିବାସୀଙ୍କୁ ଦେଖି ଗାନ୍ଧିଜୀ ଯେତେବେଳେ ଅତ୍ୟନ୍ତ ବ୍ୟଥିତ ହୋଇ ସେମାନଙ୍କ ମଧ୍ୟରେ ଶୁଭ ସଂସ୍କାର ଆଣିଦେବା ପାଇଁ ନିବେଦନ କଲେ, ସେତେବେଳେ ଏ କାମକୁ ମୁଣ୍ଡେଇବାରେ ଅଗ୍ରଣୀ ହୋଇଥିଲେ ରବିଶଙ୍କର ମହାରାଜ ଓ ଠକ୍କର ବାପା । ବହୁ ଗୁଜୁରାଟୀ ଯୁବକ ଠକ୍କର ବାପା ଓ ମହାରାଜଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଆଦିବାସୀ ଉତ୍‌ଥାନ କାମରେ ଆତ୍ମୋତ୍ସର୍ଗ କଲେ । ଫଳରେ ଏବେ ପ୍ରାୟ ଅର୍ଦ୍ଧଶତାବ୍ଦୀ ପରେ ସେହିମାନଙ୍କ ଉତ୍ତରପୁରୁଷ ନିଜ ପୂର୍ବପୁରୁଷଙ୍କ ରୀତିନୀତିକୁ ଅବିଶ୍ୱାସୀ ମଣୁଛନ୍ତି ।

ଯେଉଁଠି ହୁଏ ବିପତ୍ତିର ଆବିର୍ଭାବ, ସେଇଠି ହୁଏ ମହାରାଜଙ୍କ ଶୁଭାଗମନ । ୧୯୭୦-୭୧ରେ ଗୁଜରାଟର ବିପତ୍ତିରେ ଏକ କୋଟି ଟଙ୍କା ସଂଗ୍ରହ କରି ସଂକଟତ୍ରାଣ କାମ କରାଇଲେ । ମାନ୍ଦ୍ରାଜର ଭୂତପୂର୍ବ ରାଜ୍ୟପାଳ ପଟଓ୍ୱାରୀଜୀ ଥିଲେ ମହାରାଜଙ୍କ ବୋଲକରା । ଗୁଜରାଟର ବହୁ ଅଭିଜ୍ଞ ବ୍ୟକ୍ତି ମହାରାଜଙ୍କ ନିର୍ଦ୍ଦେଶରେ କାମ କରିବାକୁ ସବୁବେଳେ ଅଣ୍ଟାଭିଡ଼ି ରହିଥାନ୍ତି । ବାଂଲାଦେଶ ଶରଣାର୍ଥୀଙ୍କ ପାଇଁ ସେ ସଂଗ୍ରହ କରିଥିଲେ ବାଇଶଲକ୍ଷ ଟଙ୍କା । ଓଡ଼ିଶାର ତୋଫାନଗ୍ରସ୍ତ ଅଞ୍ଚଳ ବୁଲି ସେ ଗୁଜରାଟକୁ ଅର୍ଥ ସଂଗ୍ରହ କରିବା ପାଇଁ ଗଲାବେଳେ ଆମକୁ ଉଦ୍‌ବୋଧନ ଦେଇ କହିଲେ-ଓଡ଼ିଶା ଉପରେ ଏଡ଼େ ବଡ଼ ବିପତ୍ତି ପଡ଼ିଛି କିନ୍ତୁ ବିପନ୍ନ ଲୋକଙ୍କ ମୁହଁରେ ଦୈନ୍ୟର ଆଭାସ ସୁଦ୍ଧା ନାହିଁ । ଗାନ୍ଧିଜୀ କହିଥିଲେ ହିନ୍ଦୁ ମୁସଲମାନ୍ ଏକତା, ଅସ୍ପୃଶ୍ୟତା ନିବାରଣ, ଅନ୍ନବସ୍ତ୍ରର ସ୍ୱାବଲମ୍ବନ ଓ ରାଷ୍ଟ୍ରୋପଯୋଗୀ ଶିକ୍ଷା ଚଳିଲେ ଯାଇ ଆମେ ସ୍ୱରାଜ୍ୟ-ସୁଖ ଭୋଗ କରି ପାରିବା । ତେଣୁ ବିପତ୍ତିର ସ୍ଥାୟୀ ପ୍ରତିକାର କିପରି ହେବ, ଲୋକେ କିପରି ସ୍ୱାବଲମ୍ବୀ ହେବେ, ସେ ଦିଗରେ ଚିନ୍ତା କରିବା ଦରକାର ।

ମହାରାଜଙ୍କ ଓଡ଼ିଶା ଗସ୍ତ ବେଳେ ତାଙ୍କ ଭାଷଣ ଲୋକଙ୍କୁ ଓଡ଼ିଆରେ ବୁଝାଇବା ଓ ଲୋକଙ୍କ ବକ୍ତବ୍ୟ ମହାରାଜଙ୍କୁ ହିନ୍ଦିରେ ବୁଝାଇବା ଥିଲା ମୋର ମୁଖ୍ୟ ଧନ୍ଦା । ମହାରାଜ ଓଡ଼ିଆ ବୁଝି ପାରୁଥିଲେ । ତାଙ୍କର ବକ୍ତବ୍ୟ ଲୋକଙ୍କୁ ଓଡ଼ିଆରେ ଯଥାଯଥ ଭାବରେ ବୁଝାଇ ଦିଆଯାଇ ଥିବାର ଶୁଣିଲେ ସେ ପିଲାଙ୍କ ପରି ଖୁସି ହୋଇ ଯାଉଥିଲେ । ତାଙ୍କ ସାଙ୍ଗରେ ଧଉଳୀ ଯାଉ ଯାଉ ବାଟରେ ଭୁବନେଶ୍ୱରର ସଚିବାଳୟ ପଡ଼ିଲା । ମୁଁ କହିଲି - ଦାଦା ! ରାଜନଗରର ଯେଉଁ ଗୃହହୀନ ପ୍ରଜାଙ୍କୁ ଆପଣ ଦେଖି ଆସିଲେ ସେହିମାନଙ୍କ ସେବା ପାଇଁ ଏ ଅଟ୍ଟାଳିକା ଗଢ଼ା ହୋଇଛି । ମହାରାଜ ହସି ହସି ନୟାନ୍ତ ହେଲେ ।

ମହାରାଜଙ୍କ ପ୍ରଚେଷ୍ଟାରେ ଦୁଇହଜାରରୁ କିଞ୍ଚିତ୍ ଅଧିକ ପରିବାର ପାଇଁ ଘର ତିଆରି ହେଲା ।

ଏ ସଂକଟତ୍ରାଣ କାମ ସଙ୍ଗେ ଗ୍ରାମଦାନ ସଂଗ୍ରହ ଅଭିଯାନ ମଧ୍ୟ ଚାଲିଥାଏ । ଉଦାହରଣ ସ୍ୱରୂପ ଢେଙ୍କାନାଳର ଗଁଦିଆ ବ୍ଲକ୍‌ରେ ଗ୍ରାମଦାନ ଅଭିଯାନ ଚାଲିଲା । ଅଧ୍ୟାପକ ବଙ୍ଗ ସସ୍ତ୍ରୀକ ଗଁଦିଆ ଆସିଲେ । ଏଗାରଟି ପଞ୍ଚାୟତରେ ଆମେ ଦଳଦଳ ହୋଇ ବୁଲିଲୁ । ବଙ୍ଗ ସାହେବ ରାଜପରିବାରରୁ ଭୂଦାନ ଆଣିବା ପାଇଁ ମନ ବଳାଇଲେ । ତେଣୁ ନାନୀ ସାହେବଙ୍କ ଆତ୍ମଜ କୁମାର ସାହେବଙ୍କ ପାଖକୁ ଯାଇ ଭୂମିହୀନଙ୍କ ପାଇଁ ଜମି ଦାନ କରିବାକୁ ଅନୁରୋଧ କରାଗଲା । ତିନିଦିନ ପରେ ଉଦୁଉଦିଆ ଦି'ପହରଟାରେ କୁମାର ସାହେବ ମୋଟର ସାଇକେଲରେ ଗଁଦିଆ ଆସି କୋଡ଼ିଏ ଏକର ଜମି ଦାନ ଦେଇ ଗଲେ । ବଙ୍ଗ ସାହେବ ଉଚ୍ଛ୍ୱସିତ ହୋଇ କହିଲେ,''ରମାଦେବୀଙ୍କ ପୁଣ୍ୟର ପ୍ରଭାବ ।''

ସାତଦିନର ଅଭିଯାନ ଫଳରେ ଏକସ୍ତରୀ ଏକର ଜମି ବଣ୍ଟା ହେଲା । ସଂକଳ୍ପିତ ଗ୍ରାମଦାନ ହେଲା ବୟାଳିଶଟି ଏବଂ ଶାନ୍ତିସେନା ବାହାରିଲେ ଏକାନବେ ଜଣ ।

ସଂକଟତ୍ରାଣ କାମରେ ବରୀ ଯାଇଥିବା ବେଳେ ଏପ୍ରିଲ ଉଣେଇଶ ତାରିଖ (୧୯୭୨) ଦିନ ହଠାତ୍ କଟକରୁ ଟେଲିଫୋନ୍ ଯୋଗେ ଖବର ମିଳିଲା ଯେ ହୋତା ମହାଶୟ ସାନ୍ଧ୍ୟ ଭ୍ରମଣକୁ ଯାଇ ଆଉ ସର୍ବୋଦୟ କାର୍ଯ୍ୟାଳୟକୁ ଫେରି ନାହାନ୍ତି । ଅତ୍ୟନ୍ତ ବିଚଳିତ ହୋଇ ସମସ୍ତେ କଟକ ଫେରିଲୁ । ବୃଦ୍ଧାବସ୍ଥାରେ ହଠାତ୍ ସ୍ମୃତି ବିଭ୍ରମ ଘଟି ମଣିଷ ନାମଧାମ ଭୁଲିଯାଏ । ସେଥିପାଇଁ କୌଣସି ଅଜଣା ଅଚିହ୍ନା ସ୍ଥାନକୁ ଯାଇଥିବା ବେଳେ ସ୍ମୃତି ବିଭ୍ରମ ଘଟିଲେ ଖୋଜ ଖବର ଆଦୌ ମିଳେ ନାହିଁ । ଏହିସବୁ କଥା ଭାବି ଆନୁସଙ୍ଗିକ ବିପଦକୁ କଳନା କରି ବଡ଼ ବ୍ୟସ୍ତ ଲାଗୁଥାଏ । ପୁରୁଣା କଥା ମନେ ପଡ଼ି ଯାଉଥାଏ ।

ହୋତା ମହାଶୟ ପୁରୀରେ ଗୋପବନ୍ଧୁ ଭବନରେ ରହୁଥିଲେ । ଗୋଟିଏ ଶିବିରରେ ଯୋଗ ଦେବାକୁ ରମାଦେବୀ (୯ମଇ ୧୯୬୯) ପୁରୀ ଯାଇ ଶିବିର କାମ ସାରି ହୋତା ମହାଶୟଙ୍କୁ ସାକ୍ଷାତ୍ କରିବାକୁ ଗଲେ । ହୋତା ମହାଶୟ ରମାଦେବୀଙ୍କର କେବଳ ସ୍ୱାଧୀନତା ସଂଗ୍ରାମ ବା ରଚନାତ୍ମକ କାମର ସାଥୀ ନ ଥିଲେ । ସେ ଥିଲେ ତାଙ୍କର ବାଲ୍ୟାବସ୍ଥାର ଗୃହଶିକ୍ଷକ । ହୋତା ମହାଶୟଙ୍କୁ ପ୍ରଣାମ କରି ସାରି ରମାଦେବୀ ତାଙ୍କୁ ପଚାରିଲେ – ଆପଣ ଖାଇଲେଣି ? ହୋତା ମହାଶୟ ଗୋପବନ୍ଧୁ ଭବନ ବାରଣ୍ଡାରେ

ପଦଚାରଣା କରୁ କରୁ କହିଲେ - ''ଉପବାସ ରହିବାକୁ ଅଭ୍ୟାସ କରୁଛି ।'' ରମାଦେବୀଙ୍କ ମୁହଁ ଶେତା ପଡ଼ିଗଲା । ସେ କହିଲେ-''ଆପଣ ଏଠି କାହିଁକି ଏକାଟିଆ ରହିବେ । ଚାଲନ୍ତୁ ସାଙ୍ଗ ହୋଇ କଟକରେ ରହିବା । ହୋତା ମହାଶୟ ପଚାରିଲେ - ''ସୁନାମଣି ?'' ରମାଦେବୀ କହିଲେ - ''ସେ ମଧ୍ୟ ଚାଲନ୍ତୁ ।'' ହୋତା ମହାଶୟେ ଆଖି ଛଳଛଳ କରି ରମାଦେବୀଙ୍କ ହାତ ଧରି ପକେଇ କହିଲେ - ''ତମର କେଡ଼େ ସାହସ ! ଦୁଇଟା ଅସମର୍ଥ ଲୋକର ବୋଝ ମୁଣ୍ଡେଇବାକୁ ଜାଣିଶୁଣି ବାହାରିଛ ।'' ଦୁହେଁ କିଛିକ୍ଷଣ ନୀରବ ରହିଲେ । ୧୯୬୯ ମସିହା ଜୁନ୍ ପହିଲାରେ ସେ କଟକ ଆସିଲେ ।

ଆଚାର୍ଯ୍ୟ ମହାଶୟଙ୍କ ଦେହାନ୍ତ ପରେ ହୋତା ମହାଶୟ ମୁହ୍ୟମାନ ହେଲା ପରି ଜଣା ପଡୁଥିଲେ । ମାତ୍ର ସେ ଯେ ହଠାତ୍ ଏପରି ଭାବରେ ନିରୁଦ୍ଦିଷ୍ଟ ହୋଇଯିବେ ଏହା କେହି କଳନା କରି ପାରି ନ ଥିଲେ । କଟକରେ ପହଞ୍ଚି ରମାଦେବୀ ଘରୋଇ ବିଭାଗ ସଚିବ ଶ୍ରୀ ପଦ୍ମନାଭ ମିଶ୍ର ଓ ସେହି ବିଭାଗର ମନ୍ତ୍ରୀ ନୀଳମଣି ରାଉତରାୟଙ୍କୁ ଭେଟି ହୋତା ମହାଶୟଙ୍କୁ ଠାବ କରିବା ପାଇଁ ପରାମର୍ଶ କଲେ । ଚାରିଆଡ଼କୁ ବେତାର ବାର୍ତ୍ତା ପ୍ରେରିତ ହେଲା । ଦିନେ ବାଲେଶ୍ୱରର ଶ୍ରୀ ମିହିର ପାଣିଗ୍ରାହୀ ତାଙ୍କୁ ରେଳ ଷ୍ଟେସନ୍‌ରେ ଦେଖି ନିଜ ଘରକୁ ଆଣି କଟକକୁ ଖବର ଦେବାରୁ ସମସ୍ତେ ଆଶ୍ୱସ୍ତ ହେଲୁ ।

ହୋତା ମହାଶୟଙ୍କ ସାଙ୍ଗରେ କଟକରେ ପହଞ୍ଚିବା ମାତ୍ରେ ବିନା ମେଘରେ ବଜ୍ରପାତ ପରି ମାମୁଁ ଉପେନ୍ଦ୍ର କିଶୋର ଦାସଙ୍କ ତିରୋଧାନ ସମ୍ବାଦ ପାଇଲୁ । ମାମୁଁ ଓ ମାଇଁ (ଉର୍ମିଳା ଦେବୀ)ଙ୍କ ଅନାବିଳ ସ୍ନେହ ଓ ଆମ କାମରେ ସହଯୋଗ କଥା ଆଖି ଆଗରେ ନାଚିଗଲା । ମାମୁଁ ମାଇଁଙ୍କ ଉପରେ ଆମର କେତେ ଅଳିଝଳି ! ସତ୍ୟଭାମାପୁରେ ବାଲି ପୋଖରୀ କୋଠିରେ ସେ ଗାଁର ଧନୀ, ଧରମାମୁଁ ପ୍ରଭୃତିଙ୍କ ସାଙ୍ଗରେ କେତେ ଖେଳକୁଦ ! ୧୯୩୦ରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ମାମୁଁ ମାଇଁ ବ୍ୟକ୍ତିଗତ ଭାବରେ ସବୁ ଖରଚ ତୁଲାଇ ସତ୍ୟଭାମାପୁରରେ ସୂତାକଟା, ତୁଳାଭିଣା, ଲୁଗାବୁଣା ଆଦି ଖଦୀ କାମ ଆରମ୍ଭ କଲେ । ମାଇଁ ସୂତା କାଟିଲେ, କିଛିଦିନ ଖଦୀ ମଧ୍ୟ ପିନ୍ଧିଲେ, ୧୯୩୪ରେ ଗାନ୍ଧିଜୀ ଓଡ଼ିଶାରେ ପଦଯାତ୍ରା କଲାବେଳେ ସତ୍ୟଭାମାପୁରରେ ମାମୁଁ ଘରେ ଗୋଟିଏ ରାତି ରହିଲେ । ମାମୁଁ ନିଜ ହାତରେ ଅତିଥିମାନଙ୍କ ପାଇଖାନା ସଫା କଲେ । ହରିଜନ କାମ ପାଇଁ ମାଇଁ ଗାନ୍ଧିଜୀଙ୍କ ହାତରେ ଜଡ଼ଉ ପୁଷ୍ପହାରଟିଏ ଅର୍ପଣ କଲେ । ୧୯୩୮ରେ ଗାନ୍ଧୀ ସେବାସଂଘ ସମ୍ମିଳନୀ ବେରବୋଇରେ ହେଲା । ମାମୁଁ ମାଇଁ ପତରକୁଡ଼ିଆରେ ରହି ପ୍ରଦର୍ଶନୀର ଓ ସାଜସଜ୍ଜାର ତତ୍ତ୍ୱାବଧାନ କଲେ । ୧୯୫୦

ଓ ୧୯୫୫ରେ ଯଥାକ୍ରମେ ଅନୁଗୁଳ ଓ ପୁରୀରେ ସର୍ବୋଦୟ ସମ୍ମିଳନୀ ଉପଲକ୍ଷେ ଯେଉଁ ପ୍ରଦର୍ଶନୀ ହେଲା ସେଥିରେ ପ୍ରଦର୍ଶିତ ହେବା ପାଇଁ ଓଡ଼ିଶାର ଐତିହାସିକ ଘଟଣାବଳୀକୁ ରୂପାୟିତ କରିବା ପାଇଁ ଓଡ଼ିଶାର ଯେଉଁ ଚିତ୍ରଶିଳ୍ପୀମାନେ ଆଗଭର ହେଲେ ମାମୁଁ ସେମାନଙ୍କ ମଧ୍ୟରୁ ଅନ୍ୟତମ । ଆମେ ହରିଜନ ବସ୍ତିରେ କାମ କରୁଥିବା ବେଳେ ଛୋଟ ପିଲାଙ୍କ ପାଇଁ ନାନାବାୟା ଗୀତ ଲେଖି ଦେଉଥିଲେ ମାମୁଁ । ତାଙ୍କର ଶେଷକୃତି ଥିଲା 'ଭାଗବତ ଧର୍ମସାର' ସଂଶୋଧନ । ଆତ୍ମପ୍ରଚାରଠାରୁ ବହୁ ଦୂରରେ ରହି ଏହି ସାଧକ ଓଡ଼ିଆ ସାହିତ୍ୟର ରଚନା ଶୈଳୀରେ ଯୁଗାନ୍ତର ଆଣିଥିଲେ 'ମଲାଜହ୍ନ' ରଚନା କରି । 'ବାରୁଣୀ'ରେ ତାଙ୍କର ସମ୍ପାଦନାର ରୁଚି ପ୍ରସ୍ଫୁଟିତ ହୋଇଥିଲା । ଅନେକ ଦିନର ଅନେକ କଥା ମନ ଭିତରୁ ଉହୁଙ୍କି ଉଠିଲେ । ଥାଉ ସେ କଥା ।

୧୯୭୨ ମସିହା ଏପ୍ରିଲ ପନ୍ଦର ତାରିଖରେ ଚମ୍ବଲର ପ୍ରଖ୍ୟାତ ଦସ୍ୟୁ ମୋହର ସିଂହ, ମାଧୋ ସିଂହ, ପଞ୍ଚମ ସିଂହ ପ୍ରଭୃତି ସଦଳବଳେ ଜୟପ୍ରକାଶ ନାରାୟଣଙ୍କ ନିକଟରେ ଆତ୍ମ ସମର୍ପଣ କରିବା ଘଟଣା ବର୍ତ୍ତମାନ ସର୍ବଜନବିଦିତ । ଏହା ପୂର୍ବରୁ ୧୯୬୦ ମସିହାରେ ବିନୋବାଜୀ ଚମ୍ବଲ ଘାଟୀରେ ପଦଯାତ୍ରା କରୁଥିବା ବେଳେ ଦସ୍ୟୁ ଶିରୋମଣି ମାନସିଂହ ଦଳର ଲୁକ୍‌କା ସମେତ ଏଗାର ଜଣ ଦସ୍ୟୁ ବିନୋବାଜୀଙ୍କ ନିକଟରେ ପ୍ରଥମେ ଆତ୍ମ-ସମର୍ପଣ କରିଥିଲେ । ମେଜର ଜେନେରାଲ ଯଦୁନାଥ ସିଂହଙ୍କ ଅକ୍ଳାନ୍ତ ପରିଶ୍ରମ ଓ କର୍ମକୁଶଳତା ହେତୁ ଏହି ଦସ୍ୟୁଦଳ ଆତ୍ମସମର୍ପଣ କରିବାକୁ ରାଜି ହୋଇଥିଲେ । ୧୯୬୦ରେ ଯେଉଁ ମଞ୍ଜିଟି ସେଠାରେ ପୋତା ହୋଇଥିଲା ୧୯୭୨ରେ ସେଥିରୁ ଗଛ ହୋଇ ତାହା ପଲ୍ଲବିତ, ପୁଷ୍ପିତ ହୋଇ ସେଥିରେ ଫଳ ଫଳିଲା । 'ଚମ୍ବଲର ବନ୍ଧୁକ ଗାନ୍ଧିଜୀଙ୍କ ପଦତଳେ' ଶିରୋନାମାରେ ମୋର ସେହି ଆତ୍ମ-ସମର୍ପଣର ବର୍ଣ୍ଣନା 'ସମାଜ'ରେ ସ୍ଥାନ ପାଇଥିଲା । ଶ୍ରୀ ଧବଳେଶ୍ୱର ଚୌଧୁରୀ ପ୍ରମୁଖ ଅନେକେ ଏ ବିଷୟଟି ପ୍ରତି ଆଗ୍ରହାନ୍ୱିତ ହୋଇ ମୋତେ ପତ୍ର ଲେଖିଲେ । ଗାନ୍ଧୀସ୍ମାରକ ନିଧିଙ୍କ ଆନୁକୂଲ୍ୟରେ ଏହି ବିଷୟଟି 'ଦସ୍ୟୁ ହୃଦୟରେ ଦେବତା' ନାମରେ ପୁସ୍ତକାକାରରେ ପ୍ରକାଶ ପାଇଲା ।

ବ୍ରହ୍ମବିଦ୍ୟା ମନ୍ଦିରରେ ହେଉଥିବା ମିତ୍ର-ମିଳନରେ ଯୋଗ ଦେବା ପାଇଁ ୧୯୭୩ର ପ୍ରାରମ୍ଭରେ ମୁଁ ପଉନାର ଗଲି । ଏହି ସମ୍ମିଳନୀରେ ସ୍ତ୍ରୀ-ଶକ୍ତି-ଜାଗରଣ ଉଦ୍ଦେଶ୍ୟରେ ସମଗ୍ର ଭାରତରେ ଏକା ସମୟରେ ଏକ ସପ୍ତାହ ମହିଳାମାନଙ୍କର ପଦଯାତ୍ରା କରିବା ପାଇଁ ପ୍ରସ୍ତାବ କରାଗଲା । ଏହି ସମ୍ମିଳନୀରେ ବିନୋବାଜୀ ସମାଜରେ ଶୀଳ

ରକ୍ଷା କରିବା ପାଇଁ ବହୁସଂଖ୍ୟକ ବ୍ରହ୍ମଚାରିଣୀଙ୍କ ଆବଶ୍ୟକତା କଥା ବୁଝାଇ କହିଲେ । ଏହି ପ୍ରସଙ୍ଗରେ ସେ ବୋଧହୁଏ ସର୍ବ ପ୍ରଥମେ 'ମୁକ୍ତ-କାମ ସମ୍ପର୍କ' ସମ୍ବନ୍ଧରେ ଆଲୋଚନା କଲେ । ସେ କହିଲେ ଜନସଂଖ୍ୟା ବୃଦ୍ଧି ଦୃଷ୍ଟିରୁ ବ୍ରହ୍ମଚର୍ଯ୍ୟ ଏଣିକି ଅପରିହାର୍ଯ୍ୟ ହେବ । ସେଥିପାଇଁ ଆସନ୍ତା ଏକହଜାର ବର୍ଷ ପାଇଁ ମହିଳାମାନଙ୍କର ସାଂସ୍କୃତିକ କାର୍ଯ୍ୟ ହେବ ସାମୂହିକ ବ୍ରହ୍ମବିଦ୍ୟା ସାଧନା । ସମାଜକୁ ବ୍ରହ୍ମଚାରିଣୀମାନେ ହିଁ ବ୍ରହ୍ମଚର୍ଯ୍ୟର ମହିମା ବୁଝାଇ ପାରିବେ । ମୀରାବାଈ, ଅଣ୍ଡାଳ, ଲଲ୍ଲା, ଅଳକା ଓ ମୁକ୍ତାବାଈଙ୍କ ଭଳି ସାଧିକାଙ୍କୁ ଏଥିପାଇଁ ଯେପରି ସାମାଜିକ ନିର୍ଯ୍ୟାତନା ସହିବାକୁ ପଡ଼ିଥିଲା, ଆଜି ଆଉ ସେପରି ନିର୍ଯ୍ୟାତନା ସେମାନଙ୍କୁ ସହିବାକୁ ପଡ଼ିବ ନାହିଁ ।

ସମାଜରେ ଚାରି ଆଶ୍ରମର ସମନ୍ୱୟ ଗୃହସ୍ଥାଶ୍ରମରେ ହୋଇଥିବାର ଦୃଷ୍ଟାନ୍ତ ଛାନ୍ଦୋଗ୍ୟ ଉପନିଷଦ୍‌ରେ ରହିଛି । ବ୍ରହ୍ମଚର୍ଯ୍ୟଠାରୁ ଶାସ୍ତ୍ରସମ୍ମତ ଗୃହସ୍ଥାଶ୍ରମ ଅଧିକ କଷ୍ଟସାଧ୍ୟ । କାରଣ କେବଳ ସନ୍ତାନ ପାଇଁ ଗର୍ଭାଧାନ ପ୍ରକ୍ରିୟାରେ ସଙ୍ଗମ କରିବା ହେଉଛି ଶାସ୍ତ୍ରସମ୍ମତ ଗୃହସ୍ଥାଶ୍ରମ । ବର୍ତ୍ତମାନ ତ ଦୁଇଟି ସନ୍ତାନର ପିତା ଚାରିହଜାର ଥର ସଙ୍ଗମ କରୁଥିବ । ଏ ପ୍ରକାର ବ୍ୟଭିଚାର ଗୃହସ୍ଥାଶ୍ରମରେ ମଧ୍ୟ ହେଉଛି । ପାର୍ଥକ୍ୟ ଏତିକି ଯେ ନିଜର ବିବାହିତା ସ୍ତ୍ରୀ ସହିତ ହେଉଛି । ତେଣୁ ଭାରତବର୍ଷରେ ପାଞ୍ଚ ହଜାର ବ୍ରହ୍ମଚାରୀ ଅଛନ୍ତି କହିଲେ ମୁଁ ତାହା ବିଶ୍ୱାସ କରିବି, ମାତ୍ର ପଚାଶଜଣ ଶାସ୍ତ୍ରସମ୍ମତ ଗୃହସ୍ଥ ଅଛନ୍ତି କହିଲେ ତାହା ବିଶ୍ୱାସ କରିବା କଠିନ ହେବ । ଏପରି ସ୍ଥଳେ ମୁକ୍ତ କାମ-ବାସନାକୁ ନିୟନ୍ତ୍ରଣ କରିବା ପାଇଁ ବ୍ରହ୍ମଚର୍ଯ୍ୟ ହିଁ ଏକମାତ୍ର ପନ୍ଥା । ଏହା ହିଁ ହେବ ସାମାଜିକ ସେବା କାର୍ଯ୍ୟ ।

ପୁଣି ଗୃହସ୍ଥ ଅର୍ଥାତ୍ ପତିପତ୍ନୀ ସଂଯତ ଓ ଜ୍ଞାନୀ ହେଲେ ସନ୍ତାନ ନିଶ୍ଚିତ ରୂପେ ଭଲ ହେବେ । ସମସ୍ତେ ବ୍ରହ୍ମଚାରୀ ହେଲେ କୁଳ ବୁଡ଼ିଯିବ ବୋଲି ଭୟଭୀତ ହୁଅ ନାହିଁ । ବୁଝିରଖ ଯେ ଯେଉଁ ଗଛରେ ସର୍ବୋତ୍ତମ ଫଳ ଫଳିଯାଏ ସେ ଗଛର ଫଳ ନିକୃଷ୍ଟ ହେବାକୁ ଆରମ୍ଭ କରେ । ସେହିପରି ମନୁଷ୍ୟ କୁଳରେ ସର୍ବୋତ୍ତମ ସନ୍ତାନ ଜନ୍ମଲାଭ କରିବା ପରେ ସେ କୁଳର ସନ୍ତାନ ମଧ୍ୟ 'ଡ଼େଟରିଏଟ୍' କରେ । ବୁଦ୍ଧିମାନ ମହାପୁରୁଷ ଏହା ବୁଝି ନିଜ କୁଳ ବୁଡ଼େଇ ଦିଅନ୍ତି । ଏହାର ଉଦାହରଣ ହେଉଛନ୍ତି ଶଙ୍କରାଚାର୍ଯ୍ୟ । ମହାଜ୍ଞାନୀ ବ୍ୟାସଦେବଙ୍କ ପୁଅ ଶୁକଦେବଙ୍କ ପରେ ତାଙ୍କ କୁଳ ରହିଲା ନାହିଁ । ମହାତ୍ମା ଗାନ୍ଧୀ ମହାତ୍ମା ହେବା ପୂର୍ବରୁ ସନ୍ତାନର ପିତା ହୋଇ ସାରିଥିଲେ, ତେଣୁ ତାଙ୍କ କୁଳ ରହିଲା ।

ଶକ୍ତିର ମୂଳ ଉତ୍ସ ହେଉଛି ଅନ୍ତରାତ୍ମା । ଏହା ସ୍ତ୍ରୀ ପୁରୁଷ ଭେଦ ରହିତ । ଏହି ବୋଧ ଜନ୍ମିଲେ ସ୍ତ୍ରୀ-ଶକ୍ତି ଜାଗ୍ରତ ହେବ । ତେଣୁ ପ୍ରଥମେ ଆବଶ୍ୟକ ନିଜର ପରିବର୍ତ୍ତନ । ତା'ପରେ ହେବ ସମାଜର ପରିବର୍ତ୍ତନ । ଚିତ୍ତଶୁଦ୍ଧିର ସାଧନା ଓ ସମାଜପରିବର୍ତ୍ତନର ତମନ୍ନା (ଇଚ୍ଛା) ଏ ଦୁଇଟିଯାକ ଲକ୍ଷ୍ୟ ଆଖି ଆଗରେ ରଖି ସମୂହ ପ୍ରୟାସ କରିବା ଆବଶ୍ୟକ । ଏଥିପାଇଁ ମୋର ସୂତ୍ର ହେଉଛି ଏକଭାଗ ଖାଇବ, ଦୁଇଭାଗ ପାଣି ପିଇବ, ତିନିଭାଗ କାମ କରିବ, ଚାରିଭାଗ ହସିବ ଅର୍ଥାତ୍ ଚିତ୍ତପ୍ରସନ୍ନ ରଖିବ । ଚିତ୍ତପ୍ରସନ୍ନ ରଖିବା ହେଉଛି ସବୁଠାରୁ ବଡ଼ ସାଧନା ।'' ସ୍ୱରଚିତ ଛୋଟିଆ ଶ୍ଳୋକଟିଏ ବୋଲି ସେ ଭାଷଣ ଶେଷ କଲେ ।

''କାଳ ଜାରଣମ୍

ସ୍ନେହ ସାଧନମ୍

କଟୁକ ବର୍ଜନମ୍

ଗୁଣ ବିବେଦନମ୍ ।''

ଭାରତବର୍ଷରେ ଗୋଟିଏ ଯୋଗସୂତ୍ର ରକ୍ଷାକାରୀ ଲିପି ଯେ ଭାରତର ଭାବାତ୍ମକ ଏକତା ପାଇଁ ଅତ୍ୟାବଶ୍ୟକ ଏହା ୧୮୮୧ରୁ ଉତ୍କଳ ଗୌରବ ମଧୁସୂଦନ, ଜଷ୍ଟିସ୍ ଶାରଦା ଚରଣ ମିତ୍ର ଓ ଶ୍ରୀ କୃଷ୍ଣସ୍ୱାମୀ ଆୟର, ସ୍ୱାମୀ ଦୟାନନ୍ଦ ପ୍ରମୁଖ କହି ଆସିଛନ୍ତି ଏବଂ ଏକଲିପି ପରିଷଦ, ନାଗରୀ ପ୍ରଚାରିଣୀସଭା ଆଦି ଅନୁଷ୍ଠାନ ଗଢ଼ି ଏ ଦିଗରେ କାର୍ଯ୍ୟ ମଧ୍ୟ କରିଛନ୍ତି । ବିନୋବାଜୀଙ୍କ ଉଦ୍ୟମରେ ଭାରତର ବିଭିନ୍ନ ଭାଷାରେ ଅନୁବାଦିତ ହୋଇଥିବା 'ଗୀତା ପ୍ରବଚନ' ସେହି ଭାଷା ଅଥଚ ନାଗରୀ ଲିପିରେ ଛାପା ହୋଇଥିଲା ଏବଂ ପ୍ରତି ପ୍ରଦେଶରେ ସେହି ପ୍ରଦେଶର ଭାଷାରେ ପ୍ରକାଶ ପାଉଥିବା ସର୍ବୋଦୟ ଆନ୍ଦୋଳନର ମୁଖପତ୍ରର ଏକ ନାଗରୀ ଲିପି ସଂସ୍କରଣ ପ୍ରକାଶର ଉଦ୍ୟମ ହେଉଥିଲା । ଏହି ମିତ୍ର ମିଳନରେ ବିନୋବାଜୀ ନାଗରୀ ଲିପି ପ୍ରଚାର ଉପରେ ଗୁରୁତ୍ୱ ଆରୋପ କରି କହିଲେ ଯେ ଭାରତର ଏକତା ରକ୍ଷା ପାଇଁ ଗୋଟିଏ ଯୋଗସୂତ୍ର ରକ୍ଷାକାରୀ ଲିପି (Link script) ରୂପେ ଯଦି ନାଗରୀ ଲିପିର ପ୍ରସାର ସର୍ବୋଦୟ କର୍ମୀମାନେ କରି ପାରିବେ ତେବେ ଆଗାମୀ ଏକହଜାର ବର୍ଷ ପାଇଁ ଭାରତର ଭାବାତ୍ମକ ଏକତା ରକ୍ଷା କରିବାରେ ଏହା ସହାୟକ ହେବ । ଦିନେ ସକାଳେ ବିନୋବାଜୀ ହଠାତ୍ ମୋ ପାଖକୁ ଆସି ମୋ ହାତ ଧରିନେଇ ପାଖରେ ବସାଇ ମୋତେ ମଧ୍ୟ ସେ ଏହି ନାଗରୀ ଲିପିର

ପ୍ରଚାର କରିବା ପାଇଁ ନିର୍ଦ୍ଦେଶ ଦେଲେ । ବିନୋବାଜୀଙ୍କର ମୋ ପ୍ରତି ଏ ବାତ୍ସଲ୍ୟ ସ୍ନେହ ମୋତେ ଅଭିଭୂତ କଲା ।

ଚମ୍ବଲରେ ଦସ୍ୟୁମାନେ ଆତ୍ମ ସମର୍ପଣ କରି ବନ୍ଦୀ ହେବା ପରେ ସେଠାରେ ଯେଉଁ ସମସ୍ୟାମାନ ଦେଖା ଦେଇଛି, ତାହାର ସମାଧାନ ପାଇଁ ସେ ଅଞ୍ଚଳରେ ମହିଳା ସର୍ବୋଦୟ କର୍ମୀମାନେ ଅନ୍ତତଃ ମାସେ ଲେଖା ପାଳିକରି ପଦଯାତ୍ରା କରିବା ଉଚିତ ବୋଲି ମଧ୍ୟ ସେ କହିଲେ ଏବଂ ମୋତେ ଅନ୍ତତଃ ମାସକ ପାଇଁ ରମାଦେବୀଙ୍କ ପାଖ ଛାଡ଼ି ଚମ୍ବଲ ଯିବାପାଇଁ ମଧ୍ୟ ନିର୍ଦ୍ଦେଶ ମିଳିଲା ।

xxxxx xxxxx xxxxx xxxxx

ଏହି ମିତ୍ର-ମିଳନ ଚାଲିଥିବା ବେଳେ ମୁଁ ଗୋଟିଏ ଅଲୌକିକ ଘଟଣା ଦେଖିଲି । ବ୍ରହ୍ମବିଦ୍ୟା ମନ୍ଦିରରେ ସେ ସମୟରେ ସକାଳ ଆଠଟା ବେଳେ ସମୂହ ଧ୍ୟାନସାଧନା ହେଉଥିଲା । ବିନୋବାଜୀ ଋକ୍‌ବେଦର ମନ୍ତ୍ର

ଓଁ ସମାନୀ ବ ଆକୂତିଃ
ସମାନି ହୃଦୟାନି ବଃ
ସମାନମସ୍ତୁ ବୋ ମନୋ
ଯଥା ବଃ ସୁସହ ସତି ॥*

(ତୁମମାନଙ୍କର ସଂକଳ୍ପ ଶକ୍ତି ବା ଲକ୍ଷ୍ୟ ସମାନ ହେଉ, ହୃଦୟର ଭାବନା ସମାନ ହେଉ । ମନ ଓ ମସ୍ତିଷ୍କ ସମାନ ହେଉ ଯଦ୍ୱାରା ତୁମମାନଙ୍କର ବଳ ଓ ସହନ ସାମର୍ଥ୍ୟ ଉତ୍ତମ ରୂପେ ଏକତ୍ର ପ୍ରକାଶିତ ହେବ ।)

ଆବୃତ୍ତି କରିବା ପରେ ଧ୍ୟାନ ଆରମ୍ଭ ହୁଏ । ଜାନୁଆରୀ ସାତ ତାରିଖ ଦିନ ସକାଳେ 'ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ' ଉଚ୍ଚାରଣ ପରେ ଧ୍ୟାନ ସରିବା ଉତ୍ତାରୁ କାନ୍ତାବେନ୍ ବସି ରହିଥିବାର ଦେଖି ଜଣେ ଭଉଣୀ ସେ କିଏ ଓ କାହିଁକି ଏପରି ବସିଛନ୍ତି ବୋଲି ମୋତେ ପଚାରିଲେ । ମୁଁ ତାଙ୍କ ପାଖକୁ ଯାଇ ଦେଖିଲି ସେ କାନ୍ତା ଓରଫ ଚନ୍ଦ୍ରକାନ୍ତା ସୁଖାସନ୍‌ରେ ହାତ ଅଞ୍ଜଳି ବନ୍ଦକରି ବସିଛନ୍ତି । ଅଞ୍ଜଳି ତଳେ କୁଙ୍କୁମ କୁଢ଼ ହୋଇଛି । ମୀରା ଭଟ୍ଟ ଓ ହରବିଲାସ ସାହ ତାଙ୍କ ପାଖରେ ଛିଡ଼ା ହୋଇ କାନ୍ଦୁଛନ୍ତି । ଧନ୍ୟରେ ମଣିଷ ମନ ! କ୍ଷଣକ ମଧ୍ୟରେ ମୋ ମନ କେତେ କଥା ଭାବି ପକେଇଲା । ବୋଧହୁଏ କାଣ୍ଡବହନ ଧ୍ୟାନ କରୁ କରୁ ଦେହ ଛାଡ଼ି ଚାଲିଗଲେ । ଆହା ମୋ କାନ୍ତା ବେନ୍ !

କେଡ଼େ ସ୍ନେହୀ, କର୍ମକୁଶଳୀ ଓ ବାଗ୍ମୀ । ହରବିଳାସ ଶାହ ଓ ସେ ଶିକ୍ଷୟିତ୍ରୀ ଥିଲେ । ନାରାୟଣ ଦେଶାଇଙ୍କ ଭାଷଣ ଶୁଣି ଚାକିରୀ ଛାଡ଼ି ସର୍ବୋଦୟ ଆନ୍ଦୋଳନରେ ଦୁହେଁ ମିଶିଲେ । ବିନୋବାଜୀ ତାଙ୍କୁ କହିଲେ - ଦୁହେଁ ଏକ ମନ ଏକ ଆତ୍ମା ହୋଇ ଚିତ୍ତଶୁଦ୍ଧିର ସାଧନା କରିବା ସଙ୍ଗେ ସଙ୍ଗେ ସମାଜ ପରିବର୍ତ୍ତନ ପାଇଁ କାମ କର । ସେହିଦିନୁଁ ଦୁହେଁ ସାଙ୍ଗ ହୋଇ ଗୁଜରାତରେ କାମ କରୁଛନ୍ତି । ବିନୋବାଜୀ ଦୁହିଁଙ୍କୁ ଦେଖିବା ମାତ୍ରେ ହସଟାଏ ହସି କହନ୍ତି, ''ହରିଶ୍ଚନ୍ଦ୍ର ଅଇଲେ'' ଅର୍ଥାତ୍ ହରବିଳାସର ହର ଓ ଚନ୍ଦ୍ରକାନ୍ତାର ଚନ୍ଦ୍ର ମିଶି ହୋଇଛନ୍ତି ହରିଶ୍ଚନ୍ଦ୍ର । ସେ କାନ୍ତା ଚାଲିଗଲା । ମଣିଷର ମନ କେଡ଼େ ଚାଣ୍ଡେ କେତେ କଥା ଭାବିଯାଏ । ମୋ ଆଖିରେ ଲୁହ ଜକେଇ ଆସିବା ବେଳକୁ ଦେଖିଲି ଯେ କାନ୍ତା ଆଖିରୁ ଧାର ଧାର ଲୁହ ବୋହି ଆସୁଛି ଏବଂ ତା'ର ଶୂନ୍ୟ ହାତରୁ କୁଙ୍କୁମ ଝରି ପଡୁଛି । କାନ୍ତା ବଞ୍ଚିଛି ଜାଣି ଆଶ୍ୱସ୍ତ ହେଲି । ପ୍ରାୟ ଦୁଇ ମିନିଟ ପରେ ବିନୋବାଜୀ ସେଠାକୁ ଆସି ସେ ଦୃଶ୍ୟ ଦେଖିଲେ, ମାତ୍ର କୌଣସି ଔତ୍ସୁକ ପ୍ରକାଶ ନ କରି ସେଠାରୁ ଚାଲିଗଲେ ।

ସେହିଦିନ ସନ୍ଧ୍ୟାରେ ପରସ୍ପର ପରିଚୟ ସଭାରେ ହଠାତ୍ ସଭାସ୍ଥଳ ଗୋଟିଏ ସୁଗନ୍ଧରେ ଆମୋଦିତ ହୋଇ ଉଠିଲା । ସଭା ମଉଳିବା ପରେ କାଳିନ୍ଦୀ ସରବଟେ ମୋ ପାଖକୁ ଆସି କହିଲେ - ଦେଖନ୍ତୁ, କାନ୍ତାବହନ ମୋ ହାତ ଧରି ପକାଇଲା ପରେ ମୋ ହାତରୁ କିପରି ସୁଗନ୍ଧ ବାହାରୁଛି । କିନ୍ତୁ ଲକ୍ଷ୍ୟ କରି ଦେଖାଗଲା ଯେ କାନ୍ତା ବେନ୍ ଆଦୌ ଜାଣିପାରୁ ନ ଥାନ୍ତି ଯେ ତାଙ୍କରି ଦେହରୁ ଏ ସୁଗନ୍ଧ ବାହାରୁଛି । ବ୍ୟାପାରଟା ବୁଝିବା ପାଇଁ ବହୁ ଲୋକଙ୍କୁ ପଚରାପଚରି କରି ଶୁଣିଲି ଯେ ବିନୋବାଜୀ ଏସବୁ ବ୍ୟାପାର ଦେଖିଶୁଣି କହିଛନ୍ତି ଯେ ଈଶ୍ୱରପ୍ରାପ୍ତି ନିମନ୍ତେ ଈଶ୍ୱରଙ୍କ ପକ୍ଷରୁ ଏହା ଏକ ଆଶ୍ୱାସନାର ଲକ୍ଷଣ ।

ମିତ୍ର-ମିଳନ ପରେ ପରସ୍ପର ଅନୁଭବବିନିମୟ ଉଦ୍ଦେଶ୍ୟରେ ହୋଇଥିବା ଗୋଟିଏ ବୈଠକରେ ଯୋଗ ଦେବା ପାଇଁ ଡ଼ାକରା ଆସିଲା । ମହାରାଷ୍ଟ୍ର ବିଧାନ ସଭାର ଭୂତପୂର୍ବ ବାଚସ୍ପତି ତଥା ମହାରାଷ୍ଟ୍ର ଗାନ୍ଧୀ ସ୍ମାରକ ନିଧିର ଅଧ୍ୟକ୍ଷ ଶ୍ରୀ ଭାରଦେ ମଧ୍ୟ ଏହି ବୈଠକରେ ଉପସ୍ଥିତ ଥିଲେ । ତାଙ୍କର କହିବା ପାଳି ପଡ଼ିବାରୁ ସେ ବର୍ତ୍ତମାନ ପରିସ୍ଥିତିର ବର୍ଣ୍ଣନା କରି ଗୋଟିଏ ସୁଭାଷିତ ଶୁଣାଇଲେ -

ଜଣେ ଜ୍ଞାନୀ ଭିକ୍ଷୁ କାନ୍ଧରେ ଓଦା କନ୍ଥା ପକାଇ ଯାଉଥିବାର ଦେଖି ଜଣେ ତାଙ୍କୁ ପଚାରିଲେ- ଆଜ୍ଞା ! ଓଦା କନ୍ଥାଟା କାହିଁକି କାନ୍ଧରେ ପକାଇଛନ୍ତି ? ଭିକ୍ଷୁ

କହିଲେ – ଏଇଟା କନ୍ଥା ନୁହେଁ, ମାଛଧରା ଜାଲ ।

ପ୍ରଶ୍ନକର୍ତ୍ତା – ଆଛା, ଆପଣ ପଣ୍ଡିତ ଓ ସନ୍ନ୍ୟାସୀ, ପୁଣି ମାଛ ମଧ୍ୟ ଖାଉଛନ୍ତି ?

ଭିକ୍ଷୁ–ମୁଁ ତ ସଂପୂର୍ଣ୍ଣ ନିରାମିଷାଶୀ । କେବଳ ଔଷଧ ଭାବରେ ମୋତେ ମାଛ ଖାଇବାକୁ ପଡ଼େ ।

ପ୍ରଶ୍ନକର୍ତ୍ତା – ଆପଣଙ୍କର କି ରୋଗ ହୋଇଛି ?

ଭିକ୍ଷୁ–ଥରେ ବେଶୀଗୁଡ଼ାଏ ମଦ ପିଇ ଦେବା ଫଳରେ ଦେହଟା ଖରାପ ହେଲା ।

ପ୍ରଶ୍ନକର୍ତ୍ତା– ଆଛା, ଆପଣ ମଦ ମଧ୍ୟ ପିଅନ୍ତି ?

ଭିକ୍ଷୁ– ମୁଁ ମଦ୍ୟପ ନୁହେଁ । ମୁଁ ଜଣେ ଶୀଳବାନ୍ ବ୍ୟକ୍ତି । କିନ୍ତୁ କ'ଣ କରିବି ? ସ୍ତ୍ରୀଦାକ୍ଷିଣ୍ୟ ତ ଅଛି ! ଜଣେ ସ୍ତ୍ରୀଲୋକ ମଦ ପିଆଲା ଧରେଇ ଦେଲେ । ମନା କରିବି କେମିତି ?

ପ୍ରଶ୍ନକର୍ତ୍ତା – ତେବେ ଆପଣ କ'ଣ ବ୍ୟଭିଚାରୀ ?

ଭିକ୍ଷୁ – ମୁଁ ସଂପୂର୍ଣ୍ଣ ନୀତିବାନ୍ । ଅଧରାତିରେ ଲୋକେ ମୋତେ ମାରି ଗୋଡ଼େଇଲେ । ସବୁ ଘରର ଦ୍ୱାର ବନ୍ଦ । ଯେଉଁ ଘରର ଦ୍ୱାର ମେଲା ଥିଲା ମୁଁ ସେଇ ଘରେ ପଶିଗଲି ।

ପ୍ରଶ୍ନକର୍ତ୍ତା – ରାତି ଅଧରେ ଲୋକେ ଆପଣଙ୍କୁ ମାରି ଗୋଡ଼େଇଲେ କାହିଁକି ? ଆପଣ ଦୌଡ଼ିଲେ କାହିଁକି ?

ଭିକ୍ଷୁ–ମୁଁ ଜଣକ ଘର କାନ୍ଥରେ ସିନ୍ଧି ଗାତ କରୁଥିଲି । ସେଥିପାଇଁ ଲୋକେ ମତେ ଧରିବାକୁ ଆସିଲେ । ସେଥିପାଇଁ ମୁଁ ଦୌଡ଼ିଲି ।

ପ୍ରଶ୍ନକର୍ତ୍ତା – ତାହାହେଲେ ଆପଣ ଚୋରୀ ମଧ୍ୟ କରନ୍ତି ?

ଭିକ୍ଷୁ–ମୁଁ ଚୋର ନୁହେଁ, ଜୁଆ ଖେଳିବା ପାଇଁ ଚୋରୀ କରିବାକୁ ବାଧ୍ୟ ହେଲି ।

ମଦ, ଲଟେରୀ ଆଦିକୁ ସମର୍ଥନ କରୁଥିବା ରାଜ୍ୟ ବ୍ୟବସ୍ଥାରେ ପୁଣ୍ୟକୁ ପ୍ରତିଷ୍ଠିତ କରିବା କିପରି କଷ୍ଟସାଧ୍ୟ ସେହି କଥାଟା ଶ୍ରୀ ଭାରଦେ ଉପଯୁକ୍ତ କାହାଣୀ ଶୁଣାଇ ଆମକୁ ଖୁବ୍ ହସାଇଲେ । ହସିସାରି ସମସ୍ତେ ଗୋଟିଏ ଗୋଟିଏ ମର୍ମଭେଦୀ ଦୀର୍ଘନିଃଶ୍ୱାସ ମଧ୍ୟ ପକାଇଲେ ।

ସେବାଗ୍ରାମର ସେ ଛୋଟିଆ ମୃଣ୍ମୟ କୁଟୀରଟି । ସେଠାରେ ପୂଜାବେଦୀରେ ଦେବବିଗ୍ରହ ସମ୍ମୁଖରେ ପୂଜା ପ୍ରଦୀପ ଜଳେ ନାହିଁ । ଧୂପପୁଷ୍ପର ସୁଗନ୍ଧରେ ସେ ସ୍ଥାନ ଆମୋଦିତ ହୁଏ ନାହିଁ । ଭକ୍ତର ସ୍ତବଗାନ, ପୁରୋହିତର ମନ୍ତ୍ରପାଠରେ ସେ କୁଟୀର ମୁଖରିତ ନୁହେଁ । ତଥାପି ତାହା ଦେବାଳୟ । ଦୀନ ଦରିଦ୍ର ବେଶ ଧରି ଜଣେ ସତ୍ୟର ପୂଜାରୀ ସେଇଠି ବସି 'ସତ୍ୟରୂପୀ ଭଗବାନ'ଙ୍କୁ ପୂଜା କରିଥିଲା ଏବଂ ସମଗ୍ର ବିଶ୍ୱର ମଣିଷକୁ ପ୍ରାଣଭରି ଭଲ ପାଇଥିଲା । ତାହାରି ସ୍ମୃତି ସୌରଭରେ ସେ କୁଟୀର ଆମୋଦିତ । ଏକ ଅପୂର୍ବ ଶାନ୍ତି ଅନିର୍ବଚନୀୟ ବେଦନାପୂର୍ଣ୍ଣ ଅନୁଭୂତିରେ ଦର୍ଶକର ଚିତ୍ତ ସେଠାରେ ଆଚ୍ଛାଦିତ ହୋଇଯାଏ । ସେହି ଅବ୍ୟକ୍ତ ଅରୂପ ସତ୍ତାଠାରେ ମନପ୍ରାଣ ଢ଼ାଳିଦେଇ ଏକାନ୍ତବାସରେ ଶାନ୍ତି ସାଗରରେ ବୁଡ଼ି ରହିବାକୁ ପ୍ରାଣ ଉଚ୍ଚାଟ ହୁଏ । ପୁଣି ମନେ ପଡ଼ିଯାଏ – ସେ ସତ୍ୟର ପୂଜାରୀ କହି ଯାଇଛି ପରା ହିମାଳୟର ଏକାନ୍ତବାସ ସାଧନାରେ ଯେଉଁ ଶାନ୍ତି, ଯେଉଁ ମୁକ୍ତି ତାହା ଯଥାର୍ଥ ଶାନ୍ତି ଯଥାର୍ଥ ମୁକ୍ତି ନୁହେଁ ! ଲୋକାଳୟରେ ଜୀବନ ଜଞ୍ଜାଳ ମଧ୍ୟରୁ ମଣିଷ ଯେଉଁ ଶାନ୍ତିକୁ ଖୋଜି ଖୋଜି ପାଏ ତାହା ହିଁ ପ୍ରକୃତ ଶାନ୍ତି । ''ସକଲ୍ ବନ୍ଧନମାଝେ ମହାନନ୍ଦମୟ ଲଭିବ ମୁକ୍ତିର ସ୍ୱାଦ୍'' ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

୧୯୭୩ ମସିହା ଏପ୍ରିଲ ମାସରେ କୁରୁକ୍ଷେତ୍ରରେ ନିଖିଳ ଭାରତୀୟ ମହିଳା ସମ୍ମିଳନୀରେ ରମାଦେବୀ ଅଧ୍ୟକ୍ଷତା କଲେ । ସେହି ସମ୍ମିଳନୀରେ ସ୍ଥିର ହେଲା ଯେ ସବୁ ପ୍ରଦେଶର ମହିଳା ସର୍ବୋଦୟ କର୍ମୀମାନେ ପାଳି କରି ଚମ୍ବଲରେ ମାସେ ଲେଖା ପଦଯାତ୍ରା କରିବେ । ମାସେ ପଦଯାତ୍ରା କରିବାକୁ ମୋତେ କୁହାଯିବାରୁ ମୁଁ ଟିକିଏ ଧର୍ମସଂକଟରେ ପଡ଼ିଲି । ୧୯୫୮ ମସିହା ଏପ୍ରିଲ ୨୯ ତାରିଖରେ ଗୋପବାବୁଙ୍କର ଦେହାନ୍ତ ହେଲା । ସେତେବେଳେ ରମାଦେବୀ ଆନ୍ତ୍ରିକ ଜ୍ୱରରେ ଶଯ୍ୟାଶାୟୀ ଥିଲେ । ତେଣୁ ମୁଁ ଠିକ୍ କଲି ଯେ ପୂର୍ବପରି ରାମଚନ୍ଦ୍ରପୁର ବା ଅନ୍ୟତ୍ର ନ ରହି ରମାଦେବୀଙ୍କ ସାଙ୍ଗରେ ରହିବି । ପିଲା ଦୁଇଟି ସୁମିତ୍ରା ଚୌଧୁରୀଙ୍କ ପାଖରେ ରହି ରାମଚନ୍ଦ୍ରପୁର ''ବାଣୀଶ୍ରୀ''ରେ ପଢ଼ିବେ । ତଦନୁସାରେ କେବଳ ସର୍ବୋଦୟ ସାହିତ୍ୟ ଅନୁବାଦ କରିବା କାମଟି ମୁଁ କରୁଥିଲି । ପ୍ରାୟ ମୁଁ ଅନ୍ୟତ୍ର ଯାଉ ନ ଥିଲି । କେବଳ ବିନୋବାଜୀଙ୍କର ଆଗ୍ରହାତିଶଯ୍ୟ ହେତୁ କାଶୀ ଓ ଇନ୍ଦୋରକୁ ଶାନ୍ତି ସେନା ବିଦ୍ୟାଳୟ ସଞ୍ଚାଳନା କାମରେ ଯାଇଥିଲି । ସେତେବେଳେ ସୁମିତ୍ରା ଚୌଧୁରୀ ରାମଚନ୍ଦ୍ରପୁରରେ ରମାଦେବୀଙ୍କ ପାଖରେ ରହିଥିଲେ । ଚମ୍ବଲ ଯିବା କଥା ପଡ଼ିଲାରୁ ମଙ୍ଗଳା ସେନ୍ ରମାଦେବୀଙ୍କ ପାଖରେ ରହିବା ପ୍ରସ୍ତାବ ଉଠିଲା । ମୁଁ ନିଶ୍ଚିନ୍ତ ହୋଇ ଚମ୍ବଲ ଯିବାକୁ ହଁ ଭରିଲି । ମଙ୍ଗଳାଦେବୀ ବା ସୁମିତ୍ରା

ଦେବୀ ବା ମୁଁ ଆମ ଭିତରୁ ଯେ କେହି ଜଣେ ରମାଦେବୀଙ୍କ ସାଙ୍ଗରେ ରହିବାକୁ ସ୍ଥିର କରିଛୁ ସେ କଥା ରମାଦେବୀ ଜାଣୁ ନ ଥିଲେ । ସେ ଏହା ଜାଣି ପାରିଥିଲେ ସମ୍ଭବତଃ ଆମକୁ ବିଭିନ୍ନ କାମର ଦାୟିତ୍ୱ ଦେଇ ଦୂରେଇ ଦେଇଥାନ୍ତେ । ସେଥିପାଇଁ ଏ ବାବଦରେ ବେଳେବେଳେ ଆମକୁ ଛଳନାର ଆଶ୍ରୟ ନେବାକୁ ପଡୁଥିଲା । ସେଥିପାଇଁ ଦଣ୍ଡଭୋଗ ଯେ ଗଚ୍ଛିତ ରହିଛି ତାହା ଜାଣି ସୁଦ୍ଧା ଏହା କରିଥିଲୁ । ଏହାକୁ ମୋହ କୁହାଯାଇ ପାରେ । କାରଣ ଅସଲ ତତ୍ତ୍ୱାବଧାରକ ତ ଅଦୃଶ୍ୟଭାବରେ ସବୁବେଳେ ତାଙ୍କ ପାଖେ ପାଖେ ରହିଥିଲେ ।

କୁରୁକ୍ଷେତ୍ର ବାହୁଡ଼ାଣି ଦିଲ୍ଲୀରେ ଜୟପ୍ରକାଶ ନାରାୟଣଙ୍କ ସହଧର୍ମିଣୀ ପ୍ରଭାବତୀ ଦେବୀ ଓଡ଼ିଶାରେ ଗାନ୍ଧିଜୀଙ୍କ ପଦଯାତ୍ରା ବେଳେ ତାଙ୍କ ସହିତ ଥିବାରୁ ତାଙ୍କ ସହିତ ଘନିଷ୍ଠତା ସୃଷ୍ଟି ହୋଇଥିଲା । ଜୟପ୍ରକାଶଜୀ ତ ସହଜେ ଆମର । ପାଟନା ଯାଇ ଆମେ ଜେ.ପି.ଙ୍କୁ ଭେଟିଲୁ । ଅତ୍ରି, ଅନସୂୟା ପରି ଏହି ଦମ୍ପତି ଦେହାସକ୍ତିରୁ ସମ୍ପୂର୍ଣ୍ଣ ମୁକ୍ତ ଥାଇ କିପରି ଅଭିନ୍ନ ହୃଦୟ ଥିଲେ ତାହା ଦୁହିଁଙ୍କୁ ଏକତ୍ର ଦେଖିଲା ମାତ୍ରେ କଳି ହୋଇଯାଏ । ଯେତେବେଳେ ଜୟପ୍ରକାଶଜୀ ପ୍ରମାଣ କରିବାକୁ ଚାହାନ୍ତି ଯେ ପ୍ରଭାବତୀଙ୍କ ଟିକ୍‌ନିଖ୍ ବ୍ୟବସ୍ଥା ତାଙ୍କ ପାଇଁ କିଛି ଦରକାର ନାହିଁ ଏବଂ ପ୍ରଭାବତୀଙ୍କ ବ୍ୟବସ୍ଥା ବିନା ହରବର ହୁଅନ୍ତି, ତାଙ୍କର ସେହି ସ୍ଥିତିକୁ ଆମେ ମନପ୍ରାଣେ ଉପଭୋଗ କରୁ । ଥରେ ଜୟପ୍ରକାଶଜୀ ପ୍ରଭାବତୀଙ୍କୁ ସାଙ୍ଗରେ ନ ନେଇ ବିହାର ଗସ୍ତରେ ବାହାରି ଗଲେ । ରେଳ ଷ୍ଟେସନରୁ ଓହ୍ଲାଇ ଅଭ୍ୟର୍ଥନାକାରୀଙ୍କ ଫୁଲମାଳ ପିନ୍ଧା ସାଦର, ସମ୍ଭାଷଣ ପରେ ଯାଇ ସେ ଗାଡ଼ିରେ ବସିଗଲେ । ଦରକାରୀ କାଗଜପତ୍ର ମୁଣାଟି ରେଳଗାଡ଼ିରେ ରହିଗଲା । ରେଳଗାଡ଼ି ଷ୍ଟେସନ ଛାଡ଼ିବା ପରେ ଏହା ଆବିଷ୍କୃତ ହେଲା । ଯାହାହେଉ, ସେ କାଗଜପତ୍ରକୁ ବହୁ କଷ୍ଟରେ ଉଦ୍ଧାର କରାଗଲା । ଜୟପ୍ରକାଶଜୀଙ୍କର ସ୍ୱହସ୍ତରେ କ୍ଷୌର କର୍ମଟି ଲକ୍ଷ୍ୟଣୀୟ । ଈଷତ୍ ଉଷ୍ମ ପାଣିରେ କ୍ଷୌରକର୍ମ ସାରି ଟିକିଏ କ୍ରିମ୍ ଲଗାଇବା ବେଳେ ତାଙ୍କର ମୁଖମୁଦ୍ରା ସୁଖସ୍ୱପ୍ନରେ ବିଭୋର ଥିବା ପରି ଦିଶେ । ରହଣୀରେ ପହଞ୍ଚିବା ପରେ ସେ ଟିକିଏ ଉଷ୍ମ ପାଣି କ୍ଷୌର ହେବା ପାଇଁ ମାଗିଲେ । ''ବର୍ତ୍ତମାନ ଆଣି ଦଉଛି'' କହି ଜଣେ ଆଉ ଜଣକୁ ସେ ଜଣକ ଆଉଜଣକୁ ସେ ଜଣକ ଆଉ ଜଣକୁ ବରାଦ କରି ଏହିପରି ଦଶ ବାରଜଣ ସେ ପାଣି ଢ଼ାଳକୁ ଆଣିବା ପାଇଁ ଲାଗି ପଡ଼ିଲେ । ଶେଷରେ ପାଣି ଯେତେବେଳେ ଆସିଲା ସେ ପାଣିପାତ୍ର ଏତେ ମଇଳା ଯେ ଜୟପ୍ରକାଶଜୀ ତାକୁ ଆଡ଼େଇ ଥୋଇଦେଲେ ।

କ୍ଷୌରକର୍ମ ସରିବା ପରେ ଚା' ଆସିଲା । ପିଆଲା ଓ କପ୍ ବୋଧହୁଏ ତିଆରି ହେଲା ଦିନୁ ମଜା ହୋଇ ନାହିଁ । ସର୍ବାଙ୍ଗରେ ଚା' କଷ । ଛୁଁ ଛୁଁଆ ସ୍ୱଭାବର ଜୟପ୍ରକାଶଜୀ ସେ ଚା' ପିଆଲାରେ ଓଠ ଲଗାଇ ପିଆଲାଟି ଆଡ଼େଇ କରି ଥୋଇଦେଲେ । ଚା' ସରବତ୍ ପରି ମିଠା ଓ ଥଣ୍ଡା । ଜୟପ୍ରକାଶଜୀ ଜଣେ ଡ଼ାଏବିଟିସ୍ ରୋଗୀ । ପର ଗାଡ଼ିରେ ପ୍ରଭାବତୀଙ୍କୁ ଆଣିବାକୁ ଲୋକ ପଠାହେଲା ।

ପ୍ରିୟା ବିଚ୍ଛେଦ ବିଧୂର ଜୟପ୍ରକାଶ ବିଷର୍ଣ୍ଣତାର ପ୍ରତିମୂର୍ତ୍ତି ପରି ଦିଶୁଥାନ୍ତି । ରମାଦେବୀଙ୍କୁ ଦେଖିବାମାତ୍ରେ ଆଖିରୁ ଧାର ଧାର ଲୁହ ବୋହିଗଲା । ପ୍ରଭାର ଯନ୍ତ୍ରଣା ବହୁତ ବଢ଼ିଗଲା । ମୁଁ ଡ଼ାକ୍ତରଙ୍କୁ ଟେଲିଫୋନ କରିବା ପାଇଁ ଉଠି ଛିଡ଼ା ହେବାରୁ ପ୍ରଭା ତାକୁ ମୁଁ ଛାଡ଼ି ନ ଯିବାକୁ ମୋତେ ବାରମ୍ବାର କହିଲା । ମୁଁ ତା'କଥା ନ ମାନି ଟେଲିଫୋନ କରିବାକୁ ଚାଲିଗଲି । ଆସି ଦେଖିଲି –ପ୍ରଭା ନାହିଁ । ଏହି କଥା କେତେପଦ ସେ ବାରମ୍ବାର ଦୋହରେଇ ସାରି କହୁଥାନ୍ତି – ''ୟହୀ ତୋ କହାନୀ ହୈ'' ଆମେ ବିଦା ହେଲାବେଳକୁ କହିଲେ – ''ମନମୋହନଙ୍କୁ କହିବେ ସେ ମୋ ପାଖକୁ ଆସିବ ।''

ପୂର୍ବ ପ୍ରତିଶୃତି ଅନୁସାରେ ମେ ମାସ ଚାରି ତାରିଖରେ ମୁଁ ଗ୍ୱାଲିୟରରେ ପହଞ୍ଚିଲି । 'ଚମ୍ବଲଘାଟି ଶାନ୍ତି ମିଶନ୍'ର କର୍ମୀ ମୋତେ ରହଣୀ ସ୍ଥାନରେ ପହଞ୍ଚାଇ ଦେଲେ । ସର୍ବଶ୍ରୀ ନିର୍ମଳା ଦେଶପାଣ୍ଡେ, ସରୋଜ ଗୁପ୍ତା, ଇନ୍ଦାଆନନ୍ଦୀକର, ପ୍ରେମନାରାୟଣ ଶର୍ମା, ମଥୁରାପ୍ରସାଦ ନାମଦେବ ଓ ନାଥୁରାମ ଧାକଡ଼ ଏହି ପଦଯାତ୍ରାରେ ଥା'ନ୍ତି । ବିଛଣାପତ୍ର, ସର୍ବୋଦୟ ସାହିତ୍ୟ ବୋହିବା ପାଇଁ ଗୋଟିଏ ବଳଦ ଗାଡ଼ି ସାଙ୍ଗରେ ଥାଏ । ଚାଳକର ନାମ ରାମଦୀନ୍ । ମଧ୍ୟପ୍ରଦେଶର ଭୂତପୂର୍ବ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀମତୀ ଚନ୍ଦ୍ରକଳା ସହାୟ, ପ୍ରଖ୍ୟାତ ସର୍ବୋଦୟ କର୍ମୀ ମହାବୀର ଭାଇ ଓ ହେମଦେବ ଶର୍ମା ଥିଲେ ମୁଖ୍ୟ ଉଦ୍ୟୋକ୍ତା ।

ମେ ମାସର ପ୍ରଚଣ୍ଡ ଖରାରେ ଆମ ପଦଯାତ୍ରା ଆରମ୍ଭ ହେଲା । ଝାଞ୍ଜି ପିଟିବା –ଯାହାକୁ ସେମାନେ 'ଲୁ' କହନ୍ତି – ଦିନ ଦଶଟାରେ ଆରମ୍ଭ ହେଉଥିଲା । କ୍ରମେ ତା'ର ପରାକ୍ରମ ବଢ଼ି ଚାଲିଲା । ଦିନେ ଦିନେ ଲଗାତାର ଅଠଚାଳିଶ ଘଣ୍ଟା 'ଲୁ' ବହିଲା । ଖରାକୁ ଏଡ଼େଇବାକୁ ଭୋର୍ ସାଢ଼େ ତିନିଟାରେ ଉଠି ବାଟଚଲା ଆରମ୍ଭ କଲୁ । ତଥାପି ସେ ଗରମ ପବନରେ ତଣ୍ଟି ଶୁଖି ଯାଉଥାଏ, ମୁହଁ ପୋଡ଼ିଗଲା ପରି ଲାଗୁଥାଏ । କଞ୍ଚାପିଆଜ ହାତରେ ମୁଠେଇ ଶୁଖିଲା ବରକୋଳି ଗୁଣ୍ଡ ପାଣିରେ ଗୋଳେଇ ପିଇ ଆମେ ସେ 'ଲୁ' ସଙ୍ଗେ ଯୁଝିଲୁ । ଗନ୍ତବ୍ୟ ସ୍ଥାନରେ ପହଞ୍ଚିବା ପରେ ଗାଁରେ ସାହି ସାହି

ବୁଲି ଆମ ଆଗମନ ବାର୍ତ୍ତା ଆମେ ସମସ୍ତଙ୍କୁ ଜଣାଇ ଦେଉଁ । ଗାଁ ସ୍କୁଲ, ପଞ୍ଚାୟତ ଘର, ମଠ ବା ଗାଁ ମୁଖିଆଙ୍କ ଘର ଯେଉଁଠି ଆମ ରହିବା ସ୍ଥିର ହୁଏ, ସେଠାରୁ କୂଅ ବା ନଦୀ ଦିନେ ଦିନେ ଏକ ବା ଦୁଇ କିଲୋମିଟର ଦୂର ହୋଇଯାଏ । ସେଠାରୁ ଗାଧୋଇ ଫେରିବା ବେଳକୁ ଦେହ ପୁଣି ତାତିଯାଏ, ଓଠ ଶୁଖିଯାଏ । ଖାଇବା ସ୍ଥାନ ମଧ୍ୟ ଦିନେ ଦିନେ ଦୂର ହୋଇଯାଏ । ଦିନେ ଦିନେ ଅଟା, ଡ଼ାଲି ସିଧା ମିଳେ, ଆମେ ନିଜେ ରାନ୍ଧି ଖାଉ ।

ଗାଁରେ ବୁଲିଲା ବେଳେ ସାନ ପିଲାଙ୍କୁ ଡ଼ାକି ଆଣି ଆମ ଭିତରୁ ଜଣେ ତାଙ୍କୁ କାହାଣୀ କହନ୍ତି, ଗୀତ ଶିଖାନ୍ତି, ଖେଳ ଖେଳାନ୍ତି । ଖରାବେଳେ ଘର ଘର ବୁଲି ରାମାୟଣ ଶୁଣିବା ପାଇଁ ସ୍ତ୍ରୀଲୋକଙ୍କୁ ଡ଼ାକିଆଣି 'ରାମଚରିତ ମାନସ'ରୁ ବଛା ବଛା ଅଂଶ ପାଠ କରି ସେମାନଙ୍କୁ ଶୁଣାଉ । ସେହି ବିଷୟ ସହିତ ଅନୁବନ୍ଧ ସ୍ଥାପନ କରି ଆମେ ଭାଷଣ ଦେଉ । ସନ୍ଧ୍ୟାରେ ହୁଏ ପୁରୁଷମାନଙ୍କର ପ୍ରାର୍ଥନା ସଭା । ସଭା ସରୁ ସରୁ ଦିନେ ଦିନେ ରାତି ଏଗାରଟା ବାରଟା ବାଜିଯାଏ । ପରଦିନ ଭୋର ସାଢ଼େ ତିନିଟାରୁ ଉଠୋ ମୁଶାଫିର ବାଁଧୋ ଗଠରିଆ ।

ଜଗନ୍ନାଥ ଧାମ, କାନ୍‌ପୁର, ଉଆର୍ଦ୍ଧା ଭଳି ଦୂର ରାଇଜରୁ ଆସି ଏପରି ଭାବରେ ସ୍ତ୍ରୀଲୋକ ଦଳବଦ୍ଧ ହୋଇ ବୁଲୁ ଥିବାର ଦେଖି ଲୋକେ ଆଚମ୍ବିତ ହୁଅନ୍ତି । ଅନେକ ସ୍ତ୍ରୀଲୋକ ଏ ପଦଯାତ୍ରା ଦ୍ୱାରା ପ୍ରଭାବିତ ମଧ୍ୟ ହୁଅନ୍ତି । ପର୍ଦ୍ଦା ମାନି ଚଳୁଥିବା ହେତୁ ଏ ଅଞ୍ଚଳର ସ୍ତ୍ରୀଲୋକ ନିଜ ପରିବାର ଛଡ଼ା ଅନ୍ୟ କୌଣସି ବିଷୟରେ ଭାବୁ ନ ଥିଲେ । ଦିନେ ଯେ ଏ ପାର୍ଥିବ ପତିଗୃହ ଛାଡ଼ି ପରମପତିଙ୍କ ନିକଟକୁ ଯିବାକୁ ହେବ ଏବଂ ସେତେବେଳେ ପରୋପକାର ଓ ଈଶ୍ୱର-ଚିନ୍ତା ଆମର ପାଥେୟ ହେବ ଏହି ବିଚାରଟା ସେମାନଙ୍କର ହୃଦୟକୁ ଛୁଇଁଲା । ପୁଣି ସମାଜରେ ଶୀଳ ରକ୍ଷା ପାଇଁ, ସମାଜର କଲ୍ୟାଣ ପାଇଁ ନାରୀ ଯେ ନିଜର ପ୍ରିୟଜନ ବାପ ମାଆ ଭାଇ ବନ୍ଧୁ କୁଟୁମ୍ବ, ତଥା ଆଜନ୍ମର ପରିବେଶକୁ ଛାଡ଼ି ପରଘରକୁ ଆସି ସେବା ଓ ଆତ୍ମତ୍ୟାଗ ବଳରେ ସେ ପରିବାରକୁ ଚଳାଉଛି ଏବଂ ଏହି ଆତ୍ମତ୍ୟାଗ, ସେବା ଓ ପରକୁ ଆପଣାର କରିପାରିବା ଶକ୍ତି ବଳରେ ନାରୀ ମଧ୍ୟ ସମାଜରେ ଶାନ୍ତିରକ୍ଷାରେ ସହାୟକ ହୋଇ ପାରିବ, ଏ ବିଚାର ସେମାନଙ୍କ ମନକୁ ଘେନୁଥାଏ । ମହିଳାମାନେ ଏକତ୍ର ହୋଇ ପ୍ରାର୍ଥନା କରିବା, ସଦ୍‌ଗ୍ରନ୍ଥ ପଢ଼ିବା, ନିଜର ସାଇପଡ଼ିଶାଙ୍କ ସୁଖଦୁଃଖରେ ଭାଗି ହେବା, ଗାଁ କଳି ଗାଁରେ ଭାଙ୍ଗିବା ପାଇଁ ପୁରୁଷକୁ ପ୍ରବର୍ତ୍ତାଇବା, ମଦ, ଜୁଆ ଆଦି ବ୍ୟସନରୁ ଗାଁକୁ ମୁକ୍ତ କରିବା

ଆଦି ଥାଏ ଆମର ଆଲୋଚ୍ୟ ବିଷୟ । ପୁରୁଷଙ୍କ ସହିତ ବେଶୀ କଥାବାର୍ତ୍ତା ହୁଏ ଚମ୍ବଲର ମୁଖ୍ୟ ସମସ୍ୟା ଦସ୍ୟୁ ଓରଫ ବାଗୀ-ସମସ୍ୟା ଉପରେ ।

ଭିଣ୍ଡି ଓ ଗ୍ୱାଲିଅର ଜିଲ୍ଲାରେ ଆମେ ପଦଯାତ୍ରା କଲୁ । ଏ ଅଞ୍ଚଳର ପୁରୁଷମାନେ ସାଧାରଣତଃ ଛଅଫୁଟ ଉଚ୍ଚ ହୁଅନ୍ତି, ସମସ୍ତଙ୍କର ବଡ଼ ବଡ଼ କାଇଜରୀ ନିଶ । ଅଧିକାଂଶଙ୍କ ନୟନ ଅରୁଣାଭ । ସେଥିପାଇଁ ନିର୍ମଳା ବହନ୍ କାନରେ ଫୁସ୍‌ଫୁସ୍ କରି କହନ୍ତି - ଏମାନେ ସମସ୍ତେ ମୋତେ ମାଧୋ ସିଂହ, ମୋହର ସିଂହ ପରି ଦିଶୁଛନ୍ତି । ମୋଟ ଉପରେ ରାଜପୁତ୍‌ର ତେଜମିତା ସାଙ୍ଗକୁ ତୁରକ୍ ମିଜାଜ୍ । ଗାଁ ଗହଳରେ ସୁଦ୍ଧା କାନ୍ଧରେ ବନ୍ଧୁକ । ସଭାରେ ବସିଥିବା ବେଳେ ମଧ୍ୟ ବନ୍ଧୁକଟିକୁ କୁଣ୍ଢେଇଥିବେ- ଏ ଦୃଶ୍ୟ ଦେଖିବାରେ ଆଖି ଅଭ୍ୟସ୍ତ ନ ଥିବାରୁ ଅଡୁଆ ଅଡୁଆ ଲାଗିବ ନା ନାହିଁ ?

ନିର୍ମଳା ଦେଶପାଣ୍ଡେ ତିନିଦିନ ପରେ ବିଦା ହୋଇଗଲେ । ଆମେ ସେନ୍ଧ, କୁଆଁରୀ ଓ ଚମ୍ବଲ ନଦୀ କୂଳର ଗିରିବର୍ତ୍ମ ଇଂରାଜୀରେ ଯାହାକୁ (ravine) ଓ ହିନ୍ଦୀରେ ବେହଡ଼୍ କହନ୍ତି, ସେହି ଅଞ୍ଚଳରେ ବୁଲିବା ଆରମ୍ଭ କଲୁ । ବର୍ଷାପାଣି ସୁଅ ମାଟିକୁ ତାଡ଼ି ନାଳି କରି ଧୋଇ ନେଇ ଯାଇଛି । ଶହ ଶହ ବର୍ଷ ଧରି ପ୍ରକୃତିରାଣୀଙ୍କର ଏ ମାଟିଧୂଆ ଯୋଜନା ଫଳରେ ଠାଆକୁ ଠାଆ ଶହେ, ଦୁଇଶହ, ପାଞ୍ଚଶହ ଫୁଟ ଉଚ୍ଚର ମାଟିମୁଣ୍ଡିଆ ସୃଷ୍ଟି ହୋଇଛି । ଏହି ଅସଂଖ୍ୟ ମାଟିମୁଣ୍ଡିଆ ଚାରିପଟେ ଗୋଲଖଧନ୍ଦା ବା ଭୂଲଭୂଲେୟା ଚକ୍‌କର ପରି ଅସଂଖ୍ୟ ବାଟ ସେ ବର୍ଷାପାଣି ବହି ବହି ଫିଟିଛି । ସେ ମାଟି ମୁଣ୍ଡିଆ ଯୋଗୁ ପାଞ୍ଚଫୁଟ ଦୂରରେ ଠିଆ ହୋଇଥିବା ଲୋକକୁ ସୁଦ୍ଧା ଦେଖିବା ସମ୍ଭବ ନୁହେଁ । ବାଟବଣା ହେବାର ଭୟ ପଦେ ପଦେ । ଏହି ଗିରିବର୍ତ୍ମ ବା ବେହଡ଼୍ ଥିଲା ଚମ୍ବଲର ଦସ୍ୟୁମାନଙ୍କର ଲୀଳାଭୂମି । କି ସୁନ୍ଦର ସେ ଗିରିବର୍ତ୍ମ ! ଶହ ଶହ ମୟୁର ମୟୂରୀ ମୁଣ୍ଡିଆ ଉପରେ ଗଛ ଉପରେ ବସିଥିବେ, ସମତଳ ଭୂମିରେ ବୁଲୁଥିବେ । ବଣିଠାରୁ ସୁନ୍ଦର ବଣିଜାତୀୟ ଗଲ୍‌ଭାଲ୍ ଚଢ଼େଇ, ତିତ୍ତିର୍, ସାତଭାୟା, ଚଟିଆ ଚଢ଼େଇଙ୍କ ସ୍ୱାଗତିକା ସାଙ୍ଗକୁ କପୋତର ଶୋକଗୀତି । ନାଲି ମଖମଲ ଟୋପି ସାଙ୍ଗକୁ ପାଉଁଶିଆ ରଙ୍ଗର ଉପରାଣ ପକାଇ ସାରସ ଗ୍ରୀବା ଟେକି ଆମକୁ ଅଭ୍ୟର୍ଥନା କରନ୍ତି । ବେହଡ଼ରେ ଘଞ୍ଚ ବଣ ନାହିଁ । ଖରି ଜାତୀୟ ଗୋଟାଏ ପ୍ରକାର ଘାସ ଖରା ଝାଞ୍ଜିରେ ପାଚିଲା ପଡ଼ି ଯାଇଥାଏ । କୋଉଠି କେମିତି ଗୋଟାଏ ଦୁଇଟା ଅର୍କ ବୁଦା, କରେଲୀ ନାମକ କଣ୍ଟାବୁଦା - ତା' ଫଳ ନାଁ ଟେଣ୍ଟି । ଟେଣ୍ଟି ଆଚାର ହୁଏ । ଗୋଟାଏ ଅଧେ କାନକୋଳି

କଣ୍ଟା ଗଛ, କଣ୍ଟା କୁସୁମ ଗଛରେ ବାସନ୍ତୀ ରଙ୍ଗର ଫୁଲ ସେ ରିକ୍ତ ବେହଡ଼୍‌ରେ ମନଲୋଭା ।

ବେହଡ଼୍ ପାରି ହୋଇ ଗାଁ ଭିତରେ ପଶିବା ମାତ୍ରେ ତନ୍ୱୀ ରାଜପୁତ୍ ନନ୍ଦିନୀଙ୍କ ତନୁଶ୍ରୀ ଓ ସୁମଧୁର କଣ୍ଠସ୍ୱର ଅଧା ପଥଶ୍ରମ ହରି ନିଏ । ମଥାରେ କଳସୀ ଧରି ଦୂରବାଟରୁ ପାଣି ଆଣୁଥିବାରୁ ଗ୍ରୀବାଭଙ୍ଗୀ ଅପୂର୍ବ, ମୁଣ୍ଡିଆ ଚଢ଼ା ଉତରା ଅନିର୍ବାର୍ଯ୍ୟ ହୋଇଥିବାରୁ ସମସ୍ତେ ସୁମଧ୍ୟମା ଓ କୃଶୋଦରୀ । ଗାଁରେ ପଶିବା ମାତ୍ରେ ବୀଣାଜିଣା ସ୍ୱରରେ ପଚାରନ୍ତି - କହାଁ କି ହୌଁ ।'' ବେଳେବେଳେ କହିଦେବାକୁ ମନ ହୁଏ ''ନ ଘରକୀ ନ ଘାଟ୍‌କୀ'' । ରାମାୟଣ ପାଠ ପରେ ଭଜନ ବୋଲିବାକୁ କହିଲେ ଅଧିକାଂଶ ସ୍ଥାନରେ ସେମାନେ ମୀରାବାଈଙ୍କ ଭଜନ ଶୁଣାନ୍ତି -

ମୀରା ତେନେ ନୈନା ଗବାୟଁ ରୋୟରୋୟକେ
ଫଂଟୀ ନ ମୈଲୀ ହୋୟ ତେରୀ ଚୁନରିୟା
ନୈନା ଗବାୟଁ ରୋୟରୋୟକେ
ଜହର କେ ପ୍ୟାଲେ ରାଣାଜୀନେ ଭେଜେ
ପିୟେ ତେନେ ଅମରିତ ହୋୟ
କାଁଟନ ଶେଜେ ରାଣାଜୀନେ ଭେଜେ
ମୀରା ପୌଁଢ଼ତ ଫୁଲକେ ହୋୟ
ଘଂଗରୁ ପହନ ମୀରା ନାଚନ ଲାଗି
ସିର ଘୁଁଘଟ ନ ହୋୟ
ଚାର ଚୋର ଘର ରାଣାଜୀନେ ଭେଜେ
ମୀରା ମିଲତେ ହି ଭାଇ ହୋୟ
ସାଁପକୀ ପିଟାରୀ ରାଣାଜୀନେ ଭେଜେ
ମୀରା ପୂଜେ ଶାଲଗ୍ରାମ୍ ହୋୟ ।

ଏ ଭଜନ ବୋଲିବା ପରେ ଆତ୍ମଶକ୍ତି ବା ଆତ୍ମଜ୍ଞାନ ଦ୍ୱାରା ହିଁ ନାରୀ ନିଜର ଶୀଳ ରକ୍ଷା କରି ପାରିବ -ଏ କଥାଟା ବୁଝାଇବା ସହଜ ହୋଇଯାଏ ।

ଦୁଃଖସୁଖ ହେବାକୁ, ନିଜର ପାରିବାରିକ ସମସ୍ୟା ଶୁଣାଇବାକୁ ସେମାନେ ଉନ୍ମୁଖ ହୋଇ ରହିଥାନ୍ତି । ଦସ୍ୟୁମାନେ ଆତ୍ମସମର୍ପଣ କରିବା ପୂର୍ବରୁ ସେମାନେ କିପରି

ସବୁବେଳେ ଭୀତତ୍ରସ୍ତ ହୋଇ ରହୁଥିଲେ ସେ କଥା ମଧ୍ୟ କହନ୍ତି । ଅଢ଼ୋଖର ଗାଁର ମହିଳା ସଭାରେ ଗାଁ ଝିଅ ବୋହୂ କହିଲେ, ଆମେ ସାରା ରାତି ପାଳି କରି ଚେଉଁଥିଲୁ । ଟିକିଏ ଖୁଡ଼ଖାଡ଼୍ ହେଲେ ମୂଷାଟିଏ ଚାଲିଗଲେ ବା ପତ୍ରଟିଏ ସୁଦ୍ଧା ଝଡ଼ିବା ଶବ୍ଦ ହେଲେ ଦସ୍ୟୁ ଆସିଗଲେ ଭାବି ବରଡ଼ା ପତ୍ର ପରି ଥରୁଥିଲୁ । ଦିନରେ ସୁଦ୍ଧା ଆମେ ପଦାକୁ ବାହାରୁ ନ ଥିଲୁ । ଥରେ ସ୍ୱରୂପ ସିଂ ଦଳ ଏ ଗାଁ ଉପରେ ତିନିଘଣ୍ଟା କାଳ ଗୁଳି ବର୍ଷା କଲେ । ଲୋକେ ଘର ଭିତରେ ପେଟେଇ କରି ପଡ଼ି ରହିଥାନ୍ତି । ଦସ୍ୟୁଙ୍କ ଭୟରେ ସ୍ତ୍ରୀଲୋକମାନେ ଲୁଗାରେ ମଳତ୍ୟାଗ କରି ପକାନ୍ତି, କାରଣ ଲଖନ୍ ସିଂ ପରି କେତେକ ଚରିତ୍ରବାନ୍ ଡ଼କାୟତଙ୍କୁ ଛାଡ଼ିଦେଲେ ଅଧିକାଂଶ ବୁରାଚାରୀ ସ୍ତ୍ରୀଲୋକଙ୍କ ମର୍ଯ୍ୟାଦା ନଷ୍ଟ କରନ୍ତି ।

ଏତ ଗଲା ସ୍ତ୍ରୀ ଲୋକଙ୍କ କାହାଣୀ । ପୁରୁଷମାନେ କାନ୍ଧରେ ବନ୍ଧୁକ ପକାଇ ସୁଦ୍ଧା କିପରି ଆତଙ୍କିତ ହୋଇ ରହୁଥିଲେ, ତାହା ସେମାନେ ବର୍ଣ୍ଣନା କରନ୍ତି । ଡ଼ବ୍କା ଗାଁର ପଟେଲ୍ କୈଳାସ ନାରାୟଣଜୀ କହିଲେ - ମୋହର ସିଂ ଦଳର ଡ଼କାୟତ ରାମସେବକ ଯୋଗୁଁ ଆମେ ଆଠବର୍ଷ କାଳ ଉପର ମହଲାରୁ ତଳ ମହଲାକୁ ଓହ୍ଲାଇ ନ ଥିଲୁ । ଯୁବତୀ ଝିଅ ବୋହୂଙ୍କୁ ଗ୍ୱାଲିଅର ସହରରେ ରଖି ବୁଢ଼ୀ ମା' ଓ ତିନିଭାଇ ଗାଁରେ ରହୁଥିଲୁ । ପାଇଖାନାକୁ ଗଲାବେଳେ ସୁଦ୍ଧା ଜଣେ ବନ୍ଧୁକ ଧରି ଜଗୁଥିଲା । ମୋର ୧୨୦ ବିଘା ଜମି ଜଙ୍ଗଲ ପାଖିଆ । ଡ଼କାୟତଙ୍କ ଭୟରେ ସେ ଜମି ପଡ଼ିଆ ପଡ଼ିଥାଏ । ମୋହର ସିଂ ଦଳ ପାଖ ଜଙ୍ଗଲକୁ ଆସିଲେ ଗାଈଆଳ ପିଲାଏ ଆସି ଖବର ଦିଅନ୍ତି । ସେ ସମୟର ଆତଙ୍କ କଳ୍ପନା କରି ହେବ ନାହିଁ । ରାମସେବକର ଜମିବାଡ଼ି ଥିଲା । ସେ ଗାଈ ମଇଁଷୀ ଚୋରୀ କରି ପୁଲିସ ଭୟରେ ବେହଡ଼କୁ ଚାଲିଯାଇ ଡ଼କାୟତ ପାଲଟି ଗଲା । ଶ୍ରୀମତୀ ଚନ୍ଦ୍ରକଳା ସହାୟ କହିଲେ, ମାନ ସିଂ ଅମଳରେ ଗ୍ୱାଲିଅର ସହରର ଲୋକେ ପଦାକୁ ବାହାରିବାକୁ ଡ଼ରୁଥିଲେ । ପେଟ୍ରୋଲ୍ ପମ୍ପ ପାଖ ମୁକ୍ତେଶ୍ୱର ମହାଦେବଙ୍କ ମେଳାରୁ ମାନସିଂ ଦଳ ଦଶ ବାରଜଣଙ୍କୁ ଅପହରଣ କରି ନେବା ଫଳରେ ସହରରେ ଆତଙ୍କ ବ୍ୟାପିଗଲା । ଶ୍ରୀମତୀ ସହାୟ କହୁଥାନ୍ତି-ମାନସିଂ ଯେଉଁଦିନ ପୁଲିସ ଗୁଳିରେ ହତ ହେଲା, ତାକୁ ଚିହ୍ନଟ କରିବା ପାଇଁ କଂପୁ ବସ୍‌ଷ୍ଟାଣ୍ଡ୍ ପଡ଼ିଆରେ ତା'ର ମୃତ ଦେହ ରଖାଗଲା । କେହି ତାକୁ ଚିହ୍ନଟ କରିବାକୁ ଆସିଲେ ନାହିଁ । ଶେଷରେ ପୁଲିସ ଗାଡ଼ି ପଠେଇ ତା' ସ୍ତ୍ରୀ ରୁକ୍ମିଣୀକୁ ଆଣିଲେ । ସେ ଶବ ଉପରେ କଚାଡ଼ି ପଡ଼ି ବାହୁନିବାରୁ ଶବ ଚିହ୍ନଟ ହେଲା ।

ମାନସିଂ ହତ ହେବାର ବହୁ କାଳ ଗତ ହୋଇ ଯାଇଥିଲେ ହେଁ ତା' ପ୍ରତି ଗୋଟାଏ ଅଦ୍‌ଭୂତ ପ୍ରକାର ଶ୍ରଦ୍ଧା ଏ ପର୍ଯ୍ୟନ୍ତ ଲୋକଙ୍କ ମଧ୍ୟରେ ରହିଛି । ମାନସିଂର 'ପିପୁଲ୍‌ସ୍ କୋର୍ଟ'ର ନ୍ୟାୟବିଚାର ପ୍ରତି ସେଠାରେ ସମସ୍ତେ ଶ୍ରଦ୍ଧାବାନ । ରହାଓ୍ୱଲୀର ପଟଓ୍ୱାରୀ ସୀତାରାମ ଶ୍ରୀବାସ୍ତବ କହିଲେ - ମାନସିଂ, ହରଗୋବିନ୍ଦ ସିଂ, ରୂପା ଓ ସୁଲତାନ ସ୍ତ୍ରୀଲୋକଙ୍କ ଉପରେ ଅତ୍ୟାଚାର କରୁ ନ ଥିଲେ । ମାନସିଂ ଭାରି ଦୟାଳୁ । ସେ ଦଳବଳ ଘେନି କୌଣସି ଗାଁ ଭିତରେ ପଶିବା ମାତ୍ରେ ଚୌକିଦାରକୁ ଡ଼କେଇ ଆଣି କହିଦିଏ ଯେ ତୁ ପୁଲିସ୍‌ରେ ଏତଲା ଦେଇଦେବୁ ଯେ ମାନସିଂ ଏ ଗାଁକୁ ଆସିଥିଲେ । ଏତଲା ନ ଦେଲେ ପୁଲିସ୍ ତୋତେ କଷ୍ଟ ଦେବ ।

ଥରେ ଗୋଟିଏ ଗାଁ ମୁଣ୍ଡରେ ପହଞ୍ଚି ମାନସିଂ ଖାଇବାପାଇଁ ଅଟା ମଗାଇଲା । ତାରି ଦଳର ଡ଼କାଏତ ଗାଁରେ ପଶି ଗହମ ଅଟା ମାଗିଲେ । ସେ ଅଞ୍ଚଳର ସାଧାରଣ ଲୋକେ ଜୁଆରୀଅଟାରେ ରୁଟି ଖାଆନ୍ତି । କେବଳ ପଟେଲ ଘରେ ଗହମ ଅଟା ଥିଲା । ସେ ପାଞ୍ଚ ସେର ଗହମ ଅଟା ଦେଲେ । ମାନସିଂ ଗହମ ଅଟା ଦେଖି କହିଲା- ଗହମ ଅଟା ତ ଲୋକେ ପର୍ବପର୍ବାଣୀରେ ଖାଆନ୍ତି । ତମେ କାହିଁକି ଗହମ ଅଟା ଆଣିଲ ? ଯାଅ ଜୁଆରୀ ବା ବାଜରା ଅଟା ମାଗି ଆଣ । ଏ ଅଟା ଫେରାଇ ଦିଅ ।

ଆଉ ଥରେ ଜଣେ ଲୋକ ଗହଣା, ଟଙ୍କା ଧରି ତା ସ୍ତ୍ରୀକୁ ଆଣିବାକୁ ଶ୍ୱଶୁର ଘରକୁ ଯାଉଥିଲା । ତିନିଜଣ ଦସ୍ୟୁ ତା'ଠାରୁ ଗହଣା ଓ ଟଙ୍କା ଛଡ଼େଇ ନେଇ କହିଲେ ଆମେ ହେଉଛୁ ମାନସିଂ, ସୁବେଦାର ସିଂ ଓ ତହସିଲଦାର ସିଂ । ସେ ଲୋକଟି ଚାରିଆଡ଼େ କହି ବୁଲିଲା ଯେ ମାନସିଂ ମୋ ସ୍ତ୍ରୀର ଗହଣା ନେଇଗଲା । ରୂପା ଏ କଥା ଶୁଣି ସେ ଲୋକକୁ ମାନସିଂ ପାଖକୁ ଧରି ନେଇଗଲା । ମାନସିଂ ସବୁ କଥା ଶୁଣି ପ୍ରକୃତ ଚୋରକୁ ଧରି ତା'ଠାରୁ ଗହଣା ଓ ଟଙ୍କା ଆଣି ଫେରାଇଲା ପୁଣି ପାଞ୍ଚଶହ ଟଙ୍କା ଉପହାର ଦେଇ କହିଲା - ମୁହିଁ ହେଉଛି ମାନସିଂ ।

ଦସ୍ୟୁ ଲାଖନ ସିଂର ଉଦାରତା ସମ୍ବନ୍ଧରେ ମଧ୍ୟ ଆମେ ଅନେକ କାହାଣୀ ଶୁଣିଲୁ । ସେ ସବୁ ଲେଖିଲେ ତ ଗୋଟାଏ ବିରାଟ ପୋଥି ହେବ । ପୁଣି ଦସ୍ୟୁଦ୍ୱାରା ଅପହୃତ ହୋଇଥିବା ବା ବନ୍ଦୀ ହୋଇଥିବା ଲୋକଙ୍କ କାହାଣୀ ତ ଆଉ ପ୍ରକାରେ । ଦବୋହ ରହଣୀରେ ରାମଦାସ ତେରାସ୍‌ଦିୟ । ତାଙ୍କ ଅଭିଜ୍ଞତା ଶୁଣାଇଲେ - ଗୋଟାଏ ବିଭାଘର କାମରେ ସେ ତାଙ୍କ ଶଳା, ତାଙ୍କ ସମୁଧୀ ଓ ସମୁଧୀଙ୍କ ସମୁଧୀ ସାଙ୍ଗରେ ବସ୍‌ରେ ବସି ଝାନ୍‌ସି ଆଡ଼େ ଯାଉଥିଲେ । ବାଟରେ ଡ଼କାଏତ

ହାବୁଡ଼ିଲେ । ସଡ଼କ ଦୁଇ ପାଖରୁ ଗୁଳି ଚାଲିଲା । ବସ୍ ଚକ ଫାଟିଲା । ଡ୍ରାଇଭର ଓ କ୍ଲିନର ମରିଗଲେ । ସମୁଧୀ ମଧ୍ୟ ମଲେ । ଶଳାଙ୍କ ହାତରେ ତିନିଟା ଗୁଳି ବାଜିଲା । ରାମଦାସଙ୍କ ଚିବୁକରେ କାଚ ପଶି ସେ ଲହୁଲୁହାଣ ହେଲେ । ଡ଼କାଏତ ଆଠଜଣଙ୍କୁ ଧରି ନେଇଗଲେ । ବଣରେ ସେମାନେ ଦିନକୁ ଦଶ ପନ୍ଦର ମାଇଲ ଚାଲନ୍ତି । ଏ ଆଠଜଣ ମଧ୍ୟ ଚାଲନ୍ତି । ସଡ଼କରେ ଚାଲିଲେ ପାଦ ଚିହ୍ନ ରହିଯିବ ବୋଲି ସେମାନେ ଅମଡ଼ା ବାଟରେ କଣ୍ଟାଝଂଟା ନ ମାନି ଚାଲନ୍ତି । ସେମାନଙ୍କର ବଢ଼ିଆ ମୋଟା ଖାକୀ ପୋଷାକ, ଆଣ୍ଠୁ ଲଗାୟତ ବୁଟ୍ । ବିଚରା ରାମଦାସ ଗୋଡ଼ରେ କଣ୍ଟା ପଶି ଅବସ୍ଥା କାହିଲ ହୋଇଯାଏ । ଏଇଟା ୧୯୭୧ ମସିହା ଆଶ୍ୱିନ ମାସର ଘଟଣା । ଅଠଚାଳିଶ ଦିନକାଳ ସେମାନେ ଏହିପରି ସେ ଡ଼କାଏତଙ୍କ ସାଙ୍ଗରେ ବୁଲିଲେ । ମଝିରେ ମଝିରେ ମାରଧର କରୁଥାନ୍ତି । କିନ୍ତୁ ରାମଦାସଙ୍କୁ ମାରନ୍ତି ନାହିଁ । କାରଣ ସେ ଦଳର ସର୍ଦ୍ଦାର ପଞ୍ଚମ ସିଂକୁ କାର୍ତ୍ତିକ ନିଗଡ଼ା ଜ୍ୱର ହେଲା । ରାମଦାସଙ୍କ ଟୁଟୁକା ଔଷଧ ଖାଇ ସେ ଜ୍ୱର ଛାଡ଼ିଲା । ସେଥିପାଇଁ ପଞ୍ଚମ ତାଙ୍କ ପ୍ରତି ପ୍ରସନ୍ନ ଥା'ନ୍ତି । ଦିନେ ତାଙ୍କ ସମୁଧୀଙ୍କ ସମୁଧୀ ଉପରେ ମାଡ଼ ହେଲା । ରାମଦାସ ପ୍ରତିବାଦ କରିବାରୁ ଜଣେ ଡ଼କାଏତ ତାଙ୍କୁ ଗୁଳି କରିବା ପାଇଁ ଲାଖ କଲା । ରାମଦାସ ଅତି ଦୁଃଖରେ କୁର୍ତ୍ତା ଖୋଲି ଦେଇ ଛାତି ଦେଖାଇ କହିଲେ-ଯେଉଁପରି ଦୁଃଖ ଦେଉଛ, ତାହାଠାରୁ ମରିଯିବା ଭଲ । ପଞ୍ଚମ ସିଂ ହସିକରି ଲାଖ କରିଥିବା ଲୋକକୁ ନିବର୍ତ୍ତାଇଲା । ଲକ୍ଷେ ଟଙ୍କା ଦେଲେ ରାମଦାସଙ୍କୁ ଛଡ଼ାଯିବ ବୋଲି କୁହାଗଲା । ଅନେକ ଦର କଷାକଷି ହୋଇ ଡ଼କାଏତଙ୍କୁ ତିରିଶ ହଜାର ପୁଣି ମଧ୍ୟସ୍ଥଙ୍କୁ ପାଞ୍ଚହଜାର ଟଙ୍କା ଦେଇ ରାମଦାସ ମୁକୁଳିଲେ ।

ଆତ୍ମ ସମର୍ପଣ କରିବା ପରେ ପଞ୍ଚମ ସିଂ ଗ୍ୱାଲିଅର୍ ସେଣ୍ଟ୍ରାଲ୍ ଜେଲ୍‌ରେ ଥା'ନ୍ତି, ମୁଁ ତାଙ୍କୁ ଦେଖିବା ପାଇଁ ହେମଦେବ ଭାଇଙ୍କ ସଙ୍ଗେ ଜେଲ୍ ଭିତରକୁ ଗଲି । ପଦଯାତ୍ରାରେ ଥିବାବେଳେ ମୁଁ ପଞ୍ଚମ ସିଂ ଗାଁକୁ ଯାଇ ତାଙ୍କ ଘର ଲୋକଙ୍କୁ ଓ ସେ ତିଆରି କରାଇଥିବା ଦେବୀ ମନ୍ଦିରକୁ ଦେଖି ଆସିଥିବା କଥା ପଞ୍ଚମ ସିଂଙ୍କୁ କହିଲି । ସେ ଛୋଟ ପିଲାପରି ମୋ ପଛେ ପଛେ ଜେଲ୍ ସାରା ବୁଲି ଗପ କରୁଥାନ୍ତି । ମାତାଜୀ ! ଆମେ ତ ପଶୁ ପାଲଟି ଯାଇଥିଲୁ । ସଜ୍ଜନ ଲୋକଙ୍କ ସଙ୍ଗେ ମିଶିବା ଆଶା କ'ଣ ଆମର ଆଉ ଥିଲା ! ଜୟପ୍ରକାଶ ନାରାୟଣଙ୍କ ଯୋଗୁ ଆପଣମାନଙ୍କୁ ଭେଟିଲୁ, କଥାବାର୍ତ୍ତା ହେଲୁ, ପାଖରେ ବସିଲୁ ।

ପଞ୍ଚମ, ସ୍ୱରୂପ ଓ ମୋହର ହେଉଛନ୍ତି ଅଭିନ୍ନ ହୃଦୟ ବନ୍ଧୁ । ଆତ୍ମସମର୍ପଣ କଥା ପଡ଼ିଲାରୁ ସେମାନେ ଆପଣା ଭିତରେ ସ୍ଥିର କରିଥିଲେ ଯେ ଆଗ ମୋହର ଜେ.ପି.ଙ୍କୁ ଭେଟିବ, ଯଦି ସେତେବେଳେ କେହି ତା' ପ୍ରତି ବିଶ୍ୱାସଘାତକତା କରିବ, ତେବେ ସ୍ୱରୂପ ତା'ର ପ୍ରତିଶୋଧ ନେବ । ଯଦି ସେପରି କିଛି ନ ଘଟିବ ତେବେ ମୋହର ଓ ସ୍ୱରୂପ ପଗଡ଼ିବଦଳା ଭାଇ ହୋଇଥିବାରୁ ଏକାସାଙ୍ଗରେ ଆତ୍ମସମର୍ପଣ କରିବେ । ଯଦି ସେତେବେଳେ କେହି ଦଗା ଦେବ ତେବେ ପଞ୍ଚମ ତା'ର ପ୍ରତିଶୋଧ ନେବ । ତାହା ଯଦି ନ ଘଟିଲା ତେବେ ମୋହର ଖବର ଦେଲେ ପଞ୍ଚମ ଆତ୍ମ ସମର୍ପଣ କରିବ । ଧନ୍ୟ କହିବ ଏ ସଂଗଠନକୁ !! ପଞ୍ଚମ ସିଂ ପୁଣି ଆତ୍ମ ସମର୍ପଣ କରିବା ପୂର୍ବରୁ ତା' ଦେବୀ ମନ୍ଦିରରେ ପୂଜା ଓ ଖାଣ୍ଟି ଘିଅଦୀପ ଜାଳିବାର ବନ୍ଦୋବସ୍ତ କରିବା ପାଇଁ ଜମି କିଣି ଖଞ୍ଜା କରିଦେଇ ଆସିଲା ।

ଏ ଅଞ୍ଚଳର ଲୋକେ ସାମାନ୍ୟ କଥାରେ ଉତ୍ତେଜିତ ହୋଇ ମଣିଷକୁ ଜୀବନରେ ମାରି ଦିଅନ୍ତି । ତାଙ୍କର ନିଜ ଜୀବନକୁ ସୁଦ୍ଧା ଖାତର ନାହିଁ । ଏ ପ୍ରକାର ବୃତ୍ତି କାହିଁକି ଏଠାରେ ସୃଷ୍ଟି ହୋଇଛି ତାହା ଜାଣିବା ପାଇଁ ଆମେ ପରୋକ୍ଷ ଭାବରେ ଅନେକଙ୍କ ସଙ୍ଗେ ଆଲୋଚନା କରୁ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ମତରେ ଏ ଅଞ୍ଚଳରେ "ଅଲ୍ଲାହ" ନାମକ ଯେଉଁ ପୋଥି ବର୍ଷାଋତୁରେ ପାଠ କରିବାର ପ୍ରାଚୀନ ପରଂପରା ରହିଛି, ସେଥିରେ କେବଳ ଯୁଦ୍ଧ, ପ୍ରତିଶୋଧ ଆଦିର ରୋଚକ ବର୍ଣ୍ଣନା ରହିଛି । ତାହାକୁ ଶୁଣି ଶୁଣି ଲୋକଙ୍କ ମତିଗତି ଏପରି ହୋଇଛି । ଆମେ ଅନୁରୋଧ କଲାରୁ ଜଣେ ଆମକୁ "ଅଲ୍ଲାହ" ଶୁଣାଇଲେ । "ଅଲ୍ଲାହ" ଆବୃତ୍ତି କରୁ କରୁ ତାଙ୍କ ମୁହଁ ଲାଲ ହୋଇଗଲା । ଉତ୍ତେଜନାରେ ତାଙ୍କ ଦେହ ଥରିଲା । କୋଉ ଯୁଗରେ ଚନ୍ଦେରୀର ରାଜା ପରମାର ବଣକୁ ଶିକାର କରିବାକୁ ଯାଇ ଦୁଇଟି ମଣିଷ ଛୁଆ ପାଇଲେ । ସେହି ଅଜ୍ଞାତକୁଳଶୀଳ ପିଲା ଦୁଇଟିଙ୍କୁ ବଢ଼ାଇ କୁଢ଼ାଇ ସେ ନିଜର ଦୁଇ ଶାଳୀଙ୍କୁ ବିଭା କରିଦେଲେ । ସେମାନଙ୍କର ତିନି ପୁଅ ହେଲେ ଅଲାହ, ଉଜଲ୍ ଓ ମଲଖାନ୍ । ଅଲାହ ଅଜ୍ଞାତକୁଳଶୀଳ ବାପର ପୁଅ ହୋଇଥିବାରୁ ତାକୁ କେହି ଝିଅ ବିଭା କଲେ ନାହିଁ । ସେଥିପାଇଁ ଅଲାହ ଲଢ଼େଇ କରି ଝିଅମାନଙ୍କୁ ଧରି ଆଣି ବିଭା ହେଲା । ଅଲାହର ପାଞ୍ଚଟା ପରାକ୍ରମୀ ଘୋଡ଼ା ଥିଲେ । ସେ ଘୋଡ଼ାଙ୍କ ନାମ 'କବୂତରୀ', 'ଚିତରଙ୍ଗୀ', 'ହିରନାଗର', 'ପପାଇହା' ଓ 'ବେହଦଲା' । ଅଲାହର ଯୁଦ୍ଧ ବିବରଣୀ ଏପରି ଭାଷାରେ ବର୍ଣ୍ଣିତ ହୋଇଛି ଯେ ତାକୁ ପଢ଼ିଲେ ବା ଶୁଣିଲେ କୁଆଡ଼େ ଚମ୍ବଲବାସୀଙ୍କ ରକ୍ତ ତାତି ଉଠେ ।

ହୁକୁମ୍ ସୁନାୟା ସରଦାରୋଁକୋ
ଜଲ୍‌ଦୀ ଫୌଜେଁ କରୋ ତୈୟାର
ହାଥୀ ଚଢ଼ୈୟା ଚଢ଼େ ହାଥୀପର୍
ଅଉର୍ ଘୋଡ଼ୋଁ ପର ଚଢ଼୍ ସୱାରା
ତୋପୋଁ ଲଗାଦୋ ଚରଖିନ୍ ପର୍
ଅବ୍ ମତ୍ କରୋ ଇରାସିବାର୍
ସବୋ ସୂରମାଁ ଅବ ଜଲ୍‌ଦୀସେ
କରମେ ଲେ ଦୋ ଦୋ ତଲୱାର ।
ଏଥିରେ ଭଲା ରକ୍ତ ତାତିବା କଥା କ'ଣ ଅଛି !

ଅକ୍ଟୋବର ଦୁଇ ତାରିଖରୁ ନଅ ତାରିଖ ପର୍ଯ୍ୟନ୍ତ ସମଗ୍ର ଭାରତର ସବୁ ଜିଲ୍ଲାରେ ସ୍ତ୍ରୀ-ଶକ୍ତି-ଜାଗରଣ ସପ୍ତାହ ପାଳନ କରିବା ପାଇଁ ସ୍ଥିର ହେଲା । ତଦନୁସାରେ ମୁଁ ଓଡ଼ିଶାର ସବୁ ଜିଲ୍ଲାରେ ବୁଲି ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତା ଓ କର୍ମୀଙ୍କୁ ସାକ୍ଷାତ କରି ଏହି ପଦଯାତ୍ରା ଆୟୋଜନରେ ଲାଗି ପଡ଼ିଲି । ସ୍ତ୍ରୀ-ଶକ୍ତି-ଜାଗରଣ ସପ୍ତାହର ଉଦ୍ଦେଶ୍ୟ ଓ କାର୍ଯ୍ୟକ୍ରମ ବୟାନ କରି ପ୍ରଚାରପତ୍ର ଛାପା ହେଲା । ପ୍ରତ୍ୟେକ ଜିଲ୍ଲାରେ ମହିଳା ଶିକ୍ଷା ଶିବିର ଚଳାଇ ପ୍ରଥମେ କର୍ମୀମାନଙ୍କୁ ଆମର ଲକ୍ଷ୍ୟ ବିଷୟରେ ଭଲ କରି ବୁଝାଇ ସେମାନଙ୍କୁ ସଭାରେ ବକ୍ତୃତା ଦେବା କଳା ମଧ୍ୟ ଶିଖାଇବାକୁ ପଡ଼ିଲା । ଅବଶ୍ୟ ପୁରୁଣା କର୍ମୀମାନଙ୍କ ପାଇଁ ଏ ସବୁ ଆବଶ୍ୟକ ହେଲା ନାହିଁ । କେତେଜଣ ଶିକ୍ଷୟିତ୍ରୀ ଓ ଗୃହସ୍ଥ ଗୃହିଣୀ ସାତଦିନ ଏ ପଦଯାତ୍ରାରେ ଯୋଗ ଦେବାକୁ ଇଚ୍ଛା କଲେ । ମନୁସ୍ମୃତିର ପ୍ରଖ୍ୟାତ ଉକ୍ତି ''ସହସ୍ରଂ ତୁ ପିତୃନ୍ ମାତା ଗୌରବେଣାତିରିଚ୍ୟତେ'' ସମାଜ ବ୍ୟବସ୍ଥାରେ ନାରୀର ଦାୟିତ୍ୱ ସୁଚାଉଛି । ଉପନିଷଦରେ ମାତୃଦେବ ଭବ କୁହାଯାଇ ନାରୀକୁ ଯେଉଁ ଶ୍ରେଷ୍ଠ ଆସନ ଦିଆ ଯାଇଛି ସେଥିପାଇଁ ନାରୀ ସମାଜକୁ ନିଜର ଯୋଗ୍ୟତା ବଢ଼ାଇବାକୁ ହେବ । ଏ ପର୍ଯ୍ୟନ୍ତ ନାରୀ ନିଜକୁ ଅବଳା ବିଚାରି ଅନ୍ୟଦ୍ୱାରା ନିଜର ନିରାପତ୍ତା ରକ୍ଷା ହେବ ବୋଲି ଯେ ଭାବି ଆସିଛି, ଏଣିକି ନାରୀକୁ ଅଧ୍ୟାତ୍ମ ଶକ୍ତି ବଳରେ ସୁରକ୍ଷିତା ହେବାର କଳା ଆୟତ୍ତ କରିବାକୁ ହେବ ଆଦି ବିଷୟଗୁଡ଼ିକ ସରଳ ଭାଷାରେ ଗାଁର ମହିଳା ସମାଜକୁ ଏହି ଦାୟିତ୍ୱ ସମ୍ବନ୍ଧରେ ଅବହିତ କରାଇବା ହିଁ ଏହା ଏକ ଉଦ୍ୟମ ଥିଲା । ୧ ୯ ୭୩ ମସିହାରେ ସ୍ତ୍ରୀ-ଶକ୍ତି-ଜାଗରଣ ସପ୍ତାହ ପାଳନ କରାଯାଇ ଏହା ଫଳରେ ସ୍ତ୍ରୀ ସମାଜ ମଧ୍ୟରେ ଏକ ଆଲୋଡ଼ନ ସୃଷ୍ଟି ହୋଇଥିବାର ଲକ୍ଷ୍ୟ କରାଗଲା ।

୧୯୭୪ ମସିହାରେ ଆହୁରି ଅଧିକ ସଂଖ୍ୟାରେ ମହିଳା ପଦଯାତ୍ରୀ କିପରି ଦଳ ଦଳ ହୋଇ ପଦଯାତ୍ରା କରି ଏ ବିଚାରକୁ ଅଧିକ ବ୍ୟାପକ କରିବେ ସେ ଦିଗରେ ଚେଷ୍ଟା ଚାଲିଲା । ଓଡ଼ିଶାରେ ଶହେଟି ପଦଯାତ୍ରୀ ଦଳ ସପ୍ତାହେ ପଦଯାତ୍ରା କରିଥିଲେ ଏବଂ କେତେ ଗାଁରେ ମହିଳାମାନେ ଗାଁକୁ ମଦ ଗଞ୍ଜେଇ ଆଦି ବ୍ୟସନରୁ ମୁକ୍ତ କରିବା, ଗାଁ କଳି ଗାଁରେ ନିଷ୍ପତ୍ତି କରିବା ପାଇଁ ଗ୍ରାମବାସୀଙ୍କୁ ପ୍ରବର୍ତ୍ତାଇବା, ସପ୍ତାହରେ ଥରେ ସମୂହ ପ୍ରାର୍ଥନା ଓ ସଦ୍‌ଗ୍ରନ୍ଥ ପାଠ କରିବା, ଗାଁ ଦେବାଳୟ, ଗାଧୁଆଘାଟ, ସ୍କୁଲଘର ଆଦିର ପରିଛନ୍ନତା ପ୍ରତି ଦୃଷ୍ଟି ଦେବା, ପ୍ରତିଦିନ ଅଳ୍ପ ସମୟ ପାଇଁ ହେଉ ପଛକେ କୌଣସି ଦୁଃଖୀ ବା ରୋଗୀର ପରିଚର୍ଯ୍ୟା କରିବା ଆଦି କାର୍ଯ୍ୟକ୍ରମ ହାତକୁ ନେଉଥିଲେ ।

ଏହି କାମରେ ମୁଁ ଦୁଇଥର ଓଡ଼ିଶାର ସବୁ ଜିଲ୍ଲାରେ ବୁଲିଲି । ବିଭିନ୍ନ ଜିଲ୍ଲାରେ କାମ କରୁଥିବା ସାଥୀ ଓ ଭଉଣୀମାନଙ୍କ ସଙ୍ଗେ ଦେଖାସାକ୍ଷାତ ହେଲା । ଫୁଲବାଣୀ ଜିଲ୍ଲାରେ ମୁଁ ବିଶ୍ୱନାଥ ପଟ୍ଟନାୟକଙ୍କ ବାଲିଗୁଡ଼ା କେନ୍ଦ୍ରରେ ମହିଳା ଶିବିରରେ ଯୋଗ ଦେଲି । ବିଶ୍ୱନାଥ ପଟ୍ଟନାୟକ ୧୯୪୦ରୁ ନିରବଚ୍ଛିନ୍ନ ଭାବରେ ଆଦିବାସୀ – ଉଥାନ କାମ କରୁଛନ୍ତି । କୋରାପୁଟରେ ତାଙ୍କ କେନ୍ଦ୍ର କୁଜେନ୍ଦ୍ରୀରେ ଥିଲା । ସମଗ୍ର କୋରାପୁଟର ଆଦିବାସୀ ସମାଜଙ୍କର ସେ "ଆଞ୍ଚା" । କେତେ ପୁଅଝିଅଙ୍କୁ ପାଠ ପଢ଼ାଇ ମଣିଷ କରିଛନ୍ତି, ବିଭା କରାଇଛନ୍ତି ତାହା କଳିବା କଠିନ । ୧୯୬୫ରେ ବିନୋବାଜୀଙ୍କର ଓଡ଼ିଶାଗସ୍ତ ପାଇଁ ଯେଉଁ କାର୍ଯ୍ୟକ୍ରମ ତିଆରି ହେଲା, ସେଥିରେ ଫୁଲବାଣୀ ସ୍ଥାନ ପାଇଲା । ଆଚାର୍ଯ୍ୟ ମହାଶୟ, ଗୋପବନ୍ଧୁ ଚୌଧୁରୀ ପ୍ରଭୃତି ବଉଦ ଯାଏ ଖେପି ଥିଲେ । ଫୁଲବାଣୀରେ ବିନୋବା ଯାତ୍ରାର ବ୍ୟବସ୍ଥା କରିବା ପାଇଁ ବିଶ୍ୱନାଥ ପଟ୍ଟନାୟକ ଫୁଲବାଣୀ ଯାଇ ବାଲିଗୁଡ଼ାରେ ରହିଲେ । ବର୍ତ୍ତମାନ ସେଠାରେ ଆଦିବାସୀ ଛାତ୍ରାବାସ, ବିଦ୍ୟାଳୟ, ଅନ୍ଧ ବିଦ୍ୟାଳୟ, ମୂକ ବଧୀର ବିଦ୍ୟାଳୟ, କୃଷି ପ୍ରୟୋଗକ୍ଷେତ୍ର, ସିଲାଇ ତାଲିମ, ଦାତବ୍ୟ ଚିକିତ୍ସାଳୟ, ବୃଦ୍ଧ ପରିଚର୍ଯ୍ୟା ଆଦି କାମ ଚାଲିଛି ।

ଫୁଲବାଣୀ ଜିଲ୍ଲାରେ ନବଜୀବନ ମଣ୍ଡଳର ରାଧାମଣି ସାହୁ, ଧୋବେନ୍ଦ୍ରୀ ମହାପାତ୍ର, କସ୍ତୁରବା ଟ୍ରଷ୍ଟର ବେଦମତୀ, ସୀମା ଆଦି ଏବଂ ବନବାସୀ ସେବାସମିତିର ଝିଅମାନେ ପଦଯାତ୍ରା ଚଳାଇବା ଦାୟିତ୍ୱ ନେଲେ ।

କୋରାପୁଟରେ ନବରଙ୍ଗପୁରର ବାଜୀଭାଇଙ୍କ ସାହାଯ୍ୟରେ ଉମରକୋଟ ବିଜାପୁର ଅଞ୍ଚଳରେ ପାତୁଆରେ ରାଧାଦେବୀ, ଶେମିଳିଗୁଡ଼ାରେ ଶାନ୍ତି ସିଂ, ବୈପାରୀଗୁଡ଼ାରେ ସୁନୀତା, ମାଲକାନଗିରିରେ ବାବାଜୀ ନାୟକଙ୍କ ସାହାଯ୍ୟରେ ଦେବକୀ

ପ୍ରଭୃତି, ଜୟପୁରରେ ପ୍ରେମଲତା, ରାୟଗଡ଼ାରେ ଶାନ୍ତି, ଗୁଗୁଡ଼ିବାଇରେ ଅନ୍ନପୂର୍ଣ୍ଣା ସାମନ୍ତରାୟ, ଖାମ୍ଭେସୀରେ ମାଳତୀ ବିଶ୍ୱାଳ ପ୍ରଭୃତି ଅଣ୍ଟା ଭିଡ଼ି ଗାଁରୁ ନୂଆ ଝିଅଙ୍କୁ ବାହାର କରି ପଦଯାତ୍ରା ଦାୟିତ୍ୱ ନେଲେ । ସମ୍ବଲପୁରରେ ପାର୍ବତୀ ଗିରି, ପ୍ରଭାଦେବୀ, ସରସ୍ୱତୀ ପ୍ରଧାନ, ସୈରିନ୍ଧ୍ରୀ ନାୟକ, ଟାଂପରସରାର ପ୍ରମୁଖ ଦାୟିତ୍ୱ ମୁଣ୍ଡେଇଲେ । ବଲାଙ୍ଗିରକୁ ପ୍ରମିଳା ସ୍ୱାଇଁ ଗଲେ । କଳାହାଣ୍ଡିରେ ମଞ୍ଜୁଳା ଦେବୀ ଓ ରୂପବତୀ ଦେବୀ ବାହାରିଲେ । କେନ୍ଦୁଝରରେ ତୁଳସୀ ମୁଣ୍ଡା, ସଚ୍ଚିବାଳା ପଣ୍ଡା, ମୟୁରଭଞ୍ଜରେ ବିରଜା ମହାନ୍ତି ଓ କୁନ୍ତି, ଢ଼େଙ୍କାନାଳରେ ବି. ଗୌରୀ ଅମ୍ମା, ଗଞ୍ଜାମରେ ସବିତା ସାହୁ, ସୀତା ଚୁଡ୍ଡୁ, ସୁନ୍ଦରଗଡ଼ରେ ଖୁଲଣା ସୁନ୍ଦରୀ ଦେବୀ, ପୁରୀରେ ନାରୀସେବା ସଂଘର କର୍ମୀମାନେ, ବାଲେଶ୍ୱର ଓ କଟକରେ କସ୍ତୁରବା ଟ୍ରଷ୍ଟ ଓ ଗାନ୍ଧୀ ଓଡ଼ିଶା ବାଳାଶ୍ରମର କର୍ମୀମାନେ ଏ କାମ ତୁଲାଇଲେ ।

ଅନେକ ନୂଆ ଅଭିଜ୍ଞତା ଏ କାମରେ ଅର୍ଜନ କଲି । ଯେଉଁ ଲଘୁତା ଗ୍ରନ୍ଥି ବିଂଶ ଶତାବ୍ଦୀର ଦ୍ୱିତୀୟ ତୃତୀୟ ଦଶକରେ ମହିଳା ସମାଜ ମଧ୍ୟରେ ଫୁଟି ଦିଶୁଥିଲା ସପ୍ତମ ଦଶକ ବେଳକୁ ସେଥିରେ ଯେ ନିଶ୍ଚିତ ରୂପେ ପରିବର୍ତ୍ତନ ଘଟିଥିଲା, ତାହା ମର୍ମେ ମର୍ମେ ଅନୁଭବ କଲି ।

ତାଳଚେରର ଯମୁନା ଦେବୀଙ୍କ ସଙ୍ଗେ ପଦଯାତ୍ରା ସମ୍ବନ୍ଧରେ ଆଲୋଚନା କରି ସାରି ମୁଁ ବି.ଡ଼ି.ଓ ମହାଶୟଙ୍କୁ ଭେଟି ସ୍ତ୍ରୀ-ଶକ୍ତି-ଜାଗରଣ ସପ୍ତାହ କାର୍ଯ୍ୟକ୍ରମରେ ତାଙ୍କର ସହଯୋଗ ଲୋଡ଼ିବାକୁ ଗଲି । ବି.ଡ଼ି.ଓ. ସାହେବ ହସି ହସି ମୋତେ କହିଲେ- କିଛି ଦିନ ତଳେ ମୋ ସ୍ତ୍ରୀଙ୍କ ସଙ୍ଗେ ମୋର କୌଣସି ବିଷୟରେ ଯୁକ୍ତିତର୍କ ହେଉ ହେଉ ମୁଁ କହି ପକାଇଲି - ଯେତେହେଲେ ତ ତମେ ଝିଅ ପିଲାଟେ, ତମେ ଗୋଟାଏ କ'ଣ ମତ ଦେବ । ମୋ ସ୍ତ୍ରୀ ଏ କଥା ଶୁଣି ଚୁପ୍ ହୋଇଗଲେ । କିଛିଦିନ ପରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ଓଡ଼ିଶା ଆସିବା କଥା ଶୁଣାଗଲା । ମୋ ସ୍ତ୍ରୀ ଏ ଖବର ପାଇ ଅତି ନିରୀହ ଭାବ ଦେଖାଇ ମୋତେ ପଚାରିଲେ—ଇନ୍ଦିରା ଗାନ୍ଧୀ ଆସିଲେ ତୁମେ ତ ଭୁବନେଶ୍ୱର ଯିବ ? ମୁଁ ହଁ କଲି । ସେ ଯାହା ନିର୍ଦ୍ଦେଶ ଦେଇଯିବେ ତୁମେ ସବୁ ତ ତାକୁ ମାନିବ ? ମୁଁ ମୁଣ୍ଡ ଟୁଙ୍ଗାରିଲି । ମୋ ସ୍ତ୍ରୀ ଅଳ୍ପ ହସି କହିଲେ - ଇନ୍ଦିରା ଗାନ୍ଧୀ ଝିଅ ପିଲାଟେ ପରା ?

ମହିଳାମାନଙ୍କ ମଧ୍ୟରେ ଆତ୍ମପ୍ରତ୍ୟୟ ଜନ୍ମୁଥିବାର ଆଭାସ ଏହିପରି ଅନେକ ଘଟଣାରୁ ମିଳିଲା । କିନ୍ତୁ ୧୯୭୫ରେ ଜରୁରୀକାଳୀନ ପରିସ୍ଥିତି ଜାରି ହେବା ପରେ ଏହି ପଦଯାତ୍ରା ଆଉ ବ୍ୟାପକ ଭାବରେ ହେଲା ନାହିଁ ।

ମୋ ମନକୁ ବେଳେବେଳେ ଏହି ବିଚାର ଆସୁଛି ଯେ ପ୍ରଗତି ଓ ଆଧୁନିକତା ନାମରେ ଯେଉଁ କେତେଗୁଡ଼ିଏ ବିକୃତି ମହିଳା ସମାଜ ମଧ୍ୟରେ ପରିବ୍ୟାପ୍ତ ହେଉଛି ଗୋଟିଏ ସୁଚିନ୍ତିତ ବିଚାରକୁ ଘେନି ବହୁସଂଖ୍ୟକ ମହିଳା ଯଦି ଗାଁରେ ବୁଲି ଲୋକସମ୍ପର୍କ ସ୍ଥାପନ କରନ୍ତେ ତେବେ ଗୋଟିଏ ରୁଚିସମ୍ପନ୍ନ ସଂଯତ ସମାଜ ବ୍ୟବସ୍ଥା କରିବାରେ ତାହା ନିଶ୍ଚୟ ସହାୟକ ହୁଅନ୍ତା ।

ଚମ୍ବଲ-ପଦଯାତ୍ରା, ସ୍ତ୍ରୀ-ଶକ୍ତି-ଜାଗରଣ ପଦଯାତ୍ରା, କେନ୍ଦୁଝରରେ ଜୁଆଙ୍ଗ ପୀଢ଼ରେ ରିଲିଫ୍ କାମ ଆଦିରେ ଆମେ ଲାଗିଥିବା ବେଳେ ଭାରତବର୍ଷରେ ଯେ ଗୋଟାଏ କ୍ଷୋଭପୂର୍ଣ୍ଣ ବାୟୁମଣ୍ଡଳ ସୃଷ୍ଟି ହେଉଛି ତାହା ଆମେ ସ୍ପଷ୍ଟ ଅନୁଭବ କରୁଥାଉ ।

ମାର୍ଚ୍ଚ ମାସରେ ମୁଁ ପଓନାରରେ ଥିବାବେଳେ ମୋର ଜଣେ ପୁତ୍ରପ୍ରତିମ କର୍ମୀ ମୋତେ କହିଲେ ଯେ ଭାରତରେ କଳାଧନ ଦ୍ରୁତ ବଢ଼ି ଚାଲିଛି । ଏହି କର୍ମୀ ଜଣକ ଗୋଟିଏ କୋଟିପତି ପରିବାରର ହୋଇଥିବାରୁ ଏବଂ ଏହାଙ୍କ ଭଗ୍ନିପତି ଭାରତବର୍ଷର ଚେମ୍ବର ଅଫ୍ କମର୍ସ୍‌ର କର୍ମକର୍ତ୍ତା ହୋଇଥିବାରୁ ତାଙ୍କର କଳାଧନ ବୃଦ୍ଧି ବ୍ୟାପାର ସଂବନ୍ଧୀୟ ମତାମତ ଜାଣିବାକୁ ମୁଁ କାନ ଡେରିଲି । ସେ କହିଲେ- ବଡ଼ ବଡ଼ ବ୍ୟବସାୟୀମାନେ ବିନୋବାଜୀଙ୍କୁ ସାକ୍ଷାତ କରି କହିଛନ୍ତି ଯେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏହି କଳାଧନ ବ୍ୟାପାର ସହିତ ସଂପୃକ୍ତ । ଜଣେ ବଡ଼ ବ୍ୟବସାୟୀ କୁଆଡ଼େ କହିଲେ ଯେ ଉତ୍ତର ପ୍ରଦେଶର ନିର୍ବାଚନ ପ୍ରଚାର ପାଇଁ ଆମେ ଯଦି ଷାଠିଏ କୋଟି ଟଙ୍କା କଳାଧନ ଦେଲୁ ତେବେ ନିଜ ପାଇଁ ଛ'ଶହ କୋଟି କଳା ଟଙ୍କା ନ ରଖିବୁ ବା କାହିଁକି ? ଏହିପରି ଆଉ କେତୋଟି କଥା କହି ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟକଳାପ ପ୍ରତି ବିରୋଧ ଭାବ ସୃଷ୍ଟି ହେଉଥିବା କଥା ସେ ମୋତେ ଏକାନ୍ତରେ କହିଲେ । ବ୍ୟାଙ୍କ୍ ଜାତୀୟକରଣ, ରାଜା ମହାରାଜାଙ୍କ ଭତ୍ତାକାଟ, ବାଂଲାଦେଶ ମାମଲାରେ ପ୍ରଧାନ ମନ୍ତ୍ରୀଙ୍କର ଏକ ଉଜ୍ଜ୍ୱଳ ଭାବମୂର୍ତ୍ତି ଦେଶ ଆଗରେ ଉଦ୍‌ଭାସିତ ହୋଇ ଉଠିଛି ବୋଲି ଆମେ ଅନେକେ ଭାବୁଥିଲୁ । ଏ କଥା ଶୁଣି ମୁଁ ପଚାରିଲି - ବିନୋବାଜୀ ଏ ବିଷୟରେ କ'ଣ କହିଲେ ? ସହକର୍ମୀ କହିଲେ -ବିନୋବାଜୀ ତୁକାରାମ୍‌ଙ୍କର ଗୋଟିଏ ଭଜନ ବୋଲିଲେ- ''ଜଗ ବିନୋଦେ ବିହ୍ୱଳ ତସେ ........'' ଅର୍ଥାତ୍ ଜଗତରେ ସମସ୍ତେ ଖୁବ୍ ଖୁସିରେ ଅଛନ୍ତି । ଦୁଃଖ ଆଦୌ ନାହିଁ । ଯଦି କେହି ଦୁଃଖ କଥା କହୁଛନ୍ତି, ତାହାର ପ୍ରତିକାରର ଉପାୟ ବ୍ରହ୍ମଚର୍ଯ୍ୟ, ସଂଯମ ଆଦି କଥା କହିଲେ ସେ କର୍ଣ୍ଣପାତ କରୁ ନାହାନ୍ତି । ଲୋକେ ତାଙ୍କ ମରଜିରେ ଚଳିବେ ଅଥଚ ଦୁଃଖ ଯିବ, ଏହା ହୋଇ ନ

ପାରେ । ତେଣୁ ଲୋକଙ୍କ ଦୁଃଖ ନିବାରଣ ପାଇଁ ଅତ୍ୟଧିକ ପ୍ରୟାସ କରିବା ଦରକାର ନାହିଁ ।

ତା'ପରେ ହରବିଲାସ ବହୁନଙ୍କ ସଙ୍ଗେ ଗୁଜରାତର ଅଶାନ୍ତ ପରିସ୍ଥିତି ବିଷୟରେ କଥାବାର୍ତ୍ତା ହେଲା । ଖବରକାଗଜର ଖବରଠାରୁ ହରବିଲାସଙ୍କ କଥା ମୋ ପାଇଁ ଅଧିକ ନିର୍ଭରଯୋଗ୍ୟ । ସେ କହିଲେ- ଗୁଜରାତରେ ଲୋକ ଆନ୍ଦୋଳନର କାରଣ ହେଉଛି ବିଧାନ ସଭା ନିର୍ବାଚନରେ ଶାସକ କଂଗ୍ରେସର ୧୪୦ ପ୍ରାର୍ଥୀ ଜିତିଲେ । ପ୍ରଧାନମନ୍ତ୍ରୀଙ୍କ ନିର୍ଦ୍ଦେଶରେ ଘନଶ୍ୟାମ ଦାସ ଓଝା ମୁଖ୍ୟମନ୍ତ୍ରୀ ହେଲେ । ଲୋକେ ଏହା ପସନ୍ଦ କଲେ ନାହିଁ । ପୁଣି ଚିମନ୍‌ଲାଲ ଭାଇ ବହୁତ ପଇସାପତ୍ର ବିଞ୍ଚି ମୁଖ୍ୟମନ୍ତ୍ରୀ ହେଲେ ବୋଲି ଲୋକଙ୍କର ଧାରଣା ଜନ୍ମିଲା । ବିଧାୟକମାନେ ପଇସା ଖାଇ ଚିମନ୍‌ଲାଲ ଭାଇଙ୍କୁ ସମର୍ଥନ କରିଥିବା କଥା ପ୍ରଚାରିତ ହେବାରୁ ଛାତ୍ରମାନେ ସେମାନଙ୍କୁ ବିଦ୍ରୂପ କରିବା ଉଦ୍ଦେଶ୍ୟରେ ଗୁଡ଼ିଏ ମେଣ୍ଢାଙ୍କୁ ଅଡ଼େଇ ଅଡ଼େଇବା ଶୋଭାଯାତ୍ରା ବାହାର କଲେ ।

ଏହାପରେ ଦରଦାମ ବଢ଼ିଯିବାରୁ ଛାତ୍ରାବାସର ଖରଚ ବଢ଼ିଲା । ପୁଣି ଟଙ୍କା ଦେଲେ ମଧ୍ୟ ଖାଇବା ଜିନିଷ ମିଳିଲା ନାହିଁ । ମୋରବୀ ଇଞ୍ଜିନିୟରିଂ କଲେଜ ଆଦିର ଛାତ୍ରମାନେ ଭଙ୍ଗାରୁଜା କାମ ଏହି ଦରଦାମ ବୃଦ୍ଧିକୁ ଉପଲକ୍ଷ୍ୟ କରି ଆରମ୍ଭ କଲେ । ଫଳରେ ଲକ୍ଷ ଲକ୍ଷ ଟଙ୍କାର ସମ୍ପତି ନଷ୍ଟ ହେଲା । ଦରଦାମ ବୃଦ୍ଧି ରୋକିବା, ଭ୍ରଷ୍ଟାଚାର ବନ୍ଦ କରିବା ଓ ସରକାର ବଦଳାଇବା ପାଇଁ ଆନ୍ଦୋଳନ କଲେ । ଅଧ୍ୟାପକମାନେ ଓ ଜନସାଧାରଣ ଏଥିରେ ସହଯୋଗ କଲେ । ଜାନୁଆରୀ (୧୯୭୪) ପଚିଶ ତାରିଖ ଦିନ ଏ ଆନ୍ଦୋଳନ ଆରମ୍ଭ ହେଲା । ଗୁଜୁରାତ ବନ୍ଦ ପାଳିତ ହେଲା । ସରକାର ବଦଳାଇବା ଦାବୀ କରି ଶୋଭାଯାତ୍ରା ମଧ୍ୟ ଆରମ୍ଭ ହେଲା । କରଫ୍ୟୁ ଜାରି ହେଲା । ଜାନୁଆରୀ ଛବିଶ ତାରିଖରେ ପରେଡ୍ ଇତ୍ୟାଦି ନ କରାଇ ଦେବାକୁ ଲୋକେ ଲାଗି ପଡ଼ିଲେ । ଗୁଳି ଚାଲିଲା । ଲୋକ ମଲେ ।

ଏ ଗୁଜରାତ ଅଶାନ୍ତି ଆରମ୍ଭ ହେବା ପୂର୍ବରୁ ଜୟପ୍ରକାଶ ନାରାୟଣ ୧୯୭୩ ମସିହା ଡ଼ିସେମ୍ବରରେ ନିର୍ବାଚନକୁ ଭୟମୁକ୍ତ ଓ ଭ୍ରଷ୍ଟାଚାରମୁକ୍ତ କରିବା ପାଇଁ ଯୁବସମାଜକୁ ନିବେଦନ କରିଥାନ୍ତି । '' Youth for Democracy'' ଶିରୋନାମାରେ ତାଙ୍କର ଏହି ନିବେଦନ ଏକ ଐତିହାସିକ ତଥ୍ୟରେ ପରିଗଣିତ ହେବ । ସେ ଏହାରି ଉପରେ ଭାଷଣ ମଧ୍ୟ ଦେଲେ । ଭାଷଣର ପ୍ରଭାବ ଗୁଜରାତ ଉପରେ ପଡ଼ିଲା । ଗୁଜରାତର ସର୍ବୋଦୟ କର୍ମୀ ମଧ୍ୟ ଅହିଂସାର ସୀମାରେଖା ମଧ୍ୟରେ ରହି ଏହି ଆନ୍ଦୋଳନକୁ ସମର୍ଥନ କରୁଥିଲେ ।

ସେମାନେ ଜୟପ୍ରକାଶଜୀଙ୍କୁ ଗୁଜରାତକୁ ଡ଼ାକିବା ପାଇଁ ମସୁଧା କଲେ । ଏହା ମଧ୍ୟରେ ଡ଼ିଫେନ୍‌ସ ଅଫ୍ ଇଣ୍ଡିଆ ରୁଲ୍ ଆଇନ ବଳରେ ବହୁ ଲୋକ ଗିରଫ ହେଲେ । ଉତ୍ତେଜନା ବଢ଼ିଲା । ରବିଶଙ୍କର ମହାରାଜଙ୍କୁ ଗୁଜରାତର ମୁକୁଟହୀନ ସମ୍ରାଟ କୁହାଯାଏ । ସେ ଚିମନଲାଲ ଭାଇଙ୍କୁ ଭେଟି ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଦେବାକୁ ବୁଝାଇଲେ । ମୁଖ୍ୟମନ୍ତ୍ରୀ ତାଙ୍କୁ କହିଲେ – ''ମରିବି ପଛକେ ଇସ୍ତଫା ଦେବି ନାହିଁ ।'' ମାତ୍ର ସେ ଲୋକଙ୍କ ଦାବୀ ଯୋଗୁ ନୁହେଁ, ଅନ୍ୟ କାରଣରୁ ଫେବୃଆରୀ ନଅ ତାରିଖରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ସେ ଇସ୍ତଫା ଦେବା ପୂର୍ବରୁ ଗୁଜରାତରେ ଅଭୁତପୂର୍ବ ଗଣ ଆନ୍ଦୋଳନ ହୋଇଥିଲା । ଉଦାହରଣ ସ୍ୱରୂପ ଗୁଜରାତର ସବୁ ସହରରେ ଏକା ସମୟରେ ସରକାରଙ୍କ ମୃତ୍ୟୁ ଘଣ୍ଟି ବାଜିଲା ।

ମୁଖ୍ୟମନ୍ତ୍ରୀ ଇସ୍ତଫା ଦେବା ପରେ ଅସାମାଜିକ ଲୋକଙ୍କର ଗୋଟିଏ ଦଳଙ୍କ ଦ୍ୱାରା ରାଜନୀତି କରୁଥିବା ଲୋକେ ଦଙ୍ଗାହାଙ୍ଗାମା ଲୁଟତରାଜ କରାଇଲେ । ପୁଣି କରଫ୍ୟୁ ଜାରି ହେଲା । ଛାତ୍ର ଓ ଅଧ୍ୟାପକ ଏହାର ପ୍ରତିବାଦ କରି ଉପବାସ କଲେ । ଲୋକଙ୍କ ଲୁଟତରାଜ ଦଙ୍ଗା ହାଙ୍ଗାମା ଠାରୁ ପୋଲିସ୍‌ର ଅତ୍ୟାଚାର ବଳେଇ ପଡ଼ିଲା । ବ୍ରିଟୀଶ ସରକାରର ଅତ୍ୟାଚାର ଏହା ଆଗରେ ଫିକା ପଡ଼ିଗଲା । ଲୋକେ ମନ୍ତ୍ରୀଙ୍କ ଉପରେ ଥିବା ଆକ୍ରୋଶ ପୋଲିସ୍ ଉପରେ ସାଧିଲେ । ଟେକା ପଥର ଫିଙ୍ଗା ଚାଲିଲା । ପୋଲିସ୍ ମଧ୍ୟ ଘରେ ଘରେ ପଶି ନିର୍ଦ୍ଦୋଷ ଲୋକଙ୍କୁ ଠେଙ୍ଗେଇଲେ ।

ଫେବୃୟାରୀ ଏଗାର ତାରିଖରୁ ପନ୍ଦର ତାରିଖ ଜୟପ୍ରକାଶଜୀ ଗୁଜରାତରେ ଗସ୍ତ କଲେ ଏବଂ ଅହିଂସାତ୍ମକ ପ୍ରଣାଳୀରେ ଆନ୍ଦୋଳନ ଚଳାଇବାକୁ ଲୋକଙ୍କୁ ବୁଝାଇଲେ । ଇତିମଧ୍ୟରେ ରାଷ୍ଟ୍ରପତି ଶାସନ ଜାରି ହୋଇଗଲା ।

ଏ ତ ଗଲା ଗୁଜରାତ ପ୍ରକରଣ । ବିହାର ଆନ୍ଦୋଳନର ସୂତ୍ରପାତ ହେଲା ୧୯୭୪ ମସିହା ଫେବୃୟାରୀ ସତେଇଶ ତାରିଖରେ । ବିଭିନ୍ନ କଲେଜ୍ ଓ ୟୁନିଭରସିଟିର ଛାତ୍ର ପ୍ରତିନିଧିମାନେ ପାଟନାରେ ଏକତ୍ର ହୋଇ ଛାତ୍ର ସଂଘର୍ଷ ସମିତି ଗଠନ କରି ମାର୍ଚ୍ଚ ଅଠର ତାରିଖରେ ବିହାର ବିଧାନ ସଭା ଘେରାଉ କରି ଏଗାରଟି ଦାବୀ ଉପସ୍ଥାପିତ କଲେ । ଫଳରେ ଛାତ୍ର ପୋଲିସ୍ ସଂଘର୍ଷ, ପୋଡ଼ାଜଳା ଆଦି ଆରମ୍ଭ ହେଲା । ଅବସ୍ଥା ଅସମ୍ଭାଳ ହେବାରୁ ବି.ଏସ୍.ଏଫ୍ ଓ ସି.ଆର୍.ପି. ଆସିଲେ । ମାର୍ଚ୍ଚ ଅଠର ତାରିଖର ଘଟଣାକୁ ଉପଲକ୍ଷ୍ୟ କରି ଜୟପ୍ରକାଶଜୀ ବିବୃତ୍ତି ଦେଲେ ଯେ ମୁଖ୍ୟମନ୍ତ୍ରୀ ଯେହେତୁ ପରିସ୍ଥିତିକୁ ଆୟତ୍ତ କରିପାରୁ ନାହାନ୍ତି, ସେ ଇସ୍ତଫା ଦେବା ଉଚିତ । ତହୁଁ ଛାତ୍ର ସଂଘର୍ଷ

ବାହିନୀ ତାଙ୍କୁ ଭେଟି ଏ ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରିବାକୁ ଅନୁରୋଧ କଲେ । ଜେ.ପି. ସେମାନଙ୍କର ଦାବୀ ବିଷୟରେ ଟିକ୍‌ନିଖି଼ ଆଲୋଚନା କରି ଚାରୋଟି ଦାବୀକୁ ସମର୍ଥନ କରିବାକୁ ସମର୍ଥ ହେଲେ । ତାହା ହେଉଛି (୧) ଦୁର୍ନୀତି ନିବାରଣ, (୨) ଦରଦାମ ନିୟନ୍ତ୍ରଣ, (୩) ବେକାରୀ ଦୂରୀକରଣ (୪) ଶିକ୍ଷା ପଦ୍ଧତିରେ ପରିବର୍ତ୍ତନ । ଛାତ୍ରମାନଙ୍କୁ ବିଭିନ୍ନ ରାଜନୈତିକ ଦଳରୁ ଅଲଗା ହୋଇଯାଇ ଛାତ୍ରଭାବରେ ଆନ୍ଦୋଳନ ଚଳାଇବାକୁ ଜୟପ୍ରକାଶଜୀ ସେମାନଙ୍କୁ ପ୍ରବର୍ତ୍ତାଇଲେ ଏବଂ ସରକାର ଭାଙ୍ଗିବା ଉପରେ ଜୋର୍ ନ ଦେଇ ଗଣ ସଂଗଠନ ଉପରେ ଜୋର୍ ଦେବାକୁ କହିଲେ ।

ଏହି ସମୟରେ ଅର୍ଥାତ୍ ଏପ୍ରିଲ ପହିଲାରେ ପ୍ରଧାନ ମନ୍ତ୍ରୀ ଓଡ଼ିଶାରେ ରାଜଭବନରେ ଭୂମିହୀନଙ୍କୁ ଭୂମି ବାଣ୍ଟିବା ସମାରୋହରେ ଯୋଗ ଦେଇ ଯେଉଁ ଭାଷଣ ଦେଲେ ସେଥିରେ ଜୟପ୍ରକାଶଜୀଙ୍କ ବ୍ୟକ୍ତିଗତ ଚରିତ୍ରକୁ ଆକ୍ଷେପ କରି କେତେ କଥା କହିଲେ । ଜୟପ୍ରକାଶଜୀ ଯେ ଇନ୍ଦିରାଜୀଙ୍କୁ ବାଂଲାଦେଶ ସମସ୍ୟାବେଳେ ଓ ଅନ୍ୟାନ୍ୟ ପରିସ୍ଥିତିରେ ସମର୍ଥନ କରିଥିଲେ ଏବଂ ଦୁହିଁଙ୍କ ମଧ୍ୟରେ ଯେଉଁ ପିତାପୁତ୍ରୀ ପର୍ଯ୍ୟାୟର ସମ୍ପର୍କ ପଣ୍ଡିତ ନେହେରୁଙ୍କ ଅମଳରୁ ଗଢ଼ି ଆସିଥିଲା, ତହିଁରେ ତିକ୍ତତା ସୃଷ୍ଟି ହେଲା ।

ତେଣେ ବିହାରରେ ଏପ୍ରିଲ ଆଠ ତାରିଖ ଦିନ ମୁହଁରେ ପଟି ବାନ୍ଧି ହାତ ପଛକୁ କରି ଲକ୍ଷ ଲକ୍ଷ ଲୋକ ଶୋଭାଯାତ୍ରା କଲେ । ଶୋଭାଯାତ୍ରାର ପ୍ଲାକାର୍ଡ଼ରେ ଲେଖାଥିଲା-

ହମଲା ଚାହେ ଜୈସା ହୋଗା

ହାତ ହମାରା ନହିଁ ଉଠେଗା ।

କଟକର ଡ଼କ୍ଟର ଗିରିଜା ଶଙ୍କର ଦାସ ମହାପାତ୍ର ସେ ଶୋଭାଯାତ୍ରାର ପ୍ରତ୍ୟକ୍ଷଦର୍ଶୀ ଥିଲେ । ତାଙ୍କ ମତରେ ଏହା ଅତ୍ୟନ୍ତ ପ୍ରଭାବଶାଳୀ ଓ ପ୍ରେରଣାଦାୟକ ହୋଇଥିଲା । ଶୋଭାଯାତ୍ରାରେ ଯୋଗ ଦେଇଥିବା ପ୍ରତ୍ୟେକ ବ୍ୟକ୍ତି ନିମ୍ନଲିଖିତ ଶପଥ ଗ୍ରହଣ କରିଥିଲେ:

I believe in a non-political constructive and peaceful people's movement for the eradication of corruption, curbing of price rise and unemployment and the dissolution of the Bihar Lagislative Assembly and for a radical change in education.

I pledge my active co-operation to the best of my capacity in this people's struggle for the establishment of non-exploitative and clean democracy in the country.

ଏହା ପରଦିନ ସାଧାରଣ ସଭାରେ ଜୟପ୍ରକାଶଜୀ ଘୋଷଣା କଲେ ଯେ ଆବଶ୍ୟକ ହେଲେ ଉପଯୁକ୍ତ ଦାବୀ ପୂରଣ ପାଇଁ ଅହିଂସାତ୍ମକ ଆନ୍ଦୋଳନ ଚଳାଇବାକୁ ହେବ । ଏହାପରେ ଘେରାଓ ଆଦି ଆରମ୍ଭ ହେଲା । ସରକାରଙ୍କ ପକ୍ଷରୁ ଗୁଳି ଚାଲିଲା । ଗାଁଏ ଗାଁଏ ଗ୍ରାମସଭା ଗଠନ, ସହରରେ ଶହେ ପରିବାରକୁ ନେଇ ସମିତି ଗଠନ ଆଦି ସଂଗଠନାତ୍ମକ କାମ ମଧ୍ୟ ଚାଲିଥାଏ । ଏକ କୋଟି ସ୍ୱାକ୍ଷର ସମ୍ବଳିତ ଦାବୀପତ୍ର ନେଇ ଛଅମାଇଲ ବ୍ୟାପି ଶୋଭାଯାତ୍ରା, ଇନ୍ଦିରା ବ୍ରିଗେଡ୍ ପକ୍ଷରୁ ଗୁଳିଚାଳନା, ଜେ.ପିଙ୍କ ଉପରେ ଠେଙ୍ଗାମାଡ଼ ଆଦି ଘଟଣା ସର୍ବଜନବିଦିତ । ଶ୍ରୀମନ୍ନାରାଣଜୀଙ୍କ ଭଳି ଧୀରସ୍ଥିର ବ୍ୟକ୍ତିମାନେ ସେତେବେଳେ ମତ ଦେଇଥିଲେ ଯେ ଆନ୍ଦୋଳନର ବାଗ୍‌ଡୋର ଜୟପ୍ରକାଶଜୀ ହାତକୁ ନେଇ ନ ଥିଲେ ବିହାର ଜଳିପୋଡ଼ି ଧ୍ୱଂସ ହୋଇ ଯାଇଥାନ୍ତା । ଦାଦା ଧର୍ମାଧିକାରୀଙ୍କ ପରି ଅଭିଜ୍ଞ ବ୍ୟକ୍ତି କହିଲେ ଯେ ଗାନ୍ଧୀ ଅମଳରେ ସତ୍ୟାଗ୍ରହ ଆନ୍ଦୋଳନରେ ଯେଉଁ ପରିମାଣରେ ହିଂସା ହୋଇଥିଲା, ବିହାର ଆନ୍ଦୋଳନରେ ତାହା ସୁଦ୍ଧା ହୋଇ ନ ଥିଲା ।

ଏ ସବୁ ଘଟଣା ମଧ୍ୟରେ ପ୍ରଧାନ ମନ୍ତ୍ରୀ ଇନ୍ଦିରାଜୀ ଜୟପ୍ରକାଶଜୀଙ୍କୁ ଚାଲେଞ୍ଜ କରି କହିଲେ ଯେ ଯଦି ତାଙ୍କ ପଛରେ ଲୋକମତ ଅଛି ତେବେ ନିର୍ବାଚନରେ ତାହା ପ୍ରମାଣ କରନ୍ତୁ । ଜୟପ୍ରକାଶଜୀ ଏହି ଚାଲେଞ୍ଜ ଗ୍ରହଣ କଲେ । ବିହାରର ଅଶାନ୍ତ ପରିସ୍ଥିତିର ପ୍ରଭାବ ସମଗ୍ର ଭାରତବର୍ଷ ଉପରେ ପଡ଼ିଲା ।

ବିକ୍ଷୁବ୍ଧ ଭାରତର ଏହି ପରିସ୍ଥିତି ମଧ୍ୟରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନିର୍ବାଚନକୁ ଏଲାହାବାଦ ହାଇକୋର୍ଟ ଅସିଦ୍ଧ ଘୋଷଣା କଲେ । ତା'ପରେ ଚାଲିଲା ଏମରଜେନ୍‌ସି ପାଲା । ଏହି ଏମର୍‌ଜେନ୍ସିକୁ ଘେନି ଭାରତରେ ଏତେ ବହି ଲେଖା ହୋଇଛି ଯେ ସେ ବିଷୟରେ ଅଧିକ ଲେଖିବା ନିଷ୍ପ୍ରୟୋଜନ ବୋଧ ହେଉଛି । ୧୯୭୫ ମସିହା ଜୁନ୍ ୨୬ ତାରିଖ ଦିନ ଏମରଜେନ୍‌ସି ଘୋଷିତ ହେଲା । ସେହିଦିନ ଅପରାହ୍ନ ତିନିଟାବେଳେ ବାଖରାବାଦରେ କଟକର ବହୁ ବିଶିଷ୍ଟ ବ୍ୟକ୍ତିଙ୍କର ଏକ ବୈଠକ ହୋଇ ଏମରଜେନ୍‌ସିର ବିରୋଧ କରିବା ସ୍ଥିର ହେଲା । ଲୋକଙ୍କୁ ଏହା ଜଣାଇଦେବା ପାଇଁ ରମାଦେବୀଙ୍କ ସ୍ୱାକ୍ଷରରେ ଗୋଟିଏ ପ୍ରଚାର ପତ୍ର ଛାପା ହୋଇ ବିତରିତ ହେଲା । ପୁଣି ନବକୃଷ୍ଣ ଚୌଧୁରୀ ରମାଦେବୀଙ୍କ ମିଳିତ ସ୍ୱାକ୍ଷରରେ ମଧ୍ୟ ପ୍ରଚାରପତ୍ର ଛାପା ହୋଇ ବିତରିତ ହେଲା । ନବବାବୁ, ମନମୋହନ ଚୌଧୁରୀ, ମନମୋହନ ସାହୁ, ଅନାଦି ନାୟକ, ସୁରେନ୍ଦ୍ର ମହାନ୍ତି, ଗୋପାଳପ୍ରସାଦ ଦାସ ପ୍ରମୁଖ ବହୁ ସର୍ବୋଦୟ କର୍ମୀ ବନ୍ଦୀ ହେଲେ ।

ମାଳତୀ ଚୌଧୁରୀ ଓ କ୍ଷେତ୍ରବାସୀ ପତି ଭିନ୍ନ ଭିନ୍ନ ସ୍ଥାନରେ ଆତ୍ମଗୋପନ କରି ପ୍ରଚାରପତ୍ର ପ୍ରସାରିତ କଲେ । ମଂଗଳା ଦେବୀ ନିକୁଞ୍ଜକିଶୋର ଦାସଙ୍କ ସହିତ ମୁଁ ରମାଦେବୀଙ୍କ ସ୍ୱାକ୍ଷରରେ ବାହାରୁଥିବା ବୁଲେଟିନ୍ ଛାପିବା, ପୁଲିଶର ଶ୍ୟେନ ଦୃଷ୍ଟିରୁ ତାକୁ ରକ୍ଷା କରିବା ଓ ପ୍ରଦେଶର ବିଭିନ୍ନ ସ୍ଥାନକୁ ପଠାଇବା କାମରେ ଲାଗିଲୁ । ପ୍ରଚାର ପତ୍ରର ପ୍ରସାର ବନ୍ଦ କରି ନ ପାରି ସରକାର ତାଙ୍କୁ ଥୋରିଆସାହି ଗୁଣନିଧି ଭବନରେ ନଜରବନ୍ଦ କରି ରଖିଲେ ।

କ୍ରମେ ଓଡ଼ିଶାରେ ସ୍କୁଲ ଛାତ୍ରମାନେ ସୁଦ୍ଧା ଏମରଜେନ୍‌ସିର ବିରୋଧ କରି ସଭା ଶୋଭାଯାତ୍ରା କଲେ । ଅନେକ ସମୟରେ ଜଗୁଆଳୀ ପୁଲିଶ ଶୋଇ ପଡ଼ିବା ପରେ ବା ଅନ୍ୟ ଉପାୟରେ ଗୁଣନିଧି ଭବନକୁ ଗଭୀର ରାତ୍ରିରେ ସେମାନେ ରମାଦେବୀଙ୍କୁ ଦେଖିବାକୁ ଆସୁଥିଲେ । ଜଣେ ପଚସ୍ତରୀ ବର୍ଷର ବୁଢ଼ୀ ମଧ୍ୟ ଏମରଜେନ୍‌ସିର ବିରୋଧ କରୁଛନ୍ତି, ଏଇଟା ସେମାନଙ୍କୁ ବଡ଼ ବିଚିତ୍ର ବୋଧ ହେଉଥିଲା । ଏହି ଛାତ୍ରମାନେ ମୃତ୍ୟୁଭୟକୁ ତୁଚ୍ଛ କରି ଏ କାମରେ ପଶିଥିଲେ । ଥରେ ଢେଙ୍କାନାଳର କେତେଜଣ ଛାତ୍ର ଢେଙ୍କାନାଳ ସହରରେ ଶୋଭାଯାତ୍ରା କରି ଗିରଫ ହେଲେ । ସେମାନଙ୍କୁ ଯତନ ନଗରକୁ ନିଆଯାଇ ନାନାପ୍ରକାରେ ଭୟଭୀତ କରିବା ପାଇଁ ଚେଷ୍ଟା କରାଗଲା । ଭୟଭୀତ କରାଇ ସେମାନଙ୍କୁ ଶୋଭାଯାତ୍ରା କରିବା ପାଇଁ ପ୍ରରୋଚିତ କରିଥିବା ଲୋକ ବା ଅନୁଷ୍ଠାନର ନାମ ସେମାନଙ୍କଠାରୁ ଆଦାୟ କରିବା ଥିଲା ପୁଲିସର ଲକ୍ଷ୍ୟ । ସେ ପିଲାଏ କେବଳ ଏତିକି କହିଲେ ଯେ ''ଉପରୁ ଆଦେଶ ଆସୁଛି, ଆମେ ତାହା ପାଳନ କରୁଛୁ ।'' ରାତି ହେଲାରୁ ସେ ପିଲାଙ୍କୁ ଜଙ୍ଗଲ ଭିତରକୁ ନେଇଗଲେ । ସେଠାରେ କାଠଗଦାରେ ନିଆଁ ଲଗାଇ ଦିଆ ହୋଇଥାଏ । ପୁଲିସ୍ ସେ ପିଲାଙ୍କୁ କହିଲେ ଯଦି ତୁମ ନେତାଙ୍କ ନାମ ନ କହିବ ତେବେ ତୁମକୁ ଜୀଅନ୍ତା ଏ ନିଆଁକୁ ଫିଙ୍ଗିଦେବୁ । ପିଲାଏ ନିର୍ଭୀକ ଭାବରେ ଜବାବ ଦେଲେ - ଯାହା କହିଛୁ ସକାଳେ, ସେୟା କହିବୁ ସଞ୍ଜରେ । ଏବେ ନିଆଁକୁ ଫିଙ୍ଗ ବା ସଙ୍ଗୀନ୍ ମୁନରେ ଗୁନ୍ଥ ସେହି ଏକା ଜବାବ ମିଳିବ । ପୁଲିଶ ସୁପରିଟେଣ୍ଡେଣ୍ଟ ଲାଲ୍ ଏ ଘଟଣା ବିଶ୍ୱନାଥ ପଣ୍ଡିତଙ୍କୁ କହିବା ବେଳେ ଶ୍ରୀ ଲାଲ୍ ବିହ୍ୱଳ ହୋଇ କହିଲେ ଯେ ଆମ ଦେଶରେ ଏପରି ପିଲା ଅଛନ୍ତି ଜାଣି ମୋର ଗର୍ବ ହେଉଛି ।

ଏହିପରି ଅନେକ ଘଟଣା ଏମର୍‌ଜେନ୍‌ସିର ବିରୋଧ କରିବା ବେଳେ ଘଟିଥିଲା । ଅନେକ ହାସ୍ୟକର ଘଟଣା ମଧ୍ୟ ଆମକୁ ଉପଭୋଗ କରିବାକୁ ମିଳୁଥିଲା । କଲ୍ୟାଣପୁରର ପ୍ରାଣକୃଷ୍ଣ ପଟ୍ଟନାୟକ ଏମର୍‌ଜେନସି ବିରୋଧୀ ପ୍ରଚାରପତ୍ର ବିଂଝାରପୁର

ଅଞ୍ଚଳରେ ବାଣ୍ଟୁଥିବା ବେଳେ ଗିରଫ ହେଲେ । ପୁଲିଶ ତାଙ୍କୁ ଯାଜପୁର ଚାଲାଣ କରି ତାଙ୍କ ବିରୁଦ୍ଧରେ ମୋକଦ୍ଦମା ଦାଏର୍ କଲେ । କେତେକ ଓକିଲ ସ୍ୱତଃପ୍ରବୃତ୍ତ ହୋଇ ପ୍ରାଣକୃଷ୍ଣ ବାବୁଙ୍କ ସପକ୍ଷରେ ମୋକଦ୍ଦମା ଲଢ଼ିବାକୁ ବାହାରିଲେ । ''ଇନ୍ଦିରା ଗାନ୍ଧୀଙ୍କ ଏକଛତ୍ରବାଦ ଶାସନର ବିରୋଧ କରନ୍ତୁ'' ଶିରୋନାମାରେ ଏକ ପ୍ରଚାରପତ୍ର ପୁଲିଶ ବିଚାରକଙ୍କ ଆଗରେ ପେଶ୍ କରି ପ୍ରାଣକୃଷ୍ଣ ବାବୁଙ୍କ ଅପରାଧ ପ୍ରମାଣିତ କରିବାକୁ ବସିଲେ । ଜଣେ ଓକିଲ କହିଲେ - ''ଧର୍ମାବତାର !ଏକଛତ୍ରମାନେ ଗୋଟାଏ ଛତା । ଗୋଟାଏ ଛତା ତଳେ ସମସ୍ତେ ନ ରହିବାପାଇଁ ଏ ପ୍ରଚାରପତ୍ରରେ କୁହାଯାଇଛି, ଏଥିରେ ଦୂଷଣୀୟ କଥା କ'ଣ ରହିଲା ?'' ବିଚାରକ ପ୍ରଚାରପତ୍ର ଖଣ୍ଡକ ପଢ଼ି ପ୍ରାଣକୃଷ୍ଣ ବାବୁଙ୍କୁ ପଚାରିଲେ - ଏ ପ୍ରଚାରପତ୍ର ଆପଣଙ୍କୁ କିଏ ଦେଲା ? ପ୍ରାଣକୃଷ୍ଣ ବାବୁ କହିଲେ ''ରମାଦେବୀ'' । ବିଚାରକ ପୁଲିଶକୁ ପଚାରିଲେ-ରମାଦେବୀଙ୍କୁ ଗିରଫ କରାହେଲାଣି ? ପୁଲିସ ନାସ୍ତି କଲେ । ବିଚାରକ କହିଲେ-ଆଗ ରମାଦେବୀଙ୍କୁ ଗିରଫ କରିସାର ତା'ପରେ ଏହାଙ୍କ ବିଚାର ହେବ । ଦୁଇ ତିନିଦିନ ପରେ ବିଂଝାରପୁର ଥାନାର ଦାୟିତ୍ୱରେ ଥିବା ଦାରୋଗା ପୁଲିଶ ପୋଷାକ ପିନ୍ଧି ଗୁଣନିଧି ଭବନକୁ ଆସି ରମାଦେବୀଙ୍କୁ ସାକ୍ଷାତ କରିବାକୁ ଚାହିଁଲେ । ରମାଦେବୀ ଆସିଲାରୁ ସେ ସେହି ପୋଷାକ ପିନ୍ଧି ରମାଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ଦୁହେଁ ଚଉକୀରେ ବସିବା ପରେ ଦାରୋଗା ବାବୁ ସେ ପ୍ରଚାରପତ୍ର ଦେଖାଇ ରମାଦେବୀଙ୍କୁ ପଚାରିଲେ - ଏ ପ୍ରଚାରପତ୍ରରେ ଆପଣଙ୍କ ନାମ ଅଛି । ଏହା ଆପଣ କାଢ଼ିଛନ୍ତି ? ରମାଦେବୀ ହଁ ଭରିଲେ । ଦାରୋଗା ବାବୁ ପୁଣି ପଚାରିଲେ - ଏହା କେଉଁଠି ଛାପିଲେ ? ରମାଦେବୀ କହିଲେ ମୋ ପାଖରୁ ଏହା ସ୍ୱାକ୍ଷର କରାଇ ନେଇ ପିଲାଏ ଏହାକୁ କେଉଁଠି ଛାପନ୍ତି ମୁଁ ଜାଣେ ନାହିଁ । ପୁଲିଶ ପଚାରିଲେ - ସେ ପିଲାଙ୍କ ନାମ ଧାମ ପରିଚୟ କ'ଣ ? ରମାଦେବୀ କହିଲେ -ମୁଁ ସେମାନଙ୍କର ନାମ ଧାମ ଜାଣେ ନାହିଁ । ଦେଖିଲେ କେଜାଣି ଚିହ୍ନିଲେ ଚିହ୍ନିପାରିବି । ପୁଲିସ ଦାରୋଗା ପୁଣି ଥରେ ପ୍ରଣାମ କରି ଚାଲିଗଲେ । ଏ କଥା ସତ୍ୟ ଯେ ବୁଲେଟିନ୍ କେଉଁଠି ଛପା ହେଉଥିଲା କିଏ ଛାପୁଥିଲା ତାହା ରମାଦେବୀ ଜାଣି ନ ଥିଲେ । ସେ କଦାପି ପୁଲିଶ ଆଗରେ ସତ୍ୟ ଗୋପନ କରିବେ ନାହିଁ । ଏହା ଜଣା କଥା ଥିବାରୁ ଆମେ ତାଙ୍କ ଆଗରେ ଏ ବିଷୟରେ ଆଦୌ ଆଲୋଚନା କରୁ ନ ଥିଲୁ ।

ଆମର କେତେକ ବନ୍ଧୁ ଏ ଘଟଣା ଉତ୍ତାରୁ ପୁଲିଶ ସାହେବଙ୍କୁ ଏକାଧିକ ଥର ପଚାରିଲେ - ରମାଦେବୀ ତ ପ୍ରଚାରପତ୍ର ବାଣ୍ଟି ଚାଲିଛନ୍ତି, ଶୋଭାଯାତ୍ରାରେ ମଧ୍ୟ

ଯୋଗ ଦେଉଛନ୍ତି ତାଙ୍କୁ କେବେ ଗିରଫ କରିବେ ? ଜବାବ ମିଳିଲା – "ଚାର୍ଜଶିଟ୍ ପ୍ରସ୍ତୁତ ହେଉଛି । ବିଶ୍ୱସ୍ତ ସୂତ୍ରରୁ ଶୁଣାଗଲା କଟକର କେତେଜଣ ବିଶିଷ୍ଟ ମହିଳା, ମୁଖ୍ୟମନ୍ତ୍ରୀ ଓ ପୁଲିଶ କର୍ତ୍ତାଙ୍କୁ ଭେଟି କହିଥିଲେ ଯେ ରମାଦେବୀଙ୍କୁ ଗିରଫ କଲେ ତାହାର ପ୍ରତିବାଦ କରି ଆମେ ଆନ୍ଦୋଳନ କରିବୁ । ଯାହାହେଉ ଚାର୍ଜଶିଟ୍ ତିଆରି ହେଉ ହେଉ ଏମରଜେନ୍‌ସି ଉଠିଗଲା ।

ମାଳତୀ ଦେବୀଙ୍କୁ ଘେନି ଏହିପରି ହାସ୍ୟରସାତ୍ମକ ଘଟଣା ଘଟୁଥିଲା । ସେ ସମ୍ବଲପୁରରେ ଆତ୍ମଗୋପନ କରି ସାଇକ୍ଲୋଷ୍ଟାଇଲ କରି ପ୍ରଚାରପତ୍ର ଛାପି ବାଣ୍ଟୁଥିଲେ । ତାଙ୍କୁ ଜ୍ୱର ହେବାରୁ ସେ ଡ଼କ୍ଟର ସରସ୍ୱତୀ ସ୍ୱାଇଁଙ୍କ ଘରେ ରହିଲେ । ପୁଲିସ ପଚାରିବାରୁ ସରସ୍ୱତୀ ଦେବୀ ଜଣାଇ ଦେଲେ ଯେ ମାଳତୀ ଦେବୀ ତାଙ୍କ ଘରେ ଅଛନ୍ତି । ପୁଲିସ ପାଳି କରି ସରସ୍ୱତୀ ଦେବୀଙ୍କ ଘର ଆଗରେ ବସି ମାଳତୀ ଦେବୀଙ୍କୁ ଜଗିଥାନ୍ତି । ଜଗୁଆଳୀକୁ ନିର୍ଦ୍ଦେଶ ଥାଏ ଯେ ମାଳତୀ ଦେବୀ ସରସ୍ୱତୀ ଦେବୀଙ୍କ ଘରୁ ଅନ୍ୟତ୍ର ଯିବାର ଦେଖିବା ମାତ୍ରେ ଥାନାକୁ ଖବର ଦେବ । ଜଣେ ଜଗୁଆଳୀ ଦିନେ ଥାନାକୁ ଖବର ଦେଲେ ଯେ ମାଳତୀ ଦେବୀ ସରସ୍ୱତୀ ଦେବୀଙ୍କ ଘରୁ ଚାଲିଗଲେ । ପୁଲିସ କର୍ତ୍ତା ସରସ୍ୱତୀ ଦେବୀଙ୍କୁ ଟେଲିଫୋନ କରି ଏ କଥା ପଚାରି ଜବାବ ପାଇଲେ ଯେ ସେ ବର୍ତ୍ତମାନ ସୁଦ୍ଧା ଅସୁସ୍ଥାବସ୍ଥାରେ ଅଛନ୍ତି । କର୍ତ୍ତା ଜଗୁଆଳୀକୁ ପଚାରିଲେ – ମାଳତୀ ଦେବୀ ସେ ଘରୁ ଯିବାବେଳେ ତୁମେ ନିଜେ ଦେଖିଛ ?

ଜଗୁଆଳୀ-ଆଜ୍ଞା ହଁ ।

କର୍ତ୍ତା – ସେ କ'ଣ ପିନ୍ଧିଥିଲେ ?

ଜଗୁଆଳୀ – ନୀଳରଙ୍ଗ ପ୍ୟାଣ୍ଟ ଓ ଧଳା ଟେରେଲିନ୍ ସାର୍ଟ୍ ।

କର୍ତ୍ତା ବଲବଲ କରି ଜଗୁଆଳୀ ମୁହଁକୁ ଚାହିଁ ରହିଲେ । ସୁସ୍ଥ ହୋଇ କଟକ ଆସିବା ପରେ ମାଳତୀ ଦେବୀ ନିଜ ଘରେ ୩.୨.୭୬ରେ ଗିରଫ ହେଲେ ଓ ୧.୫.୭୬ରେ ଖଲାସ ହେଲେ ।

ଏହା ମଧ୍ୟରେ ଖବର ମିଳିଲା ଯେ ଜୟପ୍ରକାଶଜୀ ସାଂଘାତିକ ଭାବରେ ଅସୁସ୍ଥ ହୋଇ ପଡ଼ିବାରୁ ତାଙ୍କୁ ଜେଲ୍‌ରୁ ଖଲାସ କରାଯାଇଛି । ସେ ଦିଲ୍ଲୀରେ ଅଛନ୍ତି । ମାଳତୀ ଦେବୀ, ରମାଦେବୀ ଓ କ୍ଷେତ୍ରବାସୀ ପତି ତାଙ୍କୁ ଭେଟିବାକୁ ତୁରନ୍ତ ଦିଲ୍ଲୀ ଗଲେ । ଦେହ କୁଆପଥର ପରି ହେମାଳ, ଆଖି ଫୁଲି ପତା ସୁଦ୍ଧା ଓହଳି ପଡ଼ିଥାଏ ।

ବଞ୍ଚିବାର କୌଣସି ଆଶା ଦିଶୁ ନ ଥାଏ । ଜୟପ୍ରକାଶଜୀ ଦୁଇ ଝିଆଙ୍କୁ ଦେଖି ଖୁସି ହୋଇ କାନ୍ଦି ପକାଇଲେ । ଏଣେ କୃଷ୍ଣା ଓ ବିଭୂତି ନବକୃଷ୍ଣ ଚୌଧୁରୀଙ୍କ ସହ ମୁଲାକାତ କରିବାକୁ ବାରିପଦା ଜେଲ୍‌କୁ ଯାଇ ମୁଲାକାତୀ ନ ପାଇ କଟକ ଫେରି ଆସିଲେ । ତାଙ୍କ ଗୋଡ଼ରେ ରକ୍ତ ପଶିଛି ତେଣୁ ସେ ଚାଲି କରି ଆସି ପାରିବେ ନାହିଁ ବୋଲି ଜେଲ୍ ସୁପର୍ କହିଲେ । କୃଷ୍ଣାଠାରୁ ଏ ଖବର ସେହିଦିନ ରାତିରେ ପାଇ ମୁଁ ବିଭିନ୍ନ ସୂତ୍ରରୁ ନବବାବୁଙ୍କ ସମ୍ବନ୍ଧରେ ପ୍ରକୃତ ସମ୍ବାଦ ଜାଣିବାକୁ ଉଦ୍ୟମ କରି ବିଫଳ ହେଲି । ଚବିଶ ତାରିଖଟି ମହା ଉଦ୍‌ବେଗରେ କଟିଲା । ପଚିଶ ତାରିଖ ଦିନ ବିଭୂତି ପଚାରିବାରୁ ଡ଼ି.ଆଇ.ଜି. କହିଲେ ଯେ ନବବାବୁଙ୍କର ବ୍ରେନ୍ ଥ୍ରମ୍ବସିସ୍ ହୋଇଛି । ସେ ଚିକିତ୍ସିତ ହେଉଛନ୍ତି । କୃଷ୍ଣା ଓ ମୁଁ ତୁରନ୍ତ ବାରିପଦା ଗଲୁ । ସେତେବେଳେ ସୁଦ୍ଧା ସେ ବନ୍ଦୀ । ଅନେକ କୁହାବୋଲା କଲାପରେ ନବବାବୁଙ୍କୁ ଦେଖା କରିବା ପାଇଁ ଆମକୁ ଅନୁମତି ପତ୍ର ମିଳିଲା । ନବବାବୁ ଆମକୁ ଦେଖି ଚିହ୍ନିଲେ ମାତ୍ର ଅସ୍ପଷ୍ଟ ଜଡ଼ିତ ସ୍ୱରରେ ଯାହା କହିଲେ କିଛି ବୁଝି ହେଲା ନାହିଁ । ପାଖରେ ଥିବା ଶୁଶ୍ରୂଷାକାରୀ ଆମକୁ କହିଲେ – ତାଙ୍କୁ ଯେତେବେଳେ ଏଠାକୁ ଅଣାଗଲା ସେ ଗାଁ ଗାଁ ହେଉଥିଲେ । ଯାହାହେଉ, ସୁପରିଟେଣ୍ଡେଣ୍ଟ ଡ଼କ୍ଟର ବାନାର୍ଜି ଆମର ଧନ୍ୟବାଦାର୍ହ । ତାଙ୍କର ତତ୍ପରତା ଯୋଗୁଁ ନବବାବୁଙ୍କର ଯଥା ସମୟରେ ଚିକିତ୍ସା ହୋଇ ପାରିଲା ।

ଓଡ଼ିଶାରେ ଏମରଜେନ୍‌ସି ବିରୋଧୀ ଆନ୍ଦୋଳନର ସମ୍ପୂର୍ଣ୍ଣ ଚିତ୍ର ଐତିହାସିକମାନେ ଦେବେ । ମୋର ବକ୍ତବ୍ୟ ଏତିକି ଯେ ସ୍ୱରାଜ୍ୟ ପରେ ସର୍ବୋଦୟ ଆନ୍ଦୋଳନରେ କାମ କରୁଥିବା ସ୍ୱାଧୀନତା ସଂଗ୍ରାମର ରଥୀମାନେ ସରକାରଙ୍କର ତ୍ରୁଟି ଦର୍ଶାଇବା ସଙ୍ଗେ ସଙ୍ଗେ ସରକାରଙ୍କୁ ନାନା କ୍ଷେତ୍ରରେ ସାହାଯ୍ୟ ମଧ୍ୟ କରୁଥିଲେ । ଓଡ଼ିଶାରେ କଳାହାଣ୍ଡି ଦୁର୍ଭିକ୍ଷ, ରାଉରକେଲା ଗଣ୍ଡଗୋଳ, ବାଂଲାଦେଶ ଶରଣାର୍ଥୀ ସମସ୍ୟା ଆଦିରେ ସର୍ବୋଦୟକର୍ମୀଙ୍କ ବିବୃତି ଓ କାର୍ଯ୍ୟ ଏହାର ସାକ୍ଷୀ । ଏମରଜେନ୍‌ସୀ ବେଳେ ସର୍ବୋଦୟ କର୍ମୀ ଏହାର ବିରୋଧ କରିବାର ମୁଖ୍ୟ କାରଣ ହେଲା ଯେଉଁ ମୌଳିକ ଅଧିକାରକୁ ରକ୍ଷା କରିବା ପାଇଁ ରଉଲାଟ ଯାକ୍ଟର ବିରୋଧ କରାଯାଇଥିଲା, ସ୍ୱାଧୀନ ଭାରତରେ ସେହି ମୌଳିକ ଅଧିକାରକୁ ଛଡ଼ାଇ ନେବା ପରେ ନୀରବଦ୍ରଷ୍ଟା ହୋଇ ବସିବା ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ଜାତିର ବା ରାଷ୍ଟ୍ରର ମର୍ଯ୍ୟାଦା ରକ୍ଷା ଦୃଷ୍ଟିରୁ ସଂଖ୍ୟାରେ ମୁଷ୍ଟିମେୟ ହେଲେହେଁ ଆମମାନଙ୍କର ଏହି ବିରୋଧ ଠିକ୍ କି ଭୁଲ ତାହା ଆମର ଉତ୍ତରପୁରୁଷ ବିଚାର କରିବେ ।

ଏମରଜେନ୍‌ସିର କରାମତି ପରଖିବାକୁ ରମାଦେବୀ ବରୀ ଗଲେ । ମୁଁ ସାଙ୍ଗରେ ଗଲି । ମାତ୍ର ୧୯୪୨ର ବରୀ ଓ ୧୯୭୫ର ବରୀ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଦେଖିଲୁ । ଯେଉଁ ବରୀ ଅଞ୍ଚଳର ଲୋକେ ଭାରତଛାଡ଼ ଆନ୍ଦୋଳନରେ ଗୋଳାବାରୁଦ ଆଗରେ ଛାତି ପତେଇ ଦେଇଥିଲେ ସେହି ଅଞ୍ଚଳର ଲୋକେ ପୁଲିସର ଡ଼ରାଣରେ ରମାଦେବୀଙ୍କ ସଙ୍ଗେ କୁଶଳ ସମାଚାର ବିନିମୟ କରିବାକୁ ସୁଦ୍ଧା ଭରସିଲେ ନାହିଁ । ମୁଷ୍ଟିମେୟ କେତେଜଣ ବାହାରି ରମାଦେବୀଙ୍କ ପାଖକୁ ଆସି କଥାବାର୍ତ୍ତା କଲେ । ଏମରଜେନ୍‌ସିର କୋକୁଆ ଭୟରେ ସମସ୍ତେ ଭୀତତ୍ରସ୍ତ । ରବୀନ୍ଦ୍ରନାଥ କହି ଯାଇଥିଲେ:

ଯଦି କେଇ କଥା ନ କୟ,

ଓରେ ଓରେ ଓ ଅଭାଗା

ଯଦି ସବାଇ ଥାକେ ମୁଖ ଫିରାୟେ

ସବାଇ କରେ ଭୟ

ତବେ ପରାଣ ଖୁଲେ ମୁଖ ଫୁଟେ ତୋର

ମନେର କଥା ଏକଲା ବଲୋରେ ॥

ସେହି ଅନୁଭୂତି ଅଙ୍ଗେ ଲିଭେଇଲୁ ।

ବରୀରେ ତଥାପି ବିଭିନ୍ନ ଗାଁରେ ବୁଲିଲୁ । ବର୍ଷାଦିନ । ହୁଲିରେ ଯିବାକୁ ପଡୁଥାଏ । ରଜୋଙ୍ଗ, ପଘିଡ଼ା ଆଦି ଗାଁକୁ ଗଲୁ । ସବୁ ପୁରୁଣା କର୍ମକ୍ଷେତ୍ର । ମାତ୍ର ଲୋକଙ୍କ ମଧ୍ୟରେ ସ୍ପନ୍ଦନ ଅନୁଭବ କଲୁ ନାହିଁ । ଆହୁରି ବୁଲି ବୁଲି ଏମରଜେନ୍ସିର ପ୍ରଭାବ କଳିବାର ଇଚ୍ଛା ଥିଲା । ଖବର ପାଇଲୁ ହୋତା ମହାଶୟଙ୍କ ଗୋଡ଼ ଭାଙ୍ଗି ଯାଇଛି । ଏମରଜେନ୍ସି ଜାରି ହେବା ପରେ ହୋତା ମହାଶୟ ମଧ୍ୟେ ମଧ୍ୟେ ସ୍ୱଗତୋକ୍ତି କରନ୍ତି ''ଜୟପ୍ରକାଶ ଜିତିଗଲା ।''

ଆମେ ଡ଼ାକ୍ତରଖାନାରେ ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ମୋତେ କହିଲେ- ବୁଝିଲୁ ! ରାଧାନାଥ ରଥେ ମୋତେ ଦେଖିବାକୁ ଆସିଥିଲେ । ମୋତେ କହିଲେ ମୁଁ ଦିଲ୍ଲୀ ଯାଉଛି । ମୁଁ ତାଙ୍କୁ କହିଲି, ''ତୁମର ଦିଲ୍ଲୀ ଚଲୋ, ଆମର ଦେହାତ୍ ଚଲୋ ।'' ସେହିପରି ଠୋ ଠୋ କଥା । ସେହିପରି ତେଜସ୍ୱୀ ମୁଖମୁଦ୍ରା । ବିପ୍ଳବର ପ୍ରତିମୂର୍ତ୍ତି ।

୨୬.୭.୭୫ରେ ସେ ତେଜ ମହାତେଜରେ ବିଲୀନ ହୋଇଗଲା । ବିପ୍ଳବର ପ୍ରତିମୂର୍ତ୍ତି ହୋତା ମହାଶୟ ଉଭେଇ ଗଲେ, ଦେହଟା ପଡ଼ି ରହିଲା ।

ସେ ବହୁ ପୂର୍ବରୁ ଭ୍ରାତୃପୁତ୍ର ବାଞ୍ଛାନିଧି ବାବୁଙ୍କୁ ତାଗଦା କରି କହିଥିଲେ- "ମୋହନ ନାୟକ ମୋତେ ମୁଖାଗ୍ନି ଦେବ।" ମୋହନ ନାୟକ ସେତେବେଳେ ମନ୍ତ୍ରୀ । ସେ ଗଞ୍ଜାମ ଗସ୍ତରେ ଯାଇଥିଲେ । ରମାଦେବୀଙ୍କ ଟେଲିଫୋନ୍ ପାଇ ଗୁଣନିଧି ଭବନକୁ ଆସି ହୋତା ମହାଶୟଙ୍କୁ ଜଗି ବସିଲେ, ସେହି ମୁଖାଗ୍ନି ଦେଲେ । ମୋହନ ନାୟକ ଥିଲେ ହୋତା ମହାଶୟଙ୍କ ମାନସ ପୁତ୍ର ।

ଏହି ଏମରଜେନ୍ସି ମଧ୍ୟରେ ବିନୋବାଜୀ ଗୋବଧ ବନ୍ଦ ପାଇଁ ଆମରଣ ଅନଶନ କରୁଥିବା ଖବର ଆସି ପହଞ୍ଚିଲା । ବିନୋବାଜୀ ତ ମୌନ ଧାରଣ କରିଥିଲେ ବର୍ଷକ ପାଇଁ । ଶ୍ରୀ ବସନ୍ତ ଶାଠେ ତାଙ୍କୁ ଦେଖା କରିବା ପାଇଁ ପଓନାର ଆସିଥିଲେ । କୁଆଡ଼େ ଆସିଛନ୍ତି ବୋଲି ବିନୋବାଜୀ ମୁଣ୍ଡ ହଲାଇ ପଚାରିବାରୁ ଶାଠେ କହିଲେ ବର୍ତ୍ତମାନ ପରିସ୍ଥିତି ସଂଦର୍ଭରେ । ବିନୋବାଜୀ କୁଆଡ଼େ ଖଣ୍ଡେ କାଗଜରେ ଲେଖିଦେଲେ "ଅନୁଶାସନ ପର୍ବ" ? ଶାଠେ ସେ କାଗଜ ଖଣ୍ଡକ ପକେଟରେ ପୂରେଇ ନେଇଗଲେ । ଆକାଶବାଣୀରେ ସରକାରୀ ମୁଖପାତ୍ର କହିଲେ-ବିନୋବାଜୀ ଏମରଜେନ୍ସିକୁ ଅନୁଶାସନ ପର୍ବ କହିଛନ୍ତି । ବିନୋବାଜୀଙ୍କ ପାଖଲୋକଙ୍କ ଠାରୁ ଆମେ ଏ କଥା ଶୁଣିଲୁ । ପୁଣି ଶୁଣିଲୁ ବିନୋବାଜୀଙ୍କ ପାଖକୁ ଇନ୍ଦିରାଜୀ ଆସି ପଚାରିଥିଲେ - ମୁଁ ପ୍ରଧାନମନ୍ତ୍ରୀ ପଦ ଛାଡ଼ିବି ନା ନାହିଁ । ବିନୋବାଜୀ କୁଆଡ଼େ ଲେଖିଦେଲେ 'ଡ଼ଟେ ରହୋ' ଏହି ସବୁ କଥା ଶୁଣି ଦେଶବାସୀଙ୍କର ଧାରଣା ହେଲା ଯେ ବିନୋବାଜୀ ଏମରଜେନ୍ସି ଓ ଇନ୍ଦିରାଗାନ୍ଧୀଙ୍କ କାର୍ଯ୍ୟକୁ ସମର୍ଥନ କରୁଛନ୍ତି । ଏହା ଫଳରେ ଦେଶର ବହୁ ଲୋକଙ୍କର ସେ ଶ୍ରଦ୍ଧା ହରାଇଲେ ।

ଯାହାହେଉ ଗୋବଧ ବନ୍ଦ ପାଇଁ ଅନଶନ କରିବା କଥା ଘୋଷଣା କରିବାରୁ ଅନେକେ ଭାବିଲେ ଯେ ଏଥର ବିନୋବାଜୀ ଇନ୍ଦିରାଜୀଙ୍କ କାର୍ଯ୍ୟର ବିରୋଧ ଏହି ଅନଶନ ଦ୍ୱାରା କରିବେ ।

ରମାଦେବୀ ଏ ଅନଶନ କରିବା ଖବର ପାଇବା ମାତ୍ରେ ପଓନାର ଗଲେ । ବିନୋବାଜୀଙ୍କ ସଙ୍ଗେ କଥାବାର୍ତ୍ତା କରି ଆମେ ଓଡ଼ିଆରେ ପ୍ରଚାରପତ୍ର ଚିଠା କରି ବିନୋବାଜୀଙ୍କୁ ଦେଖାଇଲୁ । ସେ ତାହା ମଞ୍ଜୁର କଲେ । ଆମେ ଏମରଜେନ୍ସି ବିରୋଧୀ ପ୍ରଚାର-ପତ୍ରଗୁଡ଼ିକ ପ୍ରେସ୍‌ର ନାମ ନ ଦେଇ ଛାପୁଥିବା କଥା ତାଙ୍କୁ କହିଲୁ । ଏ ଗୋବଧ ବନ୍ଦ ବିଷୟକ ପ୍ରଚାର-ପତ୍ର କୌଣସି ପ୍ରେସ୍ ନ ଛାପିଲେ ହାତରେ ଲେଖି ବା ସାଇକ୍ଲୋଷ୍ଟାଇଲ୍ କରି ବାଣ୍ଟିବାକୁ ସେ ନିର୍ଦ୍ଦେଶ ଦେଲେ ।

ଆମେ ଯେ ଏମରଜେନ୍‌ସିର ବିରୋଧ କରୁଛୁ, ଏହା ପଓନାରରେ ଏତେ ଲୋକ ପସନ୍ଦ କରିବେ ବୋଲି ଆମେ ଆଶା କରି ନ ଥିଲୁ । ଧୀରେନ୍ ଭାଇ (ମଜୁମଦାର)ଙ୍କ ପାଖ ଲୋକ କହିଲେ - ଧୀରେନ୍ ଭାଇ କହୁଛନ୍ତି - ରାଜହଟ, ବାଳହଟ, ସ୍ତ୍ରୀ ହଟ ତ ପ୍ରଖ୍ୟାତ । ବର୍ତ୍ତମାନ ରାଜହଟ ଓ ସ୍ତ୍ରୀହଟ ଏକତ୍ର ହୋଇଛି ତେଣୁ ଅବସ୍ଥା ସଙ୍ଗୀନ । ଦାଦା ଧର୍ମାଧିକାରୀ ତ ରମାଦେବୀ ଏମରଜେନ୍‌ସିର ବିରୋଧ କରୁଥିବା କଥା ଶୁଣି ତାଙ୍କୁ ଶୁଭେଚ୍ଛା ଜଣାଇ କହିଲେ : ମୁଁ ସୁସ୍ଥ ଥିଲେ ଆପଣଙ୍କ ବାଟ ଧରିଥାନ୍ତି । ଏହିପରି ଅନେକ ପ୍ରକାରେ ଏମରଜେନ୍‌ସି ବିରୁଦ୍ଧରେ କାମ କରିବାକୁ ଉତ୍ସାହିତ କଲେ ।

ଓଡ଼ିଶାକୁ ଫେରି ବିଭିନ୍ନ ପ୍ରେସ୍‌କୁ ଯାଇ ଗୋହତ୍ୟା ବନ୍ଦ ସମ୍ବନ୍ଧୀୟ ପ୍ରଚାର-ପତ୍ର ଛପାଇବା ପାଇଁ ଚେଷ୍ଟା କଲୁ । କେହି ସେଥିକୁ ରାଜି ହେଲେ ନାହିଁ । ତେଣୁ ହାତରେ ଲେଖି ବାଣ୍ଟିବା ଆରମ୍ଭ କରିଦେଲୁ । ଗୋବଧ ବନ୍ଦ କାମରେ ମୁଁ ବିଭିନ୍ନ ଜିଲ୍ଲାରେ ବୁଲିଲି । ଯେଉଁଠାକୁ ଯାଉଥାଏ ପଛେ ପଛେ ସ୍ପେଶାଲ ବ୍ରାଞ୍ଚର ଲୋକ ଚାଲିଥାନ୍ତି ଏବଂ ମୁଁ ଭେଟୁଥିବା ଲୋକଙ୍କୁ ନାନାପ୍ରକାରେ ଜେରା କରୁଥାନ୍ତି । ସମଗ୍ର ଭାରତରେ ଅଗଷ୍ଟ ଏଗାର ତାରିଖ ଦିନଟି ପ୍ରାର୍ଥନା ଦିବସ ରୂପେ ପାଳନ କରିବାକୁ ଏବଂ ପଦଯାତ୍ରା କରି ଲୋକଙ୍କୁ ଗୋବଧ ବନ୍ଦ କଥା ବୁଝାଇବା କାର୍ଯ୍ୟକ୍ରମ ସ୍ଥିର ହୋଇଥାଏ । ତଦନୁସାରେ ଶ୍ୟାମଳୀ ମହାପାତ୍ର ଓ ମାଳତୀ ଦେବୀ କୋରାପୁଟ ଗଲେ । ମୁଁ ଏଗାର ତାରିଖ ଦିନ ମୟୁରଭଞ୍ଜର ନଳରାଜାରେ ପ୍ରାର୍ଥନା ସଭାରେ ଯୋଗ ଦେଲି । ଅଗଷ୍ଟ ତେର ତାରିଖରେ ଖବର ପାଇଲୁ ଯେ ପଦଯାତ୍ରା ଆଦି କାର୍ଯ୍ୟକ୍ରମ ସ୍ଥଗିତ ହେଲା ।

ବିନୋବାଜୀଙ୍କ ଇଚ୍ଛାନୁସାରେ ୩୦.୬.୭୬କୁ ସର୍ବସେବା ସଂଘର ଅଧିବେଶନ ପଓନାରଠାରେ ହେବା ସ୍ଥିର ହେବା ଖବର ପାଇ ଆମେ ଅର୍ଥାତ୍ ରମାଦେବୀ, ମଙ୍ଗଳା ଦେବୀ ଓ ମୁଁ ପଓନାର ଗଲୁ । ଏହା ମଧ୍ୟରେ ଭାରତର ବିଭିନ୍ନ ରାଜ୍ୟର ଭାଇସ୍ ଚାନ୍‌ସେଲର୍, ଅବସରପ୍ରାପ୍ତ ଜଜ୍ ଓ ଅଧ୍ୟାପକ ତଥା ବିଶିଷ୍ଟ ନିରପେକ୍ଷ ବ୍ୟକ୍ତିଙ୍କର ଏକ ବୈଠକ ପଓନାରରେ ହୋଇ ସାରିଥିଲା । ଏହା ଥିଲା 'ଆଚାର୍ଯ୍ୟକୁଳ' ବୈଠକ । ଏହି ବୈଠକରେ ମିଶାବନ୍ଦୀମାନଙ୍କୁ ମୁକ୍ତ କରି ଦେବାକୁ ଏମରଜେନ୍ସି ଉଠାଇ ଦେବାକୁ ଓ ସାଜି ନିର୍ବାଚନ କରିବା ପାଇଁ ପ୍ରସ୍ତାବ ଗୃହୀତ ହେଲା । ଶ୍ରୀମାନ୍ ନାରାୟଣଜୀ ଏହି ପ୍ରସ୍ତାବ ନେଇ ପ୍ରଧାନମନ୍ତ୍ରୀଙ୍କୁ ଦେବାକୁ ଦିଲ୍ଲୀ ଗଲେ । ମାତ୍ର ପ୍ରଧାନମନ୍ତ୍ରୀ ତାଙ୍କୁ ଦେଖା ଦେଲେ ନାହିଁ । ପୁଣି ଚଳିତ ବର୍ଷ ସେପ୍‌ଟେମ୍ବର ଏଗାର ତାରିଖରୁ ବିନୋବାଜୀ

ଆମରଣ ଅନଶନ ଗୋବଧ ବନ୍ଦ ପାଇଁ କରିବେ ବୋଲି ଘୋଷଣା କରିବାରୁ ତାଙ୍କ ଭାଷଣ ସେନ୍‌ସର ହେଲା ଏବଂ ବ୍ରହ୍ମବିଦ୍ୟା ମନ୍ଦିରର ମୁଖପତ୍ର ''ମୈତ୍ରୀ'' ମଧ୍ୟ ସେନ୍‌ସର ସ୍ୱାଦ ଚାଖିଲା । ପୁଣି ଆଚାର୍ଯ୍ୟକୁଳ ପ୍ରସ୍ତାବର ପାଲଟା ଜବାବ ଦେବାକୁ ବମ୍ବେରେ ସରକାରଙ୍କ ଉଦ୍ୟମରେ ଏକ ଆଚାର୍ଯ୍ୟ ସମ୍ମିଳନୀ ମଧ୍ୟ ଅନୁଷ୍ଠିତ ହୋଇ ଯାଇଥିଲା ।

ଏହି ପ୍ରକାର ପରିସ୍ଥିତିରେ ପଓନାରରେ ପହଞ୍ଚି ଦେଖିଲୁ ଧାମ୍ ନଦୀ କୂଳ ପୁଲିଶ ତମ୍ବୁରେ ବସ୍ତନଗରୀରେ ପରିଣତ ହୋଇଛି । ଶହ ଶହ ପୁଲିଶ ନିଯୁକ୍ତ କରାଯାଇଛନ୍ତି । ମୈତ୍ରୀ ପତ୍ରିକାର କାର୍ଯ୍ୟାଳୟ ଖାନତଲାସ କରାଯାଇ ଛାପା ହୋଇ ରହିଥିବା ''ମୈତ୍ରୀ'' ପତ୍ରିକା ଓ ଅନ୍ୟ କାଗଜପତ୍ର ପୁଲିଶ ନେଇ ଯାଇଛନ୍ତି । ସର୍ବସେବାସଂଘ ଅଧିବେଶନ ଆରମ୍ଭ ହେବା ମାତ୍ରେ ସମସ୍ତଙ୍କୁ ଗିରଫ କରି ନେବାକୁ ଦିଲ୍ଲୀରୁ ମୌଖିକ ଆଦେଶ ଆସିଛି ।

ଏହା ମଧ୍ୟରେ ଗୋଟିଏ ଅଘଟନ ଘଟିଗଲା । ହାଇଦ୍ରାବାଦର ପ୍ରଭାକରଜୀ ପ୍ରଧାନମନ୍ତ୍ରୀଙ୍କୁ ଭେଟି ମୈତ୍ରୀ ପତ୍ରିକା ବାଜ୍ୟାପ୍ତ ହେବା କଥା କହିବାରୁ ପ୍ରଧାନମନ୍ତ୍ରୀ ମହାରାଷ୍ଟ୍ର ସରକାରଙ୍କର ଏ କାର୍ଯ୍ୟରେ ବିସ୍ମୟ ପ୍ରକାଶ କରି ଏ ବିଷୟରେ ସେ କିଛି ଜାଣନ୍ତି ନାହିଁ ବୋଲି କହିଲେ । ମହାରାଷ୍ଟ୍ର ସରକାର ଏ ଖବର ପାଇଁ ସ୍ତମ୍ଭୀଭୂତ ହେଲେ ଏବଂ ସର୍ବସେବାସଂଘର ସଦସ୍ୟଙ୍କୁ ଗିରଫ କରି ନେବାକୁ କେବଳ ମୌଖିକ ଆଦେଶ ମିଳିଥିବାରୁ ''ମୈତ୍ରୀ'' ବ୍ୟାପାରରେ ଅପ୍ରସ୍ତୁତ ହେବା ଭଳି ଘଟଣା ଘଟିବା ଆଶଙ୍କାରେ ଲିଖିତ ଆଦେଶ ଦିଲ୍ଲୀରୁ ନ ଆସିଲେ ଆମେ ଗିରଫ କରିବୁ ନାହିଁ ବୋଲି ଅଡ଼ି ବସିଲେ । ଲିଖିତ ଆଦେଶ ଆସିଲା ନାହିଁ । ଆମର ଶ୍ରୀକୃଷ୍ଣ ଜନ୍ମସ୍ଥାନ ପୁନଦର୍ଶନ ହୋଇ ପାରିଲା ନାହିଁ । ଭାରତର ବିଭିନ୍ନ ଅଞ୍ଚଳରୁ ଅଧିବେଶନରେ ଯୋଗ ଦେବାକୁ ଆସିଥିବା ଲୋକସେବକଙ୍କଠାରୁ ଏମରଜେନ୍ସି ଜନିତ ଘଟଣାବଳୀ ଶୁଣିବାକୁ ମିଳିଲା । ସେ ସବୁ ବର୍ଣ୍ଣନା କଲେ ପୋଥି ହେବ ।

ପୁଣି ପଓନାରରେ ଜୟଦେବଙ୍କ ଠାରୁ ଏହା ମଧ୍ୟ ଶୁଣିଲୁ ଯେ ଇନ୍ଦିରାଜୀ ବିନୋବାଜୀଙ୍କୁ ପଓନାରରେ ଭେଟିବା ପାଇଁ ଆସିଥିବା ବେଳେ ବିନୋବାଜୀ ତାଙ୍କୁ କହିଥିଲେ ଯେ ସବୁ ବନ୍ଦୀଙ୍କୁ ମୁକ୍ତ କରି ଏମରଜେନ୍‌ସି ଉଠାଇ ଦିଅ । ଇନ୍ଦିରାଜୀ ତାଙ୍କୁ ସେ କଥା ଇନ୍ଦିରାଙ୍କ ଉପରେ ଛାଡ଼ି ଦେବାକୁ କହିଥିଲେ ଏବଂ ସେ ପୁଣି ସର୍ବସେବାସଂଘର ଟ୍ରଷ୍ଟି ରାମଚନ୍ଦ୍ରନ୍‌ଜୀଙ୍କୁ ବନ୍ଦୀଥିବା ସର୍ବୋଦୟ କର୍ମୀଙ୍କ ତାଲିକା ମାଗିଥିଲେ । କେବଳ

ସର୍ବୋଦୟ କର୍ମୀଙ୍କ ପ୍ରତି ଏ ଅନୁଗ୍ରହ ସ୍ୱୀକାର କରିବାକୁ ରାମଚନ୍ଦ୍ରନ ରାଜି ହେଲେ ନାହିଁ । ସେ ବୋଧହୁଏ ବୁଝି ପାରିଥିଲେ ଯେ ଏହି ଉପାୟରେ ଇନ୍ଦିରାଜୀ ସର୍ବୋଦୟ କର୍ମୀ ଓ ଅନ୍ୟମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରିବାକୁ ପାଞ୍ଚିଲେଣି । ରାମଚନ୍ଦ୍ରନ ଏ ବିଶେଷ ସୁବିଧା ନ ନେବାକୁ ବିନୋବାଜୀଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲେ ଏବଂ ବିନୋବାଜୀ ତାଙ୍କ ସହିତ ଏକମତ ହୋଇଥିଲେ । ରାମଚନ୍ଦ୍ରନଙ୍କ ପ୍ରତ୍ୟୁତ୍ପନ୍ନମତିତ୍ୱ ଆଉ ଗୋଟିଏ ଫାଶରୁ ଦେଶକୁ ରକ୍ଷା କଲା । ଫେବୃୟାରୀ (୧୯୭୬) ସୁଦ୍ଧା ଇନ୍ଦିରାଜୀ ପ୍ରତିଶ୍ରୁତି ରକ୍ଷା ନ କରିବାରୁ ବିନୋବାଜୀ ମାର୍ଚ୍ଚରୁ ବଖତେ ଖାଇବା ଛାଡ଼ିଦେଲେ । ଇନ୍ଦିରାଜୀ ତାଙ୍କର ଏ ବକତେ ଖାଇବା ଛାଡ଼ିବା ଖବର ପାଇ ଉଦ୍‌ବେଗ ପ୍ରକାଶ କରି ତାଙ୍କର ମୂଲ୍ୟବାନ ଜୀବନ ଦେଶ ପାଇଁ ରକ୍ଷା କରିବା ଦୃଷ୍ଟିରୁ ଖାଦ୍ୟ ଗ୍ରହଣ କରିବା ପାଇଁ ଅନୁରୋଧ କଲେ । ବିନୋବାଜୀ ନିରୁତ୍ତର ରହିଲେ । ବିନୋବାଜୀଙ୍କ ଆମରଣ ଅନଶନ ସମ୍ବାଦ ପାଇ ରମାଦେବୀ ଓ ମୁଁ ପୁଣି ପଓନାର ଗଲୁ । ସଂବିଧାନରେ ଗୋବଧ ବାବଦରେ ଯାହା ନିର୍ଦ୍ଦେଶ ଅଛି ତଦନୁସାରେ ଏଣିକି ଗୋବଧ ନିୟନ୍ତ୍ରିତ ହେବ ବୋଲି ନିର୍ଭର ପ୍ରତିଶ୍ରୁତି ମିଳିବାରୁ ଆମେ ପହଞ୍ଚିବା ବେଳକୁ ବିନୋବାଜୀ ଅନଶନ ଛାଡ଼ିଥିଲେ ।

ମିଶାବନ୍ଦୀ ଅନାଦି ନାୟକ ଅକ୍ଟୋବର ସତେଇଶ ତାରିଖରେ ଭବାନୀପାଟଣା ଜେଲ୍‌ରୁ ପାରୋଲରେ ଖଲାସ ହୋଇ କଟକ ଆସିଲେ । ତାଙ୍କର ଆମେରିକାନ ସ୍ତ୍ରୀ ଶ୍ରୀମତୀ ପଲା ସେତେବେଳକୁ ଝିଅ ତପୁକୁ ସାଙ୍ଗରେ ନେଇ ଆମେରିକା ଯାଇ ସାରିଥିଲେ । ତାଙ୍କର ସୂତାହାଟ ବାସଭବନରେ ସ୍ପେଶାଲ ବ୍ରାଞ୍ଚର ଲୋକ ପଶି ତାଙ୍କୁ କିପରି ହଇରାଣ ହଟହଟା କଲେ ସେ ଏକ ସ୍ୱତନ୍ତ୍ର ଅଧ୍ୟାୟ । ବାଧ୍ୟହୋଇ ପଲା କଲିକତା ଯାଇ ଆମେରିକାର କନସୁଲେଟରେ ସବୁକଥା ଜଣାଇବାରୁ ସେମାନେ ରାଜ୍ୟ ସରକାରଙ୍କ ଉପରେ ଚାପ ଦେବାରୁ ପଲା ନିଷ୍କୃତି ପାଇଲେ ।

କଟକରେ ଥିବାବେଳେ ଅନାଦି ଟେଲିଫୋନ ଯୋଗେ ପିଲାଙ୍କ ସଙ୍ଗେ କଥାବାର୍ତ୍ତା କରିବା ପରେ ପରେ ମୋତେ କହିଲେ- ମୁଁ ଆମେରିକା ପଳେଇଯିବାକୁ ଚାହେଁ । ମୁଁ ତାଙ୍କୁ କହିଲି ଗାନ୍ଧିଜୀ ବନ୍ଦୀ ହେବା ପରେ ଦଣ୍ଡର ଅବଧି ଶେଷ ହେବାଯାଏ ଜେଲ୍‌ରେ ରହୁଥିଲେ । ଜୟପ୍ରକାଶଜୀ ଜେଲ୍ ପାଚେରୀ ଡ଼େଇଁ ପଳେଇଥିଲେ । ତମେ ନୀତିଦୃଷ୍ଟିରୁ ବିଚାର କରି ତମ ବାଟ ଧର । ଅନାଦି ଏ ବିଷୟରେ ରମାଦେବୀଙ୍କ ସଙ୍ଗେ ଆଦୌ ଆଲୋଚନା କଲେ ନାହିଁ । କାରଣ ରମାଦେବୀ ସମସ୍ତଙ୍କୁ ଜଣାଇ ଦେଇଥିଲେ ଯେ ସେ ଲୁଚେଇ କରି କୌଣସି କାମ କରିବେ ନାହିଁ ଏବଂ ପୁଲିସ ଆଗରେ ସତ୍ୟ

କହିବେ । ବୋଧହୁଏ ସେଥିପାଇଁ ତାଙ୍କୁ କିଛି ନ ଜଣାଇ ଅନାଦି କଟକରୁ ଟାଟା-ବନାରସ ବାଟେ ନେପାଳ ଚାଲିଗଲେ । ସେଠାରୁ ଆମେରିକା ଗଲେ ।

ଆଉଜଣେ ଅମରଧାମକୁ ଗଲେ ପ୍ରଭାମୟୀ ଦାସ । ଦାସେ ଆପଣେଙ୍କ ଦୌହିତ୍ରୀ । ଆମମାନଙ୍କୁ ସେ ନାନା କାମରେ ସହଯୋଗ କରୁଥିଲେ । ହିନ୍ଦୁ ମୁସଲମାନ ଗଣ୍ଡଗୋଳ ବେଳେ ଶାନ୍ତିସ୍ଥାପନା କାମରେ ସେ ମୁସଲମାନ ବସ୍ତିରେ କେତେ ବୁଲିଥିଲେ । ମହିଳା ଶିବିର ଓ ସ୍ତ୍ରୀ ଶକ୍ତି-ଜାଗରଣ କାମରେ ତ ସେ ଅଗ୍ରଣୀ ଥିଲେ । ତାଙ୍କର ପ୍ରାଣଖୋଲା ହସ, ମୁରୁଜ ପକାଇବା, ଚିତା ଲେଖାଠାରୁ ଆରମ୍ଭ କରି ସାରଗର୍ଭକ ବକ୍ତୃତା ଦେବାଯାଏ ସବୁ କାମ ବୁଦ୍ଧିଶ୍ରୀମଣ୍ଡିତ ଥିଲା । ତାଙ୍କ ବିୟୋଗରେ ଯେଉଁ ରିକ୍ତତା ବୋଧ ହେଲା ତାହା ବୋଧହୁଏ ତାଙ୍କ ସଙ୍ଗେ ଦେଖା ହେବାଯାଏ ସେହିପରି ରହିବ ।

ଆଉଜଣେ ତ ମେଲାଣି ନେବାକୁ ସଜବାଜ ହୋଇ ବସି ରହିଥାନ୍ତି – ସେ ଆମ ଜୟପ୍ରକାଶଜୀ । ନବବାବୁଙ୍କ ଠାରୁ ଖଣ୍ଡେ ଚିଠି ନେଇ ତାଙ୍କ ପାଖକୁ କଲିକତା ଗଲି । ସେହି ଶିଶୁସୁଲଭ ମଧୁର ହସଟି ହସିଦେଇ ଗୋଟିଗୋଟି କରି ସମସ୍ତଙ୍କ କୁଶଳବାର୍ତ୍ତା ପଚାରି ସାରି ମୁହଁଟି ଶୁଖେଇ କହିଲେ – ମୋ ଦେହଟା କିନ୍ତୁ ଭଲ ନାହିଁ । ପାଖରେ ବସିଥିବା ସାହାଯ୍ୟକାରିଣୀ ଜାନ୍‌କୀକୁ ପଚାରିଲେ ମୋର କ'ଣ ହୋଇଛି ? ଜାନକୀ କହିଲେ କିଡ଼୍‌ନୀ କାମ କରୁନାହିଁ । ମୋ ଆଡ଼କୁ ଚାହିଁ ସେଇ କଥାଟା ସେ ଦୋହରେଇଲେ "କିଡ଼୍‌ନୀ କାମ କରୁନାହିଁ" । ପୁଣି ଜାନକୀକୁ ଚାହିଁ ପଚାରିଲେ – ସେଥିପାଇଁ କ'ଣ କରାଯାଉଛି । ଜାନକୀ କହିଲେ-ଡ଼ାୟଲିସିସ୍ ହେଉଛି । ହଁ ପରା ! ମୋର ଡ଼ାୟଲିସିସ୍ ହେଉଛି । ଦେଖିଲ କେମିତି ମୋ ଗୋଡ଼ ଓ ହାତର ଶିର କାଟିଦେଇ ପଟି ବାନ୍ଧି ଦେଇଛନ୍ତି । ଜୟପ୍ରକାଶଜୀଙ୍କ ମୁହଁରୁ ଏ ପ୍ରକାର କଥା ଶୁଣି ମୋ ଭିତରୁ କୋହ ଉଠୁଥାଏ । କୌଣସି ପ୍ରକାରେ ଆତ୍ମସମ୍ବରଣ କରି ମନମୋହନ ଚୌଧୁରୀ ଜେଲରୁ ଦେଇଥିବା ଚିଠିଟି ହାତକୁ ବଢ଼ାଇ ଦେଲି, ଚିଠି ଉପରେ ଗୋଟିଏ ଅପରାଜିତା ପୁଷ୍ପଗୁଚ୍ଛ ଚିତ୍ରିତ ହୋଇ ଲେଖାଥିଲା –

ଆଦରଣୀୟ ଜୟପ୍ରକାଶଜୀ !

ସାଦର ପ୍ରଣାମ । ଅନ୍ନପୂର୍ଣ୍ଣା ସେ ସାରୀ ଜାନ୍‌କାରୀ ମିଲେଗୀ । ହମ୍ ସବ ପ୍ରସନ୍ନ ହେଁ । ବିଶ୍ୱଭରକା ଅଁଧେରା ଭୀ ଏକ ଛୋଟେ ଦୀପକ୍‌କୋ ବୁଝା ନହୀଁ ସକତା । ଇସ୍ ଶ୍ରଦ୍ଧାସେ ହମ୍ ଛୋଟେ ଛୋଟେ କାର୍ଯ୍ୟକର୍ତ୍ତା ଡ଼ଟେ ହୁଏ ହେଁ ।

ଆପ୍‌କୋ ଈଶ୍ୱର ଦୀର୍ଘାୟୁ କରେଁ ।

ଆପ୍‌କା

ମନମୋହନ

କଟକ

ମନମୋହନଙ୍କ ଚିଠି ପଢ଼ିବା ପରେ ସେ ଓଡ଼ିଶା କାମ ବିଷୟରେ କଥାବାର୍ତ୍ତା ଆରମ୍ଭ କଲେ । ଆନ୍ଦୋଳନ କଥା ପଡ଼ିଲାରୁ ସେହି ପୁରୁଣା ତେଜସ୍ୱୀ ଜୟପ୍ରକାଶଙ୍କ ବୁଦ୍ଧିମତ୍ତା ଓ କଥନ ଶୈଳୀ ପୁଣି ଦେଖା ଦେଲା । ନବବାବୁଙ୍କ ଚିଠିର ଉତ୍ତର ମଧ୍ୟ ସେ ସ୍ୱହସ୍ତରେ ଲେଖିଦେଲେ । ଆଶ୍ୱସ୍ତ ହୋଇ ଫେରିଲି ଯେ ଶାରୀରିକ ଅସୁସ୍ଥତା ତାଙ୍କର ବୁଦ୍ଧି-ପ୍ରଭାକୁ ମ୍ଳାନ କରି ପାରିନାହିଁ ।

ସେହି ଡ଼ିସେମ୍ବରରେ ପୁଣି ସର୍ବୋଦୟ ସମ୍ମିଳନୀରେ ଯୋଗ ଦେବାକୁ ପଓନାର୍ ଗଲୁ । ତୁର୍କମାନ୍ ଗେଟ୍ ହତ୍ୟାକାଣ୍ଡ ଠାରୁ ଆରମ୍ଭ କରି ଆଲଓ୍ୱାରର ରାଜବଂଶ ଲୋପ ପର୍ଯ୍ୟନ୍ତ ଏମରଜେନ୍‌ସିର କରାମତି ପୁରାଣ ଶୁଣି ସ୍ତବ୍ଧ ହୋଇଗଲି । ଯେଉଁମାନେ ଏମରଜେନ୍‌ସିର ବିରୋଧୀ ସେମାନଙ୍କ ମତାମତ ତ ଶୁଣିଲି । କଂଗ୍ରେସ (ଆଇ)ର ବୋଧା ଲୋକେ କ'ଣ ଭାବୁଛନ୍ତି ତାହା ଜାଣିବାକୁ ମୋର ମନ ହେଲା । କଂଗ୍ରେସ (ଆଇ)ରେ ଥିବା ଜଣେ ଘନିଷ୍ଠ ବନ୍ଧୁଙ୍କୁ ଭେଟି ଏମରଜେନ୍‌ସିର ସୁଫଳ ବିଷୟରେ ଜାଣିବାକୁ ଚାହିଁଲି । ସେ ତଳ ଓଠଟିକୁ ଓହଳେଇ ଦେଇ କହିଲେ ଏକ ଦୁଇ କରି ସୁଫଳ ଶୁଣ । ଏମରଜେନ୍ସି ଫଳରେ (୧) ସରକାରୀ କର୍ମଚାରୀଙ୍କ ଲାଞ୍ଚ ନେବା ବଢ଼ିଛି । (୨) କଂଗ୍ରେସ ଅନୁଷ୍ଠାନ କେବଳ କଳାଟଙ୍କା ବଳରେ ଚାଲିଛି । (୩) ଏମରଜେନ୍ସି ନ ଥାଇ ଡ଼କ୍ଟର ପ୍ରଫୁଲ୍ଲ ଘୋଷ ପଶ୍ଚିମ ବଙ୍ଗଳାର ମୁଖ୍ୟମନ୍ତ୍ରୀ ଥିବାବେଳେ କର୍ମଚାରୀ ଯଥା ସମୟରେ ସଚୀବାଳୟକୁ ନ ଆସୁଥିବାର ଦେଖି ସେ ନିଜେ ଯଥା ସମୟରେ ଆସି ପ୍ରବେଶଦ୍ୱାରରେ ଛିଡ଼ା ହେବା ଫଳରେ କର୍ମଚାରୀ ଠିକ୍ ସମୟରେ ଆସିଲେ । ଏଇଥିପାଇଁ ଏମରଜେନ୍ସି ଯାଏ କଥା ଯିବ ! (୪) ଏମରଜେନ୍‌ସି ନ ଥାଇ ହାଜୀ ମସ୍ତାନ ପ୍ରଭୃତି ଗିରଫ ହେଲେ । ସେଥିପାଇଁ ତସ୍କରଙ୍କୁ ଧରିବାକୁ ଏମରଜେନ୍‌ସି କି ଦରକାର ? (୫) ଏମରଜେନ୍‌ସି ଜାରୀ ନ ହୋଇ ୧୯୭୧ରେ କଲିକତାର ବ୍ୟାପକ ହାଣକୋଟ ବନ୍ଦ କରାଯାଇ ପାରିଲା । ଏବେ କାହିଁକି ହୋଇ ନଥାନ୍ତା ?(୬) ଏମରଜେନ୍ସି ଦ୍ୱାରା ଦେଶର ସବୁଠାରୁ ବଡ଼ କ୍ଷତି ହେଲା-ଗାନ୍ଧିଜୀ ଯେଉଁ ଭୟ ଭାଙ୍ଗି ଦେଇଥିଲେ ତାହା ପୁଣି ବ୍ୟାପିଗଲା ।

ଏ ତ ଗଲା (ଆଇ) କଂଗ୍ରେସବାଲାଙ୍କ ମତ । ଟିକିଏ କଂଗ୍ରେସ ସଂଗଠନର ମତ ବୁଝିବାକୁ ଦିନେ ଶ୍ରୀ ଦୀନବନ୍ଧୁ ସାହୁଙ୍କ ପାଖକୁ ଗଲୁ । ସେ ଆମ କଥା ଶୁଣି ଟିପେ ନାଶ ଶୁଂଘି ସାରି କହିଲେ -ଆମ କର୍ମଫଳ ଆମେ ଭୋଗନ୍ତୁ କାହିଁକି ? ୧୯୫୭-୫୮ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ସତାବନ ଜଣ ନିର୍ବାଚିତ ହେଲେ । ଦୀନବନ୍ଧୁ ବାବୁ ମନ୍ତ୍ରୀମଣ୍ଡଳ ନ ଗଢ଼ିବାକୁ ମତ ଦେଲେ । କମ୍ୟୁନିଷ୍ଟମାନଙ୍କ ସହିତ ରାତାରାତି ମେଣ୍ଟ ବାନ୍ଧି କଥାବାର୍ତ୍ତା କରି ସେମାନଙ୍କ ସହଯୋଗରେ ମନ୍ତ୍ରୀମଣ୍ଡଳ ଗଢ଼ିବା ସ୍ଥିର କରି ପରଦିନ ପାହାନ୍ତାରେ ମୋତେ ଶିକ୍ଷ ମନ୍ତ୍ରୀ ହେବାକୁ କୁହାଗଲା । ମୁଁ ଏ କଥା ଶୁଣି କାବା ହେଲି । ଯାହାହେଉ ମୁଁ ତ ଶିକ୍ଷମନ୍ତ୍ରୀ ହେଲି । କେନ୍ଦୁଝରେ ଉପନିର୍ବାଚନ ପାଇଁ ଟଙ୍କା ଦରକାର ହେଲା । ମୁଖ୍ୟମନ୍ତ୍ରୀ ମୋତେ ମିଶ୍ରିଓ୍ୱାଲା ପ୍ରଭୃତିଙ୍କ ଠାରୁ ଟଙ୍କା ଆଦାୟ କରିବାକୁ କହିଲେ । ମୁଁ ଟଙ୍କା ଆଦାୟ ନ କରି ସେମାନଙ୍କୁ ଡ଼କେଇ ଆଣି ମୁଖ୍ୟମନ୍ତ୍ରୀଙ୍କ ପାଖକୁ ନେଇଗଲି । ମୁଖ୍ୟମନ୍ତ୍ରୀ ମୁହଁ ଖୋଲିବା ଆଗରୁ ସେମାନେ ପକେଟରୁ ନୋଟ୍‌ବିଡ଼ା କାଢ଼ି ଟେବୁଲ ଉପରେ ଥୋଇ ଦେଲେ । ସେ ଟଙ୍କା ବୀରେନ୍ (ମିତ୍ର) ଜିମ୍ମା ରହିଲା । ମୋଟ ତିନିଲକ୍ଷ ଟଙ୍କା ସେମାନେ ଦେଇଗଲେ । ନିର୍ବାଚନବେଳେ ଝାଡ଼ଖଣ୍ଡ ନେତାଙ୍କୁ ହାତ କରିବା ପାଇଁ ଚେଷ୍ଟା ଚାଲିଲା । ନେତାଙ୍କର ଦୁଇ ସ୍ତ୍ରୀ । ଜଣଙ୍କର ସୁନା ଗହଣା ଅଛି । ଆଉ ଜଣଙ୍କର ତାହା ନ ଥିବାରୁ ସେ ରଷିଥିବାରୁ ନେତା ବ୍ୟତିବ୍ୟସ୍ତ ହେଉଥିଲେ । ସେଦିନ ଗୁରୁବାର । ଯାହାହେଉ ରାତିରେ ହରକିଷନ ଭାଇଙ୍କୁ ଉଠାଇ ତାଙ୍କ ଦୋକାନ ଖୋଲାଇ ଗହଣା ଯୋଗାଇ ଦିଆଗଲା । ଏତିକି କହି ସେ ଆଉ ଟିପେ ନାଶ ଶୁଂଘିଲେ । ତାହାପରେ ବିରୋଧୀଦଳ ନେତାଙ୍କୁ ଗିରଫ କରି ମୁଖ୍ୟମନ୍ତ୍ରୀ ପ୍ରଧାନମନ୍ତ୍ରୀଙ୍କର ବିରକ୍ତିଭାଜନ ହେବାରୁ ଦୀନବନ୍ଧୁବାବୁଙ୍କୁ ମୁଖ୍ୟମନ୍ତ୍ରୀ କିପରି ଦିଲ୍ଲୀ ପଠାଇଲେ, ଦୀନବନ୍ଧୁ ବାବୁ କିପରି ମୋରାରଜୀ ଦେସାଇଙ୍କ ଠାରୁ ବିରୋଧୀଦଳ ନେତାଙ୍କୁ ଗିରଫ କରାଯାଇଥିବା ହେତୁ ଭର୍ତ୍ସନା ଶୁଣିଲେ ଆଦି କଥା ସବିସ୍ତାରେ ବର୍ଣ୍ଣନା କରି ଦୀନବନ୍ଧୁ ବାବୁ କହିଲେ ଆଜି ଇନ୍ଦିରା ଯାହା କରୁଛନ୍ତି ତାହା ଅଳ୍ପ ବହୁତେ କଂଗ୍ରେସ ଦଳରେ ହେଉଥିଲା । ଇନ୍ଦିରା କେବଳ ଟିକିଏ ଦ୍ରୁତ ଆଗେଇଲେ । ଏତେଦୂର ଆଗେଇଗଲେ ଯେ ଜୟପୁର ମହାରାଣୀ ଗାୟତ୍ରୀଦେବୀ ଓ ଗ୍ୱାଲିଅର୍‌ର ରାଜମାତା ବିଜୟାରାଜେ ସିନ୍ଧିଆଙ୍କୁ ସୁଦ୍ଧା ତିହାର ଜେଲ୍‌ରେ ଏକବସ୍ତ୍ରରେ ରଖି ନାନାପ୍ରକାର ଯାତନା ଦିଆଇଲେ ।

ଜାନୁଆରୀ ୧୯୭୭ରେ ଓଡ଼ିଶାରେ ମିଶାବନ୍ଦୀଙ୍କୁ ଖଲାସ କରିବା ଆରମ୍ଭ ହେଲା । ଇନ୍ଦିରାଜୀ ମାର୍ଚ୍ଚ ୧୬ ତାରିଖରେ ନିର୍ବାଚନ ହେବ ବୋଲି ଘୋଷଣା କଲେ ।

ଆମେ ଅର୍ଥାତ୍ ରମାଦେବୀ, ମଙ୍ଗଳା ଦେବୀ, ଅନ୍ନପୂର୍ଣ୍ଣା ଦାସ, ସୁମିତ୍ରା ଚୌଧୁରୀ, ରମ୍ଭା ଦେବୀ, ଅନ୍ନପୂର୍ଣ୍ଣା ମହାରଣା ଓ ଶଶୀରେଖା ସିଂହ ଆମର ମହିଳା କର୍ମୀ ସମ୍ମିଳନୀରେ ଯୋଗ ଦେବାକୁ ଇନ୍ଦୋର ଗଲୁ । ସେଠାରେ କସ୍ତୁରବା ସ୍ମାରକ ଟ୍ରଷ୍ଟର କାର୍ଯ୍ୟର ପ୍ରଭାବ ଉପରେ କହିବା ପାଇଁ ମୋତେ କୁହାଗଲା । ମୁଁ ଯାହା କହିଲି ତା'ର ସାରମର୍ମ ହେଉଛି -ସ୍ୱାଧୀନତା ଆନ୍ଦୋଳନ ଚାଲିଥିବା ବେଳେ କସ୍ତୁରବା ଓ ସେହିପରି ଅନେକ ସାଧାରଣ ସ୍ତରର ମହିଳାଙ୍କର କର୍ମକୁଶଳତା ଦେଖି ଗାନ୍ଧିଜୀଙ୍କର ପ୍ରତ୍ୟୟ ଜନ୍ମିଲା ଯେ ଗାଁର ଅଶିକ୍ଷିତା ବୋଲାଉଥିବା ମହିଳାମାନେ ମଧ୍ୟ ଉପଯୁକ୍ତ ବାତାବରଣରେ ତାଲିମ ପାଇଲେ ଆତ୍ମବଳ ଓ ସ୍ନେହ ବଳରେ ରାଷ୍ଟ୍ର-ସେବା କରି ପାରିବେ । ୧୯୪୫ ଖ୍ରୀଷ୍ଟାବ୍ଦରେ ଭାରତୀୟ ଗ୍ରାମ୍ୟ ନାରୀ ସମାଜ ଯେଉଁ ସ୍ଥିତିରେ ଥିଲା, ସେହି ସ୍ଥିତିର ମହିଳାଙ୍କୁ ଘେନି କସ୍ତୁରବା ସ୍ମାରକ ଟ୍ରଷ୍ଟ ଯେଉଁ କାର୍ଯ୍ୟ କଲେ ସେହି କାର୍ଯ୍ୟର ମୂଲ୍ୟ ଶହେ ବର୍ଷ ପରେ ନିରୂପିତ ହେବ ଯେପରି ବୁଦ୍ଧଦେବଙ୍କ କାର୍ଯ୍ୟର ଅଢ଼େଇ ହଜାର ବର୍ଷ ପରେ ମୂଲ୍ୟାଙ୍କନ କରାଯାଉଛି । ମୋର ଧାରଣା ଟ୍ରଷ୍ଟର ମହିଳା କର୍ମୀମାନଙ୍କର ଗ୍ରାମ ଉନ୍ନୟନ କାର୍ଯ୍ୟଦ୍ୱାରା ପ୍ରଭାବିତ ହୋଇ ସମାଜ ମଙ୍ଗଳ ଉପଦେଷ୍ଟା ବୋର୍ଡ଼ ଗଠିତ ହେଲା । ମାତ୍ର ଏହି ସଂସ୍ଥା କର୍ମୀଙ୍କ ଗୁଣାତ୍ମକ ବିକାଶ (quality) ପ୍ରତି ଦୃଷ୍ଟି ନ ଦେଇ ସଂଖ୍ୟା ବୃଦ୍ଧି (quantity) ଉପରେ ନଜର ଦେଲେ । ପୁଣି ଟ୍ରଷ୍ଟର ପ୍ରତିନିଧିମାନେ ସ୍ୱଳ୍ପଶିକ୍ଷିତା କର୍ମୀଙ୍କୁ ଯେପରି ସ୍ନେହ ଓ ସମ୍ମାନ ଦେଉଥିଲେ ଏବଂ କର୍ମୀର ନିଷ୍ଠା ଓ ଆନ୍ତରିକତା ଉପରେ ବିଶ୍ୱାସ ରଖୁଥିଲେ ସମାଜମଙ୍ଗଳ ବୋର୍ଡ଼ରେ ତାହା ରହିଲା ନାହିଁ । ତେଣୁ ସେଥିରେ ଆଶାନୁରୂପ ଫଳ ଫଳିଲା ନାହିଁ । ବର୍ତ୍ତମାନ ବ୍ୟାପକ ଭାବରେ ମହିଳାମାନଙ୍କୁ ସେବା ଅଭିମୁଖୀ, ଶ୍ରମ ଅଭିମୁଖୀ ଓ ଜ୍ଞାନ ଅଭିମୁଖୀ କରିବା ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାକୁ ହେବ । ଇନ୍ଦୋର ଫେରନ୍ତା ବାଟରେ ଆମେ ସାତଜଣ ପଉନାର ଯାଇ ବିନୋବାଜୀଙ୍କୁ ଦେଖାକଲୁ । ସେତିକିବେଳେ ବିନୋବାଜୀ ରମାଦେବୀଙ୍କୁ କହିଥିଲେ-ଆପଣ ମହାସରସ୍ୱତୀ । ରମାଦେବୀ ହସି କରି କଥାଟା ଉଡ଼େଇ ଦେବା ମତଲବରେ କହିଲେ - ସରସ୍ୱତୀଙ୍କ ଚିହ୍ନବର୍ଣ୍ଣ ମୋ'ଠାରେ ନାହିଁ । ମୁଁ ତ ଅଜ୍ଞାନୀ । ବିନୋବାଜୀ କହିଲେ, ସରସ୍ୱତୀଙ୍କ ପ୍ରଭା ଆପଣଙ୍କଠାରେ ସ୍ୱୟଂପ୍ରଭା ହୋଇଛି । ଆପଣ ହେଉଛନ୍ତି ସପ୍ତଶକ୍ତି - କୀର୍ତ୍ତି, ଶ୍ରୀ, ବାକ୍, ସ୍ମୃତି, ମେଧ୍ୟ, ଧୃତି ଓ କ୍ଷମା ।''

ଏହି ସମୟରେ ଢ଼େଙ୍କାନାଳ ଜିଲ୍ଲାର କେତେଗୁଡ଼ିଏ ଗାଁରେ ଜଳାଭାବ ଦେଖାଦେଲା । ମଙ୍ଗଳପୁର ନାମକ ଗାଁର ଚାରୋଟି ପୋଖରୀ ଶୁଖିଯାଇ ଲୋକେ ଓ

ଗାଈଗୋରୁ ପାଣି ପାଇଲେ ନାହିଁ । ଏହି ଗାଁର ପୋଖରୀ ଗୁଡ଼ିକ କିପରି ଖୋଳାହେବ, ସେ ଦିଗରେ ଉଦ୍ୟମ ଚାଲିଥାଏ । ଏହି ଜଳାଭାବ କଥା ଶୁଣି ଗୁଜରାତର ଶ୍ରୀମତୀ ରମା ଝବେରୀ ଏକ ଶହ ଟଙ୍କା ପ୍ରଥମେ ଦାନ କଲେ । ତାହାପରେ ଗୌତମ ବଜାଜଙ୍କ ଆନୁକୂଲ୍ୟରେ ଏକ ହଜାର ଟଙ୍କା ମିଳିଲା । ଡ଼କ୍ଟର ବଳଭଦ୍ର ପ୍ରସାଦ ବିହାର ରିଲିଫ କମିଟି ପକ୍ଷରୁ ଆଠହଜାର ଟଙ୍କା ପଠାଇଲେ । ଏହି ଅର୍ଥ ସହିତ ଆଚାର୍ଯ୍ୟ ମହାଶୟଙ୍କ ସ୍ମୃତିକୁ ଜଡ଼ିତ କରିବା ଉଦ୍ଦେଶ୍ୟରେ ରମାଦେବୀ, ମଙ୍ଗଳାଦେବୀ ଓ ବିରଜାପ୍ରସାଦ ରାୟଙ୍କ ସଦସ୍ୟତାରେ ଆଚାର୍ଯ୍ୟ ହରିହର ସେବାସଂସ୍ଥା ନାମକ ଏକ ଅନୁଷ୍ଠାନ ଗଠନ କରି ''ଆଚାର୍ଯ୍ୟ ସରୋବର'' ଖୋଳିବା ଆରମ୍ଭ କରାଗଲା । ଅବଶ୍ୟ ପୁରୀରେ ଆଚାର୍ଯ୍ୟ ମହାଶୟଙ୍କ ଜନ୍ମ ଦିବସ ଓ ଶ୍ରାଦ୍ଧଦିବସ ପାଳନ ଉଦ୍ଦେଶ୍ୟରେ ୧୯୭୧ ମସିହାରେ ପଦ୍ମଚରଣ ସାମନ୍ତସିଂହାର, ଜୟକୃଷ୍ଣ ମହାନ୍ତି, ଫକୀର ମିଶ୍ର, ରାମଚନ୍ଦ୍ର ଗୋଛିକାର ପ୍ରମୁଖଙ୍କ ସଦସ୍ୟତାରେ ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ ଗଠିତ ହୋଇ ଏହା ପୁରୀରେ କାର୍ଯ୍ୟ କରୁଥିଲା ଏବଂ ଏହାର କାର୍ଯ୍ୟ ପୁରୀ ମଧ୍ୟରେ ସୀମାବଦ୍ଧ ଥିଲା । ଆଚାର୍ଯ୍ୟ ହରିହର ସେବାସଂସ୍ଥାକୁ ପରବର୍ତ୍ତୀ ସମୟରେ ଗଠିତ ଆଚାର୍ଯ୍ୟ ହରିହର ମେମୋରିଆଲ ଟ୍ରଷ୍ଟରେ ବିଲୀନ କରି ଦିଆଗଲା । ଏହି ଟ୍ରଷ୍ଟ ପକ୍ଷରୁ କଟକରେ କ୍ୟାନସର ଡ଼ିଟେକସନ ସେଣ୍ଟର ସ୍ଥାପନ କାର୍ଯ୍ୟପାଇଁ ଆମେମାନେ ଅର୍ଥ ସଂଗ୍ରହରେ ଲାଗିଲୁ ।

ମାର୍ଚ୍ଚ (୧୯୭୭)ରେ ନିର୍ବାଚନ ହେବା ସ୍ଥିର ହେବାରୁ ରୁଗ୍ଣ ଶରୀର ଘେନି ଜୟପ୍ରକାଶଜୀ ସମଗ୍ର ଭାରତରେ ବୁଲି ଜନତା ଦଳ ସଂଗଠନ କଲେ । ବହୁ ସର୍ବୋଦୟ କର୍ମୀ ଭୋଟ ପ୍ରଚାର କାମରେ ଲାଗିଲେ । ନିର୍ବାଚନ ପ୍ରଚାର କାମରେ ଯୋଗ ନ ଦେବାକୁ ରମାଦେବୀ ସ୍ଥିର କଲେ । ନିର୍ବାଚନର ଫଳାଫଳ ଯେଉଁଦିନ ପ୍ରକାଶ ପାଇଲା ସେଦିନ ଲୋକଙ୍କ ମଧ୍ୟରେ ଘୋର ଉତ୍ତେଜନା ପ୍ରକାଶ ପାଇଲା । ଲୋକେ ଜନତା ଦଳକୁ ଭୋଟ ଦେବା ଦ୍ୱାରା ସେମାନେ ଯେ ଏମରଜେନ୍‌ସିର ବିରୋଧ କଲେ ତାହା ବୈଧାନିକ ଉପାୟରେ ଜଣାଇ ଦେଲେ । ଭାରତର ଜନସାଧାରଣ ପାଠୁଆ ନ ହେଲେ ମଧ୍ୟ ସେମାନଙ୍କର ହିତାହିତ ଜ୍ଞାନ ଅଛି, ତାହା ଏହି ନିର୍ବାଚନରେ ପ୍ରମାଣିତ ହେଲା । ମାତ୍ର ଜନତାଦଳ ଜନସାଧାରଣଙ୍କର ବିଶ୍ୱାସଭାଜନ ପ୍ରମାଣିତ ହେଲେ ନାହିଁ । କ୍ଷମତା ପାଇଁ ଜନତାଦଳରେ ଯେପରି ଛକାପଞ୍ଝା ନୀତି ଚାଲିଲା ଏବଂ ଶେଷରେ ଯେପରି ଜନତାଦଳ ଶାସନ ଗାଦିରୁ ଓହରି ଯିବାକୁ ବାଧ୍ୟ ହେଲେ ତଦ୍ୱାରା ଜନସାଧାରଣଙ୍କର ସେମାନଙ୍କ ଉପରୁ ଯେ ବିଶ୍ୱାସ ତୁଟିଗଲା ତାହା ପରବର୍ତ୍ତୀ ନିର୍ବାଚନରେ ସେମାନେ ଜଣାଇ ଦେଲେ ।

ଏହି ସମୟରେ ମୁଁ ଲୋକଯାତ୍ରା ସଂଗଠନରେ ବ୍ୟସ୍ତ ଥିଲି । ଦେଶରେ ବ୍ରହ୍ମବିଦ୍ୟାର ପ୍ରସାର ଓ ଭାରତର ସାଂସ୍କୃତିକ ଏକାତ୍ମତା ରକ୍ଷା ନିମନ୍ତେ ସମଗ୍ର ଭାରତରେ ପଦଯାତ୍ରା କରିବା ପାଇଁ ସଂକଳ୍ପବଦ୍ଧ ହୋଇ ଇନ୍ଦୋରରୁ ଚାରିଜଣ ମହିଳା ପଦଯାତ୍ରା ଆରମ୍ଭ କରିଥିଲେ । ସେମାନେ ଚାରିଜଣଯାକ ଉଚ୍ଚଶିକ୍ଷିତା, ବ୍ରହ୍ମଚାରିଣୀ ଓ ବାଗ୍ମୀ । କୁମାରୀ ହେମା ଉରାଳୀ ଓ କୁମାରୀ ଲକ୍ଷ୍ମୀଫୁକନ ଆସାମରୁ, କୁମାରୀ ନିର୍ମଳା ବେଦ ପଞ୍ଜାବରୁ ଆସିଥିଲେ । କୁମାରୀ ଦେବୀ ରିଝଓ୍ୱାନୀ ଥିଲେ ସିଂଧୀ । ସେମାନେ ଅକ୍ଟୋବର ୧ ୯ ୭ ୭ରେ ଓଡ଼ିଶାରେ ପଦଯାତ୍ରା ଆରମ୍ଭ କରିବେ ବୋଲି ପତ୍ର ଲେଖିବାରୁ ରହଣୀ ସ୍ଥାନ ଠିକ୍ କରିବା ଆଦି ପଦଯାତ୍ରା ସମ୍ବନ୍ଧୀୟ ବ୍ୟବସ୍ଥା କାମରେ ମୋତେ ପୁଣି ଓଡ଼ିଶାସାରା ବୁଲିବାକୁ ପଡ଼ିଲା । ହେମା ଉରାଳୀ, ନିର୍ମଳା ବେଦ, ଦେବୀ ରିଝଓ୍ୱାନୀ ଓ ଲକ୍ଷ୍ମୀ ଫୁକନ ଚାରିଜଣଯାକ ବ୍ରହ୍ମଚାରିଣୀ ଓ ଶିକ୍ଷିତା ଥିଲେ । ଲକ୍ଷ୍ମୀଫୁକନ ଦ୍ରୁତରେଖା ଶିଖିବାରେ ସିଦ୍ଧହସ୍ତ ଥିଲେ । ଓଡ଼ିଶାରେ ରହିବା ମଧ୍ୟରେ ସେ ଓଡ଼ିଆ ଶିଖି ଓଡ଼ିଆ ଭାଷାରେ ଭାଷଣ ଦେଲେ । ବାଲେଶ୍ୱରର ଲକ୍ଷ୍ମଣନାଥ ଠାରେ ଓଡ଼ିଶାରେ ପ୍ରବେଶ କରି କୋରାପୁଟରୁ ମଧ୍ୟପ୍ରଦେଶକୁ ଗଲେ । ସେମାନଙ୍କ ଦ୍ୱାଦଶବର୍ଷ ପଦଯାତ୍ରା ପୂର୍ତ୍ତି ଉପଲକ୍ଷେ ପଓନାର ଠାରେ ଏକ ବିଶ୍ୱମହିଳା ସମ୍ମିଳନୀ ହେବା ସ୍ଥିର ହେଲା । ସେହି ସମ୍ମିଳନୀକୁ ପ୍ରତିନିଧି ପଠାଇବା, ସମ୍ମିଳନୀ ବିଷୟରେ ଅବହିତ କରାଇବା, ସମ୍ମିଳନୀର ବ୍ୟବସ୍ଥା କରିବା ମଧ୍ୟ ଗୋଟିଏ କାମ ହେଲା ।

ବିନୋବାଜୀ ନାଗରୀ ଲିପିର ପ୍ରଚାର ଉପରେ ଗୁରୁତ୍ୱ ଦେବା କଥା ପୂର୍ବରୁ ଉଲ୍ଲିଖିତ ହୋଇଛି । ଓଡ଼ିଶାରେ ନାଗରୀ ଲିପି ପରିଷଦଟିଏ ଗଠନ କରିବା ପାଇଁ ଶ୍ରୀମାନ୍ ଅକ୍ଷୟ କୁମାର ମହାନ୍ତିଙ୍କ ସଙ୍ଗେ କଥାବାର୍ତ୍ତା ହେଲା । ଅକ୍ଷୟ ରାଧାନାଥବାବୁ (ରଥ), ରାଜକୃଷ୍ଣ ବାବୁ (ବୋଷ) ଆଦିଙ୍କୁ ଭେଟି ଉତ୍କଳ ନାଗରୀ ଲିପି ପରିଷଦ ଗଠନ କଲେ । ମୁଁ ଏମରଜେନ୍‌ସିର ବିରୋଧ କରୁଥିବାରୁ ସରକାରଙ୍କର ସୁନାପୁଅ ତାଲିକାରେ ମୋ ନାମ ନ ଥିଲା । ସେଥିପାଇଁ ମୁଁ ପରିଷଦରେ ନ ରହିବା ପାଇଁ ସ୍ଥିର କରିଥିଲି । ମାତ୍ର ରାଧାନାଥ ବାବୁ ଓ ରାଜକୃଷ୍ଣ ବାବୁଙ୍କର ଆଗ୍ରହାତିଶଯ୍ୟକୁ ଏଡ଼େଇ ନ ପାରି ଶେଷରେ ପରିଷଦର ସଦସ୍ୟ ହେଲି । ଶ୍ରୀ ଶତ୍ରୁଘ୍ନ ନାଥଙ୍କ ସଂପାଦନାରେ ବାହାରୁଥିବା ‘‘ଓଡ଼ିଆ ବିଶ୍ୱନାଗରୀ’’ ପତ୍ରିକାର ସଂପାଦନା ଏବଂ ପତ୍ରିକା ପାଇଁ ଅର୍ଥ ସଂଗ୍ରହ କାମରେ ମୁଁ ତାଙ୍କୁ ସାହାଯ୍ୟ କଲି ଏବଂ ପରିଷଦର ବାର୍ଷିକ ଅଧିବେଶନର ଆୟୋଜନରେ ମଧ୍ୟ ସମୟ ଦେଲି । ସାରକଥା, ମୁଁ ସେଥିରେ ଛନ୍ଦି ହେଲି ।

ଏହିପରି ଭାବରେ ଧୀରେ ଧୀରେ ଭୂଦାନ ଗ୍ରାମଦାନ ସଂଗ୍ରହ କାମରୁ ଆମେ ଦୂରେଇ ଯାଉଥିବା ବେଳେ ବିନୋବାଜୀ ଘୋଷଣା କଲେ ଯେ ଭୂଦାନ ସମିତି, ସର୍ବୋଦୟ ପରିଷଦ, ସର୍ବୋଦୟ ମଣ୍ଡଳ ଆଦି ଅନୁଷ୍ଠାନକୁ ଉଠେଇ ଦେବା ଉଚିତ । ରମାଦେବୀ ବିନୋବାଜୀଙ୍କୁ ବିଶ୍ୱନାଥ ପଟ୍ଟନାୟକ ଆଦିଙ୍କ ଉପସ୍ଥିତିରେ ଲିଖିତ ଭାବରେ ପଚାରିଲେ ଯେ ଆପଣ ମୋତେ ଭୂଦାନ ଗ୍ରାମଦାନ କାମରେ ଲାଗିବା ପାଇଁ ନିର୍ଦ୍ଦେଶ ଦେଇଥିବା ସ୍ଥଳେ ଏବେ ଭୂଦାନ ସମିତି ଆଦିକୁ ଉଠେଇ ଦେବା କଥା କାହିଁକି କହିଲେ ? ବିନୋବାଜୀ କହିଲେ ସରକାର ତ ଭୂମିହୀନଙ୍କୁ ଭୂମିଦେବା କାମ ହାତକୁ ନେଲେଣି । ତାହାଛଡ଼ା ଜନସଂଖ୍ୟା ବୃଦ୍ଧି ଦୃଷ୍ଟିରୁ ଆଉ ଭୂଦାନ କାମ ହୋଇ ପାରିବ ନାହିଁ, ତେଣୁ ତୁମେ ଗାନ୍ଧିଜୀଙ୍କର ରଚନାତ୍ମକ କାମରେ ମନୋନିବେଶ କର । ଏହା ୧୯୭୬ ମସିହା ଜୁନ ଛଅ ତାରିଖର ଘଟଣା । ବୁଢ଼ିଆଣୀ ନିଜ ପେଟରୁ ସୂତା କାଢ଼ି ଜାଲ ମେଲାଇ ବର୍ଷା ହେଲେ ଯେପରି ସେ ଜାଲକୁ ଗୋଟାଇ ନିଏ ବିନୋବାଜୀ ସେହିପରି ସମଗ୍ର ଭାରତରେ ଭୂଦାନ ଗ୍ରାମଦାନ ସଂଗଠନର ଜାଲ ବିଛାଇ ପୁଣି ତାକୁ ଗୋଟାଇ ନେଲା ପରି ମୋତେ ଲାଗିଲା ।

୧୯୩୧ରୁ ୧୯୭୬- ଚାହୁଁ ଚାହୁଁ ପଇଁଚାଳିଶ ବର୍ଷ ବିତିଗଲା । ଘୋରଆଙ୍ଗିରସ ଋଷିଙ୍କ ଦର୍ଶନ ଅନୁସାରେ ଚଉରାଳିଶ ବର୍ଷ ପ୍ରତ୍ୟକ୍ଷ କର୍ମ କରିବା ପରେ ମଣିଷ ଜୀବନ ଭାବନାତ୍ମକ ସେବାମୟ ହେବା ବିଧେୟ । ଗାନ୍ଧୀ ଦର୍ଶନ ଅନୁସାରେ ଏ ଦେହ ଅନ୍ନ ଗ୍ରହଣ କରୁଥିବା ଯାଏ ଯାଞ୍ଚ କର୍ମ ଅବ୍ୟାହତ ରହିବା ଉଚିତ । ଯମୁନା ମାଉସୀ (ପୁରୀର ସ୍ୱନାମଧନ୍ୟା ଯମୁନା ଦେବୀ)ଙ୍କ ଦର୍ଶନ ଅନୁସାରେ ''ଷାଠିଏ ବର୍ଷ ପୂରିଗଲେ ତେଣିକି ତୁମର ଖସିବା ବେଳ ଆସିଗଲା ଜାଣିବ । ଆଉ ଘାଣ୍ଟି ହେବା କଥା ନୁହେଁଟି । ତେବେ ଯେତେଦିନ ବଞ୍ଚିଥାଇଁ କିଛି କାମ କରୁଥିବା ତ !'' ତେଣୁ ଏଣିକି ବିଭିନ୍ନ ସଂସ୍ଥା ଯଥା କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକ ଟ୍ରଷ୍ଟ, ଆଚାର୍ଯ୍ୟ ହରିହର ଦାସ ମେମୋରିଆଲ ଟ୍ରଷ୍ଟ, ନାଗରୀ ଲିପି ପରିଷଦ, ଆଚାର୍ଯ୍ୟ ହରିହର ସ୍ମୃତି ସଂସଦ, ହରିଦାସପୁରର ସେବା ସମିତି, ଗାନ୍ଧୀ ସ୍ମାରକ ନିଧିର ଗାନ୍ଧୀ ସାହିତ୍ୟ ପ୍ରକାଶନ ବିଭାଗ, ଉତ୍କଳ ସର୍ବୋଦୟ ମଣ୍ଡଳ ଆଦି ଯେଉଁ ଅନୁଷ୍ଠାନଗୁଡ଼ିକର ମୂଳଦୁଆ ପକାଇବାରେ ଜଣେ ସାଧାରଣ ମୂଲିଆଣୀ ଭଳି ସମୟ ଓ ଶକ୍ତି ଖଟେଇଥିଲି, ସେହି ଅନୁଷ୍ଠାନଗୁଡ଼ିକ ଯଦି ମୋର ସାହାଯ୍ୟ ଲୋଡ଼ିବେ ସେମାନଙ୍କୁ ଯଥାସମ୍ଭବ ସାହାଯ୍ୟ କରିବି କିନ୍ତୁ ମନେ ମନେ ସେଥିରୁ ନିବୃତ୍ତ ହେବାପାଇଁ ମନସ୍ଥ କଲି । ଗୋଟିଏ ଚଉଦ ବର୍ଷର ଅଜ୍ଞ ବାଳିକା ପ୍ରଚଳିତ ସମାଜ ବ୍ୟବସ୍ଥାର

ଧରାବନ୍ଧା ଚଲାବାଟକୁ ଛାଡ଼ି ଦେଇ କେବଳ ଶ୍ରଦ୍ଧାକୁ ସମ୍ବଳ କରି ମହାତ୍ମାଗାନ୍ଧୀଙ୍କ ଗବେଷଣାଗାରର ଗିନିପିଗ୍ ହେବାପାଇଁ ସ୍ୱେଚ୍ଛାରେ ମନ ବଳାଇଥିଲା । ଯେଉଁ ଅହିଂସାତ୍ମକ ବା ପ୍ରେମଭିତ୍ତିକ ସମାଜ ରଚନା କରିବା ପାଇଁ ମହାତ୍ମାଗାନ୍ଧୀ ଏ ଦେଶର ଲକ୍ଷ ଲକ୍ଷ ନାଗରିକଙ୍କୁ ଘେନି ସତ୍ୟାଗ୍ରହ, ସର୍ବୋଦୟ ଓ ଶାନ୍ତିସେନା ବିଚାରର ପ୍ରୟୋଗ ଚଳାଇଥିଲେ ଏବଂ ସମଗ୍ର ପୃଥିବୀର ଚିନ୍ତାଶୀଳ ଲୋକେ ଆଜି ଯେଉଁ ହିଂସା ନିରପେକ୍ଷ ସମାଜ ରଚନା ଉପରେ ଗୁରୁତ୍ୱ ଆରୋପ କରୁଛନ୍ତି ସେହି ସମାଜରେ ବ୍ୟକ୍ତିର ଆଚରଣ କିପରି ହେବା ଉଚିତ ସେ ବିଷୟରେ ଗାନ୍ଧିଜୀ ଯାହା କହିଥିଲେ ତାକୁ ନିଜ ଜୀବନରେ ଆଚରିବା ପାଇଁ ଯେଉଁ ଘାତ ପ୍ରତିଘାତ, ହରଷ ବିଷାଦ, ବିପଦ ସମ୍ପଦ, ଦୁଃଖସୁଖର ଲହଡ଼ି ଭାଙ୍ଗି ଭାଙ୍ଗି ଏ ପଇଁଚାଳିଶଟି ବସନ୍ତ କଟିଲା ଏ ଅନାଦି ଅନନ୍ତ କାଳ ପ୍ରବାହରେ ସେହି ପଇଁଚାଳିଶ ବର୍ଷ ଗୋଟିଏ ଜଳକଣା ସଙ୍ଗେ ସୁଦ୍ଧା ସରି ନୁହେଁ, ପୁଣି ତାହା ଗୋଟିଏ ଜଳବିମ୍ବ ଭଳି କ୍ଷଣସ୍ଥାୟୀ । ତଥାପି ତହିଁରେ ପରମାତ୍ମାଙ୍କ ଅସ୍ତିତ୍ୱ ବିଦ୍ୟମାନ, ତେଣୁ ତାହା ହେୟ ନୁହେଁ । ଜ୍ଞାନ ବିହୀନ ଶ୍ରଦ୍ଧାଦ୍ୱାରା ଯେଉଁ କର୍ମ ସାଧିତ ହୁଏ ସେଥିରେ ଭୁଲଭ୍ରାନ୍ତି ଓ ମିଥ୍ୟା ଅହଙ୍କାର ରହିବା ହିଁ ସ୍ୱାଭାବିକ ଏବଂ ରହିଥିବ ମଧ୍ୟ । କେବଳ ଭରସା ଏତିକି ''ନହି କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଛତି ।''



# ମୁଠାଏ ଲୁଣରୁ ମହାଭାରତ

୨୧ ମେ, ୧୯୩୦ । ୧୧୨ ଡ଼ିଗ୍ରୀ ଖରାରେ ବାଲିରେ ଖଇ ଫୁଟୁଥାଏ । ସରୋଜିନୀ ନାଇଡୁ ଅଢ଼େଇହଜାର ସତ୍ୟାଗ୍ରହୀଙ୍କ ଗହଣରେ ସୁରତ ଜିଲ୍ଲାର ଧରାପଶା ଲୁଣ ଗୋଲା ଅଧିକାର କରିବାକୁ ଅନୁକୂଳ କଲେ । ବିରାଟ ଲୁଣ କିଆରୀ ଚାରିପଟେ ଗହୀରିଆ ଖାଇ । ଖାଇ ଭିତର ପଟେ ତାର କଣ୍ଟାର ବାଡ଼ । ଏ ବାଡ଼କୁ ଜଗିଥାନ୍ତି ଛଅଜଣ ବ୍ରିଟିଶ ଜଗୁଆଳୀଙ୍କ ସହିତ ଚାରିଶହ ଗୁଜରାଟୀ ପୁଲିସ କନଷ୍ଟେବଳ । ସତ୍ୟାଗ୍ରହୀମାନେ ତାର ବାଡ଼ର ପ୍ରାୟ ଶହେ ଗଜ ଦୂରରେ ଠିଆ ହେଲେ । ସେମାନଙ୍କ ମଧ୍ୟରୁ ଦଳେ ଖାଇ ପାର ହୋଇ କଣ୍ଟା ବାହାରିଥିବା ତାରବାଡ଼ ପାଖରେ ପହଞ୍ଚିଲେ । ପୁଲିସ୍ କର୍ତ୍ତା ଆଦେଶ ଦେଲେ ଫେରିଯାଅ । ସତ୍ୟାଗ୍ରହୀମାନେ ସେ ଆଦେଶ ନ ମାନି ଆହୁରି ଆଗକୁ ମାଡ଼ି ଚାଲିଲେ । ଆମେରିକାର ୟୁନାଇଟେଡ୍ ପ୍ରେସ୍‌ର ସଂବାଦଦାତା ଉଏବ୍ ମିଲ୍‌ର୍ ଲେଖିଛନ୍ତି - ଏତିକିବେଳେ ଅଫିସରଙ୍କ ଠାରୁ ହୁକୁମ ପାଇ ଭାରତୀୟ ପୁଲିସ କନ୍‌ଷ୍ଟବଲ ଆଗେଇ ଆସୁଥିବା ସତ୍ୟାଗ୍ରହୀଙ୍କ ଉପରେ ମାଡ଼ି ପଡ଼ିଲେ ଏବଂ ଲୁହାଗୋବ ବସିଥିବା ଠେଙ୍ଗାରେ ସେମାନଙ୍କୁ ନିସ୍ତୁକ ମାଡ଼ ଚଢ଼େଇଲେ । ବର୍ଷା ହେଲାପରି ଠେଙ୍ଗାମାଡ଼ ବସୁଥାଏ କିନ୍ତୁ ମାଡ଼ ରୋକିବାକୁ ଜଣେ ସୁଦ୍ଧା ସତ୍ୟାଗ୍ରହୀ ହାତ ଉଠାଉ ନ ଥାନ୍ତି । ପିଲାଏ ଖେଳିବାବେଳେ ଯେପରି ମାଟିରେ କାଠି ପୋତି ଏକା ପାହାରକେ ସେ କାଠିଗୁଡ଼ିକୁ ଶୁଆଇ ଦିଅନ୍ତି ପୁଲିସଙ୍କ ଲାଠି ମାଡ଼ରେ ସତ୍ୟାଗ୍ରହୀ ସେହିପରି ଶୋଇଗଲେ । ସତ୍ୟାଗ୍ରହୀଙ୍କ ମୁକୁଳା ମୁଣ୍ଡରେ ପୁଲିସ ଲାଠିର ଢୁ ଢୁ ଶବ୍ଦ ମୁଁ ଯେଉଁଠି ଠିଆ ହୋଇଥାଏ ସେଠାକୁ ଶୁଭୁଥାଏ । ସେ ଶବ୍ଦ ଶୁଣି ମୋ ଦେହ ଶୀତେଇ ଉଠୁଥାଏ । ଯେଉଁ ସତ୍ୟାଗ୍ରହୀ ଦୂରରେ ଛିଡ଼ା ହୋଇ ସେମାନଙ୍କ ପାଳିକୁ ଅପେକ୍ଷା କରିଥାନ୍ତି ସେମାନେ ସାଥୀଙ୍କ ମୁଣ୍ଡରେ ପଡୁଥିବା ଲାଠି ପାହାରରେ ନିଃଶ୍ୱାସ ରୋକି ସମବେଦନାରେ ଉହୁ ଉହୁ ହେଉଥାନ୍ତି । ଯେଉଁମାନଙ୍କ ମୁଣ୍ଡରେ ମାଡ଼ ବାଜୁଥାଏ, ସେମାନେ ବେହୋସ ହୋଇ ଭୂଇଁରେ ଲୋଟୁଥାନ୍ତି କିମ୍ବା ତାଳୁ ଫାଟିଯିବା ଯନ୍ତ୍ରଣାରେ ନିଃଶବ୍ଦରେ ଦେହ ସାଙ୍କୁଡ଼ି ଦେଉଥାନ୍ତି......ଯେଉଁମାନେ

ମାଡ଼ରୁ ବର୍ତ୍ତିଯାଇ ଚାଲିବାକୁ ସମର୍ଥ ଥାନ୍ତି ସେମାନେ ଧାଡ଼ି ନ ଭାଙ୍ଗି, ସଂକଳ୍ପ ନ ଛାଡ଼ି ମାଡ଼ ଖାଇ ତଳେ ଲୋଟିବା ପର୍ଯ୍ୟନ୍ତ ଆଗଉଥାନ୍ତି । ପ୍ରଥମ ଧାଡ଼ି ପୂରାପୂରି ତଳେ ଲୋଟିଯିବା ପରେ ଆଉ ଗୋଟିଏ ଧାଡ଼ି ଆଗଉଥାନ୍ତି । ଓ୍ୱେବ୍ ମିଲ୍‌ରଙ୍କ ଭାଷାରେ ପ୍ରତ୍ୟେକ ସତ୍ୟାଗ୍ରହୀ ଜାଣିଥିଲେ ଯେ କେତେ ମିନିଟ୍‌ପରେ ସେ ମାଡ଼ ଖାଇ ଭୂଇଁରେ ଲୋଟିବେ, ହୁଏତ ମାଡ଼ରେ ପ୍ରାଣ ଚାଲିଯିବ, ତଥାପି କାହାରିଠାରେ ଭୟ ବା ଦ୍ୱିଧା ମୁଁ ଲକ୍ଷ୍ୟ କରିପାରି ନ ଥିଲି । ପ୍ରତ୍ୟେକ ମୁଣ୍ଡ ଉପରକୁ କରି ଧୀରସ୍ଥିର ଭାବରେ ଅଗ୍ରସର ହେଉଥାନ୍ତି । ରଣଗୀତ ବୋଲି କେହି ପ୍ରଚୋଦିତ କରୁ ନ ଥାଏ, ବାହାବାହା କହି କେହି ଉତ୍ସାହ ଦେଉ ନ ଥାଏ । ପୁଲିସ ମାଡ଼ି ଆସି ଯନ୍ତ୍ରଚାଳିତ ପରି ଦ୍ୱିତୀୟ ଦଳର ସତ୍ୟାଗ୍ରହୀଙ୍କୁ ମାରି ଶୁଆଇ ଦେଲେ । ଜଣେ ସୁଦ୍ଧା ଆକ୍ରମଣର ପ୍ରତିରୋଧ କଲେ ନାହିଁ କି ଆତ୍ମରକ୍ଷା କରିବା ପାଇଁ ଲେଶମାତ୍ର ଚେଷ୍ଟା କଲେ ନାହିଁ । ସତ୍ୟାଗ୍ରହୀ ମଧ୍ୟ ଯନ୍ତ୍ରଚାଳିତ ବେତ ମାଡ଼ ଖାଇ ଭୂଶାୟୀ ହେବା ପର୍ଯ୍ୟନ୍ତ ଆଗଉଥାନ୍ତି ।

ତୃତୀୟ ଦଳରେ ପଚିଶ ଜଣ ସତ୍ୟାଗ୍ରହୀ ଆସି ପୁଲିସ୍‌ଙ୍କ ସାମନାରେ ବସି ରହିଲେ । ଓ୍ୱେବ୍ ମିଲ୍‌ର ନିଜ ଆଖିରେ ଦେଖି ଲେଖିଛନ୍ତି-ପୁଲିଶ୍ ଅତି ବର୍ବର ଭାବରେ ଏମାନଙ୍କ ତଳିପେଟ ଓ ଜାଙ୍ଗଳିରେ ଗୋଇଠା ମାରିଲାଗିଲେ । ପୁଲସ ଉତ୍ୟକ୍ତ ହୋଇ ଏମାନଙ୍କ ହାତ ଗୋଡ଼ ଧରି ଘୋଷାରି ଘୋଷାରି ନେଇ ଘାଇ ଭିତରେ ପକାଇ ଦେଲେ । ମୁଁ ଯେଉଁଠି ଠିଆ ହୋଇଥିଲି ତାରି ପାଖରେ ପୁଲିସ୍ ଜଣକୁ ଟାଣି ଆଣି ଖାଇକୁ ପେଲିଦେଲେ । ସେ ବିଚରା ପାଣିରେ ଭୁଷକରି ପଡ଼ିବାରେ ପାଣି ଛିଟିକା ଆସି ମୋ ପିନ୍ଧାଲୁଗା ଓଦା ହୋଇଗଲା । ଆଉ ଜଣକୁ ଆଣି ଖାଇକୁ ଠେଲି ଦେଇ ତା ମୁଣ୍ଡରେ ଜଣେ ପୁଲିସ୍ ନିର୍ଘାତ ପାହାରେ କଷିଦେଲା । ରକ୍ତାସ୍ନାତ, ନିଶ୍ଚେଷ୍ଟା ସତ୍ୟାଗ୍ରହୀଙ୍କୁ ବହୁ ସମୟ ପର୍ଯ୍ୟନ୍ତ ଖଟିଆରେ ବୁହାଚାଲିଲା ।'

ଜଣେ ଇଂରେଜ ଅଫିସର ଶ୍ରୀମତୀ ନାଇଡୁଙ୍କ ପାଖକୁ ଲାଗି ଆସି ତାଙ୍କ ଡ଼େଣାରେ ହାତ ମାରି କହିଲେ, ''ସରୋଜିନୀ ନାଇଡୁ, ତୁମକୁ ଗିରଫ କରାଗଲା,'' ଶ୍ରୀମତୀ ନାଇଡୁ ସେ ଅଫିସରଙ୍କ ହାତ ଛିଞ୍ଚାଡ଼ି ଦେଇ କହିଲେ - ଗିରଫ କଲ ତ, ଚାଲଯିବା । କିନ୍ତୁ ମୋତେ ଛୁଅଁ ନାହିଁ । ଏ ସତ୍ୟାଗ୍ରହରେ ଯୋଗ ଦେଇଥିବା ଗାନ୍ଧିଜୀଙ୍କ ଦ୍ୱିତୀୟ ପୁତ୍ର ମଣିଲାଲଙ୍କୁ ମଧ ଗିରଫ କରାଗଲା ।

''ସକାଳ ଏଗାରଟା ବେଳକୁ ସୂର୍ଯ୍ୟତାପ ୧୧୭ ଡ଼ିଗ୍ରୀ ପର୍ଯ୍ୟନ୍ତ ବଢ଼ି ଯାଇଥାଏ । ଗାନ୍ଧୀବାଲାଙ୍କ ସତ୍ୟାଗ୍ରହ ବନ୍ଦ ହେଲା ।'' ଅସ୍ଥାୟୀ ଭାବରେ ହୋଇଥିବା ହାସପାତାଳକୁ

ଯାଇ ଓ୍ୱେବ୍ ମିଲ୍‌ର ଦେଖିଲେ ସେଠାରେ ଆହତ ହୋଇ ପଡ଼ିଛନ୍ତି ୩୨[illegible] ଜଣ । ସେମାନଙ୍କ ମଧ୍ୟରୁ ଅନେକେ ସେ ପର୍ଯ୍ୟନ୍ତ ବେହୋସ ହୋଇ ରହିଥାନ୍ତି । ଅନ୍ୟମାନେ ମୁଣ୍ଡରେ ଦେହରେ ମାଡ଼ ଯୋଗୁ କଲବଲ ହେଉଥାନ୍ତି । ଦୁଇଜଣ ପ୍ରାଣ ହରାଇଥାନ୍ତି ।

ଏଇଟା ଗୋଟିଏ ଦିନର ଗୋଟିଏ ସ୍ଥାନର ଘଟଣା । ଏହାପରେ ମଧ ଧରାଷଣା ଦଖଲ ଅଭିଯାନ ଚାଲିଥିଲା ଏବଂ ଏହିପରି ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା ସମଗ୍ର ଭାରତରେ । ପୁଣି ସମଗ୍ର ଭାରତରେ ସତ୍ୟାଗ୍ରହୀମାନେ ଏହିପରି ନିର୍ଯ୍ୟାତନା ସହି ଅହିଂସ ରହିଥିଲେ । କାରଣ ଗାନ୍ଧିଜୀଙ୍କ ନିର୍ଦ୍ଦେଶ ଥିଲା-ସତ୍ୟାଗ୍ରହୀ ହାତରେ ମୁଠାଏ ଲୁଣ ଭାରତରେ ଆତ୍ମସମ୍ମାନର ପ୍ରତୀକ । ତେଣୁ ହାତମୁଠା ପଛେ ମୋଡ଼ି ଭାଂଗି ଦିଆଯିବ କେହି ସ୍ୱେଚ୍ଛାରେ ମୁଠା ଫିଟାଇ ଲୁଣ ଦେବେ ନାହିଁ । ସତ୍ୟାଗ୍ରହୀକୁ ଗିରଫ କରାଗଲା ପରେ ସେ ମୁଠାଫିଟେଇ ଲୁଣ ସରକାରକୁ ଦେବ ।



॥୨॥

## ଉଦ୍‌ଯୋଗ ପର୍ବ

ଏଇ ସତ୍ୟାଗ୍ରହ ପରିଚାଳନା କରିବାର କ୍ଷମତା ଗାନ୍ଧିଜୀଙ୍କୁ ନିଖିଳ ଭାରତ ଜାତୀୟ କଂଗ୍ରେସ ଦେଇଥିଲା । ଯେତେବେଳେ ୧୯୨୮ରେ ନେହେରୁ କମିଟି ପ୍ରସ୍ତୁତ କରିଥିବା ଭାରତର ଶାସନ ଖସଡ଼ା କଲିକତାର ଜାତୀୟ କଂଗ୍ରେସର ଖୋଲା ଅଧିବେଶନରେ ଉପସ୍ଥାପିତ କରାଗଲା, ସେତେବେଳେ ସେଥିରେ ଥିବା ଔପନିବେଶିକ ସ୍ୱାୟତ୍ତଶାସନର ଦାବୀକୁ ବିରୋଧ କରିଥିଲେ ଜବାହାରଲାଲ ନେହେରୁ ଓ ସୁଭାଷଚନ୍ଦ୍ର ବୋଷ । ମାତ୍ର ଗାନ୍ଧିଜୀ, ଡ଼. ମୋତିଲାଲ ନେହେରୁ ପ୍ରମୁଖ ଔପନିବେଶିକ ସ୍ୱାୟତ୍ତଶାସନକୁ ସମର୍ଥନ କରିଥିଲେ । ଭୋଟରେ ନେହେରୁ - ବୋଷଙ୍କ ପୂର୍ଣ୍ଣ ସ୍ୱରାଜ୍ୟ ପ୍ରସ୍ତାବ କାଟ ଖାଇଗଲା । ସେତେବେଳେ ଗାନ୍ଧିଜୀ କହିଥିଲେ ବର୍ଷକ ମଧ୍ୟରେ ଯଦି ଆମ ଦାବୀ ସରକାର ପୂରଣ ନ କରିବେ, ଆମେ ପୂର୍ଣ୍ଣ ସ୍ୱରାଜ୍ୟ ପାଇଁ ଲଢ଼େଇ କରିବୁ । ସେଥିପାଇଁ ଏ ବର୍ଷଟି କଂଗ୍ରେସ ସଦସ୍ୟ ସଂଗ୍ରହ, କଂଗ୍ରେସ ସଂଗଠନକୁ ଅନୁଶାସନବଦ୍ଧ କରିବା, ଖଦୀ, ଅସ୍ପୃଶ୍ୟତା ନିବାରଣ, ନିଶା-ନିବାରଣ କାମରେ କଂଗ୍ରେସୀମାନେ ଲାଗିପଡ଼ିବା ସ୍ଥିର ହେଲା ।

ବ୍ରିଟିଶ ସରକାର ଔପନିବେଶିକ ସ୍ୱାୟତ୍ତ ଶାସନ ଦେବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ଫଳରେ ୧୯୨୯ ମସିହା ଡ଼ିସେମ୍ବର ୩୧ ତାରିଖ ଦିନ ରାତି ବାରଟାରେ କଣ୍ଟ ପୂରିଲାରୁ ପୂର୍ଣ୍ଣସ୍ୱରାଜ୍ୟର ପ୍ରସ୍ତାବ ଗୃହୀତ ହେଲା ଲାହୋର କଂଗ୍ରେସ ଅଧିବେଶନରେ ।

ଗାନ୍ଧିଜୀ ସ୍ୱାଧୀନତାର ଘୋଷଣା-ପତ୍ର ଠିକ କଲେ ଏବଂ ଜାନୁଆରୀ ୨୬, ୧୯୩୬ରେ ସମଗ୍ର ଭାରତରେ ସାଧାରଣ ସଭାରେ ଏହି ଘୋଷଣା ପତ୍ର ପାଠ କରାଯିବା ସ୍ଥିର ହେଲା । ତଦନୁସାରେ ଜାନୁଆରୀ ୨୭ ତାରିଖଟି ସ୍ୱାଧୀନତା ଦିବସ ବା ପୂର୍ଣ୍ଣ ସ୍ୱରାଜ୍ୟ ଦିବସ ନାମରେ ନାମିତ ହେଲା । ହଜାର ହଜାର ସଭାରେ ହଜାର ହଜାର ଲୋକ ଏହି ଘୋଷଣା-ପତ୍ର ପାଠ କଲେ । ଓଡ଼ିଶାରେ ମଧ୍ୟ ସବୁ ଜିଲ୍ଲାରେ ଯେଉଁଠି କଂଗ୍ରେସ ସଂଗଠନ ଥିଲା, ସେଠାରେ ସଭାକରାଯାଇ ଘୋଷଣା-ପତ୍ର ପାଠ କରାଗଲା । ତତ୍ ସହିତ ଜାତୀୟ ପତାକା ଉତ୍ତୋଳନ କାର୍ଯ୍ୟକ୍ରମ ମଧ୍ୟ ରଖାଯାଇଥିଲା । ବ୍ରିଟିଶ ଶାସନରେ ଭାରତରେ ବ୍ରିଟିଶ ପତାକା ୟୁନିୟନ୍ ଜ୍ୟାକ୍ ହିଁ ଦୁର୍ଗମାନଙ୍କରେ କୋଟ କଚେରୀରେ ଉଡୁଥିଲା । ଜାତୀୟ ସଂଗୀତ ମଧ୍ୟ ବୋଲା ହେଉଥିଲା ''God save the king'' ଏହା ଥିଲା ଇଂଲ୍ୟାଣ୍ଡର ଜାତୀୟ ସଂଗୀତ ।

କଟକ ସହରରେ କାଠଗଡ଼ା ସାହିରେ ଲୋକ-ସେବା ପ୍ରେସ୍ ପରିସର ମଧ୍ୟରେ ''ଗାଅ ସ୍ୱାଧୀନ ଭାରତ'' ଗୀତ ବୋଲା ହୋଇ ଜାତୀୟ ପତାକା ଉତ୍ତୋଳିତ ହୋଇଥିଲା । ଶ୍ରୀ ବାଞ୍ଛାନିଧି ମହାନ୍ତି, ଶ୍ରୀ ବୀରକିଶୋର ଦାସଙ୍କ ଦ୍ୱାରା ରଚିତ ବନ୍ଦନା ଗୀତି 'ଉଡ଼ିଖେଳରେ ଜାତି ପତାକା ଆଜି' ଗାଇଥିଲେ ।

ଉପରଓଳି ମ୍ୟୁନିସିପାଲିଟି ପଡ଼ିଆରେ ଘୋଷଣା ପତ୍ର ପାଠ କରିବା ସ୍ଥିର ହୋଇଥିଲା । ମାତ୍ର କଟକରେ ୧୪୪ ଧାରା ଜାରି ହେବାରୁ ଏବଂ ସେଦିନ କେହି ସରକାରୀ ଆଇନ ଅମାନ୍ୟ କରିବାକୁ ଗାନ୍ଧିଜୀ ନିଷେଧ କରିଥିବାରୁ ଗୋକୁଳାନନ୍ଦ ଚୌଧୁରୀଙ୍କ କାଠଯୋଡ଼ି କୂଳସ୍ଥିତ ଘର ହତାରେ ଏହି ସଭା ଆୟୋଜିତ ହେଲା । ରବୀନ୍ଦ୍ରନାଥ ଠାକୁରଙ୍କର 'ମୋରା ଭୟ କରବୋ ନା ଭୟ କରବୋନା' ଗୀତଟି ମାଳତୀ ଚୌଧୁରୀଙ୍କ ସହ ସୁରେନ୍ଦ୍ରନାଥ ପଟ୍ଟନାୟକ, ସୁଶୀଳ ଘୋଷ୍ ଓ ଅନ୍ନପୂର୍ଣ୍ଣା ବୋଲିଥିଲେ । ଶ୍ରୀ ବାଞ୍ଛାନିଧି ମହାନ୍ତି ବୋଲିଥିଲେ ବୀରବାବୁଙ୍କ ପ୍ରଖ୍ୟାତ ଗୀତ :-

ବିଦ୍ରୋହୀ ଉଠ ସୈନିକ ଉଠ ରଣନାଶୀ ରଣସେବକ
ମୁକ୍ତକଣ୍ଠେ ଗାଅ ହେ ସର୍ବେ ଆମ୍ଭେ ସ୍ୱାଧୀନ ଯୁବକ

ଭାରତ ସିଂହ ଜାଗ୍ରତ ଆଜି

ଅଳସ ତନ୍ଦ୍ରା ଯାଇଅଛି ଭାଜି

ଅତ୍ୟାଚାରୀର ମାନସରାଜ୍ୟେ ଆଣିଅଛି ଭୀମ ଚମକ

ହଜାର ହଜାର ଲୋକଙ୍କ ଉପସ୍ଥିତିରେ ଗୋପବଂଧୁ ଚୌଧୁରୀ କଟକରେ ଘୋଷଣା-ପତ୍ର ପାଠ କଲେ :-

ଆମ୍ଭମାନଙ୍କର ବିଶ୍ୱାସ ଯେ ସ୍ୱାଧୀନ ହେବା, ନିଜର ପରିଶ୍ରମର ଫଳଭୋଗ କରିବା ଓ ଜୀବନର ଆବଶ୍ୟକ ସାମଗ୍ରୀ ହାସଲ କରିବାର ଅଧିକାର ଭାରତୀୟ ଜନସାଧାରଣଙ୍କର ଅଛି । ପୁଣି ଆମ୍ଭେମାନେ ବିଶ୍ୱାସ କରୁ ଯେ ଯଦି କୌଣସି ସରକାର ଜନସାଧାରଣଙ୍କୁ ଏହି ଅଧିକାରରୁ ବଞ୍ଚିତ କରୁଥାଏ ବା ସେମାନଙ୍କ ଉପରେ ଅତ୍ୟାଚାର କରୁଥାଏ ତେବେ ସେ ସରକାରକୁ ବଦଳାଇ ଦେବାର ବା ମୂଳପୋଛ କରିଦେବାର ଅଧିକାର ମଧ୍ୟ ଜନସାଧାରଣଙ୍କ ଅଛି ।

ବ୍ରିଟିଶ ସରକାର ଭାରତୀୟମାନଙ୍କୁ ଯେ କେବଳ ଏହି ଅଧିକାରରୁ ବଞ୍ଚିତ କରିଛି ସେତିକି ନୁହେଁ, ଅଧିକନ୍ତୁ ଜନସାଧାରଣଙ୍କୁ ଶୋଷଣ କରି ସେହି ଶୋଷଣ ଉପରେ ନିଜକୁ ପ୍ରତିଷ୍ଠିତ କରିଛି ଏବଂ ଆର୍ଥିକ, ରାଜନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ଭାରତବର୍ଷକୁ ଉଜାଡ଼ି ଦେଇଛି ।

ଆର୍ଥିକ ଦୃଷ୍ଟିରୁ ଆମ ଦେଶବାସୀଙ୍କ ଠାରୁ ସେମାନଙ୍କ ଆୟର ଅନୁପାତରେ ଅତ୍ୟଧିକ ଖଜଣା ନିଆ ଯାଉଛି । ଆମର ହାରାହାରି ଦୈନିକ ଆୟ ସାତ ପଇସା । ଆମେ ଯେଉଁ ଖଜଣା ଦେଉଛୁ ସେଥିରୁ ଶତକଡ଼ା କୋଡ଼ିଏ ଭାଗ ଚାଷୀଙ୍କ ଠାରୁ ନିଆ ଯାଉଛି ଏବଂ ଶତକଡ଼ା ତିନିଭାଗ ଲୁଣ ଟିକସରୁ ଆଦାୟ ହେଉଛି । ଫଳରେ ପ୍ରତ୍ୟେକ ଗରିବ ପ୍ରଜାକୁ ଏ ଟିକସ ଭାର ମୁଣ୍ଡେଇବାକୁ ପଡୁଛି ।

ଗ୍ରାମ୍ୟଶିଳ୍ପକୁ ଧ୍ୱଂସ କରି ଦିଆଯିବା ଫଳରେ ଚାଷୀ ବର୍ଷରେ ଚାରିମାସ ବେକାର ରହୁଛି । ହସ୍ତଶିଳ୍ପ ଅଭାବରେ ତାର ବୁଦ୍ଧି କୁଣ୍ଠିତ ହୋଇଯାଉଛି । ଶୁଳ୍କ ଓ ମୁଦ୍ରା ବିନିମୟ ଯେଉଁ ବ୍ୟବସ୍ଥା ହୋଇଛି ତାହା ଚାଷୀକୁ ଆହୁରି କ୍ଷତିଗ୍ରସ୍ତ କରୁଛି । ଶୁଳ୍କ ଆଇନ୍‌ରେ ବ୍ରିଟିଶ କଳମାଲିକଙ୍କ ପ୍ରତି ପକ୍ଷପାତ କରାଯାଉଛି । ଶାସନ କଳରେ ଅପବ୍ୟୟ ପୂରି ରହିଛି । ବିନିମୟ ପଦ୍ଧତିରେ ମନମୁଖୀ କାରବାର ଚାଲିଛି ଯାହାଫଳରେ କୋଟି କୋଟି ଟଙ୍କା ବିଦେଶକୁ ଚାଲିଯାଉଛି ।

ବ୍ରିଟିଶ ଅମଳରେ ରାଜନୀତିକ କ୍ଷେତ୍ରରେ ଭାରତର ଯେଉଁ ପତନ ହୋଇଛି ତାହା ଅତୀତରେ କେବେହେଁ ହୋଇ ନ ଥିଲା । ଶାସନ ସଂସ୍କାର ଦ୍ୱାରା ଜନସାଧାରଣଙ୍କୁ ପ୍ରକୃତ ଶାସନ କ୍ଷମତା ମିଳି ନାହିଁ । ଆମ ମଧ୍ୟରେ ଶୀର୍ଷସ୍ଥାନୀୟ ବ୍ୟକ୍ତିଙ୍କୁ ସୁଦ୍ଧା ବ୍ରିଟୀଶ ଶାସକଙ୍କ ଆଗରେ ମୁଣ୍ଡ ନୁଆଁଇବାକୁ ପଡୁଛି । ନିଜର ମତ ବ୍ୟକ୍ତ କରିବାର ବା ସ୍ୱାଧୀନଭାବରେ ପରସ୍ପର ସହିତ ମିଶିବାର ସ୍ୱାଧୀନତା ସୁଦ୍ଧା ଆମକୁ ଦିଆଯାଇ ନାହିଁ । ଆମର ରାଜ୍ୟ ଶାସନ କରିବା ପ୍ରତିଭାକୁ ନଷ୍ଟ କରିଦିଆଯାଇଛି ।

ଆମ ସଂସ୍କୃତିକୁ ଲୋପ କରିଦେବା ଉଦ୍ଦେଶ୍ୟରେ ଇଂରାଜୀ ଶିକ୍ଷା ପଦ୍ଧତି ଆମକୁ ଆମ ପ୍ରକୃତ ଅବସ୍ଥାରୁ ଦୋହଲାଇ ଦେବାକୁ ଉଦ୍ୟମ ଚଳାଇଛି ଏବଂ ତାର ଦାସତ୍ୱ ଶୃଙ୍ଖଳରେ ବାନ୍ଧି ହୋଇ ରହିବା ପାଇଁ ଶିକ୍ଷା ଦେଉଛି ।

ଆମକୁ ନିରସ୍ତ୍ର କରାଯାଇ ଆଧ୍ୟାତ୍ମିକ ଦୃଷ୍ଟିରୁ ନପୁଂସକ କରି ଦିଆଯାଇଛି ଏବଂ ଆମ ଦେଶକୁ ଅଧିକାର କରି ଦେଇ ଥିବା ବିଦେଶୀ ସୈନ୍ୟ ବାହିନୀକୁ ଦେଖାଇ ଆମକୁ ଏହାହିଁ ଜଣାଇ ଦିଆଯାଇଛି ଯେ ଆମେ ଆମ ଘର ବା ଦେଶକୁ ରକ୍ଷା କରିବାକୁ ସମର୍ଥ ନୋହୁଁ ।

ଆମମାନଙ୍କର ବିଶ୍ୱାସ, ଆମେ ଯଦି ଏହି ଅମଣିଷ ସରକାର ସହିତ ସହଯୋଗ ନ କରିବୁ ଓ ଏ ସରକାରକୁ ଖଜଣା ଟିକସ ଦେବା ବନ୍ଦ କରି ଦେବୁଁ ଏବଂ ଆମକୁ ଯେତେ ଉତ୍ତେଜିତ କରାଗଲେ ସୁଦ୍ଧା ହିଂସା କରିବା ପାଇଁ ଆମେ ଉତ୍ତେଜିତ ନ ହେବୁ ତେବେ ଏ ସରକାର ନିଶ୍ଚୟ ହଟିଯିବ ।

ଘୋଷଣା-ପତ୍ର ପାଠ କରାଗଲା । ମାତ୍ର ଗାନ୍ଧିଜୀ କେଉଁ ଧରଣର ଆନ୍ଦୋଳନ ଆରମ୍ଭ କରିବେ ତାହା କାହାରିକୁ ଜଣା ନ ଥାଏ ।

ଗାଅ ସ୍ୱାଧୀନ ଭାରତ ସ୍ୱାଧୀନ ଭାରତ ସ୍ୱାଧୀନ ସ୍ୱାଧୀନ ସ୍ୱାଧୀନରେ
ଗାଏ ରାଗରେ ଭୂଧର ଅମ୍ବର ଚୁମ୍ବିତ ଚାଲ ହିମାଚଳ ଗିରିବର କଂପିତ
କଂପେ ବିଂଧଗିରି କାନନ କୁଞ୍ଜେ ଲଂଫେ ନିର୍ଝରିଣୀ ପ୍ରପାତ ପୁଞ୍ଜେ
ଚପଳା ଚମକେ ଗଗନେ ପୁଲକେ ନୀରଦ ବିଲୀନରେ
ପାବନୀ ଗଂଗା ଯମୁନା ସଂଗେ
ସିଂଧୁ ମହାନଦୀ କାବେରି ରଂଗେପ୍ଲାବିତ
ଭୂବନ ସୁରଧୁନୀ ଶୋଭନ ରୁଚିତ ସ୍ୱାଧୀନରେ

ବଂଗୋପସାଗର ଉତ୍କଳ ଦେଶେ
ନର୍ତ୍ତନ କୀର୍ତ୍ତନ ଉନ୍ମତ ବେଶେ
ଅଂଗେ ଅଂଗେ ତରଙ୍ଗ ରଙ୍ଗେ ସୂଚିତ ସ୍ୱାଧୀନରେ
ଜାତୀୟ କେଡ଼େ ଉତର ଗର୍ବ
ଖସିକୁଳ ଦର୍ପ କରିବ ସେ ଖର୍ବ
ସେ ତ ଜାତୀୟ ଗୌରବ ଜାତୀୟ ସଂପଦ ଜାତୀୟ ଜୀବନରେ

ରଚନା- ବାଞ୍ଛାନିଧି ମହାନ୍ତି ।



॥ ୩ ॥

ଜାନୁଆରୀ ଛବିଶ ତାରିଖରେ ପୂର୍ଣ୍ଣ-ସ୍ୱରାଜ୍ୟ-ଦିବସ ପାଳିତ ହେବାର ପୂର୍ବଦିନ ଭାରତର ବଡ଼ଲାଟ ଲର୍ଡ଼ ଆରଉଇନ୍ ଦିଲ୍ଲୀରେ ଲେଜିସଲେଟିଭ୍ ଆସେମ୍ବ୍ଲିରେ ଯେଉଁ ଭାଷଣ ଦେଲେ ତାକୁ ଅନୁଧ୍ୟାନ କରି ଗାନ୍ଧିଜୀ ୩୦.୧.୩୦ ତାରିଖରେ 'ୟଙ୍ଗ୍ ଇଣ୍ଡିଆ' ପତ୍ରିକାରେ ଗୋଟିଏ ପ୍ରବନ୍ଧ ଲେଖି ସ୍ପଷ୍ଟ କରିଦେଲେ ଯେ ବ୍ରିଟିଶ ସରକାରଙ୍କର ଭାରତକୁ ଔପନିବେଶିକ ସ୍ୱାୟତ ଶାସନ ଦେବା ମତଲବ ନ ଥିବା କଥା ବଡ଼ଲାଟଙ୍କ ଭାଷଣରୁ ବୁଝାପଡୁଛି । ଦେଶର ବିଭିନ୍ନ ଦଳର ଏକତା ଉପରେ ବଡ଼ଲାଟ ଜୋର ଦେଇଛନ୍ତି ମାତ୍ର ବିଦେଶୀ ସରକାର ନିଜର ସ୍ୱାର୍ଥ ବଜାୟ ରଖିବା ପାଇଁ ଏ ଦେଶର ଲୋକଙ୍କ ମଧ୍ୟରେ ଛୋଟ ଛୋଟ ସ୍ୱାର୍ଥ ପାଇଁ କଳି ସୃଷ୍ଟି କରୁଥିବା ଯାଏ ଏକତା ସ୍ଥାପିତ ହେବ କିପରି ? କଂଗ୍ରେସ ଏହି ଦଳଗୁଡ଼ିକରୁ ନିଜକୁ ଅଲଗା କରିଦେଇ ଭଲ କରିଛି । ଜାନୁଆରୀ ଛବିଶ ତାରିଖର ସଭା ଶୋଭାଯାତ୍ରାରୁ ପ୍ରମାଣିତ ହୋଇଛି ଯେ ଲୋକଙ୍କ ହୃଦୟରେ କଂଗ୍ରେସ ହିଁ ପ୍ରଭୁତ୍ୱ କରୁଛି । ସରକାର କେବଳ ଗୋଟିଏ କଥାରେ ନିରପେକ୍ଷ । ତାହା ହେଉଛି ହିନ୍ଦୁ ମୁସଲମାନ ଆଦି ସମ୍ପ୍ରଦାୟ ନିର୍ବିଶେଷରେ ସବୁ ଚାଷୀଙ୍କ ଠାରୁ ସେମାନଙ୍କର କଡ଼ାକ୍ରାନ୍ତି ଅସୁଲ କରିନେବା ।

ଗାନ୍ଧିଜୀ ଶାସନ ସଂସ୍କାରରେ ଏଗାରଟି ବିଷୟ ସ୍ଥାନ ଦେବାକୁ ପ୍ରସ୍ତାବ ଦେଇଥିଲେ :

(୧) ସମ୍ପୂର୍ଣ୍ଣ ନିଶା ନିବାରଣ । (୨) ମୁଦ୍ରା ବିନିମୟ ଦର କମାଇ ଟଙ୍କାକୁ ଏକ ଶିଲିଙ୍ଗ, ଚାରିପେନ୍‌ସ କରାଯାଉ । (୩) ଖଜଣା ଅଧା କରାଯାଉ ଏବଂ ଖଜଣା ଉପରେ ବିଧାନସଭାର ନିୟନ୍ତ୍ରଣ ରହୁ । (୪) ଲୁଣ ଉପରୁ ଟିକସ ଉଠାଇ ଦିଆଯାଉୟ । (୫) ସୈନ୍ୟବିଭାଗ ଖରଚ ଅଧା କରି ଦିଆଯାଉ । (୬) ବସ୍ତ୍ରଶିଳ୍ପକୁ ରକ୍ଷା କରିବା ପାଇଁ ବିଦେଶୀ ବସ୍ତ୍ର ଆମଦାନୀ ଉପରେ ଅଧିକ ଶୁଳ୍କ ବସୁ । (୭) ଖଜଣା କମାଇ ଦେବା ଫଳରେ ଯେଉଁ ଆୟ ଊଣା ହେବ, ଉଚ୍ଚକର୍ମଚାରୀଙ୍କ ଦରମା ହାର ଅଧାଅଧି କମାଇ ଦେଇ ଆୟ ଓ ବ୍ୟୟକୁ ସମତୁଲ କରାଯାଉ । (୮) ଭାରତୀୟ ଉପକୂଳରେ କାରବାର କରୁଥିବା ଭାରତୀୟ ଜାହାଜାଦି କାରବାରକୁ ସୁରକ୍ଷିତ କରିବା ପାଇଁ ଆଇନ କରାଯାଉ । (୯) ଖୁଣୀ ଆସାମୀ ବା ହତ୍ୟା କରିଥିବା ଅପରାଧରେ କୋର୍ଟ କଚେରୀରେ ବିଚାର ହୋଇ ବନ୍ଦୀ ହୋଇଥିବା ଲୋକଙ୍କୁ ଛାଡ଼ି ସବୁ ରାଜନୈତିକ ବନ୍ଦୀକୁ ଖଲାସ କରି ଦିଆଯାଉ । ସବୁ ରାଜନୈତିକ ମୋକଦ୍ଦମା ଉଠାଇ ଦିଆଯାଉ । ୧୨୪(କ) ଧାରା ଓ ୧୮୧୮ ମସିହାର ରେଗୁଲେଶନ୍ ଓ ସେହି ପ୍ରକାରର ଅନ୍ୟ ଆଇନ୍‌ଗୁଡ଼ିକ ରଦ୍ଦ କରାଯାଉ । ନିର୍ବାସିତ ଭାରତୀୟଙ୍କୁ ସ୍ୱଦେଶକୁ ଫେରିବାକୁ ଅନୁମତି ଦିଆଯାଉ । (୧୦) ସି.ଆଇ.ଡ଼ି. ବା ଗୋଇନ୍ଦା ପୁଲିଶ ବିଭାଗ ଉଠେଇ ଦିଆଯାଉ କିମ୍ବା ତାହା ଲୋକପ୍ରତିନିଧିଙ୍କ ହାତରେ ରହୁ । (୧୧) ଆତ୍ମରକ୍ଷା ପାଇଁ ଲୋକଙ୍କ ନିୟନ୍ତ୍ରଣରେ ଅସ୍ତ୍ର ରଖିବାକୁ ଅନୁମତି ଦିଆଯାଉ ।

ଗାନ୍ଧିଜୀ ବ୍ରିଟିଶ ସରକାରଙ୍କ ସଙ୍ଗେ ଏ ସବୁ ଆଲୋଚନା ଚଳେଇଥାନ୍ତି । ଏଣେ କଂଗ୍ରେସ ସଦସ୍ୟ ସଂଗ୍ରହ, ପ୍ରାଥମିକ, ଜିଲ୍ଲା କଂଗ୍ରେସ କମିଟି ଗଠନ ସାଙ୍ଗରେ ଖଦୀ କାମ ଭଳି ଗଠନମୂଳକ କାମ ଚାଲିଥାଏ । ଓଡ଼ିଶାରେ ନିଖିଳ ଭାରତ ଚରଖା ସଂଘ ପକ୍ଷରୁ ଖଦୀ କାମ ହେଉଥାଏ । ତାହାଛଡ଼ା (ବୈରୀ) ଚମ୍ପାପୁର ହାଟ ଆଶ୍ରମ କାଦୁଆ (ସାକ୍ଷୀଗୋପାଳ) ଆଶ୍ରମ, ଗରଦପୁର (ଭଦ୍ରଖ) ଜୀବରାମ କଲ୍ୟାଣଜୀ କୋଠାରୀଙ୍କ ଆଶ୍ରମ, ଜଗତ୍‌ସିଂହପୁର ଅଳକାଶ୍ରମରେ ଖଦୀ କାମ ଚାଲିଥାଏ । ଭାରତର ବିଭିନ୍ନ ପ୍ରଦେଶରେ ଉଦାହରଣ ସ୍ୱରୂପ ଗୁଜରାଟରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, କର୍ଣ୍ଣାଟକରେ ଗଙ୍ଗାଧର ରାଓ ଦେଶପାଣ୍ଡେ, ମାନ୍ଦ୍ରାଜରେ ଚକ୍ରବର୍ତ୍ତୀ ରାଜଗୋପାଳ ଚାରୀ, ବଙ୍ଗଳାରେ ଯତୀନ୍ଦ୍ର ମୋହନ ସେନଗୁପ୍ତ ଓ ସତୀଶଚନ୍ଦ୍ର ଦାସଗୁପ୍ତ, ବିହାରରେ ବାବୁ ରାଜେନ୍ଦ୍ର ପ୍ରସାଦ, ଉତ୍ତରପ୍ରଦେଶରେ ମୋତିଲାଲ ନେହେରୁଙ୍କ ପରି ପୁରୁଖା ଲୋକେ ମଙ୍ଗ ଧରିଥାନ୍ତି । ଓଡ଼ିଶାରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଦେହାନ୍ତ ୧୯୨୮ରେ ହେଲା ।

ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିଆରୀ, ପଣ୍ଡିତ ନୀଳକଣ୍ଠ ଦାସ, ଲିଙ୍ଗରାଜ ମିଶ୍ର, ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ କୃପାସିନ୍ଧୁ ହୋତା, ନନ୍ଦକିଶୋର ଦାସ ପ୍ରମୁଖଙ୍କ ସହ ସେମାନଙ୍କର ସହକର୍ମୀମାନେ ଏ କାମରେ ଲାଗି ପଡ଼ିଥାନ୍ତି । ସମସ୍ତେ ସ୍ୱରାଜ୍ୟ-ସଂଗ୍ରାମ ପାଇଁ ଲୋକଙ୍କୁ ପ୍ରସ୍ତୁତ ହେବାକୁ ଡ଼ାକରା ଦେଉଥାନ୍ତି କିନ୍ତୁ କେହି ଜାଣି ନ ଥାନ୍ତି ସଂଗ୍ରାମର ରୂପରେଖ କ'ଣ ହେବ ।

୧୫ ଫେବୃୟାରୀ, ୧୯୩୦ରେ ଗାନ୍ଧିଜୀ କଂଗ୍ରେସର କାର୍ଯ୍ୟକାରୀ ସମିତିର ବୈଠକରେ ଲବଣ ଆଇନ୍ ଅମାନ୍ୟ କରିବା ଯୋଜନା ଉପସ୍ଥାପିତ କଲେ । ସମିତିର ସଦସ୍ୟମାନେ ଏ ପ୍ରସ୍ତାବ ଶୁଣି ହତମ୍ବମ୍ବ ହୋଇଗଲେ ଲୁଣ ଆଇନ ଅମାନ୍ୟ କରି କିପରି ଏତେବଡ଼ ସବିନୟ ଆଇନ ଅମାନ୍ୟ ଆନ୍ଦୋଳନକୁ ସଫଳ କରି ହେବ ! ଗାନ୍ଧିଜୀ କହିଲେ - ଭାରତର ତିନି ପାଖରେ ସମୁଦ୍ର । ଅଥଚ ସେହି ଲୁଣ ଉପରେ ଟିକସ ବସାଇ ଲିଭରପୁଲ୍‌ରୁ ଆସୁଥିବା ଲୁଣ ଖାଇବାକୁ ଯେ ସରକାର ଲୋକଙ୍କୁ ବାଧ୍ୟ କରୁଛନ୍ତି ଏହାଦ୍ୱାରା ଧନୀ ଗରିବ ସମସ୍ତେ ଶୋଷିତ ହେଉଛନ୍ତି । ତେଣୁ ଲୁଣ ଟିକସ ଯେ ଅନ୍ୟାୟ ଲୋକେ ତାହା ସହଜରେ ବୁଝିବେ ଏବଂ ହଜାର ହଜାର ମାଇଲ ବ୍ୟାପୀ ଉପକୂଳବର୍ତ୍ତୀ ଅଞ୍ଚଳର ଲୋକେ ଏହି ଆନ୍ଦୋଳନରେ ଯୋଗ ଦେବେ ।

ଗାନ୍ଧିଜୀଙ୍କ ଯୁକ୍ତି ଶୁଣି ସାରିବା ପରେ ସମିତି ଗାନ୍ଧିଜୀଙ୍କୁ ସବିନୟ ଆଇନ ଅମାନ୍ୟ ଆନ୍ଦୋଳନ ବା ସତ୍ୟାଗ୍ରହ ଆନ୍ଦୋଳନ ଚଳାଇବା ପାଇଁ ଡ଼ିକ୍ଟେଟର ବା ସେନାପତିର ଦାୟିତ୍ୱ ଦେଲେ । ସେହିଦିନ ପ୍ରାର୍ଥନା ସଭାରେ ଗାନ୍ଧିଜୀ ତାଙ୍କ ଆଶ୍ରମରେ ଥିବା ସହକର୍ମୀଙ୍କୁ କହିଲେ - ''ସାରା ପୃଥିବୀ ବଡ଼ ଆଶା କରି ଆଶ୍ରମ ଆଡ଼କୁ ଚାହିଁଛି । ଆପଣଙ୍କୁ ଜେଲ୍‌ରେ ଭରତି କରାଯିବ । ମାଡ଼ ଖାଇବାକୁ ମଧ୍ୟ ପଡ଼ିପାରେ । ଅନାହାରରେ ରହିବା ପାଇଁ ମଧ୍ୟ ପ୍ରସ୍ତୁତ ରହିବାକୁ ହେବ । ଆପଣଙ୍କୁ ଆଶ୍ରମରୁ ତଡ଼ି ଦିଆଯାଇ ପାରେ କିମ୍ବା ଏହାଠାରୁ ଅଧିକ ବିପଦ ମୁଣ୍ଡାଇବାକୁ ପଡ଼ିପାରେ । କିନ୍ତୁ ଏ ସବୁ ଅବସ୍ଥାରେ ଆପଣଙ୍କୁ ମନରେ ଓ କାର୍ଯ୍ୟରେ ଅହିଂସ ରହିବାକୁ ହେବ । କ୍ରୁଦ୍ଧ ବା ଉତ୍ତେଜିତ ହେଲେ ଚଳିବ ନାହିଁ । ଈଶ୍ୱର ମଧ୍ୟ ଆପଣଙ୍କ ପ୍ରତି ବିମୁଖ ହୋଇଯାଇ ପାରନ୍ତି । ତଥାପି ଆପଣ ଧୈର୍ଯ୍ୟ ହରାଇଲେ ଚଳିବ ନାହିଁ । ଆପଣମାନଙ୍କ ଲଲାଟରେ ଦୁଃଖକଷ୍ଟ ଲେଖା ହୋଇଛି । ରାମସୀତାଙ୍କୁ ମଧ୍ୟ କଷ୍ଟ ସହିବାକୁ ପଡ଼ିଥିଲା । ଭଗବାନ ଆପଣଙ୍କୁ ପରଖୁଛନ୍ତି । ଆପଣ ଯଦି ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିବେ ତେବେ ସବୁ ଅଭିଳାଷ ପୂର୍ଣ୍ଣ ହେବ । ଏହି ଆଶ୍ରମକୁ ଆତ୍ମୋତ୍ସର୍ଗର ଦୀପଶିଖାରେ ଆଲୋକିତ କରିବାକୁ ହେବ । ଯେଉଁମାନେ

ନିଜକୁ ଦୁର୍ବଳ ମଣୁଛନ୍ତି ସେମାନେ ଆଶ୍ରମ ଛାଡ଼ି ଚାଲି ଯାଆନ୍ତୁ । ଥରେ ଯୁଦ୍ଧରେ ପଶିବା ପରେ ପଛକୁ ହଟିଲେ ଆପଣ ତ କଳଙ୍କିତ ହେବେ, ଭାରତର ସୁନାମରେ ମଧ୍ୟ କଳଙ୍କ ଲାଗିବ ।

## ୦୦

## ॥ ୪ ॥

## ଚରମ ପତ୍ର

ଗାନ୍ଧିଜୀ ମାର୍ଚ୍ଚ ୨ ତାରିଖରେ ବଡ଼ଲାଟଙ୍କୁ ଏହି ମର୍ମରେ ଚିଠି ଲେଖି ଜଣାଇଲେ ଯେ ସବିନୟ ଆଇନ ଅମାନ୍ୟ କରିବା ପୂର୍ବରୁ ମିଳାମିଶାର ବାଟ ବାହାରିବା ଆଶାରେ ଆପଣଙ୍କୁ ଏ ଚିଠି ଲେଖୁଛି ।

ସେ ଲେଖିଲେ - ‘‘ମୁଁ ଅହିଂସାରେ ବିଶ୍ୱାସ କରେ । ଇଂରେଜ ଶାସନକୁ ମୁଁ ଗୋଟାଏ ଅଭିଶାପ ମଣୁଥିଲେ ହେଁ ଜଣେ ସୁଦ୍ଧା ଇଂରେଜର ନ୍ୟାୟୋଚିତ ହିତ ବିରୁଦ୍ଧରେ ମୁଁ କଦାପି କାର୍ଯ୍ୟ କରିବି ନାହିଁ । ମୋର ଅନେକ ଇଂରେଜଙ୍କ ସଙ୍ଗେ ଘନିଷ୍ଠ ବନ୍ଧୁତା ଅଛି । ସେମାନଙ୍କ ମଧ୍ୟରୁ ଅନେକେ ମୋତେ ଯେଉଁ ତଥ୍ୟ ଯୋଗାଇଛନ୍ତି ସେଇଥିରୁ ଇଂରେଜ ଶାସନ ଏ ଦେଶ ପାଇଁ କେତେ କ୍ଷତିକାରକ ତାହା ଜଣା ପଡ଼ି ଯାଇଛି ।

ଏହି ଇଂରେଜ ଶାସନ କ୍ରମାଗତ ଏ ଦେଶକୁ ଶୋଷଣ କରି ଏବଂ ସୈନ୍ୟ ବିଭାଗ ଓ ଶାସନ ବିଭାଗ ପାଇଁ ଅତିରିକ୍ତ ଖର୍ଚ୍ଚ କରି ଏ ଦେଶର କୋଟି କୋଟି ମୂକ ଜନତାକୁ ଦୀନଦରିଦ୍ର କରି ଦେଇଛି ।

ରାଜନୈତିକ ଦୃଷ୍ଟିରୁ ଏ ଶାସନ ଆମକୁ ଗୋଲାମ କରି ରଖିଛି । ଆମ ହାତରୁ ହତିଆର ଛଡ଼େଇ ନେଇ ଆମ ଆତ୍ମାକୁ ପଦଦଳିତ କରି ଦେଉଛି । ଫଳରେ ଆମେ କାପୁରୁଷ ପାଲଟି ଅସହାୟ ଅବସ୍ଥାରେ ରହିଲୁଣି ।

ମୁଁ ଆଶା କରିଥିଲି ଯେ ଗୋଲଟେବୁଲ ବୈଠକରେ ଏହି ଆପତ୍ତି ଅଭିଯୋଗଗୁଡ଼ିକ ଦୂର ହୋଇଯିବ । କିନ୍ତୁ ଆପଣ ସେ ବାବଦରେ ସ୍ପଷ୍ଟ କରିଦେଲେ ଯେ ଔପନିବେଶିକ ସ୍ୱାୟତ୍ତଶାସନ ଦେବାର ପ୍ରତିଶ୍ରୁତି ବ୍ରିଟିଶ୍ ମନ୍ତ୍ରୀମଣ୍ଡଳ ଦେଇ ପାରିବେ ନାହିଁ । ଏହିରୂପେ ଦିଲ୍ଲୀ ଆଲୋଚନା ଫଳବତୀ ନ ହେବାରୁ ୧୯୨୮

ମସିହାର କଲିକତା କଂଗ୍ରେସ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ଛଡ଼ା ଆଉ ଅନ୍ୟ ପନ୍ଥା ଆମ ଆଗରେ ନାହିଁ ।

ଭାରତକୁ ଶୋଷଣ କରିବା ପ୍ରକ୍ରିୟା ବନ୍ଦ ନ କଲେ ଭାରତ ଆହୁରି ଶୋଷି ହୋଇଯିବ । ମୁଦ୍ରା ବିନିମୟରେ ଟଙ୍କାକୁ ଏ ଶିଲିଂ ଛଅପେନ୍‌ସ ଅନୁପାତ ସ୍ଥିର କରାଯିବା ଫଳରେ କଲମ ଗାରକରେ କୋଟି କୋଟି ଟଙ୍କା ଭାରତରୁ ବିଦେଶକୁ ଚାଲି ଯାଉଛି ।

ଯେଉଁ ଖଜଣା ଟିକସରୁ ସରକାର ଏତେ ବେଶୀ ଆୟ କରୁଛନ୍ତି ତାହା ବୋଝରେ ଭାରତର ଅଣ୍ଟା ଭାଙ୍ଗି ପଡୁଛି । ସ୍ଥାୟୀ ବନ୍ଦୋବସ୍ତର ପ୍ରଚଳନ ଦ୍ୱାରା ଅଳ୍ପ କେତେକ ଜମିଦାର ହିଁ ଲାଭବାନ ହେଉଛନ୍ତି । ଜମିଦାର ଯେଉଁ ମୁହୂର୍ତ୍ତରେ ଚାହୁଁଛନ୍ତି ରଇତମାନଙ୍କୁ ବେଦଖଲ କରିଦେଉଛନ୍ତି । ଭାରତକୁ ଶୋଷଣ କରି ପ୍ରାଣଶୂନ୍ୟ କରିଦେବା ହିଁ ଏହି ଶାସନର ଉଦ୍ଦେଶ୍ୟ ବୋଲି ମନେ ହେଉଛି । ଏପରିକି ଯାହା ଜୀବନର ଅତ୍ୟାବଶ୍ୟକ ସାମଗ୍ରୀ ଲୁଣ ଭଳି ଜିନିଷ ଉପରେ ସୁଦ୍ଧା ଟିକସ ବସିଛି । ଏହି ଲୁଣ ଉପରେ ଧନୀଙ୍କ ଅପେକ୍ଷା ଗରିବମାନେ ଅଧିକ ନିର୍ଭର କରନ୍ତି । ମଦ ଓ ଅନ୍ୟ ନିଶାଦ୍ରବ୍ୟରୁ ଯେଉଁ ଆୟ ହେଉଛି ତାକୁ ମଧ୍ୟ ଏହି ଗରିବମାନେ ଦେଉଛନ୍ତି । ଏହା ଜନସାଧାରଣଙ୍କ ସ୍ୱାସ୍ଥ୍ୟ ଓ ନୈତିକତାକୁ ପାମ୍ପରା କରି ଦେଇଛି । ପେଷି ହୋଇ ଯାଉଥିବା ପ୍ରଜାଙ୍କର ଆୟର ପନ୍ଥା ହସ୍ତଶିଳ୍ପ ଅର୍ଥାତ୍ ସୂତାକଟା, ଲୁଗାବୁଣାକୁ ନଷ୍ଟ କରି ଦିଆଯାଇ ସେମାନଙ୍କ ଉପାର୍ଜନ କରିବାର କ୍ଷମତାକୁ ଲୋପ କରି ଦିଆଯାଇଛି । ପୁଣି ଭାରତ ଉପରେ ଯେଉଁ ଋଣ ବୋଝ ଲଦା ହୋଇଛି ସେ କଥା ଉଲ୍ଲେଖ ନ କଲେ ଭାରତର ଦୁଃଖ ଦୁର୍ଦ୍ଦଶାର କାହାଣୀ ଅସମାପ୍ତ ରହିଯିବ ।

ସାରା ପୃଥିବୀରେ ଏହି ସରକାର ସବୁଠାରୁ ବେଶୀ ଖର୍ଚ୍ଚାନ୍ତ କରାନ୍ତି ଏବଂ ଏଇଥିପାଇଁ ସରକାର ଏ ଅନ୍ୟାୟଗୁଡ଼ିକ କରୁଛନ୍ତି । ଉଦାହରଣସ୍ୱରୂପ ଆପଣ ମାସକୁ ଏକୋଇଶ ହଜାର ଟଙ୍କାରୁ ଅଧିକ ବେତନ ନିଅନ୍ତି । ଅଥଚ ବିଲାତର ପ୍ରଧାନମନ୍ତ୍ରୀଙ୍କ ବେତନ ହେଉଛି ପାଞ୍ଚହଜାର ଚାରିଶହ ଟଙ୍କାରୁ କିଛି ଅଧିକ । ବିଲାତବାସୀଙ୍କର ହାରାହାରି ଦୈନିକ ଆୟ ପ୍ରାୟ ଦୁଇଟଙ୍କା ହୋଇଥିବା ସ୍ଥଳେ ସେଠା ପ୍ରଧାନମନ୍ତ୍ରୀ ଦିନକୁ ଶହେ ଅଶୀଟଙ୍କା ଅର୍ଥାତ୍ ନବେ ଜଣ ଇଂରେଜଙ୍କ ଦୈନିକ ରୋଜଗାର ସଙ୍ଗେ ସମାନ ବେତନ ନିଅନ୍ତି । ଆମ ଦେଶରେ ମୁଣ୍ଡପିଛା ହାରାହାରି ଆୟ ହେଉଛି ପ୍ରାୟ ଦୁଇଅଣା । ଆପଣ ବେତନ ପାଆନ୍ତି ଦିନକୁ ସାତଶହ ଟଙ୍କାରୁ କିଛି ବେଶୀ । ଏହି ପରମାଶ୍ଚର୍ଯ୍ୟ ବିଷମତା ପ୍ରତି ଆପଣ ଟିକିଏ ଦୃଷ୍ଟିପାତ କରି ଚିନ୍ତା କରିବେ । ଗୋଟିଏ କଠୋର

ସତ୍ୟକୁ ବୁଝାଇବା ପାଇଁ ମୋତେ ଆପଣଙ୍କ ବ୍ୟକ୍ତିଗତ ବେତନର ଉଦାହରଣ ଦେବାକୁ ପଡ଼ିଲା । ବ୍ୟକ୍ତିଗତ ଭାବରେ ଆପଣଙ୍କୁ ମୁଁ ଏତେ ଶ୍ରଦ୍ଧା କରେ ଯେ ଆପଣଙ୍କୁ ବାଧିଲା ପରି କୌଣସି କଥା କହିବାକୁ ମୁଁ ଇଚ୍ଛା କରେ ନାହିଁ । ଆପଣଙ୍କ ବେତନ ଆପଣ ଦାନ କରି ଦେଉଥିବା ମଧ୍ୟ ସମ୍ଭବ । ମାତ୍ର ଯେଉଁ ଶାସନ ଏହି ବ୍ୟବସ୍ଥା ରଖିଛି ତାକୁ ବଦଳାଇ ଦେବା ଉଚିତ ।

ଶାସନ ବ୍ୟବସ୍ଥାର ଖରଚ ବହୁତ କମେଇ ଦେଇ ପାରିଲେ ଖଜଣା ଟିକସ ଆଦି ମଧ୍ୟ କମେଇ ଦିଆଯାଇ ପାରିବ ଏବଂ ଏହା ଫଳରେ ଶାସନର ରୂପରେଖ ମଧ୍ୟ ବଦଳି ଯିବ । ବୋଧହୁଏ ଏହି ଆଶାରେ ଜାନୁଆରୀ ଛବିଶ ତାରିଖରେ ପାଳିତ ହୋଇଥିବା ପୂର୍ଣ୍ଣ ସ୍ୱରାଜ୍ୟ ଦିବସରେ ଲକ୍ଷ ଲକ୍ଷ ଗ୍ରାମବାସୀ ଯୋଗ ଦେଲେ । ସେମାନଙ୍କ ପାଇଁ ସ୍ୱାଧୀନତାର ଅର୍ଥ ହେଉଛି ଏହି ବୋଝରୁ ମୁକ୍ତି ।

ଅହିଂସା ଦ୍ୱାରା ଇଂରେଜମାନଙ୍କର ହୃଦୟ ପରିବର୍ତ୍ତନ ଘଟାଇ ଭାରତ ପ୍ରତି ସେମାନେ ଯେଉଁ ଅନ୍ୟାୟ କରୁଛନ୍ତି ତାହା ସେମାନଙ୍କୁ ଉପଲବ୍ଧି କରାଇବା ହିଁ ମୋର ଆକାଂକ୍ଷା । ମୁଁ ଇଂରେଜମାନଙ୍କର ଅକଲ୍ୟାଣ ଚାହେଁ ନାହିଁ । ୧୯୧୯ ପର୍ଯ୍ୟନ୍ତ ମୁଁ ଆଖିବୁଜି ସେମାନଙ୍କର ସେବା କରି ଆସିଛି । ମୋର ପ୍ରିୟଜନଙ୍କ ପାଇଁ ମୁଁ ଯେଉଁ ଅସ୍ତ୍ର ବ୍ୟବହାର କରିଥାଏ ସରକାରଙ୍କ ବିରୁଦ୍ଧରେ ମଧ୍ୟ ସେହି ଅସ୍ତ୍ର ଉତ୍ତୋଳନ କରିବି । ଏହି ଯୁଦ୍ଧରେ ସାଧାରଣ ଲୋକେ ମୋ ସହିତ ସହଯୋଗ କରିବେ । ଏ ଚିଠି ଯଦି ଆପଣଙ୍କ ଉପରେ କୌଣସି ପ୍ରଭାବ ନ ପକାଇବ ତେବେ ଚଳିତ ମାସ ଏଗାର ତାରିଖ ଦିନ ମୁଁ ଆଶ୍ରମର ସାଥୀଙ୍କୁ ସଙ୍ଗରେ ଧରି ଲୁଣ ଟିକସ ଅମାନ୍ୟ କରିବା ପାଇଁ ବାହାରିବି । ଗରିବଙ୍କ ଦୃଷ୍ଟିରୁ ଏହି ଆଇନଟିକୁ ମୁଁ ସବୁଠାରୁ ବଡ଼ ଅନ୍ୟାୟ ମଣୁଛି । ଏହି ସ୍ୱାଧୀନତା ଯୁଦ୍ଧ ଦେଶର ସବୁଠାରୁ ଗରିବ ଲୋକଙ୍କ ପାଇଁ ହେବ । ଏହି ଚିଠିଟିକୁ ଆପଣ ମୋର ଧମକ ବୋଲି ବିଚାରିବେ ନାହିଁ । ଜଣେ ସବିନୟ ଆଇନ ଅମାନ୍ୟକାରୀର ଏପରି ଚିଠି ଲେଖିବାଟା ଗୋଟାଏ ପବିତ୍ର କର୍ତ୍ତବ୍ୟ । ଏ ଚିଠିଟି ମୋର ଜଣେ ଇଂରେଜ ଯୁବକ ବନ୍ଧୁଙ୍କ ହାତରେ ପଠାଉଛି । ସେହି ବନ୍ଧୁ ଆମ ଦାବୀର ଔଚିତ୍ୟରେ ବିଶ୍ୱାସ କରନ୍ତି ଏବଂ ଅହିଂସା ପ୍ରତି ତାଙ୍କର ପୂର୍ଣ୍ଣ ଶ୍ରଦ୍ଧା ରହିଛି । ଏହି କାମ ପାଇଁ ତାଙ୍କୁ ଈଶ୍ୱର ମୋ ପାଖକୁ ପଠାଇଥିବା ଭଳି ମୋତେ ଲାଗୁଛି ।''

ରେଜିନାଲ୍ଡ଼ ରୋନାଲ୍ଡ଼ ନାମକ ଜଣେ ଇଂରେଜ ଯୁବକ ଖଦୀ ଲୁଗା ପିନ୍ଧି ଗାନ୍ଧିଜୀଙ୍କର ଦୂତ ହୋଇ ବଡ଼ଲାଟଙ୍କ ପାଖକୁ ଯିବା ଘଟଣାରେ ଦେଶସାରା ଚହଳ ପଡ଼ିଗଲା ।

ବଡ଼ଲାଟଙ୍କ ପ୍ରାଇଭେଟ ସେକ୍ରେଟାରୀଙ୍କ ପାଖରୁ ଗାନ୍ଧିଜୀଙ୍କ ପାଖକୁ ଚିଠି ଆସିଲା ଯେ ମହାମାନ୍ୟ ବଡ଼ଲାଟଙ୍କୁ ଆପଣଙ୍କର ମାର୍ଚ୍ଚ ଦୁଇ ତାରିଖର ଚିଠି ମିଳିଛି । ଆପଣ ଯେଉଁବାଟ ଧରୁଛନ୍ତି ତଦ୍ୱାରା ନିଶ୍ଚିତ ରୂପେ ଆଇନଭଙ୍ଗ ଏବଂ ଶାନ୍ତି ବ୍ୟାହତ ହେଉଥିବାର ଜାଣି ସେ ଦୁଃଖିତ ।

ଏହି ଚିଠି ପାଇ ଗାନ୍ଧିଜୀ ୟଙ୍ଗ୍ ଇଣ୍ଡିଆ ପତ୍ରିକାରେ ଲେଖିଥିଲେ, '' ମୁଁ ନତଜାନୁ ହୋଇ ରୁଟି ଭିକ୍ଷା କରିଥିଲି, ମୋତେ ପଥର ମିଳିଛି ।''

୦୦

(୫)

## ଦାଣ୍ଡୀ ଯାତ୍ରା

ଅହମଦାବାଦ ନିକଟସ୍ଥ ସାବରମତୀ ଆଶ୍ରମ ଠାରୁ ଦୁଇଶହ ମାଇଲ ଦୂର ଦାଣ୍ଡୀ ସମୁଦ୍ର କୂଳରେ ଲବଣ ଆଇନ ଅମାନ୍ୟ କରିବାକୁ ସ୍ଥିର କରି ଗାନ୍ଧିଜୀ ଅଠସ୍ତରି ଜଣ ଆଶ୍ରମବାସୀଙ୍କ ସହ ୧୨ ମାର୍ଚ୍ଚ, ୧୯୩୦ତାରିଖରେ ପାଦରେ ଚାଲିଚାଲି ଦାଣ୍ଡୀ ଅଭିମୁଖେ ଯାତ୍ରା କଲେ । ପୂର୍ବଦିନ ସନ୍ଧ୍ୟା ପ୍ରାର୍ଥନା ସଭାରେ ଗାନ୍ଧିଜୀ କହିଲେ- ଏ ଯୁଦ୍ଧ କିଛି ନାଟସୁଆଙ୍ଗ ନୁହେଁ । ଏହା ହେଉଛି ଶେଷ ଯୁଦ୍ଧ । ଏ ଲଢ଼େଇରେ ଆପଣ ସ୍ୱରାଜ୍ୟ ହାସଲ କରି ଫେରିବେ କିମ୍ୱା ନିଜର ପ୍ରାଣବଳି ଦେବେ । ଏ ଧର୍ମଯୁଦ୍ଧରେ ଆମକୁ ନିଜକୁ ଆହୁତି ଦେବାକୁ ହେବ ।

ମାର୍ଚ୍ଚ ବାରତାରିଖ ପ୍ରାତଃ ଉପାସନା ପରେ ଗାନ୍ଧିଜୀ ଅଠସ୍ତରୀ ଜଣ ସତ୍ୟାଗ୍ରହୀଙ୍କ ସହ ଦାଣ୍ଡୀ ଯାତ୍ରା ଆରମ୍ଭ କଲେ । ହଜାର ହଜାର ସ୍ତ୍ରୀ ପୁରୁଷ ଜମା ହୋଇ ଫୁଲମାଳ ଦେଉଥାନ୍ତି, ବାଟରେ ଫୁଲ ବିଛାଡ଼ି ଦେଇ ଜୟ ଧ୍ୱନି ଦେଉଥାନ୍ତି । ଗାନ୍ଧିଜୀ ଖଣ୍ଡିଏ ବାଉଁଶ ବାଡ଼ିରେ ଭରା ଦେଇ ଚାଲୁଥାନ୍ତି । ବାଡ଼ିଟି  ଇଞ୍ଚେ ମୋଟ ଓ ଚଉବନ ଇଞ୍ଚ ଲମ୍ୱ । ବାଡ଼ି ଅଗରେ ଗୋଟିଏ ଲୁହା ମୁଦିଆ ବସିଥାଏ । ସତ୍ୟାଗ୍ରହୀମାନେ ଭଜନ ବୋଲୁଥା'ନ୍ତି,

''ଶୂର ସଂଗ୍ରାମ କୋ ଦେଖ ଭାଗେ ନହିଁ ?
ଯୋ ଭାଗେ ସୋ ଶୂର ନହିଁ । ''

ଅଙ୍କାବଙ୍କା କଚ୍ଚା ସଡ଼କ ଅତିକ୍ରମ କରି ସେମାନେ ଚବିଶ ଦିନରେ ଦୁଇଶହ ମାଇଲ ବାଟ ସାରିଲେ ।

ଗାଁ ଲୋକେ ସଡ଼କରେ ପାଣି ଛିଞ୍ଚି ଫୁଲପତ୍ର ବିଛେଇ ଦେଉଥା'ନ୍ତି । ମୃଦଙ୍ଗ ବଜାଇ କୀର୍ତ୍ତନ କରି ସାଙ୍ଗରେ ଚାଲୁଥାନ୍ତି । ବାଟଯାକ ତୋରଣ ତିଆରି ହୋଇ ସେଥିରେ ଜାତୀୟ ପତାକା ଉଡୁଥାଏ । ଲୋକେ କେବଳ ଟିକିଏ ଗାନ୍ଧିଜୀଙ୍କୁ ଦେଖିବାକୁ, ମୁଣ୍ଡିଆ ମାରିବାକୁ ଦୂର ଗାଁମାନଙ୍କରୁ ଆସି ସଡ଼କ କଡ଼ରେ ଛିଡ଼ା ହୋଇଥାନ୍ତି । ପ୍ରତିଦିନ ଦୁଇ ଚାରିଟା ଲେଖାଁ ସଭାରେ ଗାନ୍ଧିଜୀ ବକ୍ତୃତା ଦେଉଥାନ୍ତି । ଖଦୀ ପିନ୍ଧିବାକୁ, ମଦ ଗଞ୍ଜେଇ ଅଫିମ ଛାଡ଼ିବାକୁ, ପିଲାକନିଆ ବିଭା ନ କରିବାକୁ, ଗାଁକୁ ପରିଚ୍ଛନ୍ନ ରଖିବାକୁ ଏବଂ ବେଳ ଆସିଗଲେ ଲବଣ ଆଇନ ଅମାନ୍ୟ କରିବାକୁ ଗାନ୍ଧିଜୀ ଓ ତାଙ୍କ ସହଯାତ୍ରୀମାନେ ଲୋକଙ୍କୁ ବୁଝାଉଥାନ୍ତି ।

ଯାତ୍ରୀମାନେ ଦିନକୁ ବାରମାଇଲ ଲେଖା ଚାଲି ସୁଦ୍ଧା ଗାନ୍ଧିଜୀ ଥକୁ ନ ଥାନ୍ତି । କେହି ସହଯାତ୍ରୀ ଥକିଗଲେ ବାଧ୍ୟ ହୋଇ ଶଗଡ଼ରେ ବସନ୍ତି । ଗାନ୍ଧିଜୀଙ୍କ ପାଇଁ ଗାଁ ଲୋକେ ଗୋଟିଏ ଘୋଡ଼ା ଖଞ୍ଜି ଦେଉଥାନ୍ତି । ମାତ୍ର ସେ ଆଦୌ ସେ ଘୋଡ଼ାରେ ବସୁ ନାହାନ୍ତି । ତାଙ୍କ ବୟସ ସେତେବେଳକୁ ଏକଷଠି ବର୍ଷ । ସେ ପ୍ରତିଦିନ ଘଣ୍ଟାଏ ସୂତା କାଟୁଥାନ୍ତି ଓ ନିତି ଡ଼ାଏରୀ ଲେଖୁଥାନ୍ତି । ଗାନ୍ଧିଜୀ ଯେଉଁବାଟେ ଗଲେ ସେ ଗାଁମାନଙ୍କରେ ତିନିଶହ ସରକାରୀ କର୍ମଚାରୀ ଚାକିରୀ ଛାଡ଼ିଦେଲେ । ବହୁ ଗ୍ରାମବାସୀ ତାଙ୍କ ସାଙ୍ଗରେ ଦାଣ୍ଡୀ ଚାଲିଲେ । କ୍ରମେ ପଦଯାତ୍ରୀଙ୍କ ସଂଖ୍ୟା ହଜାର ହଜାର ହୋଇଗଲା । ଲୋକଙ୍କ ମଧ୍ୟରେ ଏକ ଅଭୂତପୂର୍ବ ଚେତନା ଦେଖା ଦେଲା ।

ପଣ୍ଡିତ ଜବାହାରଲାଲ ନେହେରୁ ଲେଖିଛନ୍ତି – ''ଆମେ ତାଙ୍କୁ ଦାଣ୍ଡୀ ଯାତ୍ରାରେ ଭେଟିବାକୁ ଗଲୁ । ସେଦିନ ସେ ତାଙ୍କ ଦଳବଳ ସହ ଜମ୍ବୁସର ରହଣୀରେ ଥାଆନ୍ତି । ସେଠାରେ ଆମେ ତାଙ୍କ ସାଙ୍ଗରେ କେତୋଟି ଘଣ୍ଟା କଟେଇଲୁ । ତାହାପରେ ସେ ସଦଳବଳେ ଆଗ ରହଣୀକୁ ମୁହାଁଇଲେ । ସେ ହାତରେ ବାଡ଼ିଖଣ୍ଡେ ଧରିଥାନ୍ତି । ସହଯାତ୍ରୀମାନଙ୍କ ଆଗେ ଆଗେ ଥାଇ ସେ ଦୃଢ଼ତାର ସହିତ ପାଦ ପକାଉଥାନ୍ତି । କିନ୍ତୁ ତାଙ୍କ ଦୃଷ୍ଟି ଶାନ୍ତିପୂର୍ଣ୍ଣ ଓ ସ୍ଥିର ଥାଏ ।

ମନେ ହେଉଥାଏ ଯେପରି ହଠାତ୍ ବସନ୍ତ ଋତୁ ଆସି ଯାଇଛି । ଦେଶର ଗ୍ରାମେ ଗ୍ରାମେ ନଗରେ ନଗରେ କେବଳ ସେହି ଲୁଣ ମାରିବା କଥା ଆଲୋଚନା ହେଉଥାଏ ଏବଂ ଲୁଣ ମାରିବା ପାଇଁ ବିଚିତ୍ର ବିଚିତ୍ର ଉପାୟମାନ ଉଦ୍‌ଭାବନା କରାଯାଉଥାଏ ।

ପ୍ରଚାରପତ୍ର ବଣ୍ଟାଯାଇ ପଢ଼ିକରି ଲୋକଙ୍କୁ ଶୁଣାଇ ଏ ବିଷୟରେ ସୂଚନା ଦିଆଯାଉଥାଏ । ଆମେ ହାଣ୍ଡି କରେଇ ଯୋଗାଡ଼ କରି ଆଖର ଲୁଣ ଫଳେଇଲୁ । ଭଲ କି ମନ୍ଦ ସେ ପ୍ରଶ୍ନ ଆଦୌ ଉଠୁ ନ ଥିଲା । ମୂଳଲକ୍ଷ୍ୟ ଥିଲା ନିକିମା ଲୁଣ ଆଇନକୁ ଅମାନ୍ୟ କରିବା । ଲୁଣ ପଛକେ ଭଲ ନ ହେଉ ଏ କାମଟି ଆମେ କଲୁ , ଏହାହିଁ ଥିଲା ଆମର ଆନନ୍ଦ ।

ଯେତେବେଳେ ଆମେ ଦେଖିଲୁ ଯେ ଲୋକଙ୍କ ମଧ୍ୟରେ ବିପୁଳ ଉତ୍ସାହ ଓ ଲୁଣମାରିବା କାମ ଦାବାଗ୍ନି ପରି ବ୍ୟାପି ଯାଉଛି, ସେତେବେଳେ ଆମେ ଏ କଥା ଭାବି ଲଜ୍ଜିତ ହେଲୁ ଯେ ଗାନ୍ଧିଜୀ ଯେତେବେଳେ ଲୁଣ ଆଇନ ଅମାନ୍ୟ କରିବା କଥା ପ୍ରଥମେ କହିଲେ ଆମେ ଏହାର କାର୍ଯ୍ୟକ୍ଷମତା ସମ୍ବନ୍ଧରେ ସନ୍ଦେହ ପ୍ରକାଶ କରିଥିଲୁ । ବର୍ତ୍ତମାନ ଗାନ୍ଧିଜୀଙ୍କର ଜନତାକୁ ପ୍ରଭାବିତ କରିବାର ଲୋକଙ୍କୁ ସଂଗଠିତ କରି କାମ କରିବାର ଆଶ୍ଚର୍ଯ୍ୟଜନକ କୌଶଳକୁ ଦେଖି ଆମେ ସ୍ତମ୍ଭୀଭୂତ ହେଲୁ । ଯଥାର୍ଥରେ ଗୋଖଲେ ଗାନ୍ଧିଜୀଙ୍କ ବିଷୟରେ କହିଥିଲେ ଯେ ''ମାଟି ପିଣ୍ଡୁଳାକୁ ବଡ଼ ବଡ଼ ବୀର ପୁରୁଷରେ ପରିଣତ କରିବାର ଶକ୍ତି ଏହି ପୁରୁଷଠାରେ ଅଛି ।''

ଗାନ୍ଧିଜୀ ଛଅ ବର୍ଷ ହେଲା ଲୁଣ ଖାଇବା ଛାଡ଼ିଥାନ୍ତି । ବ୍ରିଟିଶ୍‌ର ଲୁଣ କାରବାରକୁ ସେ ଅତି ଘୃଣ୍ୟ ଏକଚାଟିଆ ବେପାର କହି ନିନ୍ଦା କରୁଥାନ୍ତି । ଭାରତର ଗରିବ ଚାଷୀ ମୂଲିଆ ଓ ସେମାନଙ୍କ ଗୋରୁଗାଈଙ୍କ ପାଇଁ ଲୁଣ ଅତ୍ୟାବଶ୍ୟକ ବୋଲି ସେ କହୁଥାନ୍ତି । କାରଣ ଗ୍ରୀଷ୍ମକଟିବନ୍ଧର ଅତ୍ୟଧିକ ତାପରେ ପରିଶ୍ରମ କରୁଥିବା ଲୋକ ଦେହରୁ ଝାଳ ବୋହି ରକ୍ତରୁ ବହୁତ ଲବଣ ଅଂଶ ଚାଲିଯାଏ ।

ଏପ୍ରିଲ ପାଞ୍ଚ ତାରିଖ ରାତିଟି ପଦଯାତ୍ରୀ ସତ୍ୟାଗ୍ରହୀମାନେ ଭଜନ ବୋଲି କଟାଇଲେ । ରାତି ପାହିଲାରୁ ସମସ୍ତେ ଗାନ୍ଧିଜୀଙ୍କ ସଙ୍ଗେ ସମୁଦ୍ର କୂଳକୁ ଯାତ୍ରା କଲେ । ଗାନ୍ଧିଜୀ ସମୁଦ୍ର ଭିତରକୁ ପଶିଯାଇ ବୁଡ଼ ପକେଇ ଆସି କୂଳରେ ଲହଡ଼ି ଆସି ଛାଡ଼ି ଯାଇଥିବା ଲୁଣ ଟିକିଏ ହାତରେ ଧରିଲେ । ଶ୍ରୀମତୀ ସରୋଜିନୀ ନାଇଡୁ ଜୟଧ୍ୱନି ଦେଇ କହିଲେ, ''ମୁକ୍ତିଦାତାଙ୍କର ଜୟ'' ।

୦୦

(୬)

## ଦରିୟା ଦଖଲ

ଦାଣ୍ଡୀରେ ଗାନ୍ଧିଜୀ ଲବଣ ଆଇନ ଅମାନ୍ୟ କରି ସାରିବା ପରେ ଚାରିଆଡ଼େ ଲବଣ ଆଇନ ଅମାନ୍ୟ କରିବାକୁ ନିର୍ଦ୍ଦେଶ ଦେଲେ । ଦାଣ୍ଡୀଠାରୁ ଚାରିମାଇଲ ଦୂର ଆଟ୍ ନାମକ ସ୍ଥାନରେ କେତେକ ସତ୍ୟାଗ୍ରହୀ ଲୁଣ ମାରିବାକୁ ଗଲେ । ସେମାନେ ଲୁଣ ମାରିବାକୁ ଆରମ୍ଭ କରିବାରୁ ପୁଲିଶ ସେମାନଙ୍କ ଠାରୁ ଲୁଣମାଟି ଛଡ଼େଇବାକୁ ଚେଷ୍ଟା କଲେ । ସତ୍ୟାଗ୍ରହୀ ଲୁଣମାଟି ମୁଠେଇ ଧରିବାରୁ ପୁଲିଶ ତାଙ୍କ ହାତ ମୋଡ଼ିଲେ । ଠେଲାଠେଲି କଲେ । ଫଳରେ ଜଣଙ୍କର ମଣିବନ୍ଧ ଜଖମ ହେଲା ଏବଂ ସାମାନ୍ୟ ରକ୍ତପାତ ମଧ୍ୟ ହେଲା । ଯେଉଁ ଗ୍ରାମବାସୀ ଦେଖଣାହାରୀ ଭାବରେ ସେଠାରେ ଥିଲେ ସେମାନେ ସମସ୍ତେ ହଠାତ୍ ସମୁଦ୍ରପନ୍ତାରେ ଲୁଣମାଟି ସାଉଁଟିବା ଆରମ୍ଭ କରିଦେଲେ । ସେମାନଙ୍କ ମଧ୍ୟରେ ପିଲା କାଖେଇଥିବା ସ୍ତ୍ରୀଲୋକ ମଧ୍ୟ ବହୁ ସଂଖ୍ୟାରେ ଥିଲେ । ଏତେ ସଂଖ୍ୟକ ଲୋକ ହଠାତ୍ ବହୁ ସଂଖ୍ୟାରେ ଲୁଣମାଟି ସଂଗ୍ରହ କରିବା ଦେଖି ପୁଲିଶ ନିଶ୍ଚେଷ୍ଟ ହୋଇଗଲେ । ସେଦିନ ସୋମବାର । ଗାନ୍ଧିଜୀ ସୋମବାର ଦିନ ମୌନବ୍ରତ ପାଳୁଥିଲେ । ସେ ନିଜେ କିଛି କହି ପାରିବେ ନାହିଁ ବୋଲି ଶ୍ରୀମତୀ ସରୋଜିନୀ ନାଇଡୁ ଓ ନ୍ୟାୟମୂର୍ତ୍ତି ଆବବାସ ତୟାବଜୀଙ୍କୁ ଆଟ୍‌କୁ ପଠାଇଲେ ଏବଂ ୟଙ୍ଗ୍ ଇଣ୍ଡିଆ ପତ୍ରିକାରେ ଲେଖିଲେ – ''ଲୁଣ ହେଉଛି ରାଷ୍ଟ୍ରର ଆତ୍ମସମ୍ମାନର ପ୍ରତୀକ । କେହି ଜବରଦସ୍ତି ହାତକୁ ମୋଡ଼ି ତାହା ଛଡ଼େଇ ନ ନେବା ଯାଏ ସେ ଲୁଣ କାହାରିକୁ ଦିଆଯିବ ନାହିଁ ।'' ଆଟ୍‌ରେ ଲବଣ ଆଇନ ଅମାନ୍ୟକାରୀଙ୍କୁ କହିଲେ – ''ଆପଣମାନେ ଯେଉଁ ଲୁଣ ସଂଗ୍ରହ କରିଛନ୍ତି ତାକୁ ନିଜ ଛାତିରେ ଚାପିକରି ରଖିବାର ପୂର୍ଣ୍ଣ ଅଧିକାର ଆପଣମାନଙ୍କର ଅଛି । ଏହା ହିଂସା ନୁହେଁ । ଆମ ନିଜ ଦେହର ରକ୍ତ ପରି ଏ ଲୁଣ ଆମର ପ୍ରିୟ । ମୋର ଆଶା ଆପଣଙ୍କ ଧୈର୍ଯ୍ୟ ଓ କଷ୍ଟ ସହିବା ଶକ୍ତିଦ୍ୱାରା ପୁଲିଶଙ୍କ ହୃଦୟ ପରିବର୍ତ୍ତନ ହେବ । ପୁଲିସର ଜୋର ଜବରଦସ୍ତିକୁ ଖାତର ନ କରି ଆପଣଙ୍କର ନିଜ କାମ କରିଯିବା ଉଚିତ ।

ଏପ୍ରିଲ ନଅ ତାରିଖରେ ଗାନ୍ଧିଜୀ ସମଗ୍ର ଭାରତକୁ ଏହି ମର୍ମରେ ବାର୍ତ୍ତା ଦେଲେ ଯେ ଆଜି ରାତି ଅଧରେ ମୋତେ ଯେଉଁ ଖବର ମିଳିଛି ସେଥିରୁ ମୁଁ ଜାଣୁଛି ଯେ ଲୋକେ ମୋ କଥାକୁ ହୃଦୟରେ ଘେନିଛନ୍ତି । ଗୁଜରାଟ୍‌ରେ ସମୁଦାୟ ଜନତା ଗୋଟାଏ ବିଶାଳ ସମୁଦ୍ର ପରି ଉଚ୍ଛୁଳି ପଡ଼ିଥିବା ପରି ବୋଧ ହେଉଛି । ଆଟ୍ ଓ ଭୀମ୍‌ରାଡ଼ରେ

ହଜାର ହଜାର ସ୍ତ୍ରୀ ପୁରୁଷ ନିର୍ଭୟରେ ଲୁଣ ମାରିବା ଦୃଶ୍ୟ ମୁଁ ନିଜ ଆଖିରେ ଦେଖିଛି । ଏଇଟା କିଛି ବଦମାସୀ ନୁହେଁ । ସେଠାରେ ହିଂସାର କୌଣସି ଲକ୍ଷଣ ମୁଁ ଦେଖିଲି ନାହିଁ । ସେମାନେ ସମ୍ପୂର୍ଣ୍ଣ ଶାନ୍ତ ଓ ଅହିଂସ ଥିଲେ । ସରକାରୀ ହାକିମମାନେ ହିଁ ସୀମା ଅତିକ୍ରମ କରିଥିଲେ । ଗୁଜରାଟରେ ପରୀକ୍ଷିତ ଲୋକପ୍ରିୟ ଲୋକସେବକମାନଙ୍କୁ ଗୋଟି ଗୋଟି କରି ଗିରଫ କରାଯାଇ ସାରିଲାଣି । ତଥାପି ଲୋକେ ଘାବରା ବା ଆତଙ୍କିତ ନ ହୋଇ ସମ୍ପୂର୍ଣ୍ଣ ଅହିଂସ ରହିଛନ୍ତି ଏବଂ ଏହି ସତ୍ୟାଗ୍ରହରେ ଅଧିକ ସଂଖ୍ୟାରେ ଯୋଗ ଦେଉଛନ୍ତି । ଶୁଭକ୍ଷଣରେ ଆରମ୍ଭ ହୋଇଥିବା ଏହି ଯୁଦ୍ଧ ଯଦି ଶେଷପର୍ଯ୍ୟନ୍ତ ଅହିଂସ ରହିବ ତେବେ ଭାରତ ନିକଟ ଭବିଷ୍ୟତରେ ନିଶ୍ଚୟ ସ୍ୱରାଜ୍ୟ ହାସଲ କରିବ ଏବଂ ବିଶ୍ୱକୁ ଭାରତ ତା'ର ଗୌରବଶାଳୀ ଅତୀତର ଉପଯୁକ୍ତ ପଦାର୍ଥପାଠ ଦେବ ।

ଆତ୍ମ ବଳିଦାନ ଓ ତ୍ୟାଗ ବିନା ଯେଉଁ ସ୍ୱାଧୀନତା ହାସଲ କରାଯାଏ ତାହା ଚିରଞ୍ଜିବୀ ହୋଇପାରେ ନାହିଁ । ସେଥିପାଇଁ ମୁଁ ଚାହେଁ ମୋ ଦେଶଲୋକେ ନିଜର ସାଧ୍ୟାନୁସାରେ ସବୁଠାରୁ ବେଶୀ ଆତ୍ମତ୍ୟାଗ କରିବାକୁ ପ୍ରସ୍ତୁତ ହୋଇ ଯାଆନ୍ତୁ । ପ୍ରକୃତ ତ୍ୟାଗ ବା ଆତ୍ମବଳିଦାନରେ ଗୋଟିଏ ପକ୍ଷକୁ ସବୁ କଷ୍ଟ ସହିବାକୁ ପଡ଼େ । ଅନ୍ୟର ପ୍ରାଣ ନ ନେଇ ନିଜର ପ୍ରାଣ ଦେବା, ଜୀବନ ଦେଇ ଜୀବନ ଲାଭ କରିବା କଳାରେ ସିଦ୍ଧହସ୍ତ ହେବାକୁ ପଡ଼େ । ଭଗବାନ ଭାରତକୁ ଏହି ମନ୍ତ୍ରସିଦ୍ଧି ଦିଅନ୍ତୁ ।

ଆଜି ସତ୍ୟାଗ୍ରହୀ ହାତ ମୁଠାରେ ଥିବା ମୁଠାଏ ଲୁଣ ଭାରତର କେବଳ ଆତ୍ମସମ୍ମାନର ପ୍ରତୀକ କାହିଁକି ତାହାର ସର୍ବସ୍ୱର ପ୍ରତୀକ ପାଲଟିଛି । ତେଣୁ ହାତମୁଠା ପଛେ ମୋଡ଼ି ଭାଙ୍ଗି ଦିଆଯିବ କେହି ନିଜ ଇଚ୍ଛାରେ ଲୁଣ ଛାଡ଼ିଦେବେ ନାହିଁ । ଏ ସରକାର ଯଦି ସଭ୍ୟ ସରକାର ହୋଇଥିବେ ତେବେ ସେ ବେଆଇନ ଲୁଣ ତିଆରି କରୁଥିବା ଲୋକଙ୍କୁ ଜେଲ୍ ଦେବେ । ସତ୍ୟାଗ୍ରହୀ ଗିରଫ ହେବା ପରେ ଖୁସିରେ ମୁଠା ଫିଟେଇ ଲୁଣ ସରକାରଙ୍କୁ ଦେଇଦେବ ଏବଂ ନିଜ ଦେହକୁ ମଧ୍ୟ ଜେଲର୍‌ମାନଙ୍କ ଜିମାରେ ଛାଡ଼ିଦେବ । ନିର୍ଦ୍ଦୋଷ ସତ୍ୟାଗ୍ରହୀର ହାତମୁଠାରୁ ଲୁଣ ଛଡ଼ାଇବାଟା ତୁଚ୍ଛା ବର୍ବରତା ଛଡ଼ା ଆଉ କିଛି ନୁହେଁ । ଏହି ଅପମାନର ଏକମାତ୍ର ଜବାବ ହେଉଛି ହାତ ପଛେ ଭାଙ୍ଗିଯିବ, ମୁଠା ହୁଗୁଳିବ ନାହିଁ। ଏହି ଅଭଦ୍ରତାର ଉତ୍ତର ଅଭଦ୍ରତା ଦ୍ୱାରା ନୁହେଁ, ଶାନ୍ତ ରହି ଈଶ୍ୱରଙ୍କ ନାମ ଜପି କଷ୍ଟ ସହିକରି ଦେବାକୁ ହେବ ।

ମୁଁ ଗିରଫ ହେବା ପରେ ମୋ ସାଥୀମାନେ ଘାବରା ହେବେ ନାହିଁ । ଏହି ଆନ୍ଦୋଳନକୁ ଈଶ୍ୱର ବାଟ କଢ଼ଉଛନ୍ତି । ସେ ଆମ ସମସ୍ତଙ୍କ ହୃଦୟରେ ଅଛନ୍ତି । ଆମେ

ତାଙ୍କ ପ୍ରତି ନିଷ୍ଠାବାନ ହେଲେ ସେ ନିଶ୍ଚୟ ଆମକୁ ଠିକ୍ ବାଟ ଦେଖାଇବେ । ପ୍ରତ୍ୟେକ ଗାଁର ଲୋକେ ଲୁଣ ମାରନ୍ତୁ କିମ୍ବା ସତ୍ୟାଗ୍ରହୀ ମାରିଥିବା ଲୁଣ ଗାଁକୁ ଆଣନ୍ତୁ । ଭଉଣୀମାନେ ମଦ, ଗଞ୍ଜେଇ, ଅଫିମ ଦୋକାନ ବା ବିଲାତି ଲୁଗା ଦୋକାନରେ ଧାରଣା (ପିକେଟିଂ) ଦିଅନ୍ତୁ । ପ୍ରତି ଘରେ ବୁଢ଼ାରୁ ଯୁବକ ଯାଏ ସମସ୍ତେ ତକଲୀରେ ସୂତା କାଟି ପ୍ରତିଦିନ ଗଦା ଗଦା ସୂତା ଜମେଇ ଦିଅନ୍ତୁ । ହିନ୍ଦୁ, ମୁସଲମାନ ଶିଖ୍, ପାର୍ସୀ, ଖ୍ରୀଷ୍ଟିଆନ ଆପଣା ମଧ୍ୟରେ ଆକସ୍ମିକ ଏକତା ପ୍ରତିଷ୍ଠା କରନ୍ତୁ । ଛାତ୍ରମାନେ ସରକାରୀ ସ୍କୁଲ କଲେଜ ଛାଡ଼ି ଦିଅନ୍ତୁ । ସରକାରୀ କର୍ମଚାରୀ ଚାକିରୀକୁ ପଦାଘାତ କରି ଜନସାଧାରଣଙ୍କ ସେବାରେ ଲାଗନ୍ତୁ । ସେତେବେଳେ ଆମେ ଦେଖିବା ପୂର୍ଣ୍ଣ ସ୍ୱରାଜ ଆମ ଦ୍ୱାର ଖଡ଼ଖଡ଼ କରୁଛି ।

## ୦୦

## (୭)

## ଆନ୍ଦୋଳନ ବ୍ୟାପିଗଲା

ଗାନ୍ଧିଜୀ ଏହି ନିର୍ଦ୍ଦେଶ ଦେବାପରେ ସମଗ୍ର ଭାରତରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଗଲା । ଭାରତର ହଜାର ହଜାର ମାଇଲବ୍ୟାପୀ ଉପକୂଳବର୍ତ୍ତୀ ଗାଁମାନଙ୍କରେ ଲବଣ ଆଇନ ଅମାନ୍ୟ ଚାଲିଲା । ପୁଲିସଙ୍କ ଅତ୍ୟାଚାର ମଧ୍ୟ ତେଜିଲା । ଗାନ୍ଧିଜୀ କହିଥିବା ମତେ ସରକାର ଯେତେ ମାରିଲେ ପିଟିଲେ ସୁଦ୍ଧା ସେ ଲୁଣ ମୁଠେଇଥିବା ମୁଠା ଖୋଲୁ ନ ଥାନ୍ତି । ମାତ୍ର ସେମାନଙ୍କୁ ଗିରଫ କରାଗଲେ ଲୁଣ ଦେଇ ଦେଉଥାନ୍ତି । ସତ୍ୟାଗ୍ରହୀମାନେ ବିଚ୍‌ବଜାରରେ ଏ ଲୁଣ ବିକୁଥାନ୍ତି । ପୁଲିସ ଅତ୍ୟାଚାରର ପ୍ରତିବାଦ କରି ଆସେମ୍ବ୍ଲିର ଅଧ୍ୟକ୍ଷ ଶ୍ରୀ ବିଠ୍ଠଲ ଭାଇ ପଟେଲ ତାଙ୍କ ଅଧ୍ୟକ୍ଷ ପଦରୁ ଇସ୍ତଫା ଦେଲେ । ପଣ୍ଡିତ ମଦନମୋହନ ମାଲବ୍ୟ ନରମପନ୍ଥୀ ନେତା ବୋଲାଉଥିଲେ ହେଁ ଆସେମ୍ବ୍ଲି ସଭ୍ୟ ପଦରୁ ଇସ୍ତଫା ଦେଇ ବିଲାତି ବର୍ଜନ କରିବା ପାଇଁ ଦିଲ୍ଲୀରେ ବିରାଟ ସାଧାରଣ ସଭାରେ ବକ୍ତୃତା ଦେଲେ ଏବଂ ଏହି ବେଆଇନ ଲୁଣ କିଣି ଆଇନ ଅମାନ୍ୟ କଲେ । ବମ୍ବେ ସହରର କଂଗ୍ରେସ-କାର୍ଯ୍ୟାଳୟର ଛାତ ଉପରେ ଚୂଲି ଜାଳି ଲୁଣ ମରାହେବାରୁ ପୁଲିସ ସେ କାର୍ଯ୍ୟାଳୟ ଉପରେ ଚଢ଼ଉ କଲେ । ସେଠାରେ ଷାଠିଏ ହଜାର ଲୋକ ଜମା ହେଲେ । ପୁଲିସ ଶହ ଶହ ଲୋକଙ୍କ ହାତରେ ହାତକଡ଼ି ପିନ୍ଧାଇ ଅଣ୍ଟାରେ ଦଉଡ଼ି ବାନ୍ଧି ହାଜତକୁ ନେଲେ । ଅହମଦାବାଦରେ ହଜାର ହଜାର ଲୋକ ମନଇଚ୍ଛା ଦାମ ଦେଇ ବେଆଇନ ଲୁଣ କିଣିଲେ । ଗାନ୍ଧିଜୀ ଦାଣ୍ଡିରେ ଯେଉଁ ଲୁଣ ସଂଗ୍ରହ

କରିଥିଲେ ସେ ଲୁଣ ଷୋଳଶହ ଟଙ୍କାରେ ନିଲାମ ହେଲା । ପଣ୍ଡିତ ଜବାହାରଲାଲ ନେହେରୁ ଲବଣ ଆଇନ ଅମାନ୍ୟ ଅପରାଧରେ ଗିରଫ ହେଲେ । ଏଲାହାବାଦରେ ମୁଖ୍ୟ ସଡ଼କର ଚଉମୁହାଣୀରେ ଲୁଣ ରାନ୍ଧି ପଣ୍ଡିତ ମୋତିଲାଲ ନେହେରୁ ଗିରଫ ହେବା ଫଳରେ ସହରରେ ଅପୂର୍ବ ଉନ୍ମାଦନା ଦେଖା ଦେଲା । ବଙ୍ଗଳାରେ ବାରିଷ୍ଟର ଯତୀନ୍ଦ୍ରମୋହନ ସେନଗୁପ୍ତ ସାଧାରଣ ସଭାରେ ବିଦେଶୀ ବର୍ଜନ କରିବାକୁ କହି ଗିରଫ ହେଲେ । ସତୀଶ ଚନ୍ଦ୍ର ଦାସଗୁପ୍ତ ମହିଷବାଗାନରେ ଲବଣ ଆଇନ ଅମାନ୍ୟ କରି ଗିରଫ ହେଲେ । ବିହାର ପ୍ରଦେଶରେ ସତର ଜଣ କାଉନସିଲ ସଭ୍ୟ ସଭ୍ୟପଦରୁ ଇସ୍ତଫା ଦେଇ ଆନ୍ଦୋଳନରେ ଯୋଗ ଦେଲେ । ପାଟନାରେ ହଜାର ହଜାର ଲୋକ ସହରର ଉପକଣ୍ଠରେ ଲୁଣ ମରା ହେଉଥିବା ସ୍ଥାନକୁ ଯିବାକୁ ବାହାରିଲାରୁ ପୁଲିଶ ସଦର ରାସ୍ତା ଅବରୋଧ କଲେ । ଲୋକେ ଫେରି ନ ଯାଇ ସଡ଼କ ଦୁଇ କଡ଼ରେ ବିଲ ପଡ଼ିଆରେ ଚାଳିଶ ଘଣ୍ଟା କାଳ ଶୋଇ ରହିଲେ । ଏ ଅଭିଯାନର ନେତୃତ୍ୱ ନେଇଥିଲେ ବିହାରର ଅପ୍ରତିଦ୍ୱନ୍ଦୀ ନେତା ବାବୁ ରାଜେନ୍ଦ୍ରପ୍ରସାଦ ଯେ କି ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ହେଲେ । ପୁଲିସ ଭିଡ଼ ଭାଙ୍ଗିଦେବାକୁ ରାଜେନ୍ଦ୍ରବାବୁଙ୍କୁ ନିର୍ଦ୍ଦେଶ ଦେଲେ । ରାଜେନ୍ଦ୍ରବାବୁ ସେ ଆଦେଶ ନ ମାନିବାରୁ ପୁଲିସ ଲୋକଙ୍କ ଉପରେ ଘୋଡ଼ା ସୱାର ଫୌଜ ଚଳାଇ ଦେବେ ବୋଲି ଘୋଷଣା କଲେ । ତଥାପି ଲୋକେ ପଳାଇଲେ ନାହିଁ । ଘୋଡ଼ସୱାର ମାଡ଼ି ଆସିବାରୁ ଲୋକେ ସଡ଼କ ଉପରେ ଲମ୍ବ ଲମ୍ବ ଶୋଇଗଲେ । ଘୋଡ଼ା ସେମାନଙ୍କୁ ମାଡ଼ି ଚକଟି ନ ଦେଇ ସେମାନଙ୍କ ପାଖରେ ଛିଡ଼ା ହୋଇଗଲେ । ତହୁଁ ପୁଲିସ କନେଷ୍ଟବଳ ଆସି ଲୋକଙ୍କୁ ଗୋଟି ଗୋଟି କରି ଟେକି ନେଇ ଟ୍ରକରେ ବୋଝେଇ କଲେ । ଜଣକୁ ଟେକିନେଲେ ଆଉ ଜଣେ ଆସି ତାଙ୍କ ସ୍ଥାନରେ ଶୋଇ ଯାଉଥାନ୍ତି ।

ମହାଦେବ ଦେଶାଇ ବୋଝେ ବେଆଇନ ଲୁଣ ମୁଣ୍ଡାଇ ଆଣୁଥିବା ବେଳେ ଗିରଫ ହେଲେ । ଗାନ୍ଧିଜୀଙ୍କ ସାନପୁଅ ଦେବଦାସ ଗାନ୍ଧୀ ଦିଲ୍ଲୀରେ, ତୃତୀୟ ପୁତ୍ର ରାମଦାସ ସାବରମତୀ ଆଶ୍ରମରେ ଓ ଦ୍ୱିତୀୟ ପୁତ୍ର ମଣିଲାଲ ଧରାଷଣାରେ ଗିରଫ ହେଲେ । ଗୁଜରାତ ବିଦ୍ୟାପୀଠର ଛାତ୍ର ଅଧ୍ୟାପକମାନେ ଲୁଣମାରି ଗିରଫ ହେଲେ । ମାନ୍ଦ୍ରାଜରେ ଆନ୍ଦୋଳନକୁ ଦବାଇବା ପାଇଁ ପୁଲିଶ ନିର୍ବିଚାରରେ ଲାଠି ଚାଳନା କଲେ । ମାନ୍ଦ୍ରାଜ, କର୍ଣ୍ଣାଟକ, ପଞ୍ଜାବରେ ଆନ୍ଦୋଳନ ବ୍ୟାପିଲା ।

ଓଡ଼ିଶାରେ ମାର୍ଚ୍ଚ ୧୬ ତାରିଖରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଓଡ଼ିଶାରେ ସତ୍ୟାଗ୍ରହର ମାର୍ଗଦର୍ଶନ କରିବାକୁ, ସତ୍ୟାଗ୍ରହ କରିବା ପାଇଁ ସ୍ଥାନ ନିରୂପଣ କରିବାକୁ

ଏବଂ ଆଇନ ଅମାନ୍ୟ କରିବାର ତାରିଖ ନିର୍ଦ୍ଧାରଣ କରିବାକୁ ଗୋପବନ୍ଧୁ ଚୌଧୁରୀଙ୍କୁ କ୍ଷମତା ଦେଲେ । ସେହି ମାସ ଉଣେଇଶ ତାରିଖରେ କଟକ ସହରରେ ସତ୍ୟାଗ୍ରହୀ ସଂଗ୍ରହ ଉଦ୍ଦେଶ୍ୟରେ କାଠଯୋଡ଼ି ବାଲିରେ ଗୋଟିଏ ସାଧାରଣ ସଭା ଆହୂତ ହେଲା । ଦାଣ୍ଡୀ ଯାତ୍ରା ଆରମ୍ଭ ହେବା ପରେ ଗୁଜରାତରେ ବିପୁଳ ଉତ୍ସାହ ଦେଖା ଦେଇଥିଲା । ମାତ୍ର ଓଡ଼ିଶାରେ ତାହାର କୌଣସି ପ୍ରତିକ୍ରିୟା ଦେଖା ଦେଇ ନ ଥିଲା । ସେଥିପାଇଁ ଓଡ଼ିଶାରେ ଆନ୍ଦୋଳନର ସଫଳତା ବାବଦରେ ସନ୍ଦେହ ଜନ୍ମିଥିଲା । ପୁଲିଶ ସଭାସ୍ଥାନକୁ ଆସି ଗୋପବନ୍ଧୁ ଚୌଧୁରୀ, ପୂର୍ଣ୍ଣଚନ୍ଦ୍ର ବୋଷ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ ପ୍ରମୁଖଙ୍କ ଉପରେ ୧୪୪ ଧାରା ଜାରି କଲେ । ସହରର ଲୋକେ ଏ ଖବର ପାଇ ସଭାରେ ବହୁ ସଂଖ୍ୟାରେ ଉପସ୍ଥିତ ହେଲେ । ଗୋପବନ୍ଧୁ ଚୌଧୁରୀ ଓ ପୂର୍ଣ୍ଣଚନ୍ଦ୍ର ବୋଷ ୧୪୪ ଧାରା ଅମାନ୍ୟ କରି ଭାଷଣ ଦେଲେ । ଏହା ଫଳରେ ଅପ୍ରତ୍ୟାଶିତ ଭାବରେ ସଭାରେ ଉପସ୍ଥିତ ଥିବା ସତେଇଶ ଜଣ ବ୍ୟକ୍ତି ସତ୍ୟାଗ୍ରହୀର ପତ୍ରିକାପତ୍ରରେ ସ୍ୱାକ୍ଷର କଲେ । ଓଡ଼ିଶାର ଉପକୂଳବର୍ତ୍ତୀ ଗ୍ରାମ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଚଟାଣରେ ଲବଣ-ସତ୍ୟାଗ୍ରହ କରାଯିବା ସ୍ଥିର ହେବାରୁ ସୁରେନ୍ଦ୍ରନାଥ ଦାସ, ଭୋଳାନାଥ ମହାପାତ୍ର ପ୍ରମୁଖ ସେ ଅଞ୍ଚଳରେ ବୁଲି କ୍ଷେତ୍ର ପ୍ରସ୍ତୁତ କରିବାରେ ଲାଗି ପଡ଼ିଲେ । ଚାରିଆଡ଼େ ସଭା କରାଯାଇ ଲବଣ ସତ୍ୟାଗ୍ରହ ବିଷୟରେ ଚର୍ଚ୍ଚା-ଆଲୋଚନା ଚାଲିଲା ।

ଇଞ୍ଚୁଡ଼ିରେ ସତ୍ୟାଗ୍ରହ କରିବା ପାଇଁ କଟକରୁ ୬.୪.୩୦ ତାରିଖରେ କୋଡ଼ିଏ ଜଣ ସତ୍ୟାଗ୍ରହୀ ବାଲେଶ୍ୱରକୁ ପଦବ୍ରଜରେ ଯିବା ସ୍ଥିର ହେଲା । ଗୋପବନ୍ଧୁ ଚୌଧୁରୀ ୧୪୪ ଧାରା ଅମାନ୍ୟ କରିଥିବା ହେତୁ ଯେ କୌଣସି ମୁହୂର୍ତ୍ତରେ ସେ ଗିରଫ ହୋଇଯିବାର ସମ୍ଭାବନା ଥିବାରୁ ତାଙ୍କ ପରେ ଆଚାର୍ଯ୍ୟ ହରିହର ଦାସ ସତ୍ୟାଗ୍ରହର ପରିଚାଳକ ହେବା ସ୍ଥିର ହେଲା । ନିର୍ଦ୍ଦିଷ୍ଟ ଦିନ ୮ ଗୋକୁଳାନନ୍ଦ ଚୌଧୁରୀଙ୍କ ବାସଭବନରେ ସ୍ଥାପିତ ହୋଇଥିବା ସତ୍ୟାଗ୍ରହୀ ଶିବିରରୁ କୋଡ଼ିଏ ଜଣ ସତ୍ୟାଗ୍ରହୀ ପ୍ରାତଃ ପ୍ରାର୍ଥନା ଓ ଗୀତା ପାଠ ପରେ ଯାତ୍ରା ଅନୁକୂଳ କଲେ । ଶ୍ରୀମତୀ ଆଶାଲତା ଆଚାର୍ଯ୍ୟ, ମାଳତୀ ଚୌଧୁରୀ ଓ ରମାଦେବୀ ସେମାନଙ୍କୁ ପୁଷ୍ପମାଲ୍ୟାଦି ପିନ୍ଧାଇ ଅନୁକୂଳ କରାଇଲେ । ସତ୍ୟାଗ୍ରହୀମାନେ ନିଜ ବିଛଣା ଓ ପରିଧେୟ ପିଠିରେ ବାନ୍ଧିଥାନ୍ତି । କେହି କେହି ଥଳିରେ ପୂରାଇ କାନ୍ଧରେ ଝୁଲାଇଥାନ୍ତି । କେହି ଗୀତ ବୋଲିଲେ ନାହିଁ କି ଜୟଧ୍ୱନି ଦେଲେ ନାହିଁ । ଶାନ୍ତ ଗମ୍ଭୀର ବାତାବରଣରେ ଏ ଯାତ୍ରା ଆରମ୍ଭ ହୋଇଥିଲା । ଯୋବ୍ରାଠାରେ ମହାନଦୀ ପାରି ହୋଇ ବର୍ଷା ଓ କୁଆପଥର ମାଡ଼ ଖାଇ ସେମାନେ ପଦଯାତ୍ରା କରି ଗଲାବେଳେ ବାଟରେ

ଲୋକେ ଆଶାତୀତ ଭାବରେ ସତ୍ୟାଗ୍ରହୀଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କଲେ । ଏହି ସତ୍ୟାଗ୍ରହୀଙ୍କୁ ସହଯୋଗ ନ କରିବା ପାଇଁ ସରକାରଙ୍କ ପକ୍ଷରୁ ଚେତାବନୀ ଦିଆଯାଇଥିଲା । ସରକାରୀ ଚୌକୀଦାରମାନେ ଗାଁ ଗାଁ ବୁଲି ଏ ଚେତାବନୀ ଦେବା ଫଳରେ ସତ୍ୟାଗ୍ରହୀଙ୍କ ଯାତ୍ରା ସମ୍ବାଦ ଗ୍ରାମେ ଗ୍ରାମେ ପ୍ରଚାରିତ ହେଲା । ଲୋକେ ବହୁ ସଂଖ୍ୟାରେ ସଭାକୁ ଆସିଲେ । ଗାଁ ଗହଳରେ ସ୍ତ୍ରୀଲୋକମାନେ ସୁଦ୍ଧା ପରଦା ଛାଡ଼ି ସଭାକୁ ଆସି ସତ୍ୟାଗ୍ରହୀଙ୍କୁ ଅଭ୍ୟର୍ଥନା କଲେ । ବାପ ଭାଇଙ୍କୁ ସୁଦ୍ଧା ଆଢ଼ ହୋଇ ରହୁଥିବା ଝିଅବୋହୂ ଘର କୋଣରୁ ବାହାରି ଆସି ଶଙ୍ଖ ବଜାଇ ହୁଳହୁଳି ପକାଇ ସତ୍ୟାଗ୍ରହୀଙ୍କୁ ବନ୍ଦାପନା କଲେ । ଏଥିପାଇଁ ସେମାନଙ୍କୁ ନିନ୍ଦା ଅପବାଦ ମଧ୍ୟ ସହିବାକୁ ପଡ଼ିଲା । କଟକ ଜିଲ୍ଲା କଲ୍ୟାଣପୁର ଜିଲ୍ଲାର ଜଣେ ପ୍ରାଇମେରୀ ସ୍କୁଲ ଛାତ୍ରୀ ଗୋଦାବରୀ ତାଙ୍କର ଜଣେ ଆତ୍ମୀୟଙ୍କ ପ୍ରବର୍ତ୍ତନାରେ ଆଚାର୍ଯ୍ୟ ହରିହର ଦାସଙ୍କ ଗଳାରେ ଫୁଲମାଳ ଦେଲେ ବୋଲି ଗାଁର ମୁରବୀମାନେ ତାଙ୍କ କାର୍ଯ୍ୟକୁ ନିନ୍ଦା କରି ତାଙ୍କୁ ଏକପ୍ରକାର ବାସନ୍ଦ କଲେ । କୌଣସି ଝିଅ କୌଣସି ପୁରୁଷ ଗଳାରେ ଫୁଲମାଳ ତ ସ୍ୱୟମ୍ବର ସଭାରେ ହିଁ ଦିଏ । ଏପରି ଫୁଲମାଳ ଦେବା ଚଳଣି ହେଲେ ଝିଅମାନେ 'ବେକାଇଦା' ହୋଇଯିବେ – ଏହା ଥିଲା ସେମାନଙ୍କର ଯୁକ୍ତି ।

୮.୪.୩୦ରେ କେନ୍ଦ୍ରାପଡ଼ା ସବ୍‌ଡ଼ିଭିଜନର କୁଣ୍ଡୁନପୁରଠାରେ ଗୋପବନ୍ଧୁ ଚୌଧୁରୀ ଗିରଫ ହେଲେ । ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ସତ୍ୟାଗ୍ରହୀମାନେ ରେଳ ଯୋଗେ ବାଲେଶ୍ୱର ଯାତ୍ରା କଲେ । କାରଣ ନି.ଭା.କଂ. କମିଟିରୁ ନର୍ଦ୍ଦେଶନାମା ଆସିଲା ଯେ ୧୩.୪.୩୦ ଜାଲିୟାନ୍‌ୱାଲାବାଗ ଦିବସରେ ସମଗ୍ର ଭାରତରେ ଲବଣ ସତ୍ୟାଗ୍ରହ କରାଯିବ । ସତ୍ୟାଗ୍ରହୀମାନେ ବାଲେଶ୍ୱରରେ ପହଞ୍ଚି ବ୍ରିଟିଶ ବଣିକ ଓଡ଼ିଶାରେ ବାଣିଜ୍ୟ କରିବା ପାଇଁ ଯେଉଁ କୋଠିରେ ସନନ୍ଦ ଗ୍ରହଣ କରିଥିଲେ ସେହି ''ପରମିଟ୍'' କୋଠିରେ ସତ୍ୟାଗ୍ରହ ଶିବିର ସ୍ଥାପନ କଲେ ।

ପ୍ରଥମ ଦଳ ସତ୍ୟାଗ୍ରହୀଙ୍କ ନାମ :

୧. ଆଚାର୍ଯ୍ୟ ହରିହର ଦାସ, ପୁରୀ; ୨. ଦୁର୍ଗାପ୍ରସାଦ ଗୁରୁ, ସମ୍ବଲପୁର; ୩. ଗୋକୁଳାନନ୍ଦ ମହାନ୍ତି, ବାଲେଶ୍ୱର; ୪. ବିଶ୍ୱନାଥ ହୋତା, ବାଲେଶ୍ୱର; ୫. ଗୋଲକ ବିହାରୀ ଦେ, ବାଲେଶ୍ୱର; ୬. ଘନଶ୍ୟାମ ପଟ୍ଟନାୟକ, ଗଞ୍ଜାମ; ୭. ଚକ୍ରପାଣି ରାଉଳ, ଗଞ୍ଜାମ; ୮. ଡ. କୃପାସିନ୍ଧୁ ଭୁକ୍ତ, ଅନଗୁଳ; ୯. ପ.ରଘୁନାଥମିଶ୍ର, ପୁରୀ; ୧୦. ମୁରାରି ତ୍ରିପାଠୀ, ପୁରୀ; ୧୧. ସୁଦର୍ଶନ ପ୍ରହରାଜ, କଟକ; ୧୨. ଗୁଣନିଧି

ମହାନ୍ତି, କଟକ; ୧୩. ଗୌରାଙ୍ଗ ଚରଣ ଦାସ, କଟକ; ୧୪. ବନମାଳୀ ପୃଷ୍ଟି, କଟକ; ୧୫. ବିନୋଦ ଚୌଧୁରୀ, କଟକ; ୧୬. ରାମପ୍ରସାଦ ସାହୁ, କଟକ; ୧୭. ସୁଧାଂଶୁ ଗୁପ୍ତ, କଟକ; ୧୮. କୃପାସିନ୍ଧୁ ଖୁଣ୍ଟିଆ, କଟକ; ୧୯. ରଘୁନାଥ ଦାସ, କଟକ; ୨୦. ଗୋପବନ୍ଧୁ ଚୌଧୁରୀ, କଟକ ।



॥ ୮ ॥

ଏପ୍ରିଲ ତେର ତାରିଖ ମହାବିଷୁବ ସଂକ୍ରାନ୍ତି ଦିନ ଇଞ୍ଚୁଡ଼ିରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେଲା । ଶମ୍ଭୁ ଶତପଥୀ ତାଙ୍କ ବାଡ଼ିରେ ସତ୍ୟାଗ୍ରହୀମାନଙ୍କୁ ରହିବା ପାଇଁ ଗୋଟିଏ ଚାଳିଆ ଦେଇ ଅସୀମ ସାହସ ଦେଖାଇଲେ । ମାତ୍ର ଏହା ପୂର୍ବରୁ ଶ୍ରୀ ଜୀବରାମ କଲ୍ୟାଣଜୀ କୋଠାରୀ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକରୁ ଫେରିବା ବେଳେ ସାଙ୍ଗରେ ଲୁଣମାଟି ଆଣିଥିଲେ । ଲୁଣ କିପରି ମରାହୁଏ ତାହା ସେ ଗୁଜରାଟରେ ଦେଖି ଆସିଥିଲେ । ନିଜେ ଲୁଣ ମାରି ଶିଖିବା ପାଇଁ ସେ ଖୋଲାଜାଗାରେ ସେହି ଲୁଣମାଟି ନେଇ ଲୁଣ ମାରିବା ଆରମ୍ଭ କରିଦେଲେ । ଫଳରେ ସେ ଓ ସୁରେନ୍ଦ୍ର ନାଥ ଦାସ ୧୧.୪.୩୦ ତାରିଖରେ ଗିରଫ ହୋଇଗଲେ ।

୧୨ ଏପ୍ରିଲ ରାତିରେ ଆଚାର୍ଯ୍ୟ ହରିହର ଦାସ ବାର ଜଣ ସତ୍ୟାଗ୍ରହୀଙ୍କ ସାଙ୍ଗରେ ବାଲେଶ୍ୱରରୁ ବାର ମାଇଲ ଦୂର ଇଞ୍ଚୁଡ଼ି ଯାଇ ତୁଣ୍ଡରାରେ ଶମ୍ଭୁ ଶତପଥୀଙ୍କ ବାଡ଼ିରେ ହୋଇଥିବା ଚାଳିଆରେ ରାତିରେ ରହିଲେ । ପରଦିନ ଜାଲିୟାନୱାଲା ଦିବସରେ ସେ ସାଥୀମାନଙ୍କ ସହିତ ଇଞ୍ଚୁଡ଼ି ଚଟାଣକୁ ଯାଇ ଲୁଣମାଟି ସାଉଁଟିବା ସଙ୍ଗେ ସଙ୍ଗେ ଗିରଫ ହେଲେ । ତାଙ୍କ ସାଥୀ ସତ୍ୟାଗ୍ରହୀମାନଙ୍କୁ ପୁଲିସ ଗିରଫ ନକରି ଲୁଣମାଟି ସାଉଁଟିବାରେ ବାଧା ଦେଲେ । ଜଣେ ଜଣେ ସତ୍ୟାଗ୍ରହୀଙ୍କ ମୁଠାରୁ ଲୁଣମାଟି ଛଡ଼େଇବା ପାଇଁ ପାଞ୍ଚଛଅ ଜଣ ଲେଖା ପୁଲିସ ଲାଗିଥାନ୍ତି । ପୁଲିସ ସତ୍ୟାଗ୍ରହୀଙ୍କ ମଣିବନ୍ଧକୁ ମୋଡୁଥାନ୍ତି । ବୁଢ଼ା ଆଙ୍ଗୁଠିକୁ ମୋଡ଼ି ବଙ୍କା କରି ଲୁଣମାଟି ଛଡ଼ାଇ ନେବାକୁ ଚେଷ୍ଟା କରୁଥାନ୍ତି । ସତ୍ୟାଗ୍ରହୀମାନେ ଏ ଆକ୍ରମଣ ସତ୍ତ୍ୱେ ମୁଠା ଫିଟାଉ ନ ଥାନ୍ତି । କାରଣ ତାଙ୍କରି ମୁଠା ଭିତରେ ସତେ ଯେପରି ଭାରତର ଇଜ୍ଜତ ରହିଛି ! ବିନୋଦ ଚୌଧୁରୀ ଜଣେ ବୃଦ୍ଧ ସତ୍ୟାଗ୍ରହୀ । ତାଙ୍କୁ ଭୂଇଁରେ ଗଡ଼େଇ ଦେଇ ପୁଲିସ ବୁଟ୍ ପିନ୍ଧା ଗୋଡ଼ରେ ତାଙ୍କ ହାତ ଓ ଗୋଡ଼ ଉପରେ ଚଢ଼ିଗଲେ । ତାଙ୍କ ଦେହରୁ ରକ୍ତ ବୋହି ଯାଉଥାଏ । ତଥାପି ସେ

ମୁଠା ଫିଟାଉ ନ ଥାନ୍ତି । ଏ ଦୃଶ୍ୟ ଦେଖି ଜଣେ ସହାନୁଭୂତିଶୀଳ ପୁଲିସ ଅଫିସରଙ୍କ ଆଖିରୁ ଲୁହ ବୋହିଗଲା । ଏ ସବୁ ଅତ୍ୟାଚାର ସତ୍ତ୍ୱେ ସତ୍ୟାଗ୍ରହୀମାନେ ଲୁଣମାଟି ସଂଗ୍ରହ କରି ଆଣି ଶିବିରରେ ଲୁଣ ମାରିଲେ ଏବଂ ବାଲେଶ୍ୱରରେ ସେ ଲୁଣ ବିକ୍ରୀ ହେଲା । ଲୋକେ ସେ ଲୁଣକୁ ମହାପ୍ରସାଦ ପରି ପବିତ୍ର ମନେ କରୁଥାନ୍ତି । ଏ ଲୁଣ ଓଡ଼ିଶାର ବିଭିନ୍ନ ଜିଲ୍ଲାକୁ ମଧ୍ୟ ପଠାଗଲା ।

ପ୍ରତିଦିନ ସକାଳୁ ଦିନ ବାରଟା ଯାଏ ପୁଣି ଉପରଓଳି ତିନିଟାରୁ ଛଅଟା ଯାଏ ଏହି ରୂପେ ଲୁଣମାଟି ସଂଗ୍ରହ ଅଭିଯାନ ଚାଲିଲା । ପୋଲିସ ସତ୍ୟାଗ୍ରହୀଙ୍କ ଦୁଇହାତକୁ ପଛପଟକୁ ନେଇ ଗୋଇଠା ମାରି ସଂଗୃହୀତ ମାଟି ଖେଳାଇ ଦିଅନ୍ତି । ଲୁଣମରା ହାଣ୍ଡି ପିଟି ଭାଙ୍ଗି ଦିଅନ୍ତି । ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରନ୍ତି । ଶେଷକୁ ନିରୁପାୟ ହୋଇ ଗିରଫ କରନ୍ତି । ହଜାର ହଜାର ଗ୍ରାମବାସୀ ପ୍ରତିଦିନ ଆସି ଏ ଦୃଶ୍ୟ ଦେଖନ୍ତି । ଓଡ଼ିଶାର ଚାରିଆଡୁ ଦଳଦଳ ସତ୍ୟାଗ୍ରହୀ ଇଞ୍ଚୁଡ଼ିରେ ପହଞ୍ଚୁଥାନ୍ତି । ସୁଦୂର ସମ୍ବଲପୁର, କଲିକତାରୁ ସତ୍ୟାଗ୍ରହୀମାନେ ଆସୁଥାନ୍ତି । ସେମାନେ ବାଟଯାକ ଜାତୀୟ ସଙ୍ଗୀତ ବୋଲି ବୋଲି ଆସୁଥାନ୍ତି । ସତ୍ୟାଗ୍ରହୀଙ୍କ ସାହସ ଓ ସହିବା ଶକ୍ତି କ୍ରମେ ଗ୍ରାମବାସୀଙ୍କ ମଧ୍ୟରେ ସଂକ୍ରମିତ ହେଲା । ଲୋକନାଥ ଦାସ, ବିଶ୍ୱ ଦାସ, ଉଦୟନାଥ ମହାନ୍ତି, ପ୍ରାଣକୃଷ୍ଣ ସାହା, ମଧୁସୂଦନ ମହାନ୍ତି ପ୍ରମୁଖ ଗ୍ରାମବାସୀ ସତ୍ୟାଗ୍ରହ ଶିବିରକୁ ଆସି ସତ୍ୟାଗ୍ରହୀର ଶପଥ ପତ୍ର ପୂରଣ କରି ସତ୍ୟାଗ୍ରହ କଲେ ।

ବାଲେଶ୍ୱରରୁ ଇଞ୍ଚୁଡ଼ି ଯିବା ପାଇଁ ଥିବା ନିମ୍କୀ ସଡ଼କ (Salt Road)କଡ଼ରେ ଚାଉଳିଆ ବରଗଛ । ସେହି ଚାଉଳିଆ ବର ପାଖରେ ସତ୍ୟାଗ୍ରହୀ ଲୁଣ ଧରି ବାଲେଶ୍ୱରକୁ ଆସୁଥିବା ବେଳେ ପୁଲିସ ଚଢ଼ାଉ କଲେ । ଲୁଣ ଛଡ଼ାଇ ନେବା ପାଇଁ ସତ୍ୟାଗ୍ରହୀଙ୍କ ଉପରେ ଠେଙ୍ଗାମାଡ଼ ହେଲା । ଧାରଧାର ରକ୍ତ ବୋହି ଯାଉଥାଏ । ତଥାପି ସତ୍ୟାଗ୍ରହୀ ଲୁଣ ଛାଡ଼ିଲେ ନାହିଁ । ସେ ଲୁଣ ବାଲେଶ୍ୱରକୁ ଆସି ରାଷ୍ଟ୍ରୀୟ ପତାକା ଭଳି ସମ୍ମାନିତ ହେଲା । ଏ ସବୁ ଦୃଶ୍ୟ ଦେଖି ଲୋକେ ଡ଼ରିବେ କ'ଣ ଓଲଟା ପୁଲିସ ଓ ସରକାରୀ କର୍ମଚାରୀଙ୍କୁ ବାସନ୍ଦ କଲେ ।

୧୯.୪.୩୦ରେ ବାଲେଶ୍ୱରରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର କାର୍ଯ୍ୟକାରୀ ସମିତିର ବୈଠକ ବସିଲା । ସେତେବେଳକୁ ଗାନ୍ଧିଜୀ କହିଲେଣି ଦେଶର ସବୁ ଲୁଣ ଲୋକଙ୍କର । ସମିତି ଘୋଷଣା କଲେ ଯେ ଗ୍ରାମବାସୀ ମଧ୍ୟ ଲୁଣ ମାରିବା ଆରମ୍ଭ କରି ପାରିବେ । ଏ ପର୍ଯ୍ୟନ୍ତ ବିଧିବଦ୍ଧ ଭାବରେ ଶପଥ ପତ୍ରରେ ସ୍ୱାକ୍ଷର

କରିଥିବା ସତ୍ୟାଗ୍ରହୀ ଲୁଣ ମାରୁଥିଲେ । ଏବେ ଗ୍ରାମବାସୀ ଏ ଅନୁମତି ପାଇ ଲୁଣ ମାରିବାକୁ ଆଗେଇ ଆସିଲେ । ଗଣଆନ୍ଦୋଳନ ଆରମ୍ଭ ହେଲା । କଅଁରପୁର, ସାରଥା ବୋଇତା, ରସାଳପୁର, ତୁଣ୍ଡରୀ ଶ୍ରୀଜଙ୍ଗ, ଇଞ୍ଚୁଡ଼ି ଆଦି ଗାଁରୁ ଶହ ଶହ ଲୋକ ଲୁଣ ମାରିବା ଆରମ୍ଭ କରିଦେଲେ । ଏପ୍ରିଲ କୋଡ଼ିଏ ତାରିଖ ଦିନ କିରଣବାଳା ସେନ, ମାଳତୀ ଚୌଧୁରୀ ଓ ରମାଦେବୀ ଇଞ୍ଚୁଡ଼ିରେ ପହଞ୍ଚି ଲୁଣ ମାରିଲେ । ତାଙ୍କ ଡ଼ାକରାରେ ଶ୍ରୀଜଙ୍ଗ, ରସାପୁର ଆଦି ଗାଆଁର ଝିଅ ବୋହୂ ଘରକୋଣରୁ ବାହାରି ଆସି ଶଙ୍ଖ ବଜାଇ ଲୁଣ ମାରିବାକୁ ଗଲେ । ସମଗ୍ର ଭାରତରେ ଏହି ଅଭୁତପୂର୍ବ ନାରୀ ଜାଗରଣ ଦେଖି ସମଗ୍ର ପୃଥିବୀ ବିସ୍ମିତ ହେଲା । ଜାତୀୟ କବି ବୀର କିଶୋର ଦାସ ଲେଖିଥିଲେ –

ଶୟନେ ସ୍ୱପନେ କିବା ଜାଗରଣେ
ସେହି ଗାନ୍ଧୀ କଥା ଭାବୁଛି
କି ମନ୍ତର କଲା ସଭିଙ୍କୁ ଟାଣିଲା
ବଡ଼ ଆଚମ୍ବିତ ଲାଗୁଛି ।
ଶୁଣି ଯେ ଡ଼ରଇ ମେଘ ଘଡ଼ଘଡ଼ି
ବାହାରି ନ ଥିଲା ଘରୁ ଗୋଡ଼କାଢ଼ି
ସେହି ନାରୀ ଆଜି ସମୁଦ୍ର ପନ୍ତାରେ
ଲୁଣ ଲାଗି ଜାଳ ଭାଙ୍ଗୁଛି
ଦୋତାଲା ଉପରେ ବିଳାସରେ ଶୋଇ
ଅଳସେ ଯେ ଧନୀ ମାରୁଥିଲେ ହାଇ
କତା ପିଟୁଛନ୍ତି ଜୋତାମାଡ଼ ଖାଇ
ଜୀବନକୁ ଦେଇ ମୁରୁଛି ।

## ବଇଦୀ ମହାନ୍ତି ଟୁଙ୍ଗୀ

ଓଡ଼ିଶାରେ ଲବଣ–ସତ୍ୟାଗ୍ରହର ଅନ୍ୟତମ ରଣାଙ୍ଗନ ହେଲା କୁଜଙ୍ଗ । ଡ଼ାକ୍ତର ବ୍ରଜନାଥ ମିଶ୍ର, ମାଳତୀ ଚୌଧୁରୀ ଓ ରମାଦେବୀ ସେଠାକୁ ଲବଣ ସତ୍ୟାଗ୍ରହ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାକୁ ଗଲେ । ସରକାରଙ୍କ ପକ୍ଷରୁ ସେମାନଙ୍କୁ ପ୍ରତିରୋଧ କରିବା ପାଇଁ ଗଲେ ଡ଼େପୁଟି ମ୍ୟାଜିଷ୍ଟ୍ରେଟ ଶ୍ରୀ ମାଧବ ମିଶ୍ର । ମାଧବ ବାବୁ କୁଜଙ୍ଗ ଅଞ୍ଚଳରେ ଢ଼େଙ୍ଗୁରା ବଜାଇ ଘୋଷଣା କଲେ ଯେ ସତ୍ୟାଗ୍ରହୀମାନଙ୍କୁ ଯେ ରହିବାକୁ ସ୍ଥାନ ଦେବ,

ଖାଇବାକୁ ଅନ୍ନ ଦେବ, ଯେ ସଭାକୁ ଯାଇ ତାଙ୍କ କଥା ଶୁଣିବ କିମ୍ବା ତାଙ୍କୁ ଡ଼ଙ୍ଗାରେ ପାରି କରିବ, ତାକୁ ଜେଲ୍‌ଦଣ୍ଡ ଦିଆଯିବ ଏବଂ ତା ସମ୍ପତ୍ତି କୋରଖ ହେବ । ଏ ଘୋଷଣା ଶୁଣି ଲୋକେ ବରଡ଼ା ପତ୍ର ପରି ଥରିଲେ । ସତ୍ୟାଗ୍ରହୀଙ୍କୁ ରହିବାକୁ ଥାନ ଦଉଛି କିଏ ?

କୁଜଙ୍ଗକୁ ଲାଗି ପାଟପୁରରେ ଥିଲା ବଇଦୀ ମହାନ୍ତି ଟୁଙ୍ଗୀ । ବଇଦୀ ମହାନ୍ତିଙ୍କ ବୟସ ଷାଠିଏରୁ ଉର୍ଦ୍ଧ୍ୱ ହେବ । ସେ ଟୁଙ୍ଗୀରେ ସେ ଏକା ରହୁଥାନ୍ତି । ବୋଲକରା ପିଲାଟିଏ ବୋଲହାକ, ରନ୍ଧାବଢ଼ା କରେ । ସେହି ଟୁଙ୍ଗୀରେ ମାଳତୀ ଦେବୀ, ରମାଦେବୀ ଓ ଡ଼. ବ୍ରଜନାଥ ମିଶ୍ର ଆଶ୍ରୟ ନେଲେ । ବଇଦୀ ମହାନ୍ତି ସେମାନଙ୍କୁ ଅନ୍ନ ମୁଠିଏ ମୁଠିଏ ମଧ୍ୟ ଦେଲେ । ଟୁଙ୍ଗୀ ବାଡ଼ିରେ ଗୋଟିଏ ଆମ୍ବ ଗଛରେ ଆମ୍ବ ପାଚିଥାଏ । ବଇଦୀ ମହାନ୍ତି ଆମ୍ବ ପରେଇ ଟୁଙ୍ଗୀରେ ପଚେଇ ଥାଆନ୍ତି । କୁଜଙ୍ଗରେ ସେ ଯୁଗରେ ପରିବା ଚାଷ ହେଉ ନ ଥିଲା । ମାଛ, ପାନ, ଧାନ, ନଡ଼ିଆର ମନଇଚ୍ଛା କାରବାର । ଟୁଙ୍ଗୀରେ ମାଛଖିଆ ନିଷିଦ୍ଧ । ବଇଦୀ ମହାନ୍ତି ପ୍ରତିଦିନ ଗୋଟିଏ ସଯତ୍ନେ ରକ୍ଷିତ ବାଇଗଣ ଧରି ଖାଉଟି ସଂଖ୍ୟା ଅନୁସାରେ ନୋଳା ନୋଳା କରି କାଟନ୍ତି । ଭାତ ଯେତେ ଇଚ୍ଛା ଖାଇପାର, ମାତ୍ର ତୁଣରେ ବାଇଗଣ ସେହି ନୋଳାଏ । ଖାଇବା ବେଳେ ଗୋଟିଏ ଆମ୍ବ ବାହାର କରି ଖାଉଟି ହିସାବ କରି ଆମ୍ବଟି କାଟି ନୋଳାଏ ନୋଳାଏ ଖାଇବାକୁ ଦିଅନ୍ତି । ସେତିକି ଦେବାକୁ ତ କୁଜଙ୍ଗ ରାଇଜରେ କେହି ଭରସିଲେ ନାହିଁ । ଧନ୍ୟ ବଇଦୀ ମହାନ୍ତିଙ୍କ ହେମତ ! ସତ୍ୟାଗ୍ରହୀଙ୍କୁ ସେ ବାସ ଦେଲେ, ଗ୍ରାସ ମଧ୍ୟ ଦେଲେ ।

ଦିନସାରା ବୋହୂ ଭୂଆଷୁଣୀ ପରି ତିନିହେଁ ଟୁଙ୍ଗୀରେ ରହନ୍ତି । କାରଣ କେହି ତାଙ୍କୁ ତ କଥା କହିବାକୁ ଟେକି ଚାହିଁବାକୁ ସୁଦ୍ଧା ମନା । ରାତିରେ ସମସ୍ତଙ୍କ ଘରେ ଟାଟି କବାଟ ପଡ଼ିଲେ ବଣୀକୂଳ ଗଡ଼ରୁ ଆସନ୍ତି ସାଆନ୍ତେ- ନାରାୟଣ ବୀରବର ସାମନ୍ତ । ସତ୍ୟାଗ୍ରହ ସମାରମ୍ଭର ପରିକଳ୍ପନା ଚାଲେ । କିପରି ମିଶ୍ର ଆପଣଙ୍କ ନଜର ଏଡ଼େଇ ଲୋକଙ୍କୁ ଏକତ୍ର କରି ଲୁଣମରା ହୋଇ ପାରିବ । ଶେଷରେ ସ୍ଥିର ହେଲା ବ୍ରଜବାବୁ ଓ ମାଳତୀ ଚୌଧୁରୀ ଯିବେ ପୋତାନଇ । ମାଜିଷ୍ଟ୍ରେଟ୍ ମିଶ୍ରଙ୍କ ରହଣୀ ସ୍ଥାନରୁ ତାହା ଦୂର । ବାଟ ମଧ୍ୟ ଦୁର୍ଗମ । ମିଶ୍ରେ ଆପଣେ ଆଡ଼ାଚୌଡ଼ାର ଲୋକ । ଟେକା କିଆରୀରେ ଚଲାବାଟରେ ଚଉକିଆଙ୍କ କାନ୍ଧରେ ହାତ ପକେଇ ଯାଉ ଯାଉ ଲୁଣମରା କାର୍ଯ୍ୟକ୍ରମ ସମ୍ପନ୍ନ ହୋଇଯିବ । ରମାଦେବୀ ଯିବେ ପାରାଦ୍ୱୀପ ଉଆସକୁ । ସେଠାରେ କୁଜଙ୍ଗ ରାଣୀ ଭାବବତୀ ପାଟମହାଦେଇଙ୍କୁ ପ୍ରଭାବିତ କରି ତାଙ୍କୁ କାଳିଆପାଟକୁ ନେଇ ପାରିଲେ ବହୁ ଲୋକ ତାଙ୍କ ସଙ୍ଗେ ଲୁଣ ମାରିବାକୁ ନିଶ୍ଚୟ ବାହାରିବେ ।

ରମାଦେବୀ ଗଡ଼କୁଜଙ୍ଗକୁ ରାତିଏ ରାତିଏ ଯାଇ ରାଣୀଙ୍କୁ ଭେଟି ସତ୍ୟାଗ୍ରହ କାହାଣୀ ଶୁଣେଇଲେ । ସରୋଜିନୀ ନାଇଡ୍ରୁ, କସ୍ତୁରବା ଗାନ୍ଧୀ, କମଳା ଦେବୀ ଚଟ୍ଟୋପାଧ୍ୟାୟ ଆଦିଙ୍କ କୀର୍ତ୍ତିକଳାପ ଶୁଣି ରାଣୀ ଲୁଣମାରି ଯିବାପାଇଁ ପ୍ରସ୍ତୁତ ହେଲେ । ଦିନରେ ତ ସତ୍ୟାଗ୍ରହୀଙ୍କୁ ଡଙ୍ଗାରେ ପାରି କଲେ ଧରପଗଡ଼ ଲାଗିବ । ନିଶା ଗରଜିଲାରୁ ରାଣୀଙ୍କ ଚାକରମାନେ ରମାଦେବୀଙ୍କୁ ଓ ରାଣୀଙ୍କୁ ଡ଼ଙ୍ଗାରେ ପାରି କରି ନେଇଗଲେ । ଛାପିଛାପିକା କାଳିଜହ୍ନ ପଡ଼ିଥାଏ । ରାଣୀ କାଳିଆପାଟରେ ବିଜେ କଲେ । କାଳିଆପାଟରେ ହୁରି ପଡ଼ିଗଲା ନିଜେ ରାଣୀ ବିଜେ କରିଛନ୍ତି ଲୁଣ ମାରିବା ପାଇଁ । ରାତି ପାହିଲା ବେଳକୁ ଶହ ଶହ ଝିଅ ବୋହୂ ଟୋକେଇ ପାଛିଆ ଧରି ହୁଳହୁଳି ପକେଇ ରାଣୀଙ୍କ ଗହଣରେ ଗଲେ ଗଣ୍ଡକୀପୁରରେ ଲୁଣ ମାରିବାକୁ । ଶହ ଶହ ସ୍ତ୍ରୀଲୋକଙ୍କ ମୁଣ୍ଡରେ ଲୁଣମାଟି ଟୋକେଇ । ଗଣ୍ଡିଏ ପାଞ୍ଚୋଟି ପୁଲିଶ କ'ଣ କରିପାରନ୍ତେ ? ସେମାନେ ଜଳଜଳ ଚାହିଁଥାନ୍ତି । କୁଜଙ୍ଗରେ ଲବଣ ସତ୍ୟାଗ୍ରହର ଶୁଭାରମ୍ଭ ହୋଇଗଲା ।

ପୋତ ନଈରେ ବ୍ରଜବାବୁ, ଶତ୍ରୁଘ୍ନ ସାହୁଙ୍କ ସାଙ୍ଗରେ ମାଳତୀ ଚୌଧୁରୀ ଲୁଣ ମାରିଲେ । ଦେଖଣାହାରୀ ଥାଟ ପଟାଳୀ ଭାଙ୍ଗୁଥାନ୍ତି । ମ୍ୟାଜିଷ୍ଟ୍ରେଟ ସାହେବ ଦୁଇଜଣ ଚଉକିଆଙ୍କ କାନ୍ଧରେ ଭାରାଦେଇ ଚାଲି ପୋତାନଈରେ ପହଞ୍ଚିଲା ବେଳକୁ ସତ୍ୟାଗ୍ରହ ପର୍ବ ସାରି ମାଳତୀ ଚୌଧୁରୀ ସେ ସ୍ଥାନ ଛାଡ଼ି ଚାଲି ଗଲେଣି । ମ୍ୟାଜିଷ୍ଟ୍ରେଟଙ୍କର ହାକିମୀ ଚାଲି । ମାଳତୀ ଦେବୀ ଖୋଦ୍ ରବୀନ୍ଦ୍ରନାଥ ଠାକୁରଙ୍କ ଛାତ୍ରୀ; ବାଲିହରିଣ ପରି କ୍ଷିପ୍ରଗତିରେ ସେ ଚାଲି ପାରନ୍ତି । ଏ ଦୁହିଁଙ୍କ ଭେଟାଭେଟି ହେବା ହେଲାନାହିଁ । ମ୍ୟାଜିଷ୍ଟ୍ରେଟ ସାହେବ ରହଣୀକୁ ଫେରିବା ବେଳେ ଗାଁର ଚଗଲା ପିଲାଏ ଗୀତ ବୋଲିଲେ- ''ହାକିମ ନନା ହାକିମ ନନା

ଲୁଣ ମରା ହେଲା ପଛକୁ ଅନା ।''

(ଏଠାରେ ଜାଣି ଶୁଣି ମ୍ୟାଜିଷ୍ଟ୍ରେଟଙ୍କ ନାମ ଉହ୍ୟ ରଖାଯାଇଛି ।)

ଏହିପରି ଭାବରେ କୁଜଙ୍ଗରେ ଲବଣ ସତ୍ୟାଗ୍ରହ ଜୋରସୋରରେ ଚାଲିଲା । ମ୍ୟାଜିଷ୍ଟ୍ରେଟ୍ ମିଶ୍ରଙ୍କ ଶତ ଚେଷ୍ଟା ବିଫଳ ହେଲା । ସ୍ଥାନୀୟ ଛାତ୍ର ଓ ଗ୍ରାମବାସୀ ସତ୍ୟାଗ୍ରହୀ ଶପଥ-ପତ୍ରରେ ସ୍ୱାକ୍ଷର କରି ଆନ୍ଦୋଳନରେ ଯୋଗ ଦେଲେ । ସାବିତ୍ରୀ ଅମାବାସ୍ୟା ବେଳକୁ ମୌସମୀବାୟୁ ପ୍ରବାହିତ ହେବାରୁ ଲୁଣମରା ବନ୍ଦ ହେଲା ।

ଗଞ୍ଜାମ ଜିଲ୍ଲାରେ ଶ୍ରୀମତୀ ସରଳା ଦେବୀ ହୁମାକୁ ଲବଣ-ସତ୍ୟାଗ୍ରହ କରିବା ପାଇଁ ଯାଉଥିବା ବେଳେ ବାଟରେ ଅସ୍ଥାନରେ ରେଳଗାଡ଼ିକୁ ଅଟକାଇ ତାଙ୍କୁ ଗିରଫ

କରାଗଲା । ଶ୍ରୀ ନିରଞ୍ଜନ ପଟ୍ଟନାୟକ ହୁମାରେ ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇଥିଲେ । ତାଙ୍କ ଦ୍ୱାରା ପରିଚାଳିତ ଉଦ୍‌ଯୋଗ ମନ୍ଦିରରେ ସତ୍ୟାଗ୍ରହୀ ଶିବିର ସ୍ଥାପିତ ହୋଇଥିଲା ।

ପୁରୀ ଜିଲ୍ଲାର ଅସ୍ତରଙ୍ଗଠାରେ ପଣ୍ଡିତ ନୀଳକଣ୍ଠ ଦାସ ସତ୍ୟାଗ୍ରହୀ ଶିବିର ପରିଚାଳନା କରିଥିଲେ । ସ୍ଥାନୀୟ ସତ୍ୟାଗ୍ରହୀ ମଧୁସୂଦନ ମିଶ୍ରଙ୍କ ନେତୃତ୍ୱରେ ଏଠାରେ ଗ୍ରାମବାସୀ ଲବଣ ସତ୍ୟାଗ୍ରହ କରିଥିଲେ । ସତ୍ୟାଗ୍ରହୀଙ୍କୁ ମାଡ଼ ମାରିବା, ଗିରଫ କରିବା, ଲୁଣମାଟି ଛଡ଼ାଇ ନେବା ଆଦି ପୁଲିସୋଚିତ ଅତ୍ୟାଚାର ସେଠାରେ ମଧ୍ୟ ହୋଇଥିଲା ।



॥ ୯ ॥

## ହରତାଳ

ଲବଣ ଆଇନ୍ ଅମାନ୍ୟ ଥିଲା ପ୍ରଥମ କାର୍ଯ୍ୟକ୍ରମ । ମାତ୍ର ସରକାରଙ୍କର କୌଣସି ଅନ୍ୟାୟର ପ୍ରତିବାଦ କରିବାର ମାଧ୍ୟମ ଥିଲା ହରତାଳ ଓ ସଭା ଶୋଭାଯାତ୍ରା । ଗାନ୍ଧିଜୀଙ୍କୁ ୧୯୩୦ ମେ'୫ ତାରିଖ ରାତି ବାରଟା ପଇଁଚାଳିଶ ମିନିଟ୍‌ରେ କରାଚୀଠାରେ ଗିରଫ କରାଗଲା । ସୋଲାପୁରରେ ଏ ଖବର ପହଞ୍ଚିବା ମାତ୍ରେ ସେଠା କାରଖାନାର ଶ୍ରମିକମାନେ ଥାନା କଚେରୀ କାବୁ କରି କଚେରୀରେ ଜାତୀୟ ପତାକା ଉଡ଼ାଇ ବ୍ରିଟିଶ ଶାସନରୁ ସ୍ୱାଧୀନ ହେଲେ ବୋଲି ଘୋଷଣା କଲେ । ଅବସ୍ଥାକୁ ଆୟତ୍ତ କରିବା ପାଇଁ ସରକାର ସେଠାରେ ଗୁଳି ଚଳାଇଲେ ।

ସୀମାନ୍ତ ଗାନ୍ଧୀ ଖାନ୍ ଅବଦୁଲ ଗଫ୍‌ଫର ଖାଁଙ୍କୁ ଗିରଫ କରାଗଲା । ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶରେ ସୀମାନ୍ତ ଗାନ୍ଧୀ ଖୁଦାଇ ଖିଦ୍‌ମତଗାର ନାମକ ସ୍ୱେଚ୍ଛାସେବକ ବାହିନୀ ୧୯୨୯ରୁ ସଂଗଠନ କରିଥିଲେ । ସେମାନେ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ସୀମାନ୍ତ ଗାନ୍ଧୀଙ୍କ ଗିରଫର ପ୍ରତିବାଦ କରି ସେମାନେ ପେଶାୱାରରେ ଗୋଟିଏ ଶୋଭାଯାତ୍ରା ବାହାର କଲେ । କିସ୍‌ସାଖାନି ବଜାରଠାରେ ବ୍ରିଟିଶ କମାଣ୍ଡର ଶୋଭାଯାତ୍ରାକୁ ଭାଙ୍ଗିଦେବାକୁ ଆଦେଶ ଦେଲେ । ଶୋଭାଯାତ୍ରା ନ ଭାଙ୍ଗିବାରୁ ସେଠାରେ ନିଯୁକ୍ତ ଥିବା ଗଡ଼ବାଲି ରେଜିମେଣ୍ଟର ପ୍ଲାଟୁନ୍ କମାଣ୍ଡର ଚନ୍ଦ୍ର ସିଂହଙ୍କୁ ମେସିନ୍‌ଗନ୍ ଚଳାଇବାକୁ ଆଦେଶ ଦେଲେ । ହଜାର ହଜାର ନିରସ୍ତ୍ର ଶୋଭାଯାତ୍ରାକାରୀଙ୍କ ଉପରେ ମେସିନ୍‌ଗନ ଚଳାଇବାକୁ ମନା କରି ଦେବାରୁ ବ୍ରିଟିଶ କମାଣ୍ଡର କ୍ୟାଣ୍ଟନମେଣ୍ଟରୁ ଗୋରା

ଫଉଜ ଅଣାଇ ଶୋଭାଯାତ୍ରାକାରୀଙ୍କ ଉପରେ ମେଶିନ୍‌ଗନ୍ ଚଳାଇଲେ । ଯେଉଁ ପଠାନ୍ ଜାତି ମୁହଁରେ ପ୍ରତିବାଦ ନ କରି ଗୁଳିରେ ପ୍ରତିବାଦ ଜଣାଇବାରେ ଅଭ୍ୟସ୍ତ, ସେହି ପ୍ରତିଶୋଧପରାୟଣ ପଠାନ୍ ବୀର ଛାତିରେ ଗୁଳି ଖାଇ ମଲେ, ହାତ ଉଠେଇଲେ ନାହିଁ । ଚାରିଶହ ବାରଜଣ ଖୁଦାଇ ଖିଦମତ୍‌ଗାରଙ୍କ ଛାତିରେ ଗୁଳି ବାଜି ମୃତ୍ୟୁ ହୋଇଥିଲା । ଶହ ଶହ ଆହତ ହେଲେ । କିସ୍‌ସାଖାନି ବଜାରର ମାଟି ଶହୀଦ ରକ୍ତରେ କର୍ଦ୍ଦମାକ୍ତ ହୋଇଗଲା । ପ୍ଲାଟୁନ୍ କମାଣ୍ଡର ଚନ୍ଦ୍ରସିଂହଙ୍କୁ ମଧ୍ୟ କୋର୍ଟ ମାର୍ଶାଲ ହୋଇ ଚଉଦବର୍ଷ କାରାଦଣ୍ଡ ଦିଆଗଲା ।

ଏହି ପଠାନ୍ ଖୁଦାଇ ଖିଦମତ୍‌ଗାରଙ୍କୁ ଉତ୍ତେଜିତ କରିବା ପାଇଁ ବ୍ରିଟିଶ ସେନା ତାଙ୍କ ପାଚିଲା ଫସଲକୁ ପୋଡ଼ି ଦେଉଥିଲେ । ତାଙ୍କ ଘରେ ପଶି ସ୍ତ୍ରୀ ଓ ପିଲାଙ୍କୁ ଅପମାନ କରୁଥିଲେ । ତାଙ୍କ ମୁହଁରେ ଥୋପି ମାରି ମୁହଁକୁ ବିକୃତ କରି ଦେଉଥିଲେ । ସେମାନଙ୍କୁ ଲଙ୍ଗଳା କରି ମୁହଁରେ ଚୂନକାଳି ବୋଳି ହାତରେ ହାତକଡ଼ି ଗୋଡ଼ରେ ବେଡ଼ି ଅଣ୍ଟାରେ ଦଉଡ଼ି ବାନ୍ଧି ସେମାନଙ୍କୁ ବଜାରରେ ବୁଲାଉଥିଲେ । ଦୁର୍ଦ୍ଧର୍ଷ ପଠାନ୍ ତଥାପି ଅହିଂସା ପଥରୁ ହୁଡ଼ିଲେ ନାହିଁ । ଓଲଟା ଏସବୁ ଅତ୍ୟାଚାର ଚାଲିଥିବା ବେଳେ ଗୀତ ବୋଲୁଥିଲେ-

ଆମେ ଆଲ୍ଲାଙ୍କ ସୈନ୍ୟଦଳ
ଜୀବନ ଯୁଦ୍ଧେ ନୋହୁଁ ଆମେ ଭୀତ
ଶକ୍ତି ଆମର ଆତ୍ମବଳ
ଆମେ ଆଗେଇ ଚାଲୁ ଧର୍ମପଥେ
ତୁଚ୍ଛ କରି ମରଣକୁ
ଧନରତ୍ନ ଲୋଡ଼ୁ ନା ଆମେ
ଧରି ରଖୁ ସାହସକୁ
ଆଲ୍ଲାଙ୍କ ନାମ ଧରି ମୁଖେ
ସଦା ଆମେ ରହୁ ସୁଖେ
ଆଲ୍ଲା ଆମର ଅସଲ ବଳ ॥

ଗାନ୍ଧିଜୀ ଗିରଫ ହେବାରୁ କଟକରେ ହରତାଳ ହେଲା । ସରକାରୀ କଲେଜ, ସ୍କୁଲ ଖୋଲାଥାଏ । ମାଳତୀ ଚୌଧୁରୀ, ରମାଦେବୀ ରେଭେନ୍ସା କଲେଜକୁ ବନ୍ଦ କରିବା

ପାଇଁ ଗଲେ । ଛାତ୍ରମାନଙ୍କୁ ବୁଝାଇବା ପାଇଁ ଟେନିସ୍ କୋର୍ଟରେ ଖେଳୁଥିବା ଛାତ୍ରଙ୍କ ପାଖକୁ ଗଲେ । ଇଂରେଜ ପ୍ରିନ୍‌ସିପାଲଙ୍କ ଠାରୁ ଖବର ପାଇ ଗୋରା ମ୍ୟାଜିଷ୍ଟ୍ରେଟ ମାଗୁଡ଼ ସାହେବ ନିଜେ ରେଭେନ୍ସା କଲେଜକୁ ଆସି ମାଳତୀ ଚୌଧୁରୀଙ୍କୁ କହିଲେ- ଆପଣମାନେ ଆନ୍ଦୋଳନ କରିବେ ବୋଲି କ'ଣ ପିଲାଙ୍କୁ ଖେଳିବାକୁ ସୁଦ୍ଧା ଦେବେନାହିଁ ? ମାଳତୀ ଚୌଧୁରୀ ତାଙ୍କୁ କହିଲେ-ଆୟାର୍ଲାଣ୍ଡରେ ସିନ୍‌ଫିନ୍ ମୁଭମେଣ୍ଟ (ସ୍ୱାଧୀନତା ଆନ୍ଦୋଳନ) ଚାଲିଥିଲା ବେଳେ କ'ଣ ହେଉଥିଲା ? ମାର୍‌ଉଡ୍ ସାହେବ ମୁଣ୍ଡ ପୋତି ସେଠାରୁ ଚାଲିଗଲେ । ସେ ଥିଲେ ଆୟାରଲ୍ୟାଣ୍ଡର ଅଧିବାସୀ ।

କଟକରେ ଗୋପବନ୍ଧୁ ଚୌଧୁରୀଙ୍କ ଗିରଫ ଉପଲକ୍ଷେ ଏପ୍ରିଲ ନଅ ତାରିଖରେ ହରତାଳ ହେଲା । କେତେକ ସ୍କୁଲ ଛାତ୍ର ସେଦିନ ହରତାଳରେ ଯୋଗ ଦେବା ଅପରାଧରେ ସ୍କୁଲରୁ ବିତାଡ଼ିତ ହେଲେ । ଅବଶ୍ୟ ନିଜର ଭୁଲ ସ୍ୱୀକାର କରିଥିଲେ ସେମାନେ ସ୍କୁଲରେ ପଢ଼ି ପାରିଥାନ୍ତେ । ସେମାନେ ହେଉଛନ୍ତି ବିନୋଦ କାନୁନ୍‌ଗୋ, ବଳରାମ ପତି, ସୁରେନ୍ଦ୍ର ନାଥ ପଟ୍ଟନାୟକ, ବିପିନ ବିହାରୀ ମହାନ୍ତି, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୋକୁଳାନନ୍ଦ ବେହେରା, ଗଜେନ୍ଦ୍ର ଦାସ, ବେଣୁଧର କାନୁନ୍‌ଗୋ । ଏମାନେ ପ୍ରତ୍ୟେକେ ଥିଲେ କୃତୀ ଛାତ୍ର । ସ୍କୁଲ ପାଠ ଛାଡ଼ିବା ହେତୁ ସେମାନେ ଅଭିଭାବକଙ୍କ ଗଞ୍ଜଣା ମଧ୍ୟ ସହିଥିଲେ ।

କଟକରେ ସ୍କୁଲରେ ପିକେଟିଂ କଲାବେଳେ ଭରତ୍ ସିଂହ ଓ ତାଙ୍କ ସାଥୀଙ୍କ ଉପରେ ପୁଲିସ ବୁଟ୍ ପିନ୍ଧି ଚଢ଼ି ସେମାନଙ୍କୁ ମାଡ଼ି ମକଚି ଦେଲେ । ଡ଼କ୍ଟର ରଜନୀକାନ୍ତ ଘୋଷ ତାଙ୍କ ଡ଼ାକ୍ତରଖାନାରେ ସେମାନଙ୍କର ଚିକିତ୍ସା କରି ସାହସିକତାର ପରିଚୟ ଦେଇଥିଲେ ।

୦୦

॥ ୧୦ ॥

## ପିକେଟିଂ

ମୌସୁମୀବାୟୁ ପ୍ରବାହିତ ହେଲାରୁ ଲବଣ ସତ୍ୟାଗ୍ରହ ବନ୍ଦ ହେଲା । ଗାନ୍ଧିଜୀ ଦାଣ୍ଡୀ ଯାତ୍ରା କରିବା ବେଳେ ଅନେକ ମହିଳା ତାଙ୍କ ସଙ୍ଗେ ସତ୍ୟାଗ୍ରହୀ ଭାବରେ ଯାତ୍ରା କରି ଲବଣ ସତ୍ୟାଗ୍ରହରେ ଯୋଗ ଦେବାକୁ ଚାହିଁଥିଲେ । ସେତେବେଳେ ସେମାନଙ୍କୁ

ଗାନ୍ଧିଜୀ କହିଥିଲେ – ମୁଁ ଯଦି ଭଉଣୀମାନଙ୍କୁ ସାଙ୍ଗରେ ନେବି ତେବେ ବ୍ରିଟିଶ ସରକାର କହିବେ ମୁଁ ମହିଳାମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତାଙ୍କ ସଙ୍ଗେ ଲଢ଼ିବାକୁ ବାହାରିଛି । ଭଉଣୀମାନେ ବିଦେଶୀ ବର୍ଜନ, ଖଦୀ ଓ ନିଶାନିବାରଣ କାର୍ଯ୍ୟରେ ଲାଗି ପଡ଼ନ୍ତୁ । ଏପ୍ରିଲ ୩୦ ତାରିଖରେ ସେ 'ୟଙ୍ଗ୍ ଇଣ୍ଡିଆ' ପତ୍ରିକାରେ ଭଉଣୀମାନଙ୍କୁ ସତ୍ୟାଗ୍ରହରେ ଯୋଗଦେବାକୁ ଡ଼ାକରା ଦେଲେ । ଭାରତର ବିଭିନ୍ନ ପ୍ରଦେଶରେ ଶ୍ରୀମତୀ ସରୋଜିନୀ ନାଇଡୁ ଓ ଆଉ ଅନେକ ମହିଳା ଲବଣ ସତ୍ୟାଗ୍ରହରେ ଯୋଗ ଦେଇ ସାରିଥିଲେ । ତାହା ସଙ୍ଗେ ସଙ୍ଗେ ନିଶାନିବାରଣ ଓ ବିଦେଶୀ ବର୍ଜନରେ ସେମାନେ ମନପ୍ରାଣ ଢ଼ାଳିଦେଲେ ।

ଗାନ୍ଧିଜୀଙ୍କ ସହଧର୍ମିଣୀ ଶ୍ରୀମତୀ କସ୍ତୁରବା ଗାନ୍ଧୀ ଗାନ୍ଧିଜୀଙ୍କର ଇଂରେଜ ଶିଷ୍ୟା ମିସ୍ ସ୍ଲେଡ଼୍ ଓରଫ, ମୀରାବେନ୍‌ଙ୍କ ସଙ୍ଗେ ଗୁଜରାଟର ସୁରଟ ଜିଲ୍ଲାରେ ଏ କାମ କଲେ । ଡ଼କ୍ଟର ସୁମନ୍ତ ମେହେତାଙ୍କ ସହଯୋଗରେ ସେ ମହିଳା ଶିବିର କରିବା ଆୟୋଜନ କଲେ । କସ୍ତୁରବା ଅଳ୍ପ ପାଠ ପଢ଼ିଥିଲେ । ସେଥିପାଇଁ ତାଙ୍କର ସାହସ ଦେଖି ଗାଁର ଅନୁନ୍ନତ ସ୍ତ୍ରୀଲୋକଙ୍କ ମଧ୍ୟରେ ସୁଦ୍ଧା ଆତ୍ମପ୍ରତ୍ୟୟ ଦେଖାଦେଲା । ଶହ ଶହ ସ୍ତ୍ରୀଲୋକ ଶିବିରରେ ଯୋଗ ଦେଇ ନିଶାନିବାରଣ ଆନ୍ଦୋଳନ ଚଳାଇଲେ । ସୁରତ ଜିଲ୍ଲା ନିଶାଖୋରୀ ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ପରିସ୍ଥିତି ଏପରି ହେଲା ଯେ ମଦ ଦୋକାନରେ ଚଢ଼େଇଟିଏ ସୁଦ୍ଧା ବସିଲା ନାହିଁ । ସରକାର ଘୋଷଣା କଲେ ଯେ ଏହି ସ୍ତ୍ରୀଲୋକଙ୍କୁ ଶିବିର କରି ରହିବା ପାଇଁ ସ୍ଥାନ ଦେଲେ ଦଣ୍ଡ ଦିଆଯିବ । କସ୍ତୁରବା ଓ ମୀରାବେନ୍‌ଙ୍କ ସାଙ୍ଗରେ ଗାଁଗହଳର ସ୍ତ୍ରୀଲୋକେ ଚାନ୍ଦୁଆ ଟାଙ୍ଗି ରହି ଶିବିର ଚଳାଇଲେ । ସରକାର ଚାନ୍ଦୁଆକୁ ପୋଡ଼ିଦେଲେ । ହଣ୍ଡା ଓ ବାସନକୁସନ ଜବତ କରିନେଲେ । କସ୍ତୁରବା ଗଛମୂଳେ ରହି ମାଟି ହାଣ୍ଡିରେ ରାନ୍ଧି ହାଣ୍ଡିକୁ ଗଛରେ ଶିକା ଟାଙ୍ଗି ରଖି ଶିବିର ଚଳାଇଲେ । ରାତିରେ ଗଛମୂଳେ ଚଟେଇ କୁଡ଼ିଆ କରି ଶୋଇଲେ ।

ଅନ୍ୟ ପ୍ରଦେଶରେ ବୋହୂଝିଅ ପରଦା ଛାଡ଼ି ଆସି ମଦଦୋକାନ ଆଗରେ ପିକେଟିଂ କଲେ । କେହି କେହି ଗାନ୍ଧିଜୀଙ୍କୁ କହିଲେ ମଦଦୋକାନରେ ମାତାଲମାନଙ୍କର କାଣ୍ଡଜ୍ଞାନ ନ ଥାଏ । ସେଠାକୁ ଭଉଣୀମାନେ ଯିବା ଠିକ୍ ହେବ ନାହିଁ । ଗାନ୍ଧିଜୀ କହିଲେ ଯେଉଁଠି ଘୋର ଅନ୍ଧାର ସେଇଠି ଆଲୁଅ ବେଶୀ ଦରକାର । ଭଉଣୀମାନଙ୍କ ପାଖରେ ହିଁ ସେ ପୁଣ୍ୟାଲୋକ ଓ ପବିତ୍ରତା ରହିଛି । ସେହିମାନେ ଏ କାମ କରି ପାରିବେ । ଏଥିରେ ଉତ୍ସାହିତ ହୋଇ ଭଉଣୀମାନେ ହଜାର ସଂଖ୍ୟାରେ ବିଦେଶୀ ଲୁଗା ଦୋକାନରେ, ମଦ ଦୋକାନରେ ପିକେଟିଂ ଆରମ୍ଭ କଲେ । କେବଳ ଦିଲ୍ଲୀ ସହରରେ ୧୬୦୦ ମହିଳା

ଏଥିପାଇଁ ଗିରଫ ହୋଇଥିଲେ । ବିହାର ପ୍ରଦେଶରେ ଜଣେ ଓକିଲ ନବଲ କିଶୋରଙ୍କୀଙ୍କ ସ୍ତ୍ରୀ ଘରକଣରେ ଥାଇ ସତ୍ୟାଗ୍ରହ ଆନ୍ଦୋଳନ କଥା ଜାଣିଲେ । ସେ ତାଙ୍କ ସ୍ୱାମୀଙ୍କୁ କହିଲେ - ତୁମେ ମଧ୍ୟ ଦେଶର ସ୍ୱାଧୀନତା ପାଇଁ ଜେଲ୍ ଗଲେ ହୁଅନ୍ତା । ସ୍ୱାମୀ କହିଲେ, ମୋ ହାତରେ ଅତି ଜଟିଳ ମୋକଦ୍ଦମା ଅଛି । ତାହା ନିଷ୍ପତ୍ତି ହୋଇଗଲେ ଯିବି । ଏହିପରି ଟାଳଟୁଳରେ ଦୁଇମାସ କଟିଗଲା । ସ୍ତ୍ରୀ ଦିନେ ଓକିଲ ସ୍ୱାମୀଙ୍କୁ କହିଲେ- ମୁଁ ବୁଝିଲିଣି ତୁମେ ଜେଲ ଯିବାକୁ ଡ଼ରୁଛ । ତୁମେ ଥାଅ, ମୁଁ ଯାଉଛି । ସେ ମଦ ଦୋକାନରେ ପିକେଟିଂ କରି ଗିରଫ ହୋଇ ଦଣ୍ଡ ପାଇ ହଜାରିବାଗ୍ ଜେଲ୍‌ରେ ରହିଲେ । ଏହିପରି ଅସଂଖ୍ୟ ଘଟଣା ଘଟିଲା । କରାଚୀ ସହରରେ ଗୋଟିଏ ସିନ୍ଧୀଝିଅ ମଦଦୋକାନ ଆଗରେ ଛିଡ଼ା ହୋଇ ମଦ୍ୟପଙ୍କୁ ମଦ ନ ଖାଇବା ପାଇଁ ବୁଝାଉଥିଲା । ଜଣେ ପୁରୁଷ ଲୋକ ସେ ଝିଅକୁ କହିଲେ - ତୁମେ ଯଦି ତୁମ ମୁଖ ଚୁମ୍ବନ କରିବା ପାଇଁ ମୋତେ ସୁଯୋଗ ଦେବ, ତେବେ ମୁଁ ମଦ ଛାଡ଼ିଦେବି । ଝିଅଟି ତିଳେ ଦ୍ୱିଧା ନ କରି କହିଲା, ମୋ ସା'ନ୍ତ ବାପା, ଅଜା ତ ମୋ ମୁହଁରେ କେତେ ଚୁମା ଦିଅନ୍ତି । ତୁମେ ଯଦି ମୋ ମୁଖ ଚୁମ୍ବନ କଲେ ମଦ ଛାଡ଼ିଦେଇ ନିଜର ଓ ଦେଶର କଲ୍ୟାଣ କରିବ ଅଜା ! ତେବେ ଚୁମ୍ବନ କର । ଲୋକଟି ମୁହଁ ତଳକୁ ପୋତି ଚାଲିଗଲା ।

ବିଦେଶୀ ଲୁଗା ଦୋକାନରେ ମଧ୍ୟ ଭଉଣୀମାନେ ପିକେଟିଂ କଲେ । କଟକରେ ମାଳତୀ ଚୌଧୁରୀ, କିରଣବାଳା ସେନ୍, ବୀଣାପାଣି ଦେବୀ, ରମାଦେବୀ ପ୍ରଥମେ ପିକେଟିଂ ଆରମ୍ଭ କଲେ । ନୟାସଡ଼କର ଲୁଗା ବ୍ୟବସାୟୀମାନଙ୍କୁ ବିଲାତୀ ଲୁଗା ଓ ରାଜନନ୍ଦଗାଓଁ ଲୁଗାକଳ ପରି ଗୋରା କଳମାଲିକଙ୍କ କଳଲୁଗା ଜଉମୁଦ ଦେଇ ମାଲ ଗୋଦାମରେ ରଖିବା ପାଇଁ ଅନୁରୋଧ କରାଗଲା । ସେମାନେ ତାହା କରିବାକୁ ସମ୍ମତ ହେଲେ । କିନ୍ତୁ ସରକାରଙ୍କୁ ଏହା ବାଧିଲା । ମ୍ୟାଜିଷ୍ଟ୍ରେଟ୍ ମାରଉଡ୍ ସାହେବ ସେମାନଙ୍କୁ ଡ଼କେଇ ନେଇ କହିଲେ - ଲୁଗା ଜଉମୁଦ ଦେଇ ରଖି ବ୍ୟବସାୟ ଯଦି କରି ନ ପାରିବ, ତେବେ ଆମେ ଅଛୁ କ'ଣ ପାଇଁ ? ତୁମେ ଲୁଗା ବିକ୍ରୀ କର । କେହି ବାଧା ଦେଲେ ଆମେ ଅଛୁ । ଫଳରେ ବ୍ୟବସାୟୀମାନେ ଲୁଗା ବିକିବା ଆରମ୍ଭ କଲେ । ସେ ଯୁଗରେ କଟକରେ ଗୋଟିକିଆ ବଳଦ ଗାଡ଼ିରେ ମାଲଗୋଦାମରୁ ନୟାସଡ଼କକୁ ଲୁଗା ଗାଣ୍ଠି ବୁହା ହେଉଥିଲା । ମାଳତୀ ଚୌଧୁରୀ ପ୍ରମୁଖ ଦିନରେ ଲୁଗା ଦୋକାନରେ ଛିଡ଼ା ହୋଇ ପିକେଟିଂ କଲେ । ଶଗଡ଼ିଆମାନେ ବେଶୀ ରାତିରେ ଘରକୁ ଫେରୁଥିବାରୁ ଏହି ଭଉଣୀମାନେ ପ୍ରାଣକୃଷ୍ଣ ପଢ଼ିହାରୀ, ପୂର୍ଣ୍ଣଚନ୍ଦ୍ର ବୋଷଙ୍କ ସହ ରାତିରେ ଶଗଡ଼ିଆ ସାହିକୁ ଯାଇ ସେମାନଙ୍କୁ

ବିଦେଶୀ ବର୍ଜନ ତତ୍ତ୍ୱ ବୁଝାଇ ବିଲାତୀ ଲୁଗା ବୋହିବାରୁ ନିବର୍ତ୍ତାଇବାକୁ ଲାଗିଲେ । ବିଲାତୀ ଲୁଗା କାରବାର କମିଗଲା । କିନ୍ତୁ ମହିଳା ପିକେଟ୍‌ରଙ୍କୁ ଗିରଫ କଲେ ଉତ୍ତେଜନା ବଢ଼ିବ ବୋଲି ମାରଉଡ୍ ସାହେବ ମହିଳାମାନଙ୍କୁ ସେତେବେଳେ ଗିରଫ କଲେ ନାହିଁ । ଯେତେବେଳେ ବାନରସେନାମାନେ ପିକେଟିଂ କରିବା ଆରମ୍ଭ କଲେ ସେମାନଙ୍କୁ ଗିରଫ କଲେ, ମାଡ଼ ମାରିଲେ ।

କଟକରେ ବକ୍ସିବଜାର, ବକ୍ସିବଜାର, ତେଲେଙ୍ଗାବଜାର ମଦ ଦୋକାନରେ ପିକେଟିଂ ହେଉଥିଲା । ଏହି କାର୍ଯ୍ୟକ୍ରମରେ ବାନର ସେନାମାନଙ୍କର ସାହସ ଓ ତ୍ୟାଗ ଅବିସ୍ମରଣୀୟ । ସେମାନଙ୍କୁ ହତୋତ୍ସାହିତ କରିବା ପାଇଁ ଗିରଫ କରିନେଇ ବାଙ୍କୀ ସଡ଼କ ପାଖ ବାଘବଣରେ ଛଡ଼ା ହେଲା । ସେମାନଙ୍କ ହାତରେ ବେତମାଡ଼ ଦିଆହେଲା । ମାଙ୍କଡ଼ା ପଥରରେ ତିଆରି ସଡ଼କ ଉପରେ ଘୋଷରା ଓଟରା କରି ଖଣ୍ଡିଆ ଖାବରା କରାଗଲା । ତଥାପି ସେମାନେ ଦବିଲେ ନାହିଁ । ଓଲଟା ବେତମାଡ଼ରେ ହାତ ଫାଟିଲା ବେଳେ ଗୀତ ବୋଲିଲେ –

ତୁମେ ମାର କେତେ ବେତ ମାରିବ
ଦେଶ ଲାଗି ଆମେ ଜୀବନ ଦେଇଛୁ
ତୁମେ କି ଆମକୁ ପାରିବ !
ଆମେ ଡ଼ରୁନାହିଁ ମରଣେ,
ପ୍ରାଣ ଦେଇଅଛୁ ବିଭୂ ଚରଣେ
ତୁମ ଆମ କଥା ତାଙ୍କ ମିସଲରେ
ଦିନେ ତ ବିଚାର ହୋଇବ ।
ତୁମେ ଶୁଣିଥିବ କର୍ଣ୍ଣେ କୋରାନ୍
ଅବା ବେଦ ବାଇବେଲ୍ ପୁରାଣ
ମଦରେ ମୁକତି ଲେଖା ଅଛି କାହିଁ
ଆମକୁ ବୁଝାଇ କହିବ ?

ବେତମାଡ଼ ଖାଇ ଏ ଗୀତ ବୋଲି ବୋଲି ବାନରସେନାମାନେ କଟିରୀରୁ ବାଲୁବଜାର ବାଟେ ସ୍ୱରାଜ୍ୟ ଆଶ୍ରମକୁ ଆସନ୍ତି । ଲୋକେ ସେ ଗୀତ ଶୁଣି ଆଖିରୁ ଲୁହ

ବୁହାନ୍ତି । ବେତମାଡ଼ରେ ସୁଦ୍ଧା ସେମାନେ ଜବତ ନ ହେବାରୁ ବାଧ୍ୟ ହୋଇ ସରକାର ବାନର-ସେନାଙ୍କୁ ବନ୍ଦୀ କଲେ ।

ବିଲାତୀ ଲୁଗା ଦୋକାନରେ ପ୍ରଥମେ ମାଳତୀ ଦେବୀ ପ୍ରଭୃତି ପିକେଟିଂ ଆରମ୍ଭ କଲେ ସିନା, କିନ୍ତୁ ସେମାନେ ଗିରଫ ହୋଇଯିବା ପରେ ବାନରସେନାମାନେ ସେ କାମ ମଧ୍ୟ ସମ୍ଭାଳିଲେ ।



॥ ୧୧ ॥

## ଆନୁସଙ୍ଗିକ କାର୍ଯ୍ୟାବଳୀ

ଲୁଣମରା, ବିଲାତୀ ଲୁଗା ଓ ମଦ ଦୋକାନରେ ପିକେଟିଂ ସାଙ୍ଗକୁ ଖଜଣା ବନ୍ଦ ଆନ୍ଦୋଳନ ମଧ୍ୟ ଚାଲିଥିଲା । ଗୁଜରାଟର ବୋରସାଦରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ ହେବା ଫଳରେ ସରକାର ଗାଁ ମୁଖିଆଙ୍କୁ ଗିରଫ କଲେ । ଗାଁ ଲୋକଙ୍କର ଗୋରୁ ଗାଈ, ବାସନକୁସନ ଆଦି ଚଳନ୍ତି ସମ୍ପତ୍ତି ନେଇଗଲେ । ଘରଡ଼ିହ, ଜମି ଆଦି ଅଚଳନ୍ତି ସମ୍ପତ୍ତିକୁ ନିଲାମ କଲେ । ଲୋକେ ଗାଁ ଓ ଘରଦ୍ୱାର ଛାଡ଼ି ବରୋଦା ରାଜ୍ୟକୁ ଚାଲିଗଲେ, ତଥାପି ଖଜଣା ଦେଲେ ନାହିଁ । କେତେକ, ମହିଳା ସତ୍ୟାଗ୍ରହୀ ସଭା କରି ଲୋକଙ୍କୁ ଖଜଣା ବନ୍ଦ ବିଷୟରେ ବୁଝାଉଥିବା ବେଳେ ସରକାର ସେମାନଙ୍କ ଉପରେ ଲାଠି ଚାଳନା କଲେ । ସେହିପରି କର୍ଣ୍ଣାଟକରେ ମଧ୍ୟ ଖଜଣା ବନ୍ଦ ସତ୍ୟାଗ୍ରହ ଜୋର୍‌ସୋର୍‌ରେ ଚାଲିଥିଲା । ଉତ୍ତର ପ୍ରଦେଶ, ମେଦିନୀପୁର ଓ ମଧ୍ୟପ୍ରଦେଶରେ ମଧ୍ୟ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଓଡ଼ିଶାରେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଆଖପାଖ ତେରଖଣ୍ଡ ଗାଁରେ ନବକୃଷ୍ଣ ଚୌଧୁରୀ ଓ ଗୋକୁଳାନନ୍ଦ ମହାନ୍ତିଙ୍କ ମାର୍ଗଦର୍ଶନରେ ଖଜଣା ବନ୍ଦ ଆନ୍ଦୋଳନ ଆରମ୍ଭ ହୋଇଥିଲା । ମାତ୍ର ମାର୍ଗଦର୍ଶକ ଦୁହେଁ ଗିରଫ ହେବା ପରେ ଆନ୍ଦୋଳନ ଧିମେଇ ଯାଇଥିଲା ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସତ୍ୟାଗ୍ରହୀ ଓ ଅର୍ଥ ସଂଗ୍ରହ କରିବା ପାଇଁ ବିଶିଷ୍ଟ ସତ୍ୟାଗ୍ରହୀମାନେ ବୁଲୁଥାନ୍ତି । ଯେଉଁମାନେ ଭଲ ଜାତୀୟ ସଙ୍ଗୀତ ବୋଲି ବା ଭାଷଣ ଦେଇ ଲୋକଙ୍କୁ ଉଦ୍‌ବୁଦ୍ଧ କରି ପାରୁଥାନ୍ତି, ସେହିମାନେ ଏ କାମ କରନ୍ତି । ଶହୀଦ ନିରଞ୍ଜନ ଘୋଷ, ପ୍ରାଣକୃଷ୍ଣ ପଡ଼ିହାରୀ, କୃପାସିନ୍ଧୁ ହୋତା, ଗୋକୁଳାନନ୍ଦ ମହାନ୍ତି,

ରମାଦେବୀ, ମାଳତୀ ଚୌଧୁରୀ ପ୍ରମୁଖ ଏ କାମରେ ଧୁରନ୍ଧର ଥିଲେ । ଏହି କାମରେ ମଧ୍ୟ ସରକାର ବାଧା ଜନ୍ମାଇ ସେମାନଙ୍କୁ ହରବର କରିବା ଯୋଜନା କରୁଥିଲେ । ଉଦାହରଣ ସ୍ୱରୂପ ଥରେ ରମାଦେବୀ ଓ ମାଳତୀ ଚୌଧୁରୀ ଉପଯୁକ୍ତ କାମରେ ପଟ୍ଟାମୁଣ୍ଡାଇ ଗସ୍ତରେ ଗଲେ । ସେଇଟା ୧୯୩୦ ମସିହା ସେପ୍‌ଟେମ୍ବର ମାସ । ବର୍ଷା ଦିନ । ଦୁହେଁ କେନ୍ଦ୍ରାପଡ଼ାରେ ପହଞ୍ଚିବାରୁ ଏସ୍.ଡ଼ି.ଓ ଶ୍ରୀ ଚାନ୍ଦ ବସ୍ ମାଲିକମାନଙ୍କୁ ଆଦେଶ ଦେଲେ ଯେ ଏ ଦୁହିଁଙ୍କୁ ବସ୍‌ରେ ବସାଇଲେ ଦଣ୍ଡ ଭୋଗିବାକୁ ହେବ । ତେଣୁ ଦୁହେଁ ଚାଲି ଚାଲି କେନ୍ଦ୍ରାପଡ଼ାରୁ ପଟ୍ଟାମୁଣ୍ଡାଇ ଗଲେ । ମେଘ ବରଷୁଥାଏ । ଦୁହେଁ ବଦଳିବା ପାଇଁ ଯେଉଁ ଲୁଗା ନେଇଥିଲେ ତାକୁ କାଖରେ ଯାକିଥାନ୍ତି । ପଟ୍ଟାମୁଣ୍ଡାଇରେ ପହଞ୍ଚିଲା ବେଳକୁ ସଞ୍ଜ ବୁଡ଼ିଗଲା । ଗୋଟିଏ ଚାଳଘରର ତାଟି କବାଟ ଖଡ଼୍‌ଖଡ଼୍ କଲାରୁ ଗୋଟିଏ ବୁଢ଼ୀ ତାଟି କବାଟ ଫିଟାଇଲେ । ଏ ଦୁହେଁ ତାକୁ ଆଶ୍ରୟ ମାଗିବାରୁ ବୁଢ଼ୀ ଦୁହିଁଙ୍କୁ ଘର ଭିତରକୁ ଡ଼ାକି ନେଲେ । ଏହି ସମୟରେ ଆଉ ଜଣେ ଲୋକ ଆସି ସେ ବୁଢ଼ୀଙ୍କୁ କ'ଣ କହିଲେ କେଜାଣି ବୁଢ଼ୀ ଡ଼ିବି ଆଲୁଅରେ ଦୁହିଁଙ୍କ ମୁହଁକୁ ନିରେଖି ଚାହିଁ, ଘରୁ ବାହାରି ଯିବାକୁ କହିଲେ । ଦୁହେଁ ପୁଣି ତିନ୍ତିତିନ୍ତିକା ମାଟିଆ ଗାଁକୁ ଯାଇ ନବକୃଷ୍ଣ ଚୌଧୁରୀଙ୍କର ଜଣେ ସହପାଠୀଙ୍କ ଘରେ ଆଶ୍ରୟ ପାଇବା ଆଶାରେ ତାଙ୍କ ଦ୍ୱାରରେ ପହଞ୍ଚିଲେ । ସେ ମଧ୍ୟ ପୁଲିସ ଭୟରେ ଦୁହିଁଙ୍କୁ ଘରେ ସ୍ଥାନ ଦେଲେ ନାହିଁ । ଅବଶେଷରେ ଗୋଟିଏ ମଠ ବାରଣ୍ଡାରେ ଆଶ୍ରୟ ମିଳିଲା । ଇତିମଧ୍ୟରେ ସେମାନଙ୍କର ପଟ୍ଟାମୁଣ୍ଡାଇ ଆଗମନ ବାର୍ତ୍ତା ତୁଣ୍ଡବାଇଦରେ ପ୍ରସରି ଗଲା । ବଢ଼ିଆ ସଭା ହେଲା, ସତ୍ୟାଗ୍ରହୀ ବାହାରିଲେ, ଅର୍ଥ ସାହାଯ୍ୟ ମଧ୍ୟ ମିଳିଲା । ମଠ ବାରଣ୍ଡାରେ ରାତି କଟେଇ ପରଦିନ ବସ୍‌ରେ ସେମାନେ କଟକ ଫେରିଲେ । ବସ୍ ଉପରୁ ନିଷେଧାଜ୍ଞା ପ୍ରତ୍ୟାହୃତ ହୋଇ ସାରିଥିଲା ।

ବେଣାହାର ବାଲିକୁଦାର ଅନୁଭୂତି ଆଉ ପ୍ରକାରେ । ରମାଦେବୀ ବାଲିସାହି ଦୋଳମଣ୍ଡପ ପାଖରେ ସଭା କଲେ । ସ୍ତ୍ରୀ ଲୋକଟିଏ, ପୁଣି ଓକିଲ ଘରର ବୋହୂ, ମଧୁ ବାରିଷ୍ଟର ଘର ଝିଅ, ପରୀକ୍ଷିତ ଦାସଙ୍କ ଘର ବନ୍ଧୁ ସଭାରେ କେମିତି ଛିଡ଼ା ହୋଇ କହିବ ଦେଖିବା । ଲୋକ ଥାଟପଟାଳି ଭାଙ୍ଗି ପଡ଼ିଲେ । ସଭା ପରେ ସତ୍ୟାଗ୍ରହୀ ବାହାରିଲେ । ସମସ୍ତେ ଟାଣୁଆ ଟାଣୁଆ – ପେସ୍କାର ଚାକିରୀ ଛାଡ଼ି ଆସିଲେ, ହରେକୃଷ୍ଣ ବିଶ୍ୱାଳ, ସ୍କୁଲ ପାଠ ଛାଡ଼ି ଆସିଲେ ବୈକୁଣ୍ଠ ନାଥ ମହାନ୍ତି, ବୀରବର ଦାସ, ଗୋବିନ୍ଦ ଦାସ, ନାରାୟଣ ପ୍ରସାଦ ଦାସ, ବୀର କିଶୋର ଦାସ, ଆହୁରି କେତେ – ଜାଣିବେ

ଗୋଟାଏ ବାଲିକୁଦା ରେଜିମେଣ୍ଟ । ମହିଳାମାନେ ହାତରୁ ସୁନାବାଲା, ବେକରୁ ସୁନା ହାର ଠାରୁ ଆରମ୍ଭ କରି ନାନାପ୍ରକାର ସୁନା ଗହଣା ଦାନ ଦେଲେ । ରୂପା ଗହଣାକୁ ଝଙ୍କାରେ ପୂରେଇ ରଖିବାକୁ ପଡ଼ିଲା । ନିଶାମଣି ଦେବୀ ଅଳାଭୋଳ ଗାଁରୁ ଗୋଟିଏ ମହିଳା ଶୋଭାଯାତ୍ରାରେ ବାଲିକୁଦାକୁ ଆସି ରମାଦେବୀଙ୍କୁ ସମ୍ବର୍ଦ୍ଧନା ଦେଲେ । ବିରାଟ ମହିଳା ସଭା ହେଲା ।

ସରକାର ପ୍ରେସ୍ ଅର୍ଡ଼ିନାନ୍‌ସ ଜାରି କଲାରୁ ଆଶା ଓ ସମାଜର ସମ୍ପାଦକୀୟରେ ପନିପରିବା ଦର ଲେଖା ହେଲା ପରିହାସରେ । 'ସମାଜ' କାଗଜ ଆନ୍ଦୋଳନର ମୁଖପତ୍ର ଥିଲା କହିଲେ ଚଳେ । ୬.୪.୩୦ ତାରିଖରେ ସମାଜର ଦୈନିକ ସଂସ୍କରଣ ପ୍ରକାଶ ପାଇଲା । ନିମଚଉଡ଼ି ଛକରୁ ସମାଜ ସନ୍ଧ୍ୟାବେଳେ ପ୍ରେସ୍‌ରୁ ବାହାରିବା ମାତ୍ରେ ଉତ୍କଳ ମଲ୍ଲ, ଉଛବ ପ୍ରଧାନ ମୁଖ୍ୟ ଶିରୋନାମାଗୁଡ଼ିକୁ ଉଚ୍ଚ କଣ୍ଠରେ ଡ଼ାକି ଡ଼ାକି 'ସମାଜ' ବିକନ୍ତି । ସମ୍ପାଦକୀୟରେ ରାଧାନାଥ ବାବୁଙ୍କ ଶୈଳୀ ଜନମନ ହରଣ କରୁଥାଏ । ଆଖର ଅର୍ଡ଼ିନାନ୍‌ସ ଯୋଗୁ 'ସମାଜ' ବନ୍ଦ ହୋଇଗଲା । ଆନ୍ଦୋଳନ ଖବର ତ ଆଉ ଖବର କାଗଜରେ ବାହାରିବ ନାହିଁ ।

ସାଇକ୍ଲୋଷ୍ଟାଇଲରେ ଛାପା ବୁଲେଟିନ୍ ବାହାରିଲା -''ସମ୍ବାଦ'' । ସାଧାରଣତଃ ରାଧାନାଥ ବାବୁ(ରଥ) ନୀଳମଣି (ପ୍ରଧାନ)ବାବୁ ବିଷୟବସ୍ତୁ ପ୍ରସ୍ତୁତ କରନ୍ତି । ନୀଳମଣି ବାବୁ, ବଡ଼ଚଣା ଶଶୀଭୂଷଣ ଦାସ କୁଷ୍ପୁର ଘନ ସାହୁ, ଭ୍ରମର ରାଉତଙ୍କ ହସ୍ତାକ୍ଷର ସୁନ୍ଦର । ସେମାନେ ଷ୍ଟେନ୍‌ସିଲ୍ ପେପର୍‌ରେ ଲେଖନ୍ତି । ମନମୋହନ ଚୌଧୁରୀ, ସୁଧାଂଶୁ ମୈତ୍ର ମୁଦ୍ରାକର । ଆମେ ବାକିତକ କାଳି ରୋଲର ଗଡ଼ଉ, ବୁଲେଟିନ୍ ବାଣ୍ଟୁ, ଧରା ପଡ଼ିଲେ ଜେଲ ଯାତ୍ରା ଅବଶ୍ୟମ୍ଭାବୀ । ସେଥିପାଇଁ ଆମ ପର୍ବପର୍ବାଣୀ - ଗାନ୍ଧୀ ଜୟନ୍ତୀ, ତିଳକ ପୁଣ୍ୟତିଥି, ଜାଲିଆନୱାଲା ଦିବସ, ଦାଣ୍ଡୀ-ଯାତ୍ରା ଦିବସ ଆଦିରେ ବୁଲେଟିନ୍ ବାଣ୍ଟି ବା ସଭା କରି ଅଥବା ବେଆଇନ ଲୁଣ ବିକ୍ରୀ କରି କିମ୍ବା ଜାତୀୟ ପତାକା ସରକାରୀ ଦପ୍ତର ଉପରେ ଉଡ଼ାଇ ଗିରଫ ହୋଇ ଜେଲ ଯିବାଟା ଥିଲା ଗୋଟାଏ ବିଶେଷ କାର୍ଯ୍ୟକ୍ରମ ।

ପୁଲିସ୍ ସାଇକ୍ଲୋଷ୍ଟାଇଲ ମେସିନ୍‌ଟି ଖୋଜି ଜବତ କରିବା ପାଇଁ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରନ୍ତି । ଗୋପବନ୍ଧୁ ଚୌଧୁରୀଙ୍କ ଘର, ରାଜକୃଷ୍ଣ ବୋଷଙ୍କ ଘର, ସୁଧୀର ଘୋଷ ବାପାଙ୍କ ଘର ଘନ ଘନ ଖାନତଲାସ ହୁଏ । ସାଇକ୍ଲୋଷ୍ଟାଇଲ୍ ମେସିନ୍‌ଟି ନିରାପଦରେ ସ୍ଥାନୁ ସ୍ଥାନାନ୍ତରେ ଭ୍ରମଣ କରୁଥାଏ । ବୁଲେଟିନ୍ ବାଣ୍ଟିବା ଓ ବିଭିନ୍ନ

ଅଞ୍ଚଳକୁ ପଠାଇବା ପାଇଁ ନାନା କୌଶଳ କରିବାକୁ ପଡ଼େ । ବିଶ୍ୱନାଥ ଗଳିର ରାଧାମଣି ଅପା ସହରରେ ଦୁଧ ଦଧି ବୁଲେଇ ବିକନ୍ତି । ତାଙ୍କ ପସରାରେ ବୁଲେଟିନ୍ ରହେ । ଯେଉଁ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଯେଉଁଦିନ ବୁଲେଟିନ୍ ବାଣ୍ଟିବା ସ୍ଥିର ହୋଇଥାଏ, ଆମେ ବାଣ୍ଟିଲାବାଲା ସେଠାରେ ପୂର୍ବରୁ ସ୍ଥିର ହୋଇଥିବା ସ୍ଥାନରେ ରହୁ । ରାଧାମଣି ଅପା ସେଠାରେ ପହଞ୍ଚିଯାଆନ୍ତି । ଏକପ୍ରକାର ଅଭିସାର ବ୍ୟାପାର ।

କଟକରେ ସେ ସମୟରେ ଘୋଡ଼ାଗାଡି ଥିଲା ମୁଖ୍ୟ ଯାନ । ନଈ ସେପାରିରୁ ଘାସବାଲା ଦଳଦଳ ହୋଇ ଘାସ ନେଇ କଟକ ଆସନ୍ତି । ତାଙ୍କ ଘାସ ଟୋକେଇରେ ବୁଲେଟିନ୍ ଚାଲାଣ ଯାଏ । ଏହି ବୁଲେଟିନ୍ ଜ୍ୱାଳାରେ ଅସ୍ଥିର ହୋଇ ଭାରତର ବଡ଼ଲାଟ ଥରେ କହିଲେ - ''ଏଗୁଡ଼ା ବୁଲେଟିନ୍ ନୁହେଁ, ବୁଲେଟ୍ ।''

ଗୁପ୍ତଚରମାନଙ୍କୁ ଓ ଥାନାରେ ବୁଲେଟିନ୍ ଯୋଗାଇବାକୁ ପଡ଼ିବ । ସେମାନେ ବାନରସେନାଙ୍କଠାରୁ ବୁଲେଟିନ୍ କିଣି ନିଅନ୍ତି । ମୂଲ୍ୟ ଦୁଇପଇସା । କିନ୍ତୁ ସେମାନେ ଚାରିପଇସା ଦେଇ ବୁଲେଟିନ କିଣୁଥିଲେ । ନ ହେଲେ ସେ ଅକର୍ମଣ୍ୟ ପ୍ରମାଣିତ ହୋଇ ଦାନା ଗଣ୍ଡାକ ହରେଇବେ । କାଠଯୋଡ଼ି କୂଳରେ ସଲିମ୍ ଓ ହାତୀ ନାମରେ ଦୁଇଜଣ ଗୁପ୍ତଚର ପାଳିକରି ବସନ୍ତି । କାରଣ ଚୌଧୁରୀ ଘରଟା ଭାରି ବିପଜ୍ଜନକ ସ୍ଥାନ । ସେ ଘରୁ କେହି ପଦାକୁ ବାହାରିଲେ ତାଙ୍କ ପିଛା ଧରନ୍ତି । ଦିନେ ରାତିରେ କାଠଯୋଡ଼ି କୂଳରେ ଟିକି ଗୋଲକ ମିଶ୍ରର ପାଟି ଶୁଭିଲା - ସେ କାହାକୁ ଧମକାଉଛି । ତା' ପାଟି ଶୁଣି ଆମେ ସବୁ ନଈକୂଳକୁ ଯାଇ ଦେଖିଲୁ, ସଲୀମ ନଈବନ୍ଧରେ ବସି ମୁରୁକିହସା ଦେଉଛନ୍ତି । ଗୋଲକ ତାକୁ ଧମକଉଛି - ''ତୁମ ଉପରେ ଏତେ ପଇସା ବାକି ପଡ଼ିଲାଣି । ମୁଁ ଆଉ ଗଳିରେ 'ସଂବାଦ' ବିକିବି ନାହିଁ । ଏଇକ୍ଷଣି ମୋ ବାକି ପଇସା ଛିଣ୍ଡାଇ ଦିଅ । ନ ହେଲେ ତୁମକୁ କାଠଯୋଡ଼ି ବନ୍ଧ ତଳକୁ ପେଲିଦେବି ।'' ସଲୀମଙ୍କ ଉପରେ ତିନି ଚାରିଖଣ୍ଡ ବୁଲେଟିନ୍‌ର ଦାମ ବାକିଥିବାରୁ ଗୋଲକର ଏ ତମ୍ବି । ସଲୀମ ପଞ୍ଝୁହତା ମର୍ଦ୍ଦ, ଗୋଲକ ତାଙ୍କ ଆଗରେ ବାମନ - ବୟସ ଦଶ ଏଗାର ହେବ । ତହିଁକୁ ତା'ର ଏପରି ତୋଡ଼ । ସଲୀମ ଗୋଲକକୁ ହସରେ ଉଡ଼େଇଦେବା ମତଲବରେ ଥିବା ମଧ୍ୟ ସମ୍ଭବ, କାରଣ ଏ ପଇସାଟା ତାଙ୍କ ଅଣ୍ଟିରୁ ଦେବାକୁ ପଡ଼େ । ଯାହାହେଉ, ଆମ ମଧ୍ୟସ୍ଥତାରେ ପଇସାପତ୍ର ଅଡୁଆ ତୁଟିଲା ।

ଜେଲ୍ ଭିତରକୁ ମଧ୍ୟ ବୁଲେଟିନ୍ ପଠାଯାଏ । ଜେଲ୍‌ରୁ ମଧ୍ୟ 'ସମ୍ବାଦ' ପାଇଁ ବିଷୟବସ୍ତୁ 'ସମ୍ବାଦ'ରେ ଛାପା ହେବାକୁ ଆସେ । ଏହି ପ୍ରଣାଳୀର ନାମ ଥିଲା 'ଟିକେଡ଼ମ୍' ।

ନିଖିଳ ଭାରତ କଂଗ୍ରେସ କମିଟିର ନିର୍ଦ୍ଦେଶନାମାଗୁଡ଼ିକ ମଧ୍ୟ ଏହିପରି ନାନା ଉପାୟରେ ପଠାଯାଉଥିଲା ।

ଯେଉଁଦିନ କୌଣସି ବିଶେଷ କାର୍ଯ୍ୟକ୍ରମ ଉପଲକ୍ଷେ ସଭା, ଶୋଭାଯାତ୍ରା ଆଦି କରି ଗିରଫ ହେବା ସ୍ଥିର ହୋଇଥାଏ, ସେଦିନ ଜାତୀୟ ପତାକା ଧରି ଶୋଭାଯାତ୍ରା କରି ବା ବୁଲେଟିନ୍ ଖୋଲାଖୋଲି ବାଣ୍ଟି କରି ସତ୍ୟାଗ୍ରହୀ ଗିରଫ ହୁଅନ୍ତି ।



॥ ୧୨ ॥

## ଆନୁସଂଗିକ କାର୍ଯ୍ୟକ୍ରମ

ସରକାର ଖଣ୍ଡିଏ ପୁସ୍ତିକା ପ୍ରକାଶ କଲେ 'ସ୍ୱଚ୍ଛଦର୍ପଣ' । ହଳଦିଆ ମଲାଟ ଉପରେ ବାଘ ବକ୍ରୀ ଏକା ଘାଟରେ ପାଣି ପିଇବା ଚିତ୍ରଟିଏ ଥାଏ । ସେଥିରେ ସତ୍ୟାଗ୍ରହର ଅପକାରିତା ଓ ସରକାରଙ୍କ ସଦ୍‌ଗୁଣାବଳୀ ପଦ୍ୟାକାରରେ ବର୍ଣ୍ଣିତ ହୋଇଥାଏ । ଏହାର ପ୍ରତିବାଦ କରିବା ପାଇଁ ରାଧାନାଥ ବାବୁ (ରଥ) ବ୍ୟଙ୍ଗାତ୍ମକ ନକଲ ପଦ୍ୟରେ ରଚନା କଲେ । ବିନୋଦ କାନୁନ୍‌ଗୋ ତାକୁ ସଭା ସମିତିରେ ବୋଲି ଖୁବ୍ ହାସ୍ୟରସ ସୃଷ୍ଟି କଲେ । ଉଦାହରଣସ୍ୱରୂପ କେତୋଟି ପଦ୍ୟ ହେଲା-

ସ୍ୱଚ୍ଛଦର୍ପଣ

''ଆଇନ ଅମାନ୍ୟ ଅଟେ ମହାପାପ  
ଯେ କରେ ସେ ପାପୀ ତା'ର ସର୍ବନାଶ  
ଅଧୋଗତି ତା'ର ହୋଇବ ନିଶ୍ଚୟ  
ନରକରେ ପଡ଼ି ଯନ୍ତ୍ରଣା ଲଭିବ ।''

ରାଧାନାଥ ବାବୁ -

''ଏ ଆଇନ ଗୋରା ସରକାର କଲେ  
ମନୁ ସଂହିତାକୁ ମୋଡ଼ି ଫିଙ୍ଗିଦେଲେ  
ଯେଣୁ ମନୁ ଥିଲେ ଅସଭ୍ୟ ସ୍ୱାଧୀନ  
ଏ ଅମଳେ ହେଲୁ ସଭ୍ୟ ପରାଧୀନ !''

ସ୍ୱଚ୍ଛଦର୍ପଣ

''ଧନ୍ୟ ସରକାର, ଧନ୍ୟ ତା' ବିଚାର
କେଡ଼େ ନ୍ୟାୟବନ୍ତ ଜଜ୍ କିଲଟର ।''

ରାଧାନାଥ ବାବୁ -

''ନ ହେଲେ କି ଭାଇ ଗାନ୍ଧୀ ମୋତିଲାଲ
କିଅଲରେ ରଖି ଛାଡ଼ିଦ୍ୟନ୍ତେ ଚୋର !''

ସରକାରଙ୍କ ପକ୍ଷରୁ ବିଶିଷ୍ଟ ଉତ୍କଳୀୟଙ୍କ ସଂପାଦନାରେ 'ସତ୍ୟ ସମାଚାର' ନାମକ ପତ୍ରିକା ମଧ୍ୟ ବାହାରିଲା । ତାହାର ଜବାବ୍ ଦିଆଯାଉଥିଲା ସଭାସମିତି ଓ ବୁଲେଟିନ୍ ମାରଫତରେ ।

ଆଉ ଗୋଟିଏ ଅସ୍ତ୍ର ଥିଲା ଜାତୀୟ ସଙ୍ଗୀତ । ଜାତୀୟ କବି ବୀରକିଶୋର ଦାସ ଗୀତ ରଚନା କରନ୍ତି, ବୋଲି ପାରନ୍ତି ନାହିଁ । ବାଞ୍ଛାନିଧିବାବୁ ସଂଗୀତ ରଚନା ଓ ସ୍ୱର ସଂଯୋଜନା କରିପାରନ୍ତି । ଅନେକ ସତ୍ୟାଗ୍ରହୀ ଏପରି ଜାତୀୟ ସଂଗୀତ ବୋଲୁଥିଲେ ଯେ ଲୋକେ ଅନୁପ୍ରାଣିତ ହୋଇ ଆନ୍ଦୋଳନରେ ମିଶି ଯାଉଥିଲେ । ବାଲିକୁଦା ଗୋବିନ୍ଦ ଦାସ, ଚିକଣା ବୈଦ୍ୟନାଥ ଦାସ, ଅଦ୍ୱୈତ ବଲ୍ଲଭ ରାୟ, ହରେକୃଷ୍ଣ ବିଶ୍ୱାଳ ପ୍ରମୁଖ ଏହି ଶ୍ରେଣୀର ଗାୟକ ଥିଲେ । ମଣି ସେନ୍ 'କାରୀର୍ ଔର ଲୌହ କପାଟ' ବୋଲି ୧୨୪(କ)ରେ ଗିରଫ ହେଲେ । ହରେକୃଷ୍ଣ ବିଶ୍ୱାଳ ''ଡ଼ରିବାର ଯିଏ ଡ଼ରୁଥାନ୍ତୁ ସିଏ ଆମେ ମରିବାର ହେଲେ ମରିବା'' ବୋଲି ଜେଲ୍‌ଦଣ୍ଡ ଭୋଗିଲେ । ଶହୀଦ୍ ନିରଞ୍ଜନ ଘୋଷ (ଜମାଲପୁର)'ଅରି ଫେରି ନାହିଁ' ଗୀତର ''ଭକତ କେ ଅଛ ଦେବୀ ପୂଜା କର ରକତ ମନ୍ଦାର ଢ଼ାଳି ଦେଇ, ତରୁଣ କେ ଅଛ ମରଣକୁ ଦଳି ଦେବତା ପରାଏ ଉଠଚେଇଁ'' ବୋଲିଲେ ଶୁଣିବା ଲୋକ ଗୁଳି ଆଗରେ ଛାତି ପତେଇ ଦେବ । ନିରଞ୍ଜନ ବାବୁଙ୍କ ନାମରେ ୱାରେଣ୍ଟ ବାହାରିଲା । ସେ ପ୍ରଚାର କାମରେ ଜଗତ୍‌ସିଂହପୁର ଅଞ୍ଚଳକୁ ଯାଇ ରାମବାବୁ ନାମରେ ଗାଆଁ ଗାଆଁ ବୁଲି ସଭା କଲେ, ପିଲାଙ୍କୁ ଜାତୀୟ ସଙ୍ଗୀତ ଶିଖାଇଲେ । ପିଲାଏ ଗାଁ ଦାଣ୍ଡରେ ବୋଲିଲେ -

''ସହଜେ କି ଆମେ ଛାଡ଼ିବୁ ଭାଇ !
ଏ ପିଣ୍ଡରେ ପରାଣ ଥିବାଯାଏ
ଆମେ ସରକାର ସଙ୍ଗେ ଲଢ଼ିବୁ ।

ଆମେ କାଟିଅଛୁ ଚାରିଦଉଡ଼ି,
ଘରକୁ ନଯିବୁ ବାହୁଡ଼ି
ଆମେ ଜୀବ ଥିବା ଯାଏ ଲଢ଼ିବୁ ।''

କୁଆଡୁ କିଛି ନ ଥିବ, ଗାଁ ଦାଣ୍ଡରେ ହଠାତ୍ ଗୋଟାଏ ଶୋଭାଯାତ୍ରା ବାହାରି ପଡ଼ିବ । ପିଲାଏ ବୋଲୁଥିବେ-

''ଭେଦି ଅରିଦୁର୍ଗ ଚାଲଭାଇ ଆଜି
ବଜାଇ ବିଜୟ ବାଦ୍ୟ
ପରାଧୀନ କିଏ କରିବ ଆମକୁ
ଜଗତରେ କାର ସାଧ୍ୟ ହେ
ଲୁହା ବାଡ଼ ମଧ୍ୟେ ଛନ୍ଦି,
ଆମ ମନ ତ ନୁହଇ ବନ୍ଦୀ ॥
(ଆମ) ସୁନା ଶରୀରକୁ ଚୂନା କରିବ କେ
ଆମେ ପ୍ରହଲ୍ଲାଦ ବଂଶ
ତ୍ରେତୟାରେ ଆମେ ରାବଣକୁ ମାରି
ଦ୍ୱାପରେ ମାଇଲୁ କଂସ ହେ
ଆମେ ଚଇତନ ଭକ୍ତ,
ଆମେ ସବୁ ସହି ଦେବୁ ରକ୍ତ ହେ ।
ଆମରି ହାତରେ ଜଗତ ମୁକତି
ଆମ ସେନାପତି ଗାନ୍ଧୀ
ଠକଙ୍କ କଥାରେ ଠକନ୍ତେ କି ସେହି
କରିଣ ଠକେଇ ସନ୍ଧି ହେ
ଜୀବନର ଆଶା ଛାଡ଼ି,
ସେତ ଚିପିଛନ୍ତି ତାଙ୍କ ନାଡ଼ି ହେ ।'' ଇତ୍ୟାଦି

ବିଦେଶୀ ବର୍ଜନର ଗୁରୁତ୍ୱ ବୁଝାଇ ବୀରବାବୁ ଗୀତ ଲେଖିଲେ । ଗାଏଁ ଗାଏଁ ସେ

ଗୀତ ବୋଲା ହେଲା –

''ସାରା ବିଲାତରେ ହାହାକାର ଆମେ ପକେଇ ଦେବୁ

ଗୋରା ବେପାରୀଙ୍କୁ ଏପାରି ସେପାରି ନଚେଇ ଦେବୁ

ଆମେ ନ କିଣିବୁ ବିଲାତୀ ଲୁଗା,

ଗୋରୁ ଘୁଷୁରିଙ୍କ ଚରବି ଲଗା

ନିଜ କପା ଲୁଗା ନିଜେ ବୁଣିବୁ ନିଜେ ପିନ୍ଧିବୁ ।

ବିଲାତୀ ମଟର ବିଲାତୀ ପିଙ୍କା

ଘଡ଼ି, ଶୁନ୍ନୁଗାଡ଼ି ଟାଣଇ ଟଙ୍କା

ବିକିରି ତାଙ୍କର କମେଇ ଦେବୁ, କମେଇ ଦେବୁ ।

ଆମେ ନ କିଣିବୁ ବିଲାତୀ ଚିଜ

ଆଉ ନ ଆସିବ ତାଙ୍କ ଜାହାଜ

ତାଙ୍କ ଠକପଣ ଛଡ଼େଇ ଦେବୁ, ଛଡ଼େଇ ଦେବୁ ।

ଆମରି ହାକିମ ଆମ କଚିରୀ

ଆମରି ପୁଲିସ ଅଛନ୍ତି ଘେରି

ତେଲୀ ତେଲ ପରି ମିଶି ତ ଯିବୁ, ମିଶି ତ ଯିବୁ ।'' ଇତ୍ୟାଦି

ଛାତ୍ରମାନଙ୍କ ହୃଦୟକୁ ସ୍ପର୍ଶ କରୁଥିଲା ଗୋଟିଏ ଗୀତର ଯୋଡ଼ିଏ ଧାଡ଼ି –

''ଯୁଦ୍ଧ ଇତିହାସ ହୋଇଲେ ପଠିତ

ଶୁଣି ବଂଶଧର ହୋଇବେ ଲଜ୍ଜିତ

ନରହନ୍ତାର କଂସେଇଶାଳରେ ମୁଁ

ବସି ଲେଖୁଥିଲି ରଚନା ।''

ଏହିପରି ଅସଂଖ୍ୟ ଜାତୀୟ ସଂଗୀତ ସେତେବେଳେ ଜନମନକୁ ଉଦ୍‌ବୁଦ୍ଧ କରୁଥିଲା । ବିଭିନ୍ନ କାର୍ଯ୍ୟକ୍ରମରେ ବିଭିନ୍ନ ଗୀତ – ନୂଆ ନୂଆ ଗୀତ ବୋଲା ହେଉଥାଏ । ବିଲାତୀ ଲୁଗା ପୋଡ଼ା ହେଲାବେଳେ ବୋଲା ହୁଏ–''ଫିଙ୍ଗରେ ଆଜି ପୁଲକ ପରାଣେ ବିଦେଶୀ ବସନ ଭାଇ'' – ସଭାସ୍ଥ ଲୋକେ ଗାମୁଛା ପାଲଟି ନିଆଁକୁ ଲୁଗା ଫିଙ୍ଗି

ଦିଅନ୍ତି । ଲୁଣ ମାରି ଗଲାବେଳେ ବୋଲାହୁଏ "ଆସରେ ଆଜି ଆସ, ଦରିଆ ଦଖଲ କରିଯିବ କିଏ ଆସ ।" ଗାଁ ଗହଳରେ ସଭା କଲା ବେଳର ଗୀତ – "ଆସରେ ଆସରେ ସ୍ୱରାଜ୍ୟ ସୈନିକ ଆସ ବୀରମତେ ମାତି" ଗୋଟାଏ ଗୀତ ଥିଲା, "ମୁଁ ଭାରତ ଯୁବା ଭାଗ୍ୟବାନ୍, ନୁହେଁ ମୁଁ ବୌଦ୍ଧ, ଜୈନ ମଧ୍ୟ ନୁହେଁ, ହିନ୍ଦୁ ନୁହେଁ ମୁସଲମାନ । ଧରି ଅବତାର ଆସିଅଛି ମୁହିଁ ସାଗର ପରାଏ ସମୁଦାର ହୋଇ, ମୁଁ ହିମଗିରିଠାରୁ ମହିୟାନ୍" ଏ ଗୀତଟି ବୋଲା ହେଲାବେଳେ ଶ୍ରୋତା ମହାଭାରତୀୟ ଭାବନାରେ ବିଭୋର ହୋଇ ଯାଇଥିଲେ । ପ୍ରକୃତରେ ଦେଶ ସେତେବେଳେ ଧର୍ମଭେଦ, ଜାତିଭେଦ ପାଶୋରି ପକେଇଥିଲା ।



॥ ୧୩ ॥

## ପ୍ୟୁନିଟିଭ ଟିକସ-ମାଡ଼-ଲାଠିମାଡ଼

ବାଲେଶ୍ୱର ଜିଲ୍ଲାରେ ଶ୍ରୀଜଂଗ ଗାଁର ଲୋକ ପୁଲିସ ଆଜ୍ଞା ଅମାନ୍ୟ କରିବାରୁ ସେ ଗାଁ ଉପରେ ପ୍ୟୁନିଟିଭ୍ ଟିକସ ବସିଲା । ଜଣେ ମ୍ୟାଜିଷ୍ଟ୍ରେଟ ଓ ପୁଲିସ ସେ ଗାଁରେ ରହିଲେ । ଗାଁ ଲୋକେ ଗାଁ ଛାଡ଼ି ପଳାଉଛନ୍ତି ବୋଲି ଖବର ଆସିଲା । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ଛଡ଼ା ଆଉ କେହି ପଦସ୍ଥ ନିରପେକ୍ଷ ବ୍ୟକ୍ତି ସେଠା ଘଟଣା ଅନୁସନ୍ଧାନ କରିବା ପାଇଁ ପୁଲିସ୍ ଭୟରେ ଭରସିଲେ ନାହିଁ । ରମାଦେବୀ, ମାଳତୀ ଚୌଧୁରୀ ଓ ସୁରେନ୍ଦ୍ର ପଟ୍ଟନାୟକ ବାଲେଶ୍ୱର ଯାଇ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ ଓ ଅନ୍ୟମାନଙ୍କ ସଙ୍ଗେ ପରାମର୍ଶ କରି ଖଣ୍ଡପଡ଼ାରୁ ଚାଲି ଚାଲି ଶ୍ରୀଜଙ୍ଗକୁ ବିଲବାଟରେ ଗଲେ । ସେ ଗାଁରେ ଶ୍ରୀ ଜଗନ୍ନାଥ ମିଶ୍ର ସ୍ପେଶାଲ ମ୍ୟାଜିଷ୍ଟ୍ରେଟ୍‌ରୂପେ ନିଯୁକ୍ତ ହୋଇଥାନ୍ତି । ସମୁଦାୟ ଗାଁ ଶ୍ମଶାନ ପରି ନିସ୍ତବ୍‌ଧ ହୋଇ ରହିଥାଏ । ଗାଁରେ ଜଣେ ଯୁବା ପୁରୁଷ ନ ଥା'ନ୍ତି । ବୋହୂଝିଅ, ପିଲାଛୁଆ ସମସ୍ତେ ବନ୍ଧୁବାନ୍ଧବଙ୍କ ଘରକୁ ଯାଇ ଆଶ୍ରୟ ନେଇଥାନ୍ତି । କେବଳ ବୁଢ଼ାବୁଢ଼ୀ କେତେଜଣ ଘର ଜଗିଥାନ୍ତି । ଏହିମାନଙ୍କଠାରୁ ଘଟଣା ବୁଝିବାକୁ ମାଳତୀ ଚୌଧୁରୀ ପ୍ରମୁଖ ଘର ଘର ବୁଲିଲେ । ପୁରୁଷମାନେ ଗାଁକୁ ଫେରି ଆସି ଦମ୍ଭଧରି ରହିବା ପାଇଁ ସେମାନଙ୍କ ପାଖକୁ ନାନା ଉପାୟରେ ଖବର ପଠାଇଲେ । ଯେଉଁ ଶ୍ରୀଜଙ୍ଗରେ ହଜାର ହଜାର ସ୍ତ୍ରୀପୁରୁଷ ଲବଣ-ସତ୍ୟାଗ୍ରହ କରିଥିଲେ ସେହି ଶ୍ରୀଜଙ୍ଗର ଏ ଅବସ୍ଥା ଦେଖି କିଏ

ବା ବ୍ୟଥିତ ନ ହେବ ? ସେଠାରେ ତ ଖିଆପିଆ ପ୍ରଶ୍ନ ନାହିଁ । ଏ ଦେଖାସାକ୍ଷାତ୍ ଆଦି କାମ ସାରି ଚାଲି ଚାଲି ବାହାନଗା ବଜାର ଷ୍ଟେସନରେ ପହଞ୍ଚିଲା ବେଳକୁ ହଂସା ଉଡ଼ିଲାଣି । ପୁଲିସ ଭୟରେ କଥାପଦେ କହିବାକୁ ଲୋକେ ଡ଼ରୁଛନ୍ତି, ଖାଇବାକୁ ଡ଼ାକିବ କିଏ ? ହଠାତ୍ ଜଣେ ଲୋକ ଏଣିକି ତେଣିକି ଚାହିଁ ସେମାନଙ୍କ ପାଖକୁ ଲାଗିଆସି କହିଲେ ''ଷ୍ଟେସନ ମାଷ୍ଟର କହି ପଠାଇଛନ୍ତି ସେ ତାଙ୍କ ଘର ଛାଡ଼ି ଅନ୍ୟତ୍ର ଚାଲି ଯାଉଛନ୍ତି । ତାଙ୍କ ଘରେ ଚାଉଳ ଡାଲି ଅଛି । ଆପଣମାନେ ସେଠି ରାନ୍ଧି ଖାଇଦିଅନ୍ତୁ ।'' ତିନିହେଁ ଷ୍ଟେସନ ମାଷ୍ଟରଙ୍କ ବସାକୁ ଯାଇ ଦେଖିଲେ ଘର ଠିଆ ମେଲା, ଘରେ କେହି ନାହାନ୍ତି । ହାଣ୍ଡିଶାଳରେ ଅରୁଆ ଚାଉଳ, ଓଉ, ବିଡ଼ାଏ ଡାଲି ଓ ବାସନ ରହିଛି । ସେମାନେ ଭାତ, ଓଉ ଝୋଳ ରାନ୍ଧି ଖାଇ ପ୍ୟାସେଞ୍ଜର ଆସିଲାରୁ କଟକ ଫେରିଲେ । ଦୁଇଜଣ ସ୍ତ୍ରୀଲୋକ ଯେ ପୁଲିସଙ୍କୁ ନ ଡ଼ରି ଶ୍ରୀଜଙ୍ଗରେ ଘର ଘର ବୁଲିଲେ ଗ୍ରାମବାସୀଙ୍କ ଉପରେ ତା'ର ପ୍ରଭାବ ପଡ଼ିଲା ।

ପୁଲିସ ଜୁଲୁମକୁ ହସହସରେ ଉଡ଼େଇ ଦେବାର ଚଳଣି ତ ସେ ସମୟରେ ଚଳୁଥିଲା । ମାତ୍ର ଗୋକୁଳାନନ୍ଦ ମହାନ୍ତି ସେ ବାବଦରେ ଥିଲେ ଯାହାକୁ କହନ୍ତି କଳାବିତ୍ । ଗୋକୁଳୀବାବୁଙ୍କ ନାମରେ ୱାରେଣ୍ଟ ବାହାରିଥାଏ । ସେ ଫ୍ରେଞ୍ଚ୍ ଅଧିକୃତ ଫରୀସୀଡିଙ୍ଗାରେ ରହି ଖଞ୍ଜରେ ଆସି ବାଲେଶ୍ୱରରେ କାମ କରୁଥାନ୍ତି । ପୁଲିସ ସେତେବେଳେ ତାଙ୍କୁ ଖୋଜି ଖୋଜି ନୟାନ୍ତ ହେଉଥାନ୍ତି । ଦିନେ ଜଣେ ପୁଲିସ ତାଙ୍କୁ ଭଣ୍ଡାରୀ ପୋଖରୀ ପାଖରେ ଦେଖି ପକେଇଲେ ସେ ଗୋକୁଳିବାବୁଙ୍କ ପାଖକୁ ଧାଇଁ ଯାଇ ଆଗ ଧକ୍କା ମାରି ତାଙ୍କୁ ତଳେ ପକେଇ ଦେଲେ । ତା'ପରେ ବୋହୂଭାଇ ସଂବୋଧନ କରି ଅଶ୍ରାବ୍ୟ ଗାଳି ସଙ୍ଗେ ଚାଲିଲା ସବୁଟ୍ ଗୋଇଠା ମାଡ଼ । ଗୋଇଠା ମାରି ମାରି ଥକିଯାଇ ପୁଲିସ ଦମ୍ ନେଲାରୁ ଗୋକୁଳୀ ବାବୁ ଗୁରୁଣ୍ଡି ଗୁରୁଣ୍ଡି ଉଠି ହସି ହସି ପୁଲିସକୁ କହିଲେ, ''ଭାଇ ! ପାନ ଅଛି କି ? ଖଣ୍ଡେ ଦେବ ? ଏତେ ମାଡ଼ଗାଳି ଖାଇ ସୁଦ୍ଧା ଗୋକୁଳି ବାବୁ ଯେ ଏପରି ମୁଣ୍ଡ ଥଣ୍ଡା ରଖି ପୁଲିସ ପ୍ରତି ନିଜର ସଦ୍‌ଭାବନା ଦେଖାଇ ପାରିଲେ ଏଇଟା ଆମ ପାଇଁ ଆଦର୍ଶ ହୋଇଗଲା ।

କଟକ ସହରରେ ପ୍ରଥମ ଲାଠିମାଡ଼ ହେଲା ଜବାହର ଦିବସ ଉପଲକ୍ଷ୍ୟେ । ନିଖିଳ ଭାରତ କଂଗ୍ରେସ କମିଟି ୧୯୩୦ ନଭେମ୍ବର ଷୋଳ ତାରିଖଟିକୁ ଜବାହର ଦିବସ ରୂପେ ପାଳନ କରିବା ପାଇଁ ନିର୍ଦ୍ଦେଶ ଦେଲେ । ସେଦିନ କାଠଯୋଡ଼ି ବାଲିରେ ସଭାରେ ସଦ୍ୟ ଜେଲପ୍ରତ୍ୟାଗତ ଗୁଣନିଧି ମହାନ୍ତି ବକ୍ତୃତା ଦେଇ ବସି ପଡ଼ିବା ସ୍ଥିର

ହେଲା । ସେଦିନ ଉପରଓଳି ଗଣେଶଘାଟରେ ସଭା ହେଲା । ଗୁଣନିଧି ବାବୁ ପତାକା ଉତ୍ତୋଳନ କରିବା ସଙ୍ଗେ ସଙ୍ଗେ ଗିରଫ ହେଲେ । ତାଙ୍କ ପରେ ବିନୋଦ କାନୁନଗୋ ବକ୍ତୃତା ଦେବାକୁ ଯାଇ ଗିରଫ ହେଲେ । ତାଙ୍କ ପଛକୁ ଆଉ ଜଣେ, ତାଙ୍କ ପଛକୁ ଆଉ ଜଣେ ଏହିପରି ଛଅଷଠି ଜଣ ସେ ସଭାରେ ଗିରଫ ହେଲେ । ତଥାପି ସଭାରେ ଲୋକ ବସିଥାନ୍ତି । ଡ଼ି.ଏସ୍.ପି. ରଥ ମହାଶୟ ଲାଠି ଚଳେଇବାକୁ ଆଦେଶ ଦେଲେ । ପୁଲିସ ଲୋକଙ୍କୁ ଗାଈଗୋରୁ ପରି ଠେଙ୍ଗାରେ ପିଟି ଅଡ଼େଇ ଅଡ଼େଇ ବନ୍ଧ ଉପରକୁ ଆଣି ସଡ଼କକୁ ଛାଡୁଥାନ୍ତି । ମନମୋହନ ଚୌଧୁରୀଙ୍କ ଠାରେ ସେହିଦିନ ବ୍ରିଟିଶ ଛାଟ ବାଜିଲା ।

କଂଗ୍ରେସ ତ ବେଆଇନ୍ ଘୋଷିତ ହୋଇଥାଏ । ସବୁ କଂଗ୍ରେସ ଅଫିସ୍, ସ୍ୱରାଜ୍ୟ-ଆଶ୍ରମରେ ସରକାରୀ ତାଲା ପଡ଼ିଥାଏ । କଟକରେ ସତ୍ୟାଗ୍ରହୀମାନଙ୍କୁ ପ୍ରାତଃସ୍ମରଣୀୟ ପରବାର ପରିବାର ଜୈନମନ୍ଦିରରେ ସ୍ଥାନ ଦେଇଥାନ୍ତି । ପୁରୀରେ ସିଦ୍ଧ ବକୁଳ ମଠ ପାଖ ତୋଟାରେ ଗୋଟାଏ ବଡ଼ ତାଳପତ୍ର ଛତା ପୋତା ହୋଇ କଂଗ୍ରେସ ଅଫିସ୍ ହୋଇଥାଏ । ବାଲେଶ୍ୱରରେ ଫରାସୀଡ଼ିଙ୍ଗା ହୋଇଥାଏ ଆଶ୍ରୟସ୍ଥଳ । ସାରା ଭାରତରେ ଏହିପରି ସତ୍ୟାଗ୍ରହୀଙ୍କର 'ଭୋଜନଂ ଯତ୍ରତତ୍ର ଶୟନଂ ହଟ୍ଟମନ୍ଦିରେ' ଅବସ୍ଥା । ତହିଁକୁ ନିର୍ଦ୍ଦେଶ ଆସିଲା ୧୯୩୦ ମସିହା କଂଗ୍ରେସ ଅଧିବେଶନ କଲିକତାରେ ଅମୁକ ତାରିଖରେ ଅମୁକ ସମୟରେ ଅମୁକ ସ୍କୋୟାର ନିକଟରେ ହେବ । ଶ୍ରୀମତୀ ନେଲି ସେନଗୁପ୍ତା ଅଧ୍ୟକ୍ଷା ହେବେ । ପ୍ରତିନିଧିମାନେ ନାନା ଆଡ଼େ ଖେଳେଇ ହୋଇ ରହି ନିର୍ଦ୍ଦିଷ୍ଟ ସମୟରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବେ । ପରିଣତି ତ ସର୍ବଜନବିଦିତ । ଯେତେ ଗୋପନରେ ଏ ଆୟୋଜନ କରାଗଲେ ହେଁ ତାହା ସରକାରଙ୍କୁ ଅଛପା ରହିଲା ନାହିଁ । ତେଣୁ ଅଧିକାଂଶ ପ୍ରତିନିଧି ବାଟରୁ ଗିରଫ ହେଲେ । କେବଳ ଅନ୍ତର୍ଯ୍ୟାମୀ ପଣ୍ଡା ମୁଣ୍ଡରେ ଠେକା ଭିଡ଼ି ପୁରୀ ପଣ୍ଡାଙ୍କ ପରି ପିଠିରେ ଗଣ୍ଠିଲି ପକେଇ 'ପୁରୀ' ବୋଲି କହି କହି ଯାଇ ଅଧିବେଶନରେ ଯୋଗ ଦେଲେ ଏବଂ କଲିକତିଆ ଠେଙ୍ଗା ପାହାର ଖାଇ ଓଡ଼ିଶା ଫେରିଲେ ।

ଠଠ

## (୧୪)

## ପଛକଥା

ଏହିପରି ଭାବରେ ଲୁଣମରା, ପିକେଟିଂ, ସଭା, ଶୋଭାଯାତ୍ରା, ବୁଲେଟିନ୍ ବଣ୍ଟା, ଜେଲ ଯାତ୍ରା, ବେତମାଡ଼, ଲାଠି ଚାଳନା ଆଦି କାର୍ଯ୍ୟକ୍ରମ ୧୯୩୦ ମସିହାକୁ ଐତିହାସିକ ପଦମର୍ଯ୍ୟାଦା ଦେଲା । ଭାରତର ସବୁ ଜେଲ ସତ୍ୟାଗ୍ରହୀମାନଙ୍କ ଦଖଲରେ ରହିଲା । ସରକାର ଅସ୍ଥାୟୀ କ୍ୟାମ୍ପ୍ ଜେଲ୍ ସ୍ଥାପନ କଲେ । ଓଡ଼ିଶାର ସତ୍ୟାଗ୍ରହୀ ହଜାରିବାଗ ଜେଲ୍, ଭାଗଲପୁର ଜେଲ, ପାଟନା କ୍ୟାମ୍ପ ଜେଲ୍, ଭେଲୋର ଜେଲ୍‌ର ପାଣି ପବନ ଉପଭୋଗ କଲେ । କିଏ କହିଲେ ବନ୍ଦୀ ସଂଖ୍ୟା ଷାଠିଏ ହଜାର ହେଲା । ପୁଣି କିଏ କହିଲେ ଲକ୍ଷେ ହେଲା । ପ୍ରଜା ଘରଦ୍ୱାର ଛାଡ଼ି ପଳେଇଥିଲେ । ପିଟୁଣୀ ପୁଲିସ ମେଦିନୀପୁର, ଶ୍ରୀଜଙ୍ଗ ଆଦି ଅଞ୍ଚଳରେ ଆତଙ୍କ ସୃଷ୍ଟି କଲେ । କେବଳ ଏପ୍ରିଲ ଓ ମେ ମାସରେ ୧୧୧ ଜଣ ଗୁଳି ଚାଳନାରେ ମୃତ୍ୟୁ ବରଣ କଲେ । ମହିଳାମାନଙ୍କୁ ବନ୍ଦୀ ତ କରାଗଲା, କେତେ ସ୍ଥାନରେ ସେମାନେ ଲାଠି ମାଡ଼ ମଧ୍ୟ ସହିଲେ । ସରକାର ତାଙ୍କ ବାଟରେ ଆନ୍ଦୋଳନକୁ ଦବେଇ ଦେବା ପାଇଁ ଉଦ୍ୟମ କରୁଥାନ୍ତି । ଆନ୍ଦୋଳନ ମଧ୍ୟ ତାହା ଗତିରେ ଚାଲିଥାଏ ଏବଂ ତାହା କ୍ରମେ ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କଲା । ବିଦେଶୀ ସମ୍ବାଦଦାତା ୱେବ୍ ମିଲର୍, ବ୍ରେଲ୍‌ସଫୋର୍ଡ଼ ସାହେବ, ମିଷ୍ଟର ସ୍ଲେକୋମ୍ବ ପ୍ରଭୃତି ଭାରତକୁ ଆସି ଧରାସଣା, ବୋରରାଦ ଆଦିକୁ ଯାଇ ପ୍ରକୃତ ଅବସ୍ଥା ଦେଖିଲେ । ବିଦେଶର ସମ୍ବାଦପତ୍ରମାନଙ୍କରେ ଭାରତର ସତ୍ୟାଗ୍ରହ ଆନ୍ଦୋଳନ ବିଷୟରେ ଚର୍ଚ୍ଚା ଆଲୋଚନା ଆରମ୍ଭ ହେଲା ।

ସମଗ୍ର ବିଶ୍ୱ ସମ୍ମୁଖରେ ଭାରତ ଯେ ତା'ର ଆତ୍ମଶକ୍ତିର ପରିଚୟ ଦେଲା ତାହାର ପୂର୍ବ ପ୍ରସ୍ତୁତି ଆରମ୍ଭ ହୋଇଥିଲା ୧୭୫୭ ମସିହାରୁ । ୧୭୫୭ ମସିହା ଜୁନ ତେଇଶ ତାରିଖ ଦିନ ସକାଳ ଆଠଟାରେ ପଲାସି ରଣାଙ୍ଗନରେ ଯୁଦ୍ଧ ଆରମ୍ଭ ହେଲା । ମଝିରେ ବାରଟାବେଳେ ଅସରାଏ ବର୍ଷା ସିରୋଜୌଦ୍ଦୁଲ୍ଲାଙ୍କ ଅଘୋଡ଼ା ବାରୁଦ ଭଣ୍ଡାରକୁ ତିନ୍ତେଇ ଦେଇଗଲା । ଇଂରେଜଙ୍କ ବାରୁଦ ଉପରେ ଟାର୍‌ପୋଲିନ୍ ଘୋଡ଼ା ହୋଇଥିଲା । ଦିନ ସାଢ଼େ ବାରଟାରେ ନବାବଙ୍କର ପଚାଶ ହଜାର ସୈନ୍ୟ ଇଂରେଜଙ୍କର ମାତ୍ର ଆଠଶହ ଗୋରା ପଲଟନ୍ ଓ ବାଇଶଶହ ଦରମାଖିଆ ସୈନ୍ୟଙ୍କ ପାଖରେ ପରାଜୟ ସ୍ୱୀକାର କଲେ । କର୍ଣ୍ଣେଲ୍ କ୍ଲାଇଭ୍ ବିଜୟ ଲାଭ କଲେ । ସିରାଜଉଦ୍ଦଲା ଫାଶି ଖୁଣ୍ଟରେ ଝୁଲିଲେ । ମିରଜାଫର ଗାଦିରେ ବସି ଇଷ୍ଟଇଣ୍ଡିଆ କମ୍ପାନୀକୁ ଅଙ୍ଗୀକୃତ ଅର୍ଥ ଦେଇ ନ ପାରି ବଙ୍ଗ,

ବିହାର, ଓଡ଼ିଶାକୁ ଇଂରେଜ ବଣିକ ହାତରେ ସମର୍ପି ଦେଲେ । ଅବାଧ ବାଣିଜ୍ୟ ଓ ଲୁଣ୍ଠନ ଆରମ୍ଭ ହେଲା । ଯେଉଁ ବସ୍ତ୍ରଶିଳ୍ପ ଯୋଗୁଁ ଭାରତ ବିଦେଶରେ ଖ୍ୟାତି ଅର୍ଜିଥିଲା, ଇଷ୍ଟଇଣ୍ଡିଆ କମ୍ପାନୀ ତାହାକୁ ଧ୍ୱସ୍ତବିଧ୍ୱସ୍ତ କରିଦେଲେ । କମ୍ପାନୀର ଉତ୍ପୀଡ଼ନ ଦେଖି ଇଂରେଜମାନେ ସୁଦ୍ଧା ଲଜ୍ଜିତ ହେଲେ । ଭାରତରୁ କପା, ରେଶମ ଖାଦ୍ୟଶସ୍ୟ ଏପରିକି ଦଣ୍ଡାରେ ପଡ଼ିଥିବା ହାଡ଼ ସୁଦ୍ଧା ବିଲାତକୁ ରପ୍ତାନି ହେଲା । ବିଲାତରେ ଶିଳ୍ପ ବିପ୍ଳବ ସଂଘଟିତ ହେଲାରୁ ଭାରତ ବଜାର ବିଲାତୀ ପଣ୍ୟଦ୍ରବ୍ୟରେ ଛାଇ ହୋଇଗଲା । ଭାରତରୁ କଞ୍ଚାମାଲ୍ ବୋଝେଇ ହୋଇ ଯାଉଥିବା ଜାହାଜ ବିଲାତୀ ପଣ୍ୟଦ୍ରବ୍ୟ ଓ ଲୁଣ ନେଇ ଫେରୁଥିଲା । ଭାରତରେ ଲୁଣ ମାରିବା ନିଷିଦ୍ଧ ହେଲା । ଭାରତ ଦୀନହୀନ ହେଲା । ସେଥିପାଇଁ ୧୭୫୭ରୁ ୧୮୫୭ ପର୍ଯ୍ୟନ୍ତ ଭାରତର ବିଭିନ୍ନ ଅଞ୍ଚଳରେ ବିଦ୍ରୋହ ଦେଖାଦେଲା । ସନ୍ନ୍ୟାସୀ ବିଦ୍ରୋହ, ଗୁଜରାଟରେ କୋଳି ବିଦ୍ରୋହ, ମହାରାଷ୍ଟ୍ରରେ କୋଲ୍ହାପୁର ବିଦ୍ରୋହ, ଓଡ଼ିଶାରେ ପାଇକ ମେଳି, ମାଲାବାରରେ ମୋପ୍ଲା ବିଦ୍ରୋହ, ବଙ୍ଗଳାରେ ସାନ୍ତାଳ ବିଦ୍ରୋହ ଓ ଆହୁରି ଅନେକଗୁଡ଼ିଏ ବିଦ୍ରୋହ ଏହି ସମୟରେ ହୋଇଥିଲା ।

ପଦ୍ମଫୁଲ ଓ ଚପାଟି (ରୁଟି) ଥିଲା ଏ ବିଦ୍ରୋହର ସଙ୍କେତ । ଗାଁକୁ ଗାଁ ଚପାଟି ପଠାଇ ବିଦ୍ରୋହର ସଂକେତ ଦିଆଯାଇଥିଲା ଏବଂ ସୈନ୍ୟଙ୍କ ପାଖକୁ ପଦ୍ମଫୁଲ ପଠା ହୋଇଥିଲା । ଏ ବିଦ୍ରୋହ ଦମନ କରି ଭାରତୀୟଙ୍କ ମେରୁଦଣ୍ଡ ଭାଙ୍ଗିଦେବା ପାଇଁ ଅକଥନୀୟ ଅତ୍ୟାଚାର କରାଗଲା । ସେନାପତି ନେଲ୍ ସାହେବ ଏଲାହାବାଦର କାନପୁର ଯାଏ ଯାଇଥିବା ସଡ଼କର ଦୁଇ ପାଖରେ ଥିବା ପ୍ରତ୍ୟେକ ଗଛରେ ଗାଁ ଲୋକଙ୍କୁ ଫାଶି ଦେଲେ । ଅସଂଖ୍ୟ ଗାଁ ଧୂଳିସାତ୍ କରାଗଲା ।

ମହାରାଣୀ ଭିକ୍ଟୋରିଆ କମ୍ପାନୀ ଶାସନ ରଦ୍ଦ କରି ଓଆରେନ ହେଷ୍ଟିଙ୍ଗସଙ୍କୁ ଗଭର୍ଣ୍ଣର ଜେନେରାଲ କରି ପଠାଇଲେ । ୧୮୫୮ ମସିହା ନଭେମ୍ବରରେ ମହାରାଣୀ ଏହା ଘୋଷଣା କଲେ । ଓଆରେନ ହେଷ୍ଟିଙ୍ଗସ ହିନ୍ଦୁ ମୁସଲମାନ ଉଭୟ ପ୍ରଜାଙ୍କୁ ଦବେଇ ରଖିଲେ । ବ୍ୟବସାୟ ବାଣିଜ୍ୟ ଭଲ ଚାଲିବା ପାଇଁ ଶୁଳକ ନୀତି କୋହଳ, ରେଳପଥ ସଂପ୍ରସାରଣ, କିରାଣୀ ତିଆରି ପାଇଁ ଇଂରେଜୀ ଶିକ୍ଷାର ବ୍ୟବସ୍ଥା ହେଲା । ତାହା ସଙ୍ଗେ ସଙ୍ଗେ ବଙ୍ଗଳା ବିହାରରେ ନୀଳଚାଷୀ, ମହାରାଷ୍ଟ୍ରରେ ଓ ଆସାମରେ ପ୍ରଜା ଆନ୍ଦୋଳନ ମଧ୍ୟ ଦେଖା ଦେଲା । ଏହାକୁ ଦମନ କରିବାକୁ ସରକାର ଅକଥନୀୟ ଅତ୍ୟାଚାର କଲେ । ଚିନ୍ତାଶୀଳ ଭାରତୀୟମାନେ ଏହି ଅତ୍ୟାଚାରରେ କ୍ଷୁବ୍ଧ ହେଲେ । ଇଂରେଜଙ୍କର

ଭାରତୀୟଙ୍କ ପ୍ରତି ଅବଜ୍ଞା ଭାବ ଓ ଶ୍ରେଷ୍ଠମନ୍ୟତା ମଧ୍ୟ ସେମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି କଲା । ପୁଣି ଇଂରାଜୀ ଶିକ୍ଷା ପାଇଁ ଶିକ୍ଷିତ ଭାରତୀୟ ଫରାସୀ ବିପ୍ଳବ, ଆମେରିକାର ସ୍ୱାଧୀନତାର ଇତିହାସ କଥା ଜାଣିଲେ । ଏହି ଶିକ୍ଷିତ ଗୋଷ୍ଠୀ ସତୀଦାହ, ବଳିପ୍ରଥା, ଅସ୍ପୃଶ୍ୟତା ଆଦିର ବିରୋଧ କଲେ । ଏମାନଙ୍କ ମଧ୍ୟରେ ରାଜା ରାମମୋହନ ରାୟ ଅଗ୍ରଗଣ୍ୟ । ପୁଣି କେତେକ ଭାରତୀୟ ସର୍ବପ୍ରକାର ସାମାଜିକ ପରିବର୍ତ୍ତନର ବିରୋଧ କରୁଥିଲେ । ରାଧାକାନ୍ତ ଦେବ ସେମାନଙ୍କ ନେତା ଥିଲେ । ଏହି ବିରୋଧ ସତ୍ତ୍ୱେ ସଂସ୍କାରପ୍ରେମୀ ଭାରତୀୟମାନେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପ୍ରମୁଖ ସ୍ତ୍ରୀ ଶିକ୍ଷା, ବିଧବା ବିବାହ, ଛାତ୍ରମାନଙ୍କ ମଧ୍ୟରେ ସାଂସ୍କୃତିକ ଚେତନା ଆଣିବା ଆଦି କାର୍ଯ୍ୟ କଲେ । ପୁଣି ରାମକୃଷ୍ଣ ପରମହଂସ ସବୁ ଧର୍ମର ସମାନତା ପ୍ରତିପାଦନ କରି ଭାରତରେ ଧର୍ମଗତ ଭେଦ ଦୂର କରିବାରେ ସହାୟକ ହେଲେ । ତାଙ୍କର ଶିଷ୍ୟ ସ୍ୱାମୀ ବିବେକାନନ୍ଦ ଭାରତର ପ୍ରାଚୀନତମ ସଂସ୍ଥା ସନ୍ନ୍ୟାସକୁ ଦରିଦ୍ର ନାରାୟଣ ସେବାରେ ନିୟୋଜିତ କରି ଏକ ନୂତନ ପରମ୍ପରା ସୃଷ୍ଟି କଲେ । ଧର୍ମାଚରଣ ନାମରେ ମଦ୍ୟପାନ, ବ୍ୟଭିଚାର ଆଦିର ଘୋର ବିରୋଧ କରିବା ସଙ୍ଗେ ସଙ୍ଗେ ସେ ସ୍ତ୍ରୀ ଶିକ୍ଷା ଉପରେ ମଧ୍ୟ ଗୁରୁତ୍ୱ ଦେଲେ । ଭାରତର ଉପନିଷଦଭିତ୍ତିକ ଆଧ୍ୟାତ୍ମିକ ବିଚାର ଓ ସାଧନାକୁ ସେ ହିଁ ପ୍ରଥମେ ପାଶ୍ଚାତ୍ୟ ଜଗତରେ ପ୍ରଚାର କରିଥିଲେ ।

ଏହିପରି ଭାବରେ ମହାଦେବ ଗୋବିନ୍ଦ ରାନାଡ଼େ, ଆର.ଜି. ଭଣ୍ଡାରକାର, ପଣ୍ଡିତା ରମାବାଈ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଆଦି ବହୁ ମନୀଷୀ ଭାରତର ସାଂସ୍କୃତିକ ଆଧ୍ୟାତ୍ମିକ ଉନ୍ନତି ପାଇଁ କାର୍ଯ୍ୟ କଲେ । ଏହି ସମୟରେ ହିଁ ଶ୍ରୀ ବିଷ୍ଣୁ ଶାସ୍ତ୍ରୀ ଚିତାଲୁଙ୍କର, ବାଳଗଙ୍ଗାଧର ତିଳକ ପ୍ରମୁଖ ଇଂରେଜ ଶାସନର ଦୋଷ ତ୍ରୁଟି ମଧ୍ୟ ଦେଖାଇଲେ ।

ଏହି ସମୟରେ ଓଡ଼ିଶା ବଙ୍ଗଳା ଗୋଟିଏ ପ୍ରଦେଶ ଥିଲା । କଲିକତା ରାଜଧାନୀ ଥିଲା । ତେଣୁ ବଙ୍ଗଳାରେ ଇଂରାଜୀ ଶିକ୍ଷା ପ୍ରସାର ଲାଭ କଲା । ଓଡ଼ିଶାର ଉନ୍ନତି ବାବଦରେ ଶାସକବର୍ଗ ଉଦାସୀନ ଥିଲେ । ଏପରିକି ଓଡ଼ିଆ ଭାଷାର ଅସ୍ତିତ୍ୱ ସୁଦ୍ଧା ସ୍ୱୀକୃତ ହେଉ ନ ଥିବାର ଦେଖାଗଲା । ଫକୀରମୋହନ, ଗୌରୀଶଙ୍କର, ମଧୁସୂଦନ ରାଓ, ମଧୁସୂଦନ ଦାସ ଆଦି ମନିଷୀବୃନ୍ଦ ଓଡ଼ିଶାରେ ନବଯୁଗ ଆଣିବା ପାଇଁ ଉଦ୍ୟମ କରିଥିଲେ ।

ମୁସଲମାନମାନେ ୧୯୫୭ ବିପ୍ଳବରେ ଯୋଗ ଦେଇଥିବାରୁ ଇଂରେଜ ସରକାରଙ୍କ କୋପ ଦୃଷ୍ଟି ସେମାନଙ୍କ ଉପରେ ପଡ଼ିଥିଲା । ରକ୍ଷଣଶୀଳ ମୁସଲମାନମାନେ

ମଧ୍ୟ ଇଂରାଜୀ ଶିକ୍ଷାର ବିରୋଧ କରୁଥିଲେ । ସାର୍ ସୈୟଦ ଅହମ୍ମଦ ଖାଁ ଇଂରାଜୀ ଶିକ୍ଷାର ପ୍ରସାର ପାଇଁ କାର୍ଯ୍ୟ କଲେ । ସେ ଇସ୍‌ଲାମ ଧର୍ମରେ ଚଳୁଥିବା ବହୁ ବିବାହ, ଦାସପ୍ରଥା ଆଦିର ବିରୋଧ କଲେ । ହିନ୍ଦୁ ମୁସଲମାନ ମଧ୍ୟରେ ଏକତା ଉପରେ ସେ ଗୁରୁତ୍ୱ ଦେଉଥିଲେ । ସେ ହିନ୍ଦୁ ଶବ୍ଦର ବ୍ୟାଖ୍ୟା କରି କହିଥିଲେ-ହିନ୍ଦୁ ଶବ୍ଦ କୌଣସି ଧର୍ମ ସହିତ ସଂପୃକ୍ତ ନୁହେଁ । ହିନ୍ଦୁସ୍ତାନର ନିବାସୀ ହିଁ ହିନ୍ଦୁ । ମୁଁ ଭାରତରେ ରହିଛି ତଥାପି ମୋତେ ହିନ୍ଦୁ କୁହାଯାଉ ନାହିଁ ଏହାହିଁ ମୋର ଦୁଃଖ ।

ଇଂରେଜ ସରକାର ୧୮୫୭ର ବିପ୍ଳବର ଅଭିଜ୍ଞତାରୁ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରିବା ନୀତି ଧରିଲେ । ଭାରତରେ ରାଜନୈତିକ ଚେତନା ଦେଖା ଦେବା ଫଳରେ ବ୍ରିଟିଶ ଇଣ୍ଡିଆ ଆସୋସିଏସନ୍, ବମ୍ବେ ଆସୋସିଏସନ୍, ମାନ୍ଦ୍ରାଜରେ ମାଡ୍ରାସ ନେଟିଭ ଆସୋସିଏସନ ଆଦି ଗଠିତ ହୋଇ ବିଧାନ ସଭାକୁ ଭାରତୀୟ ପ୍ରତିନିଧି ନିର୍ବାଚନ, ଖଜଣା ଟିକସ ଆଦାୟରେ ସଂସ୍କାର ଆଦି ବିଷୟରେ ଆଲୋଚନା କରାଗଲା । ପୁଣି ଇଂଲଣ୍ଡ ଭାରତକୁ ଅନେକଗୁଡ଼ିଏ ଯୁଦ୍ଧ ସହିତ ସମ୍ପୃକ୍ତ କରିବା ଫଳରେ ଭାରତ ଉପରେ ଆର୍ଥିକ ଚାପ ପଡ଼ିଲା । ଫଳରେ ୧୮୫୭ ବିପ୍ଳବ ପରେ ମଧ୍ୟ ନୀଳଚାଷୀଙ୍କ ଉପରେ ଇଂରେଜମାନଙ୍କ ଅତ୍ୟାଚାର, ଆଇ.ଏ.ଏସ୍ ପରୀକ୍ଷା ଦେବାର ବୟସ କମାଇବା, ଦେଶୀୟ ଭାଷା ପ୍ରେସ ଆକଟ ଆଦି ଘଟଣା ଶିକ୍ଷିତ ଭାରତୀୟଙ୍କ ମଧ୍ୟରେ କ୍ଷୋଭ ଅସନ୍ତୋଷ ସୃଷ୍ଟି କଲା । ପ୍ରେସ ଆଇନ ବିରୁଦ୍ଧରେ ଆନ୍ଦୋଳନ ମଧ୍ୟ ହେଲା ଏବଂ ଏ ଆଇନ ରଦ୍ଦ ହେଲା । ସରକାରଙ୍କର ଅନ୍ୟାୟର ବିରୋଧ କରିବା ପାଇଁ ଗୋଟିଏ ନିଖିଳ ଭାରତୀୟ ଅନୁଷ୍ଠାନ ଗଢ଼ିବା କଥା ଚିନ୍ତା କରାଗଲା । ମହାଜନ ସଭା, ସାର୍ବଜନୀନ ସଭା, ବମ୍ବେ ପ୍ରେସିଡ଼େନ୍‌ସି ଆସୋସିଏସନ୍ ଆଦି ଅନୁଷ୍ଠାନ ମଧ୍ୟ ବିଭିନ୍ନ ପ୍ରଦେଶରେ ସ୍ଥାପିତ ହେଲା ।

ଏଲେନ ଅକ୍ଟାଭିୟାନ ହ୍ୟୁମ୍ ନାମକ ଜଣେ ଇଂରେଜ ଭାରତୀୟମାନଙ୍କୁ ଗୋଟିଏ ଅନୁଷ୍ଠାନ ମାଧ୍ୟମରେ ଏକତ୍ର କରିବା ପାଇଁ ଓ ଇଂଲଣ୍ଡ ଭାରତ ସମ୍ପର୍କକୁ ସୁଦୃଢ଼ କରିବା ପାଇଁ ଗୋଟିଏ ନିଖିଳ ଭାରତୀୟ ଅନୁଷ୍ଠାନ ଗଢ଼ିବାର ଯୋଜନା କଲେ । ଭାରତର ବଡ଼ଲାଟ ଲର୍ଡ଼ ଡଫରିନ ମଧ୍ୟ ତାହାକୁ ଅନୁମୋଦନ କଲେ । ଫଳରେ ୧୮୮୫ ମସିହାରେ ନିଖିଳ ଭାରତ ଜାତୀୟ କଂଗ୍ରେସ ଜନ୍ମଲାଭ କଲା ।

୦୦

॥ ୧୫ ॥

କଂଗ୍ରେସ ଜନ୍ମଲାଭ କଲା ବେଳକୁ ଭାରତରେ ଅମୃତ ବଜାର ପତ୍ରିକା, ହିନ୍ଦୁ, ଇଣ୍ଡିଆନ୍ ମିରର, ଆକବର ଇ ଆମ ଆଦି ପତ୍ରପତ୍ରିକା ମାଧ୍ୟମରେ ଜାତୀୟ ଭାବନା ଦେଶରେ ସଞ୍ଚାରିତ ହେବା ଆରମ୍ଭ କଲାଣି । ପ୍ରେସ ଆଇନ ବିରୁଦ୍ଧରେ ଆନ୍ଦୋଳନ କରି ବାଳଗଙ୍ଗାଧର ତିଲକ ବନ୍ଦୀ ମଧ୍ୟ ହେଲେଣି । ତିଲକ ତାଙ୍କର 'କେଶରୀ' ପତ୍ରିକା ମାଧ୍ୟମରେ ଏବଂ ଶିବାଜୀ ଉତ୍ସବ, ଗଣପତି ପୂଜା ଆଦି ଦ୍ୱାରା ମହାରାଷ୍ଟ୍ର ଓ ବଙ୍ଗ ପ୍ରଦେଶରେ ରାଜନୈତିକ ଚେତନା ଆଣି ଦେଇଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ସରକାର ଏ ପ୍ରକାର ମନୋବୃତ୍ତି ବଢୁଥିବାର ଦେଖି ପ୍ରମାଦ ଗଣିଲେ ଏବଂ ଅଧିକ ରାଜନୈତିକ ଚେତନା-ସମ୍ପନ୍ନ ବଙ୍ଗପ୍ରଦେଶକୁ ଦୁଇଭାଗ କରିଦେବା କଥା ଘୋଷଣା କଲେ( ୧ ୯ ୦ ୫ ) ।

ଏହି ଘୋଷଣା ବଙ୍ଗପ୍ରଦେଶରେ ଘୋର ଉତ୍ତେଜନା ସୃଷ୍ଟି କଲା । ଲୋକେ କଲିକତାରେ ଶୋକ ଦିବସ ପାଳିଲେ । ବଙ୍କିମଚନ୍ଦ୍ରଙ୍କ ବନ୍ଦେମାତରଂ ମନ୍ତ୍ର ଜାତୀୟ ସଂଗୀତରେ ପରିଣତ ହେଲା । ବ୍ରିଟିଶ ଦ୍ରବ୍ୟ ବର୍ଜନ କରିବା ପାଇଁ ସଭାମାନଙ୍କରେ ପ୍ରସ୍ତାବ ଗୃହୀତ ହେଲା । ହଜାର ହଜାର ଯୁବକ ହଳଦିଆ କୁର୍ତ୍ତା ହଳଦିଆ ପଗଡ଼ି ପିନ୍ଧି ବିଲାତି ଜିନିଷ ବିକ୍ରି ହେଉଥିବା ଦୋକାନ ଆଗରେ ପିକେଟିଂ କଲେ । ଧୋବା ବିଲାତି ଲୁଗା କାଚିଲେ ନାହିଁ, ଗୁଡ଼ିଆ ବିଲାତି ଚିନିରେ ମିଠେଇ ତିଆରି କଲେ ନାହିଁ । ସ୍ତ୍ରୀଲୋକେ ବିଲାତି ସିନ୍ଦୂର, ବିଲାତି ଚୁଡ଼ି ପିନ୍ଧିଲେ ନାହିଁ । ଏହାକୁ ସ୍ୱଦେଶୀ ଆନ୍ଦୋଳନ କୁହାଗଲା । ସାରା ଭାରତରେ ଏ ଆନ୍ଦୋଳନ ବ୍ୟାପିଗଲା । ଟାଟା ବିଲାତି ମୂଳଧନ ନେଲେ ନାହିଁ । ଦେଶରେ ଜାହାଜ କମ୍ପାନୀ, ବ୍ୟାଙ୍କ୍, ବୀମା କମ୍ପାନୀ ଗଢ଼ା ହେଲା । ବ୍ରିଟିଶ ଶିକ୍ଷା ସଂସ୍ଥା ବର୍ଜନ କରାଯାଇ ଜାତୀୟ ଶିକ୍ଷାନୁଷ୍ଠାନ ସ୍ଥାପିତ ହେଲା ।

ବ୍ରିଟିଶ ଏ ଆନ୍ଦୋଳନକୁ ଦବେଇବା ପାଇଁ ଜେଲ୍ ଜୋରିମାନା, ଜମି ବାଜ୍ୟାପ୍ତ ଆଦି ବାଟ ଧରିଲେ । କିଙ୍ଗ୍‌ସଫୋର୍ଡ଼ ନାମକ ଜଣେ ଇଂରେଜ ବିଚାରପତି ଚଉଦ ବର୍ଷର ପିଲାକୁ ବେତ୍ରାଘାତ ଦଣ୍ଡ ଦେଲେ । କଂଗ୍ରେସ ଏହି ଆନ୍ଦୋଳନକୁ ସମର୍ଥନ କଲା । ଦାଦାଭାଇ ନଓରୋଜୀ ୧ ୯ ୦ ୬ରେ ସର୍ବ ପ୍ରଥମେ ଘୋଷଣା କଲେ ଯେ 'ସ୍ୱରାଜ୍ୟ' ହିଁ ଆମର ଲକ୍ଷ୍ୟ' 'ବାଲ, ଲାଲ, ପାଲ' ତିନି ନେତାଙ୍କ ସିଂହନାଦରେ ଭାରତ ପ୍ରକମ୍ପିତ ହେଲା ।

ବିଲାତି ଦ୍ରବ୍ୟ ବର୍ଜନ ବାବଦରେ ମତ ଦ୍ୱୈଧ ହୋଇ କଂଗ୍ରେସର ନରମପନ୍ଥୀ ଚରମପନ୍ଥୀ ନାମରେ ଦୁଇଟି ଦଳ ସୃଷ୍ଟି ହେଲା । ସେତିକିବେଳେ ରୁଷ, ଜାପାନ ଯୁଦ୍ଧରେ ଜାପାନ ଜୟଯୁକ୍ତ ହେବାରୁ ତା'ର ପ୍ରଭାବ ଭାରତ ଉପରେ ପଡ଼ିଲା । ତେଣେ କିଙ୍ଗସଫୋର୍ଡ଼ ସାହେବଙ୍କ ବେତମାଡ଼ର ପ୍ରତିଶୋଧ ନେବା ପାଇଁ ଖୁଦୀରାମ ବୋଷ ଓ ପ୍ରଫୁଲ୍ଲ ଚାକୀ ମୋଜାଫରପୁରରେ ତାଙ୍କ ଉପରେ ବୋମା ନିକ୍ଷେପ କରିବାକୁ ଯାଇ ବିଫଳ ହେଲେ । ଖୁଦୀରାମ ଧରା ପଡ଼ି ଫାଶି ପାଇଲେ । ପ୍ରଫୁଲ୍ଲ ଚାକୀ ନିଜେ ନିଜକୁ ଗୁଳି କରି ମୃତ୍ୟୁବରଣ କଲେ । ଭାରତରେ ଅନୁଶୀଳନ ସମିତି, ଯୁଗାନ୍ତର, ମିତ୍ରମେଳା ଆଦି ସନ୍ତ୍ରାସବାଦୀ ଗୁପ୍ତ ଅନୁଷ୍ଠାନ ସୃଷ୍ଟି ହେଲା । ସବରକର, ଅରବିନ୍ଦ, ରାସବିହାରୀ ବୋଷ ଏଥିରେ ନେତୃତ୍ୱ ଦେଲେ ।

ସରକାର ପରିସ୍ଥିତି ହୃଦୟଙ୍ଗମ କରି ବଙ୍ଗ-ଭଙ୍ଗ ରଦ୍ଦ କଲେ । କିନ୍ତୁ ହିନ୍ଦୁ ମୁସଲମାନ ଭେଦ ସୃଷ୍ଟି କରି ଜାତୀୟ ଚେତନାକୁ ଦୁର୍ବଳ କରିଦେବାର ଉଦ୍ୟମ ଚଳାଇଲେ । ଆଗାଖାଁଙ୍କୁ ପ୍ରଭାବିତ କରି ମୁସଲିମ୍ ଲିଗ୍ ଗଠନ କରାଇଲେ । ୧୯୦୯ରେ ମର୍ଲେମିଣ୍ଟୋ ଶାସନ ସଂସ୍କାର ଘୋଷିତ ହେଲା । ଭାରତୀୟମାନେ ଲେଜିସଲେଟିଭ ଆସେମ୍ବ୍ଲି ଓ କାଉନ୍‌ସିଲକୁ ପ୍ରତିନିଧି ନିର୍ବାଚିତ ହୋଇଗଲେ, ମାତ୍ର ଲୋକଙ୍କ ସ୍ୱାଧୀନତା ଲିପ୍‌ସା ବଢ଼ି ଚାଲିଲା । ବଙ୍ଗଭଙ୍ଗ ରଦ୍ଦ ହେବା ପରେ କଲିକତାରୁ ଦିଲ୍ଲୀକୁ ରାଜଧାନୀ ଉଠିଗଲା । ୧୯୧୨ରେ ଦିଲ୍ଲୀରେ ବଡ଼ଲାଟଙ୍କ ଉପରକୁ ବୋମା ଫିଙ୍ଗା ହେଲା । ୧୯୧୩ରେ ଗଦର ଆନ୍ଦୋଳନ ଆରମ୍ଭ ହେଲା । ଗଦର ଆନ୍ଦୋଳନରେ ଯୋଗ ଦେବା ପାଇଁ ସେତେବେଳେ ଗୋଟିଏ ବିଜ୍ଞାପନ ବାହାରିଥିଲା । ସେଥିରେ ଲେଖାଥିଲା :

ଦରମା – ମୃତ୍ୟୁ

ପୁରସ୍କାର – ଶହୀଦର ସମ୍ମାନ

ପେନ୍‌ସନ – ସ୍ୱାଧୀନତା

୧୯୧୪ରେ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ସରକାର ଗଣତନ୍ତ୍ରର ସୁରକ୍ଷା ପାଇଁ ଲଢୁଛନ୍ତି ବୋଲି ଘୋଷଣା କଲେ । ଭାରତବାସୀ ବିଚାରିଲେ ଯେ ଯୁଦ୍ଧ ପରେ ସ୍ୱାଧୀନତା ମିଳିବ । ସେତେବେଳେ ଶ୍ରୀମତୀ ଆନିବେସାନ୍ତ ନାମ୍ନୀ ଇଂରେଜ ମହିଳା ଭାରତରେ ଆଡିୟାର ଠାରେ ଥିଓସଫିକାଲ ସୋସାଇଟି ସଂଗଠନ କରୁଥିଲେ । ସେ "ହୋମରୁଲ"

ଆନ୍ଦୋଳନ ଆରମ୍ଭ କଲେ । ଲୋକମାନ୍ୟ ତିଳକ, ଆବୁଲ କାଲାମ ଆଜାଦ ଆଦି ନେତା ହୋମରୁଲ ଆନ୍ଦୋଳନରେ ଯୋଗ ଦେଲେ । ସରକାର ଏ ଆନ୍ଦୋଳନକୁ ଦବେଇ ଦେବା ଉଦ୍ଦେଶ୍ୟରେ କମ୍‌ରେଡ଼, ଅଲହିଲାଲ ଆଦି ସମ୍ବାଦପତ୍ର ବାଜ୍ୟାପ୍ତ କଲେ । ଆନିବେସାନ୍ତ ଓ ମହମ୍ମଦ ଆଲିଙ୍କୁ ଗିରଫ କଲେ । ସ୍ୱାମୀ ବିବେକାନନ୍ଦଙ୍କ ଇଂରେଜ ଶିଷ୍ୟା ଭଗିନୀ ନିବେଦିତାଙ୍କୁ ବିଲାତ ଫେରିଯିବାକୁ ବାଧ୍ୟ କଲେ ।

ବିଶ୍ୱଯୁଦ୍ଧ ଶେଷ ହେଲା । ମାତ୍ର ଲୋକେ ଯେ ଯୁଦ୍ଧ ପରେ ସ୍ୱାଧୀନତା ବା ଔପନିବେଶିକ ସ୍ୱାୟତ୍ତଶାସନ ପାଇବାକୁ ଆଶା କରିଥିଲେ, ସେ ଆଶା ମଧ୍ୟ ପୂରଣ ହେଲା ନାହିଁ । ଭାରତୀୟ ମୁସଲମାନମାନେ ମଧ୍ୟ କ୍ଷୁବ୍ଧ ହେଲେ । କାରଣ ମୁସଲମାନଙ୍କ ଧର୍ମଗୁରୁ (ଖଲିଫା) ତୁର୍କୀର ସୁଲତାନ ଇଂରେଜଙ୍କ ବିରୋଧରେ ଯୁଦ୍ଧରେ ଯୋଗ ଦେଇଥିଲେ । ଇଂରେଜ ସରକାର ମୁସଲମାନମାନଙ୍କୁ ଯୁଦ୍ଧବେଳେ କହିଥିଲେ ଯେ- ଇଂରେଜ ଯୁଦ୍ଧରେ ଜିଣିଲେ ସୁଲତାନଙ୍କ ପ୍ରତିପତ୍ତି ଉପରେ କୌଣସି ହସ୍ତକ୍ଷେପ କରାଯିବ ନାହିଁ । ମାତ୍ର ଯୁଦ୍ଧ ପରେ ସୁଲତାନଙ୍କୁ ବନ୍ଦୀ କରାଯାଇଥିଲା । ଫଳରେ ଭାରତୀୟ ମୁସଲମାନମାନଙ୍କ ମଧ୍ୟରୁ ଇଂରେଜ ଶ୍ରଦ୍ଧା ଉଭେଇ ଗଲା । ପୁଣି ଭାରତକୁ ସ୍ୱାଧୀନତା ଦେବା ପରିବର୍ତ୍ତେ ସରକାର ଭାରତକୁ ରଉଲାଟ ଆଇନ ନାମକ ଗୋଟିଏ ଘାତକୀ ଆଇନ ଉପହାର ଦେବାର ଆୟୋଜନ କଲେ । ଏହି ଆଇନ ଅନୁସାରେ ଯେ କୌଣସି ଲୋକଙ୍କୁ ସନ୍ଦେହ କଲେ ଗିରଫ କରି ବିନା ବିଚାରରେ ବନ୍ଦୀ କରିବାକୁ, ଜୁରୀ ନ ଥାଇ ଅପରାଧ ବିଚାର କରିବାକୁ, କାହାରି ପ୍ରତି ସନ୍ଦେହ ହେଲେ ତା'ର ଯାତାୟାତ ନିୟନ୍ତ୍ରଣ କରିବାକୁ, ଅପିଲ କରିବାର ଅଧିକାର ନ ଦେବାକୁ ସୁପାରିଶ କରାଯାଇଥିଲା । ଗାନ୍ଧିଜୀ ଲୋକମାନ୍ୟ ତିଳକଙ୍କ ବିରୋଧ ସତ୍ତ୍ୱେ ସରକାରଙ୍କ ଅନୁରୋଧରେ ଯୁଦ୍ଧରେ ସାହାଯ୍ୟ କରିବା ପାଇଁ ଲୋକଙ୍କୁ ବୁଝାଇଥିଲେ । କାରଣ ବ୍ରିଟିଶ ସରକାରଙ୍କ ନ୍ୟାୟପରାୟଣତା ଉପରେ ତାଙ୍କର ବିଶ୍ୱାସ ଥିଲା । ସେ ବିଶ୍ୱାସ ତୁଟିଗଲା ।

 oo

॥ ୧୬ ॥

## ରଙ୍ଗମଞ୍ଚରେ ଗାନ୍ଧିଜୀ

ଗୁଜରାତ ନିବାସୀ ମୋହନଦାସ କରମଚାନ୍ଦ ଗାନ୍ଧୀ ଜଣେ ବାରିଷ୍ଟର ଭାବରେ ଗୋଟିଏ ମୋକଦ୍ଦମା ସଂକ୍ରାନ୍ତରେ ଦକ୍ଷିଣ ଆଫ୍ରିକାକୁ ୧୮୯୩ ମସିହାରେ ଯାଇଥିଲେ ସେଠାରେ ବସବାସ କରୁଥିବା ଓ ଶ୍ରମିକ ଭାବରେ ଯାଇଥିବା ଭାରତୀୟଙ୍କ ପ୍ରତି ପାତରଅନ୍ତର ଓ ଘୃଣାପୂର୍ଣ୍ଣ ବ୍ୟବହାରକୁ ସେ ଅଙ୍ଗେ ଲିଭେଇଲେ । ଭାରତୀୟମାନେ ବ୍ୟବସାୟ ବାଣିଜ୍ୟରେ ଉନ୍ନତି କରୁଥିବାର ଦେଖି ସେଠାରେ ଗୋରାମାନେ ଭାରତୀୟଙ୍କୁ ଉଚ୍ଛେଦ କରିବା ପାଇଁ ସେମାନଙ୍କୁ ଭୋଟ ଅଧିକାର ନ ଦେବାକୁ ସେମାନଙ୍କ ନାମ ରେଜେଷ୍ଟ୍ରୀ କରାଇ ଦଶ ଆଙ୍ଗୁଳି ଛାପ ଓ ଦାଗୀ ଚୋରଙ୍କ ପରି ଦେହର ଚିହ୍ନ, ନିଜର ପରିଚୟ ପତ୍ରରେ ଉଲ୍ଲେଖ କରିବାକୁ, ମୁଣ୍ଡ ପିଛା ତିନି ପାଉଣ୍ଡ ଟିକସ ଦେବାକୁ ଆଇନ କରିବାର ଆୟୋଜନ କଲେ । ପୁଣି ସେଠା ନ୍ୟାୟାଳୟରେ ରେଜେଷ୍ଟ୍ରୀ ନ ହୋଇ ଧାର୍ମିକ ବିଧିରେ ହୋଇଥିବା ବିବାହକୁ ମଧ୍ୟ ଅସିଦ୍ଧ ଘୋଷଣା କଲେ । ଗାନ୍ଧିଜୀ ସେଠା ଭାରତୀୟଙ୍କୁ ଏହି ବିପଦଜନକ ଆଇନ ଗୁଡ଼ିକର ବିଷମୟ ପରିଣତି କଥା ବୁଝାଇ ଏହା ବିରୁଦ୍ଧରେ ଲଢ଼ିବା ପାଇଁ ପ୍ରବର୍ତ୍ତାଇଲେ । ସେ ଏହି ଅନ୍ୟାୟର ପ୍ରତିକାର ପାଇଁ ଏକ ଅହିଂସାତ୍ମକ ପ୍ରଣାଳୀ ପ୍ରୟୋଗ କଲେ ଏବଂ ସେହି ପ୍ରଣାଳୀକୁ ସତ୍ୟାଗ୍ରହ ନାମରେ ନାମିତ କଲେ । ୧୯୦୬ରୁ ୧୯୧୪ ପର୍ଯ୍ୟନ୍ତ ଏ ସତ୍ୟାଗ୍ରହ ଚାଲିଥିଲା ଏବଂ ଶେଷରେ ଭାରତୀୟମାନଙ୍କ ଦାବୀ ପୂରଣ ହୋଇଥିଲା । ଦକ୍ଷିଣ ଆଫ୍ରିକାରୁ ୧୯୧୫ରେ ଗାନ୍ଧିଜୀ ଭାରତକୁ ଫେରି ଆସିଲେ । ଭାରତରେ ପହଞ୍ଚିବା ପରେ ପରେ ଭିରମଗାଓଁ ଶୁଳକ ନୀତି, ଇଣ୍ଡିଆନ ଇମିଗ୍ରେସନ ଆକ୍ଟ ଆଦି ଅନ୍ୟାୟର ପ୍ରତିବାଦ କଲେ ଏବଂ ଆବଶ୍ୟକ ହେଲେ ସେ ଏଥିପାଇଁ ସତ୍ୟାଗ୍ରହ କରିବେ ବୋଲି ଘୋଷଣା କରିଥିଲେ । କିଛିଦିନ ପରେ ଏ ଦୁଇଟି ପ୍ରଥା ରଦ୍ ହେଲା । ୧୯୧୬ରେ ଲକ୍ଷ୍ନୌର କଂଗ୍ରେସ ଅଧିବେଶନରେ ସେ ରାଜକୁମାର ଶୁକ୍ଲଙ୍କ ଠାରୁ ଚମ୍ପାରଣରେ ଗୋରା ନୀଳ ବ୍ୟବସାୟୀଙ୍କ ଅତ୍ୟାଚାର ବିରୁଦ୍ଧରେ ଶୁଣିଲେ । ସେ ବିଷୟରେ ଅନୁସନ୍ଧାନ କରିବା ପାଇଁ ଚମ୍ପାରଣ ଗଲାବେଳେ ତାଙ୍କ ଉପରେ ସରକାରୀ ନିଷେଧାଜ୍ଞା ଜାରି ହେଲା । ଗାନ୍ଧିଜୀ ତାହା ଅମାନ୍ୟ କରି ବିଚାରାଳୟରେ କହିଲେ-''ଗୋରା ନୀଳ ବ୍ୟବସାୟୀ ପ୍ରଜାଙ୍କ ପ୍ରତି ଠିକ୍ ବ୍ୟବହାର କରୁ ନ ଥିବାରୁ ନିମନ୍ତ୍ରଣ ପାଇ ମୁଁ ଏଠାକୁ ଆସିଛି ।

ଲୋକ ସେବା ମୋର ଉଦ୍ଦେଶ୍ୟ । ମୁଁ ଏ ସମସ୍ୟାର ଅଧ୍ୟୟନ, ପ୍ରଜା ଓ ଦରକାର ପଡ଼ିଲେ ଗୋରା ନୀଳ ବ୍ୟବସାୟୀଙ୍କ ସାହାଯ୍ୟରେ କରିବି । ଗୋରା ସରକାରୀ ଆଦେଶ ମାନିବା ଉଚିତ । କିନ୍ତୁ ତାହା ମାନିଲେ ମୁଁ ପ୍ରଜାଙ୍କ ସେବା କରି ପାରିବି ନାହିଁ । ଏଥିପାଇଁ ମୋତେ ଯାହା ଦଣ୍ଡ ଦେବା କଥା ଦିଆଯାଉ । ସରକାରଙ୍କ ଆଦେଶ ଅପେକ୍ଷା ମୋ ଅନ୍ତରାତ୍ମାର ଆହ୍ୱାନ ମୋ ପାଇଁ ବଡ଼ ।

ଗାନ୍ଧିଜୀ ଗିରଫ ହେବା ଫଳରେ ଚଂପାରଣରେ ଅଭୁତପୂର୍ବ ଜାଗରଣ ଦେଖା ଦେଲା । ସରକାର ମଧ ଗାନ୍ଧିଜୀଙ୍କ ଉପରୁ ନିଷେଧାଜ୍ଞା ଉଠାଇ ଦେଲେ । ଗାନ୍ଧିଜୀ ଓ ତାଙ୍କର ଓକିଲ ବଂଧୁମାନେ ଶହ ଶହ ପ୍ରଜାଙ୍କଠାରୁ ଜମାନବନ୍ଦୀ ନେଲେ । ତାହା ସଂଗେ ସଂଗେ ଗାନ୍ଧିଜୀଙ୍କ ସହଧର୍ମିଣୀ କସ୍ତୁରବା ଗାନ୍ଧୀ, ଅବନ୍ତିକାବାଈ ଗୋଖ୍‌ଲେ, ସସ୍ତ୍ରୀକ ମହାଦେବ ଦେଶାଇ, ଡ଼କ୍‌ଟର ଦେବ ପ୍ରମୁଖ ବନ୍ଧୁ ସ୍ୱେଚ୍ଛାସେବୀ ସେଠାକୁ ଯାଇ ପିଲାଙ୍କୁ ପାଠ ପଢ଼ାଇବା, ଗ୍ରାମ ସଫାଇ, ଔଷଧ ଦେବା ଆଦି କାମ କଲେ । ଅବଶେଷରେ ବିହାରର ଛୋଟଲାଟ ଗୋଟିଏ ତଦନ୍ତ କମିଟି ଗଢ଼ି ସେଥିରେ ଗାନ୍ଧୀଜୀଙ୍କୁ ସଦସ୍ୟ ରଖିଲେ । ସମସ୍ତ ଅଭିଯୋଗ ସତ୍ୟ ପ୍ରମାଣିତ ହେଲା ଏବଂ ନୀଳ ବ୍ୟବସାୟୀଙ୍କ ଅନ୍ୟାୟ ଅନୀତି ବନ୍ଦ ହେଲା ।

ଏହାପରେ ଗାନ୍ଧିଜୀ ଅହମଦାବାଦ ଶ୍ରମିକ ସତ୍ୟାଗ୍ରହ ଖେଡ଼ା ଖଜଣା ବୃଦ୍ଧି ସତ୍ୟାଗ୍ରହରେ ମଧ ସାଫଲ୍ୟମଣ୍ଡିତ ହେଲେ । ପ୍ରତିପକ୍ଷର କୌଣସି କ୍ଷତି ନ କରି ତାହାପ୍ରତି ସଦ୍‌ଭାବନା ପୋଷଣ କରି ତାର ଅନ୍ୟାୟର ପ୍ରତିକାର ପାଇଁ ନିଜେ ଦୁଃଖ କଷ୍ଟ ସହି ତା'ର ଶୁଭବୁଦ୍ଧିକୁ ଜାଗ୍ରତ କରିବା ହେଲା ସତ୍ୟାଗ୍ରହର ନୀତି । " ୧. ସମସ୍ତଙ୍କ କଲ୍ୟାଣରେ ମୋର କଲ୍ୟାଣ ନିହିତ ୨. ଓକିଲ ଓ କାରିଗର ଶ୍ରମର ମୂଲ୍ୟ ସମାନ ହେବା ଉଚିତ । ୩. ଚାଷୀ ମୂଲିଆର ଜୀବନ ହିଁ ପ୍ରକୃତ ମନୁଷ୍ୟୋଚିତ ଜୀବନ" ଏହି ତିନୋଟି କଥାକୁ ସେ ଜୀବନାଦର୍ଶ କରିଥିଲେ ଏବଂ ଏହାକୁ 'ସର୍ବୋଦୟ' କହୁଥିଲେ । ସର୍ବୋଦୟ-ସମସ୍ତଙ୍କର କଲ୍ୟାଣ ଦୃଷ୍ଟିରୁ ହିଂସାତ୍ମକ ପଦ୍ଧତିରେ କୌଣସି ଅନ୍ୟାୟର ପ୍ରତିକାର କରିବା ଦ୍ୱାରା ଅନ୍ୟାୟକାରୀର କଲ୍ୟାଣ ବ୍ୟାହତ ହେବ । ତେଣୁ ମାଆ ସନ୍ତାନର କଲ୍ୟାଣ ପାଇଁ ଦୁଃଖ କଷ୍ଟ ବରଣ କଲାପରି ସତ୍ୟାଗ୍ରହୀ ଅନ୍ୟାୟକାରୀକୁ ସୁଧାରିବା ପାଇଁ ନିଜେ ଦୁଃଖ କଷ୍ଟ ବରଣ କରିବାକୁ ସଂକଳ୍ପବଦ୍ଧ ହେବେ–ଏହାହିଁ ହେଲା ଗାନ୍ଧିଜୀଙ୍କର ବିଚାର । ଚଂପାରଣ ଓ ଖେଡ଼ା ସତ୍ୟାଗ୍ରହ ଦେଶବାସୀଙ୍କ ମନରେ ସତ୍ୟାଗ୍ରହ ପ୍ରତି ଶ୍ରଦ୍ଧା ଦେଖା ଦେଲା ।

ଇତି ମଧ୍ୟରେ ରାଓଲାଟ ଆଇନ୍ ପ୍ରଣୟନ ହେବା ଖବର ଜଣା ପଡ଼ିଲା । ରାଓଲାଟ୍ ଆଇନ୍ କାର୍ଯ୍ୟକାରୀ ହେଲେ ଭାରତରେ କି ଭୟାବହ ପରିସ୍ଥିତି ସୃଷ୍ଟି ହେବ ତାହା କଳନା କରି ଚିନ୍ତାଶୀଳ ଭାରତୀୟମାନେ ଏ ଆଇନ୍ ପ୍ରଣୟନ କରେଇ ନ ଦେବା କଥା ଚିନ୍ତା କଲେ । ପଣ୍ଡିତ ମଦନମୋହନ ମାଳବିୟ ଲେଜିସଲେଟିଭ ଆସେମ୍ବଲିରେ ଏହି ଆଇନ୍ ବିରୁଦ୍ଧରେ ଜ୍ୱାଳାମୟୀ ଭାଷଣ ଦେଲେ । ଗାନ୍ଧିଜୀ ଏହି ଆଇନ୍‌ର ପ୍ରତିବାଦ କରି ସମଗ୍ର ଭାରତରେ ମାର୍ଚ୍ଚ ୩୦, ୧୯୧୯ରେ ହରତାଳ କରିବା ପାଇଁ ଦେଶବାସୀଙ୍କୁ ଡ଼ାକରା ଦେଲାପରେ ଏ ତାରିଖ ଏପ୍ରିଲ ଛଅକୁ ଘୁଞ୍ଚାଇ ଦିଆହେଲା । ସମଗ୍ର ଭାରତରେ ଏ ହରତାଳ ପାଳିତ ହେଲା । ପଞ୍ଜାବରେ ଏହା ଅତ୍ୟନ୍ତ ସୁସଂଗଠିତ ଭାବରେ ପାଳିତ ହେଲା । ପଞ୍ଜାବର ଲାଟ୍ ସାର ମାଇକେଲ୍ ଓଡ଼ାୟାର ଏହି ମେଳି ଭାଂଗିଦେବା ଉଦ୍ଦେଶ୍ୟରେ ପଞ୍ଜାବର ଜନପ୍ରିୟ ନେତା ଡ଼କ୍ଟର କିଚ୍‌ଲୁ ଓ ଡ଼କ୍ଟର ସତ୍ୟପାଳଙ୍କୁ ଏପ୍ରିଲ ୧୦ ତାରିଖରେ ଗିରଫ କରି ନିର୍ବାସନ ଦଣ୍ଡ ଦେଲେ । ଲୋକେ କ୍ଷୁବ୍ଧ ହୋଇ ଏହି ନେତାଙ୍କୁ ଖଲାସ କରି ଦେବା ପାଇଁ ଦାବୀ କରିବାକୁ କମିଶନର କୋଠି ଆଡ଼କୁ ଧାଇଁଲେ । ମିଲିଟାରୀ ସେମାନଙ୍କ ଉପରକୁ ଗୁଳି ଚଳାଇବାରୁ ଲୋକେ ଉପଦ୍ରବ ଆରମ୍ଭ କଲେ । ଫଳରେ ଜଣେ ଇଂରେଜ ମହିଳା ଓ ଆଉ କେତେଜଣଙ୍କର ମୃତ୍ୟୁ ଘଟିଲା । ତହୁଁ ସରକାର ଖବର କାଗଜ ଉପରେ କଟକଣା ଜାରି କଲେ ଏବଂ ସରକାରଙ୍କ ବିନାନୁମତିରେ ସଭା ହୋଇ ପାରିବ ନାହିଁ ବୋଲି ଘୋଷଣା କଲେ । ଏ ଘୋଷଣା ଅଳ୍ପ କେତୋଟି ସ୍ଥାନରେ କରାଯାଇଥିବାରୁ ଅଧିକାଂଶ ଲୋକେ ଏହା ଜାଣି ପାରି ନ ଥିଲେ ।

ଏପ୍ରିଲ ତେର ତାରିଖ ଦିନ ଅମୃତସରର ଜାଲିୟାନାୱାଲାବାଗ ନାମକ ସ୍ଥାନରେ ସାଧାରଣ ସଭା କରିବା ପାଇଁ ପ୍ରଚାର କରାଯାଇଥିଲା । ପ୍ରାୟ କୋଡ଼ିଏ ହଜାର ଲୋକ ସେହି ସ୍ଥାନରେ ଏକତ୍ର ହୋଇ ସଭା କରୁଥିବା ବେଳେ ଜେନେରାଲ ଡ଼ାୟାର ସେଠାକୁ ସସୈନ୍ୟ ଆସି ଲୋକଙ୍କୁ କୌଣସି ସୂଚନା ନ ଦେଇ ସେହି ସ୍ଥାନକୁ ଘେରାଉ କରି ମେସିନ୍‌ଗନରୁ ଗୁଳି ଚଳାଇଲେ । ସେହି ସ୍ଥାନରୁ ବାହାରିବା ପାଇଁ ଗୋଟିଏ ମାତ୍ର ବାଟ ଥିଲା । ତେଣୁ ପଳାଇ ଯାଇ ପାରିଲେ ନାହିଁ । କ୍ରମାଗତ ଦଶ ମିନିଟ୍ କାଳ ମେସିନ୍‌ଗନରୁ ଗୁଳି ଚାଲିଲା । ଜେନେରାଲ ଡ଼ାୟାର ପରେ ତାଙ୍କ ବିବୃତିରେ କହିଥିଲେ – ମୋର ଗୁଳି ସରିଗଲା ନହେଲେ ମୁଁ ଆହୁରି ଅଧିକ ସମୟ ମେସିନ୍‌ଗନ୍ ଚଳାଇଥାନ୍ତି । ଶହ ଶହ ଲୋକ ପ୍ରାଣ ହରାଇଲେ । ହଜାର ହଜାର ଲୋକ ଆହତ ହେଲେ । ଏପ୍ରିଲ ୧୪ ତାରିଖରେ ସମଗ୍ର ପଞ୍ଜାବରେ ସାମରିକ ଆଇନ୍ ଜାରି ହୋଇ ଫାଶି, ନିର୍ବାସନ, କାରାଦଣ୍ଡ,

କୋରଡ଼ା ମାଡ଼, ଝିଅବୋହୂଙ୍କ ଉପରେ ଅତ୍ୟାଚାର, ସଡ଼କରେ ପେଟରେ ଘୁଷୁରି ଘୁଷୁରି ଯିବା, କେହି କଥା ନ ମାନିଲେ ତାକୁ ସଂଗେ ସଂଗେ ଗୁଳି କରି ମାରିବା, ଆଦି ଅତ୍ୟାଚାର ଆରମ୍ଭ ହେଲା । ଏହି ଅତ୍ୟାଚାରର ପ୍ରତିବାଦ କରି ରବୀନ୍ଦ୍ରନାଥ ତାଙ୍କ 'ନାଇଟ୍' ଉପାଧି ତ୍ୟାଗ କରିଥିଲେ । କଂଗ୍ରେସର ନିର୍ଦ୍ଦେଶରେ ଏପ୍ରିଲ ୬ ତାରିଖରୁ ୧୩ ତାରିଖ ପର୍ଯ୍ୟନ୍ତ ସାତଦିନକୁ ଜାତୀୟ ସପ୍ତାହ କୁହାଗଲା । ଏହି ଜାତୀୟ ସପ୍ତାହରେ ଲବଣ ସତ୍ୟାଗ୍ରହ ଆରମ୍ଭ ହୋଇଥିଲା ।

ଦିଲ୍ଲୀ, ବମ୍ବେ, ଅହମଦାବାଦ ଆଦି ସ୍ଥାନରେ ହରତାଳ ଭଲଭାବରେ ପାଳିତ ହେବା ପରେ ଗାନ୍ଧିଜୀ ପଞ୍ଜାବକୁ ଯିବା ବାଟରେ ଗିରଫ ହେଲେ । ତାଙ୍କ ଗିରଫ ଖବର ବମ୍ବେରେ ପହଞ୍ଚିବା ମାତ୍ରେ ହଜାର ହଜାର ଲୋକ ବନ୍ଦେମାତରଂ, ଆଲ୍ଲାହୋ ଆକବର ଧ୍ୱନି ଦେଇ ଶୋଭାଯାତ୍ରା ବାହାର କଲେ । ପରିସ୍ଥିତି ଦେଖି ଘୋଡ଼ା ସବାର ପୁଲିସ ଲୋକଙ୍କ ଉପରେ ଘୋଡ଼ା ଦଉଡ଼ାଇ ଦେଲେ । ଅହମଦାବାଦରେ ଶ୍ରମିକଙ୍କର ଶ୍ରଦ୍ଧାଭାଜନୀୟା ଅନସୂୟା ସରାଭାଇ ଗିରଫ ହେବା ଶୁଣି ଶ୍ରମିକମାନେ ବିକ୍ଷୋଭ କରି ଜଣେ ଗୋରା ସର୍ଜେଣ୍ଟକୁ ମାରି ଦେଲେ । ଏହି ହିଂସାକାଣ୍ଡରୁ ଗାନ୍ଧିଜୀ ଉପଲବ୍ଧି କଲେ ଯେ ଦେଶ ଅହିଂସାତ୍ମକ ସଂଗ୍ରାମ ପାଇଁ ପ୍ରସ୍ତୁତ ହୋଇ ନାହିଁ । ତେଣୁ ସେ ଏହାକୁ ''ପର୍ବତ ପ୍ରମାଣ ଭୂଲ'' କହି ଆନ୍ଦୋଳନ ପ୍ରତ୍ୟାହାର କଲେ । ରାଓଲାଟ ଆକଟ ମଧ୍ୟ କାର୍ଯ୍ୟକାରୀ ହେଲା ନାହିଁ ।

ଏହା ମଧ୍ୟରେ ସରକାର ମଣ୍ଟେଗୁ ଚେମସ୍‌ଫୋଟ୍ ଶାସନ ସଂସ୍କାର(ଦ୍ୱୈତଶାସନ ବା ଡ଼ାୟାର୍କି) ଘୋଷଣା କଲେ । ଏହି ଶାସନ ସଂସ୍କାରକୁ ଗ୍ରହଣ କରାଯିବ କି ନାହିଁ ସେ ବିଷୟରେ କଂଗ୍ରେସରେ ମତଭେଦ ଦେଖାଦେଲା । ଚିତ୍ତରଞ୍ଜନ ଦାସ ଗ୍ରହଣ କରିବା ସପକ୍ଷରେ ଥିଲେ । ଗାନ୍ଧିଜୀ ଏହାର ବିରୋଧୀ ଥିଲେ । ଶେଷରେ ଉଭୟେ ଏକମତ ହୋଇ ଖିଲାଫତ୍-ଜାଲିୟାନ୍‌ୱାଲାବାଗ-ସ୍ୱରାଜ୍ୟ ସତ୍ୟାଗ୍ରହ ବା ଅସହଯୋଗ ଆନ୍ଦୋଳନ ଚଳାଇବା ସ୍ଥିର କଲେ । ନାଗପୁର କଂଗ୍ରେସରେ ଅସହଯୋଗ ପ୍ରସ୍ତାବ ଗୃହୀତ ହୋଇ ସରକାରୀ କୋର୍ଟ କଚେରୀ, ବିଧାନସଭା, ଶିକ୍ଷାନୁଷ୍ଠାନ, ଚାକିରୀ ଓ ବିଲାତୀ ଲୁଗା ବର୍ଜନ କରିବା ସ୍ଥିର ହେଲା । ତାହା ସହିତ ଖଦୀ, ଅସ୍ପୃଶ୍ୟତା ନିବାରଣ, ଜାତୀୟ ଶିକ୍ଷାନୁଷ୍ଠାନ ଗଠନ, ନିଶାନିବାରଣ, ପଞ୍ଚାୟତ ଗଠନ କାର୍ଯ୍ୟକ୍ରମ ରଖାଗଲା । ଦେଶରେ ବର୍ଷକ ମଧ୍ୟରେ ୫୦ ଲକ୍ଷ କଂଗ୍ରେସ ମେମ୍ବର ସଂଗ୍ରହ, କୋଟିଏ ଟଙ୍କା ସଂଗ୍ରହ ଓ ୨୦ ଲକ୍ଷ ଅରଟ ଚଳାଇବା ସ୍ଥିର ହେଲା । ୧୯୨୦ ମସିହା ଅଗଷ୍ଟ ପହିଲାରେ ଅସହଯୋଗ

ଆନ୍ଦୋଳନ ଆରମ୍ଭ ହେଲା । ସେହି ତାରିଖରେ ଲୋକମାନ୍ୟ ତିଳକ ଦେହତ୍ୟାଗ କରିଥିଲେ । ସେଥିପାଇଁ ଏହି କାର୍ଯ୍ୟପାଇଁ ସଂଗୃହୀତ ପାଣ୍ଠିର ନାମ 'ତିଳକ ସ୍ୱରାଜ ପାଣ୍ଠି' ରଖାଗଲା ।

ଏହି ଆନ୍ଦୋଳନକୁ ଅନୁଶାସନବଦ୍ଧ କରିବା ପ୍ରତି ବିଶେଷ ଦୃଷ୍ଟି ଦିଆଗଲା । ସତ୍ୟାଗ୍ରହୀମାନେ ଶପଥ କଲେ ଯେ, ୧. ଭାରତରେ ସ୍ୱାଧୀନତା ପାଇଁ ଜାତୀୟ କଂଗ୍ରେସ ଯେଉଁ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଛି, ମୁଁ ସେଥିରେ ଯୋଗ ଦେବାକୁ ଚାହେଁ । ୨. ମୁଁ ଶାନ୍ତିପୂର୍ଣ୍ଣ ଓ ନ୍ୟାୟସଂଗତ ଉପାୟରେ ଭାରତରେ ସ୍ୱରାଜ୍ୟପ୍ରାପ୍ତିରେ ବିଶ୍ୱାସ କରେ । ୩. ମୁଁ ଜେଲ ଯିବାକୁ ଏବଂ ଏହି ଆନ୍ଦୋଳନ ପାଇଁ ମୋତେ ଯାହା ଦଣ୍ଡ ଦିଆଯିବ ତାହା ବରଣ କରିବାକୁ ପ୍ରସ୍ତୁତ ଅଛି । ୪. ମୁଁ ଆନ୍ଦୋଳନର ପରିଚାଳକଙ୍କ ଆଦେଶ ମାନି ଚଳିବି । ୫. ମୁଁ ଜେଲରେ ଥିବାବେଳେ ମୋ ପରିବାରର ଭରଣପୋଷଣ ପାଇଁ କଂଗ୍ରେସ ପାଣ୍ଠିରୁ ଆର୍ଥିକ ସାହାଯ୍ୟ ନେବି ନାହିଁ ।

ଲୋକେ ଅଖାପରି ମୋଟ ଖଦୀ ପିନ୍ଧିଥିଲେ । ୨୦ ଲକ୍ଷ ଅରଟ ଚାଲିଲା । ୫୦ ଲକ୍ଷ କଂଗ୍ରେସ ସଦସ୍ୟ ହେଲେ । 'ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ' ଏକକୋଟି ପନ୍ଦର ଲକ୍ଷ ଟଙ୍କା ସଂଗୃହୀତ ହେଲା । ସଭାରେ ବିଲାତି ଲୁଗା ପୋଡ଼ା ହେଲା । ମଦ ଗଞ୍ଜେଇ, ଅଫିମ ଦୋକାନରେ ପିକେଟିଂ ହେଲା । ପିଲାଏ ସ୍କୁଲ କଲେଜ ଛାଡ଼ିଲେ । ସରକାରୀ କର୍ମଚାରୀ ଚାକିରୀ ଛାଡ଼ିଲେ, ଓକିଲ ଓକିଲାତି ଛାଡ଼ିଲେ । ୩୦୦୦୦ ସତ୍ୟାଗ୍ରହୀ କାରାବରଣ କଲେ । ଓଡ଼ିଶାରେ ଉତ୍କଳମଣି ଗୋପବନ୍ଧୁ ଦାସ, ଡ଼କ୍‌ଟର ଏକରାମ ରସୁଲ୍‌, ଭାଗୀରଥି ମହାପାତ୍ର, ଗୁଣନିଧି ମହାନ୍ତି, ନାରାୟଣ ବୀରବର ସାମନ୍ତ, ଜଗବଂଧୁ ସିଂହ, ଯଦୁମଣି ମଂଗରାଜ, ରାଜକୃଷ୍ଣ ବୋଷ, ବାବାଜୀ ରାମଦାସ, ହରେକୃଷ୍ଣ ମହତାବ, କିଶୋରୀ ମୋହନ କାନୁନଗୋ, କୃପାସିନ୍ଧୁ ହୋତା, ସତ୍ୟବାଦୀ ନନ୍ଦ, ଗୋକୁଳାନନ୍ଦ ମହାନ୍ତି, ଗୋପବନ୍ଧୁ ଚୌଧୁରୀ, ନନ୍ଦକିଶୋର ଦାସ, ପ. ନୀଳକଣ୍ଠ ଦାସ, ପ. ଲିଙ୍ଗରାଜ ମିଶ୍ର, ଲକ୍ଷ୍ମୀନାରାୟଣ ମିଶ୍ର, ନିରଞ୍ଜନ ପଟ୍ଟନାୟକ, ଅଟଳବିହାରୀ ଆଚାର୍ଯ୍ୟ ପ୍ରମୁଖ ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତି, ସାଧାରଣ ଲୋକ ଓ ଶ୍ରୀମତୀ ସରଳା ଦେବୀ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସତ୍ୟବାଦୀ ବିଦ୍ୟାଳୟ ଓ ଅଳକାଶ୍ରମ ଜାତୀୟ ଶିକ୍ଷାନୁଷ୍ଠାନ ଘୋଷିତ ହୋଇଥିଲା ।

ଅହମଦାବାଦ କଂଗ୍ରେସ ଅଧିବେଶନରେ ୫୦ ଲକ୍ଷ ସ୍ୱେଚ୍ଛାସେବକ ସଂଗ୍ରହ, ସବିନୟ ଆଇନ ଅମାନ୍ୟ କରିବା ପ୍ରସ୍ତାବ ଧାର୍ଯ୍ୟ ହେଲା । ବରଦୋଲୀରେ ଖଜଣାବନ୍ଦ

ଆନ୍ଦୋଳନ ହେବା ପାଇଁ ସ୍ଥିର କରାଯାଇ ବଡ଼ଲାଟଙ୍କୁ ୧.୨.୧୯୨୨ରେ ଚିଠି ଲେଖା ହେଲା ।

୫.୨.୧୯୨୨ ରେ ଉତ୍ତରପ୍ରଦେଶରେ ଚୌରୀଚୌରାଠାରେ ଗୋଟିଏ ଶୋଭାଯାତ୍ରା ବାହାରିଲା । ପୁଲିସ୍ ଓ ଶୋଭାଯାତ୍ରାକାରୀଙ୍କ ମଧ୍ୟରେ ଯୁକ୍ତିତର୍କ ହେବାରୁ ଲୋକ ଜମି ଗଲେ । ପୁଲିସ୍ ଗୁଳି ଚଳାଇଲେ । ଗୁଳି ସରିଗଲାରୁ ଆଉ ଗୁଳି ଆଣିବାକୁ ଥାନା ଭିତରକୁ ଯାଇଥିବା ବେଳେ ଲୋକେ ଥାନାରେ ନିଆଁ ଲଗାଇଦେଲେ । ପୁଲିସ ପଦାକୁ ପଳାଇ ଆସିଲାରୁ ତାଙ୍କୁ ଟେକି ନିଆଁକୁ ପକେଇ ଦେଲେ । ଜଣେ ସବ୍‌ଇନ୍‌ସପେକ୍ଟର ଓ ୨୦ ଜଣ କନେଷ୍ଟବଳ ପୋଡ଼ି ମରିଗଲେ । ଗାନ୍ଧିଜୀ ଅସହଯୋଗ ଆନ୍ଦୋଳନ ବନ୍ଦ କରିଦେଲେ । ତାଙ୍କୁ ୧୦.୩.୧୯୨୨ରେ ଗିରଫ କରି ୬ବର୍ଷ ଜେଲଦଣ୍ଡ ଦିଆଗଲା ।

ଗାନ୍ଧିଜୀ ଜେଲରେ ଥିବା ବେଳେ ମଧ ଗୁରୁକାବାଗ ସତ୍ୟାଗ୍ରହ, ନାଗପୁର ପତାକା ସତ୍ୟାଗ୍ରହ ଆଦି ହୋଇଥିଲା ଏବଂ ସତ୍ୟାଗ୍ରହୀ ଜୟୀ ହୋଇଥିଲେ ।

ଭାରତର ପାର୍ଲାମେଣ୍ଟାରୀ ଗଣତନ୍ତ୍ର ଚଳାଇବାକୁ ଯୋଗ୍ୟତା ଅଛି କି ନାହିଁ ତାହା ପରଖିବାକୁ ୧୯୨୮ ରେ ସାଇମନ କମିଶନ ଭାରତକୁ ଆସିଲେ । ଏହି କମିଶନକୁ ବର୍ଜନ କରିବାକୁ କଂଗ୍ରେସ ସ୍ଥିର କଲେ । ଲାହୋରରେ ଲାଲ ଲାଜପତ ରାୟ ଏକ ଶୋଭାଯାତ୍ରାରେ ଯାଇ କମିଶନ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ କଲାବେଳେ ପୁଲିସ ଲାଠିରେ ଆହତ ହୋଇ ମୃତ୍ୟୁ ବରଣ କଲେ । ପଞ୍ଜାବର ଭଗତ୍‌ସିଂହ ସେହି ଗୋରା ପୁଲିସକୁ ହତ୍ୟାକଲେ । ଶୁକଦେଓ ଓ ରାଜଗୁରୁ ମଧ୍ୟ ଏହି ହତ୍ୟାକାଣ୍ଡରେ ସଂପୃକ୍ତ ଥିଲେ । ପୁଣି ଭଗତ୍‌ସିଂହ ଓ ବଟୁକେଶ୍ୱର ଦତ୍ତ ଆସେମ୍ବଲି ହଲରେ ମଧ ପବ୍ଲିକ୍ ସେଫଟି ଆମେଣ୍ଡମେଣ୍ଟ ବିଲ ଆଗତ କରାଗଲା ବେଳେ ଏହି ବିଲକୁ ଉପହାସ କରିବା ଉଦ୍ଦେଶ୍ୟରେ ବୋମା ଫିଙ୍ଗି ଲିଫ୍‌ଲେଟ ବାଣ୍ଟି ନିଜେ ପୁଲିସ ପାଖରେ ଆତ୍ମସମର୍ପଣ କରିଥିଲେ ।

୧୯୨୮ ସାଲରେ ବରଦୋଲୀରେ ଖଜଣାବୃଦ୍ଧିର ବିରୋଧ କରି ସତ୍ୟାଗ୍ରହ କରାଯାଇଥିଲା ଓ ଏହି ସତ୍ୟାଗ୍ରହ ସଫଳ ହେବା ଫଳରେ ଦେଶ ମଧ୍ୟରେ ସତ୍ୟାଗ୍ରହର କାର୍ଯ୍ୟକାରିତା ବାବଦରେ ଶ୍ରଦ୍ଧା ଦେଖା ଦେଇଥିଲା ।

୦୦

॥ ୧୭ ॥

## ଉଦ୍ୟାପନ ପର୍ବ

୧୭୫୭ ରୁ ୧୯୩୧ର ପ୍ରାରମ୍ଭ ପର୍ଯ୍ୟନ୍ତ ସ୍ୱାଧୀନତା ଲାଭ କରିବା ପାଇଁ ଭାରତର ପ୍ରଚେଷ୍ଟା କେଉଁ ପଥରେ ଗତି କରିଥିଲା ତାହାର ସଂକ୍ଷିପ୍ତ ସଂସ୍କରଣ ପରେ ଆମେ ପୁଣି ୧୯୩୧ ଜାନୁଆରୀ ମାସକୁ ଫେରି ଆସିବା ।

ସତ୍ୟାଗ୍ରହ ଅନୁମୋଦିତ କାର୍ଯ୍ୟକ୍ରମଗୁଡ଼ିକ ସମଗ୍ର ଭାରତବର୍ଷରେ ପୁରାଦମ୍‌ରେ ଚାଲିଥିବା ବେଳେ ସାର ତେଜବାହାଦୂର ସାପ୍ରୁ, ଏମ୍.ଆର ଜୟକାର କଂଗ୍ରେସ-ସରକାର ମିଳାମିଶା ପାଇଁ ଉଦ୍ୟମ କରୁଥାନ୍ତି । ଦମନଲୀଳା ମଧ୍ୟ ଚାଲିଥାଏ । ଗାନ୍ଧିଜୀ ପଦାରେ ଥିବା ବେଳେ ଆନ୍ଦୋଳନ ଯେପରି ଚାଲିଥିଲା, ସେ ଜେଲ୍‌ଯିବା ପରେ ମଧ୍ୟ ତାହା ସେହିପରି ଚାଲିଲା । ଖଜଣା ଟିକସ କମିଲା, ବିଲାତୀ ଲୁଗା ବେପାର ମାନ୍ଦା ହେଲା । ବିଲାତରେ ଲୁଗାକଳ ଶ୍ରମିକମାନେ ବେକାର ହେଲେ । ଏ ପରିସ୍ଥିତିରୁ ବ୍ରିଟିଶ ପ୍ରଧାନମନ୍ତ୍ରୀ ରାମସେ ମ୍ୟାକ୍‌ଡୋ଼ନାଲ୍ଡ ଓ ଭାରତର ବଡ଼ଲାଟ ଲର୍ଡ଼ ଆରଉଇନ ଭାରତରେ ବିଦ୍ରୋହ ବଢୁଥିବାର ଉପଲବ୍ଧି କଲେ । ବିଲାତରେ ଶ୍ରମିକ ଦଳର ମୁଖପାତ୍ର 'ଡେ଼ଲି ହେରାଲଡ୍'ର ସଂବାଦଦାତା ସ୍ଲୋକୋମ ସାହେବଙ୍କୁ ସେମାନେ ଗାନ୍ଧିଜୀ ଜେଲ୍ ଯିବାର ଖବର ଦଶ ସପ୍ତାହ ପରେ ପଠାଇଲେ । ପୁଣି ସାର ସାପ୍ରୁ ଓ ଶ୍ରୀ ଜୟକାର ମଧ୍ୟ ଗାନ୍ଧିଜୀଙ୍କୁ ସାକ୍ଷାତ୍ କଲେ । କଂଗ୍ରେସର କାର୍ଯ୍ୟକାରୀ ସମିତି ସଂଗେ ପରାମର୍ଶ ନ କରି ଗାନ୍ଧିଜୀ କୌଣସି ମତବ୍ୟକ୍ତ କରିବାକୁ ରାଜୀ ହେଲେ ନାହିଁ । ସେଥିପାଇଁ ପଣ୍ଡିତ ମୋତିଲାଲ ନେହେରୁ, ଡ଼କଟର ସୈୟଦ୍ ମାମୁଦ୍, ଡ଼ଃ. ଜବାହାର ଲାଲ ନେହେରୁଙ୍କୁ ସ୍ପେଶାଲ ଟ୍ରେନ୍‌ରେ ଗାନ୍ଧିଜୀଙ୍କ ପାଖକୁ ୟେରବାଦା ଜେଲକୁ ଅଣାଗଲା । ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଓ ଶ୍ରୀମତୀ ସରୋଜିନୀ ନାଇଡୁ ପୂର୍ବରୁ ୟେରବାଦା ଜେଲ୍‌ରେ ଥିଲେ । କିନ୍ତୁ ଜେଲ ବାହାରେ ଥିବା କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟଙ୍କୁ ଗାନ୍ଧିଜୀଙ୍କ ସହିତ ଦେଖା କରିବାକୁ ସରକାର ଅନୁମତି ଦେଲେ ନାହିଁ । ଜେଲରେ ଥିବା ନେତାମାନେ ବ୍ରିଟିଶ ସରକାରଙ୍କ ମତିଗତି ଓ କଂଗ୍ରେସର ଲକ୍ଷ ମଧ୍ୟରେ କୌଣସି ସାମଞ୍ଜସ୍ୟ ଥିବାର ଅନୁଭବ କଲେ ନାହିଁ । ତେଣୁ ମିଳାମିଶା ଉଦ୍ୟମ ଭାଂଗିଗଲା ।

୧୯୩୦ ନଭେମ୍ବର ମାସରେ ପ୍ରଥମ ଗୋଲଟେବୁଲ ବୈଠକ ବିଲାତରେ ବସିଲା । ଓଡ଼ିଶାରୁ ପାରଳାଖେମୁଣ୍ଡିର ମହାରାଜା ଏହି ବୈଠକରେ ଯୋଗ ଦେଇଥିଲେ । ସେ ବୈଠକ ମଧ୍ୟ ବିଫଳ ହେଲା । ଶେଷରେ ୧୯୩୧ ମସିହା ଜାନୁଆରୀ ଛବିଶ

ତାରିଖ ଦିନ ଗାନ୍ଧିଜୀ ଓ ଆଉ କେତେଜଣ ନେତାଙ୍କୁ ସରକାର ଜେଲ୍‌ରୁ ଖଲାସ କରିଦେଲେ, ବଡ଼ଲାଟଙ୍କୁ ଦେଖା କରିବାକୁ ଗାନ୍ଧିଜୀ ବଡ଼ଲାଟ ଭବନକୁ ଗଲେ । ଏଥିରେ ଜାଠଦଳର ନେତା ଚର୍ଚ୍ଚିଲ୍ ସାହେବ କ୍ଷୁବ୍ଧ ହୋଇ କହିଲେ - 'ଗୋଟାଏ ଅର୍ଦ୍ଧନଗ୍ନ ରାଜଦ୍ରୋହୀ ଫକୀର ବଡ଼ଲାଟ ଭବନର ପାହାଚ ଉପରେ ଚଢ଼ି ଇଂଲଣ୍ଡର ମହାମାନ୍ୟ ସମ୍ରାଟଙ୍କ ପ୍ରତିନିଧିଙ୍କ ସଙ୍ଗେ ସମକକ୍ଷ ହୋଇ କଥାବାର୍ତ୍ତା କରିବାକୁ ଯାଉଛି । ବ୍ରିଟିଶ ଜାତି ପକ୍ଷରେ ଏଇଟା କି ଘୃଣ୍ୟ ଅପମାନଜନକ ଦୃଶ୍ୟ !''

ଗାନ୍ଧୀ-ଆରଉଇନ୍ କଥାବାର୍ତ୍ତା ଚାଲିଥିଲାବେଳେ ଗାନ୍ଧିଜୀ କଂଗ୍ରେସ କାର୍ଯ୍ୟକାରୀ ସମିତିର ପରାମର୍ଶ ଲୋଡୁଥିବା ସ୍ଥଳେ ବଡ଼ଲାଟ ଛଅ ହଜାର ମାଇଲ ଦୂରରେ ଥିବା ଇଂଲଣ୍ଡର ମନ୍ତ୍ରୀମଣ୍ଡଳର ପରାମର୍ଶ ତାରଯୋଗେ ନେଉଥାନ୍ତି । ଏ ମିଳାମିଶା କଥାବାର୍ତ୍ତା କିପରି ନ ଭାଙ୍ଗିବ ସେଥିପାଇଁ ସାର୍ ସାପ୍ରୁ ଓ ଶ୍ରୀ ଜୟକାର ତନ୍ତୀଘର କଣ୍ଢାପରି ଏପଟ ସେପଟ ଦଉଡ଼ ଧାପଡ଼ କରୁଥାନ୍ତି । ଗାନ୍ଧିଜୀ କଂଗ୍ରେସ ନେତା ଡ଼କଟର ଆନସାରୀଙ୍କ ଘରୁ ବଡ଼ଲାଟ ଭବନକୁ ଚାଲିକରି ଯିବା ଆସିବା କରୁଥାନ୍ତି । ଏହାର ଦୂରତ୍ୱ ଥିଲା ପାଞ୍ଚ ମାଇଲ । ଦିନେ କଥାବାର୍ତ୍ତା ସାରି ଡ଼. ଆନସାରୀଙ୍କ ଘରକୁ ଫେରିବା ବେଳକୁ ରାତି ଦୁଇଟା ହୋଇଗଲା । ଅବଶେଷରେ ୫.୩.୩୧ ତାରିଖରେ ଗାନ୍ଧୀ-ଇରଉଇନ୍ ଚୁକ୍ତିପତ୍ର ସ୍ୱାକ୍ଷରିତ ହେଲା । ଚୁକ୍ତିପତ୍ରରେ ସର୍ତ୍ତ ରହିଲା - ଏହି ଚୁକ୍ତି ଅନୁସାରେ ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରାଯିବ । ସେମାନଙ୍କ ବାଜ୍ୟାପ୍ତ ସଂପତ୍ତି ଫେରସ୍ତ ଦିଆଯିବ । ସମୁଦ୍ର ଉପକୂଳରେ ରହୁଥିବା ଲୋକଙ୍କୁ ଲୁଣ ମାରିବା ଅଧିକାର ଦିଆଯିବ । ଆଇନ୍ ଅମାନ୍ୟ ଆନ୍ଦୋଳନ ବନ୍ଦ ହେବ ମାତ୍ର ମଦଗଞ୍ଜେଇ ଅଫିମ ଦୋକାନରେ ଶାନ୍ତିପୂର୍ଣ୍ଣ ପିକେଟିଂ ଚାଲିବ । ଦେଶର ଭବିଷ୍ୟତ ଶାସନ ସଂସ୍କାରରେ ରାଷ୍ଟ୍ରସଂଘ ଭିତ୍ତିକ ଶାସନ ବ୍ୟବସ୍ଥାକୁ ପସନ୍ଦ କରିବା ସଂଗେ ସଂଗେ ଭାରତର ସ୍ୱାର୍ଥ ଦୃଷ୍ଟିରୁ ହାତରେ ପାଞ୍ଚ ବ୍ୟବସ୍ଥା ରହିବ । କଂଗ୍ରେସ ଲୋକଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରିବାର ଅଧିକାର ଦିଆଯିବ । ପଣ୍ଡିତ ଜବାହାରଲାଲ ନେହେରୁ ଏ ସନ୍ଧି ପ୍ରସ୍ତାବକୁ ନାପସନ୍ଦ କରୁଥିଲେ । ସେ ବିଚାରୁଥିଲେ ଯେ ଏହା ଦ୍ୱାରା ଆମ ଆତ୍ମସମ୍ମାନରେ ଆଞ୍ଚ ଆସିବ । ସେଥିପାଇଁ ଗାନ୍ଧିଜୀ କହିଲେ-କଂଗ୍ରେସ କାର୍ଯ୍ୟକାରୀ ସମିତି ଏହି ପ୍ରସ୍ତାବକୁ ସ୍ୱୀକୃତି ନ ଦେଲେ ସେ ଏହାକୁ ଜୋର କରି କଂଗ୍ରେସ ମୁଣ୍ଡରେ ଚପେଇବେ ନାହିଁ । ବହୁ ଆଲୋଚନା ପରେ ଜବାହର ତାଙ୍କ ବିରୋଧ ପ୍ରତ୍ୟାହାର କଲେ ଏବଂ କିଛି କାଳ ପରେ ଏହା ମଧ୍ୟ ସ୍ୱୀକାର କଲେ ଯେ ଏହି ସନ୍ଧି ଫଳରେ କଂଗ୍ରେସର ସମ୍ମାନ ଯଥେଷ୍ଟ ପରିମାଣରେ ବୃଦ୍ଧି

ପାଇଛି । ମାର୍ଚ୍ଚ ୧୨, ୧୯୩୦ରେ ଦାଣ୍ଡୀ-ଯାତ୍ରା ଆରମ୍ଭ ହେଲା । ମାର୍ଚ୍ଚ ୫, ୧୯୩୧ରେ ଗାନ୍ଧୀ-ଆରଉଇନ୍ ସନ୍ଧି ପତ୍ର ସ୍ୱାକ୍ଷରିତ ହେଲା; ରାଜନୈତିକ ବନ୍ଦୀମାନେ କାରାମୁକ୍ତ ହୋଇ ଆସିଲେ । ସେମାନଙ୍କୁ ଅଭ୍ୟର୍ଥନା କରିବା ପାଇଁ କାନ୍ତକବି ଲକ୍ଷ୍ମୀକାନ୍ତ ଗୀତ ଲେଖି ଦେଇଥିଲେ -

ଗର୍ଜି ଉଠୁଛି ତୂର୍ଯ୍ୟନାଦ ଉଡୁଛି ବିଜୟ ବୈତ୍ର
ଆର୍ଯ୍ୟବାହିନୀ ଫେରିଛି ଆଜି ବର୍ଜି ସମର କ୍ଷେତ୍ର,
ବଜାଅ ବଜାଅ ବିଜୟ ଶଙ୍ଖ ଗାଅ ଭାରତର ଜୟ,
ଚନ୍ଦ୍ରସୂର୍ଯ୍ୟ ସ୍ତମ୍ଭିତ ହେଉ କଂପୁ ଅବନୀମୟ
ବିଜୟ ଲକ୍ଷ୍ମୀ ଆଣିଛି ଛଡ଼ାଇ ଶତ୍ରୁ ସାଗର ମନ୍ଥି,
ବଜାଅ ବଜାଅ ବିଜୟ ଶଙ୍ଖ ବଜାଅରେ ରଣତୁରୀ,
ପୂର୍ଣ୍ଣ ହୋଇଛି ଜୀବନ ଯଜ୍ଞ ଚୂର୍ଣ୍ଣ ହୋଇଛି ଶଙ୍କା ॥

ପ୍ରକୃତରେ ଶଙ୍କା ଚୂର୍ଣ୍ଣ ହୋଇଥିଲା । ବ୍ରିଟୀଶ ସାମ୍ରାଜ୍ୟ-ଯେଉଁ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତମିତ ହୁଅନ୍ତି ନାହିଁ, ଯେଉଁ ବ୍ରିଟେନ୍‌ରେ ବୋଲା ହୁଏ -"Rule Brittania rule the waves" ସେହି ଜାତି ଗୋଟାଏ ଅର୍ଦ୍ଧନଗ୍ନ ଫକୀର ସହିତ ସନ୍ଧିସୂତ୍ରରେ ଆବଦ୍ଧ ହେବାକୁ ଅଗ୍ରସର ହେବ - ଏହାଥିଲା ସଂପୂର୍ଣ୍ଣ ଅବିଶ୍ୱାସ୍ୟ ।



## ମନକଥା

୧୯୩୦-୧୪୩୦ । ଠିକ୍ ୫୦୦ ବର୍ଷ ତଳେ ଫ୍ରାନ୍ସ ଦେଶର ଗୋଟିଏ ଚଷାଘର କିଶୋରୀ ଝିଅକୁ ଇଂରେଜମାନେ ଡ଼ାହାଣୀ କହି ପୋଡ଼ି ମାରିଥିଲେ । ତାର ଅପରାଧ ଥିଲା ସେ ଫ୍ରାନ୍ସ ଦେଶର ଇଂରେଜ ଅଧିକୃତ ଅଂଚଳକୁ ଇଂରେଜଙ୍କ କବଳରୁ ଥରେ ମୁକ୍ତ କରିଥିଲା । ଯେତେବେଳେ ସେ ଇଂରେଜମାନଙ୍କୁ ପରାଜିତ କରି ରାଜଦରବାରକୁ ଫେରି ଆସିଲା ସେତେବେଳେ ଫ୍ରାନ୍ସର ରାଜା ତାକୁ ବର ଯାଚିଥିଲେ । ସେ ଯାହା ମାଗିଥାନ୍ତା, ରାଜା ତାହା ଦେଇ ଥାନ୍ତେ । ମାତ୍ର ସେ କହିଲା ମୁଁ ଦେବାଦେଶ ପାଇ ଏ କାର୍ଯ୍ୟ କରିଛି । ତେଣୁ ମୋର ଏଥିରେ କୌଣସି କୃତିତ୍ୱ ନାହିଁ, ମୁଁ ବର ନେବି

ନାହିଁ । ରାଜା ଅତି କଟାଳ କଲାରୁ ଝିଅଟି କହିଲା - ତା ହେଲେ ଆପଣ ମୋ ଗାଁକୁ ରାଜସ୍ୱମୁକ୍ତ କରି ଦିଅନ୍ତୁ ।

ଶୁଣିବା କଥା -ଆଜି ଯାଏ ଫ୍ରାନ୍ସର ଭୂରାଜସ୍ୱ ଆଦାୟକାରୀ ଗାଁ ଗାଁ ବୁଲି ରାଜସ୍ୱ ଆଦାୟ କଲାବେଳେ ସେ ଝିଅଟିର ଗାଁକୁ ପଶି ଗଲେ ଘୋଷଣା କରନ୍ତି-''ଜୀନ୍ ଦା ଆର୍କ୍‌ଙ୍କ ଖାତିର୍‌ରେ ଏ ଗାଁରୁ ରାଜସ୍ୱ ଆଦାୟ ନିଷେଧ ।''

ଭାରତବର୍ଷ ସ୍ୱାଧୀନ ହେବା ପରେ ଦେଶର ସ୍ୱାଧୀନତା ପାଇଁ ଯେଉଁ ଶତ ସହସ୍ର ଲବଣ ସତ୍ୟାଗ୍ରହୀ ପ୍ରାଣ ଦେଲେ, ଲାଠିମାଡ଼ ଖାଇଲେ, ଗୁଳିବିଦ୍ଧ ହେଲେ, କାରାରୁଦ୍ଧ ହେଲେ, ସେମାନଙ୍କ ଖାତିରରେ ଯଦି ଭାରତ-ସରକାର ଲବଣ-କର ଉଠାଇ ଦେଇଥାନ୍ତେ ଏବଂ ପ୍ରତିବର୍ଷ ସଂସଦର ବୈଠକରେ ବିଭିନ୍ନ ସାମଗ୍ରୀ ଉପରେ ଧାର୍ଯ୍ୟ ହୋଇଥିବା କର ଘୋଷଣା କଲା ବେଳେ ଯଦି କହିଥାନ୍ତେ ଯେ ଲବଣ ସତ୍ୟାଗ୍ରହର ଖାତିରରେ ଏ ଦେଶରେ ଲୁଣ ଟିକସ ଆଦାୟ ହେବ ନାହିଁ, ତେବେ କଣ ଭାରତୀୟଙ୍କ ପେଟ ଅପୋଷା ରହିଥାନ୍ତା !!



# ପରିଶିଷ୍ଟ

୧୯୬୩ ମସିହାରେ ପୂଜ୍ୟ ବିନୋବାଜୀଙ୍କଠାରୁ ଶୁଣିଲି—ଘୋର ଆଙ୍ଗିରସ ଋଷି ବାସୁଦେବ କୃଷ୍ଣଙ୍କୁ ଅଠଷଠି ବର୍ଷ ବୟସରେ ସାଂସାରିକ ଧନ୍ଦା ଛାଡ଼ି ଭାବନାତ୍ମକ ସେବା କରିବା ପାଇଁ ଉପଦେଶ ଦେଇଥିଲେ । ମହାଭାରତ ଯୁଦ୍ଧ ବେଳେ କୃଷ୍ଣଙ୍କୁ ଅଠଷଠି ବର୍ଷ ହୋଇ ସାରି ଥିବାରୁ ସେ ଯୁଦ୍ଧ କଲେ ନାହିଁ । ଏହା ଶୁଣି ମୁଁ ମଧ୍ୟ ଅଠଷଠି ବର୍ଷ ପରେ ସାଂସାରିକ ଧନ୍ଦା ଛାଡ଼ି ଭାବନାତ୍ମକ ସେବା କରିବାକୁ ମନ କଲି । ମାତ୍ର ଗାନ୍ଧିଜୀ ଆମକୁ ଗରିବଙ୍କ ସହିତ ଏକରୂପ ହେବା ପାଇଁ ସାଧନା କରିବାର ଦୀକ୍ଷା ଦେଇଥିଲେ ତାହା ସହିତ ଏ ବିଚାର ଖାପ ଖାଇଲା ନାହିଁ । କାରଣ ମୁଣ୍ଡ ଝାଳ ତୁଣ୍ଡରେ ମାରି ଦୈହିକ ପରିଶ୍ରମ କରି ଚଳୁଥିବା ଖଟିଖିଆଙ୍କ ଘରେ ଅଠଷଠି ବର୍ଷରୁ ଅଧିକ ବୟସର ବୁଢ଼ାବୁଢ଼ୀ ମୂଲ ଲାଗି ନ ପାରିବା ଅବସ୍ଥାକୁ ଆସିଯିବା ପରେ ମଧ୍ୟ ଧାନ ଉଁଷେଇବା, ଝୋଟ ଦଉଡ଼ି ବଳିବା ଆଦି କାମ କରନ୍ତି । ତେଣୁ ଗରିବଙ୍କ ସହିତ ଏକରୂପ ହେବା (Identification with the poor) ବୃତ୍ତି ବା ସ୍ୱଧର୍ମ ମଣିଲି ।

ପୁଣି ସୌନ୍ଦର୍ଯ୍ୟର ମାଧୁର୍ଯ୍ୟର ଐଶ୍ୱର୍ଯ୍ୟର ଖଣି' ମୋ ଉତ୍କଳ ଜନନୀଙ୍କର ତ ବାର ମାସରେ ତେର ଓଷା ପରି ବଢ଼ି, ବନ୍ୟା, ମରୁଡ଼ି, ବଜ୍ରପାତ ଭଳି ବାହ୍ୟ ରୋଗ ସବୁବେଳେ ଲାଗି ରହିଛି । ଏ ପ୍ରକାର ଜନନୀଙ୍କର ଭାବାତ୍ମକ ସେବା କରିବା ପାଇଁ ଯେଉଁ ଆଧାତ୍ମିକ ସାଧନା ଲୋଡ଼ା ତାହା ମଧ୍ୟ ମୋର ନାହିଁ । ତେଣୁ ଅଠଷଠି ବର୍ଷ ପୂରିବା ପରେ ମଧ୍ୟ ମୁଁ ବଢ଼ି, ବତାସ ପ୍ରପୀଡ଼ିତ ଅଞ୍ଚଳରେ ସାଧ୍ୟମତେ ତ୍ରାଣ (ରିଲିଫ୍) କାର୍ଯ୍ୟ କଲି ।

ମୋର ଛଅସ୍ତରି ବର୍ଷ ବୟସରେ ଉତ୍କଳ ଖଦୀ ମଣ୍ଡଳଙ୍କ ଡ଼ାକରାରେ ମୁଁ ଗୋଟିଏ ଆଦିବାସୀ ଅଞ୍ଚଳରେ କାମ କରିବାକୁ ଗଲି । ସେଠାରେ ମଣ୍ଡଳଙ୍କର ସରକାରଙ୍କ ଠାରୁ ଜମି ପାଇବା କାମରେ ମୁଁ ରାଜସ୍ୱ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଜିଲ୍ଲାପାଳ, ତହସିଲଦାର, ଅମୀନଙ୍କ ଦ୍ୱାରସ୍ଥ ହେଲି । ପୁଣି ଜମି ପାଇବା ପରେ ମଧ୍ୟ ଲିଜ୍‌ର ସର୍ତ୍ତ ଅନୁସାରେ ଶିକ୍ଷାର ପ୍ରସାରଠାରୁ ଆରମ୍ଭ କରି ବୃକ୍ଷରୋପଣ କାର୍ଯ୍ୟ କରିବା ପାଇଁ ଶିକ୍ଷାମନ୍ତ୍ରୀଙ୍କଠାରୁ

ଆରମ୍ଭ କରି ଶିକ୍ଷା ବିଭାଗର ନିର୍ଦ୍ଦେଶକ ଓ ତାଙ୍କ ପାଖଲୋକ ତଥା ମାଧ୍ୟମିକ ଶିକ୍ଷାବୋର୍ଡ଼କୁ ତନ୍ତୀ ଘର କଣ୍ଡାପରି ରାୟଗଡ଼ା-ଭୁବନେଶ୍ୱର-କଟକ ବ୍ରହ୍ମପୁରକୁ ଦଉଡ଼ିଲି । ଏଥିରୁ ରାଜ୍ୟର ଶାସନ ବ୍ୟବସ୍ଥା ବିଷୟରେ ମୁଁ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରି ପାରିଲି ।

ଏହା ଦ୍ୱାରା ମୋର ଗୋଟିଏ ଅପୂର୍ଣ୍ଣ ବାସନା ମଧ୍ୟ ପୂର୍ଣ୍ଣ ହେଲା । ମୋଠାରୁ ବୟସରେ ମୋ ଠାରୁ ସାନ ଯେଉଁ ଭଉଣୀମାନେ ନିୟମଗିରି ପାହାଡ଼ ଉପରେ ଡ଼ଙ୍ଗରିଆ କନ୍ଧ ଗାଁରେ ରହି କାମକଲେ, ରାମନାଗୁଡ଼ାର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳର ପାହାଡ଼ ଉପରେ ଥିବା ଗାଁ ଗୁଡ଼ିକରେ ହାତୀ ପିଠିରେ ରିଲିଫ୍ ରସଦ ଲଦି ଯାଇ ଲୋକଙ୍କ ପ୍ରାଣରକ୍ଷା କରିଥିଲେ, କୁଷ୍ଠରୋଗରେ ଅଚଳ ହୋଇ ଯାଇଥିବା ଲୋକଙ୍କୁ ସୁସ୍ଥ, କାର୍ଯ୍ୟକ୍ଷମ କରାଇ ପାରିଥିଲେ ସେମାନଙ୍କର ଅସୀମ ସାହସିକତା ଓ ରୋମାଞ୍ଚକାରୀ କାହାଣୀ ଶୁଣିଲାବେଳେ ମୁଁ ନିଜକୁ ଅପଦାର୍ଥ ମନେ କରୁଥିଲି ଏବଂ ଆଦିବାସୀ କ୍ଷେତ୍ରରେ କାମ କରିବା ପାଇଁ ଛଟପଟ ହେଉଥିଲି । ମଣ୍ଡଳଙ୍କ ଜରିୟାରେ ମୋର ସେ ଇଚ୍ଛା ପୂରଣ ହେଲା । ମୁଁ ସେମାନଙ୍କ ସାଙ୍ଗରେ ବିଶେଷରେ ଆଦିବାସୀ ବାଳିକା ମାନଙ୍କ ସହିତ ରହିବା ଫଳରେ ଦେଖିଲି ଯେ ସେମାନେ ଅଣଆଦିବାସୀମାନଙ୍କଠାରୁ ବୌଦ୍ଧିକ ଓ ବ୍ୟାବହାରିକ ଜ୍ଞାନରେ ନିଊନ ନୁହନ୍ତି । ପୁଣି ଆଦିବାସୀ ସମାଜର କେତେଗୁଡ଼ିଏ ଚଳଣି ଅଣ ଆଦିବାସୀ ସମାଜ ପାଇଁ ଅନୁକରଣୀୟ ମନେ କଲି । ଉଦାହରଣ ସ୍ୱରୂପ ଡ଼ଙ୍ଗରିଆ କନ୍ଧ ସମାଜରେ କନ୍ଧ ବାପା ହେବାର ଗୌରବ ହାସଲ କଲେ ସଂଗେ ସଂଗେ ଡ଼ଙ୍ଗରକୁ ଯାଇ ଜଙ୍ଗଲ ସଫା କରି ହଳଦୀଚାଷ ପାଇଁ ଖଣ୍ଡେ ଜମି ଉଠିଆ କରେ । ପୁଅ ବଡ଼ ହୋଇ ଡ଼ଙ୍ଗର ଚଢ଼ି ଶିଖିବା ଯାଏ ପ୍ରତିବର୍ଷ କିଛି କିଛି ଜମି ହଳଦୀ ଚାଷ ଉପଯୋଗୀ କରେ । ପୁଣି ସନ୍ତାନ ଜନ୍ମ ହେବା ପୂର୍ବରୁ ସେମାନେ ସେମାନଙ୍କ ଖାଦ୍ୟ ଦୁଇଜଣଙ୍କ ପାଇଁ ଦୁଇଟି ପତର ଦୋନାରେ ବାଢ଼ି ଖାଆନ୍ତି । ସନ୍ତାନ ହେବା ପରେ ତାଙ୍କ ଘରେ ଆଉ ଗୋଟିଏ ଦୋନାରେ ଖାଦ୍ୟ ବଢ଼ା ହୁଏ । ସେ ଦୋନାଟି ପ୍ରସୂତି ଖାଏ । ପୁଅ ମା କ୍ଷୀର ଛାଡ଼ି ସାଧାରଣ ଖାଦ୍ୟ ଖାଇ ଶିଖିବା ପର୍ଯ୍ୟନ୍ତ ଏହିପରି ଭାବରେ ଖାଦ୍ୟ ବଣ୍ଟା ହୁଏ । ଏହିପରି ଅନେକ ଚଳଣିରେ ବିବେଚନାପୂର୍ବକ ସାମ୍ୟମୈତ୍ରୀର ଭାବନା ଦେଖିବାକୁ ପାଇଲି ।

ଏବେ ଶିକ୍ଷାସନ୍ଧାନ ମୋର ଯେଉଁ ଲେଖାଗୁଡ଼ିକ ଖୋଜାଖୋଜି କରି ବହି ଛାପିବାକୁ ଦୃଢ଼ ପରିକର ହୋଇଛନ୍ତି ସେ ବହି ଛାପିବା ବାବଦରେ ମୋର ମତ ହେଲା – ବହି ଛାପିବା କାମ ବହୁତ ଯାଞ୍ଚ ପଡ଼ତାଳ ହୋଇ ହେବା ଦରକାର । ଯେଉଁ ବହିଦ୍ୱାରା ସମାଜ ଯଥାର୍ଥରେ ଉପକୃତ ହେବ ସେହି ବହି ଛପା ହେବା ଉଚିତ୍ । କାରଣ ବହି

ଛାପାପାଇଁ ବ୍ୟବହୃତ ହେଉଥିବା କାଗଜ ଯୋଗୁ ଜଙ୍ଗଲ ଧ୍ୱଂସ, ମୃତ୍ତିକା କ୍ଷୟ ଓ ପରିବେଶ ପ୍ରଦୂଷଣ ହେଉଛି ବୋଲି ବିଜ୍ଞଜନ କହୁଛନ୍ତି । ତେଣୁ ସମାଜ ପାଇଁ ଏ ଅହିତକର କାମଠାରୁ ମୁଁ ଦୂରରେ ରହିବାକୁ ବର୍ତ୍ତମାନ ମଧ୍ୟ ମୋର ଇଚ୍ଛା ।

ତାହାହେଲେ ଏଗୁଡ଼ାକ ଲେଖିଲି କାହିଁକି ? ମନୁ ମହାରାଜଙ୍କ ଦ୍ୱାରା ରଚିତ ସମ୍ବିଧାନରେ ନିର୍ଦ୍ଦେଶ ଅଛି – ନାରୀମାନେ କୁମାରୀ ଅବସ୍ଥାରେ ବାପାଙ୍କ ହେପାଜତରେ, ଯୌବନରେ ସ୍ୱାମୀଙ୍କ ହେପାଜତରେ ଓ ବାର୍ଦ୍ଧକ୍ୟରେ ପୁଅର ହେପାଜତରେ ରହିବେ – ଏ ସୁରକ୍ଷା ଠାରୁ ମୁଁ ସ୍ୱରକ୍ଷାକୁ ବେଶୀ ପସନ୍ଦ କରେ କିନ୍ତୁ ପୁଅ ଜ୍ଞାନଦେବ ଯେତେବେଳେ ମୋତେ କହିଲା – ବୈଜ୍ଞାନିକମାନେ ଯାହା ଗବେଷଣା ବା ପ୍ରୟୋଗ କରନ୍ତି ତାକୁ ଲିପିବଦ୍ଧ କରନ୍ତି । କାରଣ ତାଙ୍କ ପରେ ଯେଉଁମାନେ ସେହି ପ୍ରୟୋଗ କରିବେ ସେମାନଙ୍କୁ ପୂର୍ବ ଗବେଷକ ମାନଙ୍କ ଦ୍ୱାରା ଲିପିବଦ୍ଧ ବିବରଣୀ ଗବେଷଣାରେ ସାହାଯ୍ୟ କରିବ । ତମେମାନେ ଯେ ସତ୍ୟାଗ୍ରହ ବା ଅହିଂସାତ୍ମକ ପଦ୍ଧତିରେ ଅନ୍ୟାୟର ପ୍ରତିକାର କରିବାର ପ୍ରୟୋଗ କଲ ତାକୁ ଲିପିବଦ୍ଧ କରିବା ଉଚିତ୍ । କାରଣ ପରବର୍ତ୍ତୀ କାଳର ସମାଜ ବିଜ୍ଞାନୀମାନେ ସେମାନଙ୍କ ଅଭିଜ୍ଞତା ଦ୍ୱାରା ଲାଭବାନ୍ ହେବେ ।

ମୁଁ ମନେ ମନେ ହସିଲି । କାହିଁ ସମାଜବିଜ୍ଞାନୀ ଆଉ କାହିଁ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଜନ୍ମ ହୋଇଥିବା ଅପାଠୁଆ ଓଡ଼ିଆ ଝିଅ ! ଏ ସବୁ ପ୍ରୟୋଗ କରିବା ଲୋକ ନିଆରା । ପୁଣି କିଛିକ୍ଷଣ ପରେ ଭାବିଲି ଗାନ୍ଧିଜୀଙ୍କ ନେତୃତ୍ୱରେ ଯେଉଁ ସତ୍ୟାଗ୍ରହ ବା ଅହିଂସାତ୍ମକ ଉପାୟରେ ଅନ୍ୟାୟର ପ୍ରତିକାରର ପ୍ରୟୋଗ ହେଲା ସେ ପ୍ରୟୋଗରେ ତ ଶହ ଶହ ସଂଖ୍ୟାରେ ଅପାଠୁଆ ଝିଅ ସାମିଲ୍ ହୋଇଥିଲେ । ସେମାନେ ସେ ବିଷୟରେ କ'ଣ ବୁଝିଥିଲେ ଓ କି କାମ କରିଥିଲେ, ସେମାନଙ୍କ ଜୀବନରେ କି ପରିବର୍ତ୍ତନ ଘଟିଥିଲା ତାହା ମଧ୍ୟ ସମାଜ ବିଜ୍ଞାନୀମାନେ ଜାଣିବା ଦରକାର । ଗାନ୍ଧୀ ଗବେଷଣାଗାରର ଏହି ଗିନିପିଗ୍ ବା ବିଲାତୀ ମୂଷାଙ୍କ ଅନୁଭବ ମଧ୍ୟ ଟିପିବାକୁ ହେବ । ତେଣୁ ନିଜର ଅନୁଭୂତି ପୁଅ କଥା ମାନି ଲେଖିଲି ।

ଭାରତରେ ଏମରଜେନ୍‌ସି ବା ଜରୁରୀକାଳୀନ ପରିସ୍ଥିତିଟା ଅନ୍ତତଃ ଆମ ପାଇଁ ଏକ ସ୍ମରଣୀୟ ଘଟଣା । ଯେଉଁମାନେ ଏହାର ବିରୋଧ କଲେ ବା ବିରୋଧ କରିବେ ବୋଲି ସରକାର ଭାବିଲେ ସେମାନଙ୍କୁ ବନ୍ଦୀଶାଳାରେ ରଖିଲେ । ସେମାନଙ୍କୁ ଭାବନାତ୍ମକ ଦେଶ ସେବା କରିବାର ସୁଯୋଗ ମିଳିଲା । କିନ୍ତୁ ରମାଦେବୀଙ୍କ ପରି ଯେଉଁମାନଙ୍କୁ ଏ ସମ୍ମାନ ବା ସୁବିଧା ମିଳିଲା ନାହିଁ ସେମାନଙ୍କ ବାସଗୃହର ପ୍ରବେଶ ଦ୍ୱାରରେ ସରକାରୀ ଜଗୁଆଳୀ ରହିଲେ । କେହି ଆମନ୍ତ୍ରକ ଆସିଲେ ସେମାନଙ୍କ ନାମ ଟିପିବା ଓ ସେମାନଙ୍କୁ

ଢେରା କରିବା ତାଙ୍କର କାମ ଥିଲା । ଫଳରେ ରମାଦେବୀ ଓ ତାଙ୍କ ପାଖ ଲୋକଙ୍କ ପାଖକୁ ଆସିବାକୁ ଲୋକେ କୁଣ୍ଠିତ ହେଲେ । କିନ୍ତୁ ଶ୍ରୀମତୀ ଶକୁନ୍ତଳା ପଣ୍ଡା ଏ ସବୁକୁ ଖାତର ନ କରି ବରାବର ରମାଦେବୀଙ୍କ ପାଖକୁ ଆସିଲେ ଏବଂ ସୁଚରିତା ପାଇଁ ଲେଖା ଦେବାକୁ ରମାଦେବୀଙ୍କ ପାଖରେ ଅଝଟ ହେଲେ । ଫଳରେ ରମାଦେବୀଙ୍କୁ କଲମ ଧରିବାକୁ ପଡ଼ିଲା ।

ଶ୍ରୀମତୀ ପଣ୍ଡାଙ୍କ ଶ୍ୟେନଦୃଷ୍ଟି ଆମ ଉପରେ ମଧ୍ୟ ପଡ଼ିଲା । ଆମେ ସେତେବେଳେ ଏମରଜେନ୍‌ସି ବିରୋଧରେ ପ୍ରଚାରପତ୍ର ଲେଖିବା ଓ ପୁଲିସଙ୍କ ଶ୍ୟେନଦୃଷ୍ଟିକୁ ଏଡ଼େଇ ତାକୁ ଛାପିବା ଓ ବାଣ୍ଟିବାର କୌଶଳ ଆବିଷ୍କାର କରିବାରେ ମଶ୍‌ଗୁଲ୍ ହୋଇ ରହିଥାଉ । ଶ୍ରୀମତୀ ପଣ୍ଡା ଏ ପରିସ୍ଥିତିରେ ଆମକୁ ସଙ୍ଖୁଳିବାକୁ ଆସୁଛନ୍ତି ସେଥିପାଇଁ ତାଙ୍କୁ କୃତଜ୍ଞତା ଜଣାଇବାକୁ ମୁଁ ମୋ ଟିପାଖାତା ତାଙ୍କୁ ଧରେଇ ଦେଇ ନିଜକୁ ରକ୍ଷା କଲି । ସେଗୁଡ଼ାକୁ ସେ ସୁଚରିତାରେ ଛାପିଲେ ।

ଶ୍ରଦ୍ଧାସ୍ପଦ ଶ୍ରୀ ମହାପାତ୍ର ନୀଳମଣି ସାହୁଙ୍କ ଠାରୁ ଆରମ୍ଭ କରି ସ୍ନେହାସ୍ପଦ ଶୈଳଜ ରବି ସାହୁ ପର୍ଯ୍ୟନ୍ତ ଅନେକ ସେ ଲେଖା ଛାପିବାକୁ ଚାହିଁଲେ । ମୁଁ ମୋ ପରିବେଶ ପ୍ରଦୂଷଣ ବିଚାରରେ ଦୃଢ଼ ରହିଲି । କିନ୍ତୁ ଏ ଶିକ୍ଷାସନ୍ଧାନ ପରିବାର ମୋର ମତାମତକୁ ଅପେକ୍ଷା ନ କରି ଚାରିଆଡୁ ଲେଖାଗୁଡ଼ିକ ରୁଣ୍ଡେଇ ସାଉଁଟି ଗୋଟାଏ ବହି ଛାପିବାକୁ ବଦ୍ଧ ପରିକର ହୋଇଛନ୍ତି । ମୁଁ ସେ ସବୁ ଲେଖା ପଢ଼ି ସଂଶୋଧନ କରି ନାହିଁ, କରି ପାରିବି ନାହିଁ, କାରଣ ଆଖି, କାନ, ହାତ ଅବସର ଗ୍ରହଣ କରିବାକୁ ତତ୍ପର ହେଲେଣି । ତେଣୁ ଏ ଲେଖାର ଭୂଲ୍, ଭ୍ରାନ୍ତି, ଦୋଷତ୍ରୁଟି ସବୁ ଶିକ୍ଷାସନ୍ଧାନ ପରିବାର ସମ୍ଭାଳିବେ ।

ନେତ୍ରୋତ୍ସବ ୨୦୦୪ ଅନ୍ନପୂର୍ଣ୍ଣା ମହାରଣା



ମହାତ୍ମାଗାନ୍ଧୀଙ୍କ ଓଡ଼ିଶା ଆଗମନ ସମୟରେ ବାପୁଜୀଙ୍କ ଡାହାଣ ପାର୍ଶ୍ୱରେ ଶ୍ରୀମତୀ ମହାରଣା...



ବଡ଼ବୋହୂ ସୁମିତ୍ରାଙ୍କ ସହିତ ଶ୍ରୀମତୀ ଅର୍ଣ୍ଣପୂର୍ଣ୍ଣା...



ଶ୍ରୀମତୀ ରମାଦେବୀ, ଅଂଶୁମାନ୍ ଓ ଶ୍ରୀମତୀ ମହାରଣା...



ଶ୍ରୀଯୁକ୍ତ ଶରତ ମହାରଣା, ନାତି ଅଂଶୁମାନ୍ ଓ ଶ୍ରୀମତୀ ମହାରଣା...

ଅଗଣିତ ସ୍ନେହୀଜନ ଯାହାଙ୍କ ସ୍ନେହ ସ୍ପର୍ଶରେ ଏ ଜୀବନ ପୁଷ୍ଟ ହୋଇଛି, ଯେଉଁମାନଙ୍କ ସ୍ମୃତି ମୋ ମସ୍ତିଷ୍କରେ, ଏ ବିଧାତା ନିର୍ମିତ କମ୍ପ୍ୟୁଟରରେ, ଅଦୃଶ୍ୟ କାଳିରେ ଲିପିବଦ୍ଧ ହୋଇ ରହିଛି ଏବଂ ସ୍ମରଣ ମାତ୍ରକେ ତାହା ମନଶ୍ଚକ୍ଷୁ ଆଗରେ ନାଚି ଯାଉଛି ଓ ମୋ ଅନ୍ତରକୁ ଆନ୍ଦୋଳିତ କରୁଛି, ସେମାନଙ୍କ ସମସ୍ତଙ୍କ କଥା ତ ଲେଖିଲେ ସନ୍ଥ କବୀରଙ୍କ ଭାଷାରେ ଧରିତ୍ରୀକୁ କାଗଜ ଓ ଶାଳଗଛକୁ କଲମ କରି ସାତ ସମୁଦ୍ରକୁ ସ୍ୟାହି କଲେ ମଧ୍ୟ ଲେଖା ସରିବ ନାହିଁ । ଭଗବାନ୍ ତ ସେହିମାନଙ୍କ ରୂପରେ ମୋତେ ପୋଷଣ ଦେଇଛନ୍ତି । ତେଣୁ ଏଣିକି ଏହି ଶେଷ ଜୀବନରେ, ଉନ୍ନିଦ୍ର ରଜନୀରେ, ଜୀବନର ଚଲାପଥରେ ସେହିମାନେ ହେଉଛନ୍ତି ଅଦୃଶ୍ୟ ସାଥୀ ଏବଂ ସେହିମାନଙ୍କ ନାମାବଳୀ ହିଁ ମୋର 'ବିଷ୍ଣୁ ସହସ୍ର ନାମ' । ...

**ISBN : 81-87982-19-5**

**Price : Rs.300/-**